# କାହାପାଇଁ ଘଣ୍ଟା ବାଜେ

ଆର୍ଣ୍ଣେଷ୍ଟ୍ ହେମିଂଓ୍ୱେ

ଅନୁବାଦକ—ଲାଲ୍ ନରେନ୍ଦ୍ର-କୁମାର ରାୟ

## ପ୍ରଥମ ପରିଚ୍ଛେଦ

ବନ ମଧ୍ୟରେ ବାଦାମୀ ରଙ୍ଗର ଦେବଦାରୁ ପତ୍ରବହୁଳ ଭୂଇଁତଳେ ସେ ଶୋଇଥିଲେ । ଦୁଇବାହୁକୁ ଛନ୍ଦି ସେଥିରେ ରଖିଥିଲେ ଚିବୁକ । ଊର୍ଦ୍ଧ୍ୱରେ ଉଚ୍ଚ ଦେବଦାରୁ ଗଛର ଚୂଡ଼ାଦେଇ ପବନ ସାଁ ସାଁ ବହୁଥିଲା । ସେ ଯେଉଁଠି ଶୋଇଥିଲେ ସେଟା ହେଉଚ୍ଛି ପାହାଡ଼ର ଅଳ୍ପ ଗଡ଼ାଣିଆ ଅଂଶ, କିନ୍ତୁ ତା' ତଳକୁ ଗଡ଼ାଣିଆ ବଡ଼ ତଖ । ସେଠାରୁ ଗିରିବର୍ତ୍ମ ଦେଇ ପିଚୁରସ୍ତା ରାସ୍ତାଟି ଯାଇଥିବାର ଦେଖାଯାଉଥାଏ । ଏହି ରାସ୍ତାରେ ଗୋଟିଏ ନଦୀ ଉପରେ ପୋଲ ବନ୍ଧା । ଗିରିବର୍ତ୍ମର ବହୁତ ତଳେ ନଈ କୂଳରେ ଗୋଟିଏ ଅଟାକଳ । ନଦୀଟି ବନ୍ଧା ହୋଇଥିବାରୁ ପାଣି ତଳକୁ ପଡୁଥାଏ; ଏବଂ ନଦୀପର ସୂର୍ଯ୍ୟ ରଶ୍ମିରେ ତାହା ରୂପାପରି ଚକ୍‌ଚକ୍ କରୁଥାଏ ।

ସେ ପଚାରିଲେ "ହେଇଟି । ସେଟା କଅଣ କରଉକଳ ?"

'ହଁ ।'

'ମୋର ତ ମନେ ପଡୁନାହିଁ ।'

'ତୁମେ ଗଲାପରେ କଳ ସ୍ଥାପିତ ହେଲା । ପୁରୁଣା କଳଟା ଗିରିବର୍ତ୍ମର ବହୁତ ତଳକୁ । ସେ ସାମରିକ ମାନଚିତ୍ରର ଫଟୋ ଖଣ୍ଡିକ ତଳେ ମେଲଇ ଅତି ଯତ୍ନର ସହିତ ଦେଖିବାକୁ ଲାଗିଲେ । ବୁଢ଼ାଟି ତାଙ୍କ କାନ୍ଧ ଉପରୁ ଝୁଙ୍କିପଡ଼ି ତାହା ଦେଖିଲା । ସେ ଜଣେ ବାଙ୍ଗର କିନ୍ତୁ ନଦା ମଣିଷ । ସେ ଭଲ୍ ଇଷ୍ଟିଙ୍କର ପାଇଜାମା ଏବଂ ଗୋଟିଏ କସ୍ ଗ୍ରଞ୍ଜୀ କୁରୁତା ପିନ୍ଧିଥାନ୍ତି । ଗୋଡ଼ରେ ତାଙ୍କର ଦଉଡ଼ିତଳା ଜୋତା । ପାହାଡ଼ ଉଠାଣି ଚଢ଼ି ଆସିଥିବାରୁ ସେ ଝରନଶ୍ୱାସ ନେଉଥାନ୍ତି ଏବଂ ଯେଉଁ ଦୁଇଟି ବୋକସ୍ ବହି ଆଣିଥିଲେ ତାକୁ ଥୋଇ ତା ଉପରେ ହାତ ରଖିଥାନ୍ତି ।'

'ତେବେ ତୁମେ ଏଠାରୁ ପୋଲ୍‌ଟି ଦେଖି ପାରୁନାହଁ ?'

ବୁଢ଼ା କହିଲା "ନାହିଁ । ଏ ଜାଗାଟା ଗିରବର୍ତ୍ତର ସହଜିଆ ସ୍ଥାନ, ଏଠାରେ ନଦୀଟିର ଗତି ବଡ଼ ଧୀର । ତଳକୁ ଯେଉଁଠି ଗ୍ରାମଟି ବଙ୍କାଇ ଅଦୃଶ୍ୟ ହୋଇଅଛି ସେଠି ଗଡ଼ାଣିଆ ବଡ଼ ତୀକ୍ଷ୍ଣ ଏବଂ ସେଠାର ବର୍ତ୍ତଟା ମଧ୍ୟ ସେହିପରି ତୀକ୍ଷ୍ଣ ।

"ହଁ, ମୋ ମନେ ଅଛି ।"

'ଏହି ବର୍ତ୍ତ ଉପରେ ହେଉଛି ପୋଲଟି ।'

'ଆଉ ତାଙ୍କର ଜଗୁଆଳି ଘାଟି ସବୁ କେଉଁଠି ?'

'ସେହି କରତକଲ ପାଖରେ ଗୋଟିଏ ଘାଟି ଦେଖିପାରିବ ।'

ମାନଚିତ୍ର ପର୍ଯ୍ୟାଲୋଚନା କରୁଥିବା ଯୁବକ ଜଣକ ଝିଣ୍ଟେ ଅତି ପୁରୁଣା ଖାକି ରଙ୍ଗର ଫ୍ଲାନେଲ୍ କାମିଜ୍ ପିନ୍ଧିଥିଲେ । ତାହାଁର ପକେଟ୍‌ରୁ ନଜର ଦୂରବୀକ୍ଷଣ ଯନ୍ତ୍ର କାଢ଼ି ତାହାଁର କାଚସବୁ ରୁମାଲରେ ପୋଛି ଲେନ୍‌ସ କାଚଖଣ୍ଡିକ ବୁଲାଇ ଲକ୍ଷ୍ୟ ଠିକ୍ କଲେ । ଏହାପରେ କରତକଲର ନାମଲେଖା ପଟା, ଦୁଆର ମୁହଁରେ ପଡ଼ିଥିବା ବେଞ୍ଚ ଏବଂ ଗୃହଳିଆ ଭିତରେ କରତଗୁଣ୍ଡର ଏକ ବିରାଟ ସ୍ତୂପ ଦେଖିଲେ । ଆହୁରି ମଧ୍ୟ ପାହାଡ଼ରୁ ନଦୀକୁ ଗଡ଼ାଇ ବଡ଼ବଡ଼ କାଠଗରମାନ କଲ ପାଖକୁ ଆଣିବା ପାଇଁ ଗୋଟିଏ କୃତ୍ରିମ କେନାଲର କିୟଦଂଶ ଦେଖି ପାରିଲେ । ଯନ୍ତ୍ରରେ ନଦୀଟି ପରିଷ୍କାର ଏବଂ ସ୍ପଷ୍ଟ ଦେଖାଯାଉଥିଲା । ବନ୍ଧ ଉପରୁ ପାଣି ତଳକୁ ପଡ଼ୁଥିବା ଯୋଗୁଁ ଜଳୀୟବାଷ୍ପ ପବନରେ ମିଶି ଯାଉଥିଲା ।

'ସେଠି ତ ପହରାବାଲା ନାହିଁ ?'

ବୁଢ଼ା କହିଲା "କରତକଲ ହତାରୁ ଧୂଆଁ ବାହାରୁଛି । ଏହାଛଡ଼ା ତାରରେ ଲୁଗାପଟା ଶୁଖିବା ଦେଖାଯାଉଛି ।"

"ହଁ, ମୁଁ ସେ ସବୁ ଦେଖୁଛି କିନ୍ତୁ ପହରାବାଲା ଦେଖୁନାହିଁ ।"

"ହୁଏତ ପହରାବାଲା ଭିତରେ ଛାଇରେ ବସିଛି । ବର୍ତ୍ତମାନ ବାହାରେ ବଡ଼ ଗରମ । ସେ ଛାଇରେ କେଉଁ ମୁଣ୍ଡରେ ବସିଥିବ ଆମକୁ ଦେଖାଯାଉ ନାହିଁ ।" ବୁଢ଼ା ବୁଝାଇଲା ।

'ସମ୍ଭବତ ସେଇଆ । ଆଚ୍ଛା ଅନ୍ୟ ଘାଟି କେଉଁଠି ?'

'ପୋଲ ତଳକୁ । ରାସ୍ତା ମରାମତି କଲାବାଲାର କୁଡ଼ିଆ ପାଖରେ । ଗିରବର୍ତ୍ତରୁ ପାଞ୍ଚମିଟର୍ ଦୂର ।'

କରତକଲାକୁ ଦେଖାଇ ସେ ପଗ୍ଭରିଲେ "ଆଚ୍ଛା ସେଠାରେ କେତେଲୋକ ରହନ୍ତି ?"

'ସମ୍ଭବତଃ ଗ୍ଭରିଜଣ ପ୍ରହରୀ ଓ ଜଣେ ନିମ୍ନ ଶ୍ରେଣୀର ଜମାଦାର ।'

'ତା ତଳକୁ କେତେଜଣ ?'

'ବେଶୀ ଅଛନ୍ତି । ମୁଁ ସନ୍ଧାନ ନେବି ।'

'ପୋଲ ଉପରେ ?'

'ଦୁଇ ମୁଣ୍ଡରେ ଦୁଇଜଣ ।'

ଯୁବକ ଜଣକ କହିଲେ "ଆମକୁ ଏକ ନିର୍ଦ୍ଦିଷ୍ଟ ସଂଖ୍ୟକ ଲୋକ ଲୋଡ଼ାହେବ । ତୁମେ କେତେଲୋକ ସଂଗ୍ରହ କରିପାରିବ ?"

ବୁଢ଼ା ଜବାବ ଦେଲା "ବର୍ତ୍ତମାନ ପାହାଡ଼ରେ ବହୁତ ଲୋକ ଅଛନ୍ତି, ଆପଣ ଯେତେ ଲୋକ ଦରକାର କରିବେ ମିଳିପାରିବ ।"

'କେତେ ଲୋକ ଅଛନ୍ତି'?

'ପ୍ରାୟ ଶତାଧିକ ଅଛନ୍ତି କିନ୍ତୁ ସେମାନେ ସାନ ସାନ ଦଳରେ ବିଭକ୍ତ । ଆପଣଙ୍କୁ କେତେଜଣ ଲୋଡ଼ା ?'

'ପୋଲଟା ଭଲକରି ଦେଖି ସାରିଲେ ମୁଁ ସେ କଥା କହିବି ।'

'ଏଇକ୍ଷଣି ଦେଖିବେ ?'

'ନା । ପ୍ରଥମେ ଏହି ବିସ୍ଫୋରକକୁ ଲୁଗ୍ଭଇବା ପାଇଁ ମୁଁ ଯିବି । ମୋ ଇଚ୍ଛା, ପୋଲଠାରୁ ଅଧଘଣ୍ଟା ବାଟ ଦୂରରେ ଯଦି ଜାଗାମିଳେ ତେବେ ସେଇଠି ସମ୍ପୂର୍ଣ୍ଣ ନିରାପଦ ଭାବରେ ଲୁଗ୍ଭଇବି ।'

ବୁଢ଼ା କହିଲା "ତାହା ଅତି ସହଜ । ଆମ ଏଠାରୁ ପୋଲଟା ବହୁତ ତଳେ ଅବସ୍ଥିତ । କିନ୍ତୁ ବର୍ତ୍ତମାନ ଟିକେ କଷ୍ଟ କରି ଶୀଘ୍ର ଉପରକୁ ଚଢ଼ିବା ଆବଶ୍ୟକ । ଆପଣଙ୍କୁ ଭୋକ ଲାଗିଲାଣି ?"

ଯୁବକ କହିଲେ "ହଁ, ତେବେ ଆମେ ପରେ ଖାଇବା । ଅଚ୍ଛା ତୋ ନାମ କଅଣ କହିଥିଲୁ, ମୁଁ ଭୁଲିଯାଇଛି ।" ଏମରି ପାଶୋରି ଦେବାରୁ ସେ ଖରାପ ଲକ୍ଷଣ ବୋଲି ମନେକଲେ । ବୁଢ଼ା ଜବାବ ଦେଲା "ମୋତେ ଆନ୍‌ସେଲ୍‌ମୋ ବୋଲି

ଡାକନ୍ତୁ । ମୋ ଘର ଆର୍କୋଲ୍ଡ୍ ଆଭିଲ ଗ୍ରାମରେ । ହଉ ଦିଅନ୍ତୁ ଆପଣଙ୍କ ବୋକଚ୍ଚ ମୁଁ ବହିନେବି ।"

ଯୁବକ ଜଣକ ଡେଙ୍ଗା ଓ ରୋଗା । ଝଡ଼ରେ ତାଙ୍କର ବାଳ କହରା ହୋଇଥାଏ ଏବଂ ଝଡ଼ ଓ ପବନରେ ତାଙ୍କର ମୁହଁ ଝାଉଁଳି ପଡ଼ିଥାଏ । ପରିଧାନରେ ମଧ୍ୟ ସେହି ଝରଝିଆ ମଳିନ ଫ୍ଲାନେଲ୍ କାମିଜ, ଗ୍ରୀଷ୍ମୀଙ୍କର ପାଇଜାମା ଏବଂ ଦଉଡ଼ି-ତଳା ଜୋତା । ସେ ନଇଁପଡ଼ି ଗୋଟିଏ ଚମଡ଼ା ବୋକଚ୍ଚ ଫିତାରେ ହାତ ପୂରାଇ ବୋକଚ୍ଚଟି କାନ୍ଧ ଉପରକୁ ଉଠାଇନେଲେ । ତତ୍ପରେ ଅନ୍ୟ ବୋକଚ୍ଚଟି ଉଠାଇ ପିଠିରେ ଥୋଇଲେ । ପିଠିରେ ଯେଉଁ ଜାଗାରେ ବୋକଚ୍ଚ ବନ୍ଧି ଆଣିଥିଲେ ସେ ଜାଗାର କାମିଜ ଅଂଶ ଓଦା ହୋଇ ଯାଇଥାଏ । ଏହାପରେ ସେ କହିଲେ "ଏଥର କୁହ କୁଆଡ଼େ ଯିବା ?"

ଆନ୍‌ସେଲ୍‌ମୋ କହିଲା "ଏଣିକି ଚଢ଼ାଣି ଚଢ଼ିବା "

ବୋକଚ୍ଚ ବୋଝରେ ନଇଁପଡ଼ି, ଝାଳନାଳ ହୋଇ ଦୁହେଁ ଦେବଦାରୁ ସମାଚ୍ଛନ୍ନ ପାହାଡ଼ ନାସି ଆରୋହଣ କଲେ । ପାହାଡ଼ରେ କୌଣସି ବାଟଘାଟର ଚିହ୍ନ ନଥିଲା; କିନ୍ତୁ ସେମାନେ ପାହାଡ଼ରେ ବୁଲି ବୁଲି ଉଠାଣି ଉଠୁଥିଲେ । ବାଟରେ ସାନ ପାର୍ବତ୍ୟ ଝରଣାଟିଏ ପଡ଼ିଲା । ବୁଢ଼ା ଲୋକଟି ଆଗେ ଆଗେ ଦ୍ରୁତପଦରେ ସେହି ଝରଣା ଶଯ୍ୟା ପାଖେପାଖେ ଗଲା । କ୍ରମେ ଉଠାଣି ବେଶି ଠିଆ ଏବଂ କଷ୍ଟସାଧ୍ୟ ହୋଇ ଉଠିଲା । ଶେଷକୁ ଦେଖାଗଲା ଝରଣାଟି ଖଣ୍ଡିଏ ମସୃଣ ଅକର୍ମଶୀଳା ପଥରଦେଇ ତଳକୁ ପଡ଼ୁଅଛି । ଏହି ପଥରଖଣ୍ଡି ଏକସ୍ତମ୍ଭ ସଦୃଶ ଠିଆ । ଏହି ପଥର ମୂଳେ ବୁଢ଼ା ଯୁବକ ଜଣକୁ ଅପେକ୍ଷା କଲା ।

ବୁଢ଼ା ପଚାରିଲା 'କଷ୍ଟ ସହି ପାରୁଛ ତ ?'

ଯୁବକ ଉତ୍ତର ଦେଲେ 'ହଁ ଠିକ୍ ଅଛି ।' ତାଙ୍କ ଦେହରୁ ଗମାଗମ ଝାଳ ବହୁଥାଏ ।

ଜଙ୍ଘର ପେଶୀ ସଲକ୍ଷ ଉଠାଣି ଚଢ଼ିବା ଫଳରେ କନ୍ କନ୍ ହେଉଥାଏ ।

'ମୁଁ ଫେରି ଆସିବାଯାଏ ଏଇଠାରେ ଅପେକ୍ଷା କରନ୍ତୁ । ମୁଁ ଆଗରୁ ଯାଇ ତାଙ୍କୁ ଜଣାଇଁ ଦେଇ ଆସେ, ନତୁବା ଗୁଳି ଚୋଟରେ ଏହି ବିସ୍ଫୋରକ ସହିତ ପ୍ରାଣ ଯିବ ।'

ଯୁବକ କହିଲେ 'ରହସ୍ୟ ଛଳରେ ସୁଦ୍ଧା ଏକଥା କହିବ ନାହିଁ । ଆଚ୍ଛା କେତେ ଦୂର ?'

'ଅତି ନିକଟରେ । ଆପଣଙ୍କୁ କଅଣ ବୋଲି ଡାକନ୍ତି ?'

ଯୁବକ ଉତ୍ତର ଦେଲେ 'ରବର୍ଟୋ ।' ଏତେ ବେଳକୁ ସେ ବୋକଗ୍ରଟି ଦୁଇଟା ନଦୀ ଶଯ୍ୟାର ଦୁଇ ପଥର ଫାଙ୍କରେ ଧୀରେ ଧୀରେ ଖସାଇ ଦେଉଥିଲେ ।

'ରବର୍ଟୋ ! ତେବେ ଏଇଠି ଅପେକ୍ଷା କରନ୍ତୁ । ମୁଁ ଶୀଘ୍ର ଫେରି ଆସିବି ।'

ଯୁବକ କହିଲେ 'ହେଉ । ଆଚ୍ଛା ଏହି ବାଟ ଦେଇ କଅଣ ତୁମେ ପୋଲକୁ ଯିବା ସ୍ଥିର କରିଅଛ ?'

'ନା, ପୋଲକୁ ଯିବା ପାଇଁ ଆଉ ଗୋଟିଏ ସହଜ ଓ ନିକଟ ରାସ୍ତା ଅଛି ।'

'କିନ୍ତୁ ଏହି ମାଲ ପୋଲଠାରୁ ବେଶୀ ଦୂରରେ ରଖିବାକୁ ମୁଁ ରାଜି ନୁହେ ।'

'ହଉ, ପ୍ରଥମେ ଆପଣ ଦେଖିବେ । ଯଦି ପସନ୍ଦ ନ ହୁଏ ତେବେ ଅନ୍ୟ ଜାଗାକୁ ଯିବା ।'

ଯୁବକ କହିଲେ 'ଦେଖାଯାଉ ।'

ଯୁବକ ବୋକଗ୍ର ପାଖରେ ବସି ରହିଲେ । ବୁଢ଼ା ପଥର ଉପରକୁ ଚଢ଼ିଲା । ଚଢ଼ିବା ସେପରି କଠିନ ନଥିଲା । ବୁଢ଼ା ହାତ ରଖିବା ଜାଗା ନ ଖୋଜି ଯେପରି ସହଜରେ ଚଢ଼ିଲା, ସେଥିରୁ ଯୁବକ ମନେ କଲେ ଯେ ବୁଢ଼ା ଏ ପଥର ବହୁବାର ଚଢ଼ିଅଛି । ତଥାପି ଉପରେ ଯେଉଁମାନେ ଅଛନ୍ତି ସେମାନେ କୌଣସି ଚିହ୍ନ ରଖିଯାଇ ନାହାନ୍ତି ।

ଯୁବକ ଜଣକର ନାମ ହେଉଛି ରବର୍ଟ ଜର୍ଡାନ୍ । ସେ ଅତ୍ୟନ୍ତ କ୍ଷୁଧାତୁର ଏବଂ ଚିନ୍ତିତ ଥିଲେ । ସେ ବହୁବାର କ୍ଷୁଧାତୁର ହୋଇଥିଲେ ମଧ୍ୟ ବିବ୍ରତ ହୋଇ ନ ଥିଲେ । ତାଙ୍କ ଦଶା କଅଣ ହୋଇପାରେ ସେଥିପାଇଁ ସେ ବିଶେଷ ଚିନ୍ତିତ ନଥିଲେ । ଏ ସବୁ ଦେଶରେ ଶତ୍ରୁ ଘାଟିର ପଛପଟେ କାମ କରିବା କେଡ଼େ ସରଳ ଏହା ସେ ନିଜ ଅଭିଜ୍ଞତାରୁ ଜାଣିଥିଲେ । ଭଲ ପଥ-ପ୍ରଦର୍ଶକ ଜଣେ ଥିଲେ ଶତ୍ରୁମାନଙ୍କ ପଛରେ ରହି କାମ କରିବା କିମ୍ବା ତାଙ୍କ ସମ୍ମୁଖରେ କାମ କରିବା ସହଜ କଥା । ଧରା ପଡ଼ିଗଲେ ତୁମ ଦଶା କଅଣ ହେବ ସେତକ ହେଉଛି ଗୁରୁତ୍ୱର ବିଷୟ । ଏହା ଛଡ଼ା କାହାକୁ ବିଶ୍ୱାସ କରିହେବ ତାହା ମଧ୍ୟ ଏକ ବଡ଼ ସମସ୍ୟା । ହୁଏତ ତୁମ ସାଙ୍ଗରେ କାମ କରୁଥିବା ଲୋକମାନଙ୍କୁ ତୁମକୁ ପୂରାପୂରି ବିଶ୍ୱାସ କରିବାକୁ ହେବ, ନଚେତ୍ ଆଦୌ କରିବ ନାହିଁ । ଏହି ବିଶ୍ୱାସ କରିବା ବିଷୟ ତୁମକୁ ନିଜେ ସ୍ଥିର

କରିବାକୁ ପଡ଼ିବ । ଯୁବକଟି ଏ ସବୁ କଥା ପାଇଁ ମଧ୍ୟ ବିବ୍ରତ ନଥିଲେ । ତାଙ୍କର ଅନ୍ୟ କାରଣ ଥିଲା ।

ବୁଢ଼ା ଆନ୍‌ସେଲ୍‌ମୋ ଜଣେ ଦକ୍ଷ ପଥପ୍ରଦର୍ଶକ ଏବଂ ପାହାଡ଼ ଉପରେ ସେ ଅଦ୍ଭୁତ ଭାବରେ ଯା ଆସ କରିପାରେ । ରବର୍ଟ ଜର୍ଡାନ୍ ନିଜେ ମଧ୍ୟ ଭଲ ପାହାଡ଼ ଚଢ଼ିପାରନ୍ତି । ସକାଳୁ ବୁଢ଼ା ପଛେ ପଛେ ଚାଲି ସେ ବୁଝିଛନ୍ତିଯେ ବୁଢ଼ା ମୃତ୍ୟୁ ମୁଖକୁ ମଧ୍ୟ ଆଗେଇ ପାରେ । ରବର୍ଟ୍ ଜର୍ଡାନ୍ ସବୁ କଥାରେ ବୁଢ଼ା ଆନ୍‌ସେଲ୍‌ମେ ଉପରେ ନିର୍ଭର କରିବାକୁ ପ୍ରସ୍ତୁତ, କେବଳ ବୁଢ଼ାର ବିଚାର ବୁଦ୍ଧି ଉପରେ ସେ ଆସ୍ଥାହୀନ । ଏହି ବିଚାର ଶକ୍ତି ପରୀକ୍ଷା କରିବା ପାଇଁ ସେ ସୁଯୋଗ ପାଇ ନାହାନ୍ତି । ଯେ ଯାହାହେଉ କୌଣସି ବିଷୟରେ ସିଦ୍ଧାନ୍ତ କରିବା ତାଙ୍କର ନିଜ ଦାୟିତ୍ୱ । ଆନ୍‌ସେଲ୍‌ମୋ ପାଇଁ ସେ ବିବ୍ରତ ହୋଇ ନଥିଲେ କିମ୍ବା ପୋଲର ସମସ୍ୟା ତାଙ୍କ ପାଖରେ କଠିନ ସମସ୍ୟା ନଥିଲା । ପୋଲଟାଏ କେମିତି ଧ୍ୱଂସ କରିହେବ ଏହା ତାଙ୍କୁ ଜଣା । କାରଣ ସବୁ ଆକାରର ପୋଲ ସେ ଧ୍ୱଂସ କରି ଅଛନ୍ତି । ତାଙ୍କ ପାଖରେ ଯେଉଁ ବିସ୍ଫୋରକ ଦ୍ରବ୍ୟ ଦୁଇ ବୋକଚାରେ ଅଛି ସେଥିରେ ଏମିତି ପୋଲଠାରୁ ଦୁଇଗୁଣ ବଡ଼ ପୋଲ ମଧ୍ୟ ଉଡ଼ାଇ ଦେଇ ହେବ । ୧୯୩୩ରେ ସେ ଥରେ ଲା ଗ୍ରାଞ୍ଜା ଯାଉଥିଲାବେଳେ ଏହି ପୋଲ ଉପରେ ଯାଇ ଏହାର ଲମ୍ବା ଚଉଡ଼ା ଜାଣିଥିଲେ ଏବଂ ଠିକ ଏହି ଧରଣର ବିବରଣ ଗୋଲ୍‌ଜ୍ ଏସ୍‌କୋରିଆଲ୍‌ର ଗୋଟିଏ ବାହାର ଘରେ ବସି ଦୁଇଦିନ ପୂର୍ବରୁ ତାଙ୍କୁ ପଢ଼ି ଶୁଣାଇଥିଲେ ।

ଲମ୍ପ୍ ଆଲୁଅରେ ବଡ଼ ମାନଚିତ୍ର ଉପରେ ପେନ୍‌ସିଲ୍ ଦେଖାଇ ଗୋଲ୍‌ଜ୍ କହିଥିଲେ "ଏହି ପୋଲଟା ଉଡ଼ାଇଦେବା କଣ୍ଟିତ ମାତ୍ର । ବୁଝିଲ ନା ?"

'ହଁ ବୁଝିଲି ।'

'ଖାଲି ପୋଲଟା ଉଡ଼ାଇ ଦେବା ଅତି ନଗଣ୍ୟ କଥା । ଏଟା ବରଂ ଆମର ବିଫଳତା ।'

'ହଁ—ସାଥି ଜେନରାଲ୍ ।'

'ଆକ୍ରମଣ ପାଇଁ ଯେଉଁ ସମୟ ଧାର୍ଯ୍ୟ ହୋଇଅଛି ସେହି ସମୟକୁ ପୋଲଟା ଧ୍ୱଂସ କରିଦେବା ହେଉଛି ଅସଲ କାମ । ଏହା ତ ତୁମେ ବୁଝି ନେବା ସ୍ୱାଭାବିକ ! କେତେବେଳେ ଓ କେମିତି ଏହା କରିବାକୁ ହେବ ଜାଣି ରଖ ।'

ଗୋଲ୍‌ଜ୍ ପେନ୍‌ସିଲ୍ ଟିକେ ନିଜ ଦାନ୍ତରେ ଚିପିଦେଲେ । ରବର୍ଟ୍ ଜର୍ଡାନ୍ ଖୁସି ନହି ନଥିଲେ ।

ଗୋଲ୍‌ଜ୍ ଉତ୍ତର ଦେଲେ "ତୁମର ଅଧିକାର କଅଣ ଏବଂ ତୁମେ କପରି ଭାବେ ତାହା କରିବ ବୁଝିଲତ ?" କହିଲାବେଳେ ସେ ମୁଣ୍ଡ ହଲାଉଥିଲେ । ସେ ପୁଣି ମାନଚିତ୍ରରେ ପେନ୍‌ସିଲ ପିଟି କହିଲେ "ମୁଁ ହେଲେ ଏମିତ କରନ୍ତି । ଅଥଚ ଆମ ଇଚ୍ଛା ମତେ କାମ କରିବାକୁ ଆମର କ୍ଷମତା ନାହିଁ ।"

'କାହିଁକି ନାହିଁ କମ୍‌ରେଡ୍ ସେନାପତି ?'

ଗୋଲ୍‌ଜ୍ ରାଗିଯାଇ କହିଲେ "କେଉଁଟା ଆକ୍ରମଣ ତୁମେ ଦେଖିଛ ଯେ କାହିଁକି ବୋଲି ପ୍ରଶ୍ନ କରୁଅଛ ? ମୋ ଆଦେଶ ଯେ ବଦଳି ନାହିଁ, ଆକ୍ରମଣ କରିବା ସିଦ୍ଧାନ୍ତ ଯେ ଖାରଜ ହୋଇନାହିଁ ଏ ବିଷୟରେ ନିର୍ଭର ଜାମୀନ କିଏ ଦେବ ? ଆକ୍ରମଣ କରିବା ସ୍ଥଗିତ ହୋଇଅଛି କିମ୍ବା ନିର୍ଦ୍ଧାରିତ ସମୟର ୬ଘଣ୍ଟା ପୂର୍ବରୁ ହୋଇଅଛି କିମ୍ବା ଯେମିତ ହେବା କଥା ସେମିତ କୌଣସି ଆକ୍ରମଣ ହୋଇଅଛି ବୋଲି କିଏ ନିଶ୍ଚିତ ଜବାବ ଦେବ ?

ରବର୍ଟ୍ ଜର୍ଡାନ୍ କହିଲେ "ଏହା ଯଦି ତୁମର ଆକ୍ରମଣ ହୁଏ ତେବେ ଠିକ୍ ସମୟରେ ଘଟିବ । ଗୋଲ୍‌ଜ୍ କହିଲେ "ମୁଁ ତାହା ନିର୍ଦ୍ଧାରଣ କଲେ ମଧ୍ୟ ସେସବୁ ମୋ ଆକ୍ରମଣ ନୁହେ । ଗୋଲନ୍ଦାଜ ବାହିନୀ ମୋର ନୁହେ । ମୁଁ ଏହା ମାଗିବି । ସମ୍ଭବ ହେଲେ ମଧ୍ୟ ମୁଁ ଯାହା ଲୋଡ଼ୁଥାଏ ସେମାନେ ମୋତେ ତାହା ଦେଇ ନଥାନ୍ତି । ଏଟାତ ସବୁଠାରୁ ସାନ କଥା । ଆହୁରି ଅନେକ ବିଷୟ ଅଛି । ସେ ଲୋକଗୁଡ଼ାକ କିଭଳି ତୁମକୁ ଜଣା । ମୋର କହିବା ବାହୁଲ୍ୟ । ସବୁବେଳେ କିଛି ନା କିଛି ଘଟୁଛି । ସବୁବେଳେ କେହି ନା କେହି ହସ୍ତକ୍ଷେପ କରିଥାନ୍ତି । ସୁତରାଂ ତୁମେ ବର୍ତ୍ତମାନ ଭଲ ଭାବରେ ବୁଝିନିଅ ।"

ରବର୍ଟ ଜର୍ଡାନ୍ ପଚାରିଲେ "ତେବେ ପୋଲଟା କେତେବେଳେ ଉଡ଼ାଇ ଦେବାକୁ ହେବ ?"

"ଆକ୍ରମଣ ଆରମ୍ଭ ହେଲାକ୍ଷଣି, ମାତ୍ର ତତ୍‌ପୂର୍ବରୁ ନୁହେ । ଯେପରି ସେହି ରାସ୍ତା ଦେଇ ଅତିରିକ୍ତ ସୈନ୍ୟ ନ ଆସନ୍ତି ।" ସେ ନିଜ ପେନ୍‌ସିଲ ଦ୍ୱାରା ସ୍ଥାନଟା ଦେଖାଇଦେଲେ । "ସେ ରାସ୍ତା ଦେଇ ଯେପରି କିଛି ନ ଆସେ ଏତିକ ମୁଁ ଜାଣିବାକୁ ଚାହେଁ ।"

'ତେବେ ଆକ୍ରମଣ କେତେବେଳେ ହେବା କଥା ?'

"ମୁଁ ତାହା କହିଦେବି । କିନ୍ତୁ ମୁଁ ଯେଉଁ ତାରିଖ ଓ ସମୟ କହିବି ତାହାକୁ ତୁମେ ସମ୍ଭାବ୍ୟ ସୂଚକ ବୋଲି ଗ୍ରହଣ କରିବ । ସେହି ସମୟକୁ ତୁମେ ପ୍ରସ୍ତୁତ ହୋଇ ରହିବ । କିନ୍ତୁ ଆକ୍ରମଣ ଆରମ୍ଭ ହୋଇ ଗଲାପରେ ପୋଲଟାକୁ ଉଡ଼ାଇ ଦେବ । ସେଇଟାହିଁ ହେଉଛି ଅତିରିକ୍ତ ସୈନ୍ୟବଳ ଆଣିବାର ଏକମାତ୍ର ରାସ୍ତା । କେବଳ ମାତ୍ର ସେହି ଗୋଟିକ ରାସ୍ତାରେ ସେମାନେ ତୋପ, ଟ୍ୟାଙ୍କ୍, କିମ୍ବା ଟ୍ରକ୍ ଗାଡ଼ି ଗିରିବର୍ତ୍ମକୁ ଆଣି ପାରନ୍ତି । ମୁଁ ସେହି ଗିରିବର୍ତ୍ମକୁ ଆକ୍ରମଣ କରିବି, ଏଣୁ ପୋଲଟା ଯେ ଧ୍ୱଂସ ହୋଇଗଲା ଏତିକି ମୁଁ ଜାଣିବାକୁ ଚାହେଁ । କିନ୍ତୁ ଆକ୍ରମଣ ପୂର୍ବରୁ ନୁହେଁ । ଯଦି ଆକ୍ରମଣ କରିବା ମୂଲତବି ରଖାଯାଏ, ପୋଲଟାକୁ ମରାମତି କରିହେବ । କେବଳ ଦୁଇଜଣ ଜଗୁଆଳି ସେଠି ଅଛନ୍ତି । ତୁମ ସାଙ୍ଗରେ ଯେଉଁ ଲୋକଟି ଯିବ ସେ ଏଇମାତ୍ର ସେଠାରୁ ଫେରିଅଛି । ଶୁଣିଲି ସେ ବଡ଼ ବିଶ୍ୱାସୀ ଲୋକ । ତୁମେ ବୁଝି ପାରିବ । ପାହାଡ଼ରେ ତାହାର ଲୋକବାକ ଅଛନ୍ତି । ତୁମର ଯେତେ ଲୋକ ଦରକାର ନେବ, ତେବେ ଯେତେ ଅଳ୍ପ ଲୋକ ବ୍ୟବହାର କରିବ ସେତେ ଭଲ; କିନ୍ତୁ ଯେତିକି ଦରକାର ତହୁଁ ଊଣା ନେବ ନାହିଁ । ତୁମକୁ ଏସବୁ କଥା ଆଉ ଅଧିକ କ'ଣ କହିବି !"

"ଆଚ୍ଛା ଆକ୍ରମଣ ଆରମ୍ଭ ହେଲାଣି ବୋଲି ମୁଁ କେମିତି ଜାଣିବି ?"

"ପୂରା ଗୋଟିଏ ଡିଭିଜନ ସୈନ୍ୟ ଆକ୍ରମଣ କରିବେ । ଆକ୍ରମଣ ସୁଗମ କରିବା ପାଇଁ ବିମାନରୁ ବୋମା ବର୍ଷଣ କରାଯିବ । ବୋମା ଶବ୍ଦ ତୁମେ ନିଶ୍ଚୟ ଶୁଣି ପାରିବ ।"

"ତେବେ ବୋମା ଆବାଜ ଶୁଣିଲେ ଆକ୍ରମଣ ହେଲାଣି ବୋଲି ମୁଁ ଧରିନେବି ?"

ଗୋଲ୍‌ଜ ମୁଣ୍ଡ ହଲାଇ କହିଲେ "ସବୁବେଳେ ଏପରି ବିଚାର କରିବା ଠିକ୍ ନୁହେଁ, କିନ୍ତୁ ଏ କ୍ଷେତ୍ରରେ ତୁମେ ସେପରି ଧରି ନେଇପାର ଯେହେତୁ ମୁଁ ଆକ୍ରମଣ କରିବି ।"

ରବର୍ଟ ଜର୍ଡାନ୍ କହିଲେ "ବର୍ତ୍ତମାନ ବୁଝିଲି କିନ୍ତୁ ମୋତେ ଏହା ଭଲ ଲାଗୁନାହିଁ ।"

"ମୁଁ ମଧ୍ୟ ଏପରି କାମ ପସନ୍ଦ କରେ ନାହିଁ । ତୁମେ ଯଦି ଏକାମ କରିବାକୁ ନାରାଜ ତେବେ ବର୍ତ୍ତମାନ କହିଦିଅ । ଯଦି କରିପାରିବ ନାହିଁ ବୋଲି ଭାବୁଛ ତାହା ମଧ୍ୟ କୁହ ।

ରବର୍ଟ କର୍ଡ୍ନ କହିଲେ 'ନା—ମୁଁ ଏହା ଠିକ୍‌ମତେ ସମାଧାନ କରିବି ।'

ଗୋଲ୍‌ଜ୍ କହିଲେ "ମୋର ଏତିକି ଜାଣିବାକୁ ଥିଲା । କିନ୍ତୁ ପୋଲ ଉପରେ ଯେପରି କିଛି ଆସି ନ ପାରେ ସେଥିରେ ହୁଁ ଚୁଁ ଯେପରି ନ ଘଟେ ।"

'ବୁଝିଲି ।'

ଗୋଲ୍‌ଜ୍ କହିବାକୁ ଲାଗିଲେ 'ଏପରି କାମ ଏପରି ଭାବରେ କରିବ ବୋଲି ମୁଁ କାହାକୁ କହିବା ପସନ୍ଦ କରେ ନା । ତୁମକୁ ମଧ୍ୟ ମୁଁ ସେପରି କରିବାକୁ ଆଦେଶ ଦେବିନାହିଁ । ମୁଁ ଯଦି କୌଣସି ସର୍ତ୍ତ ଦିଏ ତେବେ ବାଧ୍ୟହୋଇ ଅନେକ କଥା କରିବ ଏହା ମୁଁ ବୁଝୁଛି । ଏଇଥିପାଇଁ ମୁଁ ତୁମକୁ ସବୁକଥା ଖୋଲି କହୁଅଛି । ସେଥିରୁ ତୁମେ ସବୁ ବୁଝିବ ଏବଂ ସବୁ ସମ୍ଭାବ୍ୟ ଅସୁବିଧା ଓ ଗୁରୁତ୍ୱ ହୃଦୟଙ୍ଗମ କରିପାରିବ ।'

"ଯଦି ସେ ପୋଲଟା ଉଡ଼ାଇ ଦିଆଯାଏ ତେବେ ତୁମେ କିପରି ଲାଗ୍ରାଞ୍ଜା ଆଡ଼କୁ ଅଗ୍ରସର ହେବ ?"

'ଗିରବର୍ଡ୍‌କୁ କବ୍ଜା କରିସାରିଲା ପରେ ପୋଲଟାକୁ ମରାମତି କରିବାର ସବୁ ମାଲମସଲା ନେଇ ଆମ୍ଭେମାନେ ଯିବୁ । ଏହି ଅଭିଯାନ ଯେମିତି ଜଟିଳ ସେମିତି ସୁନ୍ଦର । ଏହାହିଁ ତ ଶରନ୍ତନ ସ୍ଥିତ । ଏହି ଯୋଜନା ମାଦ୍ରିଦ୍‌ଠାରେ ପ୍ରସ୍ତୁତ । ଏଟି ଭିନସେଣ୍ଟ୍ ରୋଜ୍‌ଙ୍କର ପରିକଳ୍ପନା । ସେ ବଡ଼ବଡ଼ ଯୋଜନାର ବିଫଳ ଅଧ୍ୟାପକ । ମୁଁ ଆକ୍ରମଣ କରିବି । ଯେମିତି ଅଳ୍ପ ସୈନ୍ୟନେଇ ସବୁଦିନେ କରିଥାଏ ସେମିତି ଅଳ୍ପ ସୈନ୍ୟ ନେବି । ଏହା ସତ୍ତ୍ୱେ ବି ଏହି ଆକ୍ରମଣ ସଫଳ ହେବାର ସମ୍ଭାବନା ବହୁତ ବେଶୀ । ଏଥି ନିମିତ୍ତ ମୁଁ ଅଧିକ ସୁଖୀ । ପୋଲଟା ଧ୍ୱଂସ ହୋଇଗଲେ ଏହା ସଫଳ ହୋଇ ପାରିବ । ଆମ୍ଭେମାନେ ସେଗୋଭିଆ ଦଖଲ କରିପାରୁ । କେମିତି କରିବା ତାହା ମୁଁ ତୁମକୁ ବୁଝାଇ ଦେଉଅଛି । ହେଇ ଦେଖ, ଗିରବର୍ଡ୍ ଚୂଡ଼ାକୁ ଆମ୍ଭେମାନେ ଆକ୍ରମଣ କରିବା ନାହିଁ, ଖାଲି ତାହା ହାତରେ ରଖିବା, ଆମର ଅସଲ ଆକ୍ରମଣ ସେଠାରୁ ଦୂରରେ । ଏଇ ଦେଖ ।'

ରବର୍ଟ କର୍ଡ୍ନ କହିଲେ "ମୋର ଆଉ ଦେଖିବା ଠିକ୍ ହେବନାହିଁ ।"

ଗୋଲ୍‌ଜ୍ କହିଲେ "ବେଶ୍, ଅନ୍ୟପାଖ ପାଇଁ ତୁମକୁ ଅଳ୍ପ ବୋଝରୁ ବହିବାକୁ ପଡ଼ିବ ।"

"ମୋର ନ ଜାଣିବା ବରଂ ଭଲ । ତା'ହେଲେ ଯାହା ଘଟୁନା କାହିଁକି ମୋର କହିବାକୁ କିଛି ନଥିବ ।"

ନିଜ କପାଳ ଆଉଁସୁ ଆଉଁସୁ ଗୋଲ୍‌ଜ୍ କହିଲେ "ହଁ ନ ଜାଣିବା ବରଂ ଭଲ । କହିବାର ମୁଁ ଭାବୁଛି ମୋର ମଧ୍ୟ କିଛି ନ ଜାଣିବା ଭଲ ହେବ । କିନ୍ତୁ ଗୋଟାଏ କଥା ଜାଣିବା ଏକାନ୍ତ ପ୍ରୟୋଜନ, ତା ହେଉଛି ଉକ୍ତ ପୋଲ କଥା ।"

'ହଁ ସେକଥା ମୁଁ ଜାଣେ ।'

ଗୋଲ୍‌ଜ କହିଲେ 'ମୁଁ ତାହା ବିଶ୍ୱାସ କରୁଅଛି । ମୁଁ ତୁମକୁ ବେଶୀ କିଛି କହିବି ନାହିଁ । ଚାଲ, ଟିକିଏ ପିଇବା । ଏତେ କଥାବାର୍ତ୍ତା ପରେ ତୃଷ୍ଣାର୍ତ୍ତ ହେବା ସ୍ୱାଭାବିକ ସାଥି ଜର୍ଡାନ୍ । ସ୍ପେନ୍ ଦେଶୀ ଭାଷାରେ ତୁମର ନାମଟା ବଡ଼ ମଜାର ନାମ ହେର୍‌ଡାଉନ୍ ।'

"ଅଚ୍ଛା ସ୍ପେନ୍ ଭାଷାରେ ତୁମ ନିଜ ନାମ କିପରି ଉଚ୍ଚାରିତ ହୁଏ ସେନାପତି ?"

"ହୋଟଜ୍" ଗୋଲଜ୍ ଗଳାଝାଡ଼ି ହସି ହସି କହିଲେ । ମୋତେ ସେମାନେ ଡାକନ୍ତି "ସାଥୀ ହୋଟେଲ ଖୋଟଜ୍ ।" ସ୍ପେନ ଭାଷାରେ ଗୋଲଜ୍ ଉଚ୍ଚାରଣ ଏପରି ହୁଏ ବୋଲି ଆଗରୁ ଜାଣିଥିଲେ ମୁଁ ଯୁଦ୍ଧରେ ଯୋଗଦେବା ପୂର୍ବରୁ ଭଲ ନାମଟିଏ ଧାରଣ କରିଥାନ୍ତି । ଯେତେବେଳେ ମୁଁ ଏକ ଡିଭିଜନର ସେନାପତି ଭାବରେ ଯେ କୌଣସି ନାମ ଗ୍ରହଣ କରିବାର ଅଧିକାରୀ, ସେତେବେଳେ ମୁଁ ହୋଟଜ୍ ନାମଟା ହିଁ ବାଛିନେଲି । ସେନାପତି ହୋଟ୍‌ଜ୍ । ବର୍ତ୍ତମାନ ବଦଳାଇବାର ସମୟ ନାହିଁ । ପକ୍ଷାବଲମ୍ବୀଙ୍କ କାମ ତୁମେ କିପରି ପସନ୍ଦ କରୁଛ ? ଶତ୍ରୁ ପଛପଟେ କାମ କରିବାପାଇଁ ଗରିଲା ସୈନ୍ୟଙ୍କର ଏହା ହିଁ ହେଉଛି ରୁଷୀୟ ଭାଷାର ଶବ୍ଦ, ଅର୍ଥାତ୍ 'ପାର୍ଟିଜାନ୍' ।

ରବର୍ଟ ଜର୍ଡାନ୍ କହିଲେ "ମୁଁ ଖୁବ୍ ପସନ୍ଦ କରୁଅଛି । ଖୋଲା ଜାଗାରେ ଏହା ଖୁବ୍ ସ୍ୱାସ୍ଥ୍ୟକର । ଗୋଲଜ୍ କହିଲେ "ମୁଁ ତୁମ ବୟସର ହୋଇଥିଲାବେଳେ ଏହା ଖୁବ୍ ପସନ୍ଦ କରୁଥିଲି । ସେମାନେ କହୁଥିଲେ ଯେ ତୁମେ ପୋଲ ଧ୍ୱଂସ କରିବାରେ ସିଦ୍ଧହସ୍ତ । ଖୁବ୍ ବୈଜ୍ଞାନିକ ଧରଣରେ କରିଥାଅ । ଅବଶ୍ୟ ଏହା ମୋର ଶୁଣାକଥା । ତୁମେ ସେପରି କରିବାର ମୁଁ ଆଖିରେ ଦେଖିନାହିଁ । ହୁଏତ ପ୍ରକୃତରେ କିଛି ଘଟେନାହିଁ । ତୁମେ କଅଣ ସତକୁ ସତ ପୋଲ ସବୁ ଧ୍ୱଂସ କରିଅଛ ?" ଏହାପରେ ମନ ଖୁସି କରିବାପାଇଁ ସେ କହିଲେ "ଏହା ପିଇନିଅ । ସେ ଏକ ଗିଲାସ ସ୍ପେନଦେଶୀ ମଦ ଢାଳିଦେଇ ପଚାରିଲେ "ପ୍ରକୃତରେ ପୋଲମାନ ଧ୍ୱଂସ କରିଛ ଜର୍ଡାନ୍ ?"

'କେବେ କେବେ କରିଛି ।'

। "ଏହି ପୋଲଟାରେ ଆଉ କେବେ କେବେ ରଖିବ ନାହିଁ । ଆଜି ଏ ସମ୍ବନ୍ଧରେ କଥା ନ କହିବା ଭଲ । ବର୍ତ୍ତମାନ ପୋଲ ବିଷୟରେ ତୁମେ ଯଥେଷ୍ଟ ଓ୍ୟାକୁବହାଲ ହେଲଣି । ଆମ୍ଭେମାନେ ବର୍ତ୍ତମାନ ଗୁରୁତ୍ୱପୂର୍ଣ୍ଣ ବିଷୟ ଚର୍ଚ୍ଚା କରିଅଛୁ ଏଣୁ ଟାଣୁଆ ଅଛା ମଧ କରିପାରୁଁ । ଅଣ୍ଟ୍ରୁ କ୍ରୁହଦେଖି ଶତ୍ରୁରେଖା ଆରପଟେ କଅଣ ବେଶୀ ଚୋକୀ ଅଛନ୍ତି ?"

'ନା—ଚୋକୀଙ୍କ ପାଇଁ ସମୟ କାହିଁ ?'

'ମୁଁ ଏକମତ ନୁହେଁ । କାମ ଯେତେ ଅନିୟମିତ, ଜୀବନ ଯେତେ ଅନିୟମିତ । ତୁମ କାମ ଅତି ଅନିୟମିତ । ତୁମର ବାଳ କଟାଇବା ବଡ଼ ଜରୁରୀ ।'

'ଦରକାର ପଡ଼ିଲେ ମୁଁ ବାଳ କଟାଇଥାଏ ।' ରବର୍ଟ ଜର୍ଡାନ୍ କହିଲେ । ଗୋଲ୍‌ଜ ପରି ମୁଣ୍ଡ ଲଣ୍ଡା କରିବାକୁ ସେ ଘୃଣା କରନ୍ତି । ସେ ଗମ୍ଭୀର ଭାବରେ କହିଲେ "ଚୋକୀଙ୍କ ଛଡ଼ା ମୋର ବହୁତ କଥା ଭାବିବାକୁ ଅଛି । ଆଚ୍ଛା, ମୁଁ କିଭଳି ପୋଷାକ ପିନ୍ଧିବା କଥା ?"

ଗୋଲଜ୍ କହିଲେ "କିଛି ପୋଷାକ ଦରକାର ନାହିଁ । ତୁମ ବାଳକଟା ଠିକ୍ ଅଛି । ମୁଁ ତୁମକୁ ଚିଡ଼ାଉଥିଲି । ତୁମେ ମୋଠାରୁ ବହୁତ ଭିନ୍ନ ପ୍ରକୃତିର ।" ଗୋଲ୍‌ଜ ପୁଣି ମଦଗିଲାସ ପୂର୍ଣ୍ଣ କଲେ । "ତୁମେ କେବଳ ମାଣ ବାଳିକାଙ୍କ କଥା ଭାବନାହିଁ । ମୁଁ ମଧ କେବେ ଭାବି ନଥାଏ । କାହିଁକି ଭାବିବି ? ମୁଁ ସେନାପତି । ମୋତେ ସେପରି ଭାବିବାପାଇଁ ପ୍ରବର୍ତ୍ତାଅ ନାହିଁ ।"

ତାଙ୍କ ଦଳର ଅନ୍ୟଜଣେ କେନ୍ଦ୍ର ଚଉକୀରେ ବସି ନକ୍ସା ମେଜରେ ମାନଚିତ୍ର ମେଲାଇ କଅଣ କରୁଥିଲା । ସେ ନିଜର ଅସନ୍ତୋଷ ପ୍ରକାଶ କଲା ମାତ୍ର ରବର୍ଟ ଜର୍ଡାନ୍‌କୁ ସେ ଭାଷା ଜଣା ନଥିଲା ।

ଗୋଲ୍‌ଜ୍ ଇଂରେଜୀରେ କହିଲେ "ଚୁପ୍ କର । ଥଟ୍ଟା କରିବା ନ କରିବା ମୋ ଇଚ୍ଛା । ବିଷୟଟା ବଡ଼ ଗୁରୁତ୍ୱପୂର୍ଣ୍ଣ । ବର୍ତ୍ତମାନ ଏତକ ପିଇଦେଇ ଚାଲିଯାଅ । ବୁଝିଲ ?

ରବର୍ଟ ଜର୍ଡାନ ପୁଣି ଥରେ କହିଲେ, "ହଁ, ମୁଁ ବୁଝିଲି ।"

ଦୁହେଁ କରମର୍ଦ୍ଦନ କଲେ । ରବର୍ଟ ସାମରିକ ଅଭିବାଦନ ଜଣାଇ ସରକାରୀ ମୋଟର ଗାଡ଼ିକୁ ଗଲେ । ଗାଡ଼ିରେ ବୁଢ଼ା ଲୋକଟା ଶୋଇ ରହିଥାଏ । ଗାଡ଼ି ଖଣ୍ଡିକ ସେହି ପାର୍ବତ୍ୟ ପଥ ଦେଇ ଗୁଆଡାରମା ଘାଟି ଅତିକ୍ରମି ନେଭାସେରାଡ଼ା

ରାସ୍ତା ଦେଇ 'ଆଲ୍‌ପାଇନ୍' କ୍ଲବ୍‌ର କୁଟୀରରେ ପହଞ୍ଚିଲା । ଏଠାରେ ଦୁହେଁ ୩ଘଣ୍ଟା ଶୋଇଲେ ।

ଏହିଟା ହିଁ ହେଉଛି ଗୋଲ୍‌ଜ୍ ସଙ୍ଗରେ ତାଙ୍କର ଶେଷ ଦେଖା । ତାଙ୍କର ଅଦ୍ଭୁତ ଶ୍ୱେତ ମୁଖ, ଶ୍ୟେନ ଚକ୍ଷୁ, ବୃହତ ନାସିକା, ସୂକ୍ଷ୍ମ ଅଧର ଏବଂ ଲମ୍ବା କୁଞ୍ଚିତଶ୍ମଶ୍ରୁ ପ୍ରଭୃତି କଥା ରବର୍ଟ ଭାବିଲେ । ଆଗାମୀ କାଲି ରାତିକୁ ସେମାନେ ଏମ୍‌କୋରଆଲ୍ ରାସ୍ତାରେ ପହଞ୍ଚିଯିବେ । ସେଠାରେ ଦଳଦଳ ପଦାତିକ ବାହିନୀ ଟ୍ରକ ଗାଡ଼ିରେ ହାତହତିଆର ସହିତ ଚଢ଼ୁଥିବେ । ଟ୍ୟାଙ୍କ୍ ବହିବା ଲମ୍ବା ଟ୍ରକ୍ ଉପରେ ଟ୍ୟାଙ୍କ୍‌ସବୁ ବୋଝେଇ ହେଉଥିବ । ମେସିନଗନ୍ ଦଳଟି ତାଙ୍କର ତୋପ କମାଣ ଓ ବନ୍ଧୁକ ସବୁ ମଧ୍ୟ ଟ୍ରକରେ ବୋଝାଇ କରୁଥିବେ । ଏପରି ଭାରି ଜିନିଷର ବୋଝାଇ ପାଇଁ କାଠର ଗଡ଼ାଣି ଗୃର ବ୍ୟବହାର କରିବା କଥା । ଏହାରି ଉପରେ ଟ୍ୟାଙ୍କ୍ ପ୍ରଭୃତି ଉପରକୁ ଉଠେ । ଏମିତି ଭାବରେ ଗୋଟାଏ ସମ୍ପୂର୍ଣ୍ଣ ସାମରିକ ଡିଭିଜନ ସବୁ ପ୍ରକାର ସାଜସରଞ୍ଜାମ, ଅସ୍ତ୍ରଶସ୍ତ୍ର, ଗୋଲା ବାରୁଦ, ଖାଦ୍ୟପେୟ, ପୋଷାକ ଆଦି ଲଦାଇ ରାତିରେ ଗିରିବର୍ତ୍ମ ଆକ୍ରମଣ କରିବାକୁ ଯାଆନ୍ତି । ସେ କିନ୍ତୁ ଏକଥା ଭାବୁ ନଥିଲେ କିମ୍ବା ଏହା ତାଙ୍କର କାମ ନଥିଲା । ଏ କାମ ଗୋଲ୍‌ଜ୍‌ଙ୍କର । ତାଙ୍କର କେବଳ ଗୋଟିଏ ମାତ୍ର କାମ, ତାହା ହେଉଛି ପରିଷ୍କାର ଭାବରେ ଚିନ୍ତା କରି ଯାହା ଯେତେବେଳେ ପହଞ୍ଚୁଥିବ ତାହା ବିନା ସଙ୍କୋଚରେ ଗ୍ରହଣ କରିବା । କୌଣସି ଦ୍ୱିଧା ସଙ୍କୋଚ ପ୍ରକାଶ କରିବା ଭୟ ପ୍ରକାଶ ସଙ୍ଗେ ସମାନ । ଏଥିରେ କାର୍ଯ୍ୟ ସମାଧାନ କଠିନ ହୋଇପଡ଼େ ।

ନଦୀ କୂଳରେ ବସି ସେ ସ୍ୱଚ୍ଛ ଜଳପ୍ରବାହକୁ ଦେଖୁଥିଲେ । ନଦୀର ଅପର ପାର୍ଶ୍ୱରେ ବହୁତ ବହଳିଆ ପାଣିଶାଗ ମାଡ଼ିଥାଏ । ସେ ପାଣିରେ ପଶି ଆରପାରିକୁ ଯାଇ ଦୁଇ ହାତରେ ମୁଠାଏ ପାଣିଶାଗ ମୂଳରୁ ଉପାଡ଼ି ଆଣିଲେ । ତାହାକୁ ଧୋଇ ପରିଷ୍କାର କରି ନିଜ ବୋଝକୁ ପାଖରେ ବସିପଡ଼ି କଞ୍ଚା ରାଡ଼ିରାଡ଼ି ଚୋବାଇବାକୁ ଲାଗିଲେ । ଏହା ଟିକେ ରାଗୁଆ ରାଗୁଆ ଲାଗିଲା । ଶେଷକୁ ନିଜ ପିସ୍ତଲ୍‌ଟି ପିଠି ଉପରକୁ ଉଠାଇ ଦୁଇଖଣ୍ଡ ପଥର ଢେମାରେ ଦୁଇ ହାତ ରଖି ନଦୀରୁ ପାଣି ପିଇଲେ । ପାଣିରେ ପାଟି କୋଲ୍ ମାରି ଯାଉଥାଏ ।

ହାତରେ ଭର ଦେଇ ସେ ମୁଣ୍ଡ ବୁଲାଇ ଦେଖିଲେ ବୁଢ଼ାଟି ପୋଲ ଉପରେ ଆସୁଅଛି । ତା ସଙ୍ଗରେ ଅଛି ଆଉ ଜଣେ ଲୋକ ଯେ କି ଗମ୍ଭୀର କଳାରଙ୍ଗର ଚପା କୋଟ୍ ଏବଂ ମାଟିଆ ପାଇଜାମା ପିନ୍ଧିଅଛି । ଏପରି ପରିଧେୟ ଏ ଅଞ୍ଚଳର ସାଧାରଣ ସରକାରୀ ପୋଷାକ କହିଲେ ଚଳେ । ଗୋଡ଼ରେ ତାହାର ମଧ୍ୟ ଦଉଡ଼ି ତଳାର

ଜୋତା ଏବଂ ପଛପଟେ ଝୁଲାଇ ରଖିଛୁ ଲମ୍ବା ବନ୍ଧୁକ । ମୁଣ୍ଡ ଫୁଙ୍ଗୁଲା । ଦୁହେଁଯାକ ଢେଲାପରି ଟାଉ ଟାଉ ପାହାଡ଼ରୁ ଓହ୍ଲାଇ ଆସୁଥିଲେ ।

ସେ ଦୁହେଁ ରବର୍ଟ୍ ଜର୍ଡ଼ାନଙ୍କ ପାଖକୁ ଆସନ୍ତେ ସେ ଠିଆ ହୋଇଗଲେ । ତତ୍ପରେ ବନ୍ଧୁକଧାରୀ ଜଣକୁ ହସି ହସି ନମସ୍କାର ଜଣାଇଲେ ।

ଲୋକଟା କୁଣ୍ଠିତ ଭାବରେ ପ୍ରତି-ନମସ୍କାର କଲା । ଜର୍ଡ଼ାନ୍ ଲୋକଟାର ପୁରୁଣାଳିଆ ହାତଆ ମୁହଁକୁ ଅନାଇ ଦେଖିଲେ ଯେ ଲୋକଟାର ମୁଣ୍ଡ ଓ ମୁହଁ ଗୋଲ । ଗ୍ରୀବା ଅତି ସାନ । ତାହାର ଆଖି ସାନ ସାନ ଏବଂ ବହୁତ ଫାଙ୍କ । କାନ ଦୁଇଟି କ୍ଷୁଦ୍ର ଓ ମୁଣ୍ଡ ଦେହକୁ ଅଧିକ ଲାଗି କରି ରହିଛି । ହାତ ଗୋଡ଼ ଲମ୍ବା ଲମ୍ବା ଏବଂ ଲୋକଟା ମଧ୍ୟ ପ୍ରାୟ ୬ଫୁଟ ଉଚ୍ଚ । ନାକଟା ଖଣ୍ଡିଆ ଏବଂ ମୁହଁ ଗୋଟାଏ ପାଖରେ କଟା । କଟା ଦାଗଟା ଦାଢ଼ି ଭିତରେ ଦେଖାଯାଉଛି ।

ବୁଢ଼ା ଜଣକ ମୁଣ୍ଡ ହଲାଇ ମୁରୁକି ହସାଦେଲା । କହିଲା ଏହି ଲୋକଟା ଏଠାକାର ବଡ଼ କର୍ତ୍ତା । ତା'ପରେ ବନ୍ଧୁକଧାରୀ ଲୋକକୁ ଅନାଇ ରହସ୍ୟ ଓ ପ୍ରଶଂସା ମିଶା ସ୍ୱରରେ କହିଲା "ଇଏ ଭାରି ବଳୁଆ ମଣିଷ ।" ଏହା କହିଲାବେଳେ ସେ ନିଜର ହାତ ପେଶୀକୁ ଫୁଲାଇବା ପାଇଁ ବାହୁ ପ୍ରସାରଣ ଓ କୁଞ୍ଚନ କରୁଥିଲା ।

ରବର୍ଟ ଜର୍ଡ଼ାନ୍ କହିଲେ 'ମୁଁ ତାହା ଦେଖୁଛି ।' ସେ ପୁଣି ଥରେ ହସି ଦେଲେ । ମାତ୍ର ଲୋକଟାକୁ ସେ ପସନ୍ଦ କରୁ ନଥିବାରୁ ମନ ଭିତରେ ବିରକ୍ତ ହେଉଥିଲେ ।

ବନ୍ଧୁକଧାରୀ ଲୋକ ପଚାରିଲା "ତୁମର ପରିଚୟ ପତ୍ର କାହିଁ ? ରବର୍ଟ ଜର୍ଡ଼ାନ୍ ତାଙ୍କ ବାଁ ଗୁପ୍ତ ପକେଟ୍ ଟାଙ୍କୁଣୀର ପିନକଣ୍ଟା ଫିଟାଇ ଖଣ୍ଡିଏ ଚଉଡ଼ା କାଗଜ କାଢ଼ି ସେ ଲୋକ ହାତକୁ ଦେଲେ । ଲୋକଟି ତାହା ଫିଟାଇ ସନ୍ଦିଗ୍ଧ ଭାବରେ ଓଲଟାଇ ପାଲଟାଇ ଦେଖିଲା । ଜର୍ଡ଼ାନ୍ ବୁଝିଲେ ଲୋକଟା ନିରକ୍ଷର । ତେଣୁ ତାଙ୍କୁ କାଗଜର ମୋହର ଦେଖିବାକୁ କହିଲେ ।

'ଏଟା କାହାର ମୋହର ?'

'ତୁମେ କଣ ଏହା କେବେ ଦେଖିନାହଁ ?'

'ନା'

ରବର୍ଟ୍ ଜର୍ଡ଼ାନ୍ କହିଲେ "ଏଥିରେ ଦୁଇଟି ମୋହର ଅଛି । ଗୋଟିଏ ହେଉଛି ସାମରିକ ଗୁପ୍ତ ସମ୍ବାଦ ପ୍ରତିଷ୍ଠାନର ଏବଂ ଅନ୍ୟଟି ହେଉଛି ସାମରିକ ଅଫିସରଙ୍କର ।"

ଲୋକଟା କହିଲା "ହଁ; ସେ ମୋହର ମୁଁ ଆଗରୁ ଦେଖିଅଛୁ । କିନ୍ତୁ ଏଠାରେ ମୁଁ ଏକମାତ୍ର କର୍ତ୍ତା । ତୁମର ବୋଝରେ କଅଣ ଅଛି ?"

ବୁଢ଼ା ସଗର୍ବରେ କହିଲା "ଡାଇନାମାଇଟ୍ । ଗତ ରାତିରେ ଆମ୍ଭେମାନେ ଅନ୍ଧାରରେ ଲାଇନ ଟପି ଆସିଲୁ ଏବଂ ଏହି ଡାଇନାମାଇଟ୍ ପାହାଡ଼ ଉପର ଦେଇ ବହି ଆଣିଛୁ ।"

ବନ୍ଧୁକଧାରୀ ଜଣକ କହିଲେ 'ମୁଁ ଡାଇନାମାଇଟ୍ ବ୍ୟବହାର କରିପାରେ ।' ଏହା କହି ରବର୍ଟ ଜର୍ଡାନ୍‌କୁ କାଗଜ ଫେରାଇ ଦେଇ ନିରୀକ୍ଷଣ କରି ପୁଣି କହିଲେ "ହଁ, ଡାଇନାମାଇଟ୍ ମୋର ଆବଶ୍ୟକ । ତୁମେ କେତେ ଆଣିଛ ?"

ରବର୍ଟ ଜର୍ଡାନ୍ କହିଲେ "ମୁଁ ତୁମ ପାଇଁ କିଛି ଆଣି ନାହିଁ । ଏହି ଡାଇନାମାଇଟ୍ ଅନ୍ୟ କାମ ପାଇଁ ଆସିଛି । ତୁମର ନାମ କଅଣ ?"

'ସେଥିରୁ ତୁମର କି ଦରକାର ?'

ବୁଢ଼ାଲୋକଟି କହିଲା "ସେ ହେଉଛନ୍ତି ପାବ୍‌ଲୋ ।" ବନ୍ଧୁକଧାରୀ ସେ ଦୁହିଁଙ୍କୁ ବିରକ୍ତିରେ ଚାହିଁଲେ ।

ରବର୍ଟ ଜର୍ଡାନ୍ କହିଲେ 'ସତେ ? ମୁଁ ତୁମର ବହୁ ସୁଖ୍ୟାତି ଶୁଣିଅଛି ।'

ପାବ୍‌ଲୋ ପଚାରିଲେ "ମୋ ସମ୍ବନ୍ଧରେ କଅଣ ଶୁଣିଅଛ ?"

'ମୁଁ ଶୁଣିଅଛି ଯେ ତୁମ୍ଭେ ଜଣେ ଚମତ୍କାର ଗରିଲା ନେତା, ତୁମେ ଗଣତନ୍ତ୍ର ପ୍ରତି ଅନୁରକ୍ତ । ନିଜର କାର୍ଯ୍ୟ ଦ୍ୱାରା ତୁମ୍ଭେ ଅନୁରକ୍ତି ପ୍ରମାଣ କରିଅଛ, ତୁମ୍ଭେ ଯେପରି ଗମ୍ଭୀର ସେହିପରି ସାହାସୀ । ମୁଁ ତୁମ୍ଭ ପାଇଁ ସାମରିକ କର୍ଯ୍ୟାଳୟରୁ ଶୁଭେଚ୍ଛା ଆଣିଅଛି ।'

ପାବ୍‌ଲୋ ପଚାରିଲେ 'ଏସବୁ କେଉଁଠୁ ଶୁଣିଲ ?' ରବର୍ଟ ଜର୍ଡାନ୍ ବୁଝିପାରିଲେ ଯେ ଆତ୍ମ-ପ୍ରଶଂସାରେ ଲୋକଟା ଆଗ୍ରହୀ ନୁହେ । କହିଲେ 'ଏକଥା ଲାଇନ୍‌ର ଅନ୍ୟ ପାଖରୁ ବୁଇଟ୍ରାଗୋଠାରୁ ଏସ୍‌କୋରିଆଲ୍ ଯାଏ ସବୁ ଜାଗାରେ ଶୁଣିଅଛି ।'

ପାବ୍‌ଲୋ କହିଲେ "ବୁଇଟ୍ରାଗୋ କିମ୍ବା ଏସ୍‌କୋରିଆଲ୍‌ରେ ମୁଁ କାହାକୁ ଚିହ୍ନେ ନାହିଁ ।"

'ଲାଇନ୍ ଅନ୍ୟ ପାଖରେ ବର୍ତ୍ତମାନ ବାହ୍ମୁ ନୂଆ ଲୋକ ଅଛନ୍ତି । ତୁମେ କେଉଁ ଗ୍ରାମର ଲୋକ ? ଗୁଡ୍, ଏହି ଡାଇନାମାଇଟ୍ ନେଇ କଅଣ କରିବ ?'

"ପୋଲ୍ ଉଡ଼ାଇ ଦେବି ।"

'କେଉଁ ପୋଲ ?'

'ସେଥିରେ ତୁମର କି ଛାମ ।'

"ପୋଲ୍‌ଟା ଯଦି ଏହି ଅଞ୍ଚଳରେ ଥାଏ, ତେବେ ନିଶ୍ଚୟ ମୋ କାମ । ନିଜ ରହିଲା ଜାଗାର ନିକଟରେ କୌଣସି ପୋଲ ତୁମେ ଧ୍ୱଂସ କରିପାରିବ ନାହିଁ । ତୁମକୁ ଏକ ଜାଗାରେ ରହିବାକୁ ହେଲେ ଅନ୍ୟ ଜାଗାରେ କାମ କରିବାକୁ ପଡ଼ିବ । ମୋ କର୍ତ୍ତବ୍ୟ ମୁଁ ଜାଣେ । ବର୍ତ୍ତମାନ ଯିଏ ବଞ୍ଚି ରହିବ ସେ ବର୍ଷକ ପରେ ନିଜ କର୍ତ୍ତବ୍ୟ ଜାଣିବ ।"

ରବର୍ଟ୍ ଜର୍ଡାନ କହିଲେ "ସେ କଥା ମୁଁ ବୁଝିବି । ଆମେ ଦୁହେଁ ଏକାଠି ସେ କଥା ଆଲୋଚନା କରିବା । ଏହି ବୋଝ ବାବତରେ ତୁମେ ମୋତେ ସାହାଯ୍ୟ କରିବାକୁ ଇଚ୍ଛୁକ ନା ?"

ପାବ୍‌ଲୋ ମୁଣ୍ଡ ହଲାଇ ଅସମ୍ମତି ଜଣାଇଲେ ।

ବୁଢ଼ା ଲୋକଟି ହଠାତ୍ ପାବ୍‌ଲୋ ଆଡ଼କୁ ବୁଲିପଡ଼ି ଅତି ଦ୍ରୁତ ଏବଂ ରାଗରେ କଅଣ ଗୁଡ଼ାଏ କହିଲା । ତାହାର ଭାଷା ଜର୍ଡାନ୍ ବୁଝିପାରିଲେ ନାହିଁ । ସେ ଯେପରି ଗଡ଼ଗଡ଼ ହୋଇ କୌଣସି ଅବୋଧ କାବ୍ୟ ପଢ଼ୁଛି ବୋଧହେଲା । ଆନ୍‌ସେଲ୍‌ମୋ ପ୍ରାଚୀନ କାଷ୍ଟିଲିଆନ୍ ଭାଷାରେ କଥା କହୁଥିଲା । ତାହା କଥାର ମର୍ମ ହେଲା "ତୁମେ ଗୋଟାଏ ପଶୁ । ହଁ ପଶୁଠାରୁ ମଧ ହୀନ । ତୁମ ମଗଜରେ ଗୋବର ଅଛି । ଆମେ ଏକ ଚୂଡ଼ାନ୍ତ ଗୁରୁତ୍ୱପୂର୍ଣ୍ଣ ବିଷୟପାଇଁ ଆସିଅଛୁ ଅଥଚ ତୁମର ବାସସ୍ଥାନର ଶାନ୍ତିଭଙ୍ଗ ହେବ ବୋଲି ତୁମେ ମାନବର ସ୍ୱାର୍ଥ ବିରୁଦ୍ଧରେ ତୁମର ସେହି ତୁଚ୍ଛା ପାଉଁଶ କ୍ଷୁଦ୍ର ସ୍ୱାର୍ଥକୁ ବଡ଼କରି ଦେଖୁଅଛ । ଜନସାଧାରଣଙ୍କ ସ୍ୱାର୍ଥ ଅପେକ୍ଷା ତୁମ ନିଜ ସ୍ୱାର୍ଥକୁ ପ୍ରାଧାନ୍ୟ ଦେଉଅଛ । ଏମିତି ବଡ଼ ବଡ଼ କଥା କହୁଛ, ସତେ ଯେମିତି ସବୁ ତୁମ ବାପର କିଣା ଖରିଦା । ଆମେ କିଏ ପଛେ ବୁଝିବି । ହଉ ଚାଲ ବୋଝଗୁ ଉଠାଅ ।"

ପାବ୍‌ଲୋ ତଳକୁ ମୁହଁପୋତି କହିଲେ "ପ୍ରତ୍ୟେକର ନିଜ ନିଜ କାମ ବିଚାର ମତେ କରିବା କଥା, ଯେଉଁଥିରେ କି କାମଟି ନିର୍ବିଘ୍ନରେ ହୋଇପାରିବ । ମୁଁ ଏଠାରେ ରହୁଅଛି କିନ୍ତୁ ମୋ କାର୍ଯ୍ୟକ୍ଷେତ୍ର ସେଗୋଭିଆ ସେପଟେ । ତୁମେ ଯଦି ଏଠାରେ

ଗଣ୍ଡଗୋଳ ହୁଏ ତେବେ ଆମର ଏହି ପାର୍ବତ୍ୟବାସ ଧରା ପଡ଼ିଯିବ । କିନ୍ତୁ ନିକଟ ଚୁପ୍‌ଚାପ୍ ଥିବାରୁ ଆମେ ଏଠାରେ ରହିପାରୁଛୁ । ଏହାହିଁ ଶିଆଳ ମତ ।"

ଆନ୍‌ସେଲ୍‌ମୋ ତିକ୍ତ ଭାବରେ କହିଲା "ହଁ ଏହା ଶିଆଳ ମତ; କିନ୍ତୁ ଆମକୁ ବର୍ତ୍ତମାନ ବାଘ ମତ ଲୋଡ଼ା ।"

ପାବ୍‌ଲୋ କହିଲେ "ମୁଁ ତୋ ଠାରୁ ବଡ଼ ବାଘ । ରବର୍ଟ ବୁଝି ପାରିଲେ ଏଥର ସେ ବୋଜଗୁ ଉଠାଇ ନେବେ ।"

ଆନ୍‌ସେଲ୍‌ମୋ ଠୋ ଠୋ କରି ହସି କହିଲା "ତୁମେ ମୋଠାରୁ ବଡ଼ ବାଘ । ମୋତେ ୬୮ ବର୍ଷ ବୟସ ହେଲା ।" ସେ ଥୁ କରି ମାଟିରେ ଛେପ ଲଣ୍ଡାଏ ପକାଇଲା ।

ମତପ୍ରକାଶ କରିବାର ବର୍ତ୍ତମାନ ଉପଯୁକ୍ତ ବେଳ ଜାଣିପାରି ବିଷୟଟାକୁ ସହଜ କରିବାପାଇଁ ରବର୍ଟ ଜର୍ଡାନ ପଚାରିଲେ "ଏତେ ବେଶୀ ବର୍ଷ ହେଲାଣି ?"

'ଜୁଲାଇକୁ ୬୮ ପୂରିଯିବ ।'

'ଜୁଲାଇ ମାସ ଆମ ଭାଗ୍ୟରେ ଆସିବ କି ନାହିଁ' ପାବ୍‌ଲୋ କହିଲେ । ଏହାପରେ ରବର୍ଟଙ୍କୁ ଲକ୍ଷ୍ୟକରି କହିଲେ 'ମୁଁ ବୋଜଗୁଟିଏ ଉଠାଇ ନେଉଅଛି । ଅପରଟିକୁ ବୁଢ଼ାକୁ ଦିଅ । ଏଥର ରାଗରେ କଥା ନ କହି ଖେଦରେ କହିଲେ "ଲୋକ ଜଣକ ବୁଢ଼ାହେଲେ ମଧ୍ୟ ଭାରି ବଳୁଆ ।"

ରବର୍ଟ ଜର୍ଡାନ କହିଲେ "ନାହିଁ, ତୁମେ ତାହିଁକି ବହିବ, ମୁଁ ନିଜେ ନେଇଯିବି ।"

ବୁଢ଼ା କହିଲା "ନା—ସେ ବଳୁଆ ଲୋକକୁ ବହିବାକୁ ଦିଅ ।"

ପାବ୍‌ଲୋ ତାଙ୍କୁ କହିଲେ "ନା—ମୁଁ ନେଉଅଛି ।" ତାଙ୍କର ରାଗରେ ବିଷାଦ ଭାବ ଏତେ ବେଶୀ ମିଶିଥିଲା ଯେ ରବର୍ଟ୍ ଜର୍ଡାନ୍ ସେଥିରେ ଅସ୍ୱସ୍ତି ବୋଧ କଲେ । ବିଷାଦର କାରଣ ସେ ଜାଣନ୍ତି ବୋଲି ବିବ୍ରତ ହୋଇ ଉଠିଲେ ।

ରବର୍ଟ୍ କହିଲେ "ହଉତେବେ, ବନ୍ଧୁକଟା ମୋତେ ଦିଅ ।" ପାବ୍‌ଲୋ ବନ୍ଧୁକ ଖଣ୍ଡି ଦିଅନ୍ତେ ତାକୁ ପିଠିରେ ଝୁଲାଇ ଦେଲେ । ଅନ୍ୟ ଦୁଇଜଣ ବୋଝ ବହି ପାହାଡ଼ ଚଢ଼ିଲେ । ସେ ତାଙ୍କ ପଛେ ପଛେ ଗଲେ । ଅକର୍ମଣୀଳା ପଥରରେ ଗୋଡ଼ ଚପି ଚପି ଅତି ସନ୍ତର୍ପଣରେ ସେମାନେ ପାହାଡ଼ରେ ଯେଉଁଠାରେ ଖଣ୍ଡେ ଖୋଲା ଜାଗାଥିଲା ସେଠାକୁ ଆଗେଇଲେ ।

ସେମାନେ ସେହି ଖୋଲା ଜାଗାର ସୀମାରେ ପହଞ୍ଚିଲେ । ବୋଝ ବଦଳରେ ସାମାନ୍ୟ ବନ୍ଧକ୍ରିଷ୍ଟା ପିଠିରେ ଝୁଲାଇ ରବର୍ଟ୍ ଜର୍ଡାନ୍ ସ୍ୱାଚ୍ଛନ୍ଦ୍ୟ ଅନୁଭବ କଲେ । ସେ ଦେଖିଲେ ଘାସ ଅନେକ ଜାଗାରେ ଚଷ୍ଟା ହୋଇଅଛି ଏବଂ ଠାଆକ୍ରାଠାଆ ନଶାଣି ଖୁଣ୍ଟି ପୋତା ହୋଇଅଛି । ସେ ଘାସ ଉପର ଦେଇ ଘୋଡ଼ାଙ୍କୁ ପାଣି ପିଆଇବା ପାଇଁ ନେଇଥିବାର ଏବଂ କେତେ ଜାଗା ଘୋଡ଼ା ଲଣ୍ଡି ପଡ଼ିଥିବାର ଦେଖିଲେ । ଘୋଡ଼ାଙ୍କୁ ରାତିରେ ଚରିବା ପାଇଁ ଏଠାରେ ବାନ୍ଧି ଦିଆଯାଏ । ଦିନ ବେଳେ ମଧ୍ୟ ବାହାରୁ କେହି ଜାଣିପାରିବେ ନାହିଁ । ପାବ୍ଲୋର ଘୋଡ଼ା ସଂଖ୍ୟା କେତେ ହେବ ବୋଲି ସେ ଅନୁମାନ କରିବାକୁ ଲାଗିଲେ ।

ସଠିକ ଧାରଣା ନ ଥିଲେ ମଧ୍ୟ ସେ ବର୍ତ୍ତମାନ ପାବ୍ଲୋର ପାଇଜାମା ଖଣ୍ଡି କରେ ଆଣ୍ଠୁ ଓ ଜଙ୍ଘ ପାଖରେ ସାବୁନ ଦାଗ ଲକ୍ଷ୍ୟ କଲେ । ସେ ଭାବିଲେ ପାବ୍ଲୋଙ୍କର ଘୋଡ଼ାଚଢ଼ା ବୁଟ୍ ଅଛି କି ଖାଲି ଗୋଡ଼ରେ ସେ ଘୋଡ଼ା ଚଢ଼ନ୍ତି । ନିଶ୍ଚୟ ତାଙ୍କର ପୋଷାକ ସାଜସଜା ଠିକ୍‌ମତେ ଅଛି କିନ୍ତୁ ତାଙ୍କର ସେହି ବିଷାଦପୂର୍ଣ୍ଣ ଗୃହାଣୀ ଭଲ ନୁହେ । ଏପରି ବିଷାଦ-ଗୃହାଣୀ ଦଳ ଛାଡ଼ିବା କିମ୍ବା ବିଶ୍ୱାସଘାତକତା କରିବାର ଲକ୍ଷଣ ।

ଖଣ୍ଡେଦୂର ଆଗକୁ ବଣ ଭିତରେ ଘୋଡ଼ାମାନଙ୍କ ହ୍ରେଷାଧ୍ୱନି ଶୁଣାଗଲା । ଦେବଦାରୁ ଗଛମାନଙ୍କରେ ଦଉଡ଼ି ଛନ୍ଦି ଗୋଟାଏ ରକମ ଅସ୍ତାବଲ କରାଯାଇଥାଏ । ବଣ ଏତେ ନିବିଡ଼ ଯେ ସେଥିରେ ସୂର୍ଯ୍ୟ କିରଣ ପଡୁ ନଥିଲା । ଲୋକମାନଙ୍କୁ ଆସିବା ଦେଖି ଘୋଡ଼ାମାନେ ତାଙ୍କ ଆଡ଼କୁ ମୁହଁ କଲେ । ଦଉଡ଼ିଘେର ବାହାରେ ଘୋଡ଼ାଙ୍କର ଜିନ୍ ଆଦି ଏକାଠି ଗଦା ଏବଂ ଖଣ୍ଡେ ଟାର୍ପୁଲିନ ତାହା ଉପରେ ଘୋଡ଼ା ଯାଇଥାଏ ।

ନିକଟକୁ ଆସିଲାରୁ ବୋଝ ବହିଥିବା ଦୁଇଜଣ ଲୋକ ଅଟକିଗଲେ ଏବଂ ରବର୍ଟ ଜର୍ଡାନ୍ ଘୋଡ଼ାଙ୍କୁ ପ୍ରଶଂସା କରି କହିଲେ "ଏଗୁଡ଼ିକ ଚମତ୍କାର ଘୋଡ଼ା । ପାବ୍‌ଲୋ, ଦେଖୁଛି ତୁମ୍ଭର ଅଶ୍ୱାରୋହୀ ଫୌଜ ପ୍ରସ୍ତୁତ ଅଛି ।"

ସେହି ଦଉଡ଼ିଘେରା ଅସ୍ତାବଲ୍‌ରେ ମୋଟ ୫ଟି ଘୋଡ଼ା ଥିଲେ । ସେଥିରୁ ୩ଟି କସରା ରଙ୍ଗର, ଗୋଟିଏ ଆଁଟଲ ଓ ଗୋଟିଏ ଛଉକା । ଜର୍ଡାନ୍ ୫ଟି ଯାକକୁ ଏକାସି ଆଖି ବୁଲାଇ ପରେ ଗୋଟି ଗୋଟି ନିରୀକ୍ଷଣ କରିବାକୁ ଲାଗିଲେ । ସେମାନେ ଯେ ଖୁବ୍ ଜାତବାଲା ଘୋଡ଼ା ଏହା ପାବ୍‌ଲୋ ଓ ଆନ୍‌ସେଲ୍‌ମୋ ଜାଣନ୍ତି । ଘୋଡ଼ାଙ୍କ ପାଇଁ ଗର୍ବବୋଧ କରି ପାବ୍‌ଲୋଙ୍କର ବିଷାଦଭାବ କଟିଗଲା ଏବଂ ଆନ୍‌ସେଲ୍‌ମୋ ହଠାତ୍ ଗୋଟିଏ ଅଦ୍ଭୁତ ବସ୍ତୁ ଦେଖାଇ ପାରିଛି ବୋଲି ଉଦାର ହୋଇ ପଚାରିଲା "କେମିତି ଦେଖୁଛ ?"

ପାବ୍‌ଲୋ ଯେତେବେଳେ କହିଲା ଯେ ସବୁଡକ ସେ ଆଣିଅଛୁ ସେତେବେଳେ ତାହାର ସଗର୍ବ-ଭାବ ଦେଖି ରବର୍ଟ ଜର୍ଡାନ୍ ଖୁସି ହୋଇଗଲେ ।

ରବର୍ଟ ଜର୍ଡାନ୍ କସରା ଘୋଡ଼ାଙ୍କ ଭିତରୁ ଗୋଟିକୁ ଦେଖାଇ କହିଲେ "ଏଟି ଖୁବ୍ ବଡ଼ । ଏହା ମୁଣ୍ଡରେ ଧଳା ଗୃନ୍ଦ ଏବଂ ଆଗ ଗୋଡ଼ର ଡାହାଣଟି ମଧ୍ୟ ଧଳା । ଏଟି ଗୋଟିଏ ଘୋଡ଼ା ପରି ଘୋଡ଼ା ।"

ପ୍ରକୃତରେ ସେ ଘୋଡ଼ାଟି ଗୋଟିଏ ଛବି ପରି ସୁନ୍ଦର ।

ପାବ୍‌ଲୋ କହିଲେ "ସବୁତକ ବଢ଼ିଆ ଘୋଡ଼ା, ତୁମେ ଘୋଡ଼ା ଚଢ଼ି ପାର ?"

"ହଁ ।"

ପାବ୍‌ଲୋ କହିଲେ "ମନ୍ଦ ନୁହେ, ଗୋଟିଏ ଘୋଡ଼ାର କିଛି ଖୁଣ ଦେଖି ପାରୁଛ ?"

ରବର୍ଟ ଜର୍ଡାନ ବୁଝି ପାରିଲେ ଯେ ନିରକ୍ଷର ଲୋକଟି ବର୍ତ୍ତମାନ ତାହାଙ୍କୁ ପରୀକ୍ଷା କରୁଛି । ସବୁଯାକ ଘୋଡ଼ା ମୁଣ୍ଡ ଉଠାଇ ଏମାନଙ୍କୁ ଗୃହିଁଥିଲେ । ରବର୍ଟ ଜର୍ଡାନ ଦଉଡ଼ି ଫାଙ୍କରେ ଭିତରକୁ ଗଳିଯାଇ ଛଡ଼କା ଘୋଡ଼ାଟିର ପିଠି ଆପୁଡ଼େଇଲେ । ସେ ଦଉଡ଼ି ବାଡ଼କୁ ଆଉଜି ଘେର ଭିତରେ ଘୋଡ଼ାମାନେ ଚକର୍ କାଟିବା କେତେକ୍ଷଣ ଦେଖିଲେ । ତା'ପରେ ନଇଁପଡ଼ି ଘେର ଭିତରୁ ବାହାରି ଆସି କହିଲେ "ସେ ପାଟଳିଆ ଘୋଡ଼ାଟାର ବାଁ ପାଖର ପଛ ଗୋଡ଼ଟା ଅଳପ ଲେଙ୍ଗଡ଼ା । ତା' ଖୁରାଟା ଫାଟି ଯାଇଛି, ଶୀଘ୍ର ନାଲବନ୍ଧ କରିଦେଲେ ଆଉ ଅଧିକ ଖରାପ ହେବ ନାହିଁ । ତେବେ ପଥୁରିଆ ଜମିରେ ବେଶୀ ଯାତାୟତ କଲେ ସେ ଭାଙ୍ଗିପଡ଼ିବ ।"

ପାବ୍‌ଲୋ କହିଲେ "ମୁଁ ତାକୁ ଧରିଲାବେଳେ ତା ଗୋଡ଼ ସେହିପରି ଥିଲା ।"

"ତୁମର ସବୁଠାରୁ ଭଲ ଘୋଡ଼ା ହେଉଛି ସେହି ଗୃନ୍ଦମୁହାଁଟି । ତା ପିଠିହାଡ଼ ଉପରେ ଗୋଟାଏ ଫୁଲା । ଏହା ମୋତେ ଭଲ ଲାଗୁନାହିଁ ।"

ପାବ୍‌ଲୋ କହିଲେ "ସେଟା କିଛି ନୁହେ । ୩ଦିନ ପୂର୍ବେ ମାଡ଼ବାଜି ସେମିତି ହୋଇଅଛି । ଯଦି ବେଶୀ ଖରାପ ହେବାର ଆଥାନ୍ତା ତେବେ ହୋଇ ଯାଆନ୍ତାଣି ।"

ସେ ଟାର୍ପୁଲିନ୍ ଟାଙ୍କିଣି ଟାଣି ଘୋଡ଼ାଙ୍କର ଜିନ୍ ସବୁ ଦେଖାଇଲେ । ସେଥିରୁ ଦୁଇଟା ଅତି ମାମୁଲି ମାର୍କିନ ଜିନ୍ ପରି ସାଧାରଣ ଏବଂ ଗୋଟିଏ ଖୁବ୍ କାରୁକାର୍ଯ୍ୟ

ଖଚିତ ହାତ ସିଲେଇ ଚମଡ଼ା ପ୍ରସ୍ତୁତ ଏବଂ ଭାରି । ତାହାର ପାଉଁଦାନୀ ମଧ୍ୟ ଚାନ୍ଦିଖଚିତ ଯୁକ୍ତ । ଅନ୍ୟ ଦୁଇଟି କଳା ଚମଡ଼ାର ସାମରିକ ଜିନ୍ । ସାମରିକ୍ ଜିନ୍ ଦୁଇଟି ସେ ଦୁଇଜଣ ସିଭିଲ୍ ଗାର୍ଡ଼ଙ୍କୁ ମାରି ଆଣିଛନ୍ତି ବୋଲି ବୁଝାଇଦେଲେ ।

'ତେବେ ତ ଖୁବ୍ ବଡ଼ ଶିକାର ।'

'ହଁ ସେ ଦୁଇ ସିଭିଲ୍‌ଗାର୍ଡ଼ ସେଗୋଭିଆ ଓ ଭାଲ୍ଲାଡୋଲିଡ୍ ରାସ୍ତାରେ ଓହ୍ଲାଇ ଜଣେ ସୱାରୀଙ୍କର କାଗଜପତ୍ର ଯାଞ୍ଚ କରୁଥିଲେ । ଆମେ ସେତିକିବେଳେ ତାଙ୍କୁ ମାରିଦେଲୁ ବୋଲି ଘୋଡ଼ାଙ୍କର କିଛି ଜଖମ ହୋଇନାହିଁ ।'

ରବର୍ଟ ଜର୍ଡ଼ାନ୍ ପଚାରିଲେ "ତୁମେ କଅଣ ବହୁତ ସିଭିଲ୍‌ଗାର୍ଡ଼ ମାରିଛ ?"

ପାବଲୋ କହିଲେ "ମାରିଛି ତ ଅନେକ କିନ୍ତୁ କେବଳ ଏଇ ଦୁଇଜଣଙ୍କୁ ମାରିଲାବେଳେ ଘୋଡ଼ା ଜଖମ ହୋଇ ନାହାନ୍ତି ।"

ଆନସେଲ୍‌ମୋ କହିଲା "ଆରେଭାଲୋ ଠାରେ ରେଲ୍‌ଗାଡ଼ି ଉଡ଼ାଇଥିଲେ ଏହି ପାବ୍‌ଲୋ, ତାଙ୍କୁ ସିଏ ସିଏ ଲୋକ ଭାବିବ ନାହିଁ ।"

ପାବଲୋ କହିଲେ "ଆମ ସଙ୍ଗରେ ଜଣେ ବିଦେଶୀ ଥିଲେ । ସେ ବିସ୍ଫୋରକ ବ୍ୟବହାର କରିଥିଲେ । ତୁମେ ତାଙ୍କୁ ଜାଣ ?"

ତାଙ୍କ ନାମ କଅଣ ଥିଲା ?

ମୋର ମନେ ନାହିଁ, ସେପରି ନାମଟା କ୍ୱଚିତ୍ ଶୁଣାଯାଏ ।

'ସେ ଦେଖିବାକୁ କପରି ଥିଲେ ?'

'ତୁମଭଳି ସୁନ୍ଦର କିନ୍ତୁ ତୁମଠାରୁ ଉଚ୍ଚତାରେ ଊଣା । ହାତ ଦୁଇଟା ବଡ଼, ନାକଟା କିନ୍ତୁ ଖଣ୍ଡିଆ ।'

ରବର୍ଟ ଜର୍ଡ଼ାନ କହିଲେ "ଏହି ବର୍ଣ୍ଣନାରୁ ମନେହୁଏ ସେ କାସ୍କିନ ।"

ପାବ୍‌ଲୋ କହିଲେ "ହଁ, ହଁ କାସକିନ୍ ହେବ । ନାମଟା ଟିକେ ଅସାଧାରଣ । ସେଇ ହେବେ । ସେ ବର୍ତ୍ତମାନ କେଉଁଠାରେ ?"

'ଗତ ଅପ୍ରେଲରୁ ସେ ମରିଗଲେଣି ।'

ପାବଲୋ ବିଷର୍ଣ୍ଣ ହୋଇ କହିଲେ "ସମସ୍ତଙ୍କୁ ଦିନେ ଏଇଆ ଘଟିବ । ଆମେ ସମସ୍ତେ ଦିନେ ମରିବୁଁ ।"

ଆନ୍‌ସେଲମୋ କହିଲା "ସବୁ ମଣିଷଙ୍କର ଏହାହିଁ ପରିଣାମ । ମଣିଷ ସବୁବେଳେ ଏମିତି ଭାବରେ ଶେଷହୋଇ ଆସୁଅଛି । ତୁମର କଅଣ ହେଲାକି ? ତୁମ ପେଟ କିଛି ହେଉଛି କି ?"

ଘୋଡ଼ାମାନଙ୍କୁ ବିଷର୍ଣ୍ଣ ଭାବରେ ଅନାଇ ସ୍ୱଗତୋକ୍ତି କଲା ଢଙ୍ଗରେ ପାବ୍‌ଲୋ କହିଲେ "ସେମାନେ ଖୁବ୍ ବଳୁଆ ଥିଲେ । ତାଙ୍କ ସାମର୍ଥ୍ୟ ତୁମେ କଳନା କରିପାରିବ ନାହିଁ । ମୁଁ ସବୁବେଳେ ଦେଖେ ସେମାନେ ଅସ୍ତ୍ର-ଶସ୍ତ୍ରରେ ସଜ୍ଜିତ ଓ ବଳବାନ ବ୍ୟକ୍ତି । ମୋ ଅପେକ୍ଷା ସବୁ ବିଷୟରେ ଶ୍ରେଷ୍ଠ । ମୋ କଥା ଥରେ ଭାବ । ଏପରି ସୁନ୍ଦର ସୁନ୍ଦର ଘୋଡ଼ାର ମାଲିକ ମୁଁ । ଭବିଷ୍ୟତରେ ମୋ ଅଦୃଷ୍ଟରେ କଣ ଅଛି କିଏ ଜାଣେ ! ମାରିବା କିମ୍ବା ମରିବା ଛଡ଼ା ଆଉ କଅଣ ଥାଇପାରେ !"

ଆନ୍‌ସେଲମୋ କହିଲା "ଜୀଇଁବା ମରିବା ସଂସାର । ଉଧାରକୁ ଅନ୍ଧାର । ତୁମେ ଅନ୍ୟକୁ ମାରିବ, ଅନ୍ୟ ତୁମକୁ ମାରିବେ ।"

ପାବଲୋ କହି୍‌ଲେ "ନା, ଆଉ ନୁହେ । ଆମେ ଏହି ପାହାଡ଼ଗୁଡ଼ିକରେ, କୁଆଡ଼େ ଯିବୁ ? ଆମର ସ୍ଥାନ କାହିଁ ?"

"ସ୍ପେନ୍‌ରେ ଅନେକ ପାହାଡ଼ ଅଛି । ସିଏରା ଡେଲ୍ ଗ୍ରୀଡ଼ୋ ପାହାଡ଼ରେ ଏଠାରୁ ଯାଇ ରହି ପାରିବ ।"

ପାବ୍‌ଲୋ କହିଲେ "ଏଠାରେ ଆମ୍ଭେମାନେ ଦିବ୍ୟ ଅଛୁ । ମୃତ୍ୟୁ ଭୟରେ ଆଉ ପଳାଇବା ଶକ୍ତି ନାହିଁ । କିନ୍ତୁ ତୁମେ ଯଦି ଏଠାରେ ପୋଲ୍ ଧ୍ୱଂସକର ତେବେ ଶତ୍ରୁଙ୍କର ଦୃଷ୍ଟି ଆମ ସ୍ଥାନରେ ନିଶ୍ଚୟ ପଡ଼ିବ । ଆମର ଏଠାରେ ରହିବା କଥା ଜଣା ପଡ଼ିଲେ ଉଡ଼ାଜାହାଜ ଦ୍ୱାରା ସନ୍ଧାନ ନିଆଯିବ ଏବଂ ଆମେ ଧରାପଡ଼ିବୁ । ଆମକୁ ମାରିବା ପାଇଁ ଯଦି ମୁରସୈନ୍ୟ ପ୍ରେରିତ ହୁଏ ତେବେ ସେମାନେ ଆମକୁ ଧରିପାରିବେ, ଏଣୁ ଆମକୁ ପଳାଇବାକୁ ହେବ । କିନ୍ତୁ ମୁଁ ଏଭଳି ଜୀବନରେ କ୍ଳାନ୍ତ ଓ ଶ୍ରାନ୍ତ ।"

ସେ ରବର୍ଟ ଜର୍ଡ଼ାନ ଆଡ଼କୁ ବୁଲିପଡ଼ି ପଚାରିଲେ "ତୁମେ ଜଣେ ବିଦେଶୀ, ତୁମର କି ଅଧିକାର ଅଛି ଯେ ମୁଁ କଅଣ କରିବ ବା ନ କରିବ ତାହା ହୁକୁମ ଦେବ ?"

ରବର୍ଟ ଜର୍ଡ଼ାନ କହିଲେ "ମୁଁ ତ ତୁମକୁ କିଛି କରିବାକୁ କହୁନାହିଁ ?"

ପାବ୍‌ଲୋ କହିଲେ "ନ କହିଅଛ ତ କହିବ । ସେଇଟା ହେଉଛି ସବୁ ଅନିଷ୍ଟର ମୂଳ ।"ସେ ତଳେ ଥୁଆ ହୋଇଥିବା ଭାରି ବୋଝଗୁଡ଼ିକୁ ଇଙ୍ଗିତ କଲେ । ଘୋଡ଼ାଙ୍କୁ ଦେଖି ଏବଂ ରବର୍ଟ ଜର୍ଡ଼ାନଙ୍କ ଘୋଡ଼ା ସମ୍ବନ୍ଧରେ ଅଭିଜ୍ଞତା ବୁଝିପାରି ସେ ବାଗିଆ ହୋଇ ଉଠିଥିଲେ । ଅସ୍ତାବଲର ଦଉଡ଼ି ପାଖରେ ତିନହେଁ ଠିଆହୋଇଥିଲେ । ଗୁନ୍ଦ ମୁଣ୍ଡିଆ ଘୋଡ଼ା ଦେହରେ କେତେ ଜାଗା ସୂର୍ଯ୍ୟ କିରଣ ପଡ଼ିଥିଲା । ପାବ୍‌ଲୋ ତାଙ୍କ ଗୁହିଁ ସେହି ଭାରିବୋଝ ଆଡ଼େ ଗୋଡ଼ ବଢ଼ାଇ କହିଲା 'ଏହି ଜିନିଷଟା ହିଁ ସବୁ ଅନର୍ଥ ଘଟାଇବ ।'

ରବର୍ଟ ଜର୍ଡ଼ାନ୍ କହିଲେ "ମୁଁ ମୋ କର୍ତ୍ତବ୍ୟ କରିବାକୁ ଆସିଅଛି । ଯେଉଁମାନେ ଯୁଦ୍ଧ ପରିଚାଳନା କରୁଅଛନ୍ତି ତାଙ୍କରି ଆଦେଶରେ ମୁଁ ଆସିଛି । ମୁଁ ତୁମକୁ ସାହାଯ୍ୟ ମାଗିଲେ ତୁମେ ମନା କରିଦେଇ ପାର । ମୁଁ ଅନ୍ୟଲୋକର ସାହାଯ୍ୟ ଯୋଗାଡ଼ କରିବି । ବର୍ତ୍ତମାନଯାଏ ମୁଁ ତୁମର ସାହାଯ୍ୟ ଲୋଡ଼ିନାହିଁ । ମୋତେ ଯେଉଁ ହୁକୁମ ଦିଆଯାଇଅଛି ମୁଁ ତାହା କରିବାକୁ ବାଧ୍ୟ । ସେ ଆଦେଶର ଗୁରୁତ୍ୱ ସମ୍ବନ୍ଧରେ ମୁଁ ତୁମକୁ ନିର୍ଭରତା ଦେଇପାରେ । ବିଦେଶୀ ହେବାଟା ମୋର ନିଜ ଦୋଷ ନୁହେ । ଏଠାରେ ଜନ୍ମ ହୋଇଥିଲେ ମୁଁ ସୁଖି ହୋଇଥାନ୍ତି ।"

ପାବ୍‌ଲୋ କହିଲେ "ମୋ ପାଖରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ହେଉଛି, ଯେପରି ଆମକୁ କେହି ଗଣ୍ଡଗୋଳରେ ନ ପକାଏ । ମୋ ନିଜପାଇଁ ଓ ମୋ ସଙ୍ଗୀଙ୍କ ପାଇଁ ମୋର ଦାୟିତ୍ୱ ଅଧିକ ଗୁରୁତ୍ୱପୂର୍ଣ୍ଣ ।"

ଆନ୍‌ସେଲ୍‌ମୋ କହିଲା "ତୁ, ତୋ ସଙ୍ଗୀ, ତୋ ଘୋଡ଼ା; ଏହାହିଁ ତୋର ଦାୟିତ୍ୱ ମାତ୍ର କେବଠୁଁ ? ଘୋଡ଼ା ନ ଥିଲାବେଳେ ଏ ଚିନ୍ତା ନଥିଲା । ଘୋଡ଼ା ହୋଇଗଲାରୁ ତୁ ବର୍ତ୍ତମାନ ପୁଞ୍ଜିବାଦୀ ଦଳଭୁକ୍ତ ।"

ପାବ୍‌ଲୋ କହିଲେ "ଏ ଅଭିଯୋଗ ଅନ୍ୟାୟ । ଆମର ଲକ୍ଷ୍ୟସାଧନ ପାଇଁ ମୁଁ ସବୁବେଳେ ଘୋଡ଼ାଙ୍କୁ ବିପଦରେ ପୁରଉଅଛି ।"

ଆନ୍‌ସେଲ୍‌ମୋ ଘୃଣାଭରେ କହିଲା "ମୋ ବିଚାରରେ ଘୋଡ଼ାଙ୍କୁ ଅତି ନଗଣ୍ୟ ବିପଦରେ ତୁ ପୁରଉଅଛୁ । ଖାଇବୁ, ପିଇବୁ, ଚୋରି କରିବୁ, ହତ୍ୟା କରିବୁ, ଏ ସବୁପାଇଁ ତୁ ଆଗ, କିନ୍ତୁ ଲଢ଼େଇ କରିବା କଥାରେ କେବଳ ନାସ୍ତି ଜବାବ ।"

"ତୁ ବୁଢ଼ା ହେଲୁଣି, କିନ୍ତୁ ଏପରି ଖୋଲଖୋଲ କଥା ଯୋଗୁ ତୋତିତେ ଦିନେ ନା ଦିନେ ମହା ବିପଦରେ ପଡ଼ିବାକୁ ହେବ ।"

ଆନ୍‌ସେଲ୍‌ମୋ କହିଲା "ମୁଁ ବୁଢ଼ା, ମୁଁ କାହାକୁ ଡରେ ନାହିଁ । ମୋର ତ ତୋ ପରି ଘୋଡ଼ା ନାହିଁ ଯେ ମୁଁ ଡରିବି ?"

'ତେବେ ବୁଢ଼ା ତୋ ପରମାୟୁ ପୂର୍ଣ୍ଣ ଆସିଲାଣି ।'

ଆନ୍‌ସେଲ୍‌ମୋ କହିଲା "ଏ ବୁଢ଼ା ମରିବାଯାଏ ଜୀଇଁବ । କିନ୍ତୁ ଗାଡପଣା ଭାଲୁଆଙ୍କୁ ମୁଁ ପରବା କରେନାହିଁ ।"

ପାବ୍‌ଲୋ କିଛି ନ କହି ବୋଝ ଗୋଟାଏ ଉଠାଇ ନେଲେ ।

ଆନ୍‌ସେଲ୍‌ମୋ ଅନ୍ୟ ବୋଝଟା ଉଠାଉ ଉଠାଉ କହିଲା "ଭାଲୁଆ ନ ହୋଇ ତୁ ହେଟା ହେଲେ ମଧ୍ୟ ମୁଁ ଭ୍ରୂକ୍ଷେପ କରେନାହିଁ ।"

ପାବ୍‌ଲୋ ତାଙ୍କୁ କହିଲେ "ବୁଢ଼ା ମୁହଁ ବନ୍ଦକର । ତୁ ବହୁତ ଜ୍ଞାନୀଆ ହୋଇ ଉଠିଛୁ ।"

ଆନ୍‌ସେଲ୍‌ମୋ ପିଠିରେ ବୋଝ ଥୋଇ ନଇଁପଡ଼ି କହିଲା "ଖାଲି କହୁନାହିଁ, ଯାହା କହୁଛି ତାହା କାମରେ ଦେଖାଇ ପାରେ । ହେଲେ ମୁଁ ବର୍ତ୍ତମାନ ବଡ଼ ଭୋକିଲା ଓ ଶୋଷିଲା । ହଉ ହେ ଶୁଖିଲା ବିରସମୁହାଁ ଗରିଲା ନେତା, ଆମକୁ ଖାଇବା ଜାଗାକୁ ନେଇଚାଲ ।"

ରବର୍ଟ ଜର୍ଡ଼ାନ୍ ଭାବିଲେ "ଆରମ୍ଭଟା ତ ବଡ଼ ମନ୍ଦ ଭାବରେ ଘଟିଲା । କିନ୍ତୁ ଆନ୍‌ସେଲ୍‌ମୋ ଜଣେ ମଣିଷ ପରି ମଣିଷ । ଖୁସ୍ ମିଜାଜ୍‌ରେ ଏପରି ଲୋକେ ଅଦ୍ଭୁତ ହୋଇ ଥାଆନ୍ତି । ତାଙ୍କଭଳି ଲୋକ ଦୁନିଆଁରେ ମିଳିବେ ନାହିଁ । କିନ୍ତୁ ଥରେ ବିଗିଗଲେ ତାଙ୍କଠାରୁ ଖରାପ କେହି ନୁହନ୍ତି । ଆମକୁ ଏଠାକୁ ବାଟ କଢ଼ାଇ ଆଣିଲା-ବେଳେ ସେ କଅଣ ଘଟିବ ନିଶ୍ଚୟ ଜାଣିଥିବ । କିନ୍ତୁ ଏପରି ଧରଣଟା ମୋତେ ଭଲ ଲାଗୁନାହିଁ ।

ଏକମାତ୍ର ସୁଲକ୍ଷଣ ହେଉଛି ଯେ ପାବ୍‌ଲୋ ବୋଝଟା ବହିଅଛି ଏବଂ ବନ୍ଧୁକଟା ଅନ୍ୟକୁ ଦେଇ ସାରିଛି । ବୋଧହୁଏ ଏହାହିଁ ହେଉଛି ପାବ୍‌ଲୋର ସ୍ୱଭାବ । ବିଷାଦ, ବିମର୍ଷବାଦୀ ମଧ୍ୟରୁ ସେ ଜଣେ ।

ରବର୍ଟ ଜର୍ଡାନ୍ ମନେ ମନେ କହିବାକୁ ଲାଗିଲେ "କଥାଟାକୁ ଏତେ ସହଜ ଭାବିବା ଠିକ୍ ହେବ ନାହିଁ । ସେ କଅଣ ଥିଲା, ଏହା ଅଜଣା । କିନ୍ତୁ ବର୍ତ୍ତମାନ ଅଧିକ ଖରାପ ହୋଇଅଛି ଏହା ସୁସ୍ପଷ୍ଟ । ନିଜର ଏହି ଅପ୍ରସନ୍ନ ଭଙ୍ଗୀ ଲୁଚାଇଲେ ସେ ଗୋଟାଏ କିଛି ସ୍ଥିର କରି ସାରିଥିବ । ଏହା ସେ ନିଜେ କହିଅଛି । ସିଦ୍ଧାନ୍ତରେ ଉପନୀତ ହେବା ହେଉଛି ତା ପକ୍ଷରେ ପ୍ରଥମ ବନ୍ଧୁତ୍ୱର କାମ । ଘୋଡ଼ାଗୁଡ଼ିକ ଅତି ଚମତ୍କାର । ଘୋଡ଼ା ଦେଖି ମୋର ମନୋଭାବ ଅବିକଳ ପାବ୍ଲୋ ମନୋଭାବ ସଙ୍ଗେ ସମାନ ହୋଇଗଲା । ବୁଢ଼ୀ କଥାହିଁ ଠିକ୍ । ଘୋଡ଼ାଯୋଗୁଁ ସେ ଧନୀ ଏବଂ ଧନ ହେଲେ ଲୋକ ନିଶ୍ଚିନ୍ତ ଜୀବନ ଉପଭୋଗ କରିବାକୁ ଲୋଡ଼ିଥାଏ । ଶୀଘ୍ର ସେ ବିରକ୍ତ ହୋଇ ପଡ଼ିବ କାରଣ ତାକୁ କେହି ଘୋଡ଼ସବାର ଦଳରେ ମିଶାଇବେ ନାହିଁ ।

ଏମିତି ଚିନ୍ତା କରୁ କରୁ ତାଙ୍କ ମନ ହାଲୁକା ହୋଇଗଲା । ସେ ଦୁଇଜଣ ବୋଝ ଭାରରେ ନଇଁ ପଡ଼ିବା ଦେଖି ଟିକିଏ ହସିଲେ । ସେମାନେ ବଣ ଭିତରେ ଆଗେଇ ଗଲେ । ଦିନମାନ ସେ ରହସ୍ୟରେ କଥା କହି ନଥିବାରୁ ବର୍ତ୍ତମାନ ସେପରି କରି ଆରାମ ଉପଭୋଗ କଲେ । ସେ ଅନ୍ୟମାନଙ୍କ ପରି ହେବାକୁ ଯାଉଛନ୍ତି । ସେ ମଧ୍ୟ ବିମର୍ଷ ହୋଇ ପଡ଼ୁଥିଲେ । ଗୋଲଜ୍ ପାଖରେ ଏପରି ଗାମ୍ଭୀର୍ଯ୍ୟ ଓ ବିଷାଦ ଭାବ ଶୋଭାପାଏ । କାମଟା ତାଙ୍କୁ ଟିକିଏ ବିବ୍ରତ କରି ଦେଇଛି ସତ୍ୟ—ନା ବେଶ୍ ବିବ୍ରତ କରି ପକାଇଛି । ଗୋଲଜ୍ ଖୁବ୍ ହାସ୍ୟ-କୌତୁକପୂର୍ଣ୍ଣ ବ୍ୟକ୍ତି । ସେ ତାଙ୍କ ପରି ହେବାକୁ ଚେଷ୍ଟାକରି ବିଫଳ ହେଲେ ।

ଭାବି ଦେଖିଲେ ମନେହେବ ଯେ ସବୁ ଭଲ ଲୋକଙ୍କର ଜୀବନ ଆନନ୍ଦମୟ । ଆନନ୍ଦରେ ରହିବା ଖୁବ୍ ଭଲ ଓ ବଡ଼ କଥା । ମର ଜୀବନରେ ଏହାହିଁ ଅମରତ୍ୱ ଉପଭୋଗ । ଏଭଳି ଲୋକ ବେଶୀ ମିଳିବେ ନାହିଁ । ମୁଷ୍ଟିମେୟ ଥିଲେ ଥାଇପାରନ୍ତି । ତୁମେ ନିଜେ ଯଦି କେବଳ ବିଷାଦ ଓ ବିମର୍ଷ କଥା ଭାବିବ ତେବେ ବେଶୀଦିନ ବଞ୍ଚି ପାରିବ ନାହିଁ । ଏସବୁ ପୁରୁଣା କଥା ବର୍ତ୍ତମାନ ଭୁଲିଯିବା ଉଚିତ । ଉପସ୍ଥିତ କାମ ହେଉଛି ପୋଲଟା ଧ୍ୱଂସ କରିବା । ଭୋକ ଲାଗିଛି । ପହିଲି କାମ ପେଟ ପୂଜା । ପାବ୍ଲୋ ଭଲ ଖିଆପିଆ କଲେ ବୋଲି ମନେହେଉଚି ।

—*—

# ଦ୍ୱିତୀୟ ପରିଚ୍ଛେଦ

ଘନ ଅରଣ୍ୟ ଭିତରେ ସେମାନେ ପିଆଲ ଆକାରର କ୍ଷୁଦ୍ର ଉପତ୍ୟକା ମୁଣ୍ଡରେ ଆସି ପହଞ୍ଚିଲେ । ସେଇଠାରେ ଗ୍ରୀଜଣୀଟା । ଗୋଟାଏ ଖୁବ୍ ଉଚ୍ଚ ଗୋଲାକାର ପଥର ଟିପ ତଳେ ଏହା ଅବସ୍ଥିତ । ଟିପଟା ଗଛ ଅପେକ୍ଷା ବହୁତ ବେଶୀ ଉଚ୍ଚ ।

ଏଟା ଖୁବ୍ ଭଲ କ୍ୟାମ୍ପ୍ ( ଗ୍ରୀଜଣୀ ) । ଅତି ନିକଟକୁ ନ ଆସିଲେ ବାହାରୁ ଆଦୌ ଦେଖାଯାଏ ନାହିଁ । ରବର୍ଟ ଜାର୍ଡ଼ାନ୍ ବୁଝିନେଲେ ଯେ ଏହା ଉଡ଼ାଜାହାଜରୁ ମଧ୍ୟ ଦେଖାଯିବ ନାହିଁ । ଭାଲୁ ଗହ୍ୱର ପରି ଏଟା ଖୁବ୍ ଗୁପ୍ତ ସ୍ଥାନରେ ଅବସ୍ଥିତ । ଏହାର ଜଗୁଆଳମାନେ ମଧ୍ୟ ଖୁବ୍ ସତର୍କ । ନିକଟକୁ ଆସୁ ଆସୁ ସେ ଏହାକୁ ଖୁବ୍ ସାବଧାନ ଦୃଷ୍ଟିରେ ଦେଖିନେଲେ ।

ଗୋଲାକାର ପଥର ଟିପରେ ଗୋଟାଏ ଗୁହା । ଗୁହା ମୁହଁରେ ଜଣେ ଲୋକ ଗୁହାକୁ ପିଠିକରି ମାଟିରେ ଗୋଡ଼ ଲମ୍ବାଇ ବସିଥିଲା । ବନ୍ଧୁକଟି ପଥରକୁ ଡେରି ରଖିଥିଲା । ସେ ଛୁରୀ ଧରି ଖଣ୍ଡେ ବାଡ଼ି କାଟୁଥିଲା ଏବଂ ଏମାନେ ନିକଟ ହେଲାରୁ ତାଙ୍କୁ ଚାହିଁଲା ଏବଂ ତପୂରେ ବାଡ଼ି ଖଣ୍ଡ ଛେଲୁ ଛେଲୁ ପଚାରିଲା 'ଆରେ କିଏ ଆସୁଛ ?'

ପାବ୍‌ଲୋ କହିଲେ "ଜଣେ ବୁଢ଼ା ଆଉ ଏ ଡାଇନାମାଇଟ୍ ଫୁଟାଇବା ଲୋକ ।" ଏହା କହି ସେ ଗୁହା ମୁହଁ ଭିତରେ ବୋଝଟା ଉଠାଇଲେ । ଆନ୍‌ସେଲ୍‌ମୋ ମଧ୍ୟ ବୋଝ ତଳେ ଥୋଇଲା । ରବର୍ଟ ଜର୍ଡ଼ାନ୍ ପିଠିରୁ ବନ୍ଧୁକ କାଢି ପଥରକୁ ଡେରି ଦେଲେ ।

କାଠି ଛେଲିବା ଲୋକଟି କହିଲା "ଗୁହାର ଏତେ ନିକଟରେ ରଖ ନାହିଁ, ଗୁହା ଭିତରେ ନିଆଁ ଅଛି ।" ତା' ଡୋଳାରେ ନେଳି ଆଖିତରା, ଦେଖିବାକୁ ସୁଡୌଲ, ଦେହର ବର୍ଣ୍ଣ ଧୂଆଁ ଖିଆ ଚମଡ଼ା ପରି ଏବଂ ସ୍ୱଭାବ ଗିପ୍‌ସି ମାନଙ୍କ ପରି ଅଲସୁଆ ।

ପାବ୍‌ଲୋ କହିଲେ "ତେବେ ଉଠିଆସି ଏହାକୁ ନେଇ ସେହି ଗଛ ପାଖରେ ରଖିଆସ ।"

ଗିପ୍‌ସି ନିଜ ସ୍ଥାନରୁ ହଲିଲା ନାହିଁ । କଅଣ ଗୁଡ଼ାଏ ଅକଥ୍ୟ କଥା ବକ୍ ବକ୍ ହୋଇ ଶେଷକୁ କହିଲା "ନିଜେ ନେଇ ରଖ । ନିଜେ ମର । ତୁମ ରୋଗ ଭଲ ହୋଇ ଯିବ ।"

ରବର୍ଟ ଜର୍ଡ଼ାନ, ଗିପ୍‌ସି ପାଖରେ ବସିପଡ଼ି ପଚାରିଲେ "କଅଣ କରୁଛ ?" ଗିପ୍‌ସି ତାଙ୍କୁ ସେଖଣ୍ଡି ଦେଖାଇବାରୁ ଜର୍ଡ଼ାନ୍ ବୁଝିଲେ ଯେ ଗୃହଅଙ୍କ ପରି ଜନ୍ତାଟିଏ । ଛୁରି ଦେଇ ଗିପ୍‌ସି ତହିଁର ଆଡ଼ ଛଡ଼ଟା କାଟୁଅଛି ।

ସେ ମୁରୁକି ହସି କହିଲା "କୋକଶିଆଳି ଧରିବାକୁ ଏହା କରୁଅଛି । ଜନ୍ତାଟି ବନ୍ଦ ହେବ ଖଣ୍ଡିଏ ବଡ଼ କାଠ ବାନ୍ଧି ଦେଲେ । କୋକଶିଆଳୀଙ୍କର ଅଣ୍ଟା ଭାଙ୍ଗି ଯିବ ।" ଜନ୍ତାଟି କପରି ବନ୍ଦ ହୋଇଯିବ ତାହା ଦେଖାଇଲା । ତା ପରେ ନିଜ ହାତ ବାହାର କରି ନେଲା—ଦୁଇ ବାହୁକୁ ପ୍ରସାରି କୋକଶିଆଳି ଅଣ୍ଟା ଭାଙ୍ଗିବା ଧରଣଟା ମଧ୍ୟ ଦେଖାଇ ବୁଝାଇ ଦେଲା ଯେ ଜନ୍ତା ଅବ୍ୟର୍ଥ ।

ଆନ୍‌ସେଲ୍‌ମୋ କହିଲା ସେ ଠେକୁଆ ଧରେ । ସେ ଜଣେ ଗିପ୍‌ସି । ଠେକୁଆ ଧରିଲେ ସେ କହିବୁଲେ କୋକଶିଆଳି ଧରିଅଛି । ଗଲାକୁ ଗଲା କରି କହିବା ହେଉଛି ତାହାର ସ୍ୱଭାବ । କୋକଶିଆଳି ଧରିଲେ କହିବ ହାତୀ ଧରିଛି ।

ଗିପ୍‌ସି କହିଲା "ସତକୁ ସତ ଯଦି ମୁଁ ହାତୀ ଧରିବି ?" ଏତିକି ହସି ହସି କହି ସେ ରବର୍ଟ ଜର୍ଡ଼ାନ୍‌ଙ୍କୁ ଆଖି ଠାରିଲା ।

ଆନ୍‌ସେଲ୍‌ମୋ କହିଲା "ତେବେ କହିବୁ ଟ୍ୟାଙ୍କ୍ ଧରିଲି ।" ଗିପ୍‌ସି କହିଲା "ତୁ ଯାହା କହ ମୁଁ ନିଶ୍ଚୟ ଗୋଟାଏ ଟ୍ୟାଙ୍କ୍ ଧରିବି ।"

ଆନ୍‌ସେଲ୍‌ମୋ କହିଲା "ଗିପ୍‌ସିମାନେ କହନ୍ତି ବହୁତ, କିନ୍ତୁ କିଛି କରି ନ ଥାନ୍ତି ।"

ସେ ଏ କଥାରେ କାନ ନ ଦେଇ କାଠ ହେଳିବାକୁ ଲାଗିଲା ।

ପାବ୍‌ଲୋ ଗୁହା ଭିତରକୁ ଚାଲି ଯାଇଥିଲେ । ରବର୍ଟ ଜର୍ଡ଼ାନ୍ ମନେକଲେ ସେ ଖାଦ୍ୟ ଆଣିବାକୁ ଯାଇଅଛି । ସେ ଗିପ୍‌ସି ପାଖରେ ମାଟିରେ ଗୋଡ଼ ଲମ୍ବାଇ ବସି ରହିଲେ ଏବଂ ଗଛ ଅଗିଲା ଫାଙ୍କରେ ସୂର୍ଯ୍ୟ କିରଣ ତାଙ୍କ ଗୋଡ଼ ଉପରେ ପଡ଼ିବାରୁ ସେ ଉଷୁମ ବୋଧକଲେ । ଗୁହା ଭିତରୁ ଖାଦ୍ୟର ଗନ୍ଧ ଆସୁଥାଏ । ତେଲ ପିଆଜରେ ମାଂସ ଭଜା ଗନ୍ଧ ପାଇ ତାଙ୍କର କ୍ଷୁଧା ଦୁଇଗୁଣ ହୋଇଗଲା । ସେ ଗିପ୍‌ସିକୁ କହିଲେ "ଗୋଟାଏ ଟ୍ୟାଙ୍କ ଧରିନେବା ସେମିତି କଠିନ କାମ ନୁହେଁ ।"

ତାଙ୍କର ଦୁଇଟି ବୋଝକୁ ଦେଖାଇ ଗିପ୍‌ସି ପଚାରିଲା "କଅଣ, ଏହାର ବଳରେ ଧରିବ ?" ରବର୍ଟ ଜର୍ଡ଼ାନ୍ କହିଲେ "ହଁ, ମୁଁ ତୁମକୁ ଶିଖାଇ ଦେବି । ତୁମେ ତ ଜାଲ୍ କରିପାର, ଏଣୁ ଏ କାମ ସେପରି କିଛି କଠିନ ହେବ ନାହିଁ ।"

'ତୁମେ ଆଉ ମୁଁ ।'

'ନିଶ୍ଚୟ । କାହିଁକି ନ ହେବ ?' ରବର୍ଟ ଜର୍ଡ଼ାନ କହିଲେ ।

ଆନ୍‌ସେଲ୍‌ମୋକୁ ଡାକି ଗିପ୍‌ସି କହିଲା "ଏ ଦୁଇଟା ବୋଝ ନେଇ ନିରାପଦ ଜାଗାରେ ରଖିବ । ଏହା ଖୁବ୍ ମୂଲ୍ୟବାନ ।"

ଆନ୍‌ସେଲ୍‌ମୋ ହଁ ହଁ କରି ରବର୍ଟ ଜର୍ଡ଼ାନଙ୍କୁ କହିଲା "ମୁଁ ମଦ ପିଇବାକୁ ଯାଉଛି ।" ଜର୍ଡ଼ାନ ଉଠିପଡ଼ି ଦୁଇଟି ବୋଝକୁ ଗୁହା ମୁହଁରୁ ଟେକି ନେଇ ଏପାଖ ସେପାଖ କରି ଗଛ ଦୁଇପାଖରେ ଡେରି ଦେଲେ । ସେ ବୋଝରେ ଥିବା ବସ୍ତୁକୁ ଜାଣନ୍ତି ବୋଲି ଦୁହିଁଙ୍କୁ ଲଗାଲଗି କରି ରଖିବା ପସନ୍ଦ କଲେ ନାହିଁ ।

ଗିପ୍‌ସି କହିଲା "ମୋ ପାଇଁ ମଧ୍ୟ ପିଆଲାଏ ଆଣିବ ।"

ଜର୍ଡ଼ାନ୍ ଗିପ୍‌ସି ପାଖରେ ପୁଣି ବସିପଡ଼ି ପଚାରିଲେ 'ଏଠାରେ ମଦ ମିଳିବ ?'

'ମଦ ? ନିଶ୍ଚୟ ମିଳିବ । ଘଡ଼ାଏ ମିଳିବ, ନିତାନ୍ତ ପକ୍ଷେ ଅଧ ଘଡ଼ାଏ ।'

ଖାଦ୍ୟ ?

ଗିପ୍‌ସି କହିଲା "ସବୁ କିଛି ମିଳିବ । ଆମେ ଏଠି ସେନାପତି ଧରଣର ଖିଆ ପିଆ କରୁଁ ।"

'ଯୁଦ୍ଧରେ ଗିପ୍‌ସିମାନେ କଅଣ କରନ୍ତି ?'

'କିଛି ନାହିଁ, ଗିପ୍‌ସି ହୋଇ ରହନ୍ତୁ ।'

'ତେବେ ତ ବଢିଆ ହାମ ।'

'ବଢିଆ ବୋଲି ବଢ଼ିଆ । ଆଚ୍ଛା ତୁମ ନାମ କଅଣ ?'

'ରବର୍ଟୋ ? ତୁମର ?'

'ଗ୍ରଫେଲ୍ । ଆଗ୍ରୁ ଝ୍ୟାଙ୍କ କଥାଟା କଅଣ ପ୍ରକୃତ ?'

'ନିଶ୍ଚୟ । ସନ୍ଦେହ କରିବାର କିଛି ନାହିଁ ।'

ଆନ୍‌ସେଲ୍‌ମୋ ଗୁହା ଭିତରୁ ଗୋଟିଏ ଗଭୀର ପଥର ଖଣ୍ଡ ପୂର୍ଣ୍ଣ ଲାଲ୍ ମଦ ଏବଂ ଅଙ୍ଗୁଳିରେ ତିନି ଗୋଟି ପିଆଲର ମୁଠା ପୂରାଇ ବାହାର ଆସି କହିଲା 'ଏମାନେ ସବୁ କିଛି ରଖିଛନ୍ତି ।' ପାବ୍‌ଲୋ ତାଙ୍କ ପଛରେ ଆସି ଠିଆ ହୋଇ କହିଲେ "ଖାଦ୍ୟ ଶୀଘ୍ର ମିଳିବ । ତମାଖୁ ଖାଇବ ?"

ରବର୍ଟ ଜର୍ଡାନ ବୋଝ ପାଖକୁ ଯାଇ ଗୋଟିଏ ଫିଟାଇ ତହିଁଭିତରୁ ଗୋଟିଏ ପକେଟ୍‌ରୁ ରୁଷିଆରେ ପ୍ରସ୍ତୁତ ଏକ ଚେପ୍‌ଟା ସିଗ୍ରେଟ ବାକସ କାଢ଼ି ଆଣିଲେ । ଏହା ସେ ଗୋଲଜଙ୍କର ପ୍ରଧାନ କାର୍ଯ୍ୟାଳୟରୁ ପାଇଥିଲେ । ସେ ବାକସର ଗୁର ପାଖରେ ନିଜ ବୁଢ଼ା ଆଙ୍ଗୁଠି ନଖ ବୁଲାଇ ବାକସର ଢାଙ୍କଣା ଫିଟାଇ ପାବ୍‌ଲୋକୁ ବଢ଼ାଇଲେ । ପାବ୍‌ଲୋ ୬ଟା ସିଗ୍ରେଟ୍ ଟାଣିନେଲେ । ସେଥିରୁ ଗୋଟିଏ ଆଙ୍ଗୁଳି ଫାଙ୍କରେ ଧରି ଆଲୁଅରେ ଦେଖିଲେ । ସେ ସବୁ ସରୁ ଓ ଲମ୍ବା ସିଗ୍ରେଟ ଏବଂ ମୁହଁରେ ଧରିବା ପାଖଟା ମୋଟା କାଗଜ ନଳୀ ଯୁକ୍ତ । ସେ କହିଲେ "ଏପରି ସିଗ୍ରେଟ ମୁଁ ଜାଣେ, ଏଥିରେ ଫାଙ୍କା ସ୍ଥାନ ବହୁତ ମାତ୍ର ତମାଖୁ ଅତି ଅଳ୍ପ । ସେହି ବିଚିତ୍ର ନାମଧାରୀ ଲୋକଟି ଏହା ବ୍ୟବହାର କରୁଥିଲେ ।"

ରବର୍ଟ ଜର୍ଡାନ୍, ନାମଟା ମନେ ପକାଇବାକୁ କହିଲେ "କାସ୍‌କିନ୍ ।" ଏହା ପରେ ଗୋଟାଏ ଲେଖା ସିଗ୍ରେଟ ସେ ଗିପ୍‌ସି ଓ ଆନ୍‌ସେଲ୍‌ମୋକୁ ଦେଲେ ।

ସେ ଆଉ ନିଅ ବୋଲି କହିବାରୁ ଦୁହେଁ ପୁଣି ଗୋଟାଏ ଲେଖା ନେଲେ । ସେ ନିଜେ ଦୁହିଁଙ୍କୁ ୪ଟା ଲେଖାଏ ଦେଲେ । ସେମାନେ ହାତରେ ସିଗ୍ରେଟ୍ ଧରି ହାତ ବଢ଼ାଇ ମନା କରିବାକୁ ଯିବାରୁ ସିଗ୍ରେଟ୍‌ର ମୁଣ୍ଡ ତଳ ଆଡ଼କୁ ହୋଇଗଲା । ମନେହେଲା କେହି ଯେପରି ସତେ ତରବାରୀ ଦ୍ୱାରା ସାମରିକ କାଇଦାରେ ଅଭିବାଦନ ଜଣାଉଛି ।

ପାବଲୋ କହିଲେ "ମୋତେ ଟିକିଏ ମଦ ଦେବନାହିଁ ?" ସେମାନେ ସମସ୍ତେ ଗୁହା ନିକଟସ୍ଥ ଦରଜା ପାଖରେ ବସିଥିଲେ ।

ଆନସେଲମୋ ନିଜ ପାଇଁ, ଜର୍ଡାନଙ୍କ ପାଇଁ ଓ ଜିପସି ପାଇଁ ୩ ପିଆଲା ମଦ ଢାଳିଲା । ଆନସେଲମୋ ନିଜ ପିଆଲା ତାଙ୍କୁ ଦେଇ ଗୁହା ଭିତରକୁ ଆଉ ଗୋଟିଏ ପିଆଲା ଆଣିବାକୁ ଗଲା । ପିଆଲା ଆଣି ତାକୁ ଟମ୍ବାଟମ୍ବ ମଦ ପୂର୍ଣ୍ଣ କଲା । ଏହା ପରେ ସମସ୍ତେ ପିଆଲା ସ୍ପର୍ଶକରି ପିଇଲେ ।

ମଦଟା ଚମଡ଼ା ମୁଣାରେ ଥିବାରୁ ଟିକିଏ ଝୁଣ୍ଟଣାଳିଆ ଲାଗୁଥିଲେ ମଧ୍ୟ ଭଲ, ଅନୁଗ୍ର ଏବଂ ଜିଭ ଝିମ୍ ଝିମ୍ କରୁ ନ ଥିଲା । ଜର୍ଡାନ୍ ନିଜର କ୍ଳାନ୍ତି ଦୂର କରିବାକୁ ଧୀରେ ଧୀରେ ପିଇଲେ । ପାବ୍‌ଲୋ କହିଲେ "ଖାଦ୍ୟ ଶୀଘ୍ର ଆସୁଛି । ଅଚ୍ଛା ସେ ବିଟଏ ନାମଧାରୀ ବିଦେଶୀ ଜଣକ ମଲେ କେମିତି ?"

'ସେ ଧରା ପଡ଼ିଯିବା ଭୟରେ ଆତ୍ମହତ୍ୟା କରିଥିଲେ ।'

'ତାହା କିପରି ଘଟିଲା ?'

'ସେ ଆହତ ହୋଇଥିଲେ, କିନ୍ତୁ ବନ୍ଦୀ ହେବା ପାଇଁ ରାଜି ନ ଥିଲେ ।'

'ସବିଶେଷ ବିବରଣୀ କହିବ ?'

ସବିଶେଷ ବିବରଣ ଭଲକରି ଜାଣିଥିଲେ ମଧ୍ୟ ବର୍ତ୍ତିମାନ ଅବସ୍ଥାରେ ଭଲ କହିହେବ ନାହିଁ ଏଣୁ ମିଛରେ କହି ପକାଇଲେ "ମୁଁ ଜାଣେ ନାହିଁ । ରେଲ ଗାଡ଼ି ଉଡ଼ାଇ ଦେଲା ବେଳେ ସେ ଯଦି ଆହତ ହୁଅନ୍ତି ଏବଂ ପଳାଇ ନ ପାରନ୍ତି ତେବେ ଆମେ ତାଙ୍କୁ ଗୁଳିକରି ମାରି ଦେବୁ ଏହା ସେ ଆମକୁ ପ୍ରତିଜ୍ଞା କରାଇ ନେଇଥିଲେ । ତାଙ୍କ କହିବା ଧରଣ ମଧ୍ୟ ଅସାଧାରଣ ଥିଲା ।"

ରବର୍ଟ ଜର୍ଡାନ୍ ଭାବିଲେ ସେତେବେଳେ ବିଚାରୀ କାସ୍କିନ୍ ବୁଢ଼ା ମନରେ ବଡ଼ ଆଘାତ ପାଇଥିବ ।

ପାବ୍‌ଲୋ କହିଲେ "ହତ୍ୟା କରିବା ତାଙ୍କର ପ୍ରକୃତି ବିରୁଦ୍ଧ ଥିଲା । ଏହା ସେ ମୋତେ ନିଜେ କହିଛନ୍ତି । ତଦୁପରି ତାଙ୍କୁ ଶତ୍ରୁପକ୍ଷ ଯନ୍ତ୍ରଣା ଦେବେବୋଲି ସେ ବଡ଼ ଭୟ କରୁଥିଲେ ।"

ଜର୍ଡାନ୍ ପଚାରିଲେ 'ଏହା କଅଣ ସେ ତୁମକୁ କହିଥିଲେ ?'

ଗିପ୍‌ସି କହିଲା 'ହଁ, ସେ ଆମ ସଭିଙ୍କୁ ସେକଥା କହିଥିଲେ ।'

'ତୁମେ ବି କଅଣ ସେହି ରେଲଗାଡ଼ି ଧ୍ୱଂସ ବେଳେ ଥିଲ ?'

'ହଁ, ଆମେ ସମସ୍ତେ ଥିଲୁ ।'

ପାବ୍‌ଲୋ କହିଲେ "ତାଙ୍କର କଥାବାର୍ତ୍ତା ଧରଣ ଅସାଧାରଣ ଥିଲେ ମଧ୍ୟ ସେ ଖୁବ୍ ସାହସୀ ଥିଲେ ।"

ରବର୍ଟ ଜର୍ଡ଼ାନ୍‌ଙ୍କର କାସ୍‌କିନ୍ ପାଇଁ ମନରେ ସହାନୁଭୂତି ଜନ୍ମିଲା । ଭାବିଲେ ଲୋକଟା ଏଠାରେ ଭଲ ଅପେକ୍ଷା ଅଧିକ କ୍ଷତି କରିଥିବ । ସେତେବେଳକୁ ତାହାର ମର୍ମାଘାତ କଥା ମୁଁ ଜାଣିଆନ୍ତି କି ! ଏମାନେ ତାଙ୍କୁ ନେଇ ପଳାଇ ଆସିବା ଉଚିତ ଥିଲା । ଏଭଳି ଢଙ୍ଗରେ କଥା କହିବା ଲୋକଙ୍କୁ ଏଠାରେ କାମରେ ଲଗାଇବା ଠିକ୍ ନୁହେଁ । ଏ ସବୁ କହିବା କଥା ନୁହେଁ । ସେମାନେ ନିଜର କର୍ତ୍ତବ୍ୟ-ସମ୍ପନ୍ନ କଲେ ମଧ୍ୟ କହିବୁଲିବା ଦ୍ୱାରା ଅଧିକ ଅନିଷ୍ଟ ଘଟାନ୍ତି । ଏମିତି ମନେ ମନେ ଚିନ୍ତା କରି ରବର୍ଟ ଜର୍ଡାନ କହିଲେ "ଲୋକଟା ଟିକିଏ ଅଦ୍ଭୁତ ଧରଣର ସତ, ତା ମୁଣ୍ଡରେ ଟିକେ ଛିଟା ଥିଲା ବୋଲି ମୁଁ ଭାବୁଛି ।"

ଗିପ୍‌ସି କହିଲା "କିନ୍ତୁ ବିସ୍ଫୋରକ ପ୍ରୟୋଗରେ ସିଦ୍ଧହସ୍ତ ଏବଂ ଖୁବ୍ ସାହସୀ ।"

ରବର୍ଟ ଜର୍ଡାନ୍ କହିଲେ "ତା ସାଙ୍ଗକୁ ମଥା ପାଗଳ । ଏ ସବୁ କାମରେ ଖୁବ୍ ଧୀର, ଶାନ୍ତ, ଓ ଥଣ୍ଡା ମଗଜ ଲୋଡ଼ା ।"

ପାବ୍‌ଲୋ ପଚାରିଲେ "ଆଉ ତୁମେ ଯଦି ପୋଲ ଧ୍ୱଂସ କାମରେ ଆହତ ହୁଅ ତେବେ ତୁମକୁ ସେଠାରେ ପକାଇ ଆସିବା ଇଚ୍ଛା କରିବ କି ?"

ରବର୍ଟ ଜର୍ଡାନ୍ ଆଉ ପିଆଲାଏ ମଦ ନେଇ ଆଗକୁ ନଇଁପଡ଼ି କହିଲେ "ମୋ କଥା ମନ ଦେଇ ଶୁଣ । ମୁଁ ଯଦି କେବେ କୌଣସି ଲୋକଠାରୁ କିଛି ଅନୁଗ୍ରହ ମାଗିବା ଦରକାର ମନେ କରିବି ତେବେ ସେହି ଦରକାର ବେଳେ ହିଁ ତାହା ମାଗିବି ।"

ଏହା ସମର୍ଥନ କରି ଗିପ୍‌ସି କହିଲା "ଭଲ କଥା । ଏହା ହିଁ ଭଲ ଲୋକ-ମାନଙ୍କର ଧରଣ । ହେଇଟି ଖାଦ୍ୟ ଆସିଗଲା ।"

ପାବ୍‌ଲୋ କହିଲେ 'ତୁ ତ ଖାଇ ସାରିଛୁ ।'

"ହଉ ଆଉ ଥରେ ଖାଇବା । ଦେଖିଲ, କଏ ଖାଦ୍ୟ ଆଣୁଅଛି ।" ଗେପ୍‌ସି କହିଲା ।

ଜଣେ ବାଳିକା ବଡ଼ ଲୁହା ହାଣ୍ଡି ଧରି ଆସିଲାବେଳେ ଗୁହା ମୁହଁରେ ନଇଁ ପଡ଼ି ଆସିଲେ । ରବର୍ଟ ଜର୍ଡାନ୍ ଦେଖିଲେ ଯେ ତା ମୁହଁ ବଙ୍କେଇ ଅଛି । ସେ ତାହାର ବିଚିତ୍ର ଭଙ୍ଗି ଦେଖିଲେ । ବାଳିକାଟି ସ୍ମିତ-ହାସ୍ୟରେ କହିଲେ "କହୋ, ସାଥି ଭାଇମାନେ !" ଜର୍ଡାନ ତାଙ୍କୁ ନମସ୍କାର କଲେ କିନ୍ତୁ ତରିଟି ଚାହିଁଲେ ନାହିଁ କି ଆଖି ଫେରାଇ ନେଲେ ନାହିଁ । ବାଳିକାଟି ତାଙ୍କ ଆଗରେ ଲୁହା ହାଣ୍ଡିଟା ଥୋଇ ଦେଲା ବେଳେ ସେ ତାହାର ସୁନ୍ଦର ଶ୍ୟାମଳ ହାତକୁ ଦେଖିବାକୁ ପାଇଲେ । ବାଳିକା ତାଙ୍କ ମୁହଁକୁ ଭଲକରି ଚାହିଁ ପୁଣି ହସିଦେଲା । ତାର ଦାନ୍ତଗୁଡ଼ିକ କଳା ମୁହଁରେ ଖୁବ୍ ଧଳା ଦିଶୁଥାଏ । ତାହାର ଚମ ଓ ଚକ୍ଷୁ ତମ୍ବା ମିଶା ସୁନା ପରି । ହନୁ ହାଡ଼ ଖୁବ ବଡ଼, ଆଖି କୌତୁକ ପୂର୍ଣ୍ଣ, ଓଷ୍ଠ ରସାଳ ଓ ମୁହଁ ସଳଖ । ତା' ମୁଣ୍ଡର ବାଳ ମଳିନ-ସ୍ୱର୍ଣ୍ଣାଭ । ଠିକ ଯେପରି ପାଚିଲା ଧାନ କ୍ଷେତରେ କଳା ପଡ଼ି ଯାଇଥିବା ଦିଶେ । କିନ୍ତୁ ବାଳ ଗୁଡ଼ିକ ଖ୍ରେଟ ଖ୍ରେଟ ହୋଇ କଟା । କୌଣସି କ୍ଷୁଦ୍ର ପଶୁ ଦେହର ଲୋମ ପରି । ସେ ରବର୍ଟ ଜର୍ଡାନଙ୍କୁ ଅନାଇ ହସି ପକାଇ ନିଜର ଶ୍ୟାମଳ ବାହୁ ଟେକି ନିଜ ମୁଣ୍ଡର କେଶକୁ ସାଉଁଳିଲା କାରଣ ବାଳଗୁଡ଼ିକ ଠିଆହୋଇ ଯାଉଥିଲା । ରବର୍ଟ ଜର୍ଡାନ୍ ଦୃଷ୍ଟିରେ ତା ମୁହଁଟି ସୁନ୍ଦର । ବାଳ ଏପରି ସାନ ସାନ କଟା ନ ହୋଇ ଥିଲେ ସେ ଜଣେ ସୁନ୍ଦରୀ ହୋଇ ପାରଥାନ୍ତା ।

ସେ ହସି ହସି ଜର୍ଡାନ୍‌କୁ କହିଲା "ମୁଁ ଏମିତ ଭାବରେ ମୁଣ୍ଡ କୁଣ୍ଡାଇ ଥାଏ । ବର୍ତ୍ତମାନ ଖାଇବାକୁ ମନ ଦିଅ, ମୋତେ ତରିଟି ଚାହିଁନାହିଁ ।" ଭାଲାଡ଼ୋଲିଡ୍ ଠାରେ ସେମାନେ ଏମିତ ବାଳ କାଟି ଥାନ୍ତି ! ବର୍ତ୍ତମାନ ତ ପ୍ରାୟ ବଢ଼ି ଗଲାଣି ।

ସେ ତାଙ୍କ ଆଗରେ ବସି ପଡ଼ି ତାଙ୍କୁ ଅନାଇ ରହିଲା । ଜର୍ଡାନ୍ ତାକୁ ଫେରି ଚାହାନ୍ତେ ବାଳିକାଟି ହସି ପକାଇ ଦୁଇ ହାତ ଯୋଡ଼ି ଆଣ୍ଠୁ ଉପରେ ରଖିଲା । ବସି ଥିଲା ବେଳେ ଗୋଡ଼ ଦୁଇଟି ଲମ୍ବାଇ ଥିଲା ବୋଲି ପାଇଜାମା ଅଗରେ ପାଦ ଦିଶୁଥାଏ । ଆଣ୍ଠୁ ଉପରେ ଦୁଇ ହାତ ଥୋଇ ଥିବାରୁ ତାହାର କ୍ଷୁଦ୍ର ଉନ୍ନତ ସ୍ତନ ଦୁଇଟି କାମିଜ ଠେଲି ଦେଖାଯାଉ ଥାଏ । ଥରକୁ ଥର ତାହା ଆଡ଼କୁ ଜର୍ଡାନ ଅନାଉ ଥିଲେ ଏବଂ ଥରକୁ ଥର ତାଙ୍କ କଣ୍ଠ ରୁନ୍ଧ ହୋଇ ଉଠୁଥିଲା ।

ଆନ୍‌ସେଲ୍‌ମୋ କହିଲା 'ଏଠାରେ ଆଳୀ ନାହିଁ । ନିଜ ନିଜ ଛୁରୀ ବ୍ୟବହାର କର ।' ବାଳକାଟି ୪ଗୋଟା ପରଜନା କଣ୍ଢା ତଳୋକୁ କରି ଲୁହା ପତ୍ରଡ ଫାନ୍ଦରେ ଡେରି ରଖିଥିଲା ।

ସମସ୍ତେ ସେହି ଲୁହା ପତ୍ରତରୁ ଖାଇବାକୁ ବସିଗଲେ । ସ୍ପେନଦେଶୀୟ ପ୍ରଥା ମତେ କେହି କଥାବାର୍ତ୍ତା ହେଲେ ନାହିଁ । ପିଆଜ ଓ କଞ୍ଚାମରିଚ ଦେଇ ଠେକୁଆ ମାଂସ ରନ୍ଧା ହୋଇଥିଲା । ଲାଲ ମଧ୍ୟରେ ଟ୍ୟୁସି ମଟର ପକାଇ ଚଟଣୀ ହୋଇଥିଲା । ରନ୍ଧଣା ଖୁବ୍ ଭଲ । ଠେକୁଆ ମାଂସ ଭଲ ସିଦ୍ଧ ହୋଇ ଥିବାରୁ ହାଡ଼ରୁ ମାଂସ ଅଲଗା ହୋଇ ଯାଉଥିଲା । ଚଟଣୀ ମଧ୍ୟ ଖୁବ୍ ରୁଚିକର । ଖାଇଲାବେଳେ ଜର୍ଡ଼ାନ୍ ଆଉ ପିଆଲାଏ ମଦ ପିଇଲେ । ରବର୍ଟ ଜର୍ଡ଼ାନ୍ ଯେତେକ୍ଷଣ ଖାଇ ବସିଲେ ବାଳକାଟି ଚାହିଁଥିଲା । ଅନ୍ୟମାନେ ମଧ୍ୟ ଦେଖୁଥିଲେ । ସେ ଚଟଣୀର ଶେଷତକ ଖଣ୍ଡିଏ ରୁଟିରେ ପୋଛିପାଛି ତା'ପରେ ଠେକୁଆ ମାଂସ ହୋଲ ପୋଛି, କଣ୍ଟା ଛୁରୀ ମଧ୍ୟ ପୋଛି ରୁଟି ଖଣ୍ଡିକ ପାଟିରେ ପୂରାଇଦେଲେ । ତା'ପରେ ପୁଣି ଟୁକ୍ରିପଡ଼ ପିଆଲାଏ ମଦ ଢାଳିନେଲେ । ବାଳକାଟି ତାହା ବରାବର ଲକ୍ଷ୍ୟ କରୁଥିଲା । ଅଧ ପିଆଲାଏ ମଦ ପିଇ ସାରଲେ ମଧ୍ୟ ବାଳକାକୁ ଚାହିଁ ତାଙ୍କର କୁଣ୍ଠାଭାବ ଗୁଡ଼ିଲା ନାହିଁ ।

ସେ ପଚାରିଲେ "ତୋ ନା କଅଣ ?" ତାଙ୍କ କଣ୍ଠସ୍ୱର ଶୁଣି ପାବ୍‌ଲୋ ତାଙ୍କୁ ଶୀଘ୍ର ଅନାଇ ସେଠାରୁ ଉଠିଗଲେ ।

'ମୋ ନାମ ମେରିଆ । ତୁମ ନା ?'

'ରବର୍ଟୋ । ତୁ ଏହି ପାହାଡ଼ରେ ବେଶୀଦିନ ରହିଛୁ କି ?'

"ତିନିମାସ ।" ସେ ଯେତେବେଳେ ମୁଣ୍ଡବାଳ ଉପରେ ହାତ ବୁଲାଇଲା ସେତେବେଳେ ସେହି ଘନ ଏବଂ ସାନ ବାଳଗୁଡ଼ିକ ପାହାଡ଼ିଆ ବିଲର ଫସଲ ଉପରେ ପବନ ସଞ୍ଚାରରେ ଲହରି ଖେଳିଲା ପରି ଦିଶିଲା । ରବର୍ଟ ମୁଗ୍ଧ ଦୃଷ୍ଟିରେ ଅନାଇ ରହିଲେ । ବାଳିକା କହିଲା "ମୋତେ ଲଣ୍ଡା କରି ଦେଇଥିଲେ । ଭାଲାଡ଼ୋଲିଡ଼ ଜେଲ ଖାନାରେ ପ୍ରତି ତିନିମାସରେ ଲଣ୍ଡା କରି ଦିଆଯାଏ । ବର୍ତ୍ତମାନ ୩ ମାସରେ ଏତିକି ବଢ଼ିଛି । ମୁଁ ସେ ଟ୍ରେଲଗାଡ଼ିରେ ଥିଲି । ମୋତେ ସେମାନେ ଦକ୍ଷିଣକୁ ନେଇଯାଉ ଥିଲେ । ରେଲଗାଡ଼ି ଧ୍ୱଂସ ପରେ ଅନେକଙ୍କୁ ବନ୍ଦୀ କରାଗଲା କିନ୍ତୁ ମୁଁ ଧରା ନ ପଡ଼ି ଏମାନଙ୍କ ସାଙ୍ଗରେ ଏଠାକୁ ଆସିଅଛି ।"

ଜିପସି କହିଲା "ଆମେ ଫେରିଆସିଲା ବେଳେ ଏହାକୁ ପାହାଡ଼ରେ ଲୁଚିଥିବାର ଦେଖିଲୁ । ଇଏ ଦେଖିବାକୁ ବଡ଼ କୁତ୍ସିତ ବୋଲି ଏହାକୁ ଗୁଡ଼ି ଆସିବାକୁ ଭାବିଥିଲି ।"

ମେରିଆ ପଚାରିଲା "ଆଉ ସେ ଯେଉଁ ବିଦେଶୀ ସୁନ୍ଦରିଆ ଲୋକ ଜଣକ ଥିଲେ ସେ ଗଲେ କୁଆଡ଼େ ?"

'ଗତ ଅପ୍ରେଲ ମାସରେ ମରିଗଲେ ।' ରବର୍ଟ ଜର୍ଡାନ ଉତ୍ତର ଦେଲେ ।

"ଅପ୍ରେଲ ମାସରେ ତ ଟ୍ରେନ ଧ୍ୱଂସ ହୋଇଥିଲା ?"

'ହଁ । ଟ୍ରେନ ଧ୍ୱଂସର ୧୦ ଦିନ ଭିତରେ ସେ ମରିଗଲେ ।'

ବାଳିକା ଖେଦକରି କହିଲେ "ଆହା ବିଚାରି । ହେଲେ ସେ ବଡ଼ ସାହସୀ ଥିଲେ । ତୁମେ କଅଣ ସେହି କାମ କରୁଛ କି ?"

'ହଁ !'

'ଟ୍ରେନ ଧ୍ୱଂସ କରିଛ ?'

'ହଁ, ୩ଟା ଟ୍ରେନ୍ ଧ୍ୱଂସ କରିଛି ।'

'ଏଇଠି ?'

ସେ କହିଲେ "ଇଷ୍ଟ୍ରିମାଦୁରା ଠାରେ । ଏଠାକୁ ଆସିବା ପୂର୍ବରୁ ମୁଁ ସେଇଠାରେ ଥିଲି । ସେଠି ବହୁତ କାମ । ଆମ ଦଳରୁ ଅନେକ ଏଷ୍ଟ୍ରିମାଦୁରାରେ କାମ କରୁଅଛନ୍ତି ।"

'ତେବେ ଏହି ପାହାଡ଼କୁ ବର୍ତ୍ତମାନ କାହିଁକି ଆସିଛ ?'

'ମୁଁ ସେହି ସୁନ୍ଦ୍ରୀ ଲୋକ ଜାଗାରେ ଆସିଛି । ଏ ସ୍ଥାନ ମୋର ପୂର୍ବ ପରିଚିତ ।'

'ଏ ଜାଗାକୁ ଭଲକରି ଜାଣ ?'

'ନା, ସେତେ ଭଲ ନୁହେ ତେବେ ଜାଣିନେବା ବଡ଼ କଥା ନୁହେ । ମୋ ପାଖରେ ମାନଚିତ୍ର ଅଛି ଓ ଜଣେ ଭଲ ପ୍ରଦର୍ଶକ ମଧ୍ୟ ଅଛନ୍ତି । ଶୀଘ୍ର ଜାଣିନେବ ।'

ବାଳିକା ମୁଣ୍ଡ ହଲାଇ କହିଲା "ଏ ବୁଢ଼ା ଲୋକଟି ଖୁବ ଭଲ ।"

ଆନ୍‌ସେଲ୍‌ମୋ ବାଳିକାକୁ ଧନ୍ୟବାଦ ଦେବାରୁ ହଠାତ୍ ରବର୍ଟ ଜର୍ଡାନଙ୍କ ମନେ ପଡ଼ିଗଲା ଯେ ବାଳିକାଟି ଛଡ଼ା ସେଠାରେ ଅନ୍ୟଲୋକ ମଧ୍ୟ ଅଛନ୍ତି । ବାଳିକାକୁ ଗୁହିଁବାରୁ ତାଙ୍କ କଣ୍ଠସ୍ୱର ରୁଦ୍ଧ ହୋଇଗଲା । ସ୍ପେନ୍‌ଦେଶୀ ଭାଷା କହୁଥିବା ଲୋକଙ୍କ ସହିତ ମିଳାମିଶା କରିବା ସମ୍ପର୍କରେ ତାଙ୍କର ଦୁଇଟି ନିୟମ ବନ୍ଧା । ସେ ବୁଝିଲେ

ଯେ ସେଥିରୁ ସେ ଗୋଟିଏ ନିୟମ ଲଙ୍ଘନ କରୁଅଛନ୍ତି । ନିୟମ ହେଉଛି ପୁରୁଷଙ୍କୁ ତମାଖୁ ଦେବ, କିନ୍ତୁ ସ୍ତ୍ରୀ ଲୋକଙ୍କ ସହିତ ସମ୍ପର୍କ ରଖିବ ନାହିଁ । ହଠାତ୍ ସେ ମନେ କଲେ ନିୟମ ଚୁଲିକୁ ଯାଉ । କେତେ ଛଥା ତ ସେ ନ ମାନି ଚଳି ଆସିଛନ୍ତି । ଏ ନିୟମଟା ଭାଙ୍ଗିଲେ କଅଣ ଭାସିଯିବ !

ସେ ମେରିଆକୁ କହିଲେ "ତୋ ମୁହଁଟି ବଡ଼ ସୁନ୍ଦର । ଥରେ ବାଳ କଟା ହେବା ପୂର୍ବରୁ ଦେଖିଥାନ୍ତି କି ।"

ବାଳିକା କହିଲା "ମାସ ୬ଟାରେ ବାଳ ବଢ଼ି ପୂର୍ବପରି ହୋଇଯିବ ।"

"ଆମେ ତାକୁ ଟ୍ରେନ୍‌ରୁ ଆଣିଲାବେଳେ ଦେଖିଥିଲେ ଘୃଣାରେ ବାନ୍ତିକରି ପକାଇ ଥାଆନ୍ତେ ।"

କଥାଟା ବଦଳାଇବା ପାଇଁ ରବର୍ଟ ଜର୍ଡାନ୍ କହି ଉଠିଲେ "ବର୍ତ୍ତମାନ ତୋତେ କିଏ ରଖିଛି ? ପାବ୍‌ଲୋ ନୁହେ ତ ?"

ମେରିଆ ତାଙ୍କୁ ଅନାଇ ତାଙ୍କ ଆଣ୍ଠୁରେ ଚଟକଣାଟାଏ ମାରି ଠୋ ଠୋ ହସିଲା ।

"ମୁଁ ପାବ୍‌ଲୋର ରକ୍ଷିତା ? ତୁମେ ପାବ୍‌ଲୋକୁ ଦେଖିଅଛ ?"

"ତେବେ ବୋଧହୁଏ ରାଫେଲ୍‌ର ରକ୍ଷିତା—ମୁଁ ତାକୁ ଦେଖିଅଛି ।"

"ନା, ତାହାର ମଧ୍ୟ ନୁହେ ।"

ଗିପସି କହିଲା "ସେ କାହାରି ନୁହେ । ଇଏତ ଗୋଟିଏ ଅଦ୍ଭୁତ ସ୍ତ୍ରୀ ଲୋକ । ସେ କାହାରି ନୁହେ ହେଲେ ଖୁବ୍ ଭଲ ରନ୍ଧାବଢ଼ା କରିପାରେ ।"

ରବର୍ଟ ଜର୍ଡାନ୍ ପଚାରିଲେ "ସତେ କାହାରି ନୁହେ ।"

"ନାହିଁ ଗୋ ନାହିଁ, କାହାରି ନୁହେ । ମୁଁ ରହସ୍ୟ କରୁନାହିଁ କିମ୍ବା ଗମ୍ଭୀର ଭାବେ କହୁନାହିଁ । ସେ ତୁମର ମଧ୍ୟ ନୁହେ ।"

ରବର୍ଟ ଜର୍ଡାନ୍ କହିଲେ "ନା ମୋର ନୁହେ । ସ୍ତ୍ରୀ ଲୋକପାଇଁ ମୋର ଅବସର ନାହିଁ । ଏ କଥା ସତ ।" ଏହା କହିଲାବେଳେ ତାଙ୍କ କଣ୍ଠ ରୁଦ୍ଧହୋଇ ଉଠିଲା ।

ଗିପ୍‌ସି ତାଙ୍କୁ ଚଡ଼େଇବା ପାଇଁ କହିଲା "ସମୟ ନାହିଁ ? ଅଧଘଣ୍ଟା କି ୧୫ ମିନଟ୍ ସୁଦ୍ଧା ନାହିଁ ?"

ରବର୍ଟ ଜର୍ଡାନ ଏ କଥାର ଉତ୍ତର ନ ଦେଇ ମେରିଆକୁ ଅନାଇଲେ । ତାଙ୍କ ମୁହଁରୁ କଥାବାହାରିଲା ନାହିଁ । ମେରିଆ ତାଙ୍କୁ ବରାବର ଅନାଇ ରହିଲା । ସେ ହସି ପକାଇଲା ଏବଂ ଲଜ୍ଜାବୋଧ କଲା । ରବର୍ଟ ଜର୍ଡାନ୍ କହିଲେ "ତୁ ତ ଆରକ୍ତିମ ହୋଇ ଉଠୁଅଛୁ, ଏମିତ କଅଣ ସବୁବେଳେ ହେଉ ?"

"କେବେ ନୁହେ ।"

କିନ୍ତୁ ବର୍ତ୍ତମାନ ତ ହେଉଛୁ ?

"ତେବେ ମୁଁ ଗୁହା ଭିତରକୁ ଯାଉଅଛି ।"

"ନା, ରୁହ ମେରିଆ ।"

ଏଥର ସେ ହସିଲା ନାହିଁ । କହିଲା "ନା, ମୁଁ ଗୁହା ଭିତରକୁ ଯିବ ।" ଏହା କହି ଲୁହା ପରାତଟା ଏବଂ କଣ୍ଟା ଚାମୁଚ ନେଇ ଏକପ୍ରକାର କଦାକାର ଗତିରେ ନଇଁପଡ଼ି ଗୁହା ଭିତରକୁ ପଶିଗଲା । ତେବେ ସେ ଗତିରେ ଥିଲା ଯୌବନର ଉଚ୍ଛ୍ୱାସ ।

ସେ ପଚାରିଲା "ପିଆଲା ତୁମର ଲୋଡ଼ା କି ?" ରବର୍ଟ ଜର୍ଡାନ୍ ସେତେବେଳ-ଯାଏ ତାକୁ ଅନାଇ ଥିବାର ଦେଖି ବାଳିକା ପୁଣି ଲଜ୍ଜାବୋଧ କଲା । କହିଲା "ସେମିତ କର ମୋତେ ଅନାଅ ନାହିଁ, ସେଥିରେ ମୁଁ ବଡ଼ ଅସ୍ୱସ୍ତି ବୋଧ କରୁଅଛି ।"

ଗିପ୍‌ସି ତାକୁ କହିଲା "ପିଆଲା ଏଠି ରଖିଯା ।" ଏହା କହି ସେ ପଥରଖଣ୍ଡରେ ପିଆଲା ବୁଡ଼ାଇ ଏକ ପିଆଲା ମଦ ଜର୍ଡାନ୍‌ଙ୍କୁ ଦେଲା । ଜର୍ଡାନ୍ ଦେଖିଲେ ବାଳିକାଟି ମୁଣ୍ଡ ନଇଁ ଭରି ଲୁହା ପରାତ ଉଠାଇ ଗୁହା ଭିତରକୁ ଚାଲିଗଲା ।

ସେ ଯିବା ପରେ ରବର୍ଟ ଜର୍ଡାନ୍ ସ୍ୱାଭାବିକ ସ୍ୱରରେ କହିଲେ "ଧନ୍ୟବାଦ । ଏଇଟାଇ ଶେଷ ପିଆଲା । ଆଜି ବହୁତ ପିଇଲିଣି ।"

ଗିପ୍‌ସି କହିଲା "ଆମକୁ ଭାଣ୍ଡ ଶେଷ କରିବାକୁ ହେବ । ପ୍ରାୟ ଅଧେ ରହି ଯାଇଛି । ଏହାକୁ ଆମେ ଘୋଡ଼ାରେ ଲଦି ଆଣିଥିଲୁ ।"

ଆନ୍‌ସେଲ୍‌ମୋ କହିଲା "ସେଇଟା ହିଁ ହେଉଛି ପାବ୍‌ଲୋର ଶେଷ ଆକ୍ରମଣ । ଏହା ପରେ ସେ ଆଉ କିଛି କରିନାହିଁ ।"

ରବର୍ଟ ଜର୍ଡ଼ାନ୍ ପଚାରିଲେ "ତୁମେ କେତେ ଜଣ ଅଛ ?"

"ଆମେ ୭ଜଣ ଓ ଦୁଇଜଣ ମହିଳା ।"

"ଦୁଇଜଣ ?"

"ହଁ, ଅନ୍ୟଟି ପାବ୍‌ଲୋର ରକ୍ଷିତା ।"

'ସେ କାହିଁ ?'

'ଗୁହା ଭିତରେ । ବାଳିକାଟି ଭଲ ରାନ୍ଧେ ବୋଲି ମୁଁ ତାଙ୍କୁ ଖୁସି କରିବାକୁ କହିଥିଲି । ପ୍ରକୃତରେ ସେ ପାବ୍‌ଲୋର ରକ୍ଷିତାକୁ ସାମାନ୍ୟ ସାହାଯ୍ୟ କରିଥାଏ ।"

"ସେ ରକ୍ଷିତାଟି କିଭଳି ?"

ଜିପ୍‌ସି ଟିକିଏ ହସି କହିଲା "ବେଳେ ବେଳେ ଅତି ଅସଭ୍ୟ । ତୁମେ ଯଦି ପାବ୍‌ଲୋକୁ କୁତ୍ସିତ ବୋଲି ଭାବୁଥାଅ ତେବେ ଥରେ ଏହି ସ୍ତ୍ରୀ ଲୋକକୁ ଦେଖିଲେ ସେ ଧାରଣା ବଦଳିଯିବ । କିନ୍ତୁ କୁତ୍ସିତ ସତ୍ତ୍ୱେ ସେ ପାବ୍‌ଲୋ ଅପେକ୍ଷା ଶତଗୁଣ ସାହସୀ—ହେଲେ ଅତି ନିଷ୍ଠୁର ।"

ଆନ୍‌ସେଲ୍‌ମୋ କହିଲା "ପ୍ରଥମେ ପ୍ରଥମେ ପାବ୍‌ଲୋ ଖୁବ୍ ସାହସୀ ଥିଲା, ସେତେବେଳେ ତା ପ୍ରକୃତି ମଧ୍ୟ ଗମ୍ଭୀର ଥିଲା ।"

ଜିପ୍‌ସି କହିଲା "ହଇଜାରେ ଯେତେ ମରିଛନ୍ତି ତହୁଁ ଅଧିକ ମରିଛନ୍ତି ପାବ୍‌ଲୋ ହାତରେ । ଆନ୍ଦୋଳନ ଆରମ୍ଭ ବେଳେ ଟାଇଫଏଡ୍ ଜ୍ୱରରେ ମରିବା ଲୋକଙ୍କ ଅପେକ୍ଷା ଅଧିକ ଲୋକ ସେ ହତ୍ୟା କରିଅଛି ।"

ଆନ୍‌ସେଲ୍‌ମୋ କହିଲା "କିନ୍ତୁ ବହୁକାଳ ହେଲା ସେ ଚୁପ୍‌ଚାପ୍ । ତାହାର ସ୍ନାୟୁ-ଦୁର୍ବଳତା ଘଟିଛି । ମରିବାକୁ ତାହାର ମହା ଭୟ ।"

ଜିପ୍‌ସି କହିଲା "ସମ୍ଭବତଃ ଆରମ୍ଭରେ ବହୁଲୋକ ହତ୍ୟା କରି ତାହାର ଏହି ବତୁଷ୍ଣା ଜନ୍ମି ଯାଇଛି । ପ୍ଲେଗ୍‌ରେ ଯେତେ ମରି ନାହାନ୍ତି ତହୁଁ ଅଧିକ ପାବ୍‌ଲୋ ମାରିଅଛି ।"

ଆନ୍‌ସେଲ୍‌ମୋ କହିଲା "ହଁ, ସେଟା ଗୋଟାଏ କାରଣ, ତା' ଉପରକୁ ତା' ହାତରେ ପଇସା ହୋଇଅଛି । ସେ ବହୁତ ମଦ ପିଏ । ବର୍ତ୍ତମାନ ସେ ବଳଫାଇଟର ପରି ଅବସର ନେବାକୁ ଇଚ୍ଛୁକ କିନ୍ତୁ ଛାଡ଼ି ପାରୁନାହିଁ ।"

ଗିପ୍‌ସି କହିଲା "ସେ ଯଦି ଅପର ପକ୍ଷକୁ ଗୁଳିଯାଏ ତେବେ ସେମାନେ ତା ଘୋଡ଼ାତକ ଛଡ଼ାଇ ନେବେ ଏବଂ ତାକୁ ସୈନ୍ୟ ଦଳରେ ମିଶାଇ ନେବେ । ସୈନ୍ୟ ଦଳରେ ଯୋଗ ଦେବାଟା ମୁଁ ମଧ୍ୟ ପସନ୍ଦ କରେନାହିଁ ।"

ଆନ୍‌ସେଲ୍‌ମୋ କହିଲା "ତୁ ଏକା କାହିଁ କୌଣସି ଗିପ୍‌ସି ଏହା ପସନ୍ଦ କରନ୍ତି ନାହିଁ ।"

ଗିପ୍‌ସି କହିଲା "କିଏ ଭଲା ତାହିଁକି କରିବ ? ସୈନ୍ୟରେ ମିଶିବାକୁ କିଏ ଯାଉଛି ? ଆମେ କଅଣ ସୈନ୍ୟରେ ଭର୍ତ୍ତି ହେବାକୁ ବିପ୍ଳବ କରିଥିଲେ ? ମୁଁ ଯୁଦ୍ଧ କରିବାକୁ ପ୍ରସ୍ତୁତ କିନ୍ତୁ ସୈନ୍ୟ ଦଳରେ ଭର୍ତ୍ତି ହେବାକୁ ରାଜି ନୁହେଁ ।"

ରବର୍ଟ ଜର୍ଡାନ୍ ପଚାରିଲେ "ଅନ୍ୟମାନେ କାହାନ୍ତି ?" ମଦ ପ୍ରଭାବରେ ସେ ଟିକିଏ ନିଦ୍ରାଳୁତା ଏବଂ ସ୍ଵସ୍ତି ବୋଧକଲେ । ସେ ବଣର ଘାସ ଉପରେ ଚିତ୍ ହୋଇ ଶୋଇ ଗଛ ଫାଙ୍କରେ ଦେଖିଲେ ଖଣ୍ଡ ଖଣ୍ଡ ମେଘ ଧୀରେ ଧୀରେ ଆକାଶରେ ଭାସି ଯାଉଅଛି ।

ଗିପ୍‌ସି କହିଲା "ଗୁହାରେ ୨ଜଣ ଶୋଇଛନ୍ତି । ଦୁଇଜଣ ଆମ ବନ୍ଧୁକ ସବୁ ବାହାରେ ପହରା ଦେଉଛନ୍ତି । ଜଣେ ତଳେ ପହରା ଦେଉଅଛି । ବୋଧହୁଏ ସମସ୍ତେ ଶୋଇଛନ୍ତି ।"

ରବର୍ଟ ଜର୍ଡାନ୍ କଡ଼ ଲେଉଟାଇ ପଚାରିଲେ "କିଭଳି ବନ୍ଧୁକ ଅଛି ?"

ଗିପସି କହିଲା "ବନ୍ଧୁକର ନାମଟା ଅସାମାନ୍ୟ, ବର୍ତ୍ତମାନ ମନେ ପଡ଼ୁ ନାହିଁ । ଏହା ଏକ ଯାନ୍ତ୍ରିକ ବନ୍ଧୁକ ।

ରବର୍ଟ ଜର୍ଡାନ୍ ମନେ ମନେ ଠିକ୍ କଲେ ବୋଧହୁଏ ସ୍ଵୟଂକ୍ରିୟ ରାଇଫଲ୍ ହେବ । ପଚାରିଲେ "ବନ୍ଧୁକଟାର ଓଜନ କେତେ ?"

"ବହୁତ ଭାରି ହେଲେ ମଧ୍ୟ ଜଣେ ଲୋକ ନିଆଅଣା କରିପାରେ । ଏହାର ୩ଗୋଟି ଭାଙ୍ଗିହୋଇ ପାରିବା ଗୋଡ଼ ମଧ୍ୟ ଅଛି । ଗତ ଓ୍ୱାରର ସାଙ୍ଘାତିକ ସଙ୍ଘର୍ଷରେ ଏହା ପାଇଥିଲୁ । ମଦ ପାଇବା ସଙ୍ଘର୍ଷ ପୂର୍ବରୁ ସେଟା ଘଟିଥିଲା ।"

"ଗୋଳା ବାରୁଦ ଅଛି ! କେତେ ଅଛି ?"

ଗିପ୍‌ସି କହିଲା "ଅସଂଖ୍ୟ । ଗୋଟିଏ ବାକ୍ସ ବୋଝାଇ, ବହୁତ ଭାରି ।

ରବର୍ଟ ଜର୍ଡ଼ାନ୍ ଭାବିଲେ ବୋଧହୁଏ ୫୦୦ ବାଜି ଫୁଟାଇବାର ସରଞ୍ଜାମ । ପଚାରିଲେ "ଆଚ୍ଛା କମର ପଟିରେ ଗୁଳି ଖଞ୍ଜା କି ଗୋଟାଏ ଥାଳାରେ ସଜା ?"

'ବନ୍ଧୁକ ଉପରେ ଥିବା ଗୋଟାଏ ଲୁହା ଟିଣରେ ।'

ରବର୍ଟ ଜର୍ଡ଼ାନ ବୁଝିଲେ ଯେ ସେଟା ଖଣ୍ଡିଏ ଲୁଇସ୍ ଗନ୍ । ସେ ବୁଢ଼ାକୁ ପଚାରିଲେ "ମେସିନଗନ ସମ୍ବନ୍ଧରେ ତୁ କିଛି ଜାଣୁ ?"

ଆନସେଲମୋ କହିଲେ "ନାହିଁ । ଆଉ ତୁମେ" ଜିପସିକୁ ପଚାରିଲେ ।

ଜିପସି ସଗର୍ବରେ କହିଲା " ସେ ବନ୍ଧୁକର ଗୁଳି ଖୁବ୍ ଦ୍ରୁତ ଫୁଟାଇହୁଏ, ନଳୀଟା ତାହାର ଏତେ ଗରମ ହୋଇଯାଏ ଯେ ହାତରେ ଛୁଇଁ ହେବନାହିଁ ।"

ଅବଜ୍ଞାରେ ଆନସେଲମୋ କହିଲା "ସେ କଥା କିଏ ନ ଜାଣେ ।"

ଜିପସି କହିଲା "ହୁଏତ ଜାଣିଥିବେ, କିନ୍ତୁ ସେ ମୋତେ ପଚାରିବାରୁ କହିଲି । ସେ ବନ୍ଧୁକର ଘୋଡ଼ାଆ ଦାବି ରଖିଥିବାଯାଏ ଗୁଳି ଚାଲୁଥିବ । ସାଧାରଣ ବନ୍ଧୁକରେ ଏପରି ହୁଏ ନାହିଁ ।"

ରବର୍ଟ ଜର୍ଡ଼ାନ ଇଂରାଜୀରେ କହିଲେ "କିନ୍ତୁ କାହିଁ କିଛି ଅଟକିଗଲେ, ଗୁଳି ସରିଗଲେ କିମ୍ବା ଅଧିକ ଗରମରେ ନଳୀ ତରଳି ନ ଗଲେ ଗୁଳି ଫୁଟାଇବା ଚାଲୁଥାଏ ?"

ଆନସେଲ ବୁଝି ନପାରି ପଚାରିଲେ "କଅଣ କହିଲ ?"

ରବର୍ଟ ଜର୍ଡ଼ାନ କହିଲେ "ନା କିଛି ନୁହେ, ମୁଁ ଇଂରେଜୀରେ ଭବିଷ୍ୟତ କଥା ଭାବୁଥିଲି ।"

ଇଂରେଜୀରେ ଭବିଷ୍ୟତ ଭାବିବା ବାସ୍ତବିକ ଅସାମାନ୍ୟ କଥା । ତୁମେ ହାତ-ରେଖା ଦେଖିପାର ?" ରବର୍ଟ ଜର୍ଡ଼ାନ୍ ନ ଜାଣନ୍ତି ବୋଲି କହି ପୁଣି ପିଆଲାଏ ମଦ ନେଲେ । ଆନ୍‌ସେଲ୍‌ମୋ କହିଲି "ଯଦି ପ୍ରକୃତରେ ହାତ ଦେଖିପାର ତେବେ ଆଗାମୀ ୩ଦିନ ମଧ୍ୟରେ ମୋର କଅଣ ଘଟିବ ମୋ ହାତ ଦେଖି କହିଲ ।"

ଜିପସି କହିଲି "ପାବ୍‌ଲୋର ରକ୍ଷିତାଟି ହାତ ଦେଖି ଜାଣେ, କିନ୍ତୁ ସେ ଏତେ ଚଢ଼ଚଢ଼ଆ ଏବଂ ଅସଭ୍ୟ ଯେ ସେ ମୋ ହାତ ଦେଖିବ କି ନାହିଁ ମୁଁ ଜାଣେନା ।"

ରବର୍ଟ୍ ଜର୍ଡ଼ାନ୍ ଉଠିବସି ଢୋକେ ମଦ ପିଇଦେଲେ । ତାପରେ କହିଲେ 'ଆଚ୍ଛା, ପାବ୍ଲୋର ରକ୍ଷିତାକୁ ଦେଖିବା ଦରକାର । ସେ ଯଦି ପ୍ରକୃତରେ କେତେ ଖରାପ ତାହା ଆଗେ ଠିକ୍ ହୋଇଯାଉ ।'

'ମୋତେ ସେ ଭାରି ଘୃଣା କରେ, ଏଣୁ ମୁଁ ତାକୁ ଉତ୍ତ୍ୟକ୍ତ କରିବି ନାହିଁ ।' ଗିପ୍‌ସି କହିଲା ।

'କାହିଁକି ?'

'ସେ ମୋତେ ବାଜେଲୋକ ମନେ କରେ ।'

ଆନ୍‌ସେଲମୋ ଝୁଣ୍ଟାଦେଇ କହିଲା 'କେତେ ବଡ଼ ଅନ୍ୟାୟ ।'

'ସେ ପରା ଗିପ୍‌ସି ଜାତିର ବିରୁଦ୍ଧରେ ?'

'ବଡ଼ ଭୁଲ୍ କଥା', ଆନ୍‌ସେଲ୍‌ମୋ କହିଲା ।

ରାଫେଲ୍ କହିଲା 'ତା ଦେହରେ ଗିପ୍‌ସି ରକ୍ତ ରହିଛି । ସେ ଯାହା କହେ, ଜାଣିଶୁଣି କହେ । କିନ୍ତୁ କେହି ବାଡ଼ିରେ ମାଇଲେ ସେ କଥାରେ ମାରିଥାଏ । ତା କଥାଟା ଛୁରିଧାର । କଥାରେ ମଣିଷର ଖୋଲ ଛଡ଼ାଇ ଦିଏ ଏବଂ ତାହାର ଧରଣଟା ନାହିଁ ନଥିବା ଅସଭ୍ୟ ।'

ରବର୍ଟ ଜର୍ଡ଼ାନ୍ ପଚାରିଲେ 'ମେରିଆ ସହିତ ତାହାର ବନିବନା କିଭଳି ?'

'ଭଲ ! ସେ ବାଳିକାଟିକୁ ଭଲପାଏ । କିନ୍ତୁ କେହି ଯଦି ପ୍ରକୃତରେ ବାଳିକା ପ୍ରତି ଆସକ୍ତି ପ୍ରକାଶ କରେ ତେବେ ଆଉ ରକ୍ଷା ନାହିଁ ।'

ଆନ୍‌ସେଲ୍‌ମୋ କହିଲେ "ବାଳିକା ସଙ୍ଗେ ଖୁବ୍ ଭଲ ବ୍ୟବହାର କରେ, ତାହାର ଯତ୍ନ ମଧ୍ୟ ନିଏ ।

ରାଫେଲ୍ କହିବାକୁ ଲାଗିଲା "ଟ୍ରେନ ଧ୍ୱଂସପରେ ଆମେ ଯେତେବେଳେ ବାଳିକାକୁ ପାଇଲୁ ସେତେବେଳେ ତାହାର ଆଚରଣ ଅଦ୍ଭୁତ ଥିଲା । କାହାକୁ କଥା ନ କହି ଦିନମାନ ଖାଲି କାନ୍ଦୁଥିଲା । କେହି ତାକୁ ଛୁଇଁଲେ ଥରଡ଼ାପରି ଥରି ଉଠୁଥିଲା । ଅଳ୍ପଦିନ ହେଲା ସେ ଭଲରେ ଅଛି । ହଁ, ବହୁତ ଭଲରେ ଅଛି । ଆଜିକା କଥାତ ଚମତ୍କାର । ତୁମ ସହିତ ଆଜି କଥା ହେଲାବେଳେ ସେ ଖୁବ୍ ଭଲ ଦେଖା ଯାଉଥିଲା । ଟ୍ରେନ ଧ୍ୱଂସପରେ ଆମ୍ଭେମାନେ ତାକୁ ସେଇଠି ଛାଡ଼ି ଆସିଥାଆନ୍ତୁ । ପ୍ରକୃତରେ ଏପରି କୁତ୍ସିତ ଏବଂ ଅପଦାର୍ଥଟାପାଇଁ ଆମର ବିଳମ୍ବ କରିବା ଉଚିତ ନଥିଲା,

କିନ୍ତୁ ବୁଢ଼ୀ ତା ଅଣ୍ଟାରେ ଦଉଡ଼ିକି ବାନ୍ଧି ତାକୁ ଟାଣିଟାଣି ଟାଣିଟାଣି ଆଣିଲା । ସେ ଆଉ ଗ୍ଭଲି ନପାରିଲେ ବୁଢ଼ୀ ତାକୁ ଦଉଡ଼ି ଅଗରେ ତାନେ ଲେଖା ପିଟୁଥିଲା । ଯେତେବେଳେ ପ୍ରକୃତରେ ଆଉ ସେ ଗ୍ଭଲିପାରିଲା ନାହିଁ, ବୁଢ଼ୀ ତାକୁ ବୋହି ବଡ଼ା ପରି କାନ୍ଧେଇ କରି ଆଣିଲା । ବୁଢ଼ୀ ଥକାଗଲେ ମୁଁ କାନ୍ଧାଏ । ଆମେ ପାହାଡ଼ର ଉଠାଣି ଚଢ଼ୁଥିଲୁ । ସ୍ଥାନେ ଉଚ୍ଚ କଣ୍ଟାଗଛ ଭିତରେ ଆମେ ତାକୁ କାନ୍ଧେଇ କରି ଆଣିଲୁ । ମୁଁ ଯେତେବେଳେ ଆଉ ପାରିଲି ନାହିଁ ସେତେବେଳେ ପାବ୍‌ଲୋ କାନ୍ଧେଇଲା କାରଣ ବୁଢ଼ୀ କଥା ଭାଙ୍ଗିବାକୁ ଆମର ଗ୍ଭରା ନଥିଲା । ବାଳିକାର ଗୋଡ଼ ଦୁଇଟା ଲମ୍ବା ହେଲେ ମଧ୍ୟ ସେ ଭାରି ନଥିଲା । ତା ହାଡ଼ଗୁଡ଼ାକ ହାଲୁକା କିନ୍ତୁ ଯେତେ ହାଲୁକା ହେଲେ ମଧ୍ୟ ଉଠାଣି ଉଠିବା ପୁଣି ନଥାଁ ଜଳାଭୂ ବାଟରେ ଖିଆପିଆ କରିବା ଏବଂ ତା ଉପରକୁ ବୁଢ଼ୀଠାରୁ ଗ୍ଭବୁକ ଖାଇବା ସହଜ ନଥିଲା । ବୁଢ଼ୀ ପାବ୍‌ଲୋର ବନ୍ଧୁକଟା ଧରିଥାଏ । ପାବ୍‌ଲୋ ବାଳିକାକୁ ତଳେ ଥୋଇ ଦେଲେ ବୁଢ଼ୀ ହୁଏତ ଗ୍ଭବୁକ ମାରେ କିମ୍ବା ଗୁଳି କରିବା ଭୟ ଦେଖାଏ । ପାବ୍‌ଲୋ ବୁଢ଼ୀର ବନ୍ଧୁକରେ ଗୁଳି ପୂରେଇ ଦେଇ ପୁଣି ବାଳିକାକୁ କାନ୍ଧେଇ ବାଟ ଗ୍ଭଲେ । ରାଗରେ ଗାଳି ଦେଇ ଦେଇ ଗ୍ଭଲେ । କ୍ରମେ ସନ୍ଧ୍ୟା ହୋଇ ରାତ ମାଡ଼ି ଆସିଲା । ଏତେବେଳେ ଆଉ ଡରଭୟ ରହିଲା ନାହିଁ ଯେହେତୁ ଆମର ଅନୁସରଣ କରିବା ପାଇଁ ଶତ୍ରୁପକ୍ଷର ଘୋଡ଼ସବାର ନଥିଲେ ।"

ଆନ୍‌ସେଲ୍‌ମୋ ବୁଝାଇବାକୁ ଲାଗିଲେ 'ଟ୍ରେନ ଧ୍ୱଂସ କରିବା ଅତ୍ୟନ୍ତ କଠିନ କାମ ହୋଇଥିବ । ମୁଁ ନିଜେ ସେଠାରେ ନଥିଲି । ସେ କାମ କରିଥିଲେ ପାବ୍‌ଲୋର ଦଳ ଓ ଏଲସୋର୍ଡୋର ଦଳ । ତାଙ୍କୁ ଅଳ୍ପ ରାତରେ ଭେଟିବା । ଏହି ପର୍ବତରୁ ଆଉ ଦୁଇଟି ଦଳ ମଧ୍ୟ ଥିଲେ । ମୁଁ ଲାଇନର ଅନ୍ୟ ପାଖକୁ ଗ୍ଭଲି ଯାଇଥିଲି ।'

ଜିପ୍‌ସି କହିଲା 'ଏହା ଛଡ଼ା ସେହି ଅଦ୍ଭୁତ ନାମଧାରୀ ସୁନ୍ଦର ଲୋକଟି ମଧ୍ୟ ଥିଲେ ।'

"କାସ୍‌କିନ୍ ?"

"ହଁ । ଏମିତିଆ ନାମଟା ମୋ ତୁଣ୍ଡରେ ପଡ଼ୁନି ନାହିଁ । ଆମର ଏପରି ଦୁଇଜଣ ଥିଲେ । ତାଙ୍କର ଗୋଟିଏ ମେସିନଗନ୍ ଥିଲା । ସୈନ୍ୟ ବିଭାଗରୁ ସେ ଆସିଥିଲେ । ସେମାନେ ସେହି ଗନ୍‌ଟା ନେଇ ପଳାଇ ପାରିଲେ ନାହିଁ ବୋଲି ତାହା ହରାଇଲେ । ଉକ୍ତ ଗନ୍‌ଟା ଓଜନ ସେହି ବାଳିକାଠୁଁ ବେଶୀ ହେବନାହିଁ । ବୁଢ଼ୀ ସେଠାରେ ଥିଲେ ସେ ଦୁହିଁଙ୍କୁ ମଧ୍ୟ ଆଣି ପାରିଥାନ୍ତା ।" ଟିକିଏ ରହି ସେ ପୁଣି କହିଲେ "ସେହି ବିସ୍ଫୋରଣ ଦୃଶ୍ୟ ଜୀବନରେ ମୁଁ କେବେ ଦେଖି ନଥିଲି । ଟ୍ରେନଟା

ଦୃଢ଼ଭାବରେ ଆସୁଥିଲା । ଆମ୍ଭେମାନେ ଦୂରରୁ ତାହା ଦେଖିଲୁ । ମୁଁ ବର୍ଣ୍ଣନାତୀତ ଭାବରେ ଉତ୍ତେଜିତ ହୋଇ ପଡ଼ିଥିଲି । ଆମ୍ଭେମାନେ ରେଲଗାଡ଼ିର ଧୂଆଁ ଏବଂ ଘୁଙ୍ଗା ଶୁଣି ପାରିଲୁ । କ୍ରମେ ଭୟଭୀତ୍ ଶବ୍ଦଟା ଅଧିକ ହେଲା । ବିସ୍ଫୋରଣ ହେଲା ବେଳେ ଇଞ୍ଜିନର ଆଗଚକ ଉପରକୁ ଉଠିଗଲା । ମନେହେଲା ସମଗ୍ର ଭୂମି ଯେପରି ଖଣ୍ଡିଆ ଭୂତ କାଳିଆ ମେଘ ପରି ଉପରକୁ ଉଠିଯାଉଛି । ଇଞ୍ଜିନର ଗର୍ଜନ କାନଅତଡ଼ା ପକାଇଦେଲା । ଗୋଡ଼ମାଟି, କାଠ ପଥର ପ୍ରଭୃତି ଦ୍ଵାରା ଆକାଶ ଛୁଇଁ ହୋଇଗଲା । ଏହା ପରେ ଆହତ ଜନ୍ତୁଟାଏ ପରି କରପଟେଇ ପଡ଼ିଗଲା । ଇଞ୍ଜିନର ଫୁଟନ୍ତା ଜଳୀୟବାଷ୍ପ ନଳୀ ଫାଟିଯାଇ ବାଷ୍ପରେ ସବୁ ଧଳା ହୋଇଗଲା । ସେତେବେଳକୁ ଅନ୍ୟ ବିସ୍ଫୋରଣ ଥମି ଆସିଥାଏ ।" ଗିପ୍‌ସି ହାତ ମୁଠା କରି, ବୁଢ଼ା ଆଙ୍ଗୁଠି ଉପରକୁ ଟେକି ଏକ କଳ୍ପିତ ମେସିନଗନ୍ ଧରଣରେ ଆନନ୍ଦରେ ଟାଟାଟାଟା ଶବ୍ଦ କଲା । କହିଲା "ଏଣେ ଗନ୍ ଫୁଟା ଲାଗିଛି ଏବଂ ଲୋକଗୁଡ଼ାକ ପଟାପଟ ଟଳି ପଡ଼ୁଛନ୍ତି । ପ୍ରବଳ ଉତ୍ତେଜନାରେ ମୁଁ ମେସିନ୍‌ଗନ୍‌ରେ ହାତଦେଇ ଦେଖିଲି ତାହା ନିଆଁ ଭଳି ଗରମ । ଠିକ୍ ଏତିକିବେଳେ ବୁଢ଼ୀ ମୋ ଗାଲରେ ଚଟକଣାଏ ବସାଇ କହିଲା 'ଆରେ ଓଲୁ, ଗୁଳିଚଳା ନଚେତ୍ ମୁଁ ତୋ ମୁଣ୍ଡ ଉଡ଼ାଇ ଦେବି ।' ମୁଁ ବାଧ ହୋଇ ଗନ୍ ଚଳାଇଲି କିନ୍ତୁ ଗନ୍‌କୁ ଦୃଢ଼ ଭାବରେ ଧରିବା ବଡ଼ କଷ୍ଟ ସାଧ ଥିଲା । ସୈନ୍ୟମାନେ ପାହାଡ଼ ଚଢ଼ି ପଳାଉଥିଲେ । ପରେ ରେଲଗାଡ଼ିରେ କଅଣ ମିଳିବ ଦେଖିବା ପାଇଁ ଆମ୍ଭେମାନେ ଗାଡ଼ି ପାଖକୁ ଗଲୁ । ଜଣେ ଅଫିସର ପିସ୍ତଲ ଦେଖାଇ କେତେକ ସୈନ୍ୟମାନଙ୍କୁ ଅମ ପାଖକୁ ଫେରାଇଆଣିଲା । ସେ ପିସ୍ତଲ ଦେଖାଇ ସୈନ୍ୟମାନଙ୍କୁ ଧମକାଉଥିଲା । ଆମେ ସମସ୍ତେ ସେହି ଅଫିସରଙ୍କୁ ଗୁଳି ଚଳାଇଲୁ କିନ୍ତୁ କାହାରି ଗୋଲି ତାଙ୍କ ଦେହରେ ବାଜିଲା ନାହିଁ । ଏହାପରେ କେତେଜଣ ସୈନିକ ମାଟିରେ ଶୋଇପଡ଼ି ବନ୍ଧୁକ ଫୁଟାଇଲେ । ଅଫିସର ଜଣକ ତାଙ୍କ ପଛରେ ଯା ଆସ କରୁଥାନ୍ତି । ତଥାପି ଆମ୍ଭେମାନେ ତାଙ୍କୁ ମାରି ପାରିଲୁ ନାହିଁ ।" ରେଲଗାଡ଼ିଟା ଏପରି ଭାବରେ ପଡ଼ିଥିଲା ଯେ ଆମେ ତାଙ୍କ ଉପରେ ମେସିନଗନ୍ ମଧ୍ୟ ଚଳାଇ ପାରିଲୁ ନାହିଁ । ଏହି ଅଫିସର୍ ଜଣକ ନିଜର ଦୁଇଟି ସୈନ୍ୟଙ୍କୁ ଗୁଳି ମାରିଲେ ତଥାପି ସେମାନେ ଉଠିଲେ ନାହିଁ । ସେ ତାଙ୍କୁ ବହୁତ ଗାଳି ମଧ୍ୟ ଦେଉଥାନ୍ତି । ଶେଷକୁ ୨ ଜଣ ୩ଜଣ ହୋଇ ସେମାନେ ଉଠି ଆମ ଆଡ଼କୁ ଓ ରେଲ ଆଡ଼କୁ ଧାଇଁଲେ । ଏହା ପରେ ମାଟିରେ ଶୋଇପଡ଼ି ଗୁଳି ଚଳାଇଲେ । ସେତେବେଳେ ମେସିନ୍‌ଗନ୍ ଫୁଟୁଥିବା ଅବସ୍ଥାରେ ଆମ୍ଭେମାନେ ଚୁଲି ଆସିଲୁ । ଆସିଲାବେଳେ ଟ୍ରେନରୁ ପଳାଇ ଆସିଥିବା ଏହି ବାଳକଟି ଆମ ହାବୁଡ଼ରେ ପଡ଼ିଲା । ସେ ମଧ୍ୟ ଆମ ସହିତ ପଳାଇ ଆସିଲା । ସୈନ୍ୟମାନେ ରାତି ହେଲା ପର୍ଯ୍ୟନ୍ତ ଆମକୁ ଅନୁସରଣ କରିଥିଲେ ।"

ଆନ୍‌ସେଲ୍‌ମୋ କହିଲା 'କାମଟା ବଡ଼ କଠିନ ଏବଂ ଉତ୍ତେଜନାପ୍ରଦ ହୋଇଥିବ ।'

ଜଣେ କିଏ ଗମ୍ଭୀର କଣ୍ଠରେ କହିଲା 'ଆମେ କେବଳ ଏହି ଗୋଟିଏ ଭଲ କାମ କରିଅଛୁଁ ।'

"ତୁମ୍ଭେମାନେ ବର୍ତ୍ତମାନ କଅଣ କରୁଛ ? ତୁମେ ବାଳୁଙ୍ଗା, କାମକୋଡ଼ିଆ, ବେଧୁଆ ପଲ୍ ?"

ରବର୍ଟ ଜର୍ଡାନ୍ ଦେଖିଲେ କଥା କହୁଛି ଜଣେ ୫୦ ବର୍ଷୀୟା ମହିଳା । ସେ ଯେମିତି ଲମ୍ବା ସେମିତି ଚଉଡ଼ା ମୁହାଁଣାଳିଆ । ପିନ୍ଧିଛି ଗୃହୀର କଳା କୁରୁତା ଓ ପାଇଜାମା । ଗୋଡ଼ରେ ଉଲର ମୋଟା ମୋଜା, କଳା ଦଉଡ଼ିତଳା ଜୋତା । ମୁଗୁନି ପଥର ମୂର୍ତ୍ତି ପରି ମୁହଁଟା କଳା । ହାତ ଦୁଇଟା ଦୀର୍ଘ କିନ୍ତୁ ସୁନ୍ଦର । ମୁଣ୍ଡର ଘନକୁଞ୍ଚିତ କେଶ ପଛପଟେ ଜୁଡ଼ା ବନ୍ଧା । ଅନ୍ୟମାନଙ୍କୁ ଭ୍ରୂକ୍ଷେପ ନକରି ଜିପସିକୁ ସେ ପଚାରିଲା 'ଜବାବ ଦିଅ ।'

'ମୁଁ ଏହି ସାଥୀମାନଙ୍କ ସଙ୍ଗେ କଥା ହେଉଥିଲି । ଏ ଜଣକ ଡାଇନାମାଇଟ୍ ମାରିବା ଲୋକ ।'

ପାବଲୋର ରକ୍ଷିତା କହିଲା "ମୁଁ ସେ ସବୁ ଜାଣେ । ଏଠୁ ଯାଇ ଉପରେ ପହରା ଦେଉଥିବା ଆଣ୍ଡ୍ରି ଜାଗାରେ ଜଗ ଏବଂ ତାକୁ ବିଶ୍ରାମ ପାଇଁ ଛାଡ଼ ।"

ଜିପ୍‌ସି କହିଲି 'ହଉ, ଯାଉଛି ।' ରବର୍ଟ ଜର୍ଡାନ୍‌କୁ ଚାହିଁ କହିଲି "ପୁଣି ଖାଇଲାବେଳେ ଦେଖାହେବ ।"

"ଅନ୍ଧାରେ ବି ଖାଇବା କଥା କହନା । ମୁଁ ଗଣି ଦେଖିଛି ତୁ ଆଜି ୩ ଥର ଖାଇ ସାରିଲୁଣି । ବର୍ତ୍ତମାନ ଯାଇ ଆଣ୍ଡ୍ରିକୁ ପଠାଇଦେ ।"

ସେ ରବର୍ଟ ଜର୍ଡାନ୍‌କୁ ଅଭିବାଦନ କରି ହାତ ବଢ଼ାଇ ହସି ହସି ପଚାରିଲା "ତୁମେ କେମିତି ଅଛ ? ସାଧାରଣତନ୍ତ୍ରର ଅନ୍ୟ ସବୁ ଖବର କଅଣ ?"

ରବର୍ଟ ବଳିଷ୍ଠ ଭାବରେ କରମର୍ଦ୍ଦନ କରିସାରି କହିଲେ "ମୋର ଏବଂ ସାଧାରଣତନ୍ତ୍ରର ସବୁ ଖବର ଭଲ ।"

ସେ କହିଲି "ଶୁଣି ଖୁସି ହେଲି । ତୁମେ କଅଣ ଆଉ ଗୋଟିଏ ଟ୍ରେନ୍ ଧ୍ୱଂସ ପାଇଁ ଆସିଛ ?" ସେ ଜର୍ଡାନ ଆଡ଼କୁ ଅନାଇ ମୃଦୁହାସ୍ୟ କଲି । ରବର୍ଟ ଜର୍ଡାନ ଦେଖିଲେ ତାହାର ଆଖି ଦୁଇଟି ସୁନ୍ଦର ଧୂସରିଆ ।

ତାକୁ ସାଙ୍ଗେ ସାଙ୍ଗେ ବିଶ୍ୱାସ କରି ରବର୍ଟ ଜର୍ଡାନ କହିଲେ "ନା ଟ୍ରେନ୍ ନୁହେ, ପୋଲ ଧ୍ୱଂସ ପାଇଁ ।"

ସେ କହିଲା "ନା, ନା-ପୋଲ୍ ଧ୍ୱଂସ ଅନାବଶ୍ୟକ । ବର୍ତ୍ତମାନ ଆମର ଲୋଡ଼ା ହେଲାଣି ଆଉ ଗୋଟିଏ ଟ୍ରେନ୍ ଧରିବା ।"

"ସେଟା ପରେ ହେବ । ପୋଲ ଧ୍ୱଂସ ବହୁତ ଜରୁରି ।"

"ତୁମର ଯେଉଁ ସାଥୀ ଟ୍ରେନ୍ ଧ୍ୱଂସବେଳେ ଆମ ସଙ୍ଗରେ ଥିଲେ ସେ ମରିଯାଇ ଅଛନ୍ତି ବୋଲି ବାଳିକାଟି ମୋତେ କହିଲା ।"

'ହଁ ।'

"କି ଦୁଃଖର କଥା ? ମୁଁ କେବେ ସେପରି ବିସ୍ଫୋରଣ ଦେଖି ନଥିଲି । ସେ ବିଚକ୍ଷଣ ବ୍ୟକ୍ତି ଥିଲେ । ତାଙ୍କ ଉପରେ ମୁଁ ଖୁବ୍ ସନ୍ତୁଷ୍ଟ ହୋଇଥିଲି । ଆଚ୍ଛା, ଆଉ ଗୋଟାଏ ଟ୍ରେନ୍ ଧ୍ୱଂସ କରିବା ବର୍ତ୍ତମାନ କଅଣ ସମ୍ଭବ ନୁହେ ? ବର୍ତ୍ତମାନ ପାହାଡ଼ରେ ବହୁତ ଲୋକ ଅଛନ୍ତି । ଏତେ ଲୋକ ପାଇଁ ଖାଦ୍ୟ ଯୋଗାଡ଼ କରିବା କଷ୍ଟକର ହୋଇ ଉଠିଲାଣି । ଏଠୁ ଚାଲିଯିବା ଭଲ । ଆମ ପାଖରେ ଘୋଡ଼ା ମଧ୍ୟ ଅଛି ।"

"କିନ୍ତୁ ପୋଲଟାକୁ ଉଡ଼ାଇ ଦେବାକୁ ହେବ ।"

"ପୋଲଟା କେଉଁଠି ?"

"ଖୁବ୍ ନିକଟରେ ।"

"ତେବେତ ଖୁବ୍ ଭଲ । ଏଠି ଯେତେ ପୋଲ ଅଛି, ଚାଲ ସବୁତକ ଉଡ଼ାଇ ଦେଇ ଚାଲିଯିବା । ଏ ଜାଗାଟା ମୋତେ ବିରକ୍ତିକର ଲାଗିଲାଣି । ଅଳ୍ପ ସ୍ଥାନରେ ବହୁତ ବେଶୀ ଲୋକ ଜମି ଅଛନ୍ତି । ଏଥିରୁ କିଛି ଲାଭ ମିଳିବ ନାହିଁ । ଏହି ସ୍ଥାଣୁ ଭାବଟା ମୋତେ ନିତାନ୍ତ ଅରୁଚିକର ।" ସେ ଗଛ ଫାଙ୍କରେ ପାବ୍‌ଲୋ ଆସୁଥିବାର ଦେଖି ପଚାରି ଡାକିଲା 'ହେ ମଦୁଆ, ହେ ନିଶାଖୋର ।' ଜର୍ଡାନ ଆଡ଼କୁ ବୁଲିପଡ଼ି ଖୁସିରେ କହିଲେ 'ସେ ଚମଡ଼ା ବୋତଲରେ ମଦ ପୂରାଇ ବଣ ଭିତରେ ଏକା ପିଇବ ବୋଲି ଯାଉଛି । ଦିନମାନ ପିଉଥିଲା । ଏମିତି ଭାବରେ ରହିଲେ ତାହାର ସର୍ବନାଶ ଘଟିବ । ଯୁବକ, ତୁମେ ଆସିବାରୁ ମୋ ମନରେ ଶାନ୍ତି ଫେରିଛି ।' ତତ୍ପରେ ତାଙ୍କର ପିଠି ଥାପୁଡ଼େଇ କହିଲା 'ବାରେ, ତୁମ ଚେହେରାରୁ ଜାଣି ହେବ ନାହିଁ ତୁମର ବୟସ ବେଶୀ ବୋଲି ।' ଏହା କହି ତା କାନ୍ଧରେ ହାତ ରଖି ହାତର ପେଶୀମାନ ଦେଖିଲେ ।

"ମୁଁ ଖୁସି ହେଲି ।"

"ମୁଁ ମଧ୍ୟ ।"

"ତେବେ ଆମେ ପରସ୍ପରକୁ ବୁଝିପାରିବା । ନଅ ପିଅ.ଲାଏ ମଦ ପିଅ ।"

ରବର୍ଟ ଜର୍ଡାନ କହିଲେ "ଆମେ ଢେର ମଦ ପିଇଲୁଣି । ତୁମେ ପିଇବତ ?"

ମହିଳାଟି କହିଲେ "ନା, ମଧ୍ୟାହ୍ନ ଭୋଜନଯାଏ ମୁଁ ଆଉ ପିଇବ ନାହିଁ । ପିଇଲେ ମୋ ଛାତି ପୋଡ଼ିବ ।" ସେ ପୁଣି ପାବ୍‌ଲୋକୁ ଦେଖି ଡାକିଲା 'ଆରେ ମଦୁଆ !' ଏହାପରେ ଜର୍ଡାନ୍ ଆଡ଼କୁ ବୁଲିପଡ଼ି କହିଲା 'ସେ ଖୁବ୍ ଭଲ ଲୋକ କିନ୍ତୁ ବର୍ତ୍ତମାନ ନଷ୍ଟପ୍ରାୟ । ଅଉ ଗୋଟିଏ କଥା ଶୁଣ । ସେହି ବାଳିକାସ ମୃନ୍ଦରେ ଖୁବ୍ ସତର୍କ ରହିବ ଏବଂ ଭଲ ବ୍ୟବହାର କରିବ । ମୁଁ ମେରିଆ କଥା କହୁଛି । ବିଚ୍ଛାରି ବଡ଼ ଦୁଃସମୟ ବିତାଇ ଅଛି, ବୁଝିଲ ?'

"ହଁ, ଏକଥା କହିବା ତାତ୍ପର୍ଯ୍ୟ ?"

"ତୁମକୁ ଦେଖିସାରି ଗୁହାକୁ ଫେରିଲାରୁ ମୁଁ ତା ଢଙ୍ଗ ଦେଖିଛି । ସେ ତୁମକୁ ଲକ୍ଷ୍ୟ କରିବା କଥା ମୋ ଦୃଷ୍ଟି ଏଡ଼ାଇ ନାହିଁ ।"

"ମୁଁ ତା ସହିତ ଟିକିଏ ଥଟ୍ଟା କରିଥିଲି ମାତ୍ର ।"

ମହିଳାଟି କହିଲା "ସେ ଅତି ଖରାପ ଅବସ୍ଥାରେ ଥିଲା । ବର୍ତ୍ତମାନ ଟିକେ ଭଲ ଅଛି । ତାହାର ଏଠୁ ଚାଲିଯିବା ଉଚିତ ।"

"ଭଲ କଥା । ତାକୁ ଆନ୍‌ସେଲ୍‌ମୋ ସହିତ ଲାଇନ୍ ଆରପଟକୁ ପଠାଇ ହେବ । ଏ କାମ ଶେଷ ହେଲେ ତୁମେ ଆଉ ଆନ୍‌ସେଲ୍‌ମୋ ତାକୁ ନେଇଯିବ ।"

ରବର୍ଟ ଜର୍ଡାନ୍‌ଙ୍କ କଣ୍ଠସ୍ୱର ବନ୍ଦ ହୋଇଗଲା । ଅଟକେଇ ଅଟକେଇ ସେ କହିଲେ 'ହଁ ସେକଥା କରାଯାଇପାରେ ।'

ମହିଳା କହିଲା 'ହଁ ହଁ । ତୁମେ ସବୁ ପୁରୁଷ କଅଣ ଏକାପରି ?'

"ମୁଁ ତ କିଛି କହିନାହିଁ । ସେ ସୁନ୍ଦରୀ ଏହା ତୁମେ ଜାଣ ?"

"ନା, ସେ ସୁନ୍ଦରୀ ନୁହେ କିନ୍ତୁ ସୁନ୍ଦରୀ ହେବାକୁ ଯାଉଅଛି । ଆମେ ସ୍ତ୍ରୀ ଜାତି ପୁରୁଷଗୁଡ଼ାଙ୍କୁ ଏପରି କରିଅଛୁ ବୋଲି ଲଜ୍ଜିତ ହେବା ଉଚିତ । ମୁଁ ରହସ୍ୟ କରି ପଚାରୁଛି । ସାଧାରଣତଃରେ ତାପରି ବାଳିକାର ଯତ୍ନ ନେବାକୁ କୌଣସି ଘରଟିଏ ମିଳିବ ନାହିଁ ।"

ରବର୍ଟ ଜର୍ଡାନ୍ କହିଲେ "ହଁ ବହୁତ ଭଲ ଜାଗା ମିଳିବ । ଉପକୂଳର ଭାଲେନ୍‌ସିଆ ଏବଂ ଅନ୍ୟ ଜାଗାରେ ମଧ୍ୟ । ସେମାନେ ଖୁବ୍ ଯତ୍ନ ନେବେ । ସେ ପିଲାଙ୍କ ସହିତ କାମ କରିବ । ବହୁତ ଶରଣାର୍ଥୀ ପିଲା ଅଛନ୍ତି ସେମାନେ କାମ ଶିଖାଇ ଦେବେ ।"

ମହିଳାଟି କହିଲେ "ମୁଁ ଏତିକି ଚାହେଁ । ପାବ୍‌ଲୋ ତା ପାଇଁ ବିରକ୍ତି ପ୍ରକାଶ କଲାଣି । ଏହି ବିରକ୍ତି ହିଁ ପାବ୍‌ଲୋକୁ ଧ୍ୱଂସ କରିବ । ବାଳିକାକୁ ଦେଖିଲେ ପାବ୍‌ଲୋ ମୁଣ୍ଡ ବିଗିଡ଼ି ଯାଉଛି । ତାହାର ଚାଲିଯିବା ଭଲ ହେବ ।"

"ଏ କାମ ସରିଗଲେ ଆମେ ତାକୁ ନେଇଯିବା ।"

"ମୁଁ ତୁମକୁ ପୁରୁଣା ପରିଚିତ ବ୍ୟକ୍ତି ଭଳି ବିଶ୍ୱାସ କରେ । ତୁମେ ତାହାପ୍ରତି ସତର୍କ ହେବ ।"

ରବର୍ଟ ଜର୍ଡାନ କହିଲେ "ପାରସ୍ପରିକ ବିଶ୍ୱାସ ଜାତ ହେଲେ ଏହା ହେବା ସ୍ୱାଭାବିକ ।"

ମହିଳାଟି କହିଲି "ହଉ ବସ । ଯାହା ହେବାର ଥିବ ହେବ । ମୁଁ ତୁମଠାରୁ ପ୍ରତିଶ୍ରୁତି ନେଉ ନାହିଁ । ଯଦି ତୁମେ ତାକୁ ଏଠୁ ନ ନେବ ତେବେ ମୁଁ ତୁମଠାରୁ ଏକ ପ୍ରତିଶ୍ରୁତି ଲୋଡ଼ିବ ।"

"ନ ନେଲେ ପ୍ରତିଶ୍ରୁତି କାହିଁକି ?"

"ତୁମେ ଚାଲିଗଲା ପରେ ସେ ଉନ୍ମାଦିନୀ ପରି ହେବ ଏହା ମୁଁ ଚାହେଁନା— ମୁଁ ତାକୁ ଇତିପୂର୍ବେ ପାଗଳ ପରି ହେବାର ବହୁତ ଦେଖିଛି । ଆଉ ଅଧିକ ସହି ପାରିବି ନାହିଁ ।"

ରବର୍ଟ ଜର୍ଡାନ୍ କହିଲେ "ପୋଲ ଧ୍ୱଂସ କାମ ଶେଷ କରି ଆମେମାନେ ତାକୁ ନେଇଯିବୁ । ଅବଶ୍ୟ ଯଦି ଆମ୍ଭେମାନେ ବଞ୍ଚିଥାଉ ।"

"ତୁମେ ଏପରି ଭାବରେ କାହିଁକି କଥା କହୁଛ ? ଏ ଧରଣର କଥା ବଡ଼ ଅଲକ୍ଷଣିଆ ।"

ରବର୍ଟ ଜର୍ଡାନ କହିଲେ 'ମୁଁ ଏହା ପ୍ରତିଶ୍ରୁତି ଛଳରେ କହିଲି । ବିଷଣ୍ଣ ଭଙ୍ଗୀରେ କଥା କହିବା ମୋର ସ୍ୱଭାବ ନୁହେଁ ।'

ମହିଳାଟି କହିଲି 'ତୁମ ହାତ ଦେଖାଇଲ ?' ରବର୍ଟ ଜର୍ଡାନ ହାତ ବଢ଼ାଇ ଦେଲେ । ସେ ତାଙ୍କ ହାତ ଫିଟାଇ ନିଜ ହାତରେ ଧରି ବୁଢ଼ା ଆଙ୍ଗୁଳିରେ ପାପୁଲି

ବସିଲ । ଖୁବ୍ ଯତ୍ନରେ ରେଖାମାନ ଦେଖି ହାତ ଛାଡ଼ିଦେଇ ଠିଆ ହେଲ । ଜର୍ଡାନ୍ ମଧ୍ୟ ଠିଆ ହୋଇ ପଚାରିଲେ 'କଅଣ ଦେଖିଲ ? ମୁଁ ତୁମ ସାମୁଦ୍ରିକ ବିଦ୍ୟା ବିଶ୍ୱାସ କରେ ନାହିଁ । ତୁମ କଥାରେ ମୁଁ ଚିନ୍ତିତ ମଧ୍ୟ ହେବ ନାହିଁ ।'

ସେ କହିଲ 'ନା-ମୁଁ କିଛି ଦେଖିଲି ନାହିଁ ।'

'ହଁ ଦେଖିଛ । ମୁଁ ସେ ସବୁ ବିଶ୍ୱାସ କରେନାହିଁ, ତେବେ ମୋର କୌତୁହଳ ହୋଇଅଛି ।'

'ତୁମେ କଅଣ ବିଶ୍ୱାସ କର ?'

'ଅନେକ କିଛି ମାତ୍ର ଏହି ହସ୍ତରେଖା ବିଦ୍ୟାଛଡ଼ା ।'

'କେଉଁଥିରେ ?'

'ମୋ ନିଜ କାମରେ ।'

'ହଁ ମୁଁ ତାହା ଦେଖିଛି ।'

"ଆଉ ଆଉ କଅଣ ଦେଖିଛ ?"

ମହିଳାଟି ଉଚ୍ଚ ସ୍ୱରରେ କହିଲେ 'ମୁଁ ଆଉ କିଛି ଦେଖି ନାହିଁ । ପୋଲଟା ବଡ଼ କଠିଣ କାମ ବୋଲି ତୁମେ କହୁଛ ।'

'ନା, କଠିନ କହୁନାହିଁ, ଖାଲି ଗୁରୁତର ବୋଲି କହୁଅଛି ।'

'କିନ୍ତୁ କଠିନ ମଧ୍ୟ ହୋଇପାରେ ।'

"ହଁ । ମୁଁ ବର୍ତ୍ତମାନ ତାହା ଦେଖିବାକୁ ଯାଉଅଛି । ତୁମର ଏଠାରେ କେତେ ଲୋକ ଅଛନ୍ତି ?"

"ପାଞ୍ଚ ଜଣ କିଛି କାମିକା । ଗିପ୍‌ସିଟାର ମତଲବ ଭଲ ହେଲେ ମଧ୍ୟ ସେଟା ଅପଦାର୍ଥ । ତା ହୃଦୟ ଭଲ । ମାବ୍‌ଲେକୁ ମୁଁ ଆଉ ବିଶ୍ୱାସ କରୁନାହିଁ ।"

"ଆଗ୍ଲୁ ଏଲ୍‌ସୋର୍ଡଙ୍କ ପାଖରେ କେତେ ଜଣ କାମିକା ଲୋକ ଅଛନ୍ତି ?"

"ଖୁବ୍ ସମ୍ଭବ ୮ ଜଣ । ଆମେ ତାଙ୍କୁ ଆଜି ରାତରେ ଦେଖିବା । ସେ ଏଠାକୁ ଆସୁଅଛି । ସେ ଜଣେ କର୍ମକୁଶଳ ବ୍ୟକ୍ତି । ତା ପାଖରେ ମଧ୍ୟ କିଛି ଡାଇନାମାଇଟ୍ ଅଛି । ତେବେ ବେଶି ନୁହେ । ତୁମେ ଆଜି ତା ସଙ୍ଗେ କଥାହେବ ।"

"ତୁମେ କଅଣ ତାକୁ ଡକାଇଛ ?"

"ସେ ଆମର ପ୍ରତିବେଶୀ । ନିତି ରାତିରେ ଆସେ । ସେ ବନ୍ଧୁ ଓ ସାଥି ।"

'ତା ସମ୍ବନ୍ଧରେ ତୁମର ମତ କଅଣ ?'

ସେ ଖୁବ୍ ଭଲ ଲୋକ; କର୍ମକୁଶଳୀ । ରେଲଗାଡ଼ି ଉଡ଼ାଇବାରେ ଖୁମ୍‌ଣି କାମ କରିଥିଲେ ।'

'ଆଉ ଅନ୍ୟ ଦଳମାନଙ୍କରେ କେତେ ଲୋକ ?'

'ସମସ୍ତମତେ ଖବର ଦେଲେ ୫୦ ଜଣ ନିର୍ଭରଯୋଗ୍ୟ ଓଲନ୍ଦାଜ ଜୁଟି ପାରବେ ।'

'କେତେଦୂର ନିର୍ଭରଯୋଗ୍ୟ ?'

'ଅବସ୍ଥାର ଗୁରୁତ୍ୱ ଅନୁପାତରେ ନିର୍ଭର ଯୋଗ୍ୟ ।'

'ବନ୍ଧୁକ ପିସ୍ତୁ କେତେ କାରତୋସ୍ ଅଛି ?'

'ବୋଧହୁଏ ୨୦ଟା । ତେବେ କେତେ ଜଣ ଲୋକ ଆସିବେ ତାହା ଉପରେ ଏହି ସଂଖ୍ୟା ନିର୍ଭର କରେ । ସେମାନେ ଯଦି ଏ କାମପାଇଁ ଆସନ୍ତି ତେବେ ମନେରଖ ଯେ ପୋଲ ଉଡ଼ାଇବା କାମରେ ଟଙ୍କା ନାହିଁ, ଲୁଟ୍‌ତରାଜ କରିବା କଥା ନାହିଁ ଏବଂ ତୁମେ ଯେପରି ଗୁପ୍ତଧରଣରେ କଥା କହୁଛ ସେଥିରୁ ବିପଦ ଥିବା ସୁସ୍ପଷ୍ଟ । ଏହାପରେ ଏହି ପର୍ବତ ଛାଡ଼ି ପଳାଇବାକୁ ହେବ । ଏଥିପାଇଁ ପୋଲ ଧ୍ୱଂସ କରିବା କଥା ଅନେକେ ବାଧା ଦେବେ ।'

'ଏହା ପରିଷ୍କାର ।'

'ହଁ । ଏଥିପାଇଁ ଏ ସମ୍ବନ୍ଧରେ କୌଣସି ଅନାବଶ୍ୟକ କଥା କହିବାଅନୁଚିତ ।'

"ମୁଁ ସେଥିରେ ରାଜି ।"

'ତେବେ ତୁମେ ପୋଲ ଦେଖି ସାରିଲାପରେ ଆଜି ରାତିରେ ଏଲ୍‌ସୋର୍ଡୋଙ୍କ ସହିତ କଥାଭାଷା ହେବ ।'

'ମୁଁ ତେବେ ଆନ୍‌ସେଲ୍‌ମୋ ସଙ୍ଗେ ତଳକୁ ଯାଉଅଛି ।'

ମହିଳାଟି କହିଲେ 'ତେବେ ତାଙ୍କୁ ଜଗାଇ ଦିଅ । ତୁମର ବନ୍ଧୁକ ଦରକାର କି ?'

ସେ ତାଙ୍କୁ ଧନ୍ୟବାଦ ଦେଇ କହିଲେ 'ବନ୍ଧୁକଟାଏ ହାତରେ ଥିବା ଭଲ ମାତ୍ର ମୁଁ ତାହା ବ୍ୟବହାର କରିବ ନାହିଁ । ମୁଁ ଖାଲି ଦେଖିବାକୁ ଯାଉଛି । କୌଣସି

ଗଣ୍ଡଗୋଳ କରିବ ନାହିଁ । ତୁମ କଥାପାଇଁ ଧନ୍ୟବାଦ । ତୁମର କହିବା ଧରଣ ମୁଁ ପସନ୍ଦ କରୁଅଛି ।'

'ମୋର ସବୁ ଖୋଲା କଥା ।'

'ତେବେ ମୋ ହାତରେ କଅଣ ଦେଖିଲ କୁହ ।'

ମହିଳାଟି ମୁଣ୍ଡ ହଲାଇ ନାସ୍ତି କଲେ । କହିଲେ 'ମୁଁ କିଛି ଦେଖି ନାହିଁ । ତୁମେ ବର୍ତ୍ତମାନ ପୋଲଆଡ଼କୁ ଯାଅ । ମୁଁ ତୁମ ମାଲମତାର ତତ୍ତ୍ୱ ନେବି ।'

'ତେବେ ଏହାକୁ ଘୋଡ଼ାଇ ପକାଅ ଯେପରି କେହି ସ୍ପର୍ଶ କରିବ ନାହିଁ । ଗୁହା ଭିତର ଅପେକ୍ଷା ସେଇଠାରେ ତାହା ରହିଲେ ଭଲ ହେବ ।'

ପାବ୍‌ଲୋର ରକ୍ଷିତା କହିଲା 'ଏହା ଢାଙ୍କି ଦିଆଯିବ, କେହି ସ୍ପର୍ଶ କରିବ ନାହିଁ । ତୁମେ ପୋଲ ଦେଖିବାକୁ ଯାଅ ।'

ବୁଢ଼ା କାନ୍ଧରେ ହାତରଖି ରବର୍ଟ ଜର୍ଡାନ୍ ଡାକିଲେ 'ଆନ୍‌ସେଲ୍‌ମୋ !' ବୁଢ଼ା ବାହୁ ଉପରେ ମୁଣ୍ଡ ରଖି ଶୋଇଥିଲା । ଉଠି ବସି କହିଲା—ହଁ ଚାଲଯିବା ।

# ତୃତୀୟ ପରିଚ୍ଛେଦ

ଶେଷ ଦୁଇଶହ ଗଜ ସେମାନେ ଏ ଗଛରୁ ସେ ଗଛ ଆଢୁଆଳରେ ଏବଂ ଗଛି ଗୁଛରେ ଧୀରେ ଧୀରେ ସତର୍କତାର ସହିତ ଅଗ୍ରସର ହେଲେ । ଡଖ ନାସିର ଯୋର୍ଗ ଗଛଟା ପାଖକୁ ପହଞ୍ଚିଲା ବେଳେ ପୋଲଟା ମୋଟେ ୫୦ ଗଜ ଦୂରରେ ଥିଲା । ଅପରାହ୍ଣର ସୂର୍ଯ୍ୟକିରଣ ଧୂସର ପାହାଡ଼ର କାନ୍ଧ ଡେଇଁ ବଣଭିତରେ ପଡ଼ୁଥାଏ । ପୋଲଟା ଦଣ୍ଡର ଉପରେ ଗୋଟାଏ କାଳିଆ ଛାଇ ଖେଳାଇ ଦେଇଥାଏ । ତାହା ଇସ୍ପାତ ନିର୍ମିତ ଏବଂ ଦୁଇ ମୁଣ୍ଡରେ ଦୁଇଟି ସ୍ତମ୍ଭ ଉପରେ ସ୍ଥାପିତ । ଦୁଇ ମୁଣ୍ଡରେ ଦୁଇଜଣ ପ୍ରହରୀଙ୍କ ପାଇଁ ସେଣ୍ଟ୍ରି ଘର । ଦୁଇଖଣ୍ଡ ମୋଟରଗାଡ଼ି ଏକ ସଙ୍ଗରେ ଯିବାଭଳି ପୋଲଟିର ଚଉଡ଼ା । ଏହା ଏକ ସୁଗଭୀର ଦଣ୍ଡି ଦେଇ ପ୍ରବାହିତ ପାର୍ବତ୍ୟ ନଦୀ ପାରହେବା ନିମିତ୍ତ ନଦା ଧାତୁରେ ସୁଦୃଶ୍ୟଭାବେ ନିର୍ମିତ । ଏହି ନଦୀଟିର ଫେନିଳ ଜଳସ୍ରୋତ ପାହାଡ଼ ମୂଳେ ବଡ଼ ନଦୀରେ ମିଶିଅଛି ।

ରବର୍ଟ ଜର୍ଡାନଙ୍କ ଆଖିଉପରେ ସୂର୍ଯ୍ୟକିରଣ ପଡ଼ୁଥିବାରୁ ସେ ପୋଲଟାକୁ ଝାପ୍‌ସା ଭାବରେ ଦେଖୁଥିଲେ । କ୍ରମେ ସୂର୍ଯ୍ୟ ତଳକୁ ଖସିବାରୁ ସେ ଗଛ ଫାଙ୍କରେ ଧୂସର ପାହାଡ଼କୁ ଅନାଇଲେ । ବର୍ତ୍ତମାନ ଖରା ଟାଣ ନ ଥିବାରୁ ପାହାଡ଼ର ସବୁଜ ବୃକ୍ଷାଳି ଫାଙ୍କରେ ଜାଗା ଜାଗା ତୁଷାର ଜମିଥିବା ସେ ଦେଖି ପାରିଲେ ।

ଏହାପରେ ସୂର୍ଯ୍ୟ ବୁଡ଼ିବା ପୂର୍ବରୁ ସେ ଆଲୁଅ ଥାଉ ଥାଉ ପୋଲଟିର ସବୁ ବିଷୟ ଭଲଭାବରେ ପର୍ଯ୍ୟବେକ୍ଷଣ କରିନେଲେ । ଏହାକୁ ଧ୍ୱଂସ କରିବା କଠିଣ ସମସ୍ୟା ନୁହେଁ । ପୋଲକୁ ଦେଖି ଦେଖି ସେ ନିଜ ଛାତି ପକେଟରୁ ଖଣ୍ଡେ ଟିପାଖାତା ବାହାର କରି ସେଥିରେ କେତେଗୁଡ଼ିଏ ରେଖାଟାଣି ନକ୍‌ସା ଅଙ୍କିଲେ । ନକ୍‌ସାରେ

କେଉଁଠି କେଉଁଠି ବଷ୍ଟୋରକ ରଖିଲେ ପୋଲର କନ୍ତ୍ର ଭାଙ୍ଗିପଡ଼ି ତଳେ ପଡ଼ିଯିବ ସେତକ ଚିହ୍ନିତ କଲେ । ପ୍ରାୟ ୬ ଜାଗା ବଷ୍ଟୋରକ ରଖିଲେ ପୋଲଟି ଧୀରେଷ୍ଟିରେ ବୈଜ୍ଞାନିକ ପଦ୍ଧତିରେ ଏବଂ ଯଥାର୍ଥ ଭାବରେ ଧ୍ୱଂସ ହୋଇଯିବ, ସେ ବୁଝିନେଲେ । ୬ଟା ବଷ୍ଟୋରକ ବଦଳରେ ୨ଟା ବଡ଼ ଆକାରର ବଷ୍ଟୋରକ ମଧ୍ୟ ସମାନ କାମ ଦେଇପାରେ । ଦୁଇ ମୁଣ୍ଡରେ ଦୁଇଟା ଝିଅଁ ଏକ ସଙ୍ଗରେ ଫୁଟାଇ ଦେବାକୁ ପଡ଼ିବ । ସେ ଖୁସି ମନରେ ଦ୍ରୁତ ନକ୍‌ସା ପ୍ରସ୍ତୁତ କରି ଭାବିଲେ ବର୍ତ୍ତମାନ ବାଧାଗୁଡ଼ା ତାଙ୍କର କରାୟତ୍ତ ଏବଂ ସେ ସହଜରେ ସମାଧାନ କରିପାରିବେ । ଏହାପରେ ପେନ୍‌ସିଲ୍ ଚମଡ଼ା ଖୋଳରେ ଗେଞ୍ଜିଦେଇ ଟିପାଖାତା ବନ୍ଦ କରି ପକେଟରେ ରଖି ବୋତାମ ଆଣ୍ଟିଦେଲେ ।

ସେ ନକସା ଆଙ୍କୁଥିଲାବେଳେ ଆନ୍‌ହେଲ୍‌ମୋ ରାସ୍ତା, ପୋଲ ଓ ପ୍ରହରୀଘର ଉପରେ ବରାବର ନଜର ରଖିଥିଲା । ପୋଲର ଏତେ ନିକଟକୁ ଆସିବା ନିରାପଦ ନୁହେ ବୋଲି ସେ ଶଙ୍କା କରୁଥିଲା ଏବଂ ନକ୍‌ସା ଅଙ୍କା ଶେଷ ହେବାରୁ ସେ ଶାନ୍ତି ଅନୁଭବ କଲା ।

ରବର୍ଟ ଜର୍ଡାନ୍ ବୋତାମ ଆଣ୍ଟି ଦେବଦାରୁ ଗଛ ପଛରୁ ଅନାଇଥାଆନ୍ତି । ହଠାତ୍ ଆନ୍‌ହେଲ୍‌ମୋ ଅଙ୍ଗୁଳି ସଙ୍କେତ କଲା ।

ଯେଉଁ ପ୍ରହରୀ ଘରଟି ମୁହଁ ତାଙ୍କଆଡ଼କୁ ଥିଲା ସେହିଘରୁ ଜଣେ ପ୍ରହରୀ ବନ୍ଧୁକରେ ସଙ୍ଗୀନ ଲଗାଇ ତାଙ୍କଆଡ଼କୁ ଚାହିଁଥାଏ । ସେ ସିଗ୍ରେଟ ଟାଣୁଥିଲା । ପିନ୍ଧିଥିଲା ଖଣ୍ଡିଏ ବୁଣା ଟୋପି ଏବଂ କମ୍ବଳର ବେଗର ହାତର କୁରୁତା । ୫୦ ଗଜ ଦୂରରୁ ଅବଶ୍ୟ ତାହାର ମୁଖାବୟବ ସ୍ପଷ୍ଟ ଦେଖିବା ସହଜ ନ ଥିଲା । ରବର୍ଟ ଜର୍ଡାନ୍ ନଜର ଦୂରବୀକ୍ଷଣ ଯନ୍ତ୍ର କାଢ଼ି ଆଖି ଉପରେ ହାତ ଛାଞ୍ଚି ଦେଖିବାକୁ ଲାଗିଲେ । ଦୂରବୀକ୍ଷଣ ଯୋଗୁ, ପ୍ରହରୀଘର, ପୋଲ, ପୋଲର ବାଡ଼, ପ୍ରହରୀର ମୁହଁ, ଆଖି, ଗାଲ, ସିଗ୍ରେଟ ମୁଣ୍ଡରେ ଲାଗିଥିବା ପାଉଁଶ ପର୍ଯ୍ୟନ୍ତ ଅତି ନିକଟ ବସ୍ତୁପରି ସୁସ୍ପଷ୍ଟ ଦେଖାଗଲା । ସଙ୍ଗୀନଟା ମଧ୍ୟ ଚକ୍ ଚକ୍ କରୁଥିଲା । ପ୍ରହରୀ ମୁହଁର ଜଣାପଡ଼ିଲା ସେ ଚଷାଭୂଷା । ଠାକଗାଲ, ବଡ଼ ବଡ଼ ହନୁହାଡ଼, ରୁକ୍ଷ ଦାଢ଼ି, ମୋଟା ଭୃଲତା । ତା ହାତ ବଡ଼ । ସେ ବନ୍ଧୁକ ଧରିଥାଏ ଏବଂ ଗୋଡ଼ରେ ପିନ୍ଧିଥାଏ ଭାରି ବୁଟ୍ ଜୋତା । ପ୍ରହରୀ ଘର କାନ୍ଥରେ ଗୋଟିଏ ଚମଡ଼ାର ଜୀର୍ଣ୍ଣ ମଦ ବୋତଲ ଝୁଲୁଥିଲା । କେତେ ଖଣ୍ଡି ଖବରକାଗଜ ମଧ୍ୟ ବିକ୍ଷିପ୍ତ କିନ୍ତୁ ଟେଲିଫୋନ ନାହିଁ । ହୁଏତ ଘର ଭିତରପଟେ କାହିଁ ଥାଇପାରେ କିନ୍ତୁ ସେଥିପାଇଁ ଘରୁ କୌଣସି ତାର ଦଶିଲା ନାହିଁ । ଅବଶ୍ୟ ରାସ୍ତା ଉପରେ ପୋଲ ଦେଇ ଟେଲିଫୋନ ତାର ରହିଛି । ପୁରୁଣା ପେଟ୍ରୋଲ ଟିଣରେ ଉପର

ଅଂଶ କାଟି ନେଇଥିବାର ନିଆଁ କୋଇଲା ଉହ୍ନେଇ ପ୍ରସ୍ତୁତ । ଦୁଇଖଣ୍ଡି ପଥର ଉପରେ ଏଟି ଥୁଆ ମାତ୍ର ନିଆଁ ନଥିଲା । ଧୂଆଁରେ କଳା ପଡ଼ିଥିବା ଅଳ୍ପ କେତୋଟି ଖାଲି ଟିଣ ଏହି ଉହ୍ନେଇ ପାଖରେ ପଡ଼ିଥିଲା ।

ଆନ୍‌ସେଲ୍‌ମୋ ମାଟିରେ ଶୋଇ ପଡ଼ିଥିଲା । ରବର୍ଟ ଜର୍ଡ଼ାନ୍ ତା ହାତକୁ ଦୂରବୀକ୍ଷଣ ଯନ୍ତ୍ରଟି ବଢ଼ାଇ ଦେବାରୁ ସେ ମୁଣ୍ଡ ହଲାଇ ମୁଣ୍ଡ ଉପରେ ଅଙ୍ଗୁଳି ଟିପିଲା ।

ଓଠ ନ ହଲାଇ ସେ ମୁହଁରେ ସଙ୍କେତ ଦେଲା ଯେ ସେ ପ୍ରହରୀକୁ ଦେଖିଅଛି । ଏହାପରେ ପ୍ରହରୀକୁ ଅନାଇ ସେ ତା' ତଣ୍ଟି କାଟିବା ସଙ୍କେତ ମଧ୍ୟ ଦେଲା । ରବର୍ଟ ଜର୍ଡ଼ାନ୍ ସେଥିରେ ମୁଣ୍ଡ ହଲାଇଲେ କିନ୍ତୁ ଆଉ ହସିଲେ ନାହିଁ ।

ଅନ୍ୟ ପ୍ରହରୀ ଘରଟା ମୁହଁ ଅନ୍ୟ ମୁଣ୍ଡ ରାସ୍ତା ଉପରେ ବୋଲି ସେମାନେ ତାହା ଦେଖି ପାରିଲେ ନାହିଁ । ରାସ୍ତାଟି ଖୁବ୍ ମଜବୁତ, ଚଉଡ଼ା ଏବଂ ତେଲାକ୍ତ ଏବଂ ପୋଲର ଦୂର ମୁଣ୍ଡରେ ବାମକୁ ବଙ୍କାଇ ତପୂରେ ଡାହାଣରେ ବାଙ୍କଆଡ଼େ ଅଦୃଶ୍ୟ ହୋଇଅଛି । ଏହି ଜାଗାଟାରେ ପୁରୁଣା ରାସ୍ତାର ଦୁଇ ପାଖର ପଥର କାଟି ରାସ୍ତାକୁ ଚଉଡ଼ା କରା ଯାଇଥିଲା । ପଶ୍ଚିମ ପାଖରେ ଗିରିବର୍ତ୍ମ ଓ ପୋଲ କଡ଼ରେ କଟା ପଥର ଖୁଣ୍ଟିମାନ ରହିଅଛି । ଘାଟିଟି ଏଠାରେ ଅତି ଗଭୀର । ଦୁଇ ପାଖର ପଥର ଢଳା ଭାବରେ କଟା ଏବଂ ଏଇଠାରେ କ୍ଷୁଦ୍ର ନଦୀଟି ପ୍ରଧାନ ଜଳଧାର ସଙ୍ଗେ ମିଶିଅଛି ।

ରବର୍ଟ ଜର୍ଡ଼ାନ୍ ଅନ୍ୟ ପ୍ରହରୀ ଘର କଥା ଆନ୍‌ସେଲ୍‌ମୋକୁ ପଗ୍ଚରିବାରୁ ସେ କହିଲା ବାଙ୍କ ତଳକୁ ୫୦୦ ମିଟର ଦୂରରେ । ପାହାଡ଼ କାଟି ସେଠାରେ ରାସ୍ତା ମରାମତ କଲା । ବାଲିର କୁଡ଼ିଆ ମଧ୍ୟ ଅଛି ।

ଜର୍ଡ଼ାନ୍ ପୁଣି ପଗ୍ଚରିଲେ 'ସେଠି କେତେଲୋକ ଥାନ୍ତି ?'

ସେ ପୁଣି ଦୂରବୀକ୍ଷଣ ଯନ୍ତ୍ରରେ ପ୍ରହରୀକୁ ଅନାଇ ରହିଲେ । ପ୍ରହରୀ ସିଗ୍ରେଟ୍ ପାଉଁଶ ଘରର ପଟା କାନ୍ଥରେ ଘଷି ଦେଇ ଗୋଟାଏ ଚମଡ଼ାର ତମାଖୁ ଥଳି ପକେଟରୁ କାଢ଼ିଲା । ନିଭିଲା ସିଗ୍ରେଟର କାଗଜ ଖଣ୍ଡି ଫିଟାଇ ସେଥିରେ ଥିବା ବଳକା ତମାଖୁ ଥଳିଆରେ ଅଜାଡ଼ି ଦେଲା । ଏହାପରେ ଠିଆହୋଇ ବନ୍ଧୁକକୁ କାନ୍ଥରେ ଡେରିଲା । ହାତ ଗୋଡ଼ ସଳଖି ବନ୍ଧୁକ ଉଠାଇ କାନ୍ଧରେ ଥୋଇ ପୋଲ ଉପରକୁ ଗଲା । ଆନ୍‌ସେଲ୍‌ମୋ ମାଟିରେ ଲେପଟିଗଲା ଏବଂ ରବର୍ଟ ଜର୍ଡ଼ାନ୍ ଦୂରବୀକ୍ଷଣକୁ ପକେଟରେ ପୁରାଇ ଦେବାରୁ ଗଛ ପଛରେ ମୁଣ୍ଡ ଲୁଚ୍ଚାଇଲେ ।

ଆନ୍‌ସେଲ୍‌ମୋ ତାଙ୍କ କାନ ପାଖକୁ ମୁହଁ ନେଇ କହିଲା 'ଗିପ୍‌ସିଠାରୁ ଖବର ପାଇଛୁ ଯେ ଏଠାରେ ୭ଜଣ ସୈନ୍ୟ ଓ ଜଣେ ଜମାଦାର ଅଛନ୍ତି ।'

ରବର୍ଟ ଜର୍ଡାନ୍ କହିଲେ "ଆମେ ଅତି ପାଖକୁ ଆସି ଯାଉଅଛୁଁ । ପ୍ରହରୀଙ୍କ ସ୍ଥିର ହୋଇଗଲେ ଆମେ ଫେରିଯିବା ।"

'ଯାହା ଦେଖିବା ଦରକାର ଦେଖିନେଲ ତ ?'

'ହଁ । ସବୁ ଜାଣିବା କଥା ଜାଣିଗଲି ।'

ସୂର୍ଯ୍ୟ ଅସ୍ତ ହୋଇଥିବାରୁ ଥଣ୍ଡା ଘୋଟି ଆସୁଥିଲା । ସୂର୍ଯ୍ୟାଲୋକ ପାହାଡ଼ ପଛପଟେ କ୍ରମେ କ୍ଷୀଣ ହୋଇ ଉଠିଥାଏ ।

ପ୍ରହରୀ ପୋଲ ଦେଇ ଅନ୍ୟ ମୁଣ୍ଡ ପ୍ରହରୀ ପାଖକୁ ଗଲାବେଳେ ଆନ୍‌ସେଲ୍‌ମୋ ପଚାରିଲେ "ତୁମକୁ କପରି ବୋଧ ହେଉଅଛି ?"

ରବର୍ଟ ଜର୍ଡାନ୍ କହିଲେ "ଖୁବ୍ ଭଲ ।"

ଆନ୍‌ସେଲ୍‌ମୋ କହିଲା "ସୁନ୍ଦର ବନ୍ଧୁ । ଏଥର ଆଉ ଧରା ପଡ଼ିବାର ଆଶଙ୍କା ନାହିଁ ଚାଲିଯିବା ।"

ପୋଲର ଦୂର ମୁଣ୍ଡରେ ଏମାନଙ୍କୁ ପିଠିକରି ପ୍ରହରୀ ଠିଆ ହୋଇଥାଏ । ଦରୀ ଭିତରେ ଟିମା ଉପରେ ପାଣି ବହି ଛଳଛଳ ଧ୍ୱନି ଉଠୁଥାଏ । ଏହାପରେ ଆଉ ଗୋଟାଏ ରକମ ଅବିଚ୍ଛିନ୍ନ ଗଁ ଗଁ ଆବାଜ ଶୁଭିଲା । ପ୍ରହରୀ ହଠାତ ଉପରକୁ ଅନାଇଲା । ସେ ନିଜ ଟୋପିଟାକୁ ପଛକୁ ହଟାଇଦେଲା । ଏମାନେ ମଧ୍ୟ ଉପରକୁ ମୁଣ୍ଡ ଟେକି ଦେଖିଲେ ବହୁତ ଉଚ୍ଚରେ ୩ ଗୋଟି ଜଣିକିଆ ବିମାନ ତ୍ରିଭୁଜାକାରରେ ଉଡ଼ି ଯାଉଅଛି । ଏସବୁ ଦେହରେ ସୂର୍ଯ୍ୟ କିରଣ ରୂପା ପରି ଚକ୍‌ଚକ୍ କରୁଅଛି । ଏ ଗୁଡ଼ିକ ଅସମ୍ଭବ ଦ୍ରୁତ ଗତିରେ ଗବ୍‌ଗବ୍ ଶବ୍ଦକରି ଚାଲିଗଲେ ।

ଆନ୍‌ସେଲ୍‌ମୋ ପଚାରିଲା "କଅଣ ଆମର ?"

ରବର୍ଟ ଜର୍ଡାନ୍ କହିଲେ "ହଁ ମନେ ତ ହେଉଛି । କିନ୍ତୁ ଏତେ ଉଚ୍ଚରୁ କିଛି ଜାଣିବା ସମ୍ଭବ ନୁହେଁ । ହୁଏତ ଦୁଇ ପକ୍ଷରୁ କାହାର ହେଲେ ସାନ୍ଧ୍ୟ ଟହଲଦାରୀ ବିମାନ ହୋଇଥିବ । ତେବେ ଅନୁସରଣକାରୀ ବିମାନ ଗୁଡ଼ିକ ସବୁବେଳେ ଆମ ପକ୍ଷର । ଏହାକୁ ଦେଖି ଲୋକେ ଧୈର୍ଯ୍ୟ ଧରିଥାନ୍ତି । ବୋମାରୁ ବିମାନ ସ୍ୱତନ୍ତ୍ର ।"

ବାସ୍ତବରେ ଆନ୍‌ସେଲ୍‌ମୋ ମଧ୍ୟ ସେଇଆ ଅନୁମାନ କରିଥିଲା । ସେ କହିଲା "ହଁ, ଏ ଗୁଡ଼ିକ ଆମର ମୋସ୍‌କାସ୍ ବିମାନ । ମୁଁ ଏହାକୁ ଚିହ୍ନି ପାରୁଅଛି ।"

ରବର୍ଟ୍ ଜର୍ଡ଼ାନ୍ ଜବାବ ଦେଲେ "ମୁଁ ମଧ୍ୟ ସେଇତା ମନେ କରୁଅଛି ।"

ରବର୍ଟ ଜର୍ଡାନ୍ ଦୂରବୀକ୍ଷଣରେ ଏ ଗୁଡ଼ିକ ଦେଖି ଲହମାକରେ ନିସନ୍ଦେହ ହୋଇ ପାରିଥାନ୍ତେ, ମାତ୍ର ତାହା କରିବା ଉଚିତ ମନେ କଲେ ନାହିଁ । ସେ ଯେଉଁ ପକ୍ଷର ହେଲେ ମଧ୍ୟ ଆଜି ରାତରେ ତାହା ଜାଣିବାରେ କିଛି ଲାଭ ନାହିଁ । ବୁଢ଼ା ଯଦି ସେ ଗୁଡ଼ିକ ନିଜ ପକ୍ଷୀୟ ବୋଲି ବିଶ୍ୱାସ କରୁଅଛି ତେବେ ସେ ବିଶ୍ୱାସ ଭାଙ୍ଗିଦେବା ଦରକାର ନାହିଁ । ଦୃଷ୍ଟି ପଥରୁ ସେ ଗୁଡ଼ିକ ସେଗୋଭିଆ ଆଡ଼େ ଚାଲିଯିବାରୁ ଜଣା-ପଡ଼ିଲାଯେ ତାଙ୍କ ଡେଣାରେ ସବୁଜ ଓ ନାଲିଟୋପା ନାହିଁ କିମ୍ବା ଅତି ତଳକୁ ଡେଣା ଝୁଙ୍କିଥିବା ରୁଷଦେଶର ବୋଇଙ୍ଗ୍ ୩୨ନମ୍ବର ଉଡ଼ାଜାହାଜ ମଧ୍ୟ ନୁହେ । ଯାହାକୁ କି ସ୍ପେନ୍ ଦେଶରେ ରୂପାନ୍ତର କରି ମୋସ୍‌କାସ୍ ନାମ ଦିଆଯାଇଛି । ରଙ୍ଗ ଅବଶ୍ୟ ବାରି ହେଉ ନଥିଲି ତେବେ ଗଠନଟା ଭିନ୍ନ । ପ୍ରକୃତରେ ଏହା ଫ୍ୟାସିଷ୍ଟଦଳୀୟ ବିମାନ । ପହରା କାମସାରି ଫେରୁଥିଲେ । ପ୍ରହରୀ ଜଣକ ସେତେବେଳଯାଏ ପିଠି କରି ଦୂର ମୁଣ୍ଡର ଘର ପାଖରେ ଠିଆ ହୋଇଥିଲା ।

ଚାଲିଯିବା ବୋଲି କହି ରବର୍ଟ ଜର୍ଡ଼ାନ୍ ଉଠାଣି ଚଢ଼ିବାକୁ ଆରମ୍ଭ କଲେ । ଅତି ସନ୍ତର୍ପଣରେ ସେମାନେ ଗଛ ଉହାଡ଼ରେ ଗଲେ । ଶହେ ଗଜ ପଛରେ ଆନ୍‌ସେଲ୍‌ମୋ ଚାଲୁଥାଏ । ପୋଲଠାରୁ ବହୁତ ଦୂରକୁ ଗଲାପରେ ସେ ଥମିଲେ ଏବଂ ପଛରୁ ଆନ୍‌ସେଲ୍‌ମୋ ଆସି ମିଶି ଆଗ ବଢ଼ି ବାଟ କଢ଼ାଇଲା । ସେମାନେ କ୍ରମେ ସେହି ରାତି ନାସି ଦୃଢ଼ ପଦରେ ଆରୋହଣ କଲେ ।

ବୁଢ଼ା ଖୁସିରେ କହି ପକାଇଲା "ଆମର ବିମାନ ବାହିନୀ ଖୁବ୍ ଶକ୍ତିଶାଳୀ ।"

"ହଁ ।"

"ଆମେ ଜିଣିବା ।"

'ହଁ ଆମକୁ ଜିଣିବାକୁ ହେବ ।'

'ହଁ । ଜିଣି ସାରିଲେ ତୁମେ ଶିକାର କରିବାକୁ ଆସିବ ।'

'କି ଶିକାର ?'

'ବାଘ, ଭାଲୁ, ହେଟା, ବଣଛେଳି ।'

'ତୁମେ ବଡ଼ ଶିକାର-ପ୍ରିୟ ।'

'ହଁ । ଅନ୍ୟ କିଛି ମୋର ଏତେ ପ୍ରିୟ ନୁହେ । ଆମ ଗାଁରେ ଶିକାର କରିବା । ତୁମକୁ ଶିକାର ଭଲ ଲାଗେ ନାହିଁକି ?'

ରବର୍ଟ କର୍ଡାନ୍ କହିଲେ 'ନା, ମୁଁ ଜନ୍ତୁ ମାରିବାକୁ ସୁଖପାଏ ନାହିଁ ।'

ବୁଢ଼ା କହିଲା "ମୋ ପକ୍ଷରେ ଠିକ ଓଲଟା । ମୁଁ ମଣିଷ ମାରିବାକୁ ସୁଖ ପାଏ ନାହିଁ ।"

"ସେ କାମ ପାଗଳ ଛଡ଼ା ଆଉ କାହାକୁ ଭଲ ଲାଗି ନପାରେ । କିନ୍ତୁ ଦରକାର ପଡ଼ିଲେ କିମ୍ବା କୌଣସି ଏକ ଆଦର୍ଶ ପାଇଁ ମଣିଷ ମାରିବାକୁ ମୋର କୁଣ୍ଠା ନାହିଁ ।"

'ସେ କଥା ସ୍ୱତନ୍ତ୍ର' ଆନ୍‌ସେଲ୍‌ମୋ କହିଲା । "ଅଭିକା ମୋର ଚଳିଗଲା ନାହିଁ କିନ୍ତୁ ଯେତେବେଳେ ଘର ଖଣ୍ଡିଏ ଥିଲା ସେଥିର କାନ୍ଥରେ ଉପତ୍ୟକାର ଜଙ୍ଗଲରେ ଶିକାର କରିଥିବା ବରାହ ଦାନ୍ତ ଝୁଲାଇଥିଲି । ହେଟା ଚମ ମଧ୍ୟ ରଖିଥିଲି । ଶୀତକାଳରେ ମୁଁ ବରଫରେ ହେଟା ମାରୁଥିଲି । ଥରେ ଗୋଟାଏ ବଡ଼ ହେଟା ମାରିଥିଲି । ନଭେମ୍ବର ମାସରେ ଦିନେ ବଣଭିତରେ ସନ୍ଧ୍ୟାକୁ ଗାଁକୁ ଫେରୁଥିଲାବେଳେ ତାକୁ ମାରିଥିଲି । ୪ଟା ହେଟା ଚମ ମୋ ଘର ମେଜିଆରେ ବିଛାଇ ରଖିଥିଲି । ତା ଉପରେ ଗୁଳିଗୁଳି ଘସରା କରି ଦେଇଥିଲେ ମଧ୍ୟ ସେ ପ୍ରକୃତ ହେଟାଚମ । ସିଆର ପାହାଡ଼ିଆ ଜାଗାରୁ ମାରିଥିବା ବଣୁଆ ଛେଳି ସିଙ୍ଗ ମଧ୍ୟ ମୋ ଘରେ ଥିଲା । ଗୋଟାଏ ଇଗଲ ପକ୍ଷୀ ମଧ୍ୟ ଥିଲା । ଆଭିଲାଠାରେ ଜଣେ କାରିଗର ଦ୍ୱାରା ସେହି ଇଗଲ୍ ଭିତରେ କୁଣ୍ଢା ପୁରାଇ ଡେଣା ମେଲାଇ ଜୀଅନ୍ତା ଦିଶିବା ଭଳି କରାଇଥିଲି । ତା ଆଖି ଦୁଇଟା ମଧ୍ୟ ଜୀଅନ୍ତା ଇଗଲ୍ ପରି ହଳଦିଆ ଥିଲା । ଏହି ସବୁ ଦେଖି ଦେଖି ମୁଁ ଅପାର ଆନନ୍ଦ ଉପଭୋଗ କରୁଥିଲି ।"

କର୍ଡାନ୍ ଖାଲି ସଂକ୍ଷେପରେ ହୁଁ ହୁଁ କହୁଥାନ୍ତି ।

"ଆମ ଗ୍ରାମ ଗୀର୍ଜାର କବାଟରେ ଗୋଟାଏ ଭାଲୁର ପାଦ ଅଣ୍ଟା ଥିଲା । ସେ ଭାଲୁକୁ ମୁଁ ବସନ୍ତ କାଳରେ ପାହାଡ଼ର ବରଫ ଉପରେ ମାରିଥିଲି । ଭାଲୁ ଗୋଟିଏ ପାଦରେ ଗୋଟାଏ କାଠଗର ଲେଉଟାଉଥିଲା ।"

'କେତେ ବର୍ଷ ତଳେ ?' ସେ ପଚାରିଲେ—

"୬ବର୍ଷ ପୂର୍ବେ । ମୁଁ ଯେତେଥର ସେହି ଭାଲୁ ପାଦ ଦେଖିଛି, ପ୍ରତିଥର ବଡ଼ ଆନନ୍ଦ ପାଇଅଛି । ପାଦଟା ମଣିଷ ପଂଝା ପରି କିନ୍ତୁ ନଖ ଗୁଡ଼ାକ ବଡ଼ ଲମ୍ବା । ସେହି ଶୁଖିଲା ନଖକୁ କବାଟ ପଟାରେ କଣ୍ଟା ପିଟି ଲଗାଇ ଦିଆଯାଇଥିଲା ।"

'ଆନନ୍ଦ କାହିଁକି ? ଗର୍ବରେ ?'

'ପାହାଡ଼ ତଳେ ଭାଲୁ ସଙ୍ଗେ ଲଢ଼େଇ କଥା ସ୍ମରଣ କରି ମୁଁ ଗର୍ବ ବୋଧ କରୁଥିଲି । କିନ୍ତୁ ତୁମ ଆମ ପରି ଜଣେ ମଣିଷକୁ ମାରିଲେ କିଛି ଆନନ୍ଦ ମିଳେ ନାହିଁ ।

'ତୁମେ ତ ଆଉ ମଣିଷ ପଂଝାକୁ ଗୀର୍ଜା କବାଟରେ ଲଗାଇ ପାରିବ ନାହିଁ ?'

'ନାନା, ଏପରି ଅସଭ୍ୟତା ଚନ୍ତ୍ୟାତୀତ । ତଥାପି ମଣିଷର ପଂଝା ଭାଲୁ ପାଦ ପରି ।'

ରବର୍ଟ ଜର୍ଡାନ କହିଲେ 'ମଣିଷର ଗ୍ରୁନ୍ଥ ଭାଲୁର ଗ୍ରନ୍ଥ ପରି । ଭାଲୁ ଦେହରୁ ଚମ ଛଡ଼ାଇ ନେଲେ ପେଶୀ ଗୁଡ଼ିକର ମଧ୍ୟ ବହୁତ ସାଦୃଶ୍ୟ ଦେଖାଯିବ ।'

ଆନ୍‌ସେଲ୍‌ମୋ କହିଲା "ହଁ । ଜିପ୍‌ସିମାନେ ବିଶ୍ୱାସ କରନ୍ତି ଯେ ଭାଲୁ ହେଉଛି ମଣିଷର ଭାଇ ।"

ରବର୍ଟ ଜର୍ଡାନ୍ କହିଲେ "ଆମେରିକାର ଇଣ୍ଡିଆନ୍‌ମାନେ ମଧ୍ୟ ଏହି ବିଶ୍ୱାସ କରନ୍ତି । ସେମାନେ ଭାଲୁଟାଏ ମାରିଲେ ତାକୁ କ୍ଷମା ମାଗନ୍ତି । ଭାଲୁ ମୁଣ୍ଡ ସେମାନେ ଗଛ ଅଗରେ ରଖିଦେଇ ପୁଣି ଥରେ କ୍ଷମା ଭିକ୍ଷା କରିଥାନ୍ତି ।"

ଜିପ୍‌ସିମାନେ ଭାଲୁକୁ ମଣିଷର ଭାଇ ବୋଲି ମନେ କରନ୍ତି କାରଣ ଚମତଳେ ଭାଲୁର ଶରୀର ଗଠନ ମଣିଷ ପରି । ଭାଲୁ ମଣିଷ ପରି ମଦ ପିଏ, ସଙ୍ଗୀତ ଶୁଣେ ଏବଂ ନୃତ୍ୟ କରିଥାଏ ।

'ଇଣ୍ଡିଆନ୍‌ମାନେ ମଧ୍ୟ ସେଇଆ ବିଶ୍ୱାସ କରନ୍ତି ।'

'ଇଣ୍ଡିଆନ୍‌ମାନେ କଅଣ ଜିପ୍‌ସି ଜାତିର ?'

'ନା । କିନ୍ତୁ ଭାଲୁ ସମ୍ବନ୍ଧରେ ସେମାନଙ୍କର ଏକାପ୍ରକାର ବିଶ୍ୱାସ ।'

'ସଫା କଥା । ଏହାଛଡ଼ା ଆମୋଦ ପାଇଁ ଭାଲୁ ଚୋରି କରିଥାଏ ବୋଲି ଜିପ୍‌ସି ଭାବନ୍ତି, ଏଣୁ ମଣିଷର ଭାଇ ।'

'ତୋ ଦେହରେ କଣ ଜିପ୍‌ସି ରକ୍ତ ଛିଟା ଅଛି ?'

ନା । କିନ୍ତୁ ମୁଁ ତାଙ୍କ ସହିତ ବହୁତ ମିଳାମିଶା କରିଛି । ବିପ୍ଳବ ପରଠାରୁ ଅଧିକ ମିଶିଅଛି । ପାହାଡ଼ରେ ବହୁତ ଜିପ୍‌ସି ଅଛନ୍ତି । ବେଗର ଜାତିର ମଣିଷ

ମାରିବାକୁ ସେମାନେ ପାପ ବୋଲି ଧରନ୍ତି ନାହିଁ । ମୁହଁରେ ଅସ୍ୱୀକାର କଲେ ମଧ୍ୟ ଏକଥା ସତ ।'

'ମୁର୍‌ମାନଙ୍କ ପରି ?'

'ହଁ । କିନ୍ତୁ ଜିପ୍‌ସିମାନଙ୍କର ଅନେକ ଗୁଡ଼ିଏ ନିୟମ ଅଛି ଯାହାକି ସେମାନେ ସ୍ୱୀକାର କରନ୍ତି ନାହିଁ । ଯୁଦ୍ଧ ଯୋଗୁଁ ବହୁ ଜିପ୍‌ସି ପ୍ରାଚୀନ କାଳପରି ପୁଣି ଖରାପ ହୋଇ ଯାଇଅଛନ୍ତି ।'

'ସେମାନେ ଯୁଦ୍ଧ କାହିଁକି ଲାଗିଛି ବୁଝନ୍ତି ନାହିଁ । କଅଣ ପାଇଁ ଆମେ ଲଢ଼ୁଛୁ ତାହା ମଧ୍ୟ ଜାଣନ୍ତି ନାହିଁ ।'

ଆନ୍‌ସେଲ୍‌ମୋ କହିଲା "ନା । ସେ ଜାଣନ୍ତି ବର୍ତ୍ତମାନ ଯୁଦ୍ଧ ଲାଗିଛି ଏବଂ ପ୍ରାଚୀନ ଯୁଗ ପରି ଶାସ୍ତିର ଭୟ ନଥିବାରୁ ସେମାନେ ମଣିଷ ପୁଣି ମାରିବେ ।

ରବର୍ଟ ଜର୍ଡ଼ାନ୍ ଘନିଷ୍ଠ ବିଶ୍ୱାସରେ ପଚାରିଲେ "ତୁ ମଧ୍ୟ ମଣିଷ ମାରିଛୁ ?"

'ହଁ, ବହୁବାର ମାରିଛି । କିନ୍ତୁ ମନ ଖୁସିରେ ନୁହେ । ମୋ ମତରେ ମଣିଷ ମାରିବା ପାପ । ଏମିତିକି ଫାସିଷ୍ଟଙ୍କୁ ମଧ୍ୟ ହତ୍ୟା କରିବା ପାପ, ଅଥଚ ତାଙ୍କୁ ମାରିବାକୁ ହେବ । ଭାଲୁ ଓ ମଣିଷ ଭିତରେ ବହୁତ ପ୍ରଭେଦ ଅଛି । ଭାଲୁ ସହିତ ମଣିଷର ଭ୍ରାତୃତ୍ୱ କାହାଣି ମୁଁ ବିଶ୍ୱାସ କରେନାହିଁ । ନା, ମୁଁ କୌଣସି କାରଣରେ ସୁଦ୍ଧା ନରହତ୍ୟା ପସନ୍ଦ କରେନାହିଁ ।'

'ତଥାପି ତୁ ମଣିଷ ମାରିଅଛୁ ?'

'ହଁ । ପୁଣି ମଧ୍ୟ ମାରିବି, କିନ୍ତୁ ଯଦି ଏହାପରେ ଜୀଇଁରହେ ତେବେ ଏପରି ଭାବରେ ଜୀବନ ନିର୍ବାହ କରିବି ଯେ କାହାରି ଅନିଷ୍ଟ ହେବନାହିଁ ଏବଂ ମୋ ଦୋଷ କ୍ଷମା ହୋଇଯିବ ।'

'କିଏ କ୍ଷମା ଦେବ ?'

'କିଏ କହିବ ? ଆମେ ତ ଏଠି ଈଶ୍ୱରଙ୍କୁ ମାନୁନା କିମ୍ବା ତାଙ୍କର ପୁତ୍ର ଖ୍ରୀଷ୍ଟ ବା ପୁଣ୍ୟାତ୍ମା କାହାକୁ ବିଶ୍ୱାସ କରୁନା । ସେ ସିନା କ୍ଷମା କରନ୍ତେ ! ଆଉ କିଏ କରିବ ମୁଁ ଜାଣେ ନାହିଁ ।'

'ତେବେ ତୁମର ଆଉ ଈଶ୍ୱର ନାହିଁ ।'

'ନାହିଁ ବାବୁ, ଅଦୌ ନାହିଁ । ସେ ଯଦି ଥାଆନ୍ତେ ତେବେ ମୁଁ ଆଖିରେ ଯେଉଁ ସବୁ କାଣ୍ଡ ଦେଖିଛୁ ତାହା ଘଟିବାକୁ କେବେ ଦେଇ ନଥାନ୍ତେ । ସେମାନେ ତାଙ୍କ ଈଶ୍ୱର ନେଇ ରୁହନ୍ତୁ ।'

'ସେମାନେ ଈଶ୍ୱର ତାଙ୍କର ବୋଲି କହନ୍ତି ।'

'ନିଅନ୍ତୁ, ଆମ ଭିତରେ ସେ ନାହାନ୍ତି । ଧର୍ମ ବିଶ୍ୱାସରେ ବଢ଼ି ଆସିଲି କିନ୍ତୁ ବର୍ତ୍ତମାନ ଦେଖୁଛୁ ମଣିଷ ନିଜେ ନିଜର ଭାର ନେଇଅଛି ।'

'ତେବେତ ତୁ ନିଜକୁ ନିଜ ହତ୍ୟାଦୋଷ ପାଇଁ କ୍ଷମା ଦେବୁ ?'

ଆନ୍‌ସେଲ୍‌ମୋ କହିଲା "ମୁଁ ଏହାହିଁ ବିଶ୍ୱାସ କରେ । ତୁମେ କଥାଟାକୁ ଏପରି ପରିଷ୍କାର ଭାବରେ ବ୍ୟକ୍ତ କରିଅଛଯେ ମୁଁ ସେଥିରେ ବିଶ୍ୱାସ କରୁଅଛି । କିନ୍ତୁ ଈଶ୍ୱର ଥାଆନ୍ତୁ ବା ନ ଥାଆନ୍ତୁ ନରହତ୍ୟା ପାପ ବୋଲି ମୁଁ ବିଚାର କରେ । ଜଣକର ଜୀବନ ନେବା ମୋ ବିଚାରରେ ସାଙ୍ଘାତିକ କାମ । ଦରକାର ପଡ଼ିଲେ ମୁଁ ହତ୍ୟା କରିବି କିନ୍ତୁ ମୁଁ ପାବ୍‌ଲୋ ଜାତିର ଲୋକ ନୁହେଁ ।"

'ଯୁଦ୍ଧରେ ଜିଣିବାକୁ ହେଲେ ଶତ୍ରୁଙ୍କୁ ମାରିବା ଅବଶ୍ୟକ । ଏହା କାଳକାଳକୁ ସତ୍ୟ ।'

ଆନ୍‌ସେଲ୍‌ମୋ କହିଲା "ଯୁଦ୍ଧରେ ମଣିଷ ମାରିବା ଆବଶ୍ୟକ ଏହା ଜଣା କଥା, ତେବେ ମୋର ଧାରଣା ବିଚିତ୍ର ।'

ଅନ୍ଧାରରେ ଦୁହେଁ ଲଗାଲଗି ହୋଇ ଚାଲିଥାନ୍ତି । ସେ ବଡ଼ ଧୀର ଭାବରେ କଥା କହୁଥିଲା ଏବଂ ବେଳେବେଳେ ତଠାଣି ତୁଠୁ ତୁଠୁ ବୁଲିପଡ଼ି କହୁଥିଲା "କୌଣସି ଧର୍ମ ଗୁରୁଙ୍କୁ ମଧ୍ୟ ମାରିବାକୁ ମୁଁ ରାଜି ନୁହେଁ । କୌଣସି ପୁଞ୍ଜିପତିକୁ ମଧ୍ୟ ମୁଁ ହତ୍ୟା କରିବାକୁ ପ୍ରସ୍ତୁତ ନୁହେଁ । ମୁଁ ତାଙ୍କୁ ପ୍ରତିଦିନ କାମରେ ଖଟାଇବାକୁ ଚାହେଁ । ଯେମିତି କାମ ପାହାଡ଼ରେ ଗଛକାଟି କମ୍ପା ବଲରେ ଚାଷ କରି ଆମେ ସାରା ଜୀବନ କଟାଇ ଅଛୁ ଅବିକଳ ସେମିତି କାମ । ତେବେ ସେମାନେ ବୁଝିବେ ମଣିଷର ଜନ୍ମ କଅଣ ପାଇଁ । ଆମରି ପରି ଖାଇପିଇ ପିନ୍ଧି ଶୋଇ ସେମାନେ ଶିକ୍ଷା ପାଇପାରିବେ ଏବଂ ଏସବୁ ଦୁର୍ବିପାକ ସହ୍ୟ କରି ସେମାନେ ରହି ପୁଣି ଭୂମି ଉପରେ ମାଲିକ ହେବେ ।"

ଆନ୍‌ସେଲ୍‌ମୋ କହିଲା—"ତାଙ୍କୁ ମାରିଦେଲେ ତ କଥା ସରିଲା । ସେମାନେ ଶିକ୍ଷା ପାଇବେ କିପରି ? ତାଙ୍କ ଦଳ ତ ତୁମେ ମାରି ନିର୍ବଂଶ କରିପାରିବ ନାହିଁ । ତାଙ୍କ

ପୁଅ ନାତି ଅଧିକ ଘୃଣା ନେଇ ଜନ୍ମିବେ । ଜେଲଖାନା କିଛି ନୁହେଁ । ଜେଲଖାନାରେ କେବଳ ଘୃଣା ଜାତ ହୋଇଥାଏ । ଆମର ଶତ୍ରୁମାନେ ଏତିକି ଶିକ୍ଷା ପାଇବା ଦରକାର ।"

"ତଥାପି ତୁମେ ମଣିଷ ମାରିଛ ?"

"ହଁ, ବହୁବାର ମାରିଛି, ପୁଣି ମାରିବି କିନ୍ତୁ ଖୁସି ମନରେ ମାରିନାହିଁ, ପାପ ବୋଲି ଜାଣି ମାରିଛି ।"

"ତେବେ ସେହି ପ୍ରହରୀକୁ ମାରିବା କଥା ତୁମେ କଅଣ ଥଟ୍ଟାରେ କହୁଥିଲ ?"

"ଥଟ୍ଟାରେ କହୁଥିଲି । ସେ ପ୍ରହରୀକୁ ମୁଁ ମାରିବି । ଆମର କର୍ତ୍ତବ୍ୟଦୃଷ୍ଟିରୁ ତାକୁ ମାରିବା ମୋ ବିବେକରେ ବାଧିବ ନାହିଁ । କିନ୍ତୁ ମନ ଖୁସିରେ ନୁହେଁ ।"

ରବର୍ଟ ଜର୍ଡ଼ାନ୍ କହିଲେ "ଯେଉଁମାନେ ମାରିକରି ଆନନ୍ଦ ପାଆନ୍ତି ତାଙ୍କୁ ସେ କାମଟି ଛାଡ଼ିଦେବା । ଏଠାରେ ୮ ଆଉ ୫ ଏପରି ତେରଜଣ ଲୋକ ହତ୍ୟାକରି ଖୁସି ହେବେ ।"

ଆନ୍‌ସେଲ୍‌ମୋ ଅନ୍ଧାରରେ କହିଲା "ଅନେକ ଅଛନ୍ତି ମଣିଷ ମାରି ଆନନ୍ଦ ପାଇଥାନ୍ତି । ଆମର ସେପରି ମଧ୍ୟ ଅନେକ ଅଛନ୍ତି । ଯୁଦ୍ଧ କରିବା ଲୋକଙ୍କ ଅପେକ୍ଷା ସେମାନଙ୍କର ସଂଖ୍ୟା ବେଶୀ ।"

"ତୁମେ କେବେ ଯୁଦ୍ଧରେ ଯୋଗ ଦେଇଥିଲ ?"

"ନା । ବିପ୍ଳବ ଆରମ୍ଭବେଳେ ଆମ୍ଭେମାନେ ସେଗୋଭିଆରେ ଯୁଦ୍ଧ କରିଥିଲୁ ମାତ୍ର ହାରିଯାଇ ପଳାଇଗଲୁ । ଆମେ କଅଣ କରୁଅଛୁ କିମ୍ବା କେମିତି କରିବା କଥା ତାହା ପ୍ରକୃତରେ ଜାଣି ନଥିଲୁ । ତଦୁପରି ମୋ ପାଖରେ ଗୋଟିଏ ଅଦୂରକ୍ଷେପି ବନ୍ଧୁକ ଓ ଅଳ୍ପ କେତେ କାରତୋସ୍ ଥିଲା କିନ୍ତୁ ସିଭିଲ୍ ଗାର୍ଡମାନଙ୍କର ବଡ଼ ନଳିଆ ବନ୍ଧୁକ ଥିଲା । ଶହେଗଜ ଦୂରରୁ ମୁଁ ମୋ ଗୁଳିରେ ତାଙ୍କୁ ସ୍ପର୍ଶ କରିପାରୁ ନ ଥିଲି ଅଥଚ ସେମାନେ ଆମକୁ ଯଦୃଚ୍ଛାକ୍ରମେ ୩ ଶହ ଗଜ ଦୂରରୁ ପଟାପଟ ମାରି ଶୋଇ ଦେଉଥିଲେ । ଆମକୁ ଛେଳି ମେଣ୍ଢା ପରି ମାରି ପକାଇଲେ । ଅଚ୍ଛା ଏହି ପୋଲ ପାଇଁ ଯୁଦ୍ଧ ହେବ ବୋଲି କଅଣ ତୁମେ ଭାବୁଛ ?"

"ସମ୍ଭାବନା ତ ଅଛି ।"

"ଦୌଡ଼ି ପଳାଇବା ଛଡ଼ା ଅନ୍ୟ ଯୁଦ୍ଧ ମୁଁ ଦେଖି ନାହିଁ । ମୁଁ ଏପରି ଯୁଦ୍ଧରେ ଏ ବୁଢ଼ା ଦଳେ କଭଳି ବ୍ୟବହାର କରିବ ଜାଣି ପାରୁନାହିଁ ।"

ରବର୍ଟ ଜର୍ଡ଼ାନ୍ କହିଲେ "ମୁଁ ତୋ ପାଇଁ ଲଢ଼ିବି ।"

"ତୁମେ କଅଣ ବହୁ ଯୁଦ୍ଧରେ ଯୋଗ ଦେଇଅଛ ?"

"ହଁ ଅନେକ ଯୁଦ୍ଧରେ ।"

"ଏହି ପୋଲ ସମ୍ବନ୍ଧରେ ତୁମର ମତାମତ କଅଣ ?"

"ପୋଲଟା ମୋର ପ୍ରଥମ ଭାବନା । ସେଟା ମୋ କାମ । ପୋଲଟା ନଷ୍ଟ କରିବା ବଡ଼ କଥା ନୁହେ । ତା ପରେ ଅନ୍ୟ ବନ୍ଦୋବସ୍ତ କରିହେବ । କଅଣ ପ୍ରାଥମିକ କାମ ତାହା ଲେଖି ଜଣାଇ ଦିଆଯିବ ।"

"ଏଠାରେ ଖୁବ୍ ଅଳ୍ପ ଲୋକ ପଢ଼ି ଜାଣନ୍ତି ।"

"ସମସ୍ତେ ବୁଝିଲା ଭଳି ଧରଣରେ ତାହା ଲେଖା ହେବ ପୁଣି ସମସ୍ତଙ୍କୁ ଭଲ ବୁଝାଇ ଦିଆଯିବ ।"

ଆନ୍‌ସେଲ୍‌ମୋ କହିଲା "ମୋତେ ଦିଆଯାଇଥିବା କାମ ମୁଁ କରିବ । କିନ୍ତୁ ସେଗୋଭିଆ ଯୁଦ୍ଧ କଥା ମନେକରି ମୁଁ ଭାବୁଛି ଏଠାରେ ଯଦି ଗୁଳି ଚଳାଚଳି ବେଶୀ ଘଟେ ତେବେ ପଳାଇ ନଯିବା ପାଇଁ କି କି ବ୍ୟବସ୍ଥା ଅବଲମ୍ବନ କରିବା ଆବଶ୍ୟକ ସେତକ ଜାଣିରଖିବା ଉଚିତ । ଯୁଦ୍ଧବେଳେ ପଳାଇଯିବା ମୋର ଗୋଟାଏ ପ୍ରକୃତି ।"

ରବର୍ଟ ଜର୍ଡ଼ାନ୍ କହିଲେ "ମୁଁ ତୋ ସାଙ୍ଗରେ ଥିବ ଏବଂ କେତେବେଳେ କଅଣ କରିବା ଉଚିତ କହି ଦେଉଥିବ ।"

ଆନ୍‌ସେଲ୍‌ମୋ କହିଲେ "ତେବେ ତ ଚିନ୍ତା ନାହିଁ । ମୋତେ ଯାହା ବରାଦ ହେବ ମୁଁ କରିବ ।"

"ଆମର କାମ ହେଲା ପୋଲ ଭାଙ୍ଗିବା ଏବଂ ସେଥିପାଇଁ ଯଦି ଯୁଦ୍ଧ ହୁଏ ତାହା

କରିବା ।" ଅନ୍ଧାରରେ ଏତକ କଥା ରବର୍ଟ ଜର୍ଡ଼ାନ୍ କହିଲେ । କଥାଟାର ନାଟକୀୟ ଢଙ୍ଗ ସେ ନିଜେ ଅନୁଭବ କଲେ ଏବଂ ତାଙ୍କ ସ୍ପେନିସ୍ ଭାଷା ମଧ୍ୟ ଭଲ ବୋଲି ଭାବିଲେ ।

ଆନ୍‌ସେଲ୍‌ମୋ କହିଲା "ତେବେ ତ ସବୁଠାରୁ ବଡ଼ କାମ ହେବ ।" ଖୋଲା ପ୍ରାଣରେ ସରଳ ଭାବରେ ସେ କଥାପଦକ କହିଲା । ସେଥିରେ କୌଣସି ଅହମିକା ବା

ଦର୍ପର ଚିହ୍ନ ନଥିଲା କିମ୍ବା ବୃଥା ବନସ୍ପତିର ଅଭିନୟ ନଥିଲା । ଏମିତି ଗୋଟିଏ ସଙ୍ଗୀ ପାଇଥିବାରୁ ରବର୍ଟ ଜର୍ଡ଼ାନ୍ ନିଜକୁ ଭଗ୍ୟବାନ୍ ମନେ କଲେ । ପୋଲଟା ଦେଖି ତାହାର ପ୍ରତିବିମ୍ବ ପରେ ପରିଷ୍କାର ବୁଝି ସେ କାମଟାକୁ ଏପରି ସହଜ ବୋଲି ମନେ କଲେ ଯେ ଗୋଲ୍‌ଜଙ୍କ ଆଦେଶନାମା ତାଙ୍କୁ ଅଡୁଆ ବୋଧ ହେଲା । କାମଟା କରିବା ହେଲା ବଡ଼ କଥା ମାତ୍ର ଆଦେଶ ନ ମାନି କାମଟା କରି ପକାଇଲେ ବୁଢ଼ା ଓ ସେ ଦୁହେଁ ବଡ଼ ଅଡୁଆରେ ପଡ଼ିବେ । ଅଥଚ ଆଦେଶଟା ପାଳିବା ଲୋକ ପକ୍ଷରେ ବଡ଼ ଖରାପ ଥିଲା ।

ସେ ମନେ ମନେ ଭାବିଲେ "ମୋର ଏତେ କଥା ଭାବିବା ଠିକ୍ ନୁହେ । ମୁଁ ହୁକୁମର ଚାକର । ହୁଏତ ଆଦେଶ ନ ମାନି କାମ ତୁଲାଇ ହେବ କିନ୍ତୁ ତଦ୍ୱାରା ଅନ୍ୟ କାହାର କ୍ଷତି ଘଟିପାରେ । ମୁଁ କିମ୍ବା ବୁଢ଼ା ସାମୁହିକ ଦୃଷ୍ଟିରେ ନଗଣ୍ୟ । ଆମେ ଯନ୍ତ୍ରପରି କର୍ତ୍ତବ୍ୟ କରିଯିବା । ଏଥିପାଇଁ ଆବଶ୍ୟକୀୟ ଆଦେଶ ରହିଅଛି । ସେଥିରେ ଆମର କିଛି କର୍ତ୍ତୃତ୍ୱ ନାହିଁ । ପୋଲଟାଏ ରହିଛି, ହୁଏ ତ ସେହି ପୋଲ ଉପରେ ସମଗ୍ର ମାନବ ଜାତିର ଭବିଷ୍ୟତ୍ ନିର୍ଭର କରୁଅଛି । ଏ ଯୁଦ୍ଧରେ ହୁଏତ ସବୁ କିଛି ସମ୍ଭବ ହୋଇପାରେ । ତୁମକୁ ଗୋଟିଏ କାମ ଦିଆଯାଇଛି, ସେତିକି ସମ୍ପନ୍ନ କରିଦିଅ । ଏତେ ଗଣ୍ଡି ମୁଣ୍ଡି ଭାବନା କାହିଁକି ? ଗୋଟାଏ କାମ କରିବା ସହଜ । ଚିନ୍ତାଦିକରୁ କଅଣ ଲାଭ ? ଅନ୍ୟ କିଛି ଭାବିବା ଭଲ ।

ସେ ଏଣିକି ମେରିଆ କଥା ଭାବିବାକୁ ଲାଗିଲେ । ତାହାର ଚମତ୍କାର ରଙ୍ଗ, କେଶ, ଆଖି କିମିତି ଅଛି, ପରେ କେମିତି ହୋଇପାରେ, କେମିତି ହେଲେ ଭଲ ଦିଶିବ । ତା ଶରୀରର ଗଠନ, ତାହାର ଚାଲିବା ଭଙ୍ଗି, ତାହାର ବ୍ରୀଡ଼ାନତ ଦୃଷ୍ଟି, ଆରକ୍ତିମ ଗଣ୍ଡ, ଆଣ୍ଠୁରେ ହାତ ଦେଇ ବସିବାରୀତି, ଏହି ସବୁ ଭାବିନେଇ କହିଲେ "ବର୍ତ୍ତମାନ ଆମକୁ ଏହି ପାହାଡ଼ ଦେଇ ଶିବିରକୁ ଯିବାକୁ ପଡ଼ିବ ।"

ସେମାନେ ପାହାଡ଼ରୁ ଆସିଲାବେଳେ ଅନ୍ଧାରରେ ଜଣେ କେହି ତାଙ୍କୁ ଠିଆ ହେବାକୁ କହି ପଚରାସୁ ପଚାରିଲା । ସେମାନେ ରାଇଫଲ ଉଠାଇବା ଆବାଜ ମଧ୍ୟ ଶୁଣିଲେ ଏବଂ ଗଛର ଗଣ୍ଡିରେ ରାଇଫଲ୍‌ର ଠୋକର ଲାଗିବ ବୁଝିଲେ ।

ବୁଢ଼ା ଆନ୍‌ସେଲ୍‌ମୋ ଜବାବ ଦେଲା "ଆମେ ସାଥୀ ।"

"କାହାର ସାଥୀ ?"

"ପାବ୍‌ଲୋର ସାଥୀ । ତୁମେ କଅଣ ଆମକୁ ଚିହ୍ନି ନାହିଁ ?"

"ହଁ, କିନ୍ତୁ ହୁକୁମ ପାଳିବା କଥା । ଗୁପ୍ତ ଶବ୍ଦ ଜାଣ ।"

"ନା, ଆମେ ତଳୁ ଆସିଲୁ ।"

"ମୁଁ ଜାଣେ । ତୁମେ ପୋଲ ପାଖରୁ ଆସିଲ । ମୁଁ ସବୁ ଜାଣେ କିନ୍ତୁ ଉପରବାଲାଙ୍କ କଡ଼ା ହୁକୁମ୍, ତୁମକୁ ଗୁପ୍ତ ଶବ୍ଦର ଶେଷାଂଶଟି କହିବାକୁ ହେବ ।"

ରବର୍ଟ ଜର୍ଡାନ୍ ପଚାରିଲେ "ପ୍ରଥମ ଅଂଶଟା ତେବେ କଅଣ ?"

ଅନ୍ଧାରରେ ଲୋକଟା ହସି ପକାଇ କହିଲା "ମୁଁ ଭୁଲି ଯାଇଛି । ହଉ ତେବେ ତୁମର ସେହି ଚୁଲି ପାଉଁଶ ଡାଇନାମାଇଟ୍ ନେଇ ଗାତକୁ ଯାଅ ।"

" ଆନ୍‌ସେଲ୍‌ମୋ କହିଲା "ଏହାହିଁ ହେଲା ଗରିଲା ବାହିନୀର ଶୃଙ୍ଖଳା । ହଉ ତୁମ ବନ୍ଧୁକ ଘୋଡ଼ଆ ଖସାଇ ଦିଅ ।"

ଅନ୍ଧାରରୁ ଲୋକଟା କହିଲା 'ମୁଁ ତାହା ଅଙ୍ଗୁଳିଦ୍ୱାରା ଖସାଇ ଦେଇ ସାରିଛି ।' ଲମ୍ବା ନଳୀଆ ବନ୍ଧୁକରେ ସେପରି କଲେ ଚଳିପାରେ କାରଣ ସେଥିରେ ଘୋଡ଼ଆ ଉପରେ କୌଣସି ଗୁପୁଆଣି ନଥାଏ ।

"ମୋର ଏଟା ଲମ୍ବନଳି ବନ୍ଧୁକ । କିନ୍ତୁ ମୋ ବୁଢ଼ା ଆଙ୍ଗୁଳିରେ ମୁଁ ଗୁପୁଆଣି ଅଟକାଇ ରଖିବାକୁ ସକ୍ଷମ । ମୁଁ ସବୁବେଳେ ଏହାହିଁ କରିଥାଏ ।"

ଅନ୍ଧାରରୁ ଆନ୍‌ସେଲ୍‌ମୋ ପଚାରିଲେ "ରାଇଫଲ୍ କେଉଁ ଆଡ଼କୁ ମୁହଁ କରି ଅଛି ?"

ଲୋକଟା କହିଲା 'ତୁମଆଡ଼େ । ଗୁପୁଆଣି ତଳକୁ ଖସାଇଲାବେଳେ ସେମିତି ରଖିଥିଲି ।'

'ତୁମେ ଶିବିରରେ ପହଞ୍ଚି ଜଣେ କାହାକୁ ମୋ ଜାଗା ନେବାକୁ ପଠାଇ ଦେବ । ମୋତେ ନାହିଁ ନଥିବା ଭୋକ ଲାଗୁଛି ଏବଂ ମୁଁ ଗୁପ୍ତ ଶବ୍ଦଟା ଭୁଲି ଯାଇଅଛି ।'

ରବର୍ଟ ଜର୍ଡାନ୍ ପଚାରିଲେ 'ତୋ ନାମ କଅଣ ?'

'ମୋ ନାମ ଅଗଷ୍ଟିନ୍ । ଏ ଜାଗାରେ ରହି ରହି ମୁଁ ଥୋବରା ହୋଇ ଗଲିଣି ।'

ରବର୍ଟ ଜର୍ଡାନ୍ କହିଲେ 'ହଉ ଆମେ ଖବର ପହଞ୍ଚାଇ ଦେବୁ ।' ସ୍ପେନ ଭାଷାରେ ଥୋବରା ଶବ୍ଦକୁ 'ଆବରମେଣ୍ଟୋ' କହନ୍ତି । ଏହି ଶବ୍ଦଟା ଚାଷୀମାନେ ଅନ୍ୟ

କୌଣସି ଭାଷାରେ ବ୍ୟବହାର କରି ପାରିବେ; ନାହିଁ ଅଥଚ ସ୍ପେନ୍ ଦେଶର ସବୁ ଶ୍ରେଣୀର ଲୋକଙ୍କ ତୁଣ୍ଡରେ ଏହା ଏକ ବହୁ ପ୍ରଚଳିତ ଶବ୍ଦ ।

ଅଗଷ୍ଟିନ୍ ନିକଟକୁ ଆସି ରବର୍ଟ ଜର୍ଡାନ୍ ଛାନ୍ଦରେ ହାତ ଥୋଇଲା । ତାପରେ ଚକମକିରୁ ନିଆଁ କାଢ଼ି ସେହି ନିଆଁରେ ତାଙ୍କର ମୁହଁ ଦେଖି କହିଲା 'ତୁମେ ଅନେକଟା ସେହି ଅନ୍ୟ ଜଣକ ପରି ଦିଶୁଛ; ତେବେ କେତେକ ପାର୍ଥକ୍ୟ ମଧ୍ୟ ଅଛି ।' ଏହା ପରେ ନିଆଁ ଲିଭାଇ ରାଇଫଲ୍ ଧରି କହିଲା 'ଆଚ୍ଛା, ପୋଲ ସମ୍ବନ୍ଧରେ ଯାହା ଶୁଣାଯାଉଛି ତାହା କଅଣ ସତ ?'

'ପୋଲ ସମ୍ବନ୍ଧରେ କଅଣ ଶୁଣୁଛ ?'

'ଆମେ ସେହି ସର୍ବନାଶିଆ ପୋଲଟି ଉଡ଼ାଇ ଦେଇ ଏଠାରୁ ଚମ୍ପଟଦେବା ।'

'ମୁଁ ଜାଣେ ନାହିଁ ।'

ଅଗଷ୍ଟିନ୍ କହିଲା 'ତୁମେ ଜାଣନାହିଁ ? କି ବଦମାସି ? ତେବେ ଡାଇନାମାଇଟ ଗୁଡ଼ା କାହାର ?'

'ମୋର ।'

'ଆଉ କଅଣ ପାଇଁ ଆସିଛ ତୁମେ ଜାଣନା ? ମୋତେ ଗୁଲଖଟି ଗପ କୁହ ନାହିଁ ।'

'ହଁ କଅଣ ପାଇଁ ଅସିଛି ମୁଁ ଜାଣେ । ତୁମେ ମଧ୍ୟ ଯଥା ସମୟରେ ଜାଣିବ । ବର୍ତ୍ତମାନ ଆମେ ଶିବିରକୁ ଯାଉଅଛୁ ।' ରବର୍ଟ ଜର୍ଡାନ୍ କହିଲେ ।

ଅଗଷ୍ଟିନ୍ କହିଲା 'ତୁମେ ଗାତକୁ ଯାଅ । ସେଇଠାରେ ତୁମ ତୁଣ୍ଡ ଗଳିମାର । ତୁମର କାମରେ ଆସିବ ଏମିତ କିଛି କଥା ମୋଠାରୁ ଶୁଣିବାକୁ ରାଜି ଅଛ ?

ରବର୍ଟ ଜର୍ଡାନ୍ ଅକଥ୍ୟ ଭାଷାଟାର ଇଙ୍ଗିତ ଦେଇ କହିଲେ 'କହ କୁହ ।' ଅଗଷ୍ଟିନ୍ ପ୍ରତି କଥାରେ ଗୋଟାଏ ଲେଖା ଅଶ୍ଳୀଳ ଶବ୍ଦ ମିଶାଇ ଏମିତ ଭାବରେ କହିଲା ଯେ ରବର୍ଟ ଜର୍ଡାନଙ୍କର ସନ୍ଦେହ ହେଲା ଲୋକଟା କେବେ ଭଲ କଥା କହି ପାରିବ କି ନାହିଁ । ତାଙ୍କ କଥା ଶୁଣି ଅଗଷ୍ଟିନ୍ ଅନ୍ଧାରରେ ଠୋ ଠୋ ହସି ପକାଇ କହିଲା 'ମୋ କଥାର ଧରଣ ଏହିପରି । ହୁଏତ ଏହା ବଡ଼ କୁତ୍ସିତ । ପ୍ରତ୍ୟେକ ଲୋକ ନିଜ ରୁଚି ଅନୁସାରେ କଥା କହିଥାନ୍ତି । ମୋ କଥା ଶୁଣ । ପୋଲପାଇଁ ମୋ ମୁଣ୍ଡ ବଥାଉ ନାହିଁ । ଏ ପୋଲ, ଆଉ ୫୦ଟା ପୋଲ ସଙ୍ଗେ ସମାନ । ଏହି ପାହାଡ଼ରେ ରହି ରହି ମୁଁ ଥୋବରା ହୋଇ ଗଲିଣି । ଦରକାର ପଡ଼ିଲେ ଆମ୍ଭେମାନେ ଚାଲିଯିବୁ ।

ପାହାଡ଼ ଆମକୁ ବାଧା ଦେବନାହିଁ । କିନ୍ତୁ ମୁଁ ଗୋଟାଏ କଥା କହିବ । ତୁମ ବନ୍ଦୋରକକୁ ଖୁବ୍ ସାବଧାନରେ ଜଗି ରଖ ।’

ରବର୍ଟ ଜର୍ଡାନ୍ କହିଲେ ‘ହଉ ଧନ୍ୟବାଦ । ଭୟ କଅଣ ତୁମଆଡ଼ୁ ?’

ଅଗଷ୍ଟିନ କହିଲା ‘ନା, ମୋଠାରୁ ବେଶୀ ଅସଭ୍ୟମାନଙ୍କଠାରୁ ।’

‘ଅତଏବ ।’ ରବର୍ଟ ଜର୍ଡାନ୍ ପଚାରିଲେ ।

ଅଗଷ୍ଟିନ୍ ଏଥର ଗମ୍ଭୀର ହୋଇ କହିଲା ‘ଦେଖୁଛୁ ତୁମେ ସ୍ପେନ୍ ଭାଷା ବୁଝିପାର । ତୁମର ସେହି ସର୍ବନାଶିଆ ବନ୍ଦୋରକୁ ଖୁବ୍ ସାବଧାନ ରହିବ ।’

‘ଧନ୍ୟବାଦ ।’

‘ମୋତେ ଧନ୍ୟବାଦ ଦିଅନା । ତୁମ ଜିନସକୁ ନଜର ରଖ ।’

‘କିଛି କଅଣ ତାହାର ଘଟିଲାଣି ?’

‘ନା, ନତୁବା ମୁଁ ଏପରି ସମୟ ନଷ୍ଟ କରନ୍ତି ନାହିଁ ।’

‘ତଥାପି ଧନ୍ୟବାଦ । ବର୍ତ୍ତମାନ ଆମେ ଶିବିରକୁ ଯିବା ।’

ଅଗଷ୍ଟିନ୍ କହିଲା ‘ହଉ ଯାଅ, କିନ୍ତୁ ‘ଗ୍ରୁଡ଼’ ଶବ୍ଦ ଜାଣିଥିବା ଲୋକ ଜଣେ ପଠାଇ ଦେବ ।’

‘ତୁମ ସଙ୍ଗେ ଶିବିରରେ ଦେଖା ହେବ ତ ?’

‘ହଁ, ବାବୁ, ଖୁବ୍ ଶୀଘ୍ର ଦେଖା ହେବ ।’

ରବର୍ଟ ଜର୍ଡାନ୍ ଯିବାପାଇଁ ଆନ୍‌ସେଲ୍‌ମୋକୁ ଡାକିଲେ ।

ସେମାନେ ବର୍ତ୍ତମାନ ପଡ଼ିଆ କଡ଼େ କଡ଼େ ଯାଉଥିଲେ । ପତଳା କୁହୁଡ଼ି ପଡ଼ିଆଏ । ଦେବଦାରୁ ବଣଭିତରେ ଘାସଗୁଡ଼ିକ ଖୁବ୍ ଛନଛନିଆ ରସାଳ ହୋଇ ଉଠିଥାଏ । ଘାସ ଉପରେ ଜମିଥିବା କାକର ଯୋଗୁଁ ତାଙ୍କର ଦଉଡ଼ିତଳା ଜୋତା ଓଦା ହୋଇ ଯାଇଥାଏ । ଦୂରରୁ ଗଛ ଫାଙ୍କରେ ଗୁମ୍ଫା ମୁହଁରୁ ଆଲୁଅ ଦିଶୁଥାଏ ।

ଆନ୍‌ସେଲ୍‌ମୋ କହିଲା “ଅଗଷ୍ଟିନ୍ ଖୁବ ଭଲଲୋକ । ସେ ଥଟ୍ଟାରେ ଅନେକବେଳେ ଅତି କୁତ୍ସିତ କଥା କହିଥାଏ, ହେଲେ ଲୋକଟାର ପ୍ରକୃତି ଗମ୍ଭୀର ।’

‘ତୁ ତାକୁ କଅଣ ଭଲ କରି ଜାଣୁ ?’

‘ହଁ, ବହୁକାଳରୁ ଜାଣେ । ମୋର ତା ଉପରେ ଭାରି ବିଶ୍ୱାସ ।’

‘ସେ ଯେଉଁ କଥା କହିଲା ?’

'ହଁ, ସେ କଥା ମଧ୍ଯ ମୁଁ ବିଶ୍ୱାସ କରେ । ପାବ୍‌ଲେ ବର୍ତ୍ତମାନ ଖରାପ ଲୋକ ତୁମେ ଦେଖି ପାରୁଥିବ ।'

'ଏପରି ଅବସ୍ଥାରେ ଶ୍ରେଷ୍ଠ ପନ୍ଥା କଅଣ ?'

'ସବୁବେଳେ ଡାଇନାମାଇଟ ଜଗିବା ଏକାନ୍ତ ଆବଶ୍ୟକ ।'

'କିଏ ଜଗିବ ?'

'ତୁମେ, ମୁଁ, ସେ ସ୍ତ୍ରୀଲୋକ ଓ ଅଗଷ୍ଟିନ୍ । ସେହିତ ବିପଦ ଅନୁମାନ କରୁଅଛି ।'

'ତୁ କଅଣ ଭାବୁଛୁ, ଅବସ୍ଥାଟା ଏଠାରେ ଏତେ ବେଶି ଖରାପ ?'

ଆନ୍‌ସେଲମୋ କହିଲା 'ନା । ଏଟା ହେଉଛି ପାବ୍‌ଲେ ଏବଂ ସୋର୍ଡୋର ଗ୍ରାମ । ସେମାନେ ଅତିଶୀଘ୍ର ଖରାପ ହୋଇ ଯାଇଛନ୍ତି । ତାଙ୍କ ଗ୍ରାମରେ ଆମକୁ ତାଙ୍କ ସହିତ ବ୍ୟବସ୍ଥା କରିବାକୁ ଦରକାର । ତେବେ ଯାହା ଆମେ ପାରିବା ତାହା ନିଜେ କରିବା ।'

'ଏଲ୍ ସୋର୍ଡୋ କିପରି ଲୋକ ?'

ଆନ୍‌ସେଲ୍‌ମୋ କହିଲା 'ପାବ୍‌ଲୋ ଯେତିକି ଖରାପ, ସେ ସେତିକି ଭଲ ।'

'ତୁ କଅଣ ଭାବୁଛୁ ସେ ସତକୁ ସତ ଖରାପ ।'

'ସାରା ଦିନ୍ତ୍ରଧରି ମୁଁ ସେ କଥା ଭାବୁଛି । ଏଠିକି ଆସି ଯାହା ଶୁଣିଲି ସେଥିରେ ମୋର ବିଶ୍ୱାସ ଯେ ସେ ସତକୁ ସତ ବିଶ୍ୱାସଘାତକ ।'

'ଏଠାରୁ ଚାଲିଯିବା କିମ୍ବା ଅନ୍ୟ ପୋଲ କଥା କହିବା କି ଅନ୍ୟ ଦଳରୁ ଲୋକ ଯୋଗାଡ଼ କରିବା ଭଲ ହେବ ନାହିଁ ।'

ଆନ୍‌ସେଲ୍‌ମୋ କହିଲା 'ତା ନୁହେ । ଏଟା ହେଲା ତାହାର ଗ୍ରାମ । ତୁମେ ତାକୁ ଲୁଚାଇ କିଛି କରି ପାରିବ ନାହିଁ । ତେବେ ଆମକୁ ଅତି ସତର୍କରେ କାମ କରିବାକୁ ପଡ଼ିବ ।'

# ଚତୁର୍ଥ ପରିଚ୍ଛେଦ

ଦୁହେଁ ଗୁହା ମୁହଁକୁ ଆସିଲେ । ଗୁହା ମୁହଁରେ ଖଣ୍ଡିଏ କମ୍ବଳର ପର୍ଦ୍ଦା ଝୁଲୁଥାଏ ଏବଂ ସେହି ପର୍ଦ୍ଦାର ଫାଙ୍କ ଦେଇ ଭିତରୁ ଆଲୁଅ ଆସୁଥିଲା । ବୋକଗ୍ନି ଦୁଇଟି ଗଛମୂଳେ ରହିଥିଲା । ଖଣ୍ଡିଏ ପାଲ ତା ଉପରେ ଢଙ୍କା ହୋଇଥିଲା । ରବର୍ଟ ଜର୍ଡାନ୍ ଆଣ୍ଠେଇ ପଡ଼ି ହାତ ମାରି ଦେଖିଲେ ଯେ ପାଲଟି ଓଦା ଓ ମଡ଼ମଡ଼ିଆ ହୋଇ ଯାଇଅଛି । ଅନ୍ଧାରରେ ସେ ପାଲ ତଳେ ହାତ ଗଳାଇ ଗୋଟିଏ ବୋଙ୍କଗ୍ନିର ବାହାର ପଟ ଖୋପରୁ ଚମଡ଼ା ଗ୍ରୁଡ଼ିଣି ବୋତଲଟାଏ କାଢ଼ି ତାହା ନିଜ ପକେଟରେ ପୂରାଇଲେ । ଏହାପରେ ସେ ବୋକଗ୍ନିର ଲୁହା କଲେଣି ଧଆ ତାଲା ଫିଟାଇ ଦଉଡ଼ି ଖୋଲିଲେ । ଭିତରକୁ ହାତ ଭରିଡ କରି ସେ ବୋକଗ୍ନିରେ ଥିବା ଜିନଷମାନ ଅଣ୍ଡାଳି ଅଣ୍ଡାଳି ଯାଞ୍ଚ କରିନେଲେ । ଗୋଟିଏ ବୋକଗ୍ନିର ବହୁତ ଭିତରକୁ କେତେ ଗୁଡ଼ିଏ ପୁଟୁଳାଥିଲା । ସେ ଗୁଡ଼ିକ ମଧ୍ୟ ହାତ ମାରି ଦେଖିନେଲେ । ଏହାପରେ ଦଉଡ଼ି ବାନ୍ଧି ବୋଙ୍କଗ୍ନିକୁ ଶୋଇବା ଖୋଳରେ ଗୁଡ଼ାଇ ତାଲା ପକାଇ ଦେଲେ । ପରେ ସେ ଅନ୍ୟ ବୋକଗ୍ନି ଭିତରେ ହାତ ଭରିଡ କରି ସେଥିରେ ଥିବା ବିସ୍ଫୋରକ ବାକ୍ସ, ସିଗର ଥିବା ବାକ୍ସ ଏବଂ ଟୋପି ଦୁଇଟି ତାର ଗୁଡ଼ାଇ ହୋଇଥିବା ଢେଡୋଟି ନଳୀ, ମେସିନଗନ୍‌ର ବିଚ୍ଛିନ୍ନ ଅଂଶ, ଦୁଇ ଡବା ରଞ୍ଜକ ଏବଂ ପାଞ୍ଚଥାକ କାରତୁସ୍ ଟୋପି ପ୍ରଭୃତି ଦେଖିଲେ । ଏଗୁଡ଼ିକ ବୋକଗ୍ନିର ଆଭ୍ୟନ୍ତରୀଣ ପକେଟରେ ଅତି ଯତ୍ନରେ ରକ୍ଷିତ । ଏହାଛଡ଼ା ତମ୍ବା ତାର ସାନପେଣ୍ଡୁଲା ଏବଂ ରବରାବୃତ ଗୋଟିଏ ବିଡ଼ ହାଲୁକା ତାରର ବଡ଼ ପେଣ୍ଡୁଲା ମଧ୍ୟ ଥିଲା । ତାର ପକେଟରେ ସେ ମଣ୍ଡୁଆସି ଓ ଫୋଡ଼ଣି ମଧ୍ୟ ଥିବାର ବୁଝିନେଲେ । ଶେଷକୁ ଶେଷ ମୁଣ୍ଡରେ ଥିବା ଗୋଟିଏ ପକେଟରୁ ସେ କୁମ୍ଭୀୟ ବାକ୍ସଟାଏ କାଢ଼ି ଆଣିଲେ । ଏହାକୁ ସେ ଗୋଲ୍‌ଜଙ୍ଘ

ଦିସ୍ତରରୁ ପାଇଥିଲେ । ଏତକ କରସାରି ସେ ବୋକସ୍ତ୍ର ପଟି ବକ୍‌ଲସରେ ଦେଇ ତାଲା ପକାଇଦେଲେ । ଶେଷକୁ ବୋକସ୍ତ ଦୁଇଟା ଉପରେ ପୁର୍ବ ପର ପାଲ ଘୋଡ଼ାଇ ଦେଲେ । ଆନ୍‌ସେଲ୍‌ମୋ ଗୁହା ଭିତରକୁ ଚାଲି ଯାଇଥିଲା ।

ରବର୍ଟ ଜର୍ଡାନ୍‌ ଗୁହାକୁ ଯିବା ପାଇଁ ଠିଆହେଲେ । ତତ୍ପରେ କାଅଣ ଭାବି ବୋକସ୍ତରୁ ପାଲ କାଢ଼ି ପକାଇ ଦୁଇ ହାତରେ ଦୁଇଟା ବୋକସ୍ତ ଉଠାଇ ଗୁହା ମୁହଁକୁ ଗଲେ । ସେ ଗୋଟିଏ ବୋଝ ତଳେ ଥୋଇ ଗୁହା ମୁହଁ କମ୍ବଳ ହଟାଇ ମୁଣ୍ଡ ନଇଁ ଚମଡ଼ା ପଟି ଭିତରେ ହାତ ପୂରାଇ ଦୁଇ ହାତରେ ଦୁଇଟା ବୋକସ୍ତ ଧରି ଗୁହା ଭିତରକୁ ଗଲେ ।

ଗୁହା ଭିତରଟା ଗରମ ଏବଂ ଧୂଆଁଳିଆ । ଗୁହାର ଗୋଟାଏ ପାଖ କାନ୍ଥକୁ ଲାଗି ଖଣ୍ଡିଏ ଟେବୁଲ । ଟେବୁଲ ଉପରେ ଗୋଟିଏ ବୋତଲରେ ଖଣ୍ଡିଏ ମହମବତୀ ଜଳୁଥାଏ । ଟେବୁଲ ପାଖରେ ପାବ୍‌ଲୋ ଓ ଆଉ ତିନିଜଣ ଅଚିହ୍ନା ମଣିଷ ବସିଥାନ୍ତି । ଅଉ ଥାଏ ଜିପ୍‌ସି ରାଫେଲ । ବତୀ ଯୋଗୁଁ ଏମାନଙ୍କର ଛାଇ କାନ୍ଥରେ ପଡ଼ିଥାଏ । ଆନ୍‌ସେଲ୍‌ମୋ ଆସି ଟେବୁଲର ଡାହାଣ ପଟେ ଠିଆ ହୋଇଥିଲା । ପାବ୍‌ଲୋର ରକ୍ଷିତା ଖୋଲା ଚୁଲାର କୋଇଲା ନିଆଁ ପାଖରେ ଗୋଟିଏ କୋଣରେ ଠିଆ ହୋଇଥାଏ । ବାଳକାଟି ତା ପାଖରେ ଆଣ୍ଠେଇ ପଡ଼ି ଗୋଟିଏ ପାତ୍ରରେ କଅଣ ଘଣ୍ଟାଘଣ୍ଟି କରୁଥାଏ । ସେ କାଠର ଚାମଚଟା ଟେକି ରବର୍ଟ ଜର୍ଡାନ୍‌ ଦୁଆର ମୁହଁ ଟପି ଆସିବାରୁ ଅନାଇଲା । ଭିତରେ ପବନ କରି ନିଆଁକୁ ତେଜୁଥିଲା ସେହି ସ୍ତ୍ରୀ ଲୋକଟି । ସେହି ନିଆଁରେ ଜର୍ଡାନ୍‌ ବାଳିକାର ମୁହଁ, ବାହୁ ଏବଂ ଚାମଚରୁ ଖସି ପଡୁଥିବା ଦ୍ରବ୍ୟ ଦେଖି ପାରିଲେ ।

ପାବ୍‌ଲୋ ପଚାରିଲା "ତୁମେ କଅଣ ବହି ଆଣିଛ ?"

ଦୁଇଟି ବୋକସ୍ତ ତଳେ ରଖି ରବର୍ଟ ଜର୍ଡାନ୍‌ କହିଲେ "ମୋ ଜିନିଷ ।" ସେ ଦୁଆର ମୁହଁ ଛାଡ଼ି ଟେବୁଲର ଟିକିଏ ଦୂରକୁ ତାହା ରଖିଥିଲେ ।

ପାବ୍‌ଲୋ ପଚାରିଲା "ବାହାରେ ଥିଲେ କଣ୍ଟ କ୍ଷତ ହୁଅନ୍ତା ?

ରବର୍ଟ ଜର୍ଡାନ୍‌ କହିଲେ "ଅନ୍ଧାରରେ କେହି ଝୁଣ୍ଟନ୍ତା ।" ଏହା କହି ସେ ଟେବୁଲ ପାଖକୁ ଯାଇଁ ସିଗ୍ରେଟ ବାକସ ଥୋଇଲେ ।

ପାବ୍‌ଲୋ କହିଲା "ଏହି ଗୁହା ଭିତରେ ଡାଇନାମାଇଟ୍‌ ରଖିବା ମୁଁ ପସନ୍ଦ କରେ ନାହିଁ ।"

ରବର୍ଟ ଜର୍ଡ଼ାନ୍ ଜବାବ ଦେଲେ "ଏହା ନଥାଁ ପାଖରୁ ଦୂରରେ ଅଛୁ । ସିଗ୍ରେଟ ପିଅ ।" ସେ ନିଜ ବୁଢ଼ା ଆଙ୍ଗୁଠି ନଖରେ ସିଗ୍ରେଟ ବାକସର ଢ଼ାଙ୍କୁଣି କାଗଜ ଚିରି ବାକ୍ସଟା ପାବ୍‌ଲୋ ଆଡ଼କୁ ବଢ଼ାଇଦେଲେ ।

ଆନ୍‌ସେଲ୍‌ମୋ ଖଣ୍ଡିଏ ଚମଡ଼ାର ଷ୍ଟୁଲ୍ ଆଣି ଟେବୁଲ ପାଖରେ ଥୋଇବାରୁ ସେ ତହିଁରେ ବସି ପଡ଼ିଲେ । ପାବ୍‌ଲୋ ତାଙ୍କୁ କଅଣ କହିବ ବୋଲି ଅଇନାଲି ମାତ୍ର କିଛି ନ କହି ସିଗ୍ରେଟ୍ ନେଲା ।

ରବର୍ଟ ଜର୍ଡ଼ାନ୍ ଆନ୍ୟମାନଙ୍କ ଆଡ଼କୁ ସିଗ୍ରେଟ ବାକ୍ସ ଠେଲି ଦେଲେ । ସେ ଏତେବେଳ ଯାଏ ତାଙ୍କମାନଙ୍କୁ ଅନାଇ ନ ଥିଲେ । ଦେଖିଲେ ଜଣେ ସିଗ୍ରେଟ ନେଲା କିନ୍ତୁ ଅନ୍ୟ ଦୁଇଜଣ ନେଲେ ନାହିଁ । ସେ ବରାବର ପାବ୍‌ଲୋକୁ ଅନାଇଥିଲେ । ସେ ରାଫେଲ୍‌କୁ ପଚାରିଲେ 'ଗିପ୍‌ସି, କେମିତି ଚାଲୁଛି ?'

ଗିପ୍‌ସି କହିଲା 'ସବୁ ଭଲ ।' ରବର୍ଟ ଜର୍ଡ଼ାନ ବୁଝିଲେ ଯେ ସେମାନେ ତାଙ୍କର କଥା ହେଉଥିଲେ । ଗିପ୍‌ସି ମଧ୍ୟ ଅସ୍ୱସ୍ତି ବୋଧ କରୁଅଛି ।

ରବର୍ଟ ଜର୍ଡ଼ାନ୍ ପଚାରିଲେ "ସ୍ତ୍ରୀ ଲୋକଟି ତୋତେ ଆଜିଥରେ ଖାଇବାକୁ ଦେବ ତ ?"

ଗିପ୍‌ସି କହିଲା "ହଁ, କାହିଁକି ନଦେବ ?" କଥାର ଧରଣ କିନ୍ତୁ ଆଗକା ପରି କୌତୁକ ପୂର୍ଣ୍ଣ ନଥିଲା ।

ପାବ୍‌ଲୋର ରକ୍ଷିତା ପାଟି ନ ଫିଟାଇ ଜାଳ ଜାଳିବାରେ ବ୍ୟସ୍ତ ରହିଲା ।

ରବର୍ଟ ଜର୍ଡ଼ାନ୍ କହିଲେ "ଅଗଷ୍ଟିନ୍ ନାମକ ଲୋକଟି କହୁଥିଲା ଯେ ସେ ଏଠି ରହି ରହି ଉତ୍ତକ୍ତ ହୋଇଗଲାଣି ।"

ପାବ୍‌ଲୋ କହିଲା "ସେଥିରେ ତ ସେ ମରି ଯାଉନାହିଁ । ତାହାର ମରିବା ଭଲ ।"

ରବର୍ଟ ଜର୍ଡ଼ାନ୍ ଟେବୁଲ ଉପରେ ହାତ ଥୋଇ ସାମାନାକୁ ଟିକିଏ ପଡ଼ି ପଚାରିଲେ "ମଦ ଅଛି ?"

ପାବ୍‌ଲୋ ବିରକ୍ତ ସ୍ୱରରେ କହିଲା "ହଁ ଅଳ୍ପ ଅଛି " ରବର୍ଟ ଜର୍ଡ଼ାନ୍ ଭାବିଲେ ଅନ୍ୟ ୩ଜଣଙ୍କୁ ଅନାଇ ନିଜର ପରିବେଶ ବୁଝିନେବା ଉଚିତ । ଏଇଥିପାଇଁ

କହିଲେ "ତେବେ ମୋତେ ପିଆଲାଏ ପାଣି ଦଅ ।" ଏହା କହି ସେ ବାଳିକାକୁ ପାଣି ଦେବାକୁ କହିଲେ ।

ବାଳିକା ସ୍ତ୍ରୀଲୋକଟି ଆଡ଼କୁ ଗୃହିଁଲା ମାତ୍ର କିଛି ସୂଚନା ନ ପାଇ ପାଣିଥିବା ପାତ୍ର ପାଖକୁ ଯାଇ ପିଆଲା ବୁଡ଼ାଇ ଆଣି ତାଙ୍କ ଆଗରେ ଥୋଇଦେଲା ।

ରବର୍ଟ ଜର୍ଡ଼ାନ୍ ଟିକିଏ ମୁରୁକି ହସା ଦେଇ ପେଟ ଝଙ୍କାଳି ବାମ ପାଖକୁ ଚାଲି ଯାଆନ୍ତେ ତାଙ୍କ ପିସ୍ତଲଟା କମର ପଟିଯାଏ ଖସି ପଡ଼ିଲା । ସେ ଏହାହିଁ ଇଚ୍ଛା କରୁଥିଲେ । ସେ ପିସ୍ତୁପାଖ ପକେଟକୁ ହାତ ବଢ଼ାଇଲେ । ପାବ୍‌ଲୋ ତାଙ୍କୁ ଗୃହିଁ ରହିଥାଏ ।

ସେ ପକେଟରୁ ଚମଡ଼ା ବୋତଲଟା କାଢି ତହିଁର ଠିପି ଫିଟାଇଲେ । ପିଆଲା ପାଣିରୁ ଅଧେ ପିଇ ବାକି ଅଧକରେ ବୋତଲରୁ କିଛି ଧୀରେ ଧୀରେ ଢାଳି ମିଶାଇଲେ । ସେ ବାଳିକାକୁ କହିଲେ "ଏଟା ତୋ ପକ୍ଷରେ ବହୁତ ଉଗ୍ର ନଚେତ ତୋତେ ମଧ୍ୟ ଦେଇଥାନ୍ତି । ଏତିକି କହି ଟିକିଏ ହସିଲେ । ତାପରେ ପାବ୍‌ଲୋକୁ କହିଲେ ମୋ ବୋତଲରେ ଅତି ଅଳ୍ପ ଅଛି ନଚେତ ତୋତେ ମଧ୍ୟ ଦେଇଥାନ୍ତି ।"

ପାବ୍‌ଲୋ କହିଲା "ମୁଁ ମହୁଲି ମଦ ପସନ୍ଦ କରେ ନାହିଁ ।"

ମଦର ତୀବ୍ରଗନ୍ଧ ଟେବୁଲ ଉପରେ ଖେଳିଗଲା । ସେ ତଦ୍ୱାରା ନିଜର ପରିଚିତ ମିଶ୍ରଣ ଠିକ୍ ହେଲା ବୋଲି ଜାଣିପାରିଲେ ।

ମଦ ପିଇ ସାରି ସେ କହିଲେ "ବେଶ୍ । ଆଉ ଅଳ୍ପ ବାକି ଅଛି ।"

ଜିପ୍‌ସି ପଚାରିଲା "ଏଟା କି ଜାତିକା ମଦ ?"

ରବର୍ଟ ଜର୍ଡ଼ାନ୍ କହିଲେ "ଏଟା ଗୋଟାଏ ଔଷଧ । ତୁ ଟିକେ ଚାଖିବୁ ?"

'ଏହାର ଉପକାରିତା କଅଣ ?'

'ଏହା ସବୁ ରୋଗର ମହୌଷଧ । ତୋର ଯଦି କିଛି ରୋଗଥାଏ ଏହାଦ୍ୱାରା ଭଲ ହୋଇଯିବ ।'

ଜିପ୍‌ସି କହିଲା "ଟିକିଏ ଦେଲ, ଚାଖିବି ।"

ରବର୍ଟ ଜର୍ଡ଼ାନ୍ ତା ଆଡ଼କୁ ପିଆଲା ଠେଲିଦେଲେ । ପାଣି ମିଶିବାରୁ ଏହା ଦୁଗ୍ଧାଭ ହରିଦ୍ରା ବର୍ଣ୍ଣ ଧାରଣ କରିଥାଏ । ସେ ଆଶା କରୁଥିଲେ ଜିପ୍‌ସି ଢୋକିକରୁ

ବେଶୀ ପିଇବ ନାହିଁ । ଅତ ଅଳ୍ପ ବାକିଥାଏ । ଏଥିରୁ ପିଆଲାଏ ସନ୍ଧ୍ୟା ଖବର କାଗଜ ପଢ଼ାର କାମ ଦେବ । ହୋଟେଲର ସେହି ପୁରୁଣା ସନ୍ଧ୍ୟା, ବାଦାମ ଗଛର ଫୁଲ, ଘୋଡ଼ାକୁ ଧୀରେ ଧୀରେ ଚଲାଇ ପ୍ରମୋଦ କାନନରେ ବାୟୁ ସେବନ, ଗୃ ଦୋକାନ, ଚନ୍ଦଶାଳା, ବିପଣୀ ଗୃ ଦୋକାନ, ମଦ୍ୟବିକ୍ରିଶାଳା, ବଡ଼ କୋମ୍ପାନୀ କୋଠା, ପାଠାଗାର ଇତ୍ୟାଦିର ବିସ୍ମୃତ ସ୍ମୃତି ତାଙ୍କର ମନରେ ଜାଗି ଉଠିଲା । ଉକ୍ତ ମଦର ତୀବ୍ରତା ଯୋଗୁଁ ଏପରି ଘଟିଲା ।

ଜିପ୍‌ସି ମୁହଁ ବର୍‌ଲେଟେଇ ପିଆଲା ଫେରାଇ ଦେଇ କହିଲା "ମହୁଲ ଫୁଲର ଗନ୍ଧ ଥିଲେ ମଧ୍ୟ ଏହା ପିଇ ପରି ପିତା । ବରଂ ବେମାର ରହିବା ଭଲ, ଏଭଳି ଔଷଧ ଖାଇବା ଭଲ ନୁହେଁ ।"

ରବର୍ଟ ଜର୍ଡାନ୍ କହିଲେ "ଏହା ସୁବାସିତ ସୁରାସାର । ଅସଲ ସୁରାସାର । ଏହା ଦ୍ୱାରା ମସ୍ତିଷ୍କ ଗରମ ହୋଇଉଠେ । କିନ୍ତୁ ମୁଁ ତାହା ବିଶ୍ୱାସ କରେନାହିଁ । ଏହା କେବଳ ମଣିଷର ଚିନ୍ତାଧାରା ବଦଳାଇ ପାରେ । ତେବେ ଧୀରେ ଧୀରେ ବୁନ୍ଦା ବୁନ୍ଦା କରି ଏଥିରେ ପାଣି ମିଶାଇବା କଥା । କିନ୍ତୁ ମୁଁ ପାଣି ଢକ୍‌ଢକ୍ ଢାଳି ପକାଇଥିଲି ।"

ପାବ୍‌ଲୋ ଏହି ବିଦ୍ରୁପକୁ ବୁଝିପାରି ରାଗରେ କହିଲା 'ତୁମେ କଅଣ କହୁଛ ?'

ରବର୍ଟ ଜର୍ଡାନ୍ ହସି କରି କହିଲେ "ମୁଁ ଔଷଧର ଗୁଣ ବୁଝାଉଥିଲି । ମୁଁ ଏହାକୁ ମାଡ୍ରିଡ୍‌ଠାରେ କିଣିଥିଲି । ଏହା ଦୋକାନର ଶେଷ ବୋତଲ ଏବଂ ମୁଁ ୩ ସପ୍ତାହ ବ୍ୟବହାର କଲିଣି ।"

ସେ ବଡ଼ ଢୋକଟାଏ ପିଇନେଲେ । ତାଙ୍କର ଜିହ୍ୱା ବଥିଲା ପଡ଼ିଗଲା । ସେ ପୁଣି ଥରେ ପାବ୍‌ଲୋକୁ ଅନାଇ ଅଳ୍ପ ହସି ପଚାରିଲେ "କାମ କେମିତି ଚାଲିଛି ?"

ପାବ୍‌ଲୋ କିଛି ଉତ୍ତର ଦେଲାନାହିଁ । ସେ ଟେବୁଲରେ ଅନ୍ୟ ତିନିଜଣଙ୍କୁ ଭଲ କରି ଲକ୍ଷ୍ୟକଲେ । ଜଣଙ୍କର ମୁହଁ ବଡ଼ ଓ ଚେପ୍‌ଟା, ରଙ୍ଗ ବାଦାମି, ନାକ ଚେପ୍‌ଟା ଓ ଭଙ୍ଗା । ରୁଷ ଦେଶୀୟ ଲମ୍ବା ସିଗ୍ରେଟ ମୁହଁରେ ତିର୍ଯ୍ୟକ ଭାବରେ ଥିବାରୁ ମୁହଁଟା ଅଧିକ ସମତଳ ଦିଶୁଥାଏ । ଲୋକଟାର କେଶ ଧୂସରିଆ ଏବଂ ଦାଢ଼ି ପାଚି ପାଚି ଆସିଲାଣି । ସେ ସାଧାରଣ ବେକ ଚିପା କୁରୁତା ଖଣ୍ଡିଏ ପିନ୍ଧିଥିଲା । ରବର୍ଟ ଜର୍ଡାନ୍ ତା ଆଡ଼କୁ ଚାହିଁଲାବେଳେ ସେ ତଳକୁ ମୁହଁ କରି ରହୁଥିଲା । କିନ୍ତୁ ତା ଆଖି ଅପଲକ ଏବଂ ସ୍ଥିର । ଅନ୍ୟ ଦୁଇଜଣ ଦୁଇଭାଇ । ଦୁହେଁ ବାଙ୍ଗର ଏବଂ ଦେଖିବାକୁ ଏକାପରି ।

ଶରୀର ତାଙ୍କର ହୃଷ୍ଟପୁଷ୍ଟ, କେଶ କଳା, କପୋଳଯାଏ କେଶ ଲମ୍ବିତ, ଆଖି କଳା ଓ ଦେହର ରଙ୍ଗ ବାଦାମି । ଜଣକ କପୋଳରେ ବାମ ଆଖିଯାଏ କଟାଦାଗ । ରବର୍ଟ ଜର୍ଡାନ ତାଙ୍କୁ ଅନାଇବାରୁ ସେମାନେ ମଧ୍ୟ ଅପଲକ ଦୃଷ୍ଟିରେ ଗୃହିଁଲେ । ଜଣକର ବୟସ ୨୬ କି ୨୮ବର୍ଷ । ଅନ୍ୟଜଣକ ତାଠୁଁ ୨ବର୍ଷ ବେଶୀ ହୋଇପାରେ ।

କଟା ଦାଗଥିବା ଭାଇଜଣକ ପଚାରିଲା "ତୁମେ କଅଣ ଦେଖୁଛ ?"

ରବର୍ଟ ଜର୍ଡାନ୍ କହିଲେ 'ତୁମକୁ ।'

'କିଛି ଅଦ୍ଭୁତ ଦେଖିଲ କି ?'

'ନା କିଛି ନାହିଁ । ଖଣ୍ଡେ ସିଗ୍ରେଟ ନିଅ ।'

ଜଣେ ଭାଇ କହିଲା 'ହଉଦିଅ ।' ସେ ପୂର୍ବରୁ ନେଇ ନଥିଲା । କହିଲା ଏହାଙ୍କ ହାତ ସେହି ଟ୍ରେନ୍ ଉଡ଼ାଇଲା ଲୋକର ହାତପରି ।'

'ତୁମେ କଅଣ ସେ ଟ୍ରେନ ଘଟଣାରେ ଥିଲ ?'

ସେ ଧୀର ଭାବରେ କହିଲା 'ବୁଢ଼ାକୁ ଛାଡ଼ି ସମସ୍ତେ ଥିଲୁ ।'

ପାବ୍‌ଲୋ କହିଲା 'ପୁଣି ଥରେ ସେହି କାମ କରିବୁ । ଆଉ ଗୋଟାଏ ଟ୍ରେନ ।'

ରବର୍ଟ ଜର୍ଡାନ୍ କହିଲେ 'ଆଗେ ପୋଲ, ତାପରେ ଟ୍ରେନ୍ କଥା ।'

ସେ ବୁଝିପାରିଲେ ଯେ ପାବ୍‌ଲୋର ରକ୍ଷିତା ନାଆଁ ପାଖରୁ ବୁଲପତ୍ର କଥାବର୍ତ୍ତା ଶୁଣୁଛି । ପୋଲ କଥା ଉଠିଲାରୁ ସମସ୍ତେ ଚୁପ୍‌ଚାପ୍ ହୋଇଗଲେ ।

ସେ ପୁଣି ଭାବଚନ୍ତି କହିଲେ "ପୋଲ ପରେ ଅନ୍ୟ କାମ ।" ସେ ପୁଣି ମଦ ପିଆଲାରେ ମୁହଁ ଲଗାଇଲେ । ଭାବିଲେ କଥାଟା ଏଥିକବେଳେ ପରିଷ୍କାର କରି ନେବା ଭଲ । ଆଗ ହେଉ ପଛ ହେଉ କଥାତ ଉଠିବ ।

ଟେବୁଲ ଉପରେ ନଜର ରଖି ପାବ୍‌ଲୋ କହିଲା "ମୁଁ ପୋଲ ଭାଙ୍ଗିବା ସପକ୍ଷରେ ନୁହେଁ । ମୋ ଲୋକ ମଧ୍ୟ ନୁହନ୍ତି ।"

ରବର୍ଟ ଜର୍ଡାନ୍ କିଛି ନକହି ଆନ୍‌ସେଲ୍‌ମୋ ଆଡ଼କୁ ଗୃହିଁ ପିଆଲା ଉଠାଇ ହସି ହସି କହିଲେ "ତେବେ ବୁଢ଼ା, ଆମକୁ ଏକାଏକ ସେ କାମ କରିବାକୁ ପଡ଼ିବ ।"

ଆନ୍‌ସେଲ୍‌ମୋ କହିଲା "ଏହି ଭାରୁ ଲୋକଟା ଲୋଡ଼ା ନାହିଁ ।"

ପାବ୍‌ଲୋ ବୁଢ଼ାକୁ ପଚାରିଲା "କଅଣ କହିଲୁ ?"

ଆନ୍‌ସେଲ୍‌ମୋ କହିଲା "ତୋ ସମ୍ବନ୍ଧରେ କିମ୍ବା ତେତେ କିଛି କହି ନାହିଁ ।"

ରବର୍ଟ ଜର୍ଡାନ୍ ଟେବୁଲ୍‌ଆଡ଼ୁ ପାବ୍‌ଲୋ ସ୍ତ୍ରୀ ଠିଆ ହୋଇଥିବା ଚୁଲିମୁଣ୍ଡକୁ ଦୃଷ୍ଟି ଫେରାଇଲେ । ସେ କିଛି କହି ନଥିଲା କି କିଛି ଲକ୍ଷଣ ପ୍ରକାଶ କରି ନଥିଲା । ବର୍ତ୍ତମାନ ସେ ବାଳକାକୁ କିଛି କହିଲା । ରବର୍ଟ ତାହା ଶୁଣି ପାରିଲେ ନାହିଁ । ବାଳକା ଚୁଲିପାଖରୁ ଉଠି କାନ୍ଥ କଡ଼େ କଡ଼େ ଗୁହା ମୁହଁକୁ ଯାଇ ସେଠାରେ ଝୁଲୁଥିବା କମ୍ବଳ ଆଡ଼େଇ ବାହାରକୁ ଗଲା । ରବର୍ଟ ଜର୍ଡାନ୍ ଭାବିଲେ ଏଥର ବୋଧହୁଏ କିଛି ଘଟିବ । ଏହାହିଁ ମୋ ବିଶ୍ୱାସ । ଏମିତି ଘଟୁ ବୋଲି ମୁଁ ଇଚ୍ଛା ନଥିଲି କିନ୍ତୁ ଅନ୍ୟ ଉପାୟ ବା କଅଣ ଅଛି ।

ସେ ପାବ୍‌ଲୋକୁ ଲକ୍ଷ୍ୟ କରି କହିଲେ "ତେବେ ତୁମ ସାହାଯ୍ୟ ବ୍ୟତୀତ ଆମେ ପୋଲ ଧ୍ୱଂସ କରିବୁ ।"

ପାବ୍‌ଲୋ କହିଲା "ନା, ଏଠି ତୁମେ ପୋଲ ଧ୍ୱଂସ କରି ପାରିବ ନାହିଁ ।" ରବର୍ଟ ଦେଖିଲେ ଯେ ପାବ୍‌ଲୋ ମୁହଁ ସ୍ୱେଦାକ୍ତ ।

"ପୋଲ ଧ୍ୱଂସ କରିବା ନାହିଁ ।"

ପାବ୍‌ଲୋ ଗୁରୁଗମ୍ଭୀର ସ୍ୱରରେ କହିଲା "ନା, ପୋଲ ଧ୍ୱଂସ କରି ପାରିବ ନାହିଁ ।"

ପାବ୍‌ଲୋର ସ୍ତ୍ରୀ ନିଜର ବିଶାଳ କାୟା ଘେନି ଚୁଲି ପାଖରେ ଠିଆ ହୋଇଥିଲା । ତାକୁ ଲକ୍ଷ୍ୟ କରି ରବର୍ଟ ଜର୍ଡାନ୍ କହିଲେ "ତୋର କଅଣ ସେହି ମତ ?" ସେ ତାଙ୍କ ଆଡ଼କୁ ବୁଲିପଡ଼ି କହିଲା "ପୋଲ ଧ୍ୱଂସ କରିବାକୁ ମୋର ମତ ।" ତାହାର ମୁହଁରେ ଚୁଲି ନିଆଁର ଆଲୁଅ ପଡ଼ୁଥାଏ । ସେ ଲାଲ ପଡ଼ିଗଲା । ସେ ଆନ୍ତରିକ ଏବଂ ସୁନ୍ଦର ଦିଶିଲା ।

ପାବ୍‌ଲୋ ନିଜ ସ୍ତ୍ରୀକୁ ପଚାରିଲା "ଇଏ କଅଣ କହୁଛୁ ?" ରବର୍ଟ ଜର୍ଡାନ ପାବ୍‌ଲୋ ଚାହାଣିରେ ବିଶ୍ୱାସଘାତକତା ଏବଂ କପାଳରେ ସ୍ୱେଦବିନ୍ଦୁ ଦେଖିଲେ ।

ସ୍ତ୍ରୀ ଜବାବ ଦେଲା 'ମୁଁ ପୋଲ ଧ୍ୱଂସ କରିବା ସପକ୍ଷରେ ଓ ତୋ ବିପକ୍ଷରେ । ଏଥୁଁ ଅଧିକ କିଛି ନୁହେ ।'

ପିଗ୍ରେଟ୍ ମୁଣ୍ଡିଟା ଟେବୁଲରେ ଘସିଦେଇ ଚେପ୍‌ଟା ମୁହାଁ ଖଣ୍ଡିଆ ନାକା ଜଣକ କହିଲା "ମୁଁ ମଧ୍ୟ ପୋଲ ଧ୍ୱଂସ କରିବା ସପକ୍ଷରେ ।"

ଅନ୍ୟ ଭାଇ ଜଣକ କହିଲା "ପୋଲଟା ମୋ ପାଖରେ କିଛି ନୁହେଁ । ମୁଁ ପାବ୍‌ଲୋର ସ୍ତ୍ରୀ ସହିତ ଏକମତ ।"

ଅନ୍ୟ ଭାଇଟି କହିଲା "ମୁଁ ତ ସେଇଆ କହୁଛି ।"

ଜିପ୍‌ସି କହିଲା "ମୁଁ ମଧ୍ୟ ସେହି ମତ ଦିଏ ।"

ରବର୍ଟ ଜର୍ଡ଼ାନ୍ ପାବ୍‌ଲୋଙ୍କୁ ଲକ୍ଷ୍ୟ କରୁଥିଲେ । ସେହି ଅବସରରେ ସେ ଡାହାଣ ହାତ ତଳକୁ ତଳକୁ ଲମ୍ବାଇ ଦରକାର ପଡ଼ିଲେ ବ୍ୟବହାର କରିବାକୁ ପ୍ରସ୍ତୁତ ହେଉଥିଲେ । ତେବେ ସେ ଦରକାର ପଡ଼ିବ ବୋଲି ସମ୍ପୂର୍ଣ୍ଣ ଆଶା କରି ନଥିଲେ । ସେ ଜାଣନ୍ତି ଯେ ସେପରି କାମ ବଡ଼ ସହଜ ଏବଂ ସରଳ କିନ୍ତୁ ଯେତେବେଳେ ଦେଖିଲେ ଯେ ତାଙ୍କ ପରି ଅପରିଚିତ ବ୍ୟକ୍ତି ବିରୁଦ୍ଧରେ, ପରିବାର, ଗୋଷ୍ଠୀ ବା ଜାତିର ସମସ୍ତେ ଠିଆ ହେବା ବଦଳରେ ସପକ୍ଷରେ ଯାଉଅଛନ୍ତି ସେତେବେଳେ ସେ କିଛି କରିବା ଉଚିତ ମନେ କଲେ ନାହିଁ । ପାବ୍‌ଲୋର ସ୍ତ୍ରୀ ସଦର୍ପରେ ଏବଂ ଦୃଢ଼ ପଦରେ ଠିଆ ହୋଇ ଲୋକମାନଙ୍କୁ ଜର୍ଡ଼ାନ୍‌ଙ୍କ ସପକ୍ଷରେ ମତ ବ୍ୟକ୍ତ କରିବା ମଧ୍ୟ ଦେଖିଲେ । ରବର୍ଟ ଜର୍ଡ଼ାନ୍ ଏଥିରେ ଖୁସି ହେଲେ ।

ପାବ୍‌ଲୋର ସ୍ତ୍ରୀ କହିଲା "ଆମ୍ଭେମାନେ ସାଧାରଣତନ୍ତ୍ର ସପକ୍ଷରେ । ସାଧାରଣତନ୍ତ୍ର ଯେତେବେଳେ ପୋଲ ଧ୍ୱଂସ କରିବାକୁ ଚାହେଁ, ସେତେବେଳେ ଆମ୍ଭମାନଙ୍କର ସେହି କଥା । ପରେ ଅନ୍ୟ କାମରେ ହାତ ଦେବା ।"

ପାବ୍‌ଲୋ ଅତି ରାଗରେ କହିଲା "ତୋ ମୁଣ୍ଡରେ ଗୋବର ଅଛି, ତୁ ତ ଗୋଟାଏ ଚୁଣ୍ଡାଳ, ତୁ କାହୁଁ ବୁଝିବୁ ଯେ ପୋଲ ଧ୍ୱଂସ ପରେ ଆଉ କିଛି ବାକି ନଥିବ । ପରେ କଅଣ ଘଟିବ କିଛି ଭାବି ପାରୁଛୁ ? ପୋଲ ଧ୍ୱଂସ ପରେ ଆମକୁ ଘୋର ପଶୁପରି ଶିକାର କରିବେ । ପୋଲ ଧ୍ୱଂସରେ ଆମର କିଛି ଲାଭ ନାହିଁ । ପୋଲ ପାଇଁ ମରିବା ଆମର କି ଦରକାର । ଏ ସବୁର ତାତ୍ପର୍ଯ୍ୟ ବୁଝି ପାରୁଛୁ ?"

ସ୍ତ୍ରୀ ଲୋକଟି କହିଲା 'ମୋର ବୁଝିବା ଆଦୌ ଦରକାର ନାହିଁ । ତୁ ତ ଭୀରୁ, ମୋତେ ଡରାଇବା ପାଇଁ ଚେଷ୍ଟା କରନା ।'

ପାବ୍‌ଲୋ ଖଚ୍ଚେଇ ହୋଇ କହିଲା 'ମୁଁ ଖାରୁ ! କାର୍ଯ୍ୟର ଫଳାଫଳ ପୂର୍ବରୁ ଅନୁମାନ କଲି ବୋଲି ମୁଁ ହେଲି ଖାରୁ । ଯାହା ଓଲୁଗିରେ ତାହା ପ୍ରକାଶ କରିବା ଖାରୁତା ନୁହେ ।'

ଆନ୍‌ସେଲ୍‌ମୋ ସମ୍ଭାଳି ନପାରି କହି ପକାଇଲା 'ଖାରୁତା କଅଣ ତାହା ଜାଣିବା ନିର୍ବୋଧତା ନୁହେ ।'

ପାବ୍‌ଲୋ ତାକୁ ପଚାରିଲା 'ତୁ କଅଣ ମରିବାକୁ ଚାହୁଁ ?' ରବର୍ଟ ଜର୍ଡାନ୍ ଏହି ପ୍ରଶ୍ନଟା କପରି ସାଧାସିଧା ଭାବେ ବୁଝି ପାରିଲେ ।

ବୁଢ଼ା କହିଲା 'ନାହିଁ ।'

"ତେବେ ମୁହଁ ବନ୍ଦକରି ରହ । ବୁଝି ନପାରିବା କଥା ନେଇ ତୁ ବହୁତ ବକ୍ ବକ୍ କରୁଛୁ । ବୁଝୁନାହୁଁ ଏହା କପରି ଗୁରୁତର ବିଷୟ । ଦେଖୁଛି ମୁଁ ଏକମାତ୍ର ଏ କାର୍ଯ୍ୟର ଗୁରୁତ୍ୱ ଧାରଣା କରିପାରୁ ଅଛି ।" ପାବ୍‌ଲୋ ଅତି କରୁଣ ଭାବରେ କହିଲା ।

ରବର୍ଟ ଜର୍ଡାନ୍ ଭାବିଲେ "ମୁଁ ମଧ୍ୟ ସେଇଆ ବିଶ୍ୱାସ କରେ । ପାବ୍‌ଲୋ ପୁରୁଣା ଲୋକ । ସେ ଯାହା ଦେଖିପାରୁଛି ମୁଁ ମଧ୍ୟ ତାହା ଦେଖୁଛି । ସ୍ତ୍ରୀଲୋକଟି ମୋ ହାତ ରେଖା ଦେଖି ସେଇଆ ଜାଣି ଯାଇଛି ମାତ୍ର ବର୍ତ୍ତମାନ ଯାଏ କିଛି ଭାବି ନାହିଁ ।'

ପାବ୍‌ଲୋ ପଚାରିଲା 'ମୁଁ ଶୃଙ୍ଖଳାରେ ଦଳପତି ହୋଇ ନାହିଁ । ମୁଁ ଯାହା କହୁଛି ତାହାର ମର୍ମ ବୁଝେ । ତୁମେ ସବୁ ଜାଣିନାହଁ । ଏଇ ବୁଢ଼ାଟା ଗୋଟାଏ ଓଲୁ । ସେ ଜଣେ ସମ୍ବାଦ ବାହକ ଏବଂ ଏହି ବିଦେଶୀ ଜଣଙ୍କର ପଥ ପ୍ରଦର୍ଶକ ଛଡ଼ା ଆଉ କିଛି ନୁହେ । ଏହି ବିଦେଶୀ ଜଣକ ତାଙ୍କ ବିଦେଶୀଙ୍କ ମଙ୍ଗଳ ପାଇଁ ଏଠାକୁ ଆସିଛି । ତା ଭଲ ପାଇଁ ଆମେ ସବୁ ବଳୀ ପଡ଼ିବୁ । ମୁଁ ସମସ୍ତଙ୍କର ନିରାପତ୍ତା ଓ ମଙ୍ଗଳ ଚାହେ ।'

ପାବ୍‌ଲୋର ସ୍ତ୍ରୀ କହିଲା 'ନିରାପତ୍ତା । ନିରାପତ୍ତା ବୋଲି କିଛି ନାହିଁ । ଏଠାରେ ଏତେ ଲୋକ ନିରାପତ୍ତା ଅନ୍ୱେଷଣରେ ଅଛନ୍ତି ଯେ ସେମାନେ ଏକ ଆପଦ ହୋଇ ପଡ଼ିଛନ୍ତି । ବର୍ତ୍ତମାନ ନିରାପତ୍ତା ଲୋଡ଼ିବାକୁ ଯାଇ ସବୁ ହରାଇବା ।' ହାତରେ ବଡ଼ କାଠର ଚାଟୁ ଧରି ସେ ଟେବୁଲ ପାଖରେ ଠିଆ ହୋଇଗଲା ।

ପାବ୍‌ଲୋ କହିଲା 'ବିପଦ ଭିତରେ ମଧ୍ୟ ନିରାପତ୍ତା ଅଛି ଯଦି ଆମ୍ଭେମାନେ ବୁଦ୍ଧି ବିଚାର କାମ କରିବା । ଷଣ୍ଢ ଲଢ଼େଇରେ ମଣିଷ ସବୁ ବିପଦ ଜାଣି ଶୁଣି ନିଜର ତାକ ତରକରେ ରହିବାହିଁ ହେଉଛି ନିରାପତ୍ତା ।'

ସ୍ତ୍ରୀଲୋକଟି ବିରକ୍ତିରେ କହିଲା 'ହଁ ସେ ନିରାପତ୍ତା କେତେ ସମୟ ପାଇଁ ? ଷଣ୍ଢ ଫାଡ଼ିଦେଲେ ସବୁ ସରିଯାଏ । ବହୁ ଷଣ୍ଢ ଲଢ଼େଇ ବୃଷ ଯୋଦ୍ଧାଙ୍କ ମୁହଁରୁ ମୁଁ ଏକଥା ଶୁଣିଛି କିନ୍ତୁ ଷଣ୍ଢ ସିଙ୍ଗରେ ଫାନ୍ଦି ହୋଇଗଲେ ସେ ଆସ୍ଫାଳନ ଉଭେଇ ଯାଇଥାଏ । ଫିନିଟୋ ମୁହଁରୁ ମୁଁ ଅନେକ ଥର ଶୁଣିଛି ଯେ ଅଜ୍ଞତାହିଁ ବଡ଼କଥା । ଷଣ୍ଢ କୌଣସି ମଣିଷକୁ ଫାନ୍ଦ ପକାଏ ନାହିଁ, ମଣିଷ ନିଜେ ଷଣ୍ଢ ସିଙ୍ଗରେ ଫାନ୍ଦି ହୋଇଯାଏ । ସେମାନେ ନିଜର ଦର୍ପ ଦେଖାଇ ସବୁବେଳେ ଏପରି କହିଥାନ୍ତି କିନ୍ତୁ ପ୍ରକୃତ ସିଙ୍ଗ ଆଘାତ ପାଇବା ପୂର୍ବରୁ । ତା'ପରେ ଡ଼ାକ୍ତରଖାନାରେ ବାପଲୋ ମାଆଲୋ । ଆମେ କହୁଁ ପୁରୁଣା ଲଢୁଆ କେମିତି ଅଛୁ ? ତୁମେ କେମିତି ଅଛ ପିଲାର ?' ସେ ତାଙ୍କମାନଙ୍କର କଣ୍ଠସ୍ୱର ଅନୁକରଣ କରି ପୁଣି କହିଲା "ତୁମର ଏପରି ଦୁର୍ଘଟଣା କିପରି ଘଟିଲା ଫିନିଟୋ ?" ନିଜ କଥାର ଜବାବ ନିଜେ ଦେବାକୁ ଯାଇ ବିକଳ ସ୍ୱରରେ କହିଲା 'ଏହା କିଛି ନୁହେଁ, ଏହା ଘଟିବାର ନଥିଲା । ମୁଁ ଷଣ୍ଢକୁ ମାରି ଦେଇଛି । ତାକୁ ଅନ୍ୟ କେହି ମୋପରି ମାରି ପାରି ନଥାନ୍ତେ । ସେ ଗୋଡ଼ଗୁଡ଼ି ପଡ଼ି ମରିଗଲା ପରେ ମୁଁ ଟିକିଏ ଗର୍ବ ଦେଖାଇ ପଯ୍ୟନ୍ତରା କରି ବୁଲି ଆସୁଥିଲି । ସେ ମୋ ପିଠି ପାଖରେ ସିଙ୍ଗଟା ଭୁସିଦେଲା ।'

ସ୍ତ୍ରୀ ଲୋକଟି ଠୋ ଠୋ କରି ହସି ପକାଇ ଅନୁକରଣ ବନ୍ଦ କରି ପୁଣି କହିଲା 'ମୋତେ ତୁ ନିରାପତ୍ତାର ଭୟ ଦେଖାଉ । ୩ଜଣ ଦରମାଖିଆ ଅତି ଜଘନ୍ୟ ଷଣ୍ଢ ଲଢ଼ୁଆଙ୍କ ସହିତ ୯ବର୍ଷ ଏକାଠି ରହିଲା ପରେ ତମ ଭୟ ଆଉ ନିରାପତ୍ତା କଥା ମୁଁ ଭଲକରି ଜାଣିଛି । ନିରାପତ୍ତା କଥା ଛାଡ଼ି ଆଉ ଯାହା ଇଚ୍ଛା କୁହ । ଆଉ ତୁ ଗୋଟାଏ ବର୍ଷ ଯୁଦ୍ଧରେ ତୋ ଆଖିରେ ଏତେ ଛଳନା ଦେଖାଦେଲାଣି । ତୁ ବର୍ଷଟା ମଧ୍ୟରେ ମଦୁଆ, ଅଳସୁଆ ଏବଂ ଘିଚୁ ପାଲଟି ଗଲୁଣି ।'

ପାବ୍‌ଲୋ କହିଲା 'ଏପରି କହିବା ତୋର ଅଧିକାର ନାହିଁ । ବିଶେଷ କରି ଲୋକମାନଙ୍କର ଏବଂ ଅପରିଚିତ ବ୍ୟକ୍ତି ଥିଲାବେଳେ ଆଦୌ ଉଚିତ ନୁହେଁ ।'

ସେ ସ୍ତ୍ରୀଲୋକଟି କହିଲା 'ମୋ ଇଚ୍ଛା ମୁଁ ସେମିତି କହିବି । ଶୁଣିଲୁ ତ ? ତୁ କଅଣ ଭାବିଛୁ ତୁ ଏଠାରେ ବର୍ତ୍ତମାନ ସୁଦ୍ଧା ଦଳପତି ?'

ପାବ୍‌ଲୋ କହିଲା 'ହଁ, ଏଠାରେ ଏକମାତ୍ର ମୋର ହୁକୁମ ଚାଲିବ ।'

ସ୍ତ୍ରୀଲୋକ କହିଲା 'ମନେ ମନେ ଯେ ଖିଚୁଡ଼ି ଖାଉଥା । ଏଠାରେ ମୋ ହୁକୁମ ଚଳିବ ।ଶୁଣିଲୁ ନା ବାବୁ । ମୋ ଛଡ଼ା କାହାର ହୁକୁମ ଚଳି ନପାରେ । ତୁ ଇଚ୍ଛା କଲେ ଖାଇ ପିଇ ଘରେ ରହ । କିନ୍ତୁ ବେଶୀ ପରିମାଣରେ ନୁହେଁ । ଇଚ୍ଛା କଲେ ଅମ ସହିତ କାମରେ ଯୋଗ ଦେ । କିନ୍ତୁ ହୁକୁମ କାଟିବ ନମାର ।'

ପାବ୍‌ଲୋ ରାଗ ତମ ତମ ହୋଇ କହିଲା 'ତୋତେ ଆଉ ଏହି ବିଦେଶୀ ଦୁହିଁଙ୍କୁ ମୁଁ ଗୁଳି କରି ମାରିବା ଉଚିତ ।'

ସ୍ତ୍ରୀଲୋକ କହିଲା 'ମାଇଲୁ , ଦେଖିବ କେଡ଼େ ବାପର ପୁଅ । ଫଳଟା ମଧ୍ୟ ଦେଖିବୁ ।'

ଲୋକଟା ଉପରେ ବରାବର ନଜର ରଖି ରବର୍ଟ ଜର୍ଡାନ୍ ଏକ ପିଆଲା ପାଣି ମାଗିଲେ ।

ପାବ୍‌ଲୋ ସେମିତି ରାଗରେ ଫୁଲୁଥାଏ ଏବଂ ସ୍ତ୍ରୀ ଲୋକଟି ଚଟୁ ହାତରେ ଅତି ଗର୍ବରେ ଅତି ଆତ୍ମବିଶ୍ୱାସରେ ଦଣ୍ଡଧାରିଣୀ ପରି ଠିଆ ରହିଥାଏ ।

ସ୍ତ୍ରୀ ଲୋକଟି ମେରିଆକୁ ଡାକ ଦେଲା । ସେ ଆସିଲାରୁ କହିଲା 'ଏହି ସାଥୀଙ୍କୁ ପିଇବା ପାଇଁ ପାଣି ଆଣିଦେ ।'

ରବର୍ଟ୍ ଜର୍ଡାନ୍ ହାତ ବଢ଼ାଇ ନିଜର ପାଣି ବୋତଲ୍ ଆଣିଲେ । ବୋତଲ ଆଣିଲାବେଳେ ସେ ପିସ୍ତଲ ଥଳିରୁ ପିସ୍ତଲ୍ ଫିଟାଇ ନିଜ ଜଙ୍ଘ ଉପରେ ଥୋଇଲେ । ସେ ତାଙ୍କର ମହୁଲ ମଦରୁ ଟିକିଏ ପାଣି ସଙ୍ଗେ ମିଶାଇ ଅଳ୍ପ ଅଳ୍ପ କରି ପିଇଲେ । ବାଳିକାଟି ତାଙ୍କ କହୁଣି ପାଖରେ ଠିଆ ହୋଇ ଦେଖୁଥାଏ ।

ଚଟୁ ବଢ଼ାଇ ବାହାର ପଟ ଦେଖାଇ ସ୍ତ୍ରୀଲୋକ ପଚାରିଲା 'ବାହାରେ ?'

ବାଳିକା କହିଲା 'ଭରି ଅଣ୍ଡା ।' ବାଳିକା ପିଆଲା ଭିତରେ ମଦର ଅବସ୍ଥା ଦେଖିବାକୁ ରବର୍ଟ ଜର୍ଡାନ୍‌ଙ୍କ ପାଖକୁ ଝୁଙ୍କି ପଡ଼ିଥିଲା । ତାହାର ଗାଲ୍ ତାଙ୍କ ପାଖକୁ ଥିଲା ।

ସ୍ତ୍ରୀଲୋକ କହିଲା 'ହୋଇପାରେ କିନ୍ତୁ ଏଠାରେ ବହୁତ ଗରମ । ତେବେ ବେଶୀ ବେଳ ପାଇଁ ନୁହେଁ ।'

ବାଳିକା ମୁଣ୍ଡ ହଲାଇ ବାହାରିଗଲା ।

ରବର୍ଟ ଜର୍ଡ଼ାନ୍ ଭାବିଲେ ଯେ ପାବ୍‌ଲୋ ଆଉ ଅଧିକ ସହି ପାରିବ ନାହିଁ । ସେ ଗୋଟିଏ ହାତରେ ପିଆଲା ଏବଂ ଅନ୍ୟ ହାତରେ ଖୋଲାଖୋଲି ପିସ୍ତଲ ଧରିଥିଲେ । ସେ ଘୋଡ଼ିଆ ଟେକି ରଖିଥିଲେ ଏବଂ ପିସ୍ତଲର ମସୃଣତା ତାଙ୍କ ହାତ ମୁଠାରେ ଉଷ୍ମମ ଲାଗୁଥିଲା । ପାବ୍‌ଲୋ ଆଉ ତାଙ୍କ ଆଡ଼କୁ ନଗୃହିଁ ନିଜ ସ୍ତ୍ରୀକୁ ଅନାଇଥାଏ । ସ୍ତ୍ରୀଲୋକଟି ପୁଣି କହିଲା 'ଆରେ ହେ ମଦୁଆ, ଏଠାରେ କାହା ହୁକୁମ ଚାଲେ ବୁଝିଲୁ ?'

'ମୋ ହୁକୁମ ।'

'ନା କାନରେ ତେଲ ପକାଇ ଶୁଣିନେ । ଏଠାରେ ମୋ ହୁକୁମ ଚୂଡ଼ାନ୍ତ ।'

ପାବ୍‌ଲୋ ସ୍ତ୍ରୀକୁ ଅନାଇ ରହିଲା । ତା ମୁଖ ବିକାରରୁ ତା ମନକଥା ବୁଝି ହେଲାନାହିଁ । ସେ ସ୍ତ୍ରୀକୁ ସ୍ଥିର ଭାବରେ ଗୃହିଁଲା । ତତ୍ପରେ ଟେବୁଲ ପାଖରେ ରବର୍ଟ ଜର୍ଡାନ୍‌ଙ୍କୁ ଗୃହିଁଲା । ଏହିପରି ବହୁକ୍ଷଣ ଗୃହିଁଲା ପରେ ପୁଣି ନିଜ ସ୍ତ୍ରୀ ଆଡ଼କୁ ଦୃଷ୍ଟି ଫେରାଇ ନେଲା ।

ଶେଷକୁ ସେ କହିଲ "ହଉ ହେଲ, ଏଠାରେ ତୋ ହୁକୁମ ଚାଲେ । ତୁ ଯଦି ଗୃହୁଁ ତେବେ ସେ ଲୋକଟା ମଧ କର୍ତ୍ତା ହୋଇପାରେ । ତୁମେ ଦୁହେଁ ଗାତକୁ ଯାଅ ।" ଏହା କହି ନିଜ ସ୍ତ୍ରୀ ମୁହଁକୁ ସିଧା ଅନାଇ ରହିଲ । ସେ ତା କଥାରେ କମ୍ପା ଧରଣରେ ଡଳମାତ୍ର ବିବ୍ରତ ବୋଧ କଲା ନାହିଁ । କହିଲ "ହଏ ତ ମୁଁ ଅଳସୁଆ, ମୁଁ ବେଶୀ ମଦ ପିଏ, ଏହା ସତ । ମୋତେ ଭୀରୁ ବୋଲି ଭାବିପାରୁ । କିନ୍ତୁ ତୁ ହୁକୁମ ଦେଇପାରୁ ଏବଂ ପୋଲ ଧ୍ୱଂସ କରିବାକୁ ଗୃହୁ, ଏ କଥାରେ ରାଜି ହେଲାଭଳି ନିର୍ବୋଧ ମୁଁ ନୁହେ । ତୋର ଏପରି ଧାରଣା ଭୁଲ । ବର୍ତ୍ତମାନ ତୁ ଯଦି ସ୍ତ୍ରୀଲୋକ ଓ ଦଳପତି ହୋଇଥିବୁ, ତେବେ ଅମ୍ଭମାନଙ୍କୁ କିଛି ଖାଇବାକୁ ଯୋଗାଇଦେ ।"

ପାବ୍‌ଲୋର ସ୍ତ୍ରୀ ମେରିଆକୁ ଡାକ ଦେଲ । ବାଳିକା କମ୍ବଳ ଫାଙ୍କରେ ମୁହଁ ଦେଖାଇବାରୁ କହିଲ "ଆ, ଆସିକରି ରାତିଖିଆ ପରସି ଦେଇ ଯା ।"

ବାଳିକା ଆସି ଚୁଲିପାଖ ଅଳେଇଚ ଟେବୁଲ ପାଖକୁ ଯାଇ କଳେଇକରା ବେଲି ଅଣି ଟେବୁଲରେ ଥୋଇଲ ।

ରବର୍ଟ ଜର୍ଡାନ୍‌କୁ ଲକ୍ଷ୍ୟ କରି ପାବ୍‌ଲୋର ସ୍ତ୍ରୀ କହିଲ "ଏଠାରେ ସମସ୍ତଙ୍କ ପାଇଁ ଯଥେଷ୍ଟ ମଦ ଅଛି । ସେ ମଦୁଆ କଥାଟା ମୋଟେ ଗ୍ରାହ୍ୟ କରିବ ନାହିଁ । ଏଥିକ

ସଜାଗଲେ, ଆଉ ଅଣାଇବ । ତୁମର ସେହି ଅଦ୍ଭୁତ ଦ୍ରବ୍ୟଟି ଆଗେ ଶେଷକରି ପିଆଲାଏ ମଦ ନିଅ ।"

ରବର୍ଟ ଜର୍ଡାନ୍ ନିଜର ସୁରାସାରଟିକ ଏକା ଢୋକରେ ଗିଳି ପକାଇ ନିଜ ଶରୀରରେ ବେଶ ଉଷ୍ଣତା ଅନୁଭବ କଲେ । ତାପରେ ମଦ ପାଇଁ ପିଆଲା ବଢ଼ାଇ ଦେଲେ । ବାଳ୍‌କାଟି ହସି ହସି ପିଆଲା ଭରିଦେଲା ।

ଜିପ୍‌ସି ପଚାରିଲା 'ତୁମେ ପୋଲଟା ଦେଖିଲ ?' ଅନ୍ୟମାନେ ନିଜର ଆନୁଗତ୍ୟ ବଦଳାଇଲା ପରଠାରୁ ମୁହଁ ଫେରାଇ ନଥିଲେ । ସେମାନେ ସମସ୍ତେ ଯୁକ୍ତିପଦ୍ଧତି ଶୁଣିବାକୁ ଆଗ୍ରହ ପ୍ରଦର୍ଶନ କଲେ ।

ରବର୍ଟ ଜର୍ଡାନ୍ କହିଲେ "ହଁ ଦେଖିଲି । ବଡ଼ ସହଜ କାମ । ତୁମେ ବୁଝିବାକୁ ଚାହଁ ?'

ଲୋକଟା ଜବାବ ଦେଲା "ହଁ, ମୋର ଭାରି ଆଗ୍ରହ ।"

ରବର୍ଟ ଜର୍ଡାନ୍ କାମିଜ ପକେଟରୁ ଟିପାଖାତା ବାହାର କରି ତାକୁ ନକ୍‌ସା ଦେଖାଇଲେ ।

ଚେପ୍‌ଟାମୁହାଁ ଲୋକଟାର ନାମ ହେଉଛି ପ୍ରିମିଟିଭୋ । ସେ ଦେଖିକରି କହିଲା "ହଁ ଏଇଟା ତ ପୋଲ୍ ।"

ରବର୍ଟ ଜର୍ଡାନ୍ ପେନ୍‌ସିଲ୍ ମୁନରେ ନକ୍‌ସା ଦେଖାଇ ପୋଲ୍‌ଟା କପରି ଧ୍ୱଂସ କରିବାକୁ ହେବ ଏବଂ ସେଥିପାଇଁ ବିସ୍ଫୋରକର କି ଦରକାର ତାହା ବୁଝାଇ ଦେଲେ । କଟାଦାଗ ମୁହାଁ ଭାଇ ଜଣକର ନାମ ହେଉଛି ଆଣ୍ଡ୍ରିସ୍ । ସେ କହିଲା "ବଡ଼ ସହଜ କାମତ ? ଆଚ୍ଛା କପରି ବିସ୍ଫୋରଣ ଘଟିବ ?" ରବର୍ଟ ଜର୍ଡାନ୍ ସେ କଥା ମଧ୍ୟ ବୁଝାଇ ଦେଲେ । ଏହି ସମୟରେ ସେ କାନ୍ଧରେ କାହାର ସ୍ପର୍ଶ ଅନୁଭବ କରି ଦେଖିଲେ ଯେ ବାଳିକାଟି ତାଙ୍କ କାନ୍ଧରେ ବାହୁ ଥୋଇଛି । ପାବ୍‌ଲୋର ସ୍ତ୍ରୀ ମଧ୍ୟ ଏହା ଲକ୍ଷ୍ୟ କରୁଥିଲା । କେବଳ ପାବ୍‌ଲୋ ନିର୍ଲିପ୍ତ ରହି ତୁଆକୁ ତୁଆ ପିଆଲା ବୁଡ଼ାଇ ମଦ ପିଉଥିଲା । ମଦଭାଣ୍ଡରେ ମେରିଆ ଚମଡ଼ା ଥଳିରୁ ମଦ ଭରତି କରୁଥିଲା । ବାଳିକାଟି ମୃଦୁ ସ୍ୱରରେ ଜର୍ଡାନଙ୍କୁ ପଚାରିଲା "ତୁମେ ଏମିତି କାମ କଅଣ ବହୁତ କରିଅଛ ?"

'ହଁ ।'

"ଆମ୍ଭେମାନେ ତାହା ଦେଖିପାରିବା ତ ?"

"ନିଶ୍ଚୟ । ନ ଦେଖିବ ବା କାହିଁକି ?"

ଟେବୁଲ ସେମୁଣ୍ଡରୁ ପାବ୍‌ଲେ କହି ଉଠିଲା "ହଁ ଦେଖିବୁ । ମୁଁ ବିଶ୍ୱାସକରେ ଦେଖିବୁ ।"

ତାହାର ସ୍ତ୍ରୀ ଧମକ ଦେଇ କହିଲା "ମୁହଁ ବନ୍ଦକର ।" ଦ୍ୱିପ୍ରହର ବେଳେ ପାବ୍‌ଲେ ହାତରେ ଯାହା ଦେଖିଥିଲା ତାହା ହଠାତ୍ ମନେ ପଡ଼ିଯିବାରୁ ସେ ତତ୍‌କ୍ଷଣ ରାଗିଯାଇ କହିଲା "ଖୁଣୀ, ଅଲକ୍ଷଣିଆ ଖାରୁ, ମୁହଁ ବନ୍ଦକର ।"

ପାବ୍‌ଲେ କହିଲା "ହଉ ହଉ, ମୁଁ ଚୁପ ରହୁଛି । ତୁ ପରା ଏଠାର ଦଳପତି । ତେବେ ସେହି ସୁନ୍ଦର ନକ୍‌ସାକୁ ଗୁନ୍ଥିଥା । କିନ୍ତୁ ମନେରଖିଥା ମୁଁ ଓଲୁ ନୁହେଁ ।"

ପାବ୍‌ଲେ ସ୍ତ୍ରୀର ରାଗ ବର୍ତ୍ତମାନ ଦୁଃଖରେ ପରିଣତ ହୋଇଗଲା । ତା ମନରୁ ସବୁ ଆଶା ଓ ପ୍ରତିଶ୍ରୁତି ଲିଭି ଆସିଲା । ପିଲାଦିନୁ ଏପରି ଅନୁଭବ ତାହାର ଅଛି ଏବଂ ତହିଁର କାରଣ ମଧ୍ୟ ସେ ଜାଣେ । ହଠାତ୍ ତା ମନରେ ଏହି ଭାବ ଜାଗ୍ରତ ହେଲା । ଜୋରକରି ଏହି କ୍ଷଣିକ ଦୁର୍ବଳତାକୁ ସେ ଏଡ଼ିଦେଇ କହିଲା "ଆସ ଖାଇବା । ମେରିଆ ପରସିଦେ ।"

# ପଞ୍ଚମ ପରିଚ୍ଛେଦ

ଗୁହା ମୁହଁରେ ଲଟକା ଥିବା ଘୋଡ଼ା କମ୍ବଳଟି ହଟାଇ ଦେଇ ରବର୍ଟ ଜର୍ଡାନ୍ ବାହାରକୁ ଆସି ଥଣ୍ଡା ପବନର ନିଶ୍ୱାସ ନେଲେ । କୁହୁଡ଼ି ହଟି ଯାଇଥିବାରୁ ତାରାମାନେ ମିଟିମିଟି କରୁଥାନ୍ତି । ପବନ ବହୁ ନଥାଏ । ତମାଖୁ ଓ କୋଇଲା ଧୂଆଁ, ଭାତରନ୍ଧା ଗନ୍ଧ, ମାଂସ ତେଲ ମସଲା ମଦ ଏବଂ ଚମଡ଼ାର ଗନ୍ଧ ଭରିଥିଲା ଗୁହାଭିତରେ । ଭିତରଟା ଗରମଥିଲା । ଗୁହାଭିତରେ ମଥାଣରୁ ଝୁଲୁଥିଲା ନାନାଜାତିର ଚେରମୂଳ । ରସୁଣ, ଗନ୍ଧ, ମରିଚ ଓ ଘୋଡ଼ାଝାଳ ପ୍ରଭୃତି ମିଶି ଗୁହାଭିତରେ ଏକ ବିଚିତ୍ର ପରିବେଶ ସୃଷ୍ଟି ହୋଇଥିଲା । ବାହାରକୁ ଆସି ଦେବଦାରୁ ବଣର ମୁକ୍ତ ବାୟୁ ଏବଂ ମୁକ୍ତ ଆକାଶ ତଳେ ରବର୍ଟ ଜର୍ଡାନ୍ ଟାଣ ନିଶ୍ୱାସ ନେଲେ । ବହୁତ ବେଶୀ ଜାକର ପଡ଼ିଥାଏ । ପଡ଼ିଆ ଘାସରେ କାକର ଜମିଥାଏ । ସେ ତାହା ଦେଖି ଭାବିଲେ ହୁଏତ ସକାଳକୁ ତୁଷାରପାତ ଘଟିବ ।

ବାହାରେ ଠିଆ ହୋଇ ନିଶାଗର୍ଜନ ଶୁଣୁ ଶୁଣୁ ସେ ଦୂରରୁ ବନ୍ଧୁକ ଆବାଜ ଶୁଣି ପାରିଲେ । ତଳେ କେଉଁ କାଠ କୋରଡ଼ରେ ପେଚାଟାଏ ରାବୁଥାଏ । ସମ୍ଭବତ ଘୋଡ଼ାପାଗା ପାଖରେ । ଗୁହାଭିତରେ ତାନପୁରା ବଜାଇ ଜିପ୍‌ସି କୋମଳ ସ୍ୱରରେ ଗୀତ ଗାଇବା ମଧ୍ୟ ସେ ଶୁଣି ପାରିଲେ । କୃତ୍ରିମ ଓ କର୍କଶ ସ୍ୱରରେ ସେ ଶୁଣିଲେ କିଏ କହୁଛି 'ମୁଁ କିଛି ପୈତୃକ ସମ୍ପତ୍ତି ପାଇଅଛି ।' ଏହା ପରେ ଗୀତ ଗୁଞ୍ଜିଲା—

ଚନ୍ଦ୍ରମା ତପନ ଦୁହେଁ ପୈତୃକ ସମ୍ପତ୍ତି ମୋର
ବିଶ୍ୱ ବ୍ରହ୍ମାଣ୍ଡରେ ଭ୍ରମିଲେ ବି ଯେତେ ନାହିଁଟି ଷଣ୍ଢ ଏହାର ।

ଗାୟକ ଉଦ୍ଦେଶ୍ୟରେ ହର୍ଷଧ୍ୱନି ହେବାରୁ ତାନପୁରା ବନ୍ଦ ହୋଇଗଲା । ରବର୍ଟ ଜର୍ଡ଼ାନ୍ ଶୁଣିଲେ କିଏ ଜଣେ କହୁଛି 'ଗୋଟିଏ କାଣ୍ଟାଲାନ୍ ପ୍ରଦେଶର ଗୀତ ଶୁଣା ।' ଗାୟକ ନାହିଁ ନାହିଁ କରି ଶେଷକୁ ଗାଇଲା—

ମୋ ନାକଟା ଚେପେଟା
ମୋ ମୁହଁଟା କଳା
ତଥାପି ମୁଁ ଜଣେ ମଣିଷ ପରା ।

ଗିପ୍‌ସି ପୁଣି ବିଷାଦ ଓ ରହସ୍ୟ କରି ଗାଇଲା—

ଧନ୍ୟ ପ୍ରଭୁ ନିଗ୍ରୋ ମୁହିଁ
ନୁହେ କାଟାଲାନ ।

ପାବ୍‌ଲୋ ରାଗିଯାଇ କହିଲା 'ବଡ ଗୋଳମାଳ ହେଉଛି । ଗିପ୍‌ସି ଗୀତ ବନ୍ଦକର ।'

ସ୍ତ୍ରୀଲୋକ ମଧ୍ୟ କହିଲା 'ହଁ, ବଡ଼ ଗୋଳମାଳ । ତୁ ସିଭିଲ୍ ଗାର୍ଡ଼କୁ ଡକା ।'

ଗିପ୍‌ସି କହିଲା 'ମୁଁ ଆଉ ଗୋଟାଏ ପଦ ଜାଣେ ।' ସଙ୍ଗେ ସଙ୍ଗେ ତାନପୁରା ବାଜି ଉଠିଲାରୁ ସ୍ତ୍ରୀଲୋକ ତାହା ବନ୍ଦ କରାଇ ଦେଲେ ।

ଗିପ୍‌ସି କହିଲା 'ଆଜି ମୋ ଗଳା ଠିକ୍ ନାହିଁ ଏଣୁ କିଛି ଯାଏ ଆସେନା ।' ଏହା କହି ସେ ବାହାରକୁ ଚାଲିଗଲା । ରବର୍ଟ ଜର୍ଡାନ୍ ଦେଖିଲେ ଯେ ସେ ପହିଲେ ଗୋଟିଏ ଗଛ ପାଖକୁ ଗଲା ଏବଂ ସେଠାରୁ ତାଙ୍କ ପାଖକୁ ଆସି କୋମଳ କଣ୍ଠରେ ଡାକିଲା 'ରବର୍ଟୋ ।'

ସେ ଜବାବ ଦେଲେ 'ହଁ, ରାଫେଲ୍ କୁହ ।' ସେ ଗିପ୍‌ସିର କଣ୍ଠ ସ୍ୱରରୁ ଜାଣିଲେ ଯେ ଗିପ୍‌ସିକୁ ମଦ ନିଶା ଧାରିଲାଣି । ସେ ନିଜେ ଦୁଇଥର ସୁରାପାନ ଓ ଅନ୍ୟ ମଦ ପିଇଥିଲେ ମଧ୍ୟ ମୁଣ୍ଡ ଠିକ୍ ରଖିଥିଲେ ଏବଂ ପାବ୍‌ଲୋ ସଙ୍ଗେ ବାଗବିତଣ୍ଡା କରି ମଧ୍ୟ ମୁଣ୍ଡ ଥଣ୍ଡା ଥିଲା ।

ଗିପ୍‌ସି ପଚାରିଲା 'ତୁମେ ପାବ୍‌ଲୋକୁ କାହିଁକି ମାରି ନଦେଲେ ?'

'କାହିଁକି ମାରନ୍ତି ?'

'ଏବେ ହେଉ ବା କେବେ ହେଉ ତାକୁ ମାରିବାକୁ ପଡ଼ିବ । ତେବେ ବର୍ତ୍ତମାନ ମୁହୂର୍ତ୍ତର କି ଦୋଷ ।'

'ତୁମେ କଅଣ ଆନ୍ତରିକ ଭାବରେ କହୁଛ ?'

'ତେବେ ଅନ୍ୟମାନେ ଆଉ କଅଣ ଠାକ ରହିଥିଲେ ଭାବୁଛ । ବାଳିକାଙ୍କୁ ସ୍ତ୍ରୀଲୋକ କାହିଁକି ସେଠାରୁ ବାହାର କରି ଦେଇଥିଲା । ଆଜି ଯାହା ଘଟିଲା ଏହା ପରେ ଆଉ ରହିବା କଅଣ ସମ୍ଭବ ।'

'ତେବେ ତୁମେ ସମସ୍ତେ ତାକୁ ମାରି ପକାଇବା ଉଚିତ ।'

ଗିପ୍ସି କହିଲା 'ନା ସେ କାମ ତୁମର । ତୁମେ ତାକୁ ମାରିବ ବୋଲି ଆମ୍ଭେମାନେ ୩/୪ ଥର ଅପେକ୍ଷା କରିଥିଲୁ । ପାବ୍‌ଲୋର କୌଣସି ବନ୍ଧୁ ନାହିଁ ।'

ରବର୍ଟ ଜର୍ଡାନ୍ କହିଲେ 'ମୋ ମନରେ ସେ କଥା ଉଠିଥିଲା କିନ୍ତୁ ମୁଁ ଥମିଗଲି ।'

'ସେକଥା ତ ଆମେ ସମସ୍ତେ ଦେଖିଲୁ । ତୁମେ ପ୍ରସ୍ତୁତ ହେବା ମଧ୍ୟ ଦେଖିଥିଲୁ । କାହିଁକି ମାଇଲ ନାହିଁ ?'

'ମୁଁ ଭାବିଲି କାଳେ ତୁମ୍ଭେମାନେ ଏବଂ ସେ ସ୍ତ୍ରୀଲୋକ ଉତ୍ୟକ୍ତ ବୋଧ କରିବ ।'

'ହଁ୍ୟା । ସେ ସ୍ତ୍ରୀଲୋକଟା ଆଉ ଜଣେ ମରଦ କେବେ ଆସିବ ତାହାହିଁ ଅନାଇ ରହିଛି ।'

'ତୁମ ଚେହେରାରୁ ଯାହା ମନେ ହୁଏ ପ୍ରକୃତ ତୁମ ବୟସ ତହୁଁ ଊଣା ।'

'ହୋଇପାରେ ।'

'ବର୍ତ୍ତମାନ ତାକୁ ମାରି ପକାଅ ।' ଗିପ୍ସି କହିଲା ।

'କିନ୍ତୁ ତାହା ଯେ ନରହତ୍ୟା ହେବ ।'

'ହେଉ ପଛେ । ବିପଦ କମିଯିବ । ଯାଅ, ମାରିଦେଇ ଆସ ।'

'ମୁଁ ସେପରି କରି ପାରିବି ନାହିଁ । ଏହା ମୋ ରୁଚି ବିରୁଦ୍ଧ ଏବଂ ଆମର ଆଦର୍ଶ ନିମିତ୍ତ ଏଭଳି କାମ ଅନୁଚିତ ।'

'ତେବେ ତାକୁ ରଗେଇ ଦେଇ ମାର । ମାରିବାକୁ ହିଁ ହେବ । ଅନ୍ୟ ପ୍ରତିକାର ନାହିଁ ।' ଗିପ୍‌ସି କହିଲା । ସେମାନେ କଥା ହେଉଥିଲା ବେଳେ ପେଚାଟାଏ ଚୁପଚାପ ଉଡ଼ି ଗଛଡାଳକୁ ଚାଲିଗଲା । ଉଡ଼ିଲାବେଳେ ତାଙ୍କ ପାଖରେ ତଳକୁ ଖସି

ଡେଣା ହଲାଇ ପୁଣି ଉଠିଗଲା କିନ୍ତୁ ଶିକାର ଧଇଲା ବେଳ ପର ଡେଣା ଫଡ୍ ଫଡ୍ କଲା ନାହିଁ ।

ସେଗୃକୁ ଦେଖାଇ ଗିପ୍ସି କହିଲା 'ଏମିତ ଭାବରେ ମଣିଷ କାମ କରିବା କଥା ।'

ରବର୍ଟ ଜର୍ଡାନ୍ କହିଲେ 'ଦିନବେଳେ ଅନ୍ଧପରି ଗଛରେ ବସିବ, ରାତ୍ରି ଝୁମ୍ପି ଥିବେ ।'

'ଏହା କ୍ୱଚିତ ଘଟେ । ତେବେ ବିପଦ ଥିଲେ ମଧ୍ୟ ତାକୁ ମାରିପକାଅ । ପଛେ ଏହା କଷ୍ଟକର ହୋଇ ପଡ଼ିବ ।'

'ବର୍ତ୍ତମାନ ତ ସୁଯୋଗ ଗଡ଼ିଗଲାଣି ।'

ଗିପ୍ସି କହିଲା 'ତାକୁ ରଗାଇ ଦିଅ କିମ୍ବା ନୀରବତାର ସୁଯୋଗ ନିଅ ।'

ଗୁହା ମୁହଁ କମ୍ବଳ ହଟିଗଲା । ଭିତରୁ ଆଲୁଅ ପଡ଼ିଲା । ଜଣେ ଲୋକ ତାଙ୍କ ଠିଆ ହେବା ସ୍ଥାନକୁ ଆସିଲେ ।

ସେହି ଲୋକଟି ଭାରି ଗଳାରେ କହିଲା 'ରାତଟି ବଡ଼ ସୁନ୍ଦର । ଏଣିକ ଭଲ පାଗ ହେବ ।' ଲୋକଟି ହେଉଛି ପାବ୍ଲୋ । ସେ ସେହି ରୁଷଦେଶୀୟ ସିଗ୍ରେଟ୍ ଖଣ୍ଡେ ଟାଣୁଥିଲା । ସିଗ୍ରେଟ୍ ନିଆଁରେ ତାହାର ଗୋଲ ମୁହଁ ଦେଖା ଯାଉଥାଏ । ତାହାର ଦୀର୍ଘ ବାହୁ ଏବଂ ବଳିଷ୍ଠ ଶରୀର ମଧ୍ୟ ତାରି ଆଲୋକରେ ଦେଖା ଯାଉଥିଲା ।

ସେ ରବର୍ଟ ଜର୍ଡାନଙ୍କୁ କହିଲା 'ସେ ସ୍ତ୍ରୀଲୋକ କଥା ବିଶ୍ୱାସ କରିବ ନାହିଁ । ସିଗ୍ରେଟ୍ ନିଆଁରେ ତାହାର ହାତ ଦେଖାଗଲା । ସ୍ତ୍ରୀଲୋକଟା 'ବେଳେ ବେଳେ ଅଡ଼ୁଆ୍ଟ୍ ହୋଇ ଉଠେ କିନ୍ତୁ ସେ ଖୁବ୍ ଭଲ ସ୍ତ୍ରୀଲୋକ । ସାଧାରଣତନ୍ତ୍ର ପ୍ରତି ଏକାନ୍ତ ଅନୁରକ୍ତା' କଥା କହିଲାବେଳେ ସିଗ୍ରେଟ୍ ନିଆଁର ଆଲୁଅ ଜଳି ଉଠିଲା । ବୋଧହୁଏ ମୁହଁରେ ସିଗ୍ରେଟ୍ ଧରି ସେ ମୁହଁ କୋଣରୁ କଥା କହୁଥିଲେ ।

ସେ ପୁଣି କହିଲା "ଆଉ କିଛି ଅସୁବିଧା ନାହିଁ । ଆମ ସମସ୍ତଙ୍କର ଏକମତ । ତୁମ ଆସିବାରେ ମୁଁ ଖୁବ୍ ଖୁସି । ଯେଉଁ ଯୁକ୍ତିତର୍କ ହେଲା ତାକୁ ଭୁଲିଯାଅ । ତୁମେ ଆମ ସହିତ ଆନନ୍ଦରେ ରହିପାର । ହଉ ତେବେ ମୁଁ ଯାଉଛି ଘୋଡ଼ାଗୁଡ଼ିକ କେମିତି ରହିଲା ଦେଖିବ ।" ଏହା କହି ସେ ବଣଭିତରେ ପଡ଼ିଆ ଆଡ଼କୁ ଚାଲିଗଲା ଏବଂ ସେମାନେ ତଳୁ ଗୋଟାଏ ଘୋଡ଼ାର ହ୍ରେଷାରବ ଶୁଣିବାକୁ ପାଇଲେ ।

ଜିପ୍‌ସି କହିଲା 'ଏବେ ଦେଖିଲ, ମୁଁ କଅଣ କହୁଥିଲି । ଏମିତି ଭାବରେ ସୁଯୋଗ ଖସିଗଲା ।' ରବର୍ଟ ଜର୍ଡାନ୍ ମୁହଁ ନ ଫିଟାଇବାରୁ ଜିପ୍‌ସି ରାଗରେ କହିଲା 'ମୁଁ ତଳକୁ ଯାଉଅଛି ।'

'କଅଣ ପାଇଁ ?'

'ଆଉ କଅଣ ପାଇଁ ? ତାକୁ ପଳାଇବାରେ ବାଧା ଦେବାକୁ ।'

'ତଳୁ ଗୋଟିଏ ଘୋଡ଼ା ନେଇ ସେ କଅଣ ପଳାଇ ପାରିବ ?'

'ନାହିଁ ।'

'ତେବେ ଯାଇ ତାକୁ ଅଟକାଅ ।'

'ଅଗଷ୍ଟିନ୍ ସେଠାରେ ଅଛି ।'

'ତେବେ ଯାଇ ଏଠାରେ ଯାହା ଯାହା ଘଟିଲା ଅଗଷ୍ଟିନ୍‌କୁ କୁହ ।'

'ଅଗଷ୍ଟିନ୍ ତାକୁ ମାରି ପକାଇବାକୁ ଅଣୁମାତ୍ର କୁଣ୍ଠିତ ହେବ ନାହିଁ ।'

'ତେବେ ତ ଭଲ ? ତୁମେ ଯାଇ ଯାହା ଯେପରି ଘଟିଲା କହିଦିଅ ।' ରବର୍ଟ କହିଲେ ।

'ତାପରେ ?'

'ମୁଁ ପଡ଼ିଆ ଆଡ଼େ ଯାଉଅଛି ।'

'ସାବାସ୍, ଇଏ ତ କଥା ପରି କଥା । ବର୍ତ୍ତମାନ ତୁମେ ଅସ୍ଥା ଭିଡ଼ିଲ ।' ରାଫେଲ କହିଲା । ଅନ୍ଧାରରେ ତା ମୁହଁ ଦେଖାଯାଉ ନଥିଲା ତଥାପି ସେ ଯେ ହସୁଥିଲା ଏହା ଜର୍ଡାନ୍ ବୁଝିଲେ ।

ରବର୍ଟ ଜର୍ଡାନ୍ କହିଲେ "ଅଗଷ୍ଟିନ୍ ପାଖକୁ ଯାଅ ।"

'ହଁ ଯାଉଛି ।' ଜିପ୍‌ସି କହିଲା ।

ରବର୍ଟ ଜର୍ଡାନ୍ ଗଛ ଧାଡ଼ିରେ ଅଣ୍ଡାଳି ଅଣ୍ଡାଳି ପଡ଼ିଆ କାନ୍ଥିକୁ ଗଲେ । ପଡ଼ିଆରେ ଅନ୍ଧାରଟା ଊଣା କାରଣ ତାରା ଆଲୁଅ ପଡ଼ିଥିଲା । ସେ ଘୋଡ଼ାମାନଙ୍କର ଅବସ୍ଥିତି ଝାପ୍‌ସା ଭାବେ ଦେଖିପାରିଲେ । ଘୋଡ଼ାଗୁଡ଼ିକ ଏଠି ସେଠି ବିକ୍ଷିପ୍ତ ଭାବରେ ଥିଲେ ମଧ୍ୟ ଗଣି ଦେଖିଲେ ୫ଟା ଘୋଡ଼ା । ସେ ଗୋଟାଏ ଦେବଦାରୁ ଗଛ ମୂଳେ ବସି ପଡ଼ି ପଡ଼ିଆ ସେ ପାଖକୁ ଅନାଇଲେ । ଭାବିଲେ କ୍ଳାନ୍ତ ହୋଇ ପଡ଼ିଥିବାରୁ ତାଙ୍କର ବିଚାର ଶକ୍ତି ଦୁର୍ବଳ ହୋଇଯାଇଛି । ପୋଲଟା ଧ୍ୱଂସ କରିବା ତାଙ୍କର

ପ୍ରଧାନ ଦାୟିତ୍ୱ ଏବଂ ସେ କାମଟି ନିର୍ବାହ କରିବା ପୂର୍ବରୁ ସେ ଅନ୍ୟ କୌଣସି ବିପଦ ଇଚ୍ଛା କରି ବରଣ କରିବେ ନାହିଁ । ତେବେ ବେଳେ ବେଳେ ଅବସ୍ଥା ଅନୁପାତରେ ବ୍ୟବସ୍ଥା ଗ୍ରହଣ ନକଲେ ବିପଦର ମାତ୍ରା ବଢି ଯାଇଥାଏ । ଏତେବେଳ ଯାଏ ସେ ଅବସ୍ଥାକୁ ଆପଣା ମାର୍ଗରେ ଛାଡ଼ି ଦେଇଥିଲେ । ଜିପ୍‌ସି କହୁଥିଲେ ଯେ ସମସ୍ତେ ଆଶା କରିଥିଲେ ମୁଁ ପାବ୍‌ଲୋକୁ ମାରି ପକାଇବି । ଏକଥା ସତ୍ୟ ହେଲେ ମୋର ସେ କାମ କରିବା ଉଚିତ ଥିଲା କିନ୍ତୁ ସେମାନଙ୍କର ଯେପରି ଇଚ୍ଛା ମୁଁ ଭଲ ଭାବରେ ବୁଝି ପାରି ନଥିଲି । ଯେଉଁମାନଙ୍କ ସାଙ୍ଗରେ ଭବିଷ୍ୟତରେ କାମ କରିବାକୁ ପଡ଼ିବ ସେଥି ମଧ୍ୟରୁ ଜଣକୁ ମାରିବା ଜଣେ ନବାଗତ ବ୍ୟକ୍ତି ପକ୍ଷରେ ଭଲ ନୁହେ । ଲଢ଼େଇବେଳେ ଏହା କରାଯାଇପାରେ କିମ୍ବା ଶୃଙ୍ଖଳା ରକ୍ଷା ନିମିତ୍ତ ଅନିବାର୍ଯ୍ୟ ହେଲେ କରାଯାଇପାରେ । କିନ୍ତୁ ଏ କ୍ଷେତ୍ରରେ ଭଲ ହୋଇ ନଥାନ୍ତା । ଅବଶ୍ୟ ଏଥିପାଇଁ ବହୁ ପ୍ରଲୋଭନ ଜୁଟିଥିଲା ଏବଂ କାମଟା ମଧ୍ୟ ଖୁବ୍ ସହଜ ଓ ସଂକ୍ଷିପ୍ତ ଥିଲା । କିନ୍ତୁ ଏ ଅଞ୍ଚଳରେ କୌଣସି କାମ ଏତେ ସହଜ ଓ ସରଳ ବୋଲି ବିଶ୍ୱାସ କରି ହେବ ନାହିଁ । ସ୍ତ୍ରୀଲୋକଟି ଉପରେ ପୂର୍ଣ୍ଣ ନିର୍ଭର କଲେ ମଧ୍ୟ ଏହି ନିର୍ମମ କାମର ପ୍ରତିକ୍ରିୟା ସେ କିପରି ଗ୍ରହଣ କରନ୍ତା ଠିକଣା ନାହିଁ । ଏମିତ ଜାଗାରେ ଯିଏ ମରିବ ସେ ଖୁବ୍ କୁତ୍ସିତ, ମନ୍ଦ ଏବଂ ଜଘନ୍ୟ ହୋଇପାରେ । ସ୍ତ୍ରୀ ଲୋକର ପ୍ରତିକ୍ରିୟା ଜାଣିବାର ଉପାୟ ନଥିଲା । ସ୍ତ୍ରୀ ଲୋକଟିକୁ ବାଦ ଦେଲେ ଏଠାରେ କୌଣସି ଶୃଙ୍ଖଳା କିମ୍ବା ସଂଗଠନ ରହି ପାରିବ ନାହିଁ । ସ୍ତ୍ରୀ ଲୋକଟି ଥିବାଯାଏ ସବୁ ଖୁବ୍ ଭଲ ହେବ । ସେ ସ୍ତ୍ରୀଲୋକ, ରାଫେଲ କିମ୍ବା ଅଗଷ୍ଟିନ୍ ଭିତରୁ କେହି ତାକୁ ହତ୍ୟାକଲେ ଭଲ ହେବ । ଆନ୍‌ସେଲ୍‌ମୋ ହତ୍ୟା ବିରୁଦ୍ଧରେ ବୋଲି ମତ ପ୍ରକାଶ କଲେ ସୁଦ୍ଧା ମୁଁ କହିଲେ ହତ୍ୟା କରିପାରେ । ସେ ତାକୁ ଘୃଣା କରେ ଏବଂ ମୋତେ ବିଶ୍ୱାସ କରେ କାରଣ ମୁଁ ହେଉଛି ତା ବିଶ୍ୱାସର ଏକ ପ୍ରତୀକ । କେବଳ ସେ ଏବଂ ସ୍ତ୍ରୀଲୋକ ଏହି ଦୁହେଁ ସାଧାରଣତନ୍ତ୍ରର ଭକ୍ତ । ତଥାପି ଏତେ ଶୀଘ୍ର ସବୁ କଥା ଜାଣିବା ସହଜ ନୁହେ ।

ତାରା ଆଲୋକରେ ତାଙ୍କ ଚକ୍ଷୁ ଅଭ୍ୟସ୍ତ ହୋଇଯିବାରୁ ସେ ଦେଖିଲେ ଯେ ପାବ୍‌ଲୋ ଗୋଟିଏ ଘୋଡ଼ା ପାଖରେ ଠିଆ ହୋଇଅଛି । ଘୋଡ଼ା ଘାସ ଚରୁ ଚରୁ ମୁଣ୍ଡ ଉଠାଇଲା ଏବଂ ସଙ୍ଗେ ସଙ୍ଗେ ଅଧୀର ହୋଇ ତଳକୁ ନଇଁଲା । ପାବ୍‌ଲୋ ଘୋଡ଼ାକୁ ଆଉଜି ଠିଆ ହୋଇ ଖଣ୍ଡିଏ ଦଉଡ଼ି ଧରି ଘୋଡ଼ା ସାଙ୍ଗରେ ହାଲୁଥାଏ ଏବଂ ଘୋଡ଼ା ବେକ ଆଉଁସୁଥାଏ । ଚରିଲାବେଳେ ଏପରି କୋମଳତା ଦେଖି ଘୋଡ଼ାଟା ଅଧୈର୍ଯ୍ୟ ହୋଇ ଉଠୁଥାଏ । ପାବ୍‌ଲୋ କଅଣ କରୁଛି କିମ୍ବା ଘୋଡ଼ାକୁ କଅଣ କହୁଛି ରବର୍ଟ ଜର୍ଡାନ୍ ଶୁଣି ପାରିଲେ ନାହିଁ । କିନ୍ତୁ ସେ ଘୋଡ଼ାକୁ ଫିଟାଇ

ଜନ୍ ଆଣ୍ଟୁ ନଥିଲା । ରବର୍ଟ ଜର୍ଡ଼ାନ୍ ବସି ରହି ପାବ୍‌ଲୋକୁ ଚାହିଁଲେ ଏବଂ ନିଜର ସମସ୍ୟା ପରିଷ୍କାର ଭାବରେ ଚିନ୍ତା କରିବାକୁ ଲାଗିଲେ ।

ଅନ୍ଧାରରେ ପାବ୍‌ଲୋ ଘୋଡ଼ାକୁ ଆଦର କରି କହୁଥାଏ 'ମୋ ସୁନା ଘୋଡ଼ା, ମୋ ଧଳା ମୁହାଁ ସୁନ୍ଦର ଘୋଡ଼ା । ତୋ ବେକୁଟା ଧନୁ ପରି । କିନ୍ତୁ ଧନୁଠାରୁ ଅଧିକ ସୁନ୍ଦର ।' ଘୋଡ଼ାଟା ଘାସ ପୁଳା ପୁଳା ଖାଉଥାଏ, ମୁଣ୍ଡ ହଲଉଥାଏ ଏବଂ ଲୋକଟା କଥାରେ ଚିଡ଼ି ଯାଉଥାଏ । ପାବ୍‌ଲୋ ପୁଣି କହିଲା "ତୁ ମାଇକିନିଆ ନୋହୁ କିମ୍ବା ନିର୍ବୋଧ ନୋହୁ, ତୁ ମୋର ସୁନ୍ଦର କୁନି ଘୋଡ଼ା । ତୁ ମୁହଁଖୋର ସ୍ତ୍ରୀଲୋକ ନୋହୁ । ତୁ ଲଜାନତ ବାଳିକା ମଧ୍ୟ ନୋହୁ କିମ୍ବା ମା ଦୁଧ ଖାଇବା ପିଲା ନୋହୁ । ତୁ ଅପମାନ କରୁନା, ମିଛ କହୁନା କିମ୍ବା କିଛି ବୁଝୁନା । ମୋ ସୁନାଘୋଡ଼ା, ମୋ ଲକ୍ଷ୍ମୀ ଘୋଡ଼ା'।'

ଘୋଡ଼ା ସଙ୍ଗେ ପାବ୍‌ଲୋର କଥା ଖୁବ୍ ଆମୋଦ ପ୍ରମୋଦ ହେଲେ ମଧ୍ୟ ରବର୍ଟ ଜର୍ଡ଼ାନ୍ ଆଉ ଶୁଣିଲେ ନାହିଁ । ସେ ବୁଝିଲେ ଯେ ପାବ୍‌ଲୋ ନିଜ ଘୋଡ଼ା ସବୁ ସୁମାରି କରୁଅଛି ସୁତରାଂ ଏପରି ଅବସ୍ଥାରେ ତାକୁ ହତ୍ୟା କରିବା ଯଥାର୍ଥ ହେବ ନାହିଁ । ଏହା ବିଚାରି ସେ ଗୁହାକୁ ଫେରିଗଲେ । ପାବ୍‌ଲୋ ଘୋଡ଼ା ସଙ୍ଗେ କଥା ହେବାକୁ ବହୁକାଳ ପଡ଼ିଆରେ ରହିଲା । ଘୋଡ଼ା ତା କଥାରୁ ଅବା କଅଣ ବୁଝିବ । ଖାଲି ବୁଝୁଥାଏ ଆଦରର ଭଙ୍ଗିଟା କିନ୍ତୁ ଦିନ ତମାମ ଖୁଣ୍ଟରେ ବନ୍ଧା ରହି ବେକ ବଢ଼ାଇ ଘାସ କେରା କେରା ଖାଉଥିଲାବେଳେ ଏପରି ସ୍ନେହ ବାକ୍ୟରେ ସେ ବିରକ୍ତ ହୋଇଯିବା ସ୍ୱାଭାବିକ । ପାବ୍‌ଲୋ ଘୋଡ଼ାର ଖୁଣ୍ଟ ଟିକିଏ ହଟାଇ ଦେଇ ନୀରବରେ ଠିଆ ହେଲାରୁ ଘୋଡ଼ାଟି ଆନନ୍ଦରେ ଚରିବାକୁ ଲାଗିଲା ।

# ଷଷ୍ଠ ପରିଚ୍ଛେଦ

ଗୁହା ଭିତରେ ରବର୍ଟ ଜର୍ଡ୍ଡାନ୍ ଚମଡ଼ା ଟୁଲ୍ ପକାଇ ଚୁଲ୍ଲୀ ପାଖରେ ବସିଥାନ୍ତି । ସ୍ତ୍ରୀଲୋକଟି ଥାଳା ବାଟି ଧୋଉଥାଏ ଏବଂ ମେରିଆ ତାକୁ ପୋଛି ଶୁଖାଇ ଝାଞ୍ଜି ଆଲମାରୀରେ ସଜାଇ ରଖୁଥାଏ ।

ସ୍ତ୍ରୀ ଲୋକଟି କହିଲା "ଆଶ୍ଚର୍ଯ୍ୟ କଥା ଏଲ୍ ସୋର୍ଡୋ ଏତେବେଳଯାଏ ଆସିଲା ନାହିଁ । ତାହାର ଘଣ୍ଟାଏ ଆଗରୁ ଆସିବା କଥା ।"

'ତୁ କଅଣ ତାକୁ ଡକାଇ ଅଛୁ ?'

'ନା, ସେ ନିତନା ଆସିଥାଏ ।'

'ଆଜି ହୁଏତ କାହିଁ କିଛି କାମରେ ଅଟକି ଯାଇଥିବ ।'

'ହୋଇପାରେ । ସେ ଆଜି ନ ଆସିଲେ କାଲି ଆମେ ତା ପାଖକୁ ଯିବା ।'

'ହଁ । ସେ କଅଣ ଦୂରରେ ଥାଏ ?'

'ନା । ତଥାପି ଚାଲିକରି ଯିବା ଦ୍ଵାରା ଟିକିଏ ଅଙ୍ଗଚାଳନା ହେବ । ମୋର ଅଙ୍ଗଚାଳନା ଲୋଡ଼ା ।

ମେରିଆ ପଚାରିଲା "ମୋତେ ନେବ ? ପିଲାର, ମୁଁ ଯାଇ ପାରିବେ ?"

ସ୍ତ୍ରୀଲୋକ କହିଲା "ହଁ ଲୋସୁନ୍ଦରୀ ।" ଏହାପରେ ରବର୍ଟ ଜର୍ଡ୍ଡାନଙ୍କ ଆଡ଼କୁ ନିଜର ବିଶାଳ ମୁହଁ ବୁଲାଇ ପଚାରିଲା "ସେ ସୁନ୍ଦରୀ ନୁହେ ? ତୁମେ କଅଣ ମନେ କରୁଛ ? ଟିକିଏ କୃଶାଙ୍ଗୀ ମାତ୍ର ।"

ରବର୍ଟ ଜର୍ଡାନ୍ ଉତ୍ତର ଦେଲେ "ମୋ ଦୃଷ୍ଟିରେ ସେ ଖୁବ୍ ଭଲ ।" ମେରିଆ ତାଙ୍କ ପିଆଲାରେ ମଦ ଦେଇ କହିଲା 'ଏତକ ପିଇଦଅ, ମୁଁ ଆହୁରି ଭଲ ଦିଶିବ । ମୋ ସୌନ୍ଦର୍ଯ୍ୟ ବଢ଼ାଇବା ପାଇଁ ତୁମକୁ ବହୁତ ମଦ ପିଇବାକୁ ପଡ଼ିବ ।'

ରବର୍ଟ ଜର୍ଡାନ୍ କହିଲେ "ତୁମେ ବର୍ତ୍ତମାନ ଭାରି ସୁନ୍ଦର ଦେଖାଯାଉଛ । ଅଧିକ ଦରକାର ନାହିଁ ଏଣୁ ଅଧିକ ମଦ ପିଇବା ଦରକାର ନାହିଁ ।

ସ୍ତ୍ରୀଲୋକଟି କହିଲା "ଏଇତ ହେଲା କଥାର ଢଙ୍ଗ । ଭଲଲୋକ ପରି ତୁମେ କଥା କହୁଛ । ଆଚ୍ଛା ଆଉ କଅଣ ଦେଖୁଛ ?"

ରବର୍ଟ ଜର୍ଡାନ୍ ଅଟକେଇ ଅଟକେଇ କହିଲେ 'ସେ ବଡ଼ ବୁଦ୍ଧିମତୀ ।' ମେରିଆ ଖିଲ ଖିଲ ହସି ଉଠିଲା ଏବଂ ସ୍ତ୍ରୀଲୋକଟି ଦୁଃଖରେ ମୁଣ୍ଡ ହଲାଇ କହିଲା "କେଡ଼େ ସୁନ୍ଦର ଭାବରେ ଆରମ୍ଭ କଲେ ଅଥଚ ଶେଷକଲେ ବ ଖରାପ ଭାବରେ ଡନରବର୍ଟୋ !"

'ମୋତେ ଡନ୍ ରବର୍ଟୋ ବୋଲି ଡାକ ନାହିଁ ।'

'ମୁଁ ଥଟ୍ଟାରେ କହିଲି । ଏଠି ଆମେ ଥଟ୍ଟାରେ ଡନ୍ ପାବ୍ଲୋ ଏବଂ ମେରିଆକୁ ସିନରିଟା ମେରିଆ ବୋଲି କହୁଥାଉଁ ।'

ରବର୍ଟ ଜର୍ଡାନ୍ କହିଲେ 'ମୁଁ ସେ ଧରଣର ଥଟ୍ଟା କରେ ନାହିଁ । ଏ ଯୁଦ୍ଧରେ ସାଥୀ ବୋଲି କହିଲେ ସବୁଠାରୁ ଭଲ ଓ ଯଥାର୍ଥ ସମ୍ବୋଧନ ହେବ । ଥଟ୍ଟାରୁ ଖଟା ବାହାରେପାପର ।'

ତାଙ୍କୁ ଚଡ଼େଇବା ଉଦ୍ଦେଶ୍ୟରେ ସ୍ତ୍ରୀ ଲୋକଟି କହିଲା 'ଦେଖୁଛି ତୁମର ରାଜନୀତି, ତୁମର ଧର୍ମବିଶ୍ୱାସ ହୋଇ ପଡ଼ିଛି । ତୁମେ ଥଟ୍ଟା ମଧ୍ୟ ସହୁ ନାହଁ ?'

'ହଁ, ମୁଁ ଥଟ୍ଟା ଭଲପାଏ କିନ୍ତୁ ସମ୍ବୋଧନରେ ନୁହେ । ଏହା ମୋର ପତାକା ସଦୃଶ ।'

ସ୍ତ୍ରୀଲୋକ ହସି ହସି କହିଲା 'ପତାକା ନେଇ ମୁଁ ଥଟ୍ଟା କରିପାରେ । ମୋ ପାଖରେକେହି କୌଣସି ବିଷୟରେ ବ୍ୟଙ୍ଗ କରିପାରିବ ନାହିଁ । ପୁରୁଣା ହଳଦିଆ ଆଉ ସୁନେଲି ରଙ୍ଗ ପତାକାକୁ ଆମେ ପୂଜ ରକ୍ତ କହୁଥିଲୁ । ସାଧାରଣତନ୍ତ୍ର ପତାକାରେ ଲାଲ ରଙ୍ଗ ମିଶିବାରୁ ଆମେ ତାକୁ ପୂଜ ରକ୍ତ ଏବଂ ବାଇଗଣୀ ବୋଲି କହିଲୁ । ଏହାହିଁ ବ୍ୟଙ୍ଗ ।'

ମେରଆ କହିଲା "ସେ ପରା ଜଣେ ସାମ୍ୟବାଦୀ । ସାମ୍ୟବାଦୀମାନେ ସବୁବେଳେ ଗମ୍ଭୀର ।'

'ତୁମେ କଅଣ ସାମ୍ୟବାଦୀ ।?'

'ନା, ମୁଁ ଜଣେ ଫ୍ୟାସିଷ୍ଟ ବିରୋଧୀ ।'

'କେତେ କାଳ ହେଲା ?'

'ଯେବେଠୁଁ ଫ୍ୟାସିଷ୍ଟବାଦ ବୁଝିଲି ।'

'ସେ କେତେ ବର୍ଷ ହେବ ?'

'ପ୍ରାୟ ଦଶ ବର୍ଷ ।'

ସ୍ତ୍ରୀ ଲୋକଟି କହିଲା "ତେବେତ ସେପରି ଦୀର୍ଘକାଳ ନୁହେ । ମୁଁ ତ ଗତ ୨୦ ବର୍ଷ ଧରି ସାଧାରଣତନ୍ତ୍ରବାଦୀ ହୋଇଅଛି ।"

ମେରଆ କହିଲା "ମୋ ବାପା ସାରା ଜୀବନ ସାଧାରଣତନ୍ତ୍ର ଭକ୍ତଥିଲେ ବୋଲି ସେମାନେ ତାଙ୍କୁ ଗୁଳିକରି ମାରି ପକାଇଲେ ।

ରବର୍ଟ ଜର୍ଡ଼ାନ୍ କହିଲେ "ମୋ ବାପ, ମୋ ଅଜା ସାରା ଜୀବନ ସାଧାରଣ ତନ୍ତ୍ରବାଦୀ ଥିଲେ ।"

'କେଉଁଠି ?'

'ମାର୍କିନ ଯୁକ୍ତ ରାଜ୍ୟରେ ।'

ସ୍ତ୍ରୀଲୋକ ପଚାରିଲା "ତାଙ୍କୁ କଅଣ ଗୁଳି ମାରି ଦେଇଥିଲେ ।"

ମେରଆ କହିଲା 'ଧେତ୍ । ମାର୍କିନ ଯୁକ୍ତ ରାଜ୍ୟଟା ହେଲା ଗଣତାନ୍ତ୍ରିକ ରାଜ୍ୟ । ସେଠାରେ ସାଧାରଣତନ୍ତ୍ରବାଦୀଙ୍କୁ କେହି ମାରନ୍ତି ନାହିଁ ।'

ସ୍ତ୍ରୀଲୋକଟି କହିଲା "ସେ ଯାହାହେଉ, ଅଜା ସାଧାରଣତନ୍ତ୍ର ଭକ୍ତ ଥିବା ଭଲ କଥା ସେଥିରୁ ଭଲ ରକ୍ତର ପରିଚୟ ମିଳେ ।"

ରବର୍ଟ ଜର୍ଡ଼ାନ୍ କହିଲେ 'ମୋ ଅଜା ସାଧାରଣତନ୍ତ୍ରର କମିଟି ମେମ୍ବର ଥିଲେ ।' ଏ କଥାରେ ମେରିଆ ଅଧିକ ପ୍ରଭାବିତା ହୋଇଗଲା ।

ପିଲାର ପଚାରିଲା "ତୁମ ବାପା ଏବେ ମଧ୍ୟ କଅଣ ସାଧାରଣତନ୍ତ୍ରରେ ସକ୍ରିୟ ଅଛନ୍ତି ?"

'ନା, ସେ ମରିଗଲେଣି ।'

'କେମିତି ମଲେ ପଚାରି ପାରେ ?'

'ସେ ନିଜକୁ ଗୁଳି ମାରି ମଲେ ।'

ସ୍ତ୍ରୀ ଲୋକ ପଚାରିଲେ "ଅତ୍ୟାଚାରରୁ ରକ୍ଷା ପାଇବାକୁ ଆତ୍ମହତ୍ୟା କଲେ କି ?"

ରବର୍ଟ ଜର୍ଡାନ୍ ସେ କଥାରେ ହଁ ଭରିବାରୁ ମେରିଆ ଅଶ୍ରୁପୂର୍ଣ୍ଣ ଆଖିରେ ତାଙ୍କୁ ଅନାଇ କହିଲା "ମୋ ବାପା ଝଣ୍ଡିଏ ହତିଆର ପାଇଲେ ନାହିଁ । ମୁଁ ଶୁଣି ଖୁବ୍ ଖୁସି ହେଲି ଯେ ତୁମ ବାପା ହତିଆର ପାଇଥିଲେ । ଏହା ତାଙ୍କର ସୌଭାଗ୍ୟ ।"

ରବର୍ଟ ଜର୍ଡାନ୍ କହିଲେ "ହଁ, ସୌଭାଗ୍ୟ ବୋଲି ଧରିବାକୁ ହେବ । ଆସ ଆମେ ଅନ୍ୟ ପ୍ରସଙ୍ଗ ଚର୍ଚ୍ଚା କରିବା ନାହିଁକି ?"

ମେରିଆ କହିଲା "ତେବେ ତ ତୁମେ ଓ ମୁଁ ସମଦଶାପନ୍ନ ।" ସେ ତାଙ୍କ ବାହୁରେ ହାତ ରଖି ମୁହଁକୁ ଚାହିଁଲା । ସେ ତାହାର ଶ୍ୟାମଳ ମୁଖ ଏବଂ ଆଖିକୁ ଅନାଇଲେ । ସେ ଆଖିରେ ଶରୀର ଅନ୍ୟ ଅଂଶ ପରି ତାରୁଣ୍ୟ ଆଭା ନ ଥିଲେ ମଧ୍ୟ ଲୋଲୁପ ଯୌନ କ୍ଷୁଧା ଭରି ରହିଥିଲା ।

ସ୍ତ୍ରୀ ଲୋକଟି କହିଲା "ଦେଖିବାରୁ ତୁମେ ଦୁହେଁ ଭାଇ ଭଉଣୀ ପରି ଜଣା ପଡୁଛ । କିନ୍ତୁ ଭାଇ ଭଉଣୀ ଯେ ନୁହ ଏହାହିଁ ସୌଭାଗ୍ୟର ବିଷୟ ।"

ମେରିଆ କହିଲା "ବର୍ତ୍ତମାନ ବୁଝିଲି ଯେ ମୁଁ କାହିଁକି ଏପରି ଆକୃଷ୍ଟ ହେଉଥିଲି ।"

ରବର୍ଟ ଜର୍ଡାନ୍ କହିଲେ 'ବେଶ୍ ।' ତା ପରେ ସେ ନିଜ ମୁଣ୍ଡ ଚୁଳରେ ହାତ ବୁଲାଇଲେ । ଏତିକ କରିବାକୁ ସେ ବହୁ ବେଳରୁ ଲୋଡ଼ୁଥିଲେ, ତାଙ୍କର କଣ୍ଠ ରୁଦ୍ଧ ହୋଇ ଆସିଲା । ମେରିଆ ତାଙ୍କ ହାତ ତଳେ ମୁଣ୍ଡ ପୁରାଇ ମୁହଁକୁ ଅନାଇଲା । ଜର୍ଡାନ୍ ତାହାର ଛୋଟ ବାଲ ଗୁଡ଼ିକରେ ଅଙ୍ଗୁଳି ପୁରାଇ କୁଣ୍ଡାଇଲେ । ପରେ ତା ବେକରେ ହାତ ରଖିଲେ ଏବଂ ତଳକୁ ଝୁଲାଇ ଦେଲେ ।

ମେରିଆ କହିଲା "ଅଉଥରେ ସେମିତି କର । ଦିନମାନ ଏମିତି କରିବ ବୋଲି ମୁଁ ଚାହେଁ ।"

ରବର୍ଟ ଜର୍ଡାନ୍ ମୋଟା ଗଳାରେ କହିଲେ ଯେ ପରେ କରିବେ ।

ପାବ୍ଲୋର ସ୍ତ୍ରୀ କହିଲା "ମୁଁ ତେବେ କଅଣ ସାକ୍ଷୀଗୋପାଳ ହୋଇ ଦେଖୁଥିବି ? ମୁଁ ପାରିବି ନାହିଁ । ପାବ୍ଲୋ ଫେରି ଆସନ୍ତା କି ?"

ମେରିଆ ତା କଥାରେ କିମ୍ବା ଅନ୍ୟ ଖେଳୁଥିବା ଲୋକଙ୍କ ପ୍ରତି ଭ୍ରୂକ୍ଷେପ କଲା ନାହିଁ ।

ମେରିଆ କହିଲା "ଆଉ ପିଆଲାଏ ମଦ ପିଇବ ରବର୍ଟୋ ?"

ସେ କହିଲେ "ନ ପିଇବ କାହିଁକି ?"

ପାବ୍ଲୋର ସ୍ତ୍ରୀ କହିଲା "ତୁ ତେବେ ମୋ ମଣିଷ ପରିଆଉ ଗୋଟାଏ ମଦୁଆ ପାଇଲୁ । ହଁ, ସେ ଯେଉଁ ଅପୂର୍ବ ଜିନିଷଟା ତୁମେ ପିଆଲାରେ ମିଶାଇ ଥିଲ ସେଟା କଅଣ ? ମୋ କଥା ଶୁଣୁଛ ନା ଇଂରେଜ୍ ?"

"ଇଂରେଜ ନୁହେଁ ମାର୍କିନ ।"

"ହଉ ମାର୍କିନ । ଶୁଣ, ତୁମେ କେଉଁଠି ଶୋଇବ ଠିକ୍ କରିଛ ?"

"ବାହାରେ ଶୋଇବି । ମୋର ଶୋଇବା ପୋଷାକ ଅଛି ।"

ସେ କହିଲା "ଭଲ କଥା, ରାତିଟା ମଧ୍ୟ ପରିଷ୍କାର ।"

"ଏବଂ ଥଣ୍ଡା ମଧ୍ୟ ପଡ଼ିପାରେ ।"

ସେ କହିଲା "ହଉ ତେବେ ବାହାରେ ଶୁଅ । ତୁମ ଜିନିଷ ମୋ ପାଖରେ ଶୋଇବ ।"

ରବର୍ଟ ଜର୍ଡାନ୍ କହିଲେ "ଭଲ କଥା ।" ଏହା କହି ସେ ବାଳିକା କାନ୍ଧରେ ହାତ ରଖି କହିଲେ 'ଏଠାରୁ ଟିକିଏ ଗଲୁ ।'

'କାହିଁକି ?'

'ମୁଁ ପିଲାର ସଙ୍ଗେ କଥା ହେବ ।'

'ନହାତ ମୋତେ ଯିବାକୁ ହେବ ?'

'ହଁ ।'

ମେରିଆ ଚାଲିଗଲା ପରେ ପାବ୍ଲୋର ସ୍ତ୍ରୀ ପଚାରିଲା "କଥା କଅଣ ?"

ସେ ଆରମ୍ଭ କଲେ "ଗେପ୍ସି କହୁଥିଲା ମୁଁ ତାକୁ—

ସ୍ତ୍ରୀ ଲୋକଟି କହିଲା "ନା, ସେ ଭୁଲ ବୁଝିଛୁ ।"

ରବର୍ଟ ଜର୍ଡ଼ାନ୍ କହିଲେ "ଯଦି ଦରକାର ପଡ଼େ ତେବେ ମୁଁ—

ସ୍ତ୍ରୀ ଲୋକ କହିଲା "ହଁ ତୁମେ ପାରିଥାନ୍ତ ମୁଁ ବିଶ୍ୱାସ କରେ କିନ୍ତୁ ଏହା ଦରକାର ନାହିଁ । ମୁଁ ତୁମ ଉପରେ ନଜର ରଖିଥିଲି । ଦେଖିଲି ତୁମର ବିଗ୍ଭର ବୁଦ୍ଧି ଭଲ ।"

'କିନ୍ତୁ ଯଦି ଦରକାର ପଡ଼େ ।'

ସ୍ତ୍ରୀ ଲୋକଟି କହିଲା "ମୁଁ କହୁଚି ଦରକାର ପଡ଼ିବ ନାହିଁ । ସେ ଜିପ୍‌ସିଟାର ମନ ଖରାପ । କିନ୍ତୁ ଦୁର୍ବଳ ମୁହୂର୍ତ୍ତରେ ମଣିଷ ବଡ଼ ବିପଦଜନକ ହୋଇପାରେ ।"

'ନା । ତୁମେ ବୁଝି ନାହିଁ । ଏ ଲୋକଟା ବିପଦ ଘଟାଇବା ଅବସ୍ଥା ଟପି ଯାଇଛି ।'

'ମୁଁ ବୁଝିଲି ନାହିଁ ।'

ସ୍ତ୍ରୀ ଲୋକ ଜବାବ ଦେଲା "ତୁମେ ବୟସରେ ବଡ଼ ତରୁଣ । ପରେ ବୁଝିବ ।" ଏହାପରେ ଡାକିଲା 'ମେରିଆ, ଏଠିକି ଆ । ଆମ କଥା ସରିଲାଣି ।'

ବାଳିକା ଆସିବାରୁ ରବର୍ଟ ଜର୍ଡ଼ାନ୍ ହାତ ବଢ଼ାଇ ତାହାର ମୁଣ୍ଡ ଆଉଁସିଲେ । ତାଙ୍କ ହାତ ତଳେ ସେ ବିଲେଇଛୁଆ ପରି ଗୁଁ ଗୁଁ ହେଲା । ଏହା ପରେ ରବର୍ଟ ଜର୍ଡ଼ାନ ଭାବିଲେ ବାଳିକା ବୋଧହୁଏ କାନ୍ଦି ପକାଇବ । କିନ୍ତୁ ସେ ଓଠ ଚପି ପୁଣି ତାଙ୍କୁ ଗୁହିଁ ହସି ପକାଇଲା ।

ସ୍ତ୍ରୀ ଲୋକ କହିଲା 'ଯାଆ ଶୋଇପଡ଼ । ତୁମକୁ ବହୁତ ଦୂର ଯିବାକୁ ହେବ ।' ରବର୍ଟ ଜର୍ଡ଼ାନ୍ କହିଲେ "ହଁ । ମୁଁ ମୋ ଜିନିଷ ପତ୍ର ଠିକ୍ କରିନିଏ ।"

# ସପ୍ତମ ପରିଚ୍ଛେଦ

ଶୋଇବା ଖୋଲ ଭିତରେ ଗଲ ଜର୍ଡାନ୍ ଅନେକ ସମୟ ଶୋଇ ପଡ଼ିଥିଲେ। ଗୁହା ମୁହଁରୁ ଟିକିଏ ଦୂରରେ ପଥର ଉହାଡ଼ରେ ଘାସ ଉପରେ ବିଛଣା ବିଛାଇ ସେ ଶୋଇଥିଲେ। ନିଦରେ ସେ କର ଲେଉଟାଉଣ୍ଟେ ପିସ୍ତଲଟା ତାଙ୍କ ପିଠିରେ ଠେସି ହେଲ। ତାହାକୁ ସେ ଖଣ୍ଡିଏ ଡୋରରେ ହାତ ମଣିବନ୍ଧରେ ବାନ୍ଧିଥିଲେ। ତାଙ୍କ ହାତ ଗୋଡ଼ ପିଠି କାନ୍ଧ ସବୁ ବଡ଼ ଥକି ଯାଇଥିଲ। ସୁତରାଂ କୋମଳ ଫ୍ଲାନେଲ୍ ଅସ୍ତର ଦିଆ ଖୋଲରେ ପଶିଗଲ ପରେ ସେ କ୍ଳାନ୍ତିରେ ଶୋଇ ପଡ଼ିଥିଲେ। ନିଦ ଭାଙ୍ଗିଲାରୁ ସେ କେଉଁଠି ଅଛନ୍ତି ଭାବି ପାରି ନଥିଲେ। ପରେ ସବୁ ମନେ ପଡ଼ିବାରୁ ସେ ପିସ୍ତଲଟା କରପଟରୁ ଉଠାଇ ପୁଣି ହାତଗୋଡ଼ ଲମ୍ବାଇ ଶୋଇବାକୁ ଚେଷ୍ଟା କଲେ। ଗୋଟିଏ ହାତ ତକିଆ ପରି ମୁଣ୍ଡ ଦେଇଥିଲେ।

ହଠାତ୍ ତାଙ୍କ କାନ୍ଧରେ କାହାର ସ୍ପର୍ଶ ଅନୁଭବକରି ଶୀଘ୍ର ବୁଲିପଡ଼ିଲେ ଏବଂ ଡାହାଣ ହାତରେ ପିସ୍ତଲ ମୁଠାଇଲେ। ଯେତେବେଳେ ଜାଣିଲେ ସେତେବେଳେ କହିଲେ "ଓଃ ହୋ, ତୁ?" ସେ ପିସ୍ତଲ ଥୋଇ ଦେଇ ଦୁଇ ହାତ ବଢ଼ାଇ ତାକୁ ଟାଣି ନେଲେ। ତାକୁ କୁଣ୍ଢାଇ ଧରି ସେ ବୁଝିଲେ ଯେ ମେରିଆ ଥରୁଛି। କହିଲେ "ବାହାରେ ବଡ଼ ଥଣ୍ଡା। ଶୀଘ୍ର ଭିତରେ ପଶିଯା।" ସେ ମନା କରିବାରୁ କହିଲେ "ଆଗେତ ପଶିଯା—ସେ କଥା ପରେ ଭାବିବା।"

ମେରିଆ ଥରୁଥାଏ। ସେ ତା ହାତ କବଜି ଗୋଟିଏ ହାତରେ ଏବଂ ଅନ୍ୟ ହାତରେ ତାକୁ ଧରିଥାନ୍ତି। ମେରିଆ ମୁଣ୍ଡ ବୁଲାଇ ଦେଇଥାଏ।

'ଜଲଦି ପଶିଯା ମୁଁ କହୁଛି ।' ସେ ତା ବେକ ପଛପଟେ ଚୁମା ଖାଇଲେ । ମେରିଆ କହିଲା ଯେ ତାକୁ ଡର ମାଡୁଛି ।

'କିଛି ଡର ନାହିଁ ପଶିଯା ।'

'କେମିତି ପଶିବ ?'

'କେମିତି କଅଣ, ଗଲା । ଭିତରେ ବହୁତ ଯାଗାଅଛି । ମୁଁ ତୋତେ ସାହାଯ୍ୟ କରିବକି ?' ମୁହଁରେ ନାହିଁ ନାହିଁ କରି ସେ ଭିତରକୁ ପଶିଗଲା । ରବର୍ଟ ଜର୍ଡାନ୍ ତାକୁ କୁଣ୍ଢାଇ ଧରି ଓଠ ଚୁମ୍ବିବାକୁ ଚେଷ୍ଟା କରନ୍ତେ ମେରିଆ ତକିଆରେ ମୁହଁ ମାଡି ରହିଲା କିନ୍ତୁ ତାଙ୍କ ବେକରେ ହାତ ଦେଇ କୁଣ୍ଢାଇ ଥାଏ । ତାପରେ ତା ହାତ ଶିଥିଳ ହୋଇଗଲା ଏବଂ ସେ ପୁଣି ଥରିଲା ।

ରବର୍ଟ ଜର୍ଡାନ୍ କହିଲେ 'ନା ନା ସେଟା କିଛି ନୁହେ ପିସ୍ତଲଟା । ଓରିବା ଦରକାର ନାହିଁ । ପିସ୍ତଲଟା ଉଠାଇ ପଛପଟେ ରଖିଦେଲେ ।

ତାଙ୍କ ଆଡୁ ମୁହଁ ଫେରାଇ ମେରିଆ କହିଲା 'ମୋତେ ଲଜ ମାଡୁଛି ।'

'ନା, ନା ବର୍ତ୍ତମାନ ଲଜ କରିବା କାରଣ ନାହିଁ ।'

'ନା, ମୋତେ ଲଜ ଓ ଭୟ ଦୁଇ ମାଡୁଛି ।'

'ନାହିଁ ଲୋ ଧନ । ଆ ।'

'ନା ମୁଁ ଯିବ ନାହିଁ । ତୁମେ ଅବା ମୋତେ ଭଲ ପାଉ ନଥିବ ?'

'ହଁ ମୁଁ ଭଲ ପାଉଛି ।'

'ମୁଁ ତୁମକୁ ଭଲପାଏ, ମୋ ମୁଣ୍ଡରେ ତୁମ ହାତ ରଖ ।' ମେରିଆ କହିଲା କିନ୍ତୁ ତକିଆରେ ମୁହଁ ମାଡି ରହିଲା । ରବର୍ଟ ଜର୍ଡାନ ତା ମୁଣ୍ଡ ଆଉଁସିଲେ । ହଠାତ୍ ସେ ତକିଆରୁ ମୁହଁ ଉଠାଇ ତାଙ୍କ ବାହୁ ଫାଶରେ ପଶିଗଲା । ତାଙ୍କ ଦେହରେ ଲାଖି ହୋଇ ରହିଲା ଓ ମୁହଁକୁ ମୁହଁ ମିଶାଇ କାନ୍ଦି ପକାଇଲା ।

ରବର୍ଟ ଜର୍ଡାନ୍ ତାକୁ କୁଣ୍ଢାଇ ଧରି ତାହାର ତରୁଣ ଶରୀର ଉପରେ ହାତ ବୁଲାଇଲେ । ସେ ତାହାର ମୁଣ୍ଡ ଆଉଁସି ଆଖିରେ ଚୁମା ଖାଇଲେ ଏବଂ ସେ କାନ୍ଦିଲାରୁ ତାହାର ଶକ୍ତ ବର୍ତ୍ତୁଳାକାର ସ୍ତନ୍ୟ ଦୁଇଟି କାମିଜ ଭିତରେ-ହାତ ପୂରାଇ ଚିପିଲେ ।

ମେରିଆ କହିଲା 'ମୁଁ ଚୁମାଖାଇ ପାରେ ନାହିଁ, କେମିତି ଚୁମା ଖାଇବାକୁ ହୁଏ ମୁଁ ଜାଣେ ନାହିଁ ।'

'ଚୁମ୍ବା ଖାଇବା ଦରକାର ନାହିଁ ।'

'ତଥାପି ମୁଁ ଚୁମ୍ବା ଖାଇବ ଓ ଆଉ ସବୁ କରିବ ।'

'କିଛି ଦରକାର ନାହିଁ । ଆମେ ଠିକ ଅଛୁ । କିନ୍ତୁ ତୁ ଗୁଡ଼ାଏ ଲୁଗାପଟା ପିନ୍ଧିଛୁ ।'

'ମୁଁ କଅଣ କରିବା କଥା ?'

'ମୁଁ ତୋତେ ସାହାଯ୍ୟ କରିବ ।'

'ତାହା ଭଲ ହେବ ।'

'ହଁ ଭଲ ହେବ । ତୋତେ କଅଣ ଭଲ ଲାଗୁ ନାହିଁ ?'

'ହଁ, ଖୁବ୍ ଭଲ ଲାଗୁଛି । ମୁଁ ତେବେ ତୁମ ସାଙ୍ଗରେ ଯିବ ।'

'ହଁ ।'

'କିନ୍ତୁ କୌଣସି ଘରକୁ ନୁହେ ।'

'ହଁ ଘରକୁ ଯିବୁ ।'

'ନା ନା ନା—ମୁଁ ତୁମ ସାଙ୍ଗରେ ତୁମର ସ୍ତ୍ରୀ ହୋଇ ରହିବ ।'

ବର୍ତ୍ତମାନ ସେମାନେ ଲୁଗାପଟା ଫିଟାଇ ଖାଲି ଦେହରେ ଶୋଇଲେ । ସୂତାର ଝଦଡ଼ା ଗୁଳିଁଯାଇ ସବୁ ଚକଣିଆ ହୋଇଗଲା । ଶକ୍ତ ବର୍ତ୍ତୁଳ ସ୍ତନ ଦୁଇଟି ଚପିବା ମଧ୍ୟ ସୁଗମ ହେଲା । ବାହାରେ ଥଣ୍ଡାକୁ ଭିତରେ ଉଷୁମ । ପରସ୍ପରକୁ ଛନ୍ଦାଛନ୍ଦି ହୋଇ ଶୋଇଲେ । ମଝିରେ ସ୍ତନ୍ୟର ଉଚ୍ଚତା ଛଡ଼ା ଅନ୍ୟ ଫାଙ୍କ ମଧ୍ୟ ରହିଲା ନାହିଁ । ଦୁହେଁ ତରୁଣ ଓ ପ୍ରେମପ୍ରବଣ । ମେରିଆ ଏତେ ଜୋରରେ କୁଣ୍ଢାଇ ଧରିଲା ଯେ ରବର୍ଟ ଜର୍ଡାନ୍ ଅସ୍ୱସ୍ତି ବୋଧ କରି ପଚାରିଲେ "ତୁ କଅଣ ଆଉ କାହାକୁ ଭଲ ପାଉଥିଲୁ ?"

'କେଭେ ନୁହେ ।'

'ହଠାତ ରବର୍ଟ ଜର୍ଡାନଙ୍କ ବାହୁ ପାଶରେ କାଠପରି ରହି କହିଲା "ଲୋକେ କିନ୍ତୁ ମୋତେ କେତେ କଅଣ କରିଛନ୍ତି ।"

'କେଉଁମାନେ ?'

'ଅନେକ ।'

ବର୍ତ୍ତିମାନ ମେଣ୍ଡଆ ସ୍ଥିର ହୋଇ ଶୋଇ ରହିଲା । ଶଙ୍ଖରଟାରେ ଯେପରି ପ୍ରାଣ ନାହିଁ । ସେ ମୁଣ୍ଡ ଝୁଲାଇ ରଖି ପଚାରିଲା 'ତୁମେ ମୋତେ ଆଉ ଭଲ ପାଇବ ନାହିଁ ?'

"ହଁ ପାଇବା ।" କିନ୍ତୁ ତାଙ୍କର କିଛି ଗୋଟାଏ ଭାବାନ୍ତର ମେଣ୍ଡଆ ଲକ୍ଷ୍ୟ କରି କହିଲା "ନା, ତୁମେ ମୋତେ ଭଲ ପାଇବ ନାହିଁ । ତେବେ ମୋତେ ହୁଏତ ଆଶ୍ରମକୁ ନେଇ ପାରିବ । ମୁଁ ଆଶ୍ରମକୁ ଯିବି । ମୁଁ ତୁମର ସ୍ତ୍ରୀ ହେବି ନାହିଁ ।"

'ମେଣ୍ଡଆ, ମୁଁ ତୋତେ ଭଲପାଏ ।'

ମେଣ୍ଡଆ କହିଲା—'ଏ କଥା ସତ ନୁହେଁ ।' ତାପରେ ଆଶା ଓ କାରୁଣ୍ୟରେ ଶେଷକୁ କହି ଉଠିଲା "ମୁଁ କୌଣସି ପୁରୁଷକୁ ଚୁମ୍ବା ଖାଇନାହିଁ ।'

'ତେବେ ମୋତେ ଚୁମ୍ବା ଖାଅ ।'

'ମୁଁ ତ ତାହା ଚାହେଁ କିନ୍ତୁ କିପରି ଖାଇବି ଜାଣେନା । ମୋତେ ଯେଉଁମାନେ ଧରୁଥିଲେ ମୁଁ ଛଟପିଟ ହେଉଥିଲି ଏବଂ ବାଧା ଦେଉଥିଲି ଏଣୁ କିଛି ଦେଖି ନାହିଁ । ଥରେ ଜଣେ ମୋ ମୁଣ୍ଡ ମାଡ଼ି ବସିଲା, ମୁଁ ତାକୁ କାମୁଡ଼ି ଦେଲି । ତତ୍ପରେ ସେମାନେ ମୋ ମୁହଁ ବାନ୍ଧିଦେଲେ । ମୋ ମୁଣ୍ଡ ତଳେ ହାତ ଚୁପି ରଖିଲେ ଏବଂ ଅନ୍ୟମାନେ ମୋ ଉପରେ କାମ କଲେ ।'

ରବର୍ଟ ଜର୍ଡାନ୍ କହିଲେ "ମେଣ୍ଡଆ ମୁଁ ତୋତେ ଭଲପାଏ । ତୋର କେହି କିଛି ବିଗାଡ଼ି ନାହିଁ । ତୋତେ ସେମାନେ ସ୍ପର୍ଶ କରି ପାରିବେ ନାହିଁ । ବୁଝିଲୁ ମୋ ସୁନା ।"

'ତୁମେ ଏହା ବିଶ୍ୱାସ କରୁଛ ?'

'ମୁଁ ଏହା ଜାଣେ ।'

'ଏବଂ ତୁମେ ଭଲ ପାଇବ ।' ମେଣ୍ଡଆ ପୁଣି ପୁଲକ ଅନୁଭବ କଲା ।

'ମୁଁ ତୋତେ ବେଶି ଭଲ ପାଇବି ।'

'ମୁଁ ତୁମକୁ ଭଲ ଭାବେ ଚୁମ୍ବା ଖାଇବି ।'

'ହଉ ତେବେ ଖା ।'

'ମୁଁ ଜାଣେ ନା ।'

'କିଛି ନାହିଁ ମୋତେ ଚୁମ୍ବା ଖା ।'

ମେରିଆ ତାଙ୍କ ଗାଲରେ ଚୁମା ଖାଇଲା ।

କହିଲା 'ନା ହେଲା ନାହିଁ । ନାକ କୁଆଡ଼େ ରହିବ ମୁଁ ଭାବିପାରୁ ନାହିଁ ।'

'ହଉ ତେବେ ମୁଣ୍ଡ ବୁଲାଇ ମୋ ଆଡ଼କୁ ଅନା ।' ଏହାପରେ ଦୁହିଁଙ୍କର ମୁହଁ ନବଡ଼ ଭାବରେ ଲାଗିଗଲା । ସେ ତାଙ୍କୁ ଲାଗିକରି ଥିଲା । ତା ମୁହଁ ଟିକିଏ ମେଲା ଥିଲା । ହଠାତ୍ ସେ ତାକୁ ଆପଣା କୋଳକୁ ଟାଣି ନେଇ ଖୁବ୍ ଆନନ୍ଦରେ, "ମୋର ଧନ, ମୋ ସୁନା, ମୋ ପ୍ରିୟତମା' କହିବାକୁ ଲାଗିଲେ । ପରମାନନ୍ଦରେ ଅକ୍ଳାନ୍ତ ଭାବରେ ପ୍ରେମ-ଉନ୍ମତ୍ତ ହୋଇ ସେ ବାହାରେ ଅନ୍ତର ଭିତରେ ଉଲ୍ଲସିତ ହୋଇ ଉଠିଲେ ।

ମେରିଆ କ୍ଷୀଣ ସ୍ୱରରେ ପଚାରିଲା "କଅଣ କହୁଛ ?"

'ମୋ ସୁନ୍ଦରୀ ।'

ସେମାନେ ସେମିତ ରହିଲେ । ହୃଦୟକୁ ହୃଦୟ ମିଶିଗଲା ଏବଂ ସେ ଗୋଡ଼ରେ ତା ଗୋଡ଼କୁ ଠକ୍ ଠକ୍ କରୁଥିଲେ ।

ରବର୍ଟ ଜର୍ଡାନ୍ ପଚାରିଲେ "ତୁ ଖାଲି ଗୋଡ଼ରେ ଆସିଛୁ ?"

'ହଁ ?'

'ତେବେ ଜାଣିଥିଲୁ ମୋ ପାଖରେ ଶୋଇବୁ ।'

'ହଁ ।'

'ତୋର ସେଥିକୁ ଭୟ ନ ଥିଲା ।'

'ବହୁତ ଥିଲା । କିନ୍ତୁ ତହୁଁ ଅଧିକ ଡରଥିଲା କପରି ଜୋତା ଫିଟାଇବି ।'

'ବର୍ତ୍ତମାନ ସମୟ କେତେ ?'

'ତୁମର ଘଣ୍ଟା ନାହିଁ ?'

'ଅଛି, କିନ୍ତୁ ତୋ ପଛପଟେ ଅଛି ।'

'ସେଠାରୁ କାଢ଼ିଆଣ ।'

'ନାହିଁ ।'

'ତେବେ ମୋ କାନ୍ଧ ଉପରେ ଦେଖ ।'.

ରାତି ଗୋଟାଏ ବାଜିଥାଏ । ଅନ୍ଧାରରେ ଘଣ୍ଟା କଣ୍ଟା ଜଳଜଳ ଦିଶୁଥାଏ ।

'ତୁମ ଓଠରେ ମୋ କାନ୍ଧ ଘର୍ଷି ହୋଇଯାଉଛି ।'

'କଅଣ କରିବ, ମୋର କ୍ଷୌର ହେବାକୁ କ୍ଷୁର ନାହିଁ ।'

'ତୁମ ଦାଢ଼ି ମୋତେ ଭଲ ଲାଗୁଛି । ତୁମ ଦାଢ଼ି କଅଁଳିଆ ।'

'ସତେ ?'

'କେବେ ଯିବ କି ?'

'ପୋଲ ଧ୍ୱଂସ କରିବା ପୂର୍ବରୁ ନୁହେ ।' ମେରିଆ ଶୁଣ, 'ତୁ କଅଣ—'

'କୋଉ କଥା ?'

"ତୁ କଅଣ ମୋତେ ଚାହୁଁ ?"

'ହଁ ମୁଁ ସବୁ ଚାହେ । ଆମେ ସବୁ କାମ ଏକାଠି କଲେ କେହି ମୁହଁ ଫିଟାଇବ ନାହିଁ ।'

'ତୁ ନିଜେ ଏକଥା ଭାବୁଛୁ ?'

'ନା, ମୁଁ ମନେ ମନେ ଭାବୁଛି କିନ୍ତୁ ପିଲାର୍ କହିଅଛି ।'

'ସେ ଭାରି ଚାଲାଖ ।'

ମେରିଆ କୋମଳ ସ୍ୱରରେ କହିଲା "ଆଉ ଗୋଟିଏ କଥା । ସେ ମୋତେ ଏକଥା ତୁମକୁ କହିବାକୁ କହିଅଛି । ମୋର କିଛି ବେମାରି ନାହିଁ । ତାକୁ ଏସବୁ ଜଣା ବୋଲି ତୁମକୁ ମାଲୁମ କରାଇବାକୁ କହିଅଛି ।"

'ମୋତେ ଜଣାଇବାକୁ ପିଲାର୍ କହିଅଛି ?'

'ହଁ ମୁଁ ତୁମକୁ ଭଲପାଏ ବୋଲି ତାକୁ କହିଥିଲି । ଆଜି ତୁମକୁ ଦେଖିଲାକ୍ଷଣି ଭଲ ପାଇଲି; ସତେ ଯେମିତି ବହୁକାଳରୁ ଭଲ ପାଇ ଆସୁଛି ଅଥଚ ତୁମକୁ କେବେ ଦେଖି ନଥିଲି । ମୁଁ ସେ କଥା ପିଲାର୍‌କୁ କହିଲି । ତହୁଁ ସେ ମୋତେ କହିଲା ଯେ ମୋର କିଛି ବେମାରି ନଥିବା କଥା ତୁମକୁ ଜଣାଇଦେବା ପ୍ରଧାନ କର୍ତ୍ତବ୍ୟ । ଅନ୍ୟ କଥା ସେ ମୋତେ ବହୁ ପୂର୍ବରୁ କହିଥିଲେ । ଟ୍ରେନ ଧ୍ୱଂସର ଅଳ୍ପପରେ ।'

'ସେ କଅଣ କହିଥିଲେ ?'

'ସେ କହିଲେ ଲୋକ ନିଜେ ରାଜି ନଥିଲେ କେହି ତାକୁ ଜୋର କରି କିଛି କରିପାରିବେ ନାହିଁ । ମୁଁ ଯଦି କାହାକୁ ଭଲପାଏ ତେବେ ମୋର ନିଜର ଦାୟିତ୍ୱ ଚାଲିଯିବ । 'ମୁଁ ଆତ୍ମହତ୍ୟା କରିବାକୁ ଯାଉଥିଲି ବୋଲି ସେ ଏହା କହିଥିଲେ ।

'ସେ ଯାହା କହିଅଛି ତାହା ସତ ।'

'ବର୍ତ୍ତମାନ ମରନାହିଁ ବୋଲି ମୁଁ ବହୁତ ଖୁସି । ବର୍ତ୍ତମାନ ମୁଁ ତୁମର ପ୍ରେମ ପାଇ ପାରଛୁ । ଏହା ମୋର ପରମ ସୌଭାଗ୍ୟ ।'

'ହଁ, ମୁଁ ତୋତେ ଭଲପାଏ ।'

'ଏବଂ ମୁଁ ତୁମର ସ୍ତ୍ରୀ ହୋଇପାରେ ।'

'ମୁଁ ଯେଉଁ ଧରଣର କାମରେ ନିଯୁକ୍ତ ସେଥିରେ ନିଜର ସ୍ତ୍ରୀ ରଖି ପାରିବ ନାହିଁ କିନ୍ତୁ ବର୍ତ୍ତମାନ ପାଇଁ ତୁ ମୋର ସ୍ତ୍ରୀ ।'

'ଯଦି ଥରେ ତୁମର ସ୍ତ୍ରୀ ହୁଏ ତେବେ ମୁଁ ଜୀଇଁ ରହିବି । ମୁଁ ତମର ସ୍ତ୍ରୀ ତ ?'

'ହଁ ମେରିଆ ତୁ ମୋର ଅତି ପ୍ରେମର ପାତ୍ରୀ ।'

ମେରିଆ ତାଙ୍କୁ ଖୁବ୍ ଜାପଟି କୁଣ୍ଢାଇ ମୁହଁ ପାଖକୁ ମୁହଁ ନେଇ ଅଜସ୍ର ଚୁମା ଖାଇବାକୁ ଲାଗିଲା । ସେ ତାହାର ନଗ୍ନ-ସଦ୍ୟ-ଯୌବନ ସିକ୍ତ ରମଣୀୟ କାନ୍ତି, ଉଲଗ୍ନ ଅବୟବର ଉଷ୍ଣତା ଅନୁଭବ କଲେ । ବାହାରର ଥଣ୍ଡା, ଶୋଇବା ପୋଷାକର ରୁକ୍ଷତା, ଦାଉନ୍ଦ୍ରତଳା ଜୋତାର କୁଶ୍ରୀ ଏବଂ କର୍ତ୍ତବ୍ୟର କଠୋରତା, ହଠାତ୍ ତାଙ୍କ ମନେ ପଡ଼ିଗଲା । ମେରିଆ ତରଯାଇ କହିଲା "ହଉ ଆସ ବର୍ତ୍ତମାନ ଯାହା କରିବା କଥା କରିନେବା । ଅନ୍ୟମାନେ କେହି ନାହାନ୍ତି ।"

'ତୁ ତାହା କାମନା କରୁ ?'

ଭୀଷଣ ଆଗ୍ରହରେ ସେ କହିଉଠିଲା"ହଁ ଗୋ ହଁ, ହଁ ।"

# ଅଷ୍ଟମ ପରିଚ୍ଛେଦ

ରାତିଟା ଘୋର ଅନ୍ଧାର ଥିଲା । ରବର୍ଟ ଜର୍ଡାନ୍ ଗାଢ଼ ନିଦରେ ଶୋଇ ପଡ଼ିଲେ । ଥରେ ହାତଗୋଡ଼ ସଳଖିବା ପାଇଁ ନିଦ ଭାଙ୍ଗି ଯାଇଥିଲା, ସେତେବେଳେ ବୁଝିଲେ ଯେ ଶୋଇବା ଖୋଳର ତଳଆଡ଼କୁ ମେରିଆ କୁଙ୍କୁଡ଼ି କାଙ୍କଡ଼ି ହୋଇ ଶୋଇ ରହିଛି । ଖୁବ୍ ଧୀରେ ଧୀରେ ନିଶ୍ୱାସ ନେଉଅଛି । ଅନ୍ଧାରରେ ସେ ନିଜ ମୁଣ୍ଡ ଶୋଇବା ପୋଷାକ ଭିତରକୁ ନେଇ ଆସିଲେ । ବାହାରର ଥଣ୍ଡା ପବନ ତାଙ୍କ ନାକ ରୁନ୍ଧି ପକାଇଲା । ଆକାଶରେ ଅସଂଖ୍ୟ ତାରା ଦପ୍ ଦପ୍ କରୁଥିଲେ । ଖୋଳ ଭିତରେ ଉଷ୍ମ ଓ ଆରାମରେ ସେ ମେରିଆ ଗ୍ରୀବାରେ ଚୁମା ଖାଇଲେ । ମେରିଆର ନିଦ ଭାଙ୍ଗିଲା ନାହିଁ । ତହୁଁ ସେ ମେରିଆ ଆଡ଼ୁ ଗଡ଼ିଆସି ଗୋଟାଏ ପାଖରେ ଶୋଇଲେ ଏବଂ ପୁନରାୟ ପଦାକୁ ମୁଣ୍ଡ ବାହାର କଲେ । ଅଳ୍ପକ୍ଷଣ ସେ ଜାଗି ରହି ସର୍ବାଙ୍ଗ ଜର୍ଜରିତ କ୍ଳାନ୍ତିର ନିଶ୍ଚେଷ୍ଟତା ଅନୁଭବ କଲେ । ଏହାପରେ ଦୁଇଟି ଶରୀରର ସ୍ପର୍ଶ ସୁଖରେ ସେ ନିଜ ଗୋଡ଼କୁ ସେହି ଶୋଇବା ଥଳି ଭିତରକୁ ପୂରାଇ ସଙ୍ଗେ ସଙ୍ଗେ ଗାଢ଼ ନିଦ୍ରାଭିଭୂତ ହୋଇଗଲେ ।

ବଡ଼ିଭୋରରୁ ତାଙ୍କର ନିଦ ଭାଙ୍ଗିଗଲା ଅଥଚ ସେତେବେଳକୁ ମେରିଆ ଉଠି ଚାଲି ଯାଇଥାଏ । ଜାଗି ଉଠି ସେ ଏହା ବୁଝିପାରିଲେ ଏବଂ ମେରିଆ ଶୋଇଥିବା ଜାଗାରେ ହାତ ମାରି ତହିଁର ଉଷ୍ମତା ଅନୁଭବ କଲେ । ସେ ଗୁହା ମୁହଁକୁ ଚାହିଁଲେ । ଦେଖିଲେ ଯେ କମ୍ବଳ ଖଣ୍ଡିକର ଧଡ଼ିଏ ଧଡ଼ିଏ ତୁଷାର ଲାଗି ରହିଛି । ପଥର ଫାଟରୁ ସରୁ ଧୂଆଁ ଉଠିବା ଦେଖି ସେ ବୁଝିଲେ ଚୁଲି ଜଳିଲାଣି ।

ବଣ ଭିତରୁ ଜଣେ ଲୋକ କମ୍ବଳ ଖଣ୍ଡିକ ମୁଣ୍ଡରେ ଗଳାଇ ସର୍ବାଙ୍ଗ ଢାଙ୍କି ଆସୁଥିଲା । ରବର୍ଟ ଜର୍ଡାନ୍ ଦେଖିଲେ ଯେ ପାବ୍‌ଲୋ ସିଗ୍ରେଟ ଟାଣି ଟାଣି ଆସୁଅଛି । ଭାବିଲେ ବୋଧହୁଏ ସେ ଘୋଡ଼ାମାନଙ୍କୁ ଦାନା ଖୋଇ ଫେରୁଅଛି । ପାବ୍‌ଲୋ କମ୍ବଳ ଖଣ୍ଡି ଟାଣି ବାହାର କରି ଏକ ମୁହାଁ ଗୁହା ଭିତରକୁ ଚାଲିଗଲା, ରବର୍ଟ ଜର୍ଡାନ୍‌ଙ୍କୁ ଅନାଇଲା ନାହିଁ ।

ରବର୍ଟ ଜର୍ଡ଼ାନ ତାଙ୍କର ସେହି ଜୀର୍ଣ୍ଣ ଫ୍ଲାନେଲ ଅସ୍ତର ଦିଆ ଶୋଇବା ଖୋଳଟା ଝାଡ଼ି ବାହାର ପଟେ ଜମିଥିବା ବରଫ ସଫାକଲେ ଏବଂ ପୁଣି ତା ଭିତରେ ପଶିଲେ । ସେ ତାହା ଭିତରେ ଉଷ୍ଣତାରେ ଆରାମ ପାଇ ଗୋଡ଼, ହାତ ପୂରା ଲମ୍ବାଇ ସୂର୍ଯ୍ୟ କିରଣ ପଡ଼ୁଥିବା ପାଖରୁ ମୁହଁ ବୁଲାଇ ଆଉ କିଛିକ୍ଷଣ ଶୋଇବାକୁ ଭାବିଲେ ।

ଉଡ଼ାଜାହାଜର ଇଞ୍ଜିନ ଆବାଜ ନ ଆସିବାଯାଏ ସେ ଶୋଇଥିଲେ । ଚିତ୍ତ ହୋଇ ଶୋଇ ସେ ଦେଖିଲେ ଯେ ଫାସିଷ୍ଟମାନଙ୍କର ୩ ଖଣ୍ଡି ଜଗୁଆଲୀ ସାନ ଉଜ୍ଜ୍ୱଳ ବିମାନ ପାହାଡ଼ ଉପର ଦେଇ ଚାଲିଗଲା । ସେ ଆଉ ଆନ୍‌ହେଲ୍‌ମୋ ଗତକାଲି ଯେଉଁ ଦିଗରୁ ଆସିଥିଲେ ବିମାନ ଗୁଡ଼ିକ ସେହିଆଡ଼େ ଗଲା । ଏହାପରେ ଆଉ ୯ଖଣ୍ଡି ବେଶୀ ଉପରେ ୩ଟି ସ୍ୱତନ୍ତ୍ରଦଳରେ ଉଡ଼ିଗଲା ।

ପାବ୍‌ଲୋ ଏବଂ ଗିପ୍‌ସି ଗୁହା ମୁହଁ ଛାଇରେ ଠିଆ ହୋଇ ଆକାଶକୁ ଚାହିଁଥିଲେ । ରବର୍ଟ ଜର୍ଡାନ୍ ଚୁପ୍‌ଚାପ୍ ପଡ଼ିଥାନ୍ତି । ଆକାଶ ଉଡ଼ାଜାହାଜ ଇଞ୍ଜିନର ହାତୁଡ଼ି ପିଟା ଶବ୍ଦରେ ମୁଖରିତ । ଏହାପରେ ପ୍ରାୟ ୧୦୦୦ ଫୁଟ ଉଚ୍ଚରେ ଆଉ ୩ଖଣ୍ଡି ବିମାନ ଉଡ଼ିଗଲେ । ଏ ଗୁଡ଼ିକ ୨ ଇଞ୍ଜିନ ଯୁକ୍ତ ବୋମାବର୍ଷୀ ବିମାନ ।

ରବର୍ଟ ଜର୍ଡ଼ାନ୍ ପଥର ଆଢୁଆଳରେ ମୁଣ୍ଡ ଗୁଞ୍ଜି ରହିଥିଲେ । ସେ ଜାଣିଥିଲେ ଯେ ଉଡ଼ାଜାହାଜ ତାଙ୍କୁ ଦେଖିପାରିବ ନାହିଁ । ଦେଖିଲେ ମଧ୍ୟ ଯାଏ ଆସେ ନାହିଁ । ଯଦି ସେମାନେ ପାହାଡ଼ରେ ଅନ୍ୱେଷଣ କରିବା ପାଇଁ ଆସିଥିବେ ତେବେ ଘୋଡ଼ାଶାଳାରେ ଘୋଡ଼ାଗୁଡ଼ିକ ଦେଖି ପାରିବେ । ଯଦି ଖୋଜିବା ପାଇଁ ଆସି ନଥାନ୍ତି ତେବେ ମଧ୍ୟ ଘୋଡ଼ାଙ୍କୁ ଦେଖି ସ୍ୱଭାବତଃ ଭାବିନେବେ ଯେ ଏଗୁଡ଼ିକ ତାଙ୍କ ନିଜ ଅଶ୍ୱାରୋହୀ ଦଳର ଘୋଡ଼ା । ଏହାପରେ ପୁଣି ଭୀଷଣ ଶବ୍ଦ ହେଲା ଏବଂ ଆଉ ୩ଖଣ୍ଡ ବୋମାରୁ ବିମାନ ଅଳପ ଉଚ୍ଚରେ ପାହାଡ଼ ଉପର ଦେଇ ଉଡ଼ିଗଲା । ଏଗୁଡ଼ିକର ଇଞ୍ଜିନ୍ ଆବାଜ ଘୋଡମତ ଏକ କୋଳାହଳରେ ପରିଣତ ହେଲା ।

ରବର୍ଟ ଜର୍ଡ଼ାନ୍ ନିଜର କୁରୁତା ଓ ପାଇଜାମାକୁ ଗୁଡ଼ାଇ ତକିଆ ବନାଇଥିଲେ । ବର୍ତ୍ତମାନ ତାହା ଫିଟାଇ ପିନ୍ଧିବାକୁ ଲାଗିଲେ । କାମିଜ ଖଣ୍ଡିକ

ମୁଣ୍ଡରେ ଗଲାଇଲବେଳେ ଆଉ ୬ଖଣ୍ଡ ବୋମାରୁ ବଡ଼ ବିମାନ ଉଡ଼ି ଆସିଲେ । ସେ ତରବରରେ ନିଜ ପାଇଜାମା ଅଣ୍ଟାଯାଏ ଗଲାଇ ନେଇ ଚୁପ୍‌ଚାପ୍ ଶୋଇ ରହିଲେ । ଏଗୁଡ଼ିକ ପାହାଡ଼ ଉପର ଦେଇ ଅଦୃଶ୍ୟ ହେବା ପୂର୍ବରୁ ସେ ନିଜର ପିସ୍ତଲ ଅଣ୍ଟାରେ ବାନ୍ଧି ବିଛଣା ଗୁଡ଼ାଇ ପକାଇ ପଥରକୁ ଡେଇଁଦେଲେ । ପରେ ସେଇଠି ବସିପଡ଼ି ଜୋତା ପିନ୍ଧି ଫିତା ବାନ୍ଧିଲେ । ଏତିକିବେଳେ ବିରାଟ ଶବ୍ଦ କରି ଆଉ ୯ ଗୋଟି ହିଙ୍କେଲ୍ ବୋମାରୁ ଦଳବାନ୍ଧି ଉଡ଼ିଗଲେ । ଶବ୍ଦରେ ଆକାଶ ଫାଟି ପଡ଼ିଲା ।

ରବର୍ଟ ଜର୍ଡାନ୍ ପଥର କଡ଼େ କଡ଼େ ଗୁହା ମୁହଁକୁ ଆସି ଦେଖନ୍ତି ଯେ ପାବ୍‌ଲୋ, ଦୁଇ ଭାଇରୁ ଜଣେ, ଆନ୍‌ସେଲ୍‌ମୋ, ଜିପ୍‌ସି, ଅଗଷ୍ଟିନ୍ ଏବଂ ଉକ୍ତ ସ୍ତ୍ରୀଲୋକଟି ଗୁହା ମୁହଁରେ ଠିଆ ହୋଇ ଆକାଶକୁ ଚାହିଁ ଅଛନ୍ତି ।

ସେ ପଚାରିଲେ "ଏପରି ଭାବରେ ଉଡ଼ାଜାହାଜମାନ ପୂର୍ବରୁ କେବେ ଦେଖା-ଯାଇଥିଲାକି ?"

ପାବ୍‌ଲୋ କହିଲା "ନା, କେଭେ ନୁହେ । ତୁମେ ଭିତରକୁ ଚାଲିଯାଅ, ସେମାନେ ଦେଖି ପାରନ୍ତି ।"

ଏତେବେଳଯାଏ ସୂର୍ଯ୍ୟାଲୋକ ଗୁହା ମୁହଁରେ ପଡ଼ି ନଥିଲା । ତାହା ଏଇ-ମାତ୍ର ଝରଣାପାଖ ପଡ଼ିଆ ଉପରେ ଚକ୍‌ଚକ୍ ହେବାକୁ ଆରମ୍ଭ କଲା । ରବର୍ଟ ଜର୍ଡାନ୍ ଜାଣିଲେଯେ ଅନ୍ଧାରରେ ସକାଳବେଳାର ଗଛ ଏବଂ ପଥରର ଘନ ଛାଇରେ ଉପରୁ କିଛି ଦିଶିବ ନାହିଁ ତଥାପି ସେମାନଙ୍କୁ ଚିନ୍ତାଆ ନ କରିବା ଉଦ୍ଦେଶ୍ୟରେ ସେ ଭିତରକୁ ଚାଲିଗଲେ ।

ସ୍ତ୍ରୀଲୋକ କହିଲା "ଆଜି ବହୁତ ଉଡ଼ାଜାହାଜ । ଏତିକି କଅଣ ଦେଖୁଛ,"

ଆହୁରି ବେଶୀ ଆସିବ ବୋଲି ଜର୍ଡାନ୍ କହିବାରୁ ପାବ୍‌ଲୋ ତାଙ୍କୁ ପଚାରିଲା ଯେ ସେ କିପରି ଜାଣିଲେ ।

'ଏଇ ଯେଉଁ ବୋମାରୁ ବିମାନ ଗଲା, ଏହାଙ୍କ ପଛେ ପଛେ ଅନୁସରଣକାରୀ ନିଶ୍ଚୟ ଆସିବେ ।'

ହଠାତ୍ ଏତିକିବେଳେ ଆକାଶର ପ୍ରାୟ ୫ହଜାର ଫୁଟ ଉପରେ ଅନେକ ଗୁଡ଼ାଏ ଉଡ଼ାଜାହାଜର ଗୁମ୍ ଗୁମ୍ ଶବ୍ଦ ହେଲା । ରବର୍ଟ ଜର୍ଡାନ ୧୫ଗୋଟି ଫିଆଟ୍ ବିମାନ ଗଣିଲେ । ଏମାନେ ତ୍ରିଭୁଜାକାରରେ ୫ଗୋଟି ଦଳରେ ବିଭକ୍ତ ହୋଇ

ଯାଉଥିଲେ । ଗୁହା ମୁହଁରେ ଆଉ ସେମାନଙ୍କ ଦୃଷ୍ଟି ଗାମ୍ଭୀର୍ଯ୍ୟପୂର୍ଣ୍ଣ ହୋଇ ଉଠିଲା । ଏହା ବୁଝି ଜର୍ଡ଼ାନ୍ ପଚାରିଲେ ତୁମ୍ଭେମାନେ କଅଣ ଏତେ ସଂଖ୍ୟାରେ ଉଡ଼ାଜାହାଜ କେବେ ଦେଖି ନଥିଲ ?'

ପାବ୍‌ଲୋ କହିଲା 'ନା, ଏତେ ଦେଖିନାହୁଁ ।'

'ସେଗୋଭିଆଠାରେ ଏତେ ଉଡ଼ାଜାହାଜ କଅଣ ନାହିଁ ?'

"ନା, ଆମେ ସାଧାରଣତଃ ୩ଟା ଦେଖିଥାଉଁ । କେବେ କେବେ ୬ଟା ପଶ୍ଚାତ୍‌ଧାବନକାରୀ ମଧ୍ୟ ଦେଖିଛୁ । ସମ୍ଭବତଃ ୩ଇଞ୍ଜିନବାଲା ୩ଟା ଜୁଙ୍କର ବିମାନ ଓ ତା ପଛକୁ ପଶ୍ଚାତ୍‌ଧାବନକାରୀ କେତେ ଖଣ୍ଡ, ମାତ୍ର । ଏତେ ଅଧିକ କେବେହେଲେ ଦେଖି ନଥିଲୁ ।"

ରବର୍ଟ ଜର୍ଡାନ୍ ଚିନ୍ତାକଲେ ଲକ୍ଷଣ ତ ଭଲ ନୁହେ ! ଏତେ ଗୁଡ଼ା ଉଡ଼ାଜାହାଜ ଏକତ୍ରିତ ହେବାର ଅର୍ଥ କିଛି ନିଶ୍ଚୟ ଅଛି । ସେମାନେ ବୋମା ପକାଉଛନ୍ତି କି ନାହିଁ ଶୁଣିବା ଦରକାର କିନ୍ତୁ ଆକ୍ରମଣ କରିବା ପାଇଁ ସୈନ୍ୟ ନିଶ୍ଚୟ ଆଣି ନଥିବେ । ଆଜି ରାତି କିମ୍ବା କାଲି ସକାଳ ପୂର୍ବରୁ ସୈନ୍ୟ ଆଣିବା ସମ୍ଭବ ନୁହେ । ନିଶ୍ଚୟ ବଡ଼ ସକାଳୁ କିଛି ଆଣୁ ନଥିବେ ।

ଦୂରକୁ ଚାଲିଯାଉଥିବା ଉଡ଼ାଜାହାଜର ଆବାଜ ସେ ଶୁଣି ପାରୁଥିଲେ । ଘଡ଼ି ଦେଖି ସେ ବୁଝିଲେ ଯେ ସେମାନେ ଲାଇନ ଟପି ଯାଇଥିବେ, ଅନ୍ତତଃ ପକ୍ଷରେ ପ୍ରଥମ ଦଳଟା । ଘଣ୍ଟାର ସେକେଣ୍ଡ-ହାଣ୍ଡ କଣ୍ଟା ଚାଲୁକରିବା ପାଇଁ ସେ ଠିପି ଚିପିଦେଲେ ଏବଂ କଣ୍ଟା ଚାଲିଲା । ତାହାକୁ ଦେଖି ସେ ବୁଝିଲେ ବର୍ତ୍ତମାନ ସୁଦ୍ଧା ପହଞ୍ଚି ନଥିବେ, ପୁଣି କ୍ଷଣକ ପରେ ବୁଝିଲେ ପହଞ୍ଚିବା ସମୟ ହୋଇଗଲା । ଏସବୁ ବଡ଼ ବିମାନ ଘଣ୍ଟାକେ ଅଢେଇଶ ମାଇଲ ଯାଇଥାଏ । ୫ମିନିଟରେ ସେ ସେଠାରେ ପହଞ୍ଚିବା କଥା । ବର୍ତ୍ତମାନ ସେମାନେ କାଷ୍ଟାଇଲ ଗିରିବର୍ତ୍ମ ଟପିଯାଇ ଥିବେଣି । ତଳେ ସବୁ ହଳଦିଆ କିମ୍ବା ପିଙ୍ଗଳ । ହଳଦିଆ ଅଂଶରେ ରାସ୍ତାମାନ ଏବଂ ରାସ୍ତା ପାଖରେ ଗ୍ରାମଗୁଡ଼ିକ । ଏସବୁ ଉପରେ ଏହି ପ୍ରକାଣ୍ଡ ପ୍ରକାଣ୍ଡ ଉଡ଼ାଜାହାଜର ଛାଇ ଭାସି ଯାଉଥିବ । ଅବିକଳ ସମୁଦ୍ର ତଳଦେଶରେ ଶାର୍କ ମାଛର ଛାଇପରି । ତାଙ୍କ ଘଣ୍ଟା ଟିକ୍ ଟିକ୍ କରୁଥାଏ, ହେଲେ ବୋମା ବିସ୍ଫୋରଣର ଆବାଜ ଶୁଣାଗଲା ନାହିଁ ।

ରବର୍ଟ ଜର୍ଡ଼ାନ୍ ଭାବିଲେ ଯେ ଏହି ଉଡ଼ାଜାହାଜ ଗୁଡ଼ିକ ବୋଧହୁଏ କୋଲ୍‌ମେନାର ଏସ୍‌କୋରିଆଲ୍ କିମ୍ବା ମନଜାରେସ୍ ରିଅଲ୍‌ଆଡ଼େ ଗଲେ । ସେଠାର

ସେହି ହ୍ରଦ କୂଳରେ ଥିବା ପୁରୁଣା ପ୍ରାସାଦ ଏବଂ କୃତ୍ରିମ ବିମାନ ଘାଟି ତାଙ୍କର ବୋଧହୁଏ ଲକ୍ଷ୍ୟ । ହ୍ରଦରେ ଅସଂଖ୍ୟ ଜଳଚର ପକ୍ଷୀ । ବିମାନ ଘାଟିରେ ନାନା-ପ୍ରକାର କାଗଜର ଉଡ଼ାଜାହାଜ ଅର୍ଦ୍ଧ ଗୁପ୍ତ ଭାବରେ ସଜ୍ଜିତ । ସେମାନେ ହୁଏତ ଆକ୍ରମଣ କଥା ଜାଣି ପାରିବେ ନାହିଁ । ଅନ୍ୟ ସବୁ କଥା ସେମାନେ ଜାଣିଥିଲେ ।

ପାବ୍‌ଲୋ ପଚାରିଲା "ଆଗୁ ସେ ଆମର ଘୋଡ଼ା ଦେଖିପାରିଲେ କି ?"

ରବର୍ଟ ଜର୍ଡାନ୍ କହିଲେ "ସେମାନେ ଘୋଡ଼ା ପାଇଁ ଆସି ନଥିଲେ ।"

"ଘୋଡ଼ା ସବୁ ଦେଖି ପାରିଥିବେ କି ?"

"ତାଙ୍କୁ ସେ କଥା କୁହାଯାଇ ନଥିଲେ ସେମାନେ ସନ୍ଧାନ କରିବେ ନାହିଁ ।"

"ଦେଖି ପାରିବା ସମ୍ଭବ କି ?"

"ଗଛ ଉପରେ ସୂର୍ଯ୍ୟାଲୋକ ପଡ଼ି ନଥିଲେ ଦେଖିବା ସମ୍ଭବ ନୁହେଁ ।"

ପାବ୍‌ଲୋ ବିକଳ ହୋଇ କହିଲି "ହଁ ଖରା ସକାଳୁ ପଡ଼ିଥିଲା ।"

ରବର୍ଟ ଜର୍ଡାନ୍ କହିଲେ "ମୋ ମନେ ହୁଏ ତମ ଘୋଡ଼ା ଛଡ଼ା ତାଙ୍କର ଅନ୍ୟ ଲକ୍ଷ୍ୟ ଥିଲା ।"

ସେକେଣ୍ଡ ହାଣ୍ଡ୍ ଘଣ୍ଟା ଗୁଲୁକରିବାଠାରୁ ୮ମିନିଟ ହୋଇଗଲା ପରେ ସୁଦ୍ଧା ବୋମା ପଡ଼ିବାର ଆବାଜ ଅସିଲା ନାହିଁ ।

ସ୍ତ୍ରୀ ଲୋକଟି ପଚାରିଲା "ଘଣ୍ଟା ଦେଖି କଅଣ ବୁଝୁଛ ?"

ସେମାନେ କୁଆଡ଼େ ଗଲେ ତାହା ଶୁଣୁଛି । "ଏଥିରେ ସ୍ତ୍ରୀଲୋକଟି ବିସ୍ମିତ ହୋଇ ଉଠିଲା । ୧୦ମିନିଟ ବିତିଗଲା ପରେ ସେ ଆଉ ଘଣ୍ଟା ଦେଖିଲେ ନାହିଁ କାରଣ ସେତେବେଳକୁ ବିମାନଗୁଡ଼ିକ ଏତେ ଦୂରକୁ ଗ୍ଭଲିଯାଇଥିବ ଯେ କିଛି ଶୁଭିବ ନାହିଁ । ସେ ଆନ୍‌ସେଲ୍‌ମୋକୁ କହିଲେ "ତୋ ସଙ୍ଗେ କଥା ଅଛି ।"

ଆନ୍‌ସେଲ୍‌ମୋ ଗୁହା ମୁହଁରୁ ବାହାରି ଆସନ୍ତେ ଦୁହେଁ ଖଣ୍ଡେ ଦୂର ଯାଇ ଗୋଟିଏ ଦେବଦାରୁ ଗଛମୂଳେ ଠିଆହେଲେ । ରବର୍ଟ ଜର୍ଡାନ୍ ପଚାରିଲେ 'କେମିତି ଚ୍ଭଲିଛି ?'

"ସବୁ ଠିକ୍ ଅଛି ।"

"ଖାଇ ସାରିଲୁଣି ?"

"ନା, କେହି ଖାଇ ନାହାନ୍ତି ।"

"ତେବେ ଖାଇନିଅ ଏବଂ ଦ୍ୱିପ୍ରହରକୁ ଖାଇବା ପାଇଁ କିଛି ବାନ୍ଧ । ମୋ ଇଚ୍ଛା ତୁ ଯାଇ ରାସ୍ତା ଜଗିବୁ । ସେଠାରୁ ଏପଟୁ ସେପଟୁ ଯାହା ଯିବ ସବୁତକ ଟିପି ରଖିବୁ ।"

"ମୁଁ ଲେଖି ଜାଣେ ନାହିଁ ।"

'ଲେଖି ଜାଣିବା ଦରକାର ନାହିଁ ।' ସେ ନିଜର ଟିପା ଖାତାରୁ ୨ ପୃଷ୍ଠା ଛିଣ୍ଡାଇ ନେଲେ ଏବଂ ଛୁରୀ ଦ୍ୱାରା ପେନ୍‌ସିଲରୁ ଖଣ୍ଡେ କାଟି ତା ହାତକୁ ଦେଇ କହିଲେ ଏହାକୁ ନେ । ଟ୍ୟାଙ୍କ୍ ପାଇଁ ଏମିତି ଚିହ୍ନ ଏବଂ ପ୍ରତି ଟ୍ରକଗାଡ଼ି ପାଇଁ ଗୋଟାଏ ଲେଖା ଗାର ଏଇଭଳି ଟାଣିବୁ । ଏହା କହି ଚିହ୍ନ ଓ ଗାର ତାକୁ ଦେଖାଇ ଦେଲେ ।

"ଆମ୍ଭେମାନେ ତ ଏମିତି ଭାବରେ ଗଣାଗଣି କରୁଥାଉଁ ।"

'ଭଲ କଥା । ଆଉ ଗୋଟାଏ ଚିହ୍ନ ଦିଅ । ଟ୍ରକ ଗାଡ଼ି ପାଇଁ ୨ଟା ଚକ ଓ ଗୋଟାଏ ବାକ୍‌ସ । ଟ୍ରକ ଖାଲିଥିଲେ ଗୋଟାଏ ବୃତ୍ତ । ସୈନ୍ୟ ବୋଝାଇ ଥିଲେ ଗୋଟାଏ ସିଧା ଗାର । ଗ୍ରେଟ ତୋପ ପାଇଁ ଏମିତି ଚିହ୍ନ, ବଡ଼ ତୋପ ପାଇଁ ଏମିତି ଚିହ୍ନ । ମୋଟର ଗାଡ଼ି, ଆମ୍ବୁଲାନ୍‌ସ ଗାଡ଼ି ପାଇଁ ବିଭିନ୍ନ ଚିହ୍ନ, ପଦାତିକ ପାଇଁ ଗୋଟାଏ ବର୍ଗକ୍ଷେତ୍ର, ଅଶ୍ୱାରୋହୀ ପାଇଁ ଘୋଡାର ଚିହ୍ନ । କାଗଜରେ ଏମିତି ସବୁ ଚିହ୍ନ ଓ ଗାର କରି ଆଣିଲେ ମୁଁ ବୁଝି ନେବି ।'

'ହଉ, ଇଏତ ବଡ଼ କୌଶଳପୂର୍ଣ୍ଣ ।'

ଏହାପରେ ସେ ଦୁଇଟି ଚକକୁ ଘେରି ଗୋଟିଏ ବୃତ୍ତ ଅଙ୍କନ କରି ତାହା ଉପରେ ଏକ ସରଳରେଖା ଟାଣିଲେ । କହିଲେ 'ଏଟା ହେଉଛି ଟ୍ୟାଙ୍କ୍ ଭାଙ୍ଗିବା ତୋପର ଚିହ୍ନ । ଏ ତୋପରେ ଚକ ରବର ଟାୟାରଯୁକ୍ତ । ଆଉ ସେହିପରି ସରଳରେଖା ବଦଳରେ ବଙ୍କାଇ କରି ଗୋଟିଏ ନଳ ଅଙ୍କିଲେ ତାହା ବିମାନ ବିଧ୍ୱଂସୀ ତୋପର ଚିହ୍ନ ହେବ । ଏସବୁ ଚିହ୍ନ ଭଲକରି ମନେ ରଖିବୁ ।'

ଆନ୍‌ସେଲ୍‌ମୋ କହିଲା "ହଁ ଏଥର ଭଲଭାବେ ବୁଝିଲି ।"

'ଭଲ କଥା । ତୁ ଫେରି ଆସିଲେ ମୁଁ ରାସ୍ତାରେ କଅଣ କଅଣ ଗଲା ଜାଣି ନେବି । ଖଣ୍ଡେ କାଗଜରେ ଯିବାର ଚିହ୍ନ ଦେବୁ ଏବଂ ଆର ଖଣ୍ଡିକରେ ଫେରିବାର ଚିହ୍ନ ଦେବୁ ।' ଏହାପରେ ଦୁହେଁ ଗୁହାପାଖକୁ ଫେରି ଆସିଲେ ।

ଜର୍ଡ୍ଡାନ୍ କହିଲେ "ମୁଁ ଏଇଠି ଅଛି, ରାଫେଲ୍‌କୁ ମୋ ପାଖକୁ ପଠାଇଦେ ।"

ଆନ୍‌ସେଲ୍‌ମୋ ଭିତରକୁ ଗଲା । କମ୍ବଳ ଖଣ୍ଡେ ପୁଣି ଗୁହା ମୁହଁରେ ଟାଙ୍ଗିଲା । ରାଫେଲ୍ ହାତରେ ମୁହଁ ପୋଛି ପୋଛି ଗୁହା ଭିତରୁ ଧୀରେ ଧୀରେ ବାହାରି ଆସି ନମସ୍କାର କରି ପଚାରିଲା "ରାତରେ କାଲି ଉପଦ୍ରବ କରିଥିଲ ?"

"ମୁଁ ଶୋଇ ପଡ଼ିଥିଲି ।"

ଜିପ୍‌ସି କହିଲା 'ତେବେ ସେ ତ ମନ୍ଦ ନୁହେଁ । ତୁମ ପାଖରେ ସିଗ୍ରେଟ ଅଛି ?'

ପକେଟରୁ ସିଗ୍ରେଟ କାଢ଼ି କାଢ଼ି ଦେଇ ଜର୍ଡ୍ଡାନ୍ କହିଲେ "ଶୁଣ, ମୋ ଇଚ୍ଛା ଯେ ତୁମେ ଆନ୍‌ସେଲ୍‌ମୋ ସାଙ୍ଗରେ ରାସ୍ତାକୁ ଯିବ । ସେ ଯେଉଁଠି ରହିବ ସେ ଜାଗାଟା ଚିହ୍ନଟ କରି ଫେରି ଆସିଲେ ମୋତେ ପୁଣି ସେ ଜାଗା ଦେଖାଇ ପାରିବ କିମ୍ବା ଆଉ କିଏ ତାହା ଜାଗାରେ ରହିବ ତାକୁ ବତାଇ ଦେଇ ପାରିବ । ତୁମେ ନିଜେ କରତକଳ ପାଖକୁ ଯାଇ ସେଠା ଜଗୁଆଳୀ ଘାଟିର ପରିବର୍ତ୍ତନ ଲକ୍ଷ୍ୟ କରିବ ।"

'କିପରି ପରିବର୍ତ୍ତନ ?'

'ଏଇ ସେଠାରେ କେତେଲୋକ ଅଛନ୍ତି ଏବଂ କେତେ ଘଣ୍ଟା ଅନ୍ତରରେ ପୋଲର ପହରା ବଦଳିଥାଏ । ପ୍ରହରୀବାଲା କେତେ ଘଣ୍ଟା ରହନ୍ତି, କେତେଟାବେଳେ ନୂଆ ପ୍ରହରୀ ଲୋକ ଆସେ ଇତ୍ୟାଦି ।' ସେ ଲୋକ ପାଖରେ ଘଣ୍ଟା ନ ଥିବାରୁ ତାକୁ ନିଜର ଘଣ୍ଟା ଦେଲେ ।

ରାଫେଲ୍ କହିଲା "ଆରେ ବାବା, ଏ ଘଣ୍ଟାଟା ବଡ଼ ବିଚିତ୍ର । ଏଟା ସତେ ଯେମିତି ଲେଖିପଢ଼ି ପାରିବା ଘଣ୍ଟା । ଏହା ଏକ ଜଟିଳ କଳ । ପ୍ରହରୀ କାମ ଭୁଲାଇବା ପାଇଁ ଏ ଘଣ୍ଟା ।"

ଜର୍ଡ୍ଡାନ୍ କହିଲେ 'ଦେଖ ଖେଳିବା ଜିନିସ ନୁହେଁ । ମୋଡ଼ାମୋଡ଼ି କରିବ ନାହିଁ । ତୁମେ ଘଣ୍ଟା ଦେଖିପାର ?'

ରାଫେଲ କହିଲା "ହଁ ଜାଣେ । ଏଇ ୧୨ଟା ବେଳେ ଖାଇବାକୁ ଯିବା, ରାତି ୧୨ଟାବେଳେ ଶୋଇବାବେଳ, ସକାଳ ୬ଟାବେଳେ ଜଳଖିଆ, ସନ୍ଧ୍ୟା ୬ଟାବେଳେ ମଦପିଇବା, ରାତି ଦଶଟାବେଳେ—'

ଜର୍ଡ୍ଡାନ୍ ବିରକ୍ତିରେ କହିଲେ "ହଉଆଉ, ଆଉ ବଦ୍‌ମାସି କରିବା ଦରକାର ନାହିଁ । ମୁଁ ଚାହୁଁଛି ବଡ଼ ପୋଲ ଏବଂ ସେଠାର ପ୍ରହରୀ ଘର ଏବଂ ରାସ୍ତାରେ ଥିବା

ସାନପୋଲ, କରଡ କଲ ଏବଂ ସେଠାରେ ପ୍ରହରୀ ଘର ଉପରେ ତୁ ନଗା ରଖିଚୁ ।"

ରାଫେଲ୍ କହିଲା 'କାମତ ଗୁଡ଼ାଏ । ତୁମ ପାଖରେ ଆଉ କେହି ଲୋକ ନାହାଁ ?'

ଜର୍ଡ଼ାନ୍ କହିଲେ 'ନା ଆଉ କେହିନାହାଁ । ଢାମଟା ଭାରି ଜରୁରୀ । ତୁ ଏହାକୁ ଖୁବ୍ ସାବଧାନ ହୋଇ କରବୁ ଏବଂ ଲୁଚ ଲୁଚ କରିବୁ ।'

ରାଫେଲ୍ କହିଲା 'ହଁ, ମୁଁ ଲୁଚ ରହି ପାରିବ କିନ୍ତୁ ତୁମେ କାହିଁକି ଏହା କହୁଛ ? ମୋତେ କଅଣ କେହି ଗୁଳି ମାରିବା ଆଶଙ୍କା ଅଛି ।' ଏହା ଶୁଣି ରବର୍ଟ ଜର୍ଡ଼ାନ୍ ତାକୁ ଅବସ୍ଥାର ଗୁରୁତ୍ୱ ମନେ ରଖିବାକୁ କହିଲେ ।

ତୁମେ କାଲି ରାତରେ ଯାହା କଲ, ସେଥିରେ ମୋତେ ପୁଣି ବିଷୟ ଗୁଡ଼ାକୁ ଗୁରୁତ୍ୱ ଦୃଷ୍ଟି ଦେବାକୁ କହୁଛ ? ଜଣକୁ ପ୍ରାଣରୁ ମାରିଦେବା କଥାଥିଲା ଅଥଚ ତୁମେ କଅଣ କଲ ? ମାରିବା ହେଉଛି ତୁମର କାମ, ବଞ୍ଚାଇବା କାମ ନୁହେ । ଅଥଚ ଦଳ ଦଳ ଉଡ଼ାଜାହାଜ ଉଡୁଛନ୍ତି, ସେମାନେ ଏଠାର କୁକୁର ବିଲେଇ ସମସ୍ତଙ୍କୁ ମାରିବାକୁ ଉଦ୍ୟତ । ଆମର ଅପୁରୁଷ ଯାଏ ନଷ୍ଟ ଭ୍ରଷ୍ଟ କରିବାକୁ ତତ୍ପର । ଆକାଶମଣ୍ଡଳ ଗ୍ରାସି ପକାଇ ଭୀଷଣ ଗର୍ଜନ କରି ଉଡ଼ାଜାହାଜ ଯାଉଛନ୍ତି । ସେହି ଆବାଜରେ ଗର୍ଭିଣୀ ସ୍ତ୍ରୀର ଗର୍ଭ ଖସି ପଡ଼ିବ । ତୁମେ ମୋତେ ଗମ୍ଭୀର ହେବାକୁ କହୁଛ । ମୁଁ ତ ଅବସ୍ଥା ଅତ୍ୟଧିକ ବିପଦ ସଙ୍କୁଳ ବୋଲି ଧରି ନେଇଅଛି ।'

ରବର୍ଟ ଜର୍ଡ଼ାନ୍ ଜିପ୍‌ସି କଥାରେ ହସି ପକାଇ କହିଲେ "ହେଲା ହେଲା, ହଉ ତେବେ ହାଲୁକା ଭାବରେ ଗ୍ରହଣ କର ଏବଂ ଜଳଖିଆ ଖାଇ କାମରେ ଲାଗିଯାଅ ।"

ଜିପ୍‌ସି ପଚାରିଲା "ତୁମେ କଅଣ କରିବ ?"

"ମୁଁ ଏଲ୍ ସୋର୍ଡ଼ୋ ସଙ୍ଗେ ଦେଖା କରିବାକୁ ଯିବି ।"

ଜିପ୍‌ସି କହିଲା 'ଏତେ ସଂଖ୍ୟକ ଉଡ଼ାଜାହାଜ ଗଲା ପରେ ପାହାଡ଼ରେ ତୁମେ କାହାକୁ ପାଇବନାହିଁ । ସେମାନେ ସବୁ ଉଡ଼ାଜାହାଜ ଦେଖି ଭୟରେ ଗ୍ରାସିଆ ହୋଇ ପଳାଇଥିବେଣି ।'

'ସେ ଉଡ଼ାଜାହାଜ ଗୁଡ଼ାକ ଗରିଲାଙ୍କୁ ଖୋଜିବା ଛଡ଼ା ଅନ୍ୟ କାମରେ ଆସିଥିଲେ ।'

ଗିପ୍‌ସି କହିଲ 'ହଁ, ଅନ୍ୟ କାମକୁ ମନ ଦେଲେ କରିବେ ।'

ରବର୍ଟ ଜର୍ଡ଼ାନ୍ କହିଲେ 'ସେ ସବୁ ଜର୍ମାନୀର ହାଲୁକା ବୋମାରୁ । ଗିପ୍‌ସିଙ୍କୁ ମାରିବା ପାଇଁ ଏପରି ଉଡ଼ାଜାହାଜ ଦରକାର ନାହିଁ ।'

ରାଫେଲ୍ କହିଲା 'ମୋତେ ତାକୁ ମହାଭୟ ।'

ଦୁହେଁ ଗୁହା ଭିତରକୁ ଯାଉଁ ଯାଉଁ ରବର୍ଟ ଜର୍ଡ଼ାନ୍ କହିଲେ 'ଉଡ଼ାଜାହାଜ ଯାଇଛି ବିମାନ ଘାଟି ଧ୍ୱଂସ କରିବା ପାଇଁ । ମୋର ଏହା ଦୃଢ଼ ବିଶ୍ୱାସ ।'

ପାବ୍‌ଲୋର ସ୍ତ୍ରୀ ତାଙ୍କୁ ବେଲାଏ କଫି ଓ କଣ୍ଡେନ୍‌ସ୍ ଦୁଧ ଡବାଏ ଦେଲାବେଳେ ପଚାରିଲା 'କଅଣ କହୁଥିଲ ?'

'ବଡ଼ ଆନନ୍ଦର କଥା, ଦୁଧ ମିଳିଲା ।'

ଏଠି ସବୁ ଅଛି । କେବଳ ଉଡ଼ାଜାହାଜ ପାଇଁ ଯାହା ଭୟ । ଆଚ୍ଛା ସେମାନେ କୁଆଡ଼େ ମୁହାଁଇଲେ ବୋଲି ତୁମେ କହୁଥିଲ ?'

ରବର୍ଟ ଜର୍ଡ଼ାନ୍ ଦୁଧ ଟିଣ କାଟି କିଛି ଦୁଧ କାଫିରେ ମିଶାଇଲେ ଏବଂ କାଫିକୁ ଘାଣ୍ଟିଦେଲେ । ତାହାପରେ କହିଲେ 'ବୋଧହୁଏ ୭ଟା ଯାକ ଏସ୍କୋରିଆଲ୍ କମ୍ବା କୋଲ୍‌ମିନାର୍ ବିମାନ ଘାଟି ଉପରେ ବୋମା ପକାଇବାକୁ ଯାଇଅଛନ୍ତି ।'

ପାବ୍‌ଲୋ କହିଲା 'ଆମ ଏଠା ଛାଡ଼ି ସେମାନେ ଏତେ ଦୂରକୁ ଗଲେ ?'

ସ୍ତ୍ରୀଲୋକଟି ପଚାରିଲା 'ଏଠାକୁ କାହିଁକି ଆସିଛନ୍ତି, ଆମେ ତ କେବେ ଉଡ଼ାଜାହାଜ ଏତେ ବେଶୀ ସଂଖ୍ୟାରେ ଦେଖି ନଥିଲୁ । ସେମାନେ କଅଣ ଆକ୍ରମଣ କରିବା ପାଇଁ ପ୍ରସ୍ତୁତ ହେଉଛନ୍ତି ?'

ରବର୍ଟ ଜର୍ଡ଼ାନ ପଚାରିଲେ ରାସ୍ତାରେ 'ଗତ ରାତିରେ କଅଣ ଚଳାଚଳ ହେଉଥିଲା ?'

ମେରିଆ ତାଙ୍କର ଖୁବ ନିକଟରେ ଥିଲେ ମଧ୍ୟ ସେ ତାକୁ ଅନାଇଲେ ନାହିଁ ।

ସ୍ତ୍ରୀଲୋକ ଜଣକ କହିଲା 'ଫେର୍‌ନାଣ୍ଡୋ, ତୁ କାଲି ରାତିରେ ଲାଗ୍ରାଞ୍ଜାରେ ଥିଲୁ । ସେଠାର ହାଲ କଅଣ ?'

ଜଣେ ବାଙ୍ଗଡ଼ା, ମେଲା ମୁହାଁ ଟେରାଲୋକ ଖୁବ ସମ୍ଭବ ବୟସ ୩୫ ବର୍ଷ ହେବ କହିଲା 'ସୈନ୍ୟ ଚଳାଚଳ ଦେଖିନାହିଁ । କେବଳ କେତେ ଖଣ୍ଡି ମୋଟର

ଗାଡ଼ି ଓ କେତେ ଗୋଟି ବଡ଼ ଢୋଡ଼ାଗାଡ଼ି ଦେଖିଥିଲି ।’ ଏହି ଲୋକକୁ ରବର୍ଟ କର୍ଡ଼ାନ୍ ପୂର୍ବେ ଦେଖି ନଥିଲେ ।

ରବର୍ଟ କର୍ଡ଼ାନ୍ ପଚାରିଲେ ‘ତୁ କଅଣ ନିତ ରାତିରେ ଲାଗ୍ରାଞ୍ଜା ଯାଉ ?’

‘ମୁଁ, ନତୁବା ଅନ୍ୟ କେହି ଯାଇଥାଏ ।’

ସ୍ତ୍ରୀଲୋକ କହିଲା ‘ସେମାନେ ତମାଖୁ, ଅନ୍ୟ ଖାନ ଜିନିଷ ଏବଂ ସମ୍ବାଦ ପାଇଁ ଯାଆନ୍ତି ।’

‘ଆଚ୍ଛା ସେଠି ଆମ ତରଫ ଲୋକ ଅଛନ୍ତି ?’

‘ହିଁ ଅଛନ୍ତି । ବିଦ୍ୟୁତ ଶକ୍ତି ଉତ୍ପାଦନ କରିବା କଲ ଏବଂ ଅନ୍ୟ ପ୍ରକାର କାମ କରନ୍ତି ।’

‘କଅଣ ଖବର ମିଳିଲା ?’

‘ବିଶେଷ କିଛି ନୁହେ । ଉତ୍ତରାଞ୍ଚଳ ଅବସ୍ଥା ଖରାପ ରହିଅଛି । ଆରମ୍ଭବେଳ ଅପେକ୍ଷା ବର୍ତ୍ତମାନ ଅବସ୍ଥା ଅଧିକ ଖରାପ । ଇତ୍ୟେତ ଆଉ ବିଶେଷ ଖବର ନୁହେ ।’

‘ସେଗୋଭିଆ ସମ୍ବନ୍ଧରେ କିଛି ଶୁଣିଥିଲୁ ?’

‘ନା, ମୁଁ ପଚାରି ନଥିଲି ।’

‘ତୁ ସେଗୋଭିଆକୁ ଯାଉ ।’

‘ହିଁ ବେଳେବେଳେ ଯାଏ କିନ୍ତୁ ବାଟରେ ବିପଦ । ଜଗୁଆଳୀ ଘାଟିରେ କାଗଜପତ୍ର ଦେଖିବାକୁ ମାଗନ୍ତି ।’

“ବିମାନ ଘାଟି ଜାଣୁ ?”

“ହିଁ, କେଉଁଠି ତାହା ଅବସ୍ଥିତ ଜାଣେ କିନ୍ତୁ କେବେ ନିକଟକୁ ଯାଇ ଦେଖିନାହିଁ । ସେଠାରେ ଗ୍ରୁଡ଼ପତ୍ର ବିଷୟରେ ଭାରି କଟକଣା ।”

“ସେଠାରେ କାଲି ରାତରେ ଏସବୁ ଉଡ଼ାଜାହାଜ କଥା କହୁ ନଥିଲେ ?”

“ଗ୍ରାଞ୍ଜାରେ କହି କେହି ନଥିଲେ କିନ୍ତୁ ଆଜି ରାତରେ ନିଶ୍ଚୟ କଥାବାର୍ତ୍ତା ହେବେ ।”

‘ସେମାନେ କ୍ୱାପେ ଲନୋର ବେତାର ପ୍ରଚାର କଥା ଚର୍ଚ୍ଚା କରୁଥିଲେ । ମନେ ହେଉଛି ସାଧାରଣତନ୍ତ୍ର ପକ୍ଷରୁ ଏକ ଅଭିଯାନ ପ୍ରସ୍ତୁତ ହେଉଅଛି ।

"କଅଣ କହିଲୁ ?"

"ସାଧାରଣତନ୍ତ୍ର ଆକ୍ରମଣ କରିବାକୁ ପ୍ରସ୍ତୁତ ହେଉଅଛି ।"

"କେଉଁଠାରେ ?"

"ଠିକ୍ ନାହିଁ । ସମ୍ଭବତ ଏଇଠାରେ କମ୍ବା ସିରେର ଅନ୍ୟ ଅଂଶରେ । ତୁମେ ଏହା ଶୁଣିଛ ।"

"ଗ୍ରାଣ୍ଡାରେ ଏପରି କଥା ହେଉଥିଲେ ?"

"ହଁ, ଆଜ୍ଞା, ମୁଁ ଭୁଲିଯାଇଥିଲି କିନ୍ତୁ ଆକ୍ରମଣ ସମ୍ବନ୍ଧରେ ବହୁତ ଆଲୋଚନା ହୋଇଥାଏ ।"

"କିଏ ଏପରି ଚର୍ଚ୍ଚା କରନ୍ତି ?"

'କିଏ କଅଣ ? ବିଭିନ୍ନ ଲୋକେ କରିଥାନ୍ତି । କର୍ତ୍ତାମାନେ ସେଗୋଭିଆ ଏବଂ ଆଭିଲାର ହୋଟେଲରେ କରିଥାନ୍ତି । ହୋଟେଲ ଚାକରମାନେ ଶୁଣନ୍ତି । କ୍ରମେ ସମ୍ବାଦ ବିସ୍ତୃତ ହୋଇଯାଏ । କେତେ ସମୟ ହେଲା ସାଧାରଣତନ୍ତ୍ର ପକ୍ଷରୁ ଆକ୍ରମଣର ସମ୍ବାଦ ବିସ୍ତୃତ ହେଉଅଛି ।'

'ସାଧାରଣତନ୍ତ୍ର ନା ଫ୍ୟାସିଷ୍ଟ ପକ୍ଷରୁ ?'

'ସାଧାରଣତନ୍ତ୍ର ତରଫରୁ । ଯଦି ଫ୍ୟାସିଷ୍ଟ ପକ୍ଷରୁ ହୁଅନ୍ତା ତେବେ ସମସ୍ତେ ଜାଣି ପାରନ୍ତେଣି । ଏହି ଆକ୍ରମଣ ଟିକିଏ ବଡ଼ ରକମର ହେବ । କେହି କେହି କହନ୍ତି ଦୁଇଟା ଆକ୍ରମଣ କରାଯିବ । ଏଠି ଗୋଟାଏ ଏବଂ ଅନ୍ୟଟି ଆଲ୍‌ଟୋ-ଲିଅନ୍‌ଠାରେ । ତୁମେ ଏ ସମ୍ବନ୍ଧରେ କିଛି ଶୁଣିଛ ?'

'ଅଉ କଅଣ ଶୁଣିଲି ।'

'ଆଉ କିଛି ନୁହେଁ । ହଁ ହଁ ସାଧାରଣତନ୍ତ୍ର ପକ୍ଷରୁ ପୋଲଟା ଧ୍ୱଂସ କରି ଦିଆଯିବ । କିନ୍ତୁ ପୋଲ ସବୁ ସୁରକ୍ଷିତ ।'

କାଫି ପିଆଲାରେ ମୁହଁ ଲଗାଇ ରବର୍ଟ ଜର୍ଡ଼ାନ୍ ପଚାରିଲେ 'ତୁମେ ରହସ୍ୟ କରୁନାହଁ ତ ?'

ଫର୍ଣ୍ଣାଣ୍ଡୋ କହିଲା "ନାହିଁ ଆଜ୍ଞା ।"

ସ୍ତ୍ରୀଲୋକଟି କହିଲା 'ସେ ଲୋକଟା ରହସ୍ୟ କରେ ନାହିଁ । ତାହାର ଦୁର୍ଭାଗ୍ୟ ।'

ରବର୍ଟ ଜର୍ଡାନ୍ ତାକୁ ଧନ୍ୟବାଦ ଦେଇ କହିଲେ "ଆଉ କିଛି ଶୁଣିଥିଲ ?"

'ନା, ଏଠା ପାହାଡ଼କୁ ସୈନ୍ୟ ପଠାଇ ଦଖଲ ନେବାପାଇଁ ସୈନ୍ୟ ଆସୁଛନ୍ତି । ଖାଲଡ଼ୋଲଡ଼୍ ଠାରୁ ସୈନ୍ୟ ଯାତ୍ରା କଲେଣି ଏମିତ ନାନା କଥା । ଏଭଳି କଥା ସବୁବେଳେ ଶୁଭୁଛି ଏଣୁ ଏହାର ଗୁରୁତ୍ୱ କିଛି ନାହିଁ ।'

ପାବ୍‌ଲୋର ସ୍ତ୍ରୀ ଅତି ହିଂସ୍ର ଭାବରେ ପାବ୍‌ଲୋକୁ କହିଲା "ଘର ବୁଡ଼ି ପାଣି ଆଣି ଏ, କଣା କହେ ମେଘ ଦୁଲୁକୁଛି ।"

ପାବ୍‌ଲୋ ସ୍ତ୍ରୀ ଆଡ଼କୁ ଚକ୍ରାନ୍ୱିତ ହୋଇ ଗମ୍ଭୀରହି କହିଲା "ତୁ ଆଉ ତୋ ପୋଲ ଚୁଲିକୁ ଯାଉ ।"

ଫର୍ଣ୍ଣାଣ୍ଡୋ ଖୁସି ହୋଇ ପଚାରିଲା "କେଉଁ କେଉଁ ପୋଲ ?"

ସ୍ତ୍ରୀ ଲୋକଟି ତାକୁ ଗାଳିଦେଇ କହିଲା "ଓଲୁ, ଆଉ ପିଆଲାଏ କାଫି ପିଇନେ । ତୋ ମୁଣ୍ଡରେ କିଛି ନାହିଁ । ଆଉ କଅଣ ଖବର ଶୁଣିଥିଲୁ ମନେ ପକା ।"

ଫର୍ଣ୍ଣାଣ୍ଡୋ ଧୀର ଆନନ୍ଦରେ କହିଲା 'ପିଲାର, ରାଗୁଛ କାହିଁକି ? ଜନରବ ଶୁଣି ଖାପ ହେବା ଉଚିତ ନୁହେଁ । ମୋର ଯାହା ମନେ ଥିଲା ସବୁତକ ତୁମକୁ ଏବଂ ଏହି ସାଥୀଙ୍କୁ କହିଅଛି ।'

ଜର୍ଡ଼ାନ୍ ପଚାରିଲେ 'ତୁମର ତେବେ ଆଉ କିଛି ମନେ ନାହିଁ ?'

ଫର୍ଣ୍ଣାଣ୍ଡୋ ମର୍ଯ୍ୟାଦାର ସହିତ କହିଲା "ଏ ସବୁ ତୁଚ୍ଛା ଜନରବ । ଏଥି ମଧ୍ୟରୁ ଯେ ଏତେକଥା ମନେ ରହିଗଲା ଏହାହିଁ ଭାଗ୍ୟର ବିଷୟ । ଜନରବ ଜାଣି ମୁଁ ସେ ସବୁକୁ ସେତେ ଧ୍ୟାନ ଦେଇ ନଥିଲି ।

'ତେବେ ଅଧିକ କିଛି ଥାଇପାରେ ?'

'ହଁ । କିନ୍ତୁ ମୁଁ ମନଯୋଗ ଦେଇ ନ ଥିଲି । ବର୍ଷେହେଲା ଜନରବ ଶୁଣି ଶୁଣି ମୁଁ ଥୋକରା ।'

ମେରିଆ ଛିଡ଼ା ହୋଇଥିଲା ଜର୍ଡ଼ାନ୍‌ଙ୍କ ମଛପଛେ । ସେ ତାହାର ଖଲ ଖଲ ହାସ୍ୟ ଶୁଣିଲେ । ମେରିଆ କହିଲା "ଆଉ ଯାହା ଜନରବ ଶୁଣିଛ ତାହା ସବୁ ଆମକୁ କୁହ ଫର୍ଣ୍ଣାଣ୍ଡୋ !"

ଫର୍ଣ୍ଣାଣ୍ଡୋ କହିଲା "ମନେ ପଡ଼ିଲେ ମଧ୍ୟ କହିବ ନାହିଁ । କାରଣ ଜନରବକୁ ବିଶ୍ୱାସ କରିବା ମଣିଷର ମହତ୍ତ୍ୱରେ ବାଧେ ।"

ସ୍ତ୍ରୀଲୋକ କହିଲା "କିନ୍ତୁ ଏହାଦ୍ୱାରା ଯେ ଆମ୍ଭେମାନେ ସାଧାରଣତନ୍ତ୍ରକୁ ରକ୍ଷା କରି ପାରିବୁ ।"

ପାବ୍‌ଲୋ କହିଲା 'ନା ତା ନୁହେ । ପୋଲ ଧ୍ୱଂସ ଦ୍ୱାରା ସାଧାରଣତନ୍ତ୍ର ରକ୍ଷା କରିହେବ ।'

'ଯଦି ଖାଇ ସାରିଲଣି ତେବେ ରାଫେଲ୍ ଓ ଆନ୍‌ସେଲ୍‌ମୋ, ତୁମେ ଦୁହେଁ ଯାଅ ।' ଜର୍ଡାନ କହିଲେ ।

ଯାଉଛୁ ବୋଲି କହି ସେ ଦୁହେଁ ଠିଆହେଲେ । ମେରିଆ ଆସି ଜର୍ଡାନ୍ କାନ୍ଧରେ ହାତ ଥୋଇ କହିଲା "ତୁମେ ମଧ୍ୟ ଖାଇ ନିଅ । ଭଲକରି ଖାଇ ନିଅ ଯେ ବେଶୀ ଜନରବ ହଜମ କରି ପାରିବ ।"

'ଜନରବ ତ ମୋ ଭୋକ ମାରି ଦେଲଣି ।'

ମେରିଆ ତାଙ୍କ ଆଗରେ ଖାଦ୍ୟ ବେଲା ଥୋଇ ଦେଇ କହିଲା "ନା, ସେମିତ ନୁହେ, ଅଧିକ ଜନରବ ଆସିବା ପୂର୍ବରୁ ଖାଇନିଅ ।"

ଫର୍ଣ୍ଣାଣ୍ଡୋ କହିଲା "ମୋତେ ଲକ୍ଷ୍ୟ କରି ବିଦ୍ରୁପ କରନାହିଁ ମେରିଆ, ମୁଁ ତୋର ବନ୍ଧୁ ।"

"ମୁଁ ତ ତୋତେ ବିଦ୍ରୁପ କରୁନାହିଁ ଫର୍ଣ୍ଣାଣ୍ଡୋ । ମୁଁ ତାଙ୍କୁ ବ୍ୟଙ୍ଗ କରୁଛି ଯେପରି କି ସେ ଖାଇବେ, ନୋହିଲେ ଭୋକରେ ଛଟପଟ ହେବେ ।"

ଫର୍ଣ୍ଣାଣ୍ଡୋ କହିଲା "ଖାଇବା ତ ସମସ୍ତେ । ପିଲାର୍, କଅଣ ଘଟିଛି ଯେ ଖାଦ୍ୟ ପରସା ଯାଇନାହିଁ ।"

ପିଲାର୍ କହିଲା "ନା, କିଛି ଘଟିନାହିଁ । ନେଇ ନିଅ ତୁମର ମାଂସ ଝୋଳ । ଖାଅ, ଏହାହିଁ ତ ଲୋଡ଼ୁଥିଲ ?"

ଫର୍ଣ୍ଣାଣ୍ଡୋ ଯଥେଷ୍ଟ ମହତ୍ତ୍ୱର ସହିତ କହିଲା "ହଁ, ଏହା ଖୁବ୍ ସୁସ୍ୱାଦୁ, ପିଲର୍ ।" ପିଲର୍ ତାକୁ ବାରମ୍ବାର ଧନ୍ୟବାଦ ଦେଲା । ଫର୍ଣ୍ଣାଣ୍ଡୋ ପଚାରିଲା "ମୋ ଉପରେ ରାଗିଲ କି ?"

'ନା, ମୁଁ ରାଗିନାହିଁ । ତୁମେ ଖିଆ ଶେଷକର ତ !'

ଜର୍ଡାନ୍ ବୁଝି ପାରିଲେ ଯେ ମେରିଆ କମିବାକୁ ଆରମ୍ଭ କଲଣି । ଫର୍ଣ୍ଣାଣ୍ଡୋ

ଘୁରୁଗମ୍ଭୀର ମୁଖଭଙ୍ଗି କରି ଉଙ୍କା ଉଙ୍କା ଖାଦ୍ୟ ଓ ଚଟଣୀ ନେଇ ଭୋଜନ କରିବାକୁ ଲାଗିଲା ।

ପିଲାର ପଚାରିଲା "କଅଣ, ଭଲ ଲାଗୁଛି ତ ?"

ମୁହଁରେ ଖାଦ୍ୟ ଭରତି କରି ସେ ଜବାବ ଦେଲା "ସବୁଦିନ ପରି ସମାନ ରୁଚିକର ।" ମେରିଆ ଏତେବେଳକୁ ଜର୍ଡ଼ାନ୍ଙ୍କ ବାହୁକୁ ଖୁସିରେ ଚିପି ଧରିଥାଏ ।

ପିଲାର୍ ପଚାରିଲା "ଓଃ ତାହାପାଇଁ ଖାଦ୍ୟ ଭଲ ଲାଗୁଛି ।" କଥାଟା ମେରିଆକୁ ଇଙ୍ଗିତ କରି କହି ଲାଗିଲା "ହଁ, ମାଂସଝୋଲ ସବୁ ସବାଦିନଆ । ଉତ୍ତରାଞ୍ଚଳରେ ଅବସ୍ଥା ଅତି ଖରାପ । ଏଠା ଉପରେ ଆକ୍ରମଣ ଆସନ୍ନ । ସୈନ୍ୟ ଅସି ଆମକୁ ଖୋଜି ଖୋଜି ମାରିବେ । ତୁମେ ଏକ ସ୍ତୃତ ହୋଇ ରହିବ ।"

"କିନ୍ତୁ ମୋ ଶେଷ କଥାଟା ଯେ ଜନରବ ମାତ୍ର ।"

ପିଲାର୍ ତିକ୍ତ କଣ୍ଠରେ କହିଲା "ଆମର ସ୍ପେନ ବିପଦଗ୍ରସ୍ତ ।" ଏହାପରେ ଜର୍ଡ଼ାନ୍ଙ୍କୁ ଗୃହିଁ ପଚାରିଲା 'ଆଗ୍ରୁ ଏଇଭଳି ଲୋକ କଅଣ ଅନ୍ୟ ଦେଶମାନଙ୍କରେ ଅଛନ୍ତି ?'

ଜର୍ଡ଼ାନ୍ ଭଦ୍ର ଭାବରେ କହିଲେ "ସ୍ପେନ ପରି କୌଣସି ଦେଶ ନାହିଁ ।'

ଫର୍ଣ୍ଣାଣ୍ଡୋ କହିଲା 'ହଁ ଯଥାର୍ଥ କଥା । ସ୍ପେନ ପରି ଦେଶ ନାହିଁ ।'

ସ୍ତ୍ରୀଲୋକ ପଚାରିଲା "ତୁ ଆଉ କୋଉ ଦେଶ ଦେଖିଅଛୁ ?"

'ଦେଖିନାହିଁ, କିମ୍ବା ଦେଖିବାକୁ ଚାହେଁ ନାହିଁ' ଫର୍ଣ୍ଣାଣ୍ଡୋ ଜବାବ ଦେଲା । ପିଲାର୍ ରବର୍ଟ ଜର୍ଡ଼ାନ୍ଙ୍କୁ କହିଲା "ଦେଖିଲ ତ ?"

ମେରିଆ କହିଲା "ଫର୍ଣ୍ଣାଣ୍ଡିଟୋ— ତୋ ଭାଲେନ୍‌ସିଆ ରହଣୀ କଥା କହିଲୁ ?"

'ଭାଲେନ୍‌ସିଆ ମୋତେ ଭଲ ଲାଗି ନଥିଲା ।'

ମେରିଆ ପୁଣି ପଚାରିଲା "କାହିଁକି ଭଲ ଲାଗି ନଥିଲା ?"

'ଲୋକଗୁଡ଼ାଙ୍କର ଭଦ୍ରତା ଜ୍ଞାନ ନଥିଲା । ମୁଁ ତାଙ୍କ ଗାଠମାଠ ବୁଝିପାରି ନଥିଲି । ସବୁବେଳେ ହଟଗୋଳ, ଚିତ୍କାର ।'

'ତୋ କଥା ସେମାନେ ବୁଝୁଥିଲେ ?'

'ସେମାନେ ନ ବୁଝିବାର ବାହାନା କରୁଥିଲେ ?'

'ତୁ ସେଠାରେ କଅଣ କରୁଥିଲୁ ?'

'କିଛି ନୁହେଁ, ମୁଁ ସମୁଦ୍ର ସୁଦ୍ଧା ନ ଦେଖି ଚାଲି ଆସିଲି । ସେ ଲୋକଗୁଡ଼ାକ ମୋତେ ଭଲ ଲାଗିଲେ ନାହିଁ ।'

ପିଲାର୍ କହିଲା "ତୁ ଏଠାରୁ ଗଲୁ ଶାନ୍ତି । ଦୟାକରି ମୋତେ ରଗାନା । ଭାଲେନ୍‌ସିଆରେ ମୋ ଜୀବନର ଶ୍ରେଷ୍ଠ ଅଂଶ ବିତିଛି । ଭାଲେନ୍‌ସିଆ ନିନ୍ଦା ମୋ ଆଗରେ କରନ୍ତୁ ନାହିଁ ।"

ମେରିଆ ପଚାରିଲା "ସେଠି ତୁ କଅଣ କରୁଥିଲୁ ?" ପିଲାର୍ ଟେବଲ ପାଖରେ ବାଟିଏ କାଫି, ଖଣ୍ଡିଏ ରୁଟି ଓ ବାଟିଏ ମାଂସସିଦ୍ଧ ନେଇ ଖାଇବାକୁ ବସି ଯାଇଥାଏ । କହିଲା "ମୁଁ କଅଣ କରୁଥିଲି । ଫିନଟୋର ଫେରିଆଠାରେ ବାଣ୍ଟା ଲଢ଼େଇର ଚୁକ୍ତି ଥିଲାବେଳେ ମୁଁ ସେଠାକୁ ଯାଇଥିଲି । ଏତେ ବେଶୀ ମଣିଷ ମୁଁ ଆଉ କାହିଁ ଦେଖି ନାହିଁ । ହୋଟେଲ ସବୁ ଜନାକୀର୍ଣ୍ଣ ଥିଲା । ଘଣ୍ଟା ଘଣ୍ଟା ଠିଆହେଲେ ମଧ୍ୟ ବସିବାକୁ ଜାଗା ମିଳୁ ନଥିଲା । ଟ୍ରାମଗାଡ଼ିରେ ଚଢ଼ିବା ଅସମ୍ଭବ ଥିଲା । ସେଠାରେ ଧନଦୌଲତ ସବୁବେଳେ ଚଳାଚଳ ଚାଲିଥିଲା ।"

'କିନ୍ତୁ ତୁ କଅଣ କରୁଥିଲୁ ?' ମେରିଆ ପଚାରିଲା ।

ସ୍ତ୍ରୀଲୋକଟି କହିଲା "କଅଣ କରୁ ନଥିଲି ? ସମୁଦ୍ର କୂଳକୁ ଯାଇ ପାଣିରେ ଗୋଡ଼ ଦେଇ ଶୋଉଥିଲି । ସମୁଦ୍ରରୁ ବୋଟ୍ ସବୁ ବଳଦମାନେ ଉପରକୁ ଟାଣି ଆଣୁଥିଲେ । ବଳଦ ସବୁ ବେକେ ପାଣିରେ ପଶି ବୋଟ୍ ଟାଣି ବାଲିକୁ ଆଣୁଥିଲେ । ୧୦ ହଳ ବଳଦ ବୋଟ୍ ଟାଣୁଥିଲେ । ଢେଉ କୂଳରେ ବରାବର ଭାଙ୍ଗୁଥିଲା । ଭାଲେନ୍‌ସିଆ ହେଉଛି ଏମିତି ଜାଗା ।"

"ବଳଦଙ୍କୁ ଦେଖିବା ଛଡ଼ା ଆଉ କଅଣ କରୁଥିଲୁ ?"

"ବେଳାଭୂମିର ଦୋକାନରେ ଆମ୍ଭେମାନେ ଖାଉଥିଲୁ । ବାଦାମ ଓ ଲଙ୍କା ଦିଆ ମାଛ ବରା ଖାଇଲେ ମୁହଁରୁ ଛାଡ଼ିବ ନାହିଁ । ଖଟା ଦିଆ ତାଜା ଚିଙ୍ଗୁଡ଼ି ଭଜା । ଖାଇବାକୁ ଭାରି ସୁସ୍ୱାଦୁ । ଏହାଛଡ଼ା ଅନ୍ୟ ବହୁ ରକମର ମାଛ ଭଜା । କେତେ ମାଛ ବହୁତ ନରମ । ଦାନ୍ତ ଲାଗୁ ନଥାଏ । ବୋତଲକୁ ୩୦ ପଇସା ଦେଇ ଚମତ୍କାର ଧଳା ନରମ ମଦ ମଧ୍ୟ କିଣୁଥିଲୁ । ଶେଷକୁ ଖାଉଥିଲୁ ତରଭୁଜ । ଜାଗାଟା ହେଉଛି ତରଭୁଜର ଗୃହ ଜାଗା ।"

ଫର୍ଣ୍ଣାଣ୍ଡୋ କହିଲା "କାସ୍‌ଟାଇଲ୍‌ର ତରଭୁଜ ଅଧିକ ଭଲ ।"

ପିଲାର୍ କହିଲା 'ଦୂର୍ ତୋ ଛୋଟ୍ଟାଇଲ୍ ତରଭୁଜ, ସେଗୁଡ଼ାକ କେହି ଖାଏ ? ଭାଲେନ୍‌ସିଆ ତରଭୁଜ ହେଉଛି ଅସଲ ଜିନିଷ । ଲମ୍ବରେ ପ୍ରାୟ ହାତେ ଲେଖା; ରଙ୍ଗରେ ସମୁଦ୍ର ପାଣି ପରି ସବୁଜ, ଯେପରି ରସାଳ ସେମିତି ସୁମିଷ୍ଟ ଏବଂ ସେମିତି ଶୀତଳ । ସେଠାର ଖାଦ୍ୟ କଥା ମନେ କଲେ ମୋ ତୁଣ୍ଡରୁ ଲାଳବହେ । ଦିନମାନ ମାଠିଆ ମାଠିଆ ନରମ ମଦ ପିଇବା ଭାରି ଆରାମପ୍ରଦ ।'

"ଖାଇବା ପିଇବା ଛଡ଼ା ଅନ୍ୟବେଳେ କଅଣ କରୁଥିଲୁ ?"

'କବାଟ ଝିଲିମିଲି ବନ୍ଦକରି ଅନ୍ଧାରରେ ବସି ସମୁଦ୍ର ପବନ ଉପଭୋଗ କରି ଆମେ ପ୍ରେମ କରୁଥିଲୁ । ଘରର ପାଖ ଓ କବାଟ ଉପର କଣାବାଟେ ରାସ୍ତାରୁ ଫୁଲ୍ ସୁଗନ୍ଧ ମହକି ଉଠୁଥିଲା କାରଣ ତଳେ ଥିଲା ଫୁଲବଜାର । ଫେରିଆ ଉତ୍ସବବେଳେ ଲୋକେ ଖୁସିରେ ବାଣରୋଷଣି ଫୁଟାଉଥିଲେ । ସହର ତମାମ ଏପରି ବାଣରୋଷଣିରେ କମ୍ପି ଉଠୁଥିଲା । ଟ୍ରାମ ଖୁଣ୍ଟି ଉପରେ ଏବଂ ତାର ଦେହରେ ଏସବୁ ରୋଷଣି ଟଙ୍ଗା ରହୁଥିଲା । ବାଣ ଫୁଟା ଆବାଜରେ କାନ ଅତଡ଼ା ପଡ଼ି ଯାଉଥିଲା ।'

ପ୍ରେମ କରୁ କରୁ ଆମେ ମାଠିଆ ମାଠିଆ ମଦ ମଗାଇ ପିଉଥିଲୁ । ଝି ମଦ ଆଣିଦେଲେ ମୁଁ ଦୁଆର ମୁହଁରୁ ତାହା ନେଇ ଫିନିଟୋ ବିଛଣା ପାଖରେ ରଖୁଥିଲି ।

ସେ କହୁଥିଲା 'ପିଲାର୍ ମୋତେ ଉଠାଅ ନାହିଁ । ଦେଖୁନାହିଁ କେତେ ସେ ଆଖି ନ ଫିଟାଇ ପିଇ ନେଉଥିଲେ । ମୁଁ ବିଛଣାରେ ତଳଆଡ଼କୁ ଡକିଆ ଆଉଜା ଶୋଉଥିଲି ଆଉ ତାକୁ ଦେଖୁଥିଲି । ନିଦରେ ସେ ମାଠିଆଏ ମଦ ପିଇ ନେଉଥିଲେ । ତଳେ ଯେଉଁ ବ୍ୟାଣ୍ଡ୍ ବାଦକ ଦଳ ଯାଉଥିଲେ ତାହା ଶୁଣୁଥିଲି ।' ପାବ୍‌ଲୋ ଏମିତିକା କଥା କଳ୍ପନା କରି ପାରିବ ନାହିଁ । ପାବ୍‌ଲୋ କହିଲା 'ଆମେ ପରା ଏକାଠି ଏହା କରୁଥିଲୁ ।'

'ହଁ, ହଁ, କାହିଁକି ନ କରିବା । ତୋ ସମୟରେ ତୁ ଫିନିଟୋଠାରୁ ଭଲଥିଲୁ କିନ୍ତୁ ତୁ କେବେ ଭାଲେନ୍‌ସିଆ ଯାଇନାହୁଁ । ଆମେ ଦୁହେଁ କେବେ ଭାଲେନ୍‌ସିଆରେ ଏକ ବିଛଣାରେ ଶୋଇ ରାସ୍ତାର ବ୍ୟାଣ୍ଡ୍ ଶୁଣି ନଥିଲୁ ।'

ପାବ୍‌ଲୋ କହିଲା 'ଆମ ପକ୍ଷରେ ସମ୍ଭବ ନଥିଲା । ଭାଲେନ୍‌ସିଆକୁ ଯିବା ପାଇଁ ଆମର ସୁଯୋଗ ମିଳି ନଥିଲା । ଅଟଟ ନହେଲେ ତୁ ଏହା ମାନିବୁ କିନ୍ତୁ ଫିନିଟୋ ସହିତ ମିଶି ତୁ ତ ଟ୍ରେନ୍ ଧ୍ୱଂସ କରି ନଥିଲୁ ।'

ସ୍ତ୍ରୀଲୋକ କହିଲ 'ନା, ସେ କାମ ଆମର ଏଠାରେ କରିବାକୁ ପଡ଼ିବ । ହିଁ ଟ୍ରେନ କଥା ପଢ଼ିଲେ । ସେ କଥାର ବିରୁଦ୍ଧରେ କେହି କହିପାରିବ ନାହିଁ । ସେଟା ହେବ ଭୀରୁତା, ଆଳସ୍ୟ, ବିଫଳତା ଏବଂ ଜଡ଼ତାର ଲକ୍ଷଣ । ପୂର୍ବରୁ ଅନେକ କାମ କରିବାର ଥିଲି । ମୁଁ ଅନ୍ୟାୟ କରିବାକୁ ଚାହେଁ ନାହିଁ କିନ୍ତୁ ତମେ କେହି ଭାଲେନ୍‌ସିଆ ବିରୁଦ୍ଧରେ କିଛି ନାହିଁ । ଶୁଣୁଛ ?'

ଫର୍ଣ୍ଣାଣ୍ଡୋ ଶାନ୍ତଭାବରେ କହିଲା 'ମୋତେ ଭାଲେନ୍‌ସିଆ ଭଲ ଲାଗି ନଥିଲା ।'

ସ୍ତ୍ରୀଲୋକଟି କହିଲେ 'ଖେଚରମାନେ ଏକଜିଦିଆ, ଏହା ମିଛ ନୁହେଁ । ମେଣିଆ ସବୁ ସଫା କରିଦେ, ଆମ୍ଭେମାନେ ଯିବୁ ।'

ଏତିକିବେଳେ ଉଡ଼ାଜାହାଜ ଫେରି ଆସୁଥିବା ଆବାଜ ଶୁଭିଲା ।

# ନବମ ପରିଚ୍ଛେଦ

ସେମାନେ ଗୁହା ମୁହଁରେ ଠିଆହୋଇ ଉଡ଼ାଜାହାଜକୁ ଦେଖିବାକୁ ଲାଗିଲେ । ଉପସାଗରର ମଗର ମାଛ ଆକାରର ଏହି ସବୁ ଉଡ଼ାଜାହାଜ ନିଜର ଆବାଜରେ ଆକାଶ ଫଟାଇ ଦେଉଥାନ୍ତି । ସେ ସବୁର ନାକ ଠିକ ମଗର ପରି ମୁନିଆ କାନ୍ଥ ଡେଣା ଗୁଡ଼ିକ ଧଳା ଓ ଚଉଡ଼ା । ସେମାନଙ୍କର ଗତି କୌଣସି ଜୀବନ୍ତ ଜନ୍ତୁର ଗତି ନୁହେ ତାହା ଯାନ୍ତ୍ରିକ ଧ୍ୱଂସର ନିଦାନ ।

ରବର୍ଟ ଜର୍ଡ଼ାନ୍ ଭାବିଲେ ଯେ ତାଙ୍କର ଲେଖାଲେଖି କରିବା ଉଚିତ । ହୁଏତ ଦିନେ ଲେଖିବେ । ଏଥିକବେଳେ ସେ ବୁଝିଲେ ମେରିଆ ତାଙ୍କ ବାହୁ ଧରି ଉପରକୁ ଚାହିଁ ରହିଅଛି । ସେ ପଚାରିଲେ "ସେ ସବୁ ତୋତେ କାହାପରି ଦିଶୁଛି କହିଲୁ ?"

"ମୁଁ ଜାଣେ ନାହିଁ, ବୋଧହୁଏ ମୃତ୍ୟୁପରି ।"

ପାବ୍ଲୋର ସ୍ତ୍ରୀ କହିଲା "ସେ ଗୁଡ଼ାକ ଉଡ଼ାଜାହାଜ ପରି ଦେଖାଯାଉଅଛି । ଯାନ ଗୁଡ଼ାକ ଗଲେ କୁଆଡ଼େ ?

ରବର୍ଟ ଜର୍ଡ଼ାନ୍ କହିଲେ "ହୁଏତ ଅନ୍ୟଆଡ଼ ଦେଇ ଫେରୁଥିବେ । ସେ ସବୁ ବୋମାରୁ ବିମାନ ଭାରି ବେଗଗାମୀ ଏଣୁ ଏମାନଙ୍କୁ ଅପେକ୍ଷା ନ କରି ଫେରି ଯାଇ ଥିବେଣି । ଆମ୍ଭେମାନେ ତାଙ୍କ ସୀମା ଭିତରକୁ ଯାଇ ଲଢ଼ିବାକୁ ତାଙ୍କ ପିଛା ଧରି ନଥାଉଁ । ଆମର ଏତେ ବିମାନ ମଧ୍ୟ ନାହିଁ ଯେ ବିପଦର ସମ୍ମୁଖୀନ ହେବୁ ।"

ଠିକ୍ ଏହିଠାବେଳେ ୩ଗୋଟି ହ୍ୱେଲିଙ୍ଗ୍ ବିମାନ ତ୍ରିଭୁଜାକାରରେ ଅଳ୍ପ ଉଚ୍ଚରେ ଉଡ଼ି ଆସିବାର ଦେଖାଗଲା । ସେମାନେ ତାଙ୍କ ଆଡ଼କୁ ଆସୁଥିଲେ, ପ୍ରାୟ ଗଛ ଉପରେ । ମୁନିଆ ନାକ । ଡେଣା ଝୁଲାଇବା କୁଞ୍ଚିତ ଫେଲୋଶା ପରି ସେମାନେ ଆସିଲେ ଏବଂ ନିକଟ ହେବାରୁ ଖୁବ୍ ବଡ଼ ଦେଖାଗଲେ । ବିମାନଗୁଡ଼ିକ ଗର୍ଜନ କରି କରି ଗଲେ । ଗୁହା ମୁଖରେ ଥାଇ ସମସ୍ତେ ବିମାନଚାଳକଙ୍କୁ ଦେଖିଲେ । ତାଙ୍କ ମୁଣ୍ଡରେ ଲୁହାରଟୋପି, ବେକରେ ଗୁଦର ଏବଂ ଆଖିରେ କଳା ଚଷମା । ଗୁଦର ପଛଆଡ଼କୁ ଉଡୁଥାଏ ।

ପାବ୍ଲୋ କହିଲା 'ଏମାନେ ଘୋଡ଼ାଙ୍କୁ ଦେଖି ପାରିବେ ।'

ସ୍ତ୍ରୀଲୋକଟି କହିଲା 'ସେମାନେ ତୋ ସିଗ୍ରେଟ ନିଆଁ ମଧ୍ୟ ଦେଖି ପାରିବେ । କମଳ ଝୁଲାଇ ପକା ।'

ଅନ୍ୟ ଉଡ଼ାଜାହାଜ ଆସିଲେ ନାହିଁ । ସେମାନେ ବୋଧହୁଏ ଅନ୍ୟବାଟେ ଫେରିଗଲେ । ବିମାନର ଆବାଜ ବନ୍ଦ ହୋଇଯିବାରୁ ସମସ୍ତେ ଖୋଲା ଜାଗାକୁ ଆସିଲେ ।

ଆକାଶ ବର୍ତ୍ତମାନ ଶୂନ୍ୟ, ନିର୍ମଳ ଓ ନୀଳ ।

ରବର୍ଟ ଜର୍ଡ଼ାନ୍‌ଙ୍କୁ ମେରିଆ କହିଲା 'ସେମାନେ ସ୍ୱପ୍ନପରି ଉଭେଇ ଗଲେଣି ।' ପରର ମର୍ମର ଶବ୍ଦ ଭଳି କ୍ଷୀଣ ଶବ୍ଦ ମଧ୍ୟ ଶୁଣାଯାଉ ନଥାଏ ।

ପିଲାର୍ କହିଲା 'ସେ ସବୁ ସ୍ୱପ୍ନ ନୁହେ ସତ୍ୟ । ହଉ ତୁ ବର୍ତ୍ତମାନ ସଫା ସୁତୁରା କରିପକା ।' ଏହାପରେ ରବର୍ଟ ଜର୍ଡ଼ାନ୍‌ଙ୍କୁ ପଚାରିଲା 'ବର୍ତ୍ତମାନ ଆମ୍ଭେମାନେ ଚାଲିବା କିମ୍ବା ଘୋଡ଼ାରେ ଯିବା ?'

ପାବ୍ଲୋ ତା ଆଡ଼କୁ ଚାହିଁ ହଁ ହଁ ଶବ୍ଦ କଲା । ରବର୍ଟ ଜର୍ଡ଼ାନ୍ କହିଲେ ଯାହା ତୋ ଇଚ୍ଛା ।'

ସ୍ତ୍ରୀଲୋକଟି କହିଲା "ତେବେ ଚାଲି ଚାଲି ଯିବା । ମୋ କଲିଜା ଦୋଷ ପାଇଁ ମୁଁ ଚାଲିବାକୁ ଚାହେଁ ।"

'ଘୋଡ଼ାରେ ଗଲେ କଲିଜା ଦୋଷରେ ଫାଇଦା ହେବ ।'

'ହଁ ହେବ ମାତ୍ର ପିତ୍ତ ବ୍ୟଥା କରିବ । ଆମ୍ଭେମାନେ ଚାଲି ଚାଲି ଯିବା ।' ଏହା ପରେ ପାବ୍ଲୋକୁ କହିଲା 'ତଳକୁ ଯାଇ ତୋ ଘୋଡ଼ାକୁ ଗଣି ଦେଖ ସମସ୍ତେ ଅଛନ୍ତି କିମ୍ବା କେହି ଉଡ଼ିଯାଇଛନ୍ତି ।'

ପାବ୍‌ଲୋ ଜର୍ଡ଼ାନ୍‌ଙ୍କୁ ପଚାରିଲେ ତାଙ୍କର ଘୋଡ଼ା ଲୋଡ଼ା କି ନୁହେଁ କିନ୍ତୁ ସେ ଧନ୍ୟବାଦ ଦେଇ ନାସ୍ତି କରି ବାଳିକା କପରି ଯିବ ପଚାରିଲେ ।

ପିଲାର୍ କହିଲା 'ତା ପକ୍ଷରେ ଚାଲି ଚାଲି ଯିବା ଉଚିତ । ନଚେତ୍ ତାହାର ଅଣ୍ଟା ପିଠିରେ ଖିଲ ମାରିଯିବ ଏବଂ କୌଣସି କାମ ଦେବ ନାହିଁ ।'

ରବର୍ଟ ଜର୍ଡ଼ାନ୍ ଏହି କଥାରେ ଅତି ଅପ୍ରତିଭ ହୋଇ ଉଠିଲେ ।

ପିଲାର୍ ପଚାରିଲା 'ଭଲ ନିଦ ହୋଇଥିଲା ତ ? ଏଠାରେ ଧୋମାରି ଅବୋରି ନାହିଁ ସତ କିନ୍ତୁ ପାରିଥାନ୍ତା । ନ ହେବା ଦେଖି ମୁଁ ଆଶ୍ଚର୍ଯ୍ୟ । ଆମ୍ଭେମାନେ ଈଶ୍ୱରଙ୍କୁ ହଟାଇ ଦେଇଥିଲେ ମଧ୍ୟ ସମ୍ଭବତଃ ଈଶ୍ୱର ଅଛନ୍ତି ।' ସେ ପାବ୍‌ଲୋକୁ କହିଲା 'ତୁ ଯା, ଏ କାମ ତୋହର ନୁହେଁ । ତୋଠାରୁ ଊଣା ବୟସ୍କ ପାଇଁକି ଏ କାମ । ସେମାନେ ଅନ୍ୟ ଧାତୁରେ ଗଢ଼ା । ଯାଅ ।' ଏହାପରେ ଜର୍ଡ଼ାନଙ୍କୁ କହିଲା 'ଅଗଷ୍ଟିନ୍ ତୁମ ମାଲମତ୍ତା ଦେଖୁଅଛି । ସେ ଆସିଲେ ଆମ୍ଭେମାନେ ଯିବା ।'

ନିର୍ମଳ ଆକାଶରେ ସୂର୍ଯ୍ୟ କିରଣ ପଡ଼ି ସବୁ ଉଜ୍ଜ୍ୱଳ ଏବଂ ଉଷ୍ମ ହୋଇ ଉଠିଥିଲା । ରବର୍ଟ ଜର୍ଡ଼ାନ୍ ସେହି ବିଶାଳକାୟ ଶ୍ୟାମଳ ମୁହାଁ ସ୍ତ୍ରୀ ଲୋକକୁ ଚାହିଁଲେ ! ତାହାର ଆଖି ଦୁଇଟି ଫାଙ୍କ ଫାଙ୍କ ଓ ଚାରିକୋଣିଆ ଅଥଚ ଦୟାଦ୍ରିତ । ମୁହଁଟା ଭାରି, କୁଞ୍ଚିତ ଏବଂ ମଧୁର ଭାବରେ କୁତ୍ସିତ । ଆଖି ପୁଲକଭରା କିନ୍ତୁ କଥା ନ କହିବା ଯାଏ ମୁହଁ ଦୁଃଖାନ୍ତି । ସେ ତାକୁ ଏବଂ ତପୂରେ ସେହି ନିଦା ପୁରୁଷଟାକୁ ଘୋଡ଼ାଶାଳା ଆଡ଼କୁ ଯିବାର ଦେଖିଲେ । ସ୍ତ୍ରୀ ଲୋକଟା ମଧ୍ୟ ତାକୁ ଦେଖୁଥିଲା ।

ସ୍ତ୍ରୀ ଲୋକଟି ପଚାରିଲ 'ତୁମେ ପ୍ରେମ କରିଥିଲ ?'

'ସେ କଅଣ କହୁଥିଲ ?'

'ସେ ମୋତେ କହିବ ନାହିଁ ।'

'ତେବେ ମୁଁ ମଧ୍ୟ କହିବ ନାହିଁ ।'

'ତେବେ ତୁମେ ପ୍ରେମ କରିଥିଲ । କିନ୍ତୁ ତା ପ୍ରତି ସାବଧାନ ରହିବ ।' ସ୍ତ୍ରୀ ଲୋକ କହିଲ ।

'ଯଦି ତାହାର ପିଲାପିଲି ହୁଏ ?'

'ସେଥିରେ କିଛି କ୍ଷତି ହେବ ନାହିଁ ।'

'କିନ୍ତୁ ଏ ଜାଗାଟା ପିଲା ହେବାପାଇଁ ଠିକ୍ ନୁହେଁ ।'

'ସେ ଏଠି ରହିବ ନାହିଁ, ତୁମ ସଙ୍ଗରେ ଯିବ ।'

'ମୋ ସାଙ୍ଗରେ ଯିବ ? ମୁଁ ଯୁଆଡ଼େ ଯିବି ସେଠାକୁ କୌଣସି ସ୍ତ୍ରୀ ଲୋକ ନେଇ ପାରିବି ନାହିଁ ।'

'ଗୋଟାଏ କଅଣ, ଦୁଇଟା ସ୍ତ୍ରୀଲୋକ ନେଇପାର, କଏ କହିବ ?'

'ଏଟା କଅଣ କଥା କହିବା ଢଙ୍ଗ ?'

ସ୍ତ୍ରୀଲୋକ କହିଲା "ଶୁଣ, ମୁଁ ଖିରୁ ନୁହେ କିନ୍ତୁ ଆଜି ବଡ଼ସକାଳୁ ଯାହା ଦେଖିଲି ସେଥିରେ ମୋର ପରିଷ୍କାର ବିଶ୍ୱାସ ଜନ୍ମିଛି ଯେ ଆମର ଜଣା ଲୋକଙ୍କ ଭିତରୁ ଅନେକେ ଆଗାମୀ ରବିବାର ଯାଏ ଜୀବନରେ ନ ଥିବେ ।"

'ଆଜି କି ବାର ?'

'ରବିବାର ।'

'ଆର ରବିବାର ତ ବହୁତ ଡେରି ଅଛି । ଯଦି ବୁଧବାର ଯାଏ ଠାକପାରୁ ବଡ଼ କଥା ହେବ । କିନ୍ତୁ ତୋ ତୁଣ୍ଡରେ ଏଭଳି କଥା ଶୋଭି ପାଏନାହିଁ ।' ରବର୍ଟ ଜର୍ଡାନ୍ କହିଲେ ।

ସ୍ତ୍ରୀ ଲୋକଟି କହିଲା "ପ୍ରତ୍ୟେକେ କାହା ସଙ୍ଗେ ନା କାହା ସଙ୍ଗେ କଥା ହେବାକୁ ଚାହାନ୍ତି । ଆଗେ ଆମର ଧର୍ମ ବିଶ୍ୱାସ ଥିଲା ଏବଂ ଆଉ କେତେ ଚୁଲି ପାଉଁଶ ଥିଲା । ବର୍ତ୍ତମାନ ସେ ସବୁ ନାହିଁ । ବର୍ତ୍ତମାନ ପ୍ରତ୍ୟେକଙ୍କର ମନ ଖୋଲି କଥା କହିବା ପାଇଁ କେହି ଜଣେ ସାଥୀ ଲୋଡ଼ା । ନଚେତ୍ ଯେତେ ବୀର ହେଲେ ମଧ୍ୟ ଲୋକଟା ନିଃସଙ୍ଗ ହୋଇ ପଡ଼ିବ ।'

'ଆମେ ତ ନିଃସଙ୍ଗ ନୋହୁଁ, ଆମ୍ଭେମାନେ ଅନେକ ଏକାଠି ଅଛୁଁ ।"

ସ୍ତ୍ରୀ ଲୋକ କହିଲା "ଏହି ସବୁ ଉଡ଼ାଜାହାଜ ମୁଣ୍ଡ ବିଗାଡ଼ି ଦେଉଅଛି । ଯନ୍ତ୍ର ଆଗରେ ଆମ୍ଭେମାନେ ଅତି ନଗଣ୍ୟ ।"

'ତଥାପି ଆମ୍ଭେମାନେ ତାଙ୍କୁ ପରାସ୍ତ କରିପାରୁଁ ।'

ସ୍ତ୍ରୀଲୋକ କହିଲା 'ଦେଖ, ମୁଁ ମୋ ହତାଶର କଥା ତୁମକୁ କହି ପକାଇଲି । ତା ବୋଲି ଭାବିବ ନାହିଁ ଯେ ମୋର ପ୍ରତିଜ୍ଞା ଶିଥିଳ ହୋଇଅଛି । ମୋ ଦୃଢ଼ତା ଠିକ୍ ପୂର୍ବପରି ଅଛି ।'

'ତୋର ଏହି ବମ୍ୱାଦଭିନ ସୂର୍ଯ୍ୟାଲୋକରେ ବୁନ୍ଦୁଭ ପଡ଼ ଝଡ଼ ଟାଣହେଲେ ଛାଡ଼ିଯିବ ।'

ସ୍ତ୍ରୀ ଲୋକଟି କହିଲ "ଯଦି ଏହାହିଁ ତୁମେ ଲୋଡ଼ୁଥାଅ ତେବେ ନିଶ୍ଚୟ ଯିବ । ଭାଲେନ୍‌ସିଆ ସମ୍ବନ୍ଧରେ ମୂର୍ଖଭଳି ବକ୍ ବକ୍ କରିବା ଯୋଗୁଁ ଏପରି ବଷାଦଭାବ ଜନ୍ମି ଅଛି । ଆଉ ସେହି ଯେଉଁ ଅପଦାର୍ଥଟା ଘୋଡ଼ା ଦେଖିବାକୁ ଯାଇଛି ତା ଯୋଗୁଁ ମଧ୍ୟ ହୋଇଥିବ । ମୁଁ ତାକୁ କଥାରେ ବହୁତ ଆଘାତ କରିଅଛି । ତୁମେ ତାକୁ ଗାଳିଫଜିତ କର, ପ୍ରାଣରୁ ମାରିଦିଅ କିନ୍ତୁ ଜଖମ କରନାହିଁ ।"

'ତୁ କେମିତି ତା ସାଙ୍ଗରେ ଜୁଟିଲୁ ?'

'ଯେମିତି ଲୋକେ ଜୁଟି ଥାଆନ୍ତି । ଆନ୍ଦୋଳନ ଆରମ୍ଭ ବେଳେ ଏବଂ ତତ୍ପୂର୍ବରୁ ମଧ୍ୟ ସେ ଟାଣୁଆ ଥିଲା । କଥାଟାର ଗୁରୁତ୍ୱ ବୁଝୁଥିଲା, କିନ୍ତୁ ବର୍ତ୍ତମାନ ସେ ସମ୍ପୂର୍ଣ୍ଣ ଅପଦାର୍ଥ । ମଦ ଓ ଆଳସ୍ୟ ତାହାର ସର୍ବନାଶ କରିଅଛି ।'

'ମୁଁ ତାକୁ ପସନ୍ଦ କରୁନାହିଁ ।'

'ତୁମକୁ ପସନ୍ଦ ନ କରିବାର କାରଣ ମଧ୍ୟ ତାହାର ଅଛି । ଗତ ରାତିରେ ମୁଁ ତା ସହିତ ଶୋଇଥିଲି । ମୁଁ ତାକୁ କହିଲି ପାବ୍‌ଲୋ, ତୁ କାହିଁକି ବିଦେଶୀକୁ ମାରି ପକାଇଲୁ ନାହିଁ ?'

ସେ କହିଲା 'ପିଲାର୍, ସେ ଭଲ ଲୋକଟାଏ ।'

'ସେଇଥିପାଇଁ ମୁଁ କହୁଥିଲି, ଏଠାରେ ହୁକୁମ କଲାବାଲା ମୁଁ ।'

ସେ ଜବାବ ଦେଲା "ହଁ ପିଲାର୍ ।" ଏହାପରେ ମୁଁ ଶୁଣି ପାରିଲି ସେ ଜାଗଉଠି କାନ୍ଦୁଅଛି । ସେ ଅତି ଡହଳ ବିକଳ ହୋଇ କାନ୍ଦୁଥିଲା ସତେ ଯେପରି କିଏ ତାହାର ଦଶଶିର ଦୁହିଁ ପକାଉଅଛି ।" ମୁଁ ତାକୁ ଧରି ପଚାରିଲି "ପାବ୍‌ଲୋ ତୋର କଅଣ ଘଟିଛି ।" ସେ କିଛି ଘଟିନାହିଁ ବୋଲି କହିବାରୁ ମୁଁ ଜିଦ୍ କଲି । ସେ କହିଲା ଯେ ଭଦ୍ରଲୋକମାନେ ତା ସହିତ ଯେପରି ବ୍ୟବହାର କରି ତାକୁ ଛାଡ଼ିଦେଲେ ସେହିଟା ହିଁ ତାହାର ବଡ ଦୁଃଖର କାରଣ । ମୁଁ କହିଲି "ତୋତେ ଛାଡ଼ିଲେ ମଧ୍ୟ ମୋ ସହିତ ଅଛନ୍ତି । ମୁଁ ତୋର ସ୍ତ୍ରୀ ଏଣୁ ଦୁଃଖ କଅଣ ।"

ସେ କହିଲା "ସେ କଥା ସତ ପିଲାର୍, କିନ୍ତୁ ରେଲଗାଡ଼ି ଧ୍ୱଂସ କଥା ମନେ କଲୁ ।" ଏହାପରେ ସେ ମୋ ପାଇଁ ଈଶ୍ୱରଙ୍କ କରୁଣା କାମନା କରିଥିଲା ।"

ମୁଁ କହିଲି "ଈଶ୍ୱରଙ୍କ କଥା ଉଠାଉଛ କାହିଁକି ? ଆମର କଥାରେ ସେ ପ୍ରସଙ୍ଗର ସ୍ଥାନ ନାହିଁ ।" ସେ କହିଲା 'ହଁ ଈଶ୍ୱର ଓ ମେରୀ ମାତାଙ୍କ ବିଶ୍ୱାସ ଏକମାତ୍ର ଭରସା ।' ମୁଁ କହିଲି 'ଆମ ପନ୍ଥାରେ ସେ ଦୁଇଟି ନଦାରଦ । ସେ କହିଲା ପିଲାରେ, ମୋତେ ମରିବାକୁ ମହାଭୟ, ବୁଝି ପାରୁଛ ? ମୁଁ ସେତେବେଳେ କହିଲି ଯା, ଏଠାରୁ ଚାଲିଯା । ତୋର ମୋହର ଏବଂ ତୋ ଭୟର ଗୋଟାଏ ବିଛଣାରେ ସ୍ଥାନ ନାହିଁ । ଏହାପରେ ସେ ଲଜ୍ଜିତ ଓ ଶାନ୍ତ ହେଲା । ମୁଁ ଶୋଇ ପଡ଼ିଲି କିନ୍ତୁ ଦେଖୁଛି ସେ ଆଜି ମଣିଷ ହୋଇ ରହିନାହିଁ ।'

ରବର୍ଟ ଜର୍ଡାନ୍ କିଛି ଜବାବ ଦେଲେ ନାହିଁ ।

ସ୍ତ୍ରୀ ଲୋକଟି ପୁଣି କହିଲା "ମୋ ଜୀବନରେ ବିଷାଦ ଭାବ ମଝିରେ ମଝିରେ ଉପୁଜିଥାଏ କିନ୍ତୁ ସେ ଭାବଟା ପାବ୍ଲୋର ବିଷାଦଭାବ ଠାରୁ ଭିନ୍ନ । ମୁଁ ଯେତେ ବିମର୍ଷ ହେଲେ ମଧ୍ୟ ନିଜର ପ୍ରତିଜ୍ଞାରେ ଅଟଳ ରହିଥାଏଁ ।"

'ମୁଁ ସେ କଥା ବିଶ୍ୱାସ କରୁଅଛି ।'

ସ୍ତ୍ରୀଲୋକ ପୁଣି କହିଲା "ମୋ ବିଷାଦ ଭାବଟା ସ୍ତ୍ରୀ ଲୋକର ମାସିକ ଧର୍ମ ପରି । ହୁଏତ ତାହା ଅତି ତୁଚ୍ଛ । ସାଧାରଣତନ୍ତ୍ର ସମ୍ବନ୍ଧରେ ମୋର ବହୁତ ଆଶା ଭରସା । ମୁଁ ତହିଁରେ ଦୃଢ଼ ବିଶ୍ୱାସୀ । ମୋ ବିଶ୍ୱାସ ଏକପ୍ରକାର ଧର୍ମାନ୍ଧତା କହିଲେ ଚଳେ ।"

'ମୁଁ ତୋ କଥା ବିଶ୍ୱାସ କରୁଅଛି ।'

'ତେବେ ତୁମର କଅଣ ସାଧାରଣତନ୍ତ୍ରରେ ଏପରି ନିଷ୍ଠା ।'

"ହଁ ।"

ସ୍ତ୍ରୀଲୋକଟି କହିଲା "ଏହା ଶୁଣି ସୁଖି ହେଲି । ତୁମର ଭୟ ନାହିଁ ?"

"ମରିବାକୁ ମୁଁ ଡରେ ନାହିଁ । ମୋର ଡର କର୍ତ୍ତବ୍ୟବିମୁଖତା ପ୍ରତି ।"

"ଧରା ପଡ଼ିବା ଭୟ ଅନ୍ୟମାନଙ୍କ ପରି ।"

'ନା ସେ ଭୟ ନାହିଁ । ସେ ଭୟ ଥିଲେ ଲୋକ ପାହୁଲକର କାମ କରି ପାରିବ ନାହିଁ ।'

"ଦେଖୁଛି ତମେ ଜଣେ ନିର୍ବିକାର ପୁରୁଷ ।"

"ମୋଟେ ନୁହେ ।"

"ନୁହେ ? କିନ୍ତୁ ତୁମର ମୁଣ୍ଡ ଯେ ଅବିଚଳିତ ।"

"କାରଣ, ମୁଁ ମୋ କାମରେ ପ୍ରାୟ ବ୍ୟସ୍ତ ରହେ ।"

"କିନ୍ତୁ ଜୀବନର ସରସତା ତୁମେ ଭଲପାଅ ନାହିଁକି ?"

"ବହୁତ ବେଶୀ ଭଲପାଏ କିନ୍ତୁ ତାହା ମୋ କାମରେ ବିଘ୍ନ ଘଟାଇ ପାରେ ନାହିଁ ।"

"ତୁମେ ବହୁତ ମଦ ପିଇବା ମୁଁ ଦେଖିଛି ।"

"ହଁ ପିଏ, ମାତ୍ର ତଦ୍ୱାରା ମୋ କାମରେ ବାଧା ଘଟିବାକୁ ଦିଏ ନାହିଁ ।"

"ସ୍ତ୍ରୀଲୋକ ?"

"ମୁଁ ତାଙ୍କୁ ଖୁବ୍ ଭଲପାଏ କିନ୍ତୁ ମୋ ଦୃଷ୍ଟିରେ ତାଙ୍କର ଗୁରୁତ୍ୱ ସେପରି ନୁହେ ।"

"ତୁମେ ତାଙ୍କୁ ଖାତିର କର ନାହିଁ ?"

'କରେ, କିନ୍ତୁ ମୋତେ ତ ଅକ୍ତିଆର କରି ରଖିବା ଭଳି ସ୍ତ୍ରୀଲୋକ ମୁଁ ଦେଖି ନାହିଁ ।'

'ମୁଁ ଭାବୁଛି ତୁମେ ମିଛ କହୁଅଛ ।'

'ହୁଏତ ଟିକିଏ ମାତ୍ର ।'

'ତୁମେ ତ ମେଣ୍ଢା ପ୍ରତି ଆସକ୍ତ ।'

"ହଁ ହଠାତ୍ ଏବଂ ବଡ଼ ବେଶୀ ।"

"ମୁଁ ମଧ୍ୟ ସେ ବାଳିକାଟାକୁ ବହୁତ ପସନ୍ଦ କରେ ।"

ରବର୍ଟ ଜର୍ଡାନ୍ କହି ଉଠିଲେ, "ହଁ, ମୁଁ ମଧ୍ୟ ତାକୁ ଖୁବ ଭଲପାଏ ।" ଏ କଥାତକ ସେ ଅତ୍ୟନ୍ତ ମନ ଖୁସିରେ ପ୍ରକାଶ କଲେ । ତାଙ୍କର କଣ୍ଠ ରୁଦ୍ଧ ହୋଇ ଉଠିଲା ।

ସ୍ତ୍ରୀଲୋକଟି କହିଲା "ଏଲ୍ ସୋର୍ଡୋ ସଙ୍ଗେ ସାକ୍ଷାତ ପରେ ମୁଁ ବାଳିକାକୁ ତୁମ ସହିତ ଏକୁଟିଆ ଛାଡ଼ିଦେବି ।"

ରବର୍ଟ ଜର୍ଡାନ୍ ଟିକିଏ ରହି କହିଲେ "ତାହା ଦରକାର ହେବ ନାହିଁ ।"

"ହଁ, ବାବୁ ଦରକାର । କାରଣ ସମୟ ନାହିଁ ।"

"ତା ହାତରୁ କଅଣ ଏଇଆ ଦେଖିଛ ?" ଜର୍ଡାନ ପଚାରିଲେ ।

"ନା—ହାତ ଦେଖିବାର ବାକେ କଥା ଉଠାଅ ନାହିଁ ।"

"ଏ ବୃଦ୍ଧ୍ୟାଷ୍ଟି ମେ ସଂସାରର ସାଧାରଣଭାବ୍ଧ ଷଡ଼କାରକ ଅନ୍ୟ ଜିନଷମାନ ପର ବର୍ଜନ କରଅଛୁ ।"

ରବର୍ଟ ଜର୍ଡ଼ାନ୍ କଛି ନ କହି ମେରିଆ ଗୁହା ଭିତରେ ଆଲାବାଟି ସଜାଇବା କାମ ଦେଖୁଥିଲେ । ମେରିଆ ନିଜ ହାତ ପୋଛି ତାଙ୍କ ଆଡ଼କୁ ଅନାଇ ହସିଲା । ପିଲାର୍ କଅଣ କହୁଥିଲା ମେ ଶୁଣି ପାରି ନଥିଲା । କିନ୍ତୁ ରବର୍ଟ ଜର୍ଡ଼ାନ୍‌ଙ୍କୁ ଗୃହିଁ ହସିଲାବେଳେ ତାହାର ଗଣ୍ଡଦେଶ ଆରକ୍ତିମ ହୋଇ ଉଠିଲା ।

ସ୍ତ୍ରୀଲୋକଟି କହିଲା "ସୁଖ ଯେମିତି ଅଛି, ଦୁଃଖ ମଧ୍ୟ ସେମିତି ଅଛି । ଦିନ ପରେ ରାତି ସ୍ୱାଭାବିକ । ମୋ ଅମଳରେ ଭାଲେନ୍‌ସିଆରେ ଯେଉଁ ସବୁ ବଳାସିତା ଥିଲା ଆଜି ତାହା ନାହିଁ । ତେବେ କିଁୟା ଭିଁୟା ବଣକୋଳି ଗୋଟାଏ ଅଧେ ମିଳିପାରେ ।"

ସ୍ତ୍ରୀଲୋକଟିର ପ୍ରଶସ୍ତ କାନ୍ଧରେ ନିଜର ବାହୁ ରଖି ରବର୍ଟ ଜର୍ଡ଼ାନ୍ କହିଲେ "ତୋ ପାଇଁ ମୋର ବହୁତ ବେଶୀ ଚିନ୍ତା ।"

ସ୍ତ୍ରୀଲୋକଟି କହିଲା 'ତୁମେତ ଦସ୍ତୁର ମତେ ଜଣେ ଡନ୍ ଜୁଆନ୍ ଟେନୋରିଅଙ୍କ ପରି ରସିକ । ସମସ୍ତଙ୍କୁ ପ୍ରେମ କରିବା ଆରମ୍ଭ ହୋଇଗଲା ଦେଖୁଛି । ହେଇ ଦେଖ ଅଗଷ୍ଟିନ୍ ଆସୁଛି ' ଏହି କଥା କହିଲାବେଳେ ସ୍ତ୍ରୀଲୋକଟି ପ୍ରଚ୍ଛନ୍ନ ସ୍ନେହରେ ବିବ୍ରତ ହୋଇପଡ଼ିଲା ।

ରବର୍ଟ ଜର୍ଡ଼ାନ୍ ଗୁହା ଭିତରେ ମେରିଆ ଠିଆ ହୋଇଥିବା ଜାଗାକୁ ଗଲେ । ତାଙ୍କ ଆସିବା ମେରିଆ ଦେଖିଲା । ତାହାର ଆଖି ଉଜ୍ଜ୍ୱଳ ଏବଂ ଗ୍ରୀବା ଓ ଗଣ୍ଡ ଆରକ୍ତିମ ହୋଇ ଉଠିଲା । ସେ ତାଙ୍କୁ 'ହୋଇଲ ଟିକ' ସମ୍ବୋଧନ କରି ମୁହଁରେ ଚୁମା ଖାଇଲେ । ମେରିଆ ମଧ୍ୟ ତାଙ୍କୁ ପ୍ରଗାଢ଼ ଆଲିଙ୍ଗନ କରି ହର୍ଷଧ୍ୱନି କଲା ।

ଫର୍ଣ୍ଣାଣ୍ଡୋ ଏତେବେଳଯାଏ ଟେବୁଲ ପାଖରେ ବସି ସିଗ୍ରେଟ ଟାଣୁଥିଲା । ସେ ଠିଆ ହୋଇ ମୁଣ୍ଡ ଟୁଙ୍ଗାରି ନିଜର ବନ୍ଧୁକ ଉଠାଇ ବାହାରିଗଲା । ଗଲାବେଳେ ପିଲାର୍‌କୁ କହିଲା 'ଦେଖ ମୁଁ ନିଜ ଲୋକଭଳି କହୁଛି । ଏକଥା ମୁଁ ପସନ୍ଦ କରୁନାହିଁ । ତୁମେ ବାଳିକାର ଯତ୍ନ ନେବା ଉଚିତ ।'

ପିଲାର୍ କହିଲା "ହଁ ମୁଁ ନେଉଛି । ଏହି ସାଥୀ ତାହାର ନୂତନ ପ୍ରେମିକ ।"

ଫର୍ଣ୍ଣାଣ୍ଡୋ କହିଲା "ଯଦି ଏହାହିଁ ହୋଇଥାଏ ଏବଂ ସେମାନେ ବିବାହ କରିଛନ୍ତି ତେବେ ତାଙ୍କର ମିଳାମିଶାରେ କିଛି ଦୋଷ ନାହିଁ।"

ସ୍ତ୍ରୀଲୋକ କହିଲା 'ଶୁଣି ଖୁସି ହେଲି ।'

'ମୁଁ ମଧ୍ୟ ସମାନ ଖୁସି । ନମସ୍କାର ପିଲାର୍ ।'

'କୁଆଡ଼େ ଯାଉଛୁ ?'

'ପ୍ରିମିଟିଭୋକୁ ଛୁଟି ଦେବା ପାଇଁ ଉପର ଘାଟିକୁ ଯାଉଛୁ ।'

ସେ ବାହାରକୁ ଆସନ୍ତେ ତାହାର ଗନ୍ତବ୍ୟ ସମ୍ବନ୍ଧରେ ଅଗଷ୍ଟିନ୍ ମଧ୍ୟ ପ୍ରଶ୍ନ କଲା ।

ଫର୍ଣ୍ଣାଣ୍ଡୋ ଗମ୍ଭୀର ଭାବରେ କର୍ତ୍ତବ୍ୟ କରିବାକୁ ଯାଉଅଛୁ ବୋଲି କହିଲା ।

"ଯେତେ ତୋ କାମ ମୁହଁରେ ନାହିଁ ।" ଏହାପରେ ସ୍ତ୍ରୀଲୋକକୁ ଚାହିଁ ନେଇ କରି ଅଗଷ୍ଟିନ୍ ପଚାରିଲା 'ମୁଁ ଯେଉଁ ଚୁଲି ପାଉଁଶ ଜଗିବା କଥା ତାହା କାହିଁ ?'

'ପିଲାର୍ କହିଲା 'ଗୁହା ଭିତରେ ଦୁଇଟା ବସ୍ତାରେ ଅଛି । ତୋ ଅଶ୍ଳୀଳ କଥା ଶୁଣି ଶୁଣି ମୁଁ ବେଡଥା ହୋଇଗଲିଣି ।'

ଅଗଷ୍ଟିନ୍ ଜବାବ ଦେଲା 'ତୁ ବେଡଥା ହେଲେ ମୋ କ୍ରୋଧ ଭାସିଗଲା ।'

ପିଲାର୍ ରାଗି କହିଲା 'ହଉ ତେବେ ତୁ ତୋ ଗାତକୁ ଯା ।'

ଅଗଷ୍ଟିନ୍ କହିଲା—ଆଲୋ, ତୋ ମାଆ ମରୁ ।'

ଅପମାନଟା ସ୍ପେନଦେଶୀୟ ଭାଷାରେ ରୂପାନ୍ତରକୁ ଆସିଲେ ଶବ୍ଦ ବା କ୍ରିୟା କେବଳ ଇଙ୍ଗିତରେ ପ୍ରକାଶ ପାଇଥାଏ । ପିଲାର୍ ସେହି ଇଙ୍ଗିତ କଲା, ଅର୍ଥାତ୍ ତୋ ମା ନଥିଲା ।

ଅଗଷ୍ଟିନ୍ ବର୍ତ୍ତମାନ ବିଶ୍ୱାସରେ ପଚାରିଲା 'ସେମାନେ କଅଣ କରୁଛନ୍ତି ?'

ପିଲାର୍ କହିଲା "ସେମିତ କିଛି ନୁହେ । ଆମେତ ଯେତେ ହେଲେ ବସନ୍ତ କାଳର ପ୍ରାଣୀ ।

ଅଗଷ୍ଟିନ୍‌କୁ 'ପ୍ରାଣୀ' ଶବ୍ଦଟା ବଡ଼ ମନକୁ ପାଇଲା । ସେ କହି ଉଠିଲା 'ହଁ ପ୍ରାଣୀ, ପ୍ରାଣୀ ଅଉ ତୁ ହେଲୁ ବେଶ୍ୟାର ଝିଅ । ମୋତେ ବସନ୍ତକାଳର ରତି ମଦନ କଥା ଶୁଣାଉ ।'

ପିଲର୍ ତା କାନ୍ଧ ଆପୁଡ଼ି ଦେଇ ଠୋ ଠୋ କରି ହସି କହିଲା "ତୋ ଗାଳଗୁଡ଼ାକ ଏକା ରକମର । କିଛି ନୂଆ କଥା ନାହିଁ । ତେବେ ସେଥିରେ ଟାଣ ପଣ ରହିଛି । ତୁ ଉଡ଼ାଜାହାଜ ଦେଖିଥିଲୁ ତ ?"

ଅଗଷ୍ଟିନ୍ ଓଠ କାମୁଡ଼ି ମୁଣ୍ଡ ହଲାଇ କହିଲା "ଜଡ଼ାଜାହାଜ ଇଞ୍ଜିନ ଗୁଡ଼ା ଫାଟିଯାଉ ।"

ପିଲାର୍ କହିଲା 'ଇଏ ଗୋଟାଏ କଥା ପରି କଥା ହେଲା । କିନ୍ତୁ କାମଟା ବଡ଼ କଠିନ ।'

ଅଗଷ୍ଟିନ୍ କହିଲା "ଏତେ ଉଚ୍ଚରୁ ସୁଦ୍ଧା ଯମପୁରର କୋଲାହଳ । ତଥାପି ବନ୍ଦ୍ରୁପ୍ର କରିବା ମନ୍ଦ ନୁହେ ।"

ସ୍ତ୍ରୀଲୋକଟି କହିଲା "ହଁ, ବନ୍ଦ୍ରୁପ୍ର କରିବା ବରଂ ଭଲ । ତୁ ଭଲ ଲୋକଟାଏ ଏବଂ ତୋ ଅଣ୍ଟା ସୁଦ୍ଧା ଟାଣୁଆ ।"

ଅଗଷ୍ଟିନ୍ କହିଲା "ପିଲର୍, କଅଣ ଗୋଟାଏ ପ୍ରସ୍ତୁତ ହେଉଅଛି । ଏହା କଅଣ ସତ୍ୟ ? ତୋତେ କେମିତି ଲାଗୁଛି ?"

ଅଧିକ ଖରାପ ଆଉ କଅଣ ହୋଇପାରେ ? ବହୁତଗୁଡ଼ାଏ ଉଡ଼ାଜାହାଜ ଗଲା ଆଉ ଅନ୍ୟ ସମସ୍ତଙ୍କ ପରି ଉପରେ ଗ୍ରନଆ ହେ ଇ ଯାଇଅଛୁ ?'

'ଧେତ୍ । କଅଣ ଯୋଗାଡ଼ ଚାଲିଅଛି କହ ।'

ପିଲାର୍ କହିଲା "ଏ ଯେଉଁ ଛୋଟାଟା ପୋଲ ଧ୍ୱଂସ ପାଇଁ ଆସିଛି ସେଥିରୁ ମନେହୁଏ ସାଧାରଣତନ୍ତ୍ର ପକ୍ଷରୁ ଆକ୍ରମଣ ଆରମ୍ଭ କରିବାର ଯୋଗାଡ଼ ଚାଲିଅଛି । ଏସବୁ ଉଡ଼ାଜାହାଜ ଦେଖି ମନେ ହୁଏ ଫ୍ୟାସିଷ୍ଟମାନେ ପ୍ରତିଆକ୍ରମଣ ପାଇଁ ପ୍ରସ୍ତୁତ ହେଉଅଛନ୍ତି । କିନ୍ତୁ ଉଡ଼ାଜାହାଜର ବଡ଼ିମା କାହିଁକି ?"

ଅଗଷ୍ଟିନ୍ କହିଲା 'ଏ ଯୁଦ୍ଧରେ ବହୁତ କିଛି ନିର୍ବୋଧ କାମ ଘଟୁଅଛି, ଏ ଯୁଦ୍ଧରେ ଅନ୍ତହୀନ ମୂର୍ଖତା ତାଣ୍ଡବ ନୃତ୍ୟ କରୁଅଛି ।'

ପିଲର୍ ଜବାବ ଦେଲା "ନିସନ୍ଦେହ, ନଚେତ୍ ଆମେ ଏଠାରେ ନଥାନ୍ତୁ ।"

ଅଗଷ୍ଟିନ୍ କହିଲା 'ହଁ । ଆମେ ବର୍ଷେକାଳ ହେଲା ଏହି ମୂର୍ଖତାରେ ପିଙ୍ଗିବୁଡ଼ା ଖାଉଅଛୁ । କିନ୍ତୁ ପାବ୍‌ଲୋ ବହୁତ ଜାଣିଲା ଲୋକ । ସେ ବଡ଼ ଚାଲାଖ୍ ।'

"ଏକଥା କାହିଁକି କହୁଅଛୁ ?"

"ଏମିତି କହିଲି ।"

'ଏବେ ଏତିକି ଜାଣିରଖ ଯେ ବର୍ତ୍ତମାନ ମୂର୍ଖମିରେ ରକ୍ଷା ପାଇବା ବେଳ ଗଲଣି । ବୁଝିବା ଶକ୍ତି ମଧ୍ୟ ପବ୍ଲୋର ଲୋପ ହୋଇଅଛି ।'

ଅଗଷ୍ଟିନ୍ କହିଲି "ମୁଁ ବୁଝୁଁଛି । ଆମକୁ ଯିବାକୁ ହେବ । ବଞ୍ଚିବା ପାଇଁକି ଆମକୁ ଜିଣିବାକୁ ପଡ଼ିବ ଏବଂ ଜିଣିବା ପାଇଁ ପୋଲ୍‌ଟା ଧ୍ୱଂସ କରିବାକୁ ହେବ । କିନ୍ତୁ ପବ୍ଲୋ ବର୍ତ୍ତମାନ ଯେତେ ଭୀରୁ ହେଲେ ମଧ୍ୟ ଖୁବ୍ ମୂର୍ଖ ଦେଖାଯାଉଛି ।"

ପିଲର୍ କହିଲି "ମୁଁ ଊଣା ମୂର୍ଖ ନୁହେ ।"

ଅଗଷ୍ଟିନ୍ କହିଲି "ନା ତୁମେ ମୂର୍ଖ ନୁହେ, ତୁମେ ସାହସୀ, ତୁମେ ବିଶ୍ୱସ୍ତ, ତୁମେ ଦୃଢ଼, ତୁମର ଅନ୍ତର୍ଦୃଷ୍ଟି ଅଛି, ବିଚାରବୁଦ୍ଧି ଏବଂ ହୃଦୟବତ୍ତା ମଧ୍ୟ ଅଛି କିନ୍ତୁ ତୁମେ ମୂର୍ଖ ନୁହ ।"

ଚନ୍ତାନ୍ୱିତ ଭାବରେ ପିଲର ପଚାରିଲି "ତୁ ଏହା ବିଶ୍ୱାସକରୁ ଅଗଷ୍ଟିନ୍ ?"

"ହଁ ପିଲର୍ ।"

ପିଲର୍ କହିଲି "ଟୋକାଟା ଭାରି ମୂର୍ଖ, ଧୀର ସ୍ଥିର । ତା ମୁଣ୍ଡ ଖୁବ୍ ଥଣ୍ଡା ।"

ଅଗଷ୍ଟିନ୍ କହିଲି "ହଁ, ସେ ନିଜ କାମ ଭଲକରି ଜାଣିଥିବ ନଚେତ ତାଙ୍କୁ ଏହି କାମରେ ସେମାନେ ପଠାଇ ନଥାନ୍ତେ । ସେ ମୂର୍ଖ ବୋଲି ମୁଁ କହିପାରିବି ନାହିଁ କିନ୍ତୁ ପାବ୍ଲୋ ଯେ ମୂର୍ଖ ଏହା ମୁଁ ଜାଣେ ।"

"ମୂର୍ଖ ହୋଇ ଫଳ କଅଣ, ତାହାର ଭୟ ଏବଂ ଯୁଦ୍ଧ କରିବାରେ ଅନିଚ୍ଛା ତାକୁ ଅପଦାର୍ଥ କରି ପକାଇଛି ।"

"ତଥାପି ସେ ମୂର୍ଖ ।"

"ତୁ କଅଣ କହିବାକୁ ଚାହୁଁ ?"

"କିଛି ଚାହେଁନା । ମୁଁ ଠିକ୍‌ଏ ବୁଦ୍ଧିର ସହିତ ବିଚାର କରୁଅଛି । ବର୍ତ୍ତମାନ ବୁଦ୍ଧିମାନ ଭାବରେ ଆମକୁ କାମ କରିବାକୁ ପଡ଼ିବ । ପୋଲ୍‌ଟା ଧ୍ୱଂସ କରି ସଙ୍ଗେ ସଙ୍ଗେ ଆମକୁ ଏହି ସ୍ଥାନ ଛାଡ଼ିବାକୁ ହେବ । ସେଥିପାଇଁ ସବୁ ପ୍ରସ୍ତୁତ ରହିବା

ଆବଶ୍ୟକ । ଏହା ପରେ କେଉଁଠାକୁ ଯିବା ଏବଂ କିପରି ଯିବା ତାହା ଜାଣି ରଖିବା ଉଚିତ ।"

"ତାହା ତ ସ୍ୱାଭାବିକ ।"

"ଏ କାମରେ ପାବ୍‌ଲୋ ସକ୍ଷମ । ଅତି ଦକ୍ଷତାର ସହିତ ଏହା କରିବାକୁ ହେବ ।"

"ମୋର ଯେ ପାବ୍‌ଲୋ ଉପରେ ବିଶ୍ୱାସ ନାହିଁ ।"

"କିନ୍ତୁ ଏତକ ପାଇଁ କରିବାକୁ ହେବ ।"

"ନା, ସେ କେତେ ଅଧୋପାତକୁ ଯାଇଅଛି ତୁ ଜାଣୁନାହିଁ ।"

"ଯେ ଯାହାହେଉ, ଏ କାମଟା ଗୃହାଗି ସହିତ ନ କଲେ ଆମେ ସମସ୍ତେ ଧ୍ୱଂସ ପାଇଯିବୁ ।"

ପିଲାର୍ ଜବାବ ଦେଲା "ଆଜି ଦିନସାରା ପଡ଼ିଛି; ମୁଁ ଏକଥା ଚିନ୍ତାକରି ଦେଖିବି ।"

ଅଗଷ୍ଟିନ୍ କହିଲା "ପୋଲ କାମଟା ସେ ଟୋକାର । ସେ କାମ ତାକୁ ଭଲ ଜଣା । ଟ୍ରେନ୍ ଧ୍ୱଂସ ଯେପରି ସୂକ୍ଷ୍ମଭାବରେ କରାଯାଇଥିଲା ତାହା ତୁ ମନେ ପକାଇଲେ ବୁଝିବୁ ।"

ପିଲାର୍ କହିଲା 'ହଁ, ସେ ପ୍ରକୃତରେ ଟ୍ରେନ୍ ଧ୍ୱଂସର ଯୋଜନା ଗଢ଼ି ନେଇଥିଲେ ।'

ଅଗଷ୍ଟିନ୍ କହିଲା 'ତୁ ଶକ୍ତି ଓ ନିଷ୍ଠା ସପକ୍ଷରେ; ପାବ୍‌ଲୋ ଏଠାରୁ ଗୃହାଯିବା ସପକ୍ଷରେ । ବର୍ତ୍ତମାନ ତାକୁ ଏ ସବୁ ବିଷୟ ପର୍ଯ୍ୟାଲୋଚନା କରିବାକୁ ବାଧ୍ୟ କର ।'

'ତୁ ତ ବେଶ୍ ବୁଦ୍ଧିମାନ ଅଗଷ୍ଟିନ୍ ।'

'ହଁ ମୁଁ ବୁଦ୍ଧିମାନ କିନ୍ତୁ ପାବ୍‌ଲୋ ମୋଠାରୁ ଗୃହାକ ।'

'କିନ୍ତୁ ସେ ଯେ ଡରରେ ଅସ୍ଥିର । ଏହା ସତ୍ତ୍ୱେ ତାକୁ—'

'ହଁ ଏହା ସତ୍ତ୍ୱେ ତାକୁ ତାକୁ କାମରେ ଲଗାଇବାକୁ ହେବ ।'

'ପୋଲ ସମ୍ବନ୍ଧରେ ତୋ ଧାରଣା କଅଣ ?'

ଏହା ଯେ ଆବଶ୍ୟକ ମୁଁ ଜାଣେ । ଆମକୁ ଦୁଇଟା କାମ କରିବାକୁ ହେବ । ଗୋଟାଏ ହେଉଛି ଏଠାରୁ ପଳାଇବା ଏବଂ ଅନ୍ୟଟା ହେଉଛି ଯୁଦ୍ଧରେ ଜିଣିବା । ଜିଣିବା ପାଇଁ ପୋଲ ଧ୍ୱଂସ କରିବା ଏକାନ୍ତ ଆବଶ୍ୟକ ।

'ପାବ୍‌ଲୋ ଯଦି ଭୀରୁ ତେବେ ଏତେ ନରୁଛନ୍ତି କାହିଁକି ?'

'ନିଜ ଦୁର୍ବଳତା ଯୋଗୁଁ ସେ ଚାହୁଁଅଛି ଯାହା ଯେମିତି ଚାଲିଛି ସେମିତି ଚାଲୁ । ସେ ଏହି ଘୂର୍ଣ୍ଣିବାତ୍ୟାରେ ନିଜ ଦୁର୍ବଳତା ଯୋଗୁଁ ପଡ଼ି ରହିବାକୁ ଚାହେଁ । ଏଣେ କିନ୍ତୁ ନଦୀ ବଢ଼ୁଛି । ପରିସ୍ଥିତି ବଦଳାଇବା ପାଇଁ ବାଧ ହେଲେ ସେ ନିଜର ଚାଲାକି ପଣ ଦେଖାଇବ ।'

'ତେବେ ଝୋକାଟା ପାବ୍‌ଲୋକୁ ନମାରି ଭଲ କରିଅଛି ।'

'ଜିପ୍‌ସିଟା ମୋତେ ପାବ୍‌ଲୋକୁ କାଲି ମାରି ପକାଇବାକୁ କହିଥିଲା । ସେଟା ଗୋଟାଏ ପଶୁ ।'

'ତୁ ମଧ୍ୟ ଗୋଟାଏ ଜନ୍ତୁ, ହେଲେ ବୁଦ୍ଧିମାନ୍ ।'

'ଆମେ ଦୁହେଁ ବୁଦ୍ଧିମାନ କିନ୍ତୁ ପାବ୍‌ଲୋର ସ୍ୱାଭାବିକ ଦକ୍ଷତା ଅଛି ।'

'କିନ୍ତୁ ତା ସହିତ ରହିବା ବଡ଼ କଷ୍ଟକର ହେଲାଣି । ସେ କେତେ ନଷ୍ଟ ହେଲାଣି ତୁ ଜାଣିନାହୁଁ ।'

'ହଁ, ତଥାପି ତାହାର ଦକ୍ଷତା ଅଛି । ଦେଖ୍ ପିଲାର୍, ଯୁଦ୍ଧ ଚଳାଇବା ପାଇଁ ତୁମର ବୁଦ୍ଧିମତ୍ତା ଏକାନ୍ତ ଲୋଡ଼ା କିନ୍ତୁ ଜୟଲାଭ ପାଇଁ ସରଞ୍ଜାମ ଓ ଦକ୍ଷତା ଆବଶ୍ୟକ ।'

ସ୍ତ୍ରୀଲୋକଟି କହିଲା 'ମୁଁ ଏସବୁ କଥା ଚିନ୍ତାକରି ଦେଖିବି । ଡେରି ହୋଇ ଗଲାଣି, ବର୍ତ୍ତମାନ ଯିବା କଥା ।' ଏହାପରେ ବଡ଼ ପାଟିରେ କହିଲା 'ଇଂରେଜ୍, ଆସ ଯିବା ।'

# ଦଶମ ପରିଚ୍ଛେଦ

ରବର୍ଟ ଜର୍ଡାନ୍ ଓ ମେରିଆକୁ ପିଲାର୍ କହିଲା, 'ଆସ ଏଇଠି ବସି ବିଶ୍ରାମ ନେବା ।'

'ସେଠାରେ ପହଞ୍ଚି ଲୋକଙ୍କ ସଙ୍ଗେ ଦେଖା କରିସାରିଲେ 'ବିଶ୍ରାମ ନେବା' ଜର୍ଡ଼ାନ୍ କହିଲେ ।

ସ୍ତ୍ରୀଲୋକଟି କହିଲା 'ଦେଖାତ ହେବ, ଏତେ ତରବର କାହିଁକି ? ବସ, ବିଶ୍ରାମ ନିଅ ।'

'ଚାଲ, ଚୂଡ଼ାରେ ପହଞ୍ଚିଲେ ବିଶ୍ରାମ କରିବା' ଜର୍ଡ଼ାନ୍ ଜବାବ ଦେଲେ ।

'ମୁଁ ବିଶ୍ରାମ କରିବ ବୋଲି କହି ସ୍ତ୍ରୀଲୋକ ଜଣକ ଝରଣା କୂଳରେ ବସି ପଡ଼ିଲା । ବାଳିକାଟି ତା ପାଖରେ ଘାସ ଉପରେ ବସିଗଲା । ତା ମୁଣ୍ଡରେ ଖରା ପଡ଼ୁଥାଏ । କେବଳ ମାତ୍ର ଜର୍ଡ଼ାନ୍ ଠିଆ ହୋଇ ଉଚ୍ଚ ପାହାଡ଼ ନାସିର ପଡ଼ିଆକୁ ଏବଂ ସେଠାରେ ବହି ଯାଉଥିବା ନିର୍ମଳ ଝରଣାଟିକୁ ଚାହିଁ ରହିଲେ । ପାଦତଳେ ତାଙ୍କର ଅସଂଖ୍ୟ କ୍ଷୁଦ୍ର ଗୁଳ୍ମ । ପଡ଼ିଆର ନିମ୍ନ ଅଂଶରେ ହଳଦିଆ ବଣ୍ୟ ଗଛ ଭେଦ କରି ବଡ଼ ବଡ଼ ଚେମା ପଥର ମୁଣ୍ଡ ଟେକିଥାଏ । ତଳଆଡ଼େ ଦେବଦାରୁ ଗଛର କୃଷ୍ଣ ସୀମାରେଖା ।

'ଏଠାରୁ ଏଲ୍ ସୋର୍ଡୋର ଆଡ୍‌ଡ଼ା କେତେଦୂର ହେବ' ସେ ପଚାରିଲେ ।

ସ୍ତ୍ରୀଲୋକ କହିଲା 'ବେଶୀ ଦୂର ନୁହେଁ, ଖୋଲା ଜାଗା ଆରପଟେ ଅନ୍ୟ ଉପତ୍ୟକାରେ, ନଦୀ ମୁଣ୍ଡରେ ଥିବା ବଣ ଭିତରେ । ବର୍ତ୍ତମାନ ବସିପଡ଼ ସେହି ବଡ଼ କଥା ଭୁଲିଯାଅ ।'

'ମୁଁ ତାକୁ ଦେଖାଇକରି କାମ ଶିଖିବାକୁ ଚାହେଁ ।'

'ମୁଁ ମୋ ଗୋଡ଼ ଧୋଇବାକୁ ଚାହେଁ' ଏହା କହି ସ୍ତ୍ରୀଲୋକ ଗୋଡ଼ରୁ ଜୋତା ଫିଟାଇ ମୋଟା ଉଲ୍ ମୋଜା କାଢ଼ି ଡାହାଣ ଗୋଡ଼ ପାଣିରେ ବୁଡ଼ାଇ ହଠାତ୍ କହି ଉଠିଲା 'ଆରେ ବାପରେ ଘରି କାଲୁଆ ପାଣି ।'

ରବର୍ଟ ଜର୍ଡାନ୍ କହିଲେ 'ଆମର ଘୋଡ଼ାରେ ଆସିବା ଉଚିତଥିଲା ।'

ସ୍ତ୍ରୀଲୋକ କହିଲା 'ନା, ଏମିତି ମୋତେ ଭଲ । ମୁଁ ଏତକ ପାଇପାରୁ ନଥିଲି । ଆଚ୍ଛା, ତୁମର କଅଣ ହେଲାକି ?'

'ମୁଁ ଖାଲି ତରବର ହେଉଛି ନଚେତ୍ ଆଉ କିଛି ନାହିଁ ।'

ତେବେ ଶାନ୍ତ ହୋଇ ରୁହ । ବହୁତ ସମୟ ଅଛି । ଆଜିକା ଦିନଟା ବଡ଼ ଚମତ୍କାର, ବଣରୁ ବାହାରି ଆସିବାରୁ ମୋ ମନଟା ବଡ଼ ଖୁସି । ବଣରେ ରହି ରହି ଲୋକର ମନ ଯେ କିଅଣ ହୋଇଯାଏ ତୁମେ କଳ୍ପନା କରିପାରିବ ନାହିଁ । ତୁମେ ବଣରେ ରହି ବିରକ୍ତ ହୋଇନାହିଁ ।'

ବାଳିକା କହିଲା 'ମୋତେ ବଣ ଭଲ ଲାଗେ ।'

'କଅଣଟା ସେଥିରେ ଭଲ ?'

'ଦେବଦାରୁ ଗଛର ଗନ୍ଧ, ମୂନିଆ ପତ୍ରଗୁଡ଼ିକର ଗୋଡ଼ରେ ଫୋଡ଼ିହେବା ସ୍ପର୍ଶ, ଗଛ ଅଗରେ ପବନର ସଞ୍ଚାର ଏବଂ ଡାଳର ମଟମଟ ଶବ୍ଦ ସବୁ ମୋତେ ଭଲ ଲାଗେ ।'

ପିଲାର୍ କହିଲା 'ତୋତେ ସବୁ ଭଲ ଲାଗେ । ଠିକ୍‌ଏ ଭଲ ରାନ୍ଧି ଜାଣିଲେ ଯେ କେହି ପୁରୁଷ ତୋତେ ଆଗ୍ରହରେ ଗ୍ରହଣ କରିବ । କିନ୍ତୁ ଦେବଦାରୁ ଗଛ ବଣ ଅସହ୍ୟ । ତୁ ତ କେବେ ବର୍, ଓକ୍ କିମ୍ବା ବାଦାମ ବଣ ଦେଖିନାହୁଁ । ଅନ୍ୟ ବଣରେ ବିଭିନ୍ନ ଗଛ ଥାଇ ତାହାର ବୈଚିତ୍ର୍ୟ ଓ ସୌନ୍ଦର୍ଯ୍ୟ ବୃଦ୍ଧି କରିଥାଏ କିନ୍ତୁ ଦେବାଦାରୁ ବଣ ଅତି ଅସହ୍ୟ । କଅଣ କହୁଛ ଇଂରେଜ ?'

'ମୋତେ କିନ୍ତୁ ଦେବଦାରୁ ଗଛ ଭଲ ଲାଗେ ।'

'ପିଲାର୍ କହିଲା 'ତୁମ ଦୁହିଙ୍କ ଏକମତ । ମୋତେ ମଧ୍ୟ ଦେବଦାରୁ ଭଲ ଲାଗେ କିନ୍ତୁ ମୁଁ ବହୁକାଳ ତା ଭିତରେ ରହିଲଣି । ଅଧିକନ୍ତୁ ପାହାଡ଼ଗୁଡ଼ା ଦେଖି

ଦେଖି ମୁଁ ଅତଷ୍ଟ ହୋଇ ଗଲଣି । ପାହାଡ଼ରେ କେବଳ ଦୁଇଟି ମାର୍ଗ, ଚଢ଼ିବା କମ୍ବା ଓହ୍ଲାଇବା । ଓହ୍ଲାଇଲେ ପଡ଼ିବ ରାସ୍ତା ଏବଂ ଫ୍ୟାସିଷ୍ଟମାନଙ୍କର ସହର ।'

'ତୁ କେବେ କେବେ ସେଗୋଭିଆକୁ ଯାଉ ?'

'ଏଇ ମୁହଁ ନେଇଯିବ ? ଏ ମୁହଁଟା ସମସ୍ତେ ଚହ୍ନନ୍ତି । ମେରିଆ, ତୁ କୁତ୍ସିତ ହେଲେ କପରି ବୋଧ କରିବୁ ?'

'ତୁ ତ କୁତ୍ସିତ ନୋହୁ ।'

'ନୁହେ ! ମୁଁ ଜନ୍ମରୁ କୁତ୍ସିତ । ସାରା ଜୀବନ ମୁଁ କୁତ୍ସିତ । ଇଂରେଜ ତୁମେ ତ ମାଇକିନାଅଙ୍କ ସମ୍ବନ୍ଧରେ କିଛି ଜାଣନାହିଁ । ତୁମେ କହିପାରିବ କୁତ୍ସିତ ସ୍ତ୍ରୀଲୋକର ମନ କଥା ? ସାରାଜୀବନ କୁତ୍ସିତ ବୋଲି ଚଳିଆସି ନିଜ ମନରେ ସୁନ୍ଦର ବୋଲି ଭାବିବା କପରି ଲାଗେ କହି ପାରିବ ?' ଅନ୍ୟ ଗୋଡ଼ଟି ପାଣିରେ ବୁଡ଼ାଇ ସେ ପୁଣି କହିଲା 'ବାପରେ ଭାରି କାଲୁଆ । ସେହି ଧୂସର ଖଞ୍ଜନ ପକ୍ଷୀକୁ ଚାହିଁ ।' ଝରଣାର ଉପରଆଡ଼େ ଖଣ୍ଡିଏ ପଥର ଉପରେ ପକ୍ଷୀଟା ବସୁଥାଏ ଓ ଉଡ଼ୁଥାଏ । କହିଲା 'ଏ ପକ୍ଷୀଗୁଡ଼ାକ କିଛି କାମର ନୁହେ । ତାଙ୍କର ଡାକଲି ନା ମାଂସ କିଛି ଭଲ ନୁହେ । ଖାଲି ତଳ ଉପର କରି ଲାଞ୍ଜ ହଲାନ୍ତି । ଇଂରେଜ, ମୋତେ ଖଣ୍ଡେ ସିଗ୍ରେଟ୍ ଦିଅ ।' ସିଗ୍ରେଟ୍ ନେଇ ସେ ପକେଟରୁ ଚକମକି କାଢ଼ି ନିଆଁ ଲଗାଇ ଟାଣିଲା ଏବଂ ମେରିଆ ଓ ରବର୍ଟ ଜର୍ଡ଼ାନ୍‌ଙ୍କୁ ଅନାଇଲା ।

ନାକବାଟେ ଧୂଆଁ ଛାଡ଼ି କହିଲା 'ଜୀବନ ବଡ଼ କୌତୂହଳ ପୂର୍ଣ୍ଣ । ମୁଁ ପୁରୁଷ ହୋଇଥିଲେ ଭଲ ପୁରୁଷଟାଏ ହୋଇଥାନ୍ତି ମାତ୍ର ମୁଁ ଜଣେ କୁତ୍ସିତ ମହିଳା । ତଥାପି ବହୁ ଲୋକ ମୋତେ ଭଲ ପାଇଥିଲେ ଏବଂ ମୁଁ ମଧ୍ୟ ତାଙ୍କୁ ପ୍ରେମ କରିଥିଲି । ଏହାହିଁ ମଜ୍ଜାର ବିଷୟ । ଶୁଣ ଇଂରେଜ, ମୁଁ କୁତ୍ସିତ ହେଲେ ମଧ୍ୟ ମୋତେ ଭଲ କରି ଚାହିଁ ଦେଖିଲ ?'

'ତୁ ତ କୁତ୍ସିତ ନୋହୁ ?'

'ମୋତେ ମିଛ କୁହନା । ହସି ହସି କହିଲା 'ମଦ ନିଶା କଅଣ ଲାଗିଲାଣି ? ନା ନା ମୁଁ ଥଟ୍ଟାରେ କହୁଥିଲି । ସେ କେତେ କୁତ୍ସୀ ଦେଖିଲ । କିନ୍ତୁ ପ୍ରେମ ମଣିଷକୁ ଅନ୍ଧ କରି ପକାଏ । ସେହି କାରଣରୁ ନିଜେ ଅନ୍ଧ ହୋଇ ତାଙ୍କୁ ଅନ୍ଧ କରିଦିଏ । ସେଇଠୁ ଦିନେ ହଠାତ୍ ନିଜର କୁତ୍ସିତ ରୂପ ଆଖିରେ ପଡ଼ିଯାଏ ଏବଂ ପ୍ରେମିକର ମଧ୍ୟ

ଅନ୍ଧପୁଟୁଳି ଖସିଯାଏ । ତା'ପରେ ପ୍ରେମିକର ରୂପର ମୋହ ଉଭେଇଯାଏ ଏବଂ ସେ କରଛଡ଼ା ଦଏ । ବୁଝିଲୁ ତ ?

ମେରଥା କହିଲା 'ତୁ ତ ପ୍ରକୃତରେ କୁତ୍ସିତ ନୋହୁ ?'

ପିଲାର୍ କହିଲା 'ହୃଦୟଦ୍ୱାରା ନକର ବୁଦ୍ଧିଦ୍ୱାରା ବିଚାର କର । ମୁଁ ତୋତେ ଦରକାରୀ କଥା କହୁଅଛି ଶୁଣିଥା । ତୁମେ ମଧ୍ୟ ଇଂରେଜ ଶୁଣିନିଅ ।'

'ହଁ, କିନ୍ତୁ ଆମ୍ଭେମାନେ ଯିବା ଯେ ?'

ପିଲାର ଶ୍ରେଣୀରେ ଶିକ୍ଷକ ଛାତ୍ରଙ୍କୁ ବୁଝାଇଲା ଭଳି କହିବାକୁ ଲାଗିଲା 'ମୁଁ ଏଠାରେ ଭଲ ବୋଧ କରୁଅଛି । କିଛିକାଳ ପରେ ତୁ ମୋପରି କୁତ୍ସିତ ହୋଇଗଲେ ହେଁ ଦନାକେତେ ନିଜର ସୌନ୍ଦର୍ଯ୍ୟ-ବୋଧ ବଜାୟ ରଖିବୁ, ବରଂ ତାହା ବେଶୀ ହେବାକୁ ଲାଗିବ । ଆଉ ଜଣେ କେହି ପୁରୁଷ ତୋତେ ଦେଖି ସୁନ୍ଦରୀ ବୋଲି ମନେ କରିବ । ଏମିତି ଯୌବନରେ ଦନାକେତେ ଚାଲିବ । ଜଣକ ମୋହ ଭାଙ୍ଗିଗଲେ ଆଉ ଜଣେ ମୁଗ୍ଧ ହେବ । ଶେଷକୁ ଦନେ ଏ ସବୁ ଅତୀତ ପର୍ଯ୍ୟାୟଭୁକ୍ତ ହେବ ଏବଂ ତୁ ମୋ ପରି ନିଜର ଉଲଗ୍ନ କୁତ୍ସିତତାରେ ପ୍ରକଟିତ ହେବୁ । ତେବେ ଭାଗ୍ୟର କଥା ଏତିକି ଯେ ତୁ ପ୍ରକୃତରେ କୁତ୍ସିତ ନୋହୁ ।'

ମେରଥା କହିଲ "ହଁ, ମୁଁ ଅସୁନ୍ଦର ।"

"ତାଙ୍କୁ ପଚାରି ଦେଖିଲୁ । ପାଣିରେ ଗୋଡ଼ ବୁଡ଼ାନାହିଁ, ଗୋଡ଼ ଝିଲ୍‌ଧରି ଯିବତ ।'

ମେରଥା କହିଲ "ଯଦି ରବର୍ଟୋ ଯିବାକୁ କହନ୍ତି ତେବେ ଆମେ ଯିବା ।"

ପିଲର୍ କହିଲା "ଝୋକର କଥା ଶୁଣ । କିଲୋ ଏଥିରେ ତୋ ରବର୍ଟୋର ଯେତିକି ସ୍ୱାର୍ଥ ଅଛି ମୋର ମଧ୍ୟ ସେତିକି ଅଛି । ମୁଁ ଯେତେବେଳେ କହୁଛି ଯେ ଏଠାରେ ବିଶ୍ରାମ କରିବାଦ୍ୱାରା ମୁଁ ଭଲବୋଧ କରୁଅଛି ଏବଂ ବହୁତ ସମୟ ଅଛି ସେତେବେଳେ ତରବର ହେବା ଦରକାର ନାହିଁ । ଅଧିକନ୍ତୁ ମୁଁ କଥା କହିବାକୁ ପସନ୍ଦ କରେ । ଏହାହିଁ ଏକମାତ୍ର ସଭ୍ୟ ପନ୍ଥା ନଚେତ୍ ନିଜର ମନ ଭୁଲାଇବା ପାଇଁ ଆଉ କି ଉପାୟ ଅଛି ? ମୋ କଥା କଅଣ ତୁମକୁ ଭଲ ଲାଗୁନାହିଁ ଇଂରେଜ ?"

"ତୁ ଖୁବ୍ ଭଲ ଭାବରେ କଥା କହୁଅଛୁ ସତ, ମାତ୍ର ତହୁଁ ଅଧିକ ଜରୁରୀ କାମ ମୋର ଅଛି । ଏହି ସୁନ୍ଦର ଓ କୁତ୍ସିତ ପ୍ରସଙ୍ଗ ଅପେକ୍ଷା ସେଇଟା ମୋର ଅଧିକ କାମ୍ୟ ।"

"ତେବେ ଆସ ତୁମ ମନକୁ ଯେଉଁଁଲ ଭଲ ବିଷୟରେ ଚର୍ଚ୍ଚା କରିବା ।"

"ଆନ୍ଦୋଳନ ଆରମ୍ଭବେଳେ ତୁ କେଉଁଠିଥିଲୁ ?"

"ମୋ ଗ୍ରାମ ଆଭିଲ୍‌ଠାରେ ।"

"ପାବ୍‌ଲୋ କହୁଥିଲା ସେ ମଧ୍ୟ ଆଭିଲରୁ ଆସିଛି ।"

"ମିଛ କଥା । ସେ କୌଣସି ବଡ଼ ସହରର ଅଧିବାସୀ ବୋଲି କହିବାକୁ ଲାଳାୟିତ ।" ସେ ଅମୁକ ସହରର ବାସିନ୍ଦା ବୋଲି ଗୋଟିଏ ସହରର ନାମ କହିଲା ।

"ତା ପରେ କଅଣ ଘଟିଥିଲା ?"

"ବହୁତ କିଛି । ସବୁତକ କୁତ୍ସିତ । ଗୌରବାବହ କାମତକ ମଧ୍ୟ କୁତ୍ସିତ ଥିଲା ।"

'ମୋତେ ସେ କଥା କୁହ ।'

ସ୍ତ୍ରୀଲୋକ ଜବାବ ଦେଲା 'ତାହା ପାଶବିକ କାହାଣି । ବାଳିକାଟି ସମ୍ମୁଖରେ ମୁଁ ତାହା ବର୍ଣ୍ଣନା କରିବାକୁ ଇଚ୍ଛୁକ ନୁହେଁ ।'

ରବର୍ଟ ଜର୍ଡାନ୍ କହିଲେ 'ହଉ ମୋତେ କୁହ । ବାଳିକା ପକ୍ଷରେ ଯଦି ଶୁଣିବା ଅନୁଚିତ ତେବେ ସେ ଶୁଣିବ ନାହିଁ ।'

ରବର୍ଟ ଜର୍ଡାନ୍‌ର ହାତ ଧରିପକାଇ ମେରିଆ କହିଲା 'ମୁଁ ଶୁଣି ପାରିବି । ଏମିତି କିଛି କଥା ନାହିଁ ଯାହା ଶୁଣିଲେ ମୋର କ୍ଷତି ଘଟିବ ।'

ପିଲାର୍ କହିଲା 'ତୁ ଶୁଣିପାରିବୁ କି ନାହିଁ ସମସ୍ୟା ତାହା ନୁହେଁ, ସମସ୍ୟା ହେଉଛି ମୁଁ ତୋତେ ଶୁଣାଇ ଶୁଣାଇ କହି ପାରିବି କି ନାହିଁ । ଶୁଣିଲେ ତୁ ଦୁଃସ୍ୱପ୍ନ ଦେଖିବୁ ।'

ମେରିଆ କହିଲା 'କାହାଣୀ ଶୁଣି ମୁଁ ସ୍ୱପ୍ନ ଦେଖିବି ନାହିଁ । ଆମର ଯାହା ଘଟିଯାଇଛି ସେହିକଥା ଶୁଣିଲେ ମୁଁ ସ୍ୱପ୍ନ ଦେଖିବି ଏପରି କାହିଁକି ଭାବୁଅଛ ?'

'ତେବେ ଇଂରେଜ ତୁମେ ଖରାପ ସ୍ୱପ୍ନ ଦେଖିବ ?'

'କହିସାରି ପରୀକ୍ଷା କରିଅ ।'

'ନା ଇଂରେଜ, ମୁଁ ରହସ୍ୟ କରୁନାହିଁ । ଆନ୍ଦୋଳନର ଆରମ୍ଭ ତୁମେ କୌଣସି ଗ୍ରୋଟ ସହରରେ ଦେଖିଥିଲ ?'

'ନା' ରବର୍ଟ ଜର୍ଡ଼ାନ୍ ଜବାବ ଦେଲେ ।

'ତେବେ ତୁମେ କିଛି ଦେଖିନାହଁ । ବର୍ତ୍ତମାନ ପାବ୍‌ଲୋର ଅଧୋଗତି ଦେଖୁଅଛ । କିନ୍ତୁ ଆନ୍ଦୋଳନ ଆରମ୍ଭବେଳେ ତୁମେ ପାବ୍‌ଲୋକୁ ଦେଖିବା ଉଚିତ ଥିଲା ।'

ଏହାପରେ କହିବା ନ କହିବା ନେଇ କିଛି ବାଦାନୁବାଦ ହେଲା ପରେ ପିଲାର୍ କହିଲା 'ହଉ ମୁଁ କହୁଅଛି । ଯଦି କେଉଁ କଥାରେ ତୋତେ କଷ୍ଟ ଲାଗେ ତେବେ ସେକଥା ମୋତେ କହିଦେବୁ ମେରିଆ ।'

ମେରିଆ କହିଲା 'ଖରାପ ଲାଗିଲେ ମୁଁ ଶୁଣିବି ନାହିଁ । ବହୁତ କଥା ମୁଁ ଜାଣେ । ଏଟା ଆଉ କି ଅଧିକ ଖରାପ ହୋଇପାରେ ।'

'ହଁ ହୋଇପାରେ । ହଉ ମୋତେ ଆଉ ଖଣ୍ଡେ ସିଗ୍ରେଟ ଦିଅ ଇଂରେଜ ।'

ଝରଣା କୂଳର ବୁଦା ଗଛକୁ ଆଉଜି ମେରିଆ ବସିଲା । ରବର୍ଟ ଜର୍ଡ଼ାନ୍ ପଡ଼ିଆରେ ଲମ୍ବ ହୋଇ ଚିତ୍ ଶୋଇଗଲେ । ମୁଣ୍ଡଟା ସେ ଗୋଟାଏ ବୁଦାରେ ରଖିଲେ । ସେ ହାତ ବଢ଼ାଇ ମେରିଆର ହାତ ଧରି ଗଛ ଉପରେ ସାଉଁଳିବାକୁ ଲାଗିଲେ । ମେରିଆ ହାତ ମେଲାଇ ତାଙ୍କ ହାତ ପାପୁଲିରେ ମିଶାଇଲା ।

ପିଲାର୍ ଆରମ୍ଭ କଲା 'ଏହା ସେହିଦିନ ବଡ଼ିସକାଳର କଥା ଯେଉଁଦିନ ଗ୍ରାଉଣୀର ନାଗରିକ ବାହିନୀ ଆତ୍ମସମର୍ପଣ କଲେ ।'

ରବର୍ଟ ଜର୍ଡ଼ାନ୍ ପଚାରିଲେ 'ତୁମେ ଗ୍ରାଉଣୀ ଆକ୍ରମଣ କରିଥିଲ ?'

'ପାବ୍‌ଲୋ ଅନ୍ଧାରରେ ତାକୁ ଘେରି ପକାଇ, ଟେଲିଫୋନ୍ ତାର କାଟି ଗୋଟାଏ ପାଖ କାନ୍ଥତଳେ ଡାଇନାମାଇଟ୍ ଥୋଇ ସିଭିଲ୍ ଗାର୍ଡ଼ଙ୍କୁ ଆତ୍ମସମର୍ପଣ କରିବାକୁ କହିଲା । ସେମାନେ ରାଜି ହେଲେ ନାହିଁ । ସକାଳ ହେଲାରୁ ସେ ଡାଇନାମାଇଟ୍ ଫୁଟାଇ ଗୋଟାଏ ପାଖ କାନ୍ଥ ଉଡ଼ାଇ ଦେଲା । ଯୁଦ୍ଧ ଲାଗିଲା । ୨ ଜଣ ସିଭିଲ୍‌ଗାର୍ଡ ମଲେ, ୪ ଜଣ ଆହତ ହେଲେ ଏବଂ ୪ ଜଣ ଧରାଦେଲେ ।'

'ଆମେ ସମସ୍ତେ ଛାତ ଉପରେ, ତଳେ ଏବଂ କାନ୍ଥ ଓ କୋଠା କଡ଼ରେ ଥିଲୁ । ବିସ୍ଫୋରଣଜନିତ ଧୂଳିରାଶି ସେତେବେଳଯାଏ ଆକାଶରେ ବହୁ ଉପରକୁ ଘୋଟିଥାଏ । ପବନ ନଥାଏ ବୋଲି ଧୂଳି ସେମିତି ରହିଥାଏ । ଆମ୍ଭେମାନେ ଭଙ୍ଗା

କାନ୍ଥବାଟେ ଗୁଳି ଚଳାଉଥିଲୁ । ଭିତରୁ ମଧ୍ୟ ରାଇଫଲ୍ ଫୁଟୁଥାଏ । ହଠାତ୍ ଧୂଆଁ ଭିତରେ ଆଉ ମାର ନାହିଁ ବୋଲି ଚିତ୍କାର ଶୁଣିଲୁ । ୪ ଜଣ ସିଭିଲ୍‌ଗାର୍ଡ ହାତ ଉପରକୁ ଉଠାଇ ବାହାରି ଆସିଲେ । ଘରର ଗୋଟାଏ ବଡ଼ ଅଂଶ ଧସି ପଡ଼ୁଥାଏ । କାନ୍ଥ ନଥାଏ । ସେମାନେ ଆତ୍ମସମର୍ପଣ କଲେ ।'

ପାବ୍‌ଲୋ ପାଟିକରି ପଚାରିଲା 'ଭିତରେ ଆଉ ଅଛନ୍ତି ?'

'ହଁ, ଆହତମାନେ ଅଛନ୍ତି ।'

'ଆମ ଗୁଳି ଫୁଟାଇବା ଜାଗାରୁ ୪ ଜଣ ଧାଇଁ ଆସିଥିଲେ । ସେମାନଙ୍କୁ ଏହି ୪ ଜଣଙ୍କୁ ଜଗିବାକୁ ଆଦେଶ ଦେଇ ସେ ଚାରି ଜଣଙ୍କୁ କାନ୍ଥକୁ ଲାଗି ଠିଆ ହେବାକୁ କହିଲା । ସେମାନେ ସେହି ମଇଳା ଧୂଆଁରେ କଳା କାନ୍ଥକୁ ଆଉଜି ଠିଆ ହେଲେ ଏବଂ ଆମର ୪ ଜଣ ଲୋକ ବନ୍ଧୁକ ତାଙ୍କ ପ୍ରତି ଲକ୍ଷ୍ୟ କରି ଜଗି ରହିଲେ । ପାବ୍‌ଲୋ ଏବଂ ଆଉ କେତେଜଣ ଆହତମାନଙ୍କୁ ଶେଷ କରିବାକୁ ଭିତରକୁ ଗଲେ ।'

'ଏହାପରେ ଘରଭିତରୁ ବନ୍ଧୁକ ଆବାଜ କିମ୍ବା ଚିତ୍କାର କ୍ରନ୍ଦନ କିମ୍ବା ଯନ୍ତ୍ରଣାଜ୍ଞାପକ ଶବ୍ଦ କିଛି ଶୁଣାଗଲା ନାହିଁ । ଏହା ପରେ ପାବ୍‌ଲୋ ଓ ଅନ୍ୟମାନେ ବାହାରକୁ ଚାଲି ଆସିଲେ । ପାବ୍‌ଲୋ ପିଠିରେ ବନ୍ଧୁକ ଓ ହାତରେ ପିସ୍ତଲ ।'

ପାବ୍‌ଲୋ ମୋତେ କହିଲା 'ଦେଖ ପିଲାର୍, ଏହି ପିସ୍ତଲଟି ଏଠା ସେନାପତି ହାତରେ ଥିଲା । ମୁଁ କେବେ ପିସ୍ତଲ ବ୍ୟବହାର କରି ନାହିଁ ।' ଏହାପରେ ସେ ଜଣେ ପ୍ରହରୀକୁ କହିଲେ 'ଏହି ପିସ୍ତଲ କିପରି ବ୍ୟବହାର କରାଯାଏ ମୋତେ ଦେଖାଇ ଦିଅ । ନା—ଖାଲିରେ ମୁହଁରେ କହିଦିଅ ।'

ସେ ୪ ଜଣ ସିଭିଲଗାର୍ଡ କାନ୍ଥକୁ ଆଉଜି ଠିଆ ହୋଇଥାନ୍ତି । ଝାଳରେ ତାଙ୍କ ସର୍ବାଙ୍ଗ ଜର୍ଜର । ସେମାନେ ଘରଭିତରେ ବନ୍ଧୁକ ଫୁଟା ଆବାଜ ଶୁଣି କିଛି କହୁନଥାନ୍ତି । ୪ ଜଣଯାକ ଡେଙ୍ଗା ଏବଂ ମୋ ମୁହଁ ପରି ତାଙ୍କର ମୁହଁ । କେବଳ ସେଦିନ ସକାଳେ ଦାଢ଼ି ଖିଅର ହୋଇ ନ ଥିବାରୁ ସାନ ସାନ ରୁଢ଼ ଗଜାଇଥାଏ ।

ପାଖରେ ଯେଉଁ ସିଭିଲ୍‌ଗାର୍ଡ଼ ଜଣକ ଥିଲା ତାକୁ ପାବ୍‌ଲୋ କହିଲା 'ତୁ କହିଲୁ ଏଇ ପିସ୍ତଲ କେମିତି ବ୍ୟବହାର କରାଯାଏ ?'

ଶୁଷ୍କ କଣ୍ଠରେ ଲୋକଟା କହିଲା 'ସେହି ସାନ ଘୋଡ଼ାଆଟା ଟାଣିଦିଅ ଏବଂ ସାନ ଗୁପୁଆଣିକୁ ପଛକୁ ଟାଣି ଛାଡ଼ିଦିଅ ।'

ପାବ୍‌ଲୋ ପଚାରିଲା 'ଗୁପ୍ତିଆଣି କଅଣ ?'

'ସେହି ବନ୍ଧୁକ ଲୁହାର ଅଗରେ ଥିବା ମୁଣ୍ଡା ଲୁହା ଖଣ୍ଡିକ ।'

ପାବ୍‌ଲୋ ତାକୁ ଟାଣିଲା କିନ୍ତୁ ତାହା ଅଟକିଗଲା । ତହୁଁ ପାବ୍‌ଲୋ ପଚାରିଲା'ଏଟା ତ ଲାଗି ରହିଲା, ଏବେ କଅଣ କରିବାକୁ ହେବ ?'

'ଆହୁରି ପଛକୁ ଟାଣି ଆସ୍ତେ ଆସ୍ତେ ଗୁଞ୍ଜିଦିଅ' ସିଭିଲ୍‌ଗାର୍ଡ଼ କହିଲା । 'ଏପରି ପରିଷ୍କାର କଣ୍ଠସ୍ୱର ମୋ ଜୀବନରେ ଶୁଣି ନ ଥିଲି ।'

ଲୋକଟା କହିବା ଅନୁସାରେ ପାବ୍‌ଲୋ କଲାରୁ ଘୋଡ଼ଆ ପଛକୁ ଆସି ପୁଣି ଖଟ୍‌ କରି ପଡ଼ିଗଲା । ଏହି ପିସ୍ତଲଟା ଦେଖିବାକୁ ଅସୁନ୍ଦର । ମୁଠା ଗୋଲ୍ କିନ୍ତୁ ନଳୀ ବଡ଼ ଏବଂ ଚେପ୍‌ଟା ଆଉ ବ୍ୟବହାର ପକ୍ଷରେ ସହଜ ନଥିଲା । ସିଭିଲ୍‌ଗାର୍ଡ଼ ୪ ଜଣ ତାଙ୍କୁ ନୀରବରେ ଅନାଇ ରହିଥାନ୍ତି ।

ଜଣେ ପଚାରିଲା, 'ଆମକୁ ନେଇ କଅଣ କରିବ ?'

ପାବ୍‌ଲୋ କହିଲା 'ଗୁଳି ମାରିଦେବ ।'

'କେତେବେଳେ ?'

'ବର୍ତ୍ତମାନ ।'

'କେଉଁଠି ?'

ପାବ୍‌ଲୋ କହିଲା 'ବର୍ତ୍ତମାନ, ଏଇଠି, ଏହି ଜାଗାରେ । କିଛି କହିବାର ଅଛି ?'

"ନା କିଛି ନାହିଁ । କିନ୍ତୁ ଏପରି ମାରିବାଟା ବଡ଼ କୁତ୍ସିତ ।'

ପାବ୍‌ଲୋ କହିଲା "ତୁମେ ସବୁ କୁତ୍ସିତ । ତୁମେ ଗୃଷୀଙ୍କୁ ହତ୍ୟା କରିଅଛ, ତୁମେ ନିଜ ମାଆକୁ ମଧ୍ୟ ହତ୍ୟା କରିପାର ।"

ସିଭିଲ୍‌ଗାର୍ଡ ଜଣକ କହିଲା 'ମୁଁ କାହାକୁ ମାରିନାହିଁ । ମୋ ମାଆ କଥା କୁହନାହିଁ ।'

'ସବୁବେଳେ ତ ଲୋକ ମାରିଛ, ଏବେ ନିଜେ କେମିତି ମରିବ ତାହା ଦେଖାଅ ।'

ଆଉ ଜଣେ ସିଭିଲ୍‌ ଗାର୍ଡ୍‌ କହିଲା "ଆମେ ମରିବାକୁ ଜାଣୁ, ଆମକୁ ଅପମାନ କରିବା ଆବଶ୍ୟକ ନାହିଁ ।'

ପାବ୍‌ଲୋ କହିଲ, 'ତେବେ କାନ୍ଥରେ ମୁଣ୍ଡ ଲଗାଇ ଆଣ୍ଠେଇ ପଡ଼ ।' ସେମାନେ ପରସ୍ପରକୁ ଚାହିଁଲେ ।"

ପାବ୍‌ଲୋ ଆଦେଶ ଦେଲା 'ମୁଁ କହୁଛି ଆଣ୍ଠେଇ ପଡ଼ ।'

ଡେଙ୍ଗା ସିଭିଲ୍ ଗାର୍ଡ଼ଙ୍କୁ ଅନ୍ୟଜଣେ ପଚାରିଲା "ପାକୋ ତୁମେ କଅଣ କହୁଁଚ ?"

ସେ ଲୋକଟାର କୁରୁତା ଅସ୍ତିନ୍‌ରେ କର୍ପୋରଲ୍‌ର ଚିହ୍ନ ଅଙ୍କିତ ।

ସକାଳ ବେଳଟା ବହୁତ ଥଣ୍ଡା ଥିଲେ ମଧ୍ୟ ସେ ଲୋକ ଦେହରୁ ବହୁତ ଝାଳ ବହୁଥାଏ । ସେ ଜବାବ ଦେଲା "ଆଣ୍ଠେଇ ପଡ଼ିଲେ କିଛି କ୍ଷତି ନାହିଁ ।"

ପ୍ରଥମ ଜଣକ "ଆଣ୍ଠେଇ ପଡ଼ିଲେ ମାଟିର ନିକଟ ହେବ ।" ସେ ରହସ୍ୟକରି କହିଲେ ମଧ୍ୟ ସେହି ଗମ୍ଭୀର ମୁହୂର୍ତ୍ତିରେ ରହସ୍ୟ ବୁଝୁଁଛି କିଏ ?

ଏହାପରେ ୪ ଜଣଯାକ ଆଣ୍ଠେଇ ପଡ଼ିଲେ । କାନ୍ଥରେ ମୁଣ୍ଡ ଲଗାଇ, ଦୁଇ କଡ଼ରେ ହାତ ଝୁଲାଇ ସେମାନେ ବଡ଼ ଅସୁନ୍ଦର ଦିଶୁ ଥିଲେ । ପାବ୍‌ଲୋ ତାଙ୍କ ପଛପଟେ ଯାଇ ଜଣ ଜଣକର ମୁଣ୍ଡ ପଛରେ ପିସ୍ତଲ ନଳୀର ମୁଣ୍ଡ ଲଗାଇ ମାରିଦେଲା । ଗୁଳି ଫୁଟିବା ସଙ୍ଗେ ସଙ୍ଗେ ପ୍ରତ୍ୟେକେ ଢଳି ପଡ଼ୁଥିଲେ । ମୋ ଆଖିରେ ସେ ଦୃଶ୍ୟ ବର୍ତ୍ତମାନ ସୁଦ୍ଧା ନାଚୁଅଛି । ଜଣେ ନଳୀ ସ୍ପର୍ଶରେ ମୁଣ୍ଡ ହଲଚଲ କରି ନଥିଲା; ଜଣେ କାନ୍ଥର ପଥର ଦେହରେ କପାଳ ଠେସିକରି ରଖିଥିଲା, ଜଣକର ସର୍ବାଙ୍ଗ ଥରଡ଼ାପରି ପରି ଥରୁଥିଲା, ଜଣେ କେବଳ ଦୁଇ ହାତରେ ଆଖିବୁଜି ଧରିଥିଲା । ପାବ୍‌ଲୋ ତାଙ୍କୁ ମାରି ପିସ୍ତଲ ଧରି ଆମ ପାଖକୁ ଆସିଲା ।

ପାବ୍‌ଲୋ ମୋତେ ପିସ୍ତଲ ବଢ଼ାଇଦେଇ କହିଲା ଧରିଆ, ଯୋଡ଼ିଆଟା! ଝସାଇବାକୁ ମୁଁ ଜାଣେନାହିଁ । ଆମର ୪ ଜଣ ପ୍ରହରୀ ଏହି ଦୃଶ୍ୟ ଦେଖି ନୀରବରେ ଠିଆ ହୋଇ ରହିଥିଲେ ।

ସହରଟା ଆମର ଦଖଲକୁ ଆସିଲା । ସକାଳଟା ସେଇ ମାନ ହୋଇଥାଏ । ଆମ ଭିତରୁ କେହି ଜଳଖିଆ କରି ନଥାନ୍ତି କିମ୍ବା କାଫି ପିଇ ନଥାନ୍ତି । ଧୂଳିରେ ଆମ୍ଭେମାନେ ଅଟାକଳ ଶ୍ରମିକ ପରି ଧୂସର । ୪ଟା ମୂର୍ଦ୍ଦାର ପଡ଼ିଥାଏ । ମୋ ହାତରେ ସେହି ପିସ୍ତଲଟା ବହୁତ ଭାରି ବୋଧ ହେଉଥାଏ, ମୁର୍ଦାର ଗୁଡ଼ିକର ରକ୍ତରେ ଧୂଳି ସବୁ କର୍ଦ୍ଦମାକ୍ତ ହୋଇ ଯାଇଥାଏ । ଏହାପରେ ସୂର୍ଯ୍ୟ ଅଳ୍ପ ଉପରକୁ ଉଠିବାରୁ ରାସ୍ତାରେ ଖରା ପଡ଼ିଲା । ପବନରେ ଉଡୁଥିବା ଧୂଳି ସୁନେଲି ହୋଇଗଲା । ଯେଉଁ ଗୃହୀଜଣଙ୍କ

ମୋ ପାଖରେ ଥିଲା ସେ ଏସବୁ ଦୃଶ୍ୟ ଦେଖି କାନ୍ଦି ପକାଇଲା ଏମିତି ପରିବେଶରେ ଆଜିର ସକାଳ ଆରମ୍ଭ ।

ମୁଁ କହିଲି, ହଉ ଚାଲ କାଫି ପିଇବା । ସେ ଲୋକ ଜଣକ କହିଲା ସାଧୁ ପ୍ରସ୍ତାବ । ଆମ୍ଭେମାନେ ବଜାରକୁ ଗଲୁ । ସେ ଗ୍ରାମରେ ସେହି ଚାରିଜଣ ହିଁ ଶେଷ ନିହତ ବ୍ୟକ୍ତି ।

ରବର୍ଟ୍ ଜର୍ଡାନ୍ ପଚାରିଲେ 'ଅନ୍ୟମାନଙ୍କର କଅଣ ହେଲା ? ସେ ଗ୍ରାମରେ କଅଣ ଅନ୍ୟ ଫ୍ୟାସିଷ୍ଟ ନଥିଲେ ?'

'ନଥିଲେ ପୁଣି ! ୨୦ଜଣରୁ ବେଶୀ ଥିଲେ କିନ୍ତୁ କାହାକୁ ଗୁଳିକରି ମରାଯାଇନଥିଲା ।'

'ତେବେ କଅଣ ହେଲା ?'

'ପାବ୍ଲୋ ତାଙ୍କୁ ଧାନକୁଟା କାଠ ମୂଷଳରେ ପିଟି ମାରି ପାହାଡ଼ ଉପରୁ ନଦୀକୁ ଫିଙ୍ଗିଦେଇ ଥିଲା ।'

'୨୦ ଜଣ ସଭିଙ୍କୁ ?'

'ହଁ ମୁଁ କହୁଛି । ଏ କଥା ଏତେ ସହଜ ନୁହେ । ଏପରି ଦୃଶ୍ୟ ମୁଁ ଜୀବନରେ ଆଉ ଦେଖିବା ପାଇଁ ପ୍ରସ୍ତୁତ ନୁହେ । ଲୋକଗୁଡ଼ାଙ୍କୁ କୁକୁର ପରି ପିଟି ମାରି ପକାଇ ପାହାଡ଼ ଉପରୁ ନଦୀକୁ ଫିଙ୍ଗିବା ଦୃଶ୍ୟ ମନେକଲେ ଦେହ ଶୀତେଇ ଉଠୁଛି ।'

'ସହରଟା ନଦୀ ତଟରେ ସ୍ଥାପିତ । ସହର ମଧ୍ୟରେ ଗୋଟିଏ ବଗିଚା । ସେଥିରେ ଗୋଟିଏ କୃତ୍ରିମ ଝରଣା ଖଞ୍ଜା ଥାଏ । କେତେଖଣ୍ଡ ବେଞ୍ଚ ମଧ୍ୟ ପଡ଼ିଥାଏ । ଛାଇ ହେବ ବୋଲି ଗୁଡ଼ିଏ ଗଛ ଲଗାଯାଇ ଥାଏ । ଚାରିପାଖର କୋଠାବାଡ଼ିର ଅଳିନ୍ଦ ସେହି ବଗିଚାକୁ ମୁହଁ କରିଥାଏ । ବଗିଚାକୁ ଆସିବା ପାଇଁ ୬ ଗୋଟି ରାସ୍ତା । ଘର-ମାନଙ୍କର ଛାତଯୁକ୍ତ ଖୋଲା ବାରଣ୍ଡା ବଗିଚାର ତିନିପଟେ, ଯେଉଁଥିରେକି ଖରାରେ ଲୋକେ ବୁଲି ପାରନ୍ତି । ଗୋଟିଏ ପଟରେ ଦୁଇପାଖ ଗଛ ଛାୟାଯୁକ୍ତ ରାସ୍ତାଟି ପାହାଡ଼ ଶୃଙ୍ଗଯାଏ ବିସ୍ତୃତ, ନଦୀଶଯ୍ୟାରୁ ପାହାଡ଼ ଚୂଡ଼ା ତିନି ଶତ ଫୁଟ ଉଚ୍ଚ ।'

ଏ ସବୁ କାମ ପାବ୍ଲୋ ସଂଗଠନ କରିଥିଲା ଏବଂ ଛାଉଣୀ ଉପରେ ଆକ୍ରମଣ କରିଥିଲା । ପ୍ରଥମେ ସେ ରାସ୍ତା ଗୁଡ଼ିକ ଗାଡ଼ୀ ଦେଇ ବନ୍ଦ କରି ବଗିଚାକୁ ଝିଅ ଲଢ଼େଇ

ରଙ୍ଗମଞ୍ଚରେ ପରିଣତ କରିଥିଲା । ଫ୍ୟାସିଷ୍ଟମାନେ ସମସ୍ତେ ସହରର ଟାଉନ୍‌ହଲରେ ଅଟକ କରାଯାଇ ଥିଲା । ବଗିଗ୍ରର ଗୋଟିଏ ମାଝରେ ଏହି ଟାଉନ୍ ହଲ୍ ଅବସ୍ଥିତ । ଏହା ସବୁଠାରୁ ବଡ଼ କୋଠା । ସେହି କୋଠାର କାନ୍ଥରେ ଘଣ୍ଟା ଝୁଲାଇ ଦିଆଗଲା । ଖୋଲା ବାରଣ୍ଡା ଯୁକ୍ତ ଗୋଟିଏ ଘରେ ଫ୍ୟାସିଷ୍ଟମାନଙ୍କର ସମିତି ଗୃହ ଥିଲା । ସେଠା କଡ଼ ରାସ୍ତାରେ ତାଙ୍କ ଦଳର ମେଜ ଚଉକି ଆଦି ଥାଏ । ଆନ୍ଦୋଳନ ଆରମ୍ଭ ପୂର୍ବରୁ ଏହିଠାରେ ବସି ସେମାନେ ମଦ ପିଆ ପିଇ କରୁଥିଲେ । ମେଜ ଚୌକି ସବୁ ବେତ ନିର୍ମିତ । ସମିତି ଘରୁ ଥାଏ ଗୋଟାଏ ଜଳଖିଆ ଦୋକାନ ପରି ।’

‘ଅସ୍ତ୍ର ତାକୁ ଦଖଲ ନେବାପାଇଁ ଯୁଦ୍ଧ କରିବାକୁ ପଡ଼ିଥିଲା ତ ?’ ଜର୍ଡାନ୍ ପଚାରିଲେ ।

‘ଗ୍ରୁଆର୍ଡିଆ ଆକ୍ରମଣ କରିବା ପୂର୍ବ ରାତିରେ ପାବ୍‌ଲୋ ସେ ସବୁ ଦଖଲ କରି ନେଇଥିଲା । ଗ୍ରୁଆର୍ଡିଆ ମଧ୍ୟ ଘେରାଉ କରିଥିଲା । ଆକ୍ରମଣ ଆରମ୍ଭ ହେଲାକ୍ଷଣି ସମସ୍ତେ ନିଜ ନିଜ ଘରେ କମ୍ବା ହୋଟେଲରେ ବନ୍ଦୀ ହୋଇଥିଲେ । ଏହା ଖୁବ୍ ବୁଦ୍ଧିମାନର କାମ । ପାବ୍‌ଲୋ ଖୁବ୍ ଭଲଭାବରେ ବନ୍ଦୋବସ୍ତ କରିଥିଲା ନଚେତ ଶତ୍ରୁପକ୍ଷ ତାକୁ ପଛପଟୁ କମ୍ବା ଦୁଇ ପାଖରୁ ଆକ୍ରମଣ କରିବାର ସୁଯୋଗ ପାଇ ଥାଆନ୍ତେ ।’

‘ପାବ୍‌ଲୋ ଖୁବ୍ ଚତୁର ହେଲେ ମଧ୍ୟ ନୃଶଂସ । ସେ ଏହି ଗ୍ରାମଟା ସମ୍ବନ୍ଧରେ ସବୁପ୍ରକାର ଯୋଜନା ଠିକ୍ କରି ବନ୍ଦୋବସ୍ତ କରିଥିଲା । ସେହି ୪ ଜଣ ଆତ୍ମସମର୍ପଣକାରୀଙ୍କୁ ମାରିଦେଲା ପରେ ଏବଂ ଆକ୍ରମଣ ସଫଳ ହେଲାରୁ ଆମ୍ଭେମାନେ ଅତି ସକାଳୁ ଖୋଲା ହେଉଥିବା ହୋଟେଲକୁ ଯାଇ କାଫି ପିଇଲୁ । ଏହା ପରେ ପାବ୍‌ଲୋ ବଗିଗ୍ର ଉପରେ ଚଢ଼ାଉ କରିବା ବନ୍ଦୋବସ୍ତ ପାଇଁ ବାହାରି ଗଲା । ସବୁଆଡ଼ ରାସ୍ତା ଗାଡ଼ି ସଗଡ଼ ଥୋଇ ବନ୍ଦ କରି କେବଳ ପାହାଡ଼କୁ ଯିବା ରାସ୍ତାଟି ସେ ଖୋଲି ରଖିଥିଲା । ଏହାପରେ ପାବ୍‌ଲୋ ପୁରୋହିତଙ୍କୁ ଡାକି ଫ୍ୟାସିଷ୍ଟ-ମାନଙ୍କୁ ଶେଷ ଧର୍ମ ବାଣୀ ଶୁଣାଇ ଦେବାକୁ ଆଦେଶ ଦେଇଥିଲା ।’

‘ଏଗୁଡ଼ା କେଉଁଠାରେ କରାଗଲା ?’

‘ଟାଉନ୍ ହଲ୍‌ରେ । ବାହାରେ ଭାରି ଭିଡ଼ ଜମିଥାଏ । ଘର ଭିତରେ ପୁରୋହିତ ଧର୍ମ କଥା କହୁଥିଲାବେଳେ ବାହାରେ ଗୁଡ଼ାଏ ଲଫଙ୍ଗା ଅଶ୍ଳୀଳ କଥା କହୁଥାନ୍ତି । କିନ୍ତୁ ଅଧିକାଂଶ ଲୋକ ଗମ୍ଭୀର ଭାବରେ ରହିଥିଲେ । ଅଳ୍ପ ଲୋକ ମାନେ ମଦ ପିଇ ମାତାଲ ହୋଇଥିଲେ । ଗ୍ରୁଆର୍ଡିଆ ଦଖଲର ବିଜୟୋତ୍ସବ ପାଇଁ ତାଙ୍କର ଏହି ମଦପିଆ । ପୁରୋହିତ ଧର୍ମାନୁଷ୍ଠାନ କ୍ରିୟା କରୁଥିଲାବେଳେ ପାବ୍‌ଲୋ

ବଗିଚାରେ ଥିବା ଲୋକମାନଙ୍କୁ ଦୁଇ ଧାଡ଼ିରେ ଠିଆ କରାଇ ରଖିଲା । ଦଉଡ଼ି ଟଣା ପ୍ରତିଯୋଗିତାରେ ଯେମିତି ଦୁଇଆଡ଼େ ଲୋକ ରହନ୍ତି, ମଝିରେ ଅଳ୍ପ ବାଟ ରହିଥାଏ । ଏହି ଫାଙ୍କ ୬ ମିଟର ହେବ । ଟାଉନ୍ ହଲ୍ ଦୁଆରୁ ବଗିଚା କଡ଼ଦେଇ ଏହା ପାହାଡ଼ ଚୂଡ଼ାଯାଏ ବିସ୍ତୃତ ଥିଲା ।'

'ଲୋକମାନଙ୍କ ଭିତରୁ ଅଧିକାଂଶଙ୍କ ହାତରେ ଧାନ କୁଟିବା ମୂଷଳ ଥାଏ । ସେମାନେ ଏସବୁ ଡନ୍ ଗୁଇଲର୍ମୋ ମାର୍ଟିନଙ୍କ ଦୋକାନରୁ ଆଣିଥିଲେ । ଏହି ଦୋକାନୀ ଜଣେ ଫ୍ୟାସିଷ୍ଟଦଳର ଲୋକ ଏବଂ ବିବିଧ କୃଷି ଯନ୍ତ୍ରପାତି ବିକୁଥିଲେ । ଯାହାଙ୍କ ହାତରେ ମୂଷଳ ନଥିଲା ସେମାନେ ମୋଟା ଠେଙ୍ଗା କମ୍ବା କାଠପରକେନା ଅବା ପାଞ୍ଚଣ ବାଡ଼ି ଧରିଥିଲେ । କେହି କେହି ଦାଆ, କଣ୍ଟା ତେଣ୍ଟା ଆଦି ମଧ୍ୟ ଧରିଥିଲେ । ପାବ୍ଲୋ ଏମାନଙ୍କୁ ପଂକ୍ତିର ଶେଷରେ ଠିଆ କରାଇଥିଲା । ଏମାନେ ଚୁପ୍‌ଚାପ୍ ଠିଆହୋଇଥାନ୍ତି । ଆକାଶ ନିର୍ମଳ ଥାଏ । ରାତିରେ କୁହୁଡ଼ି ଯୋଗୁ ଧୂଳି ଉଡ଼ୁ ନଥାଏ । ଗଛର ଛାଇ ରାସ୍ତା ତମାମ । ବଗିଚାର ସିଂହ ମୁହାଁ ଝରରୁ ପାଣି ପଡ଼ି ତଳ ଧୋଣର କୁଣ୍ଡ ଭରି ଯାଇଥାଏ ।'

"କେବଳ ଟାଉନ୍ ହଲ୍‌ର ଦୁଆରେ ଥିବା ଲଫଙ୍ଗା ଲୋକେ ଅତି ବାଜେ କଥା କହୁଥାନ୍ତି । ସେମାନେ ତାହା ମାତାଲ୍ ହୋଇ ଝିଅଙ୍କ ପାଖରେ ନାନାଦି ଅଶ୍ଳୀଳ ଧ୍ୱନି ମଧ୍ୟ କରୁଥାନ୍ତି । ପଂକ୍ତିରେ ଠିଆ ହୋଇଥିବା ଲୋକେ ନୀରବ । ଜଣେ ଅଧେ ପଚାରୁଥାନ୍ତି "ସ୍ତ୍ରୀଲୋକ ଅଛନ୍ତି କି ?" ଆଉ କିଏ ଜଣେ କହିଲା 'ଖ୍ରୀଷ୍ଟ ନ କରନ୍ତୁ ।' ଆଉ କିଏ ମୋତେ ଦେଖି ପଚାରିଲା "ସ୍ତ୍ରୀଲୋକଟି ଅଛନ୍ତି କି ପିଲାର୍ ?"

"ମୁଁ ଦେଖିଲି ସେ ଜଣେ ଚାଷୀ ରବିବାରିଆ ପୋଷାକ ପିନ୍ଧିଛି । ଝାଳରେ ସେ ଜରଜର । ମୁଁ କହିଲି ନା—କୌଣସି ସ୍ତ୍ରୀଲୋକ ନାହିଁ । ଆମ୍ଭେମାନେ ସ୍ତ୍ରୀଲୋକଙ୍କୁ ମାରିବୁ ନାହିଁ ।

ସେ ଭଗବାନଙ୍କୁ ଧନ୍ୟବାଦ ଦେଇ ପଚାରିଲା କେତେବେଳେ ଆରମ୍ଭ ହେବ ?'

"ମୁଁ ଜବାବ ଦେଲି ପୁରୋହିତ ନିଜ କାର୍ଯ୍ୟ ଶେଷ କଲାପରେ ।"

"ପୁରୋହିତ କେଅଣ ଛାଡ଼ ପାଇବ ?"

ମୁଁ କହିଲି "ମୁଁ ଜାଣେ ନାହିଁ । ମୋ କଥା ଶୁଣି ଲୋକଟିର କପାଳରୁ ଝାଳ ବହି ପଡ଼ିଲା । ସେ କହିଲା ଯେ ସେ କେବେ ମଣିଷ ମାରି ନାହିଁ ।"

ତାଙ୍କୁ ଲକ୍ଷ୍ୟ କରି ଜଣେ ଗୃହିଣୀ କହିଲ "ତେବେ ଆଜି ଶିଖିବୁ । କିନ୍ତୁ ମୋର ଏହି ମୂଷଳରେ ଗୋଟାଏ ପାହାରରେ ମଣିଷ ମରିବ ନାହିଁ ।"

"ସେଇତ ମଜ୍ଜା । ବହୁତ ପାହାର ବସାଇବାକୁ ପଡ଼ିବ ।" ଆଉ ଜଣେ ଜବାବ ଦେଲ ।

"କିଏ ଜଣେ କହିଲା ସେମାନେ ଖାଲଡ଼୍ରୋଲଡ୍ ଏବଂ ଆଭେଲ ଦଖଲ କରି ଅଛନ୍ତି । ଏକଥା ସହରକୁ ଆସିବା ପୂର୍ବରୁ ମୁଁ ଶୁଣି ଆସିଛି ।"

"ଏ ସହର ଆମର । ଏହାକୁ ସେମାନେ କଦାପି ନେଇ ପାରିବେ ନାହିଁ । ତାଙ୍କ ଅଗ୍ରେ ଅମ୍ଭେମାନେ ଦଖଲ ନେଇଅଛୁ ।" ମୁଁ କହିଲି 'ତାଙ୍କ ଆକ୍ରମଣକୁ ଅପେକ୍ଷା କରିବା ଲୋକ ପାବ୍‌ଲୋ ନୁହେ ।'

ଆଉ ଜଣେ କହିଲା "ପାବ୍‌ଲୋ ଖୁବ୍ ସମର୍ଥ କିନ୍ତୁ ସିଭିଲଗାର୍ଡମାନଙ୍କୁ ଶେଷ କରିବା କାମରେ ବଡ଼ ଅହଙ୍କାରୀ ହୋଇ ଉଠିଛି । ପିଲର୍, ଏହା ନୁହେଁକ ?"

ମୁଁ କହିଲି "ହଁ, କିନ୍ତୁ ବର୍ତ୍ତମାନ ତ ସମସ୍ତେ ଯୋଗ ଦେଇ ଅଛନ୍ତି !"

ସେ କହିଲା "ତା' ସତ । ବନ୍ଦୋବସ୍ତ ଖୁବ୍ ଭଲ ହୋଇଛି । ଆଚ୍ଛା ଆନ୍ଦୋଳନ ସମ୍ବନ୍ଧରେ ଆମେ ଅଧିକ ଶୁଣିବାକୁ ପାଉନାହୁଁ କାହିଁକି ?"

"ପାବ୍‌ଲୋ ଗୁଳିକରି ଆକ୍ରମଣ ପୂର୍ବରୁ ଟେଲିଫୋନ ତାର କାଟି ଦେଇଅଛି, ତାହା ଏ ପର୍ଯ୍ୟନ୍ତ ମରାମତି ହୋଇନାହିଁ ।"

"ଓଃ, ଏଇଥି ପାଇଁ ଖବର ମିଳୁନାହିଁ ? ମୁଁ ଆଜି ସକାଳେ ରାସ୍ତା ମରାମତି ଚଟିରୁ ଖବର ପାଇଥିଲି ।"

ସେ ପଚାରିଲା "ପିଲର୍, କାମଟା ଏପରି ହେଉଛି କାହିଁକି ?"

ମୁଁ କହିଲି "ଗୋଲାବାରୁଦ ବଞ୍ଚାଇବା ପାଇଁ ଏବଂ ସମସ୍ତଙ୍କୁ ଅଂଶ ଗ୍ରହଣରେ ସୁବିଧା ଦେବାପାଇଁ ।"

ତେବେ ତ ବର୍ତ୍ତମାନ ଆରମ୍ଭ ହେବା ଉଚିତ ବୋଲି କହି ଲୋକଟା କାନ୍ଦି ପକାଇଲା । କାରଣ ପଚାରିବାରୁ କହିଲା ଯେ ସେ କେବେ ମଣିଷ ମାରିନାହିଁ ଏବଂ ଏହା ସହିପାରୁ ନାହିଁ ।

ସାନ ସହରରେ ସମସ୍ତେ ପରସ୍ପରଙ୍କୁ ଚିହ୍ନନ୍ତି ଓ ଜାଣନ୍ତି । ସେପରି ଜାଗାରେ ଯଦି ବିପ୍ଲବର ଆରମ୍ଭ ତୁମେ ଦେଖିନାହଁ ତେବେ କିଛି ଦେଖି ନାହିଁ ବୋଲି ଧରିବାକୁ ହେବ । ଆଜି ଏ ଯେଉଁ ଦୁଇ ଧାଡ଼ି ଲୋକ ଠିଆ ହୋଇଅଛନ୍ତି ସେଥି ମଧ୍ୟରେ ଗୃହସ୍ଥୀ, ମଜୁରିଆ, ମୂଲିଆ, ସମସ୍ତେ ଅଛନ୍ତି । ବିପ୍ଳବ ପାଇଁ କିଭଳି ପୋଷାକ ଆବଶ୍ୟକ ନ ଜାଣି ଯିଏ ଯାହା ପାଇଲା ପିନ୍ଧିକରି ଆସିଛନ୍ତି । କେତେ ରବିବାରିଆ ଗୀର୍ଜା ପୋଷାକ ମଧ୍ୟ ପିନ୍ଧିଛନ୍ତି । ଅନ୍ୟମାନଙ୍କର ପୁରୁଣା ପୋଷାକ ଦେଖି ନିଜ ପୋଷାକ ସ୍ଥାନ କାଳ ଉପଯୋଗୀ ନ ହେଲେହେଁ ସେମାନେ ଗ୍ରେରି ଯିବା ଭୟରେ ଦେହରୁ ବାହାର କରୁ ନାହାନ୍ତି । ଅଥଚ ଝାଳରେ ସିଝିଗଲେଣି ।

ଏହାପରେ ପବନ ବହିଲା ଏବଂ ଲୋକମାନଙ୍କର ମାଡ଼ ଚକଟରେ କାଦୁଅ ଶୁଖି ଧୂଳି ହୋଇ ଉଡ଼ି ନିଶ୍ୱାସ ବନ୍ଦ କରି ପକାଇଲା । ଜଣେ କେହି ପାଣି ପାଣି ବୋଲି ଛୁରି କଲାରୁ ବଗିଚାରେ ପାଣି ପକାଇବା ଲୋକ ଆସି ନଳ ଫିଟାଇ ଚାରିଆଡ଼େ ପାଣି ପକାଇଲା । ଏଥିପାଇଁ ଦୁଇଆଡ଼ର ଲୋକେ ତାକୁ ସ୍ଥାନ ଛାଡ଼ିଦେଲେ । ଏହାପରେ ଭଲଭାବରେ ପାଣି ସିଞ୍ଚା ହେଲାରୁ ଧୂଳି ବସିଗଲା ଏବଂ ଲୋକେ ପୁଣି ଠେଙ୍ଗା ବାଡ଼ି ତେଣ୍ଟା ମୂଷଳ ଧରି ପୂର୍ବପରି ଦୁଇ ଧାଡ଼ିରେ ଠିଆହେଲେ ।

ଚଲେଇ ଚଲେଇ ଏବଂ ଗ୍ଡ଼ାଣିର ଧୂଆଁରେ ଅନ୍ଧବନ୍ଧ ହୋଇ ପାବ୍‌ଲୋର ତଣ୍ଟି ପଡ଼ି ଯାଇଥିଲା । ସେ ଘାଘଡ଼ା ଗଳାରେ କହିଲା 'ଶୀଘ୍ର ପ୍ରଥମ ବ୍ୟକ୍ତି ଆସୁଛି ।'

ଜଣେ ଶ୍ରୋତା ପଚାରିଲା "ଏତେ ଡେରି କାହିଁକି ?"

ପାବ୍‌ଲୋ କହିଲା "ସେମାନେ ପାପ ସ୍ୱୀକାର କରୁଛନ୍ତି ।"

"କିଏ କହିଲା ୨୦ଜଣ, କିଏ କହିଲା ତହୁଁ ବେଶୀ, କିଏ କହିଲା ପାପ ମଧ୍ୟ ସେହି ପରିମାଣରେ, କିଏ କହିଲା କାଳକ୍ଷେପଣର ଏହା ଏକ ଫନ୍ଦି । ଏମିତି ଲୋକେ ନିଜ ନିଜ ଭିତରେ କୁହାକୁହି ହୋଇ ଅଧୀରତା ପ୍ରକାଶ କଲେ । କେମିତି କାମ ସରିବ, କେମିତି ସେମାନେ ବନ୍ଦୀ ଫ୍ୟାସିଷ୍ଟମାନଙ୍କୁ ପିଟିପିଟି ଶେଷ କରିବେ ଏଥିପାଇଁ ସମସ୍ତେ ଅତ୍ୟନ୍ତ ବ୍ୟଗ୍ର ହୋଇ ଉଠିଲେ । ସେମାନେ ବୁଝିଲେ ଯେ ଏହି ଫ୍ୟାସିଷ୍ଟ-ମାନଙ୍କୁ ଧ୍ୱଂସ କରିଦେଲେ ସ୍ୱାଧୀନତା ମିଳିବ । ସେଥିପାଇଁ ଗୋଟାଏ ଅନୁଷ୍ଠାନ ମଧ୍ୟ ଗଢ଼ିବାକୁ ହେବ । ସଭା ସମିତି କରି ଲୋକମାନଙ୍କୁ ବୁଝାଇ ଦେବାକୁ ପଡ଼ିବ ।"

"ମୁଁ ସିଭିଲ୍‌ଗାର୍ଡମାନଙ୍କର ତିକୋଣିଆ କୃତ୍ରିମ ଚମଡ଼ାର ଟୋପିଟା ପିନ୍ଧିଥିଲି ! ଘୋଡ଼ିଆ ପକାଇ ଦେଇ ଖଣ୍ଡିଏ ଦଉଡ଼ିରେ ବାନ୍ଧି ପିସ୍ତଲଟା ଝୁଲାଇ ରଖି ଏହାକୁ

ତାହାକୁ ରହସ୍ୟରେ ଉଣ୍ଠାଉଥିଲି । ପଂକ୍ତିରେ ଥିବା ଜଣେ ଲୋକ ମୋତେ ସେହି ଟୋପି ପିନ୍ଧିବା ଅସଙ୍ଗତ ବୋଲି କହିବାରୁ କହିଲି ହଉ, ମୁଁ କାଢ଼ି ପକାଉଅଛି ।" ସେ କହିଲା 'ନାହିଁ । ଏ ଟୋପିଟା ଫାସିଷ୍ଟମାନଙ୍କର ଚିହ୍ନ, ଏହାକୁ ନଷ୍ଟ କରିଦେବା ଭଲ ।' ଏହା କହି ସେ ମୋ ହାତରୁ ଟୋପିଟା ନେଇ ପାହାଡ଼ ଚୂଡ଼ାରୁ ଫିଙ୍ଗି ଦେଲା । ମୁଁ ବଗିଗୃ ଆଡ଼େ ଏବଂ ବଗିଗୃ ଗୃହପଟରେ ଥିବା ଘରମାନଙ୍କର ଅଳିନ୍ଦକୁ ଅନାଇ ଦେଖିଲି ସର୍ବତ୍ର ଲୋକାରଣ୍ୟ । ଟାଉନ୍‌ହଲ୍ ଦୁଆର ମୁହଁରୁ ରାସ୍ତାର ଦୁଇ ପାଖରେ ଲୋକ ଠେସି ହୋଇ ରହି ନାନାଦି ହଟ୍ଟଗୋଳ କରୁଥାନ୍ତି । ଏହି ସମୟରେ ଶୁଣାଗଲା ଯେ ଫ୍ୟାସିଷ୍ଟ ଆସୁଛି । ଯିଏ ଆସିଲେ ସେ ହେଉଛନ୍ତି ସହରର ପୁରପତି ବା ମେୟର ଡନ୍ ବେନଟୋ ଗାର୍ସିଆ । ସେ ଖାଲି ମୁଣ୍ଡରେ ଘରୁ ବାହାରି ରାସ୍ତାରେ ଆସିଲେ । ଦୁଇ ପାଖରେ ଜନତା । ପ୍ରଥମେ ସମସ୍ତେ ଚୁପ୍‌ଚାପ୍ ଠିଆହୋଇ ଦେଖୁଥିଲେ । ଜଣେ କେହି ଉପରୁ ଚିତ୍କାର କଲା "ଇସ୍ପେ କଅଣ କରୁଛ ଭୀରୁ ?" ମେୟର ଅଳ୍ପ ଦୂର ଆଗେଇଚନ୍ତି, ହଠାତ୍ ଜଣେ ଧାନ୍ଦ କାମୁଡ଼ି ନଜର ମୂଷଳ ଉଠାଇ ତାଙ୍କ ମୁଣ୍ଡରେ ପାହାରେ ଦେଲା । ମେୟର୍ ମୁହଁରେ ହାତ ଢାଙ୍କିବାରୁ ଅନ୍ୟମାନେ ତାଙ୍କୁ ଧମାଧମ୍ ପିଟି ପକାଇଲେ । ତାଙ୍କ ଲୁଗାପଟା ଛିଣ୍ଡି କନା ହୋଇଗଲା । ସେମାନେ ତାଙ୍କୁ ଘୋସାରି ପାହାଡ଼ ଚୂଡ଼ାକୁ ନେଇ ନଦୀକୁ ଫିଙ୍ଗିଦେଲେ । ଯିଏ ଏହା କଲା ସେ ହେଉଛି ତାଙ୍କର ଜଣେ ପ୍ରଜା । ତାହାର ଜମି ନେଇ ମେୟର୍ ସଙ୍ଗେ ପୂର୍ବରୁ ବିବାଦ ଲାଗିଥିଲା ।

ଏହାପରେ କିଛିକ୍ଷଣଯାଏ ଆଉ କେହି ଆସିଲେ ନାହିଁ । ଜନତା ଅଧୀର ହୋଇ ନାନାଦି ଅଶ୍ଳୀଳ ମନ୍ତବ୍ୟ କଲେ । ବ୍ୟଙ୍ଗ ବିଦ୍ରୁପ ମଧ୍ୟକଲେ । ତାଙ୍କୁ ଟାଣି ଆଣିବାକୁ ଦାବି କଲେ ।

ଦ୍ୱିତୀୟରେ ଗୋଟିଏ ଅଟାକଲ ଏବଂ ମୁଦି ଦୋକାନର ମାଲିକ ଡନ୍-ଫେଡରିକୋ ଗନ୍‌ଜାଲେଜ୍ ଆସିଲେ । ଲୋକଟା ଡେଙ୍ଗା ଓ ପତଳା ଗୋଡ଼ ଖାଲି । ପାବ୍‌ଲୋ ତା ମୁଣ୍ଡରେ ହାତ ଦେଇ ଠେଲି ଠେଲି ଆଣିଲା । ତା' ଗୋଡ଼ ଚାଲୁ ନଥାଏ । ଜଣେ ଲୋକ ମୂଷଳରେ ତା କଙ୍କାଳରେ ଭୁଷାଟାଏ ମାରିଲାରୁ ସେ ତଳେ ପଡ଼ିଲା । ଏ ଦୃଶ୍ୟ ସହି ନପାରି ଜନତା ଭିତରୁ ଜଣେ ତା' ମୁଣ୍ଡରେ ଗୋଟାଏ ପାହାର ବସାଇ ଦେଲା । ସେ ନଇଁ ପଡ଼ିଲା ଏବଂ ଉଠି ବିହ୍ୱଳ ହୋଇ ଦଉଡ଼ିଲା । ଦୁଇଆଡ଼ୁ ମାଡ଼ ବସୁଥିଲା । ଶେଷକୁ ତାକୁ ଟାଣି ନେଇ ପାହାଡ଼ରେ ଉପରୁ ନଦୀକୁ ଫିଙ୍ଗି ଦିଆଗଲା ।

ଅନ୍ୟମାନେ ଟାଉନ୍ ହଲ୍ ଭିତରେ ଅର୍ଦ୍ଧ ବୃତ୍ତାକାରରେ ଆଣ୍ଠେଇ ପଡ଼ି ପ୍ରାର୍ଥନା କରୁଥିଲେ । ପାବ୍‌ଲୋ ଯାଇ ପୁରୋହିତଙ୍କୁ ପଚାରିଲା ଏଥର କାହାପାଳି,

ଡନ୍ ରକାର୍ଡୋ ନାମକ ଜଣେ ବାହାର ପଡ଼ିଲା । ପୁରୋହିତ ତାକୁ ଆଶୀର୍ବାଦ କଲେ ଏବଂ ସେ କ୍ରୁଶ୍ ଚିହ୍ନକୁ ଚୁମ୍ବନ କରି ପଦାକୁ ଆସି ଏହି ଲୋକ ଗୁଡ଼ାଙ୍କୁ ତାଚ୍ଛଲ୍ୟ କରି ଏବଂ ସାଧାରଣତନ୍ତ୍ର ପ୍ରତିଷ୍ଠାନକୁ ଅବଜ୍ଞା କରି ଛେପ ପକାଇଲା । ଲୋକେ ତାକୁ ମୂଷଳରେ ପିଟି ପିଟି ଶୀଘ୍ର ମାରି ପାହାଡ଼ ଚୂଡ଼ାରୁ ନଦୀକୁ ଫିଙ୍ଗି ଦେଲେ । ଜନତା ମଧ୍ୟରେ ଘୋର ଉତ୍ତେଜନା, ଏବଂ ହତ୍ୟା କରିବାପାଇଁ ଅମାନୁଷିକ ବ୍ୟଗ୍ରତା ପ୍ରକଟିତ ହୋଇଗଲା । ଡନ୍ ରିକାର୍ଡୋ ନିଜର ସାହସିକତା ଏବଂ ଅବଜ୍ଞା ଭାବ ଯୋଗୁଁ ଜନତା ମନରେ ପାଶବିକ ହିଂସା ପ୍ରବୃତ୍ତି ଜନ୍ମାଇ ଦେଇଥିଲା । ଜନତାର ଉକ୍ତିରେ ବାଡ଼ବତା ନଥାଏ । ଯାହା ମନକୁ ଯାହା ଆସିଲା ସେହି ଅଶ୍ଳୀଳଗାଳି ଦେଉଥାନ୍ତି ଏବଂ କୁତ୍ସିତ ବିଦ୍ରୂପ କରୁଥାନ୍ତି ।

ଏହାପରେ ଜମିଦାରଙ୍କ ବଡ଼ପୁଅ ଡନ୍ ଫଷ୍ଟିନୋ ରିଭରୋ, ଟାଉନ୍‌ହଲ୍‌ରୁ ବାହାରି ଆସିଲେ । ଲୋକଟା ଟିକିଏ ରସିକ ପ୍ରକୃତିର ଥିଲାବୋଲି ଭଲ ଲୁଗାପଟା ପିନ୍ଧିଥିଲା । ଏବଂ ଲୋକେ ତାକୁ ଅତି ଅଶ୍ରାବ୍ୟ ବିଦ୍ରୂପ କରୁଥିଲେ । ସେ ପ୍ରଥମେ ସାହସର ସହିତ ଛିଡ଼ାହୋଇ ଲୋକମାନଙ୍କୁ ଗୃହିଁଲା । ତାପରେ ନିଜର ପରିଣାମ ଜାଣିପାରି ଭୟରେ ପଛେଇ ପଛେଇ ଟାଉନ୍‌ହଲକୁ ପଳାନ୍ତେ ତେଣୁ ପାବ୍‌ଲୋ ତାକୁ ଠେଲି ଠେଲି ଆଣିଲେ । ଅଧା ପଂକ୍ତି ଟପିଲି ପରେ ସେ ଆଉ ଗୃଲି ନପାରି ଆଣ୍ଠେଇ ପଡ଼ିଲା । ଏଥିରେ ଦୁଇଜଣ ଗୃଷୀ ତାଙ୍କୁ ଦୁଇକରରୁ ଧରନେଇ ଆସିଲେ । ଲୋକେ ନାନାଦି ବିଦ୍ରୂପ ହାଃ ମାରୁଥାନ୍ତି । ସେ ଶେଷକୁ ଆଉ ଗୃଲି ନପାରି ରାସ୍ତାରେ ହାମୋଡ଼ାଇ ପଡ଼ିଲା । ପଛରୁ ଜନତା ତାଙ୍କୁ ଗୋଡ଼ରେ ଠେଲି ଠେଲି ନେଉଥାନ୍ତି ଏବଂ ସେ ବ୍ୟାକୁଳ ଚିତ୍କାର କରୁଥାନ୍ତି । କିଏ କହୁଥାଏ କହୋ ଷଣ୍ଢ ଲଢ଼େଇ ମାଲ, କିଏ କହୁଥାଏ, ଶିକାର ବେଳେ କୁତା ହଗି ବସୁଚ୍ଛି କାହିଁକି, ଇତ୍ୟାଦି । ମଦୁଆ ଗୁଡ଼ାକଙ୍କର ଅସୁନ୍ଦର ଚିତ୍କାର । ଡନ୍ ଫଷ୍ଟିନୋଙ୍କ ମୃତ୍ୟୁ ଜନତାକୁ ଏକାବେଳେକେ ହିଂସ୍ର ପଶୁରେ ପରିଣତ କରି ପକାଇ ଥିଲା ।

ମୋ ହାତରେ ପିସ୍ତଲ ଦେଖି କିଏ କହିଲା "ତୁମେ ଜଣେ ସିଭିଲ ଗାର୍ଡ଼ ମାରି ଅଛକି ?" ମୁଁ ମନାକଲି । କହିଲି ଫାଙ୍କା ଆବାଜ କରିଥିଲି । ପିସ୍ତଲଟା ପାବ୍‌ଲୋ ମୋତେ ଦେଇଅଛି । ପାବ୍‌ଲୋ ପିସ୍ତଲରେ ସିଭିଲ୍ ଗାର୍ଡ଼ ମାନଙ୍କୁ ମାରିଅଛି । ଏହାକହି ସେ ଲୋକଙ୍କୁ ପିସ୍ତଲଟା ଦେଖିବାକୁ ଦେଲି । କିଛି ସମୟ ପାଇଁ ଟାଉନ୍-ହଲରୁ ଆଉ କେହି ବାହାରିଲେ ନାହିଁ । ଶେଷକୁ ଡନ୍ ଗୁଇଲ୍‌ରମୋ ଆସିଲେ । ଫ୍ୟାସିଷ୍ଟ ଦଳଭୁକ୍ତ ହେବା ଛଡ଼ା ଲୋକଟା ବିରୁଦ୍ଧରେ ଅନ୍ୟ ଅଭିଯୋଗ ନଥିଲା । ତାହାର ଦୋକାନରୁ ମୂଷଳ ଓ ଅନ୍ୟ ଗୃଷ ସାମଗ୍ରୀ ଲୋକେ କିଣୁଥିଲେ । ସେ

ସେଭଳି ବେଶୀ ଲଭ ମଧ୍ୟ ରହୁ ନଥିଲା । ତେବେ ଲୋକଙ୍କର କଥାବାର୍ତ୍ତା ବଡ଼ ରୁକ୍ଷ ଥିଲା । ତଥାପି ଜନତା ଉନ୍ମତ୍ତ ହୋଇପଡ଼ି ନଥିଲେ ଏବଂ କୋଡ୍ରେ ଓ ଫଷ୍ଟିନୋର ବ୍ୟବହାରରେ କ୍ଷିପ୍ତ ହୋଇ ନଥିଲେ ତାଙ୍କୁ ହୁଏତ ଛାଡ଼ିଦେଇ ଥାଆନ୍ତେ ।

ଧର ବସିଲେ ଜନସାଧାରଣ ହିଂସ୍ର ନୁହନ୍ତି । ସେମାନଙ୍କର ସ୍ୱାଭାବିକ ନ୍ୟାୟ ବୁଦ୍ଧି ମଧ୍ୟ ଥାଏ କିନ୍ତୁ ନାନା କାରଣରୁ ଏବଂ ଅତ୍ୟଧିକ ମଦ୍ୟପାନରେ ଲୋକେ ମନୁଷ୍ୟତ୍ୱ ହରାଇ ପକାନ୍ତି । ଅତନ୍ତଃ ପକ୍ଷରେ ସ୍ପେନ ଦେଶରେ ଏହାହିଁ ଦେଖାଯାଏ ।

ରବର୍ଟ୍ ଜର୍ଡ଼ାନ୍ କହିଲେ "ଏପରି ହେବା ସବୁ ଦେଶରେ ମଧ୍ୟ ସ୍ୱାଭାବିକ । ଥରେ ପିଲାଦିନେ ମୁଁ ଗୋଟିଏ ବାହାଘର ପାଇଁ ଓହିର୍ଜାକୁ ଯାଉଥିଲି । ସେଠା ଆଲୁଅ ଖୁଣ୍ଟରେ ଜଣେ ନିଗ୍ରୋକୁ ଫାସିଦେଇ ପରେ ପୋଡ଼ିବାର ଦେଖିଥିଲି ।"

ମେରିଆ ପଗ୍ଚରିଲା "ଜଣେ ନିଗ୍ରୋକୁ ପୋଡ଼ିଦେଲେ ? କି ନୃଶଂସତା ।"

ପିଲାର୍ ପଗ୍ଚରିଲା "ସେମାନେ କଅଣ ମାତାଲ ହୋଇଥିଲେ ?"

ରବର୍ଟ ଜର୍ଡ଼ାନ୍ କହିଲେ "ମୁଁ ସେତେବେଳେ ପିଲା । ଘର ଭିତରେ ଥାଇ ଝିଡ଼ିକି ବାଟେ ଏହା ଦେଖିଥିଲି ଏଣୁ ମଦପିଆ କଥା କହିପାରିବି ନାହିଁ ।"

ମେରିଆ କହିଲା "ସର୍କସ ଛଡ଼ା ମୁଁ ନିଗ୍ରୋ ଦେଖିନାହିଁ । ଆଚ୍ଛା ମୁର୍ମାନେ କଅଣ ନିଗ୍ରୋ ?"

ପିଲାର୍ ଜବାବ ଦେଲା "କେତେକ ନିଗ୍ରୋ, ପୁଣି କେତେକ ନିଗ୍ରୋ ନୁହନ୍ତି ।"

ଏହାପରେ ସେହି ଫ୍ୟାସିଷ୍ଟଙ୍କ କଥା ପଡ଼ିଲା । ଡନ୍ ଗୁଇଲରମୋଙ୍କୁ ଚସମା ଛଡ଼ା ଭଲ ଦିଶେ ନାହିଁ । ସେ ଧୀର ଭାବରେ ପ୍ରାର୍ଥନା କରି କରି ଗ୍ଚଲି ଆସିଲେ । ସେ ସେପରି ଜଣାଶୁଣା ଫ୍ୟାସିଷ୍ଟ ନଥିଲେ । କେବଳ ମାତ୍ର ନିଜ ସ୍ତ୍ରୀର ଉପରୋଧରେ ଫ୍ୟାସିଷ୍ଟ ଦଳରେ ମିଶିଥିଲେ । ତାଙ୍କର ସ୍ତ୍ରୀ କୋଠା ଉପରୁ ତାଙ୍କୁ ଦେଖି କାନ୍ଦି କାନ୍ଦି କହିଲା ରୁହ ମୁଁ ମଧ୍ୟ ଯିବି । ମାତ୍ର ସେ ମୁହଁ ନ ଫେରାଇ ହାତ ହଲାଇ ବିଦାୟ ନେଲେ । ଅଳ୍ପପରେ ଜନତାଭିତରୁ କିଏ ଜଣେ ବଦମାସି କରି ତାଙ୍କ ସ୍ତ୍ରୀ କଣ୍ଠ ଅନୁକରଣରେ ଡାକବାରୁ ସେ ସେହି ଶବ୍ଦ ଆଡ଼କୁ ଧାଇଁଲେ । ଏତିକିବେଳେ ଜଣେ ମଦୁଆ ତାଙ୍କ ମୁଣ୍ଡକୁ ପିଟିଲା । ସେ ବସିପଡ଼ିଲେ । ପରେ ଏପରି ବିକଳ ଦୃଶ୍ୟ ସହି ନପାରି ଭଲ ଲୋକ ମାନେ ପଂକ୍ତିରୁ ଗ୍ଚଲିଗଲେ ଏବଂ ତାଙ୍କ ଜାଗାରେ ମଦୁଆ

ଗୁଣ୍ଡାମାନେ ଠିଆହୋଇ ଗଲେ । ଅନ୍ୟମାନଙ୍କ ପରି ଡନ୍ ଗୁଇଲରମୋଙ୍କୁ ମାରି ଦିଆଗଲା । ଗୁଳିକରି ମାରିବା ଗୋଟାଏ କଥା କିନ୍ତୁ ଏପରି ଭାବରେ ମାରିବା ଏକ ଦାନବୀୟ କାଣ୍ଡ । କେତେଲୋକ ବିରକ୍ତିରେ ଓ ଘୃଣାରେ ସେଠାରେ ଦର୍ଶକ ହୋଇ ରହି ପାରିଲେ ନାହିଁ । ମୋ ମନ ମଧ୍ୟ ବିଷାକ୍ତ ହୋଇ ଉଠିଲା । ମାରିବାକୁ ହେଲେ ସଭ୍ୟଧାରଣରେ ମାରିବା ଉଚିତ ବୋଲି ଅନେକ ଲୋକ ମତ ପ୍ରକାଶ କଲେ ।

ଅନେକ ଅନ୍ୟ ସହରର ଖବର ଜାଣିବାକୁ ବ୍ୟଗ୍ରହେଲେ ମାତ୍ର ଟେଲିଫୋନ ତାର ଯୋଡ଼ା ଯାଇ ନଥିବାରୁ ଖବର ମିଳୁ ନଥିଲା । କେତେକ କହିଲେ ଏପରି ନିର୍ମମ ମଣିଷର ହତ୍ୟାଲୀଳା ଅପେକ୍ଷା ସହରର ସୁରକ୍ଷା ବ୍ୟବସ୍ଥା ହେଉଛି ବଡ଼ କାମ । ଇତମଧ୍ୟରେ ମାତାଲ ହୋଇ ଦୁଇଜଣ ପଡ଼ିଯିବାରୁ ପଂକ୍ତି ଭାଙ୍ଗିଗଲା । ବହୁତ ହଟଗୋଳ ଚାଲିଲା ।

ହଠାତ୍ ଟାଉନ୍ ହଲ୍ ଭିତରୁ ପାବ୍ଲୋ ଏବଂ କ୍ୱାଆନ୍ତ୍ରୋ ଜିତୋଡ଼ାସ୍; ଜଣେ ମୋଟା ବ୍ୟକ୍ତିକୁ ଠେଲି ଠେଲି ଆଣିବାର ଦେଖାଗଲା । ସମସ୍ତେ ବେକ ଲମ୍ବାଇ ତାକୁ ଅନାଇଲେ । ସେ ସହରର ସବୁଠାରୁ ମୋଟା ମଣିଷ । ଜୀବନବୀମା ଏବଂ ଧାନ ଚାଉଳ କାରବାରରେ ସେ ଅନେକ କମ୍ପାନୀର ଏଜେଣ୍ଟ । ଲୋକଟା ଆଉ ପଂକ୍ତି ଭିତରକୁ ଆସି ପାରିଲା ନାହିଁ । ଦୁଆର ମୁହଁରୁ ହିଂସ୍ର ଜନତା ତା ଉପରେ ଝାମ୍ପ ଦେଲା । ସେ ପଡ଼ିଗଲା ଏବଂ ଆଉ ଉଠିଲା ନାହିଁ । ଏହାପରେ ଲୋକେ ଜବରଦସ୍ତି ଟାଉନ୍ ହଲ୍ ଭିତରେ ପଶିବାକୁ ଚେଷ୍ଟାକଲେ । ଘର ଭିତରେ ଆଉ କେତେ ଜଣ ପ୍ରାର୍ଥନା କରୁଥାନ୍ତି । ପୁରୋହିତ ମଧ୍ୟ ତାଙ୍କ ସଙ୍ଗରେ ଥିଲେ । ପାବ୍ଲୋ ଗୋଟିଏ ଚଉକି ଉପରେ ବସି ସିଗ୍ରେଟ୍ ଟାଣୁଥାଏ । ବାହାରୁ 'କବାଟ ଫିଟାଅ, କବାଟ ଫିଟାଅ' ସ୍ୱର ଉଠୁଥାଏ । ପଛପଟୁ ଠେଲା ଜୋର୍‌ରେ କେତେ ଜଣ ମାଟି କାମୋଡ଼ି ପଡ଼ିଗଲେ ଏବଂ ପାଦରେ ଦଳା ହୋଇଗଲେ । କେତେଜଣ ଟାଉନ୍‌ହଲ୍‌ରେ ନିଆଁ ଲଗାଇବାକୁ ଚେଷ୍ଟାକଲେ । ଏଣେ ପାବ୍ଲୋ ପୁରୋହିତଙ୍କୁ ଶୀଘ୍ର କାମ ସାରିବାକୁ ବାରମ୍ବାର କହିଲା । ଏହାପରେ ଡନ୍ ଜୋସ୍ କାଷ୍ଟ୍ରୋ ନାମକ ଘୋଡ଼ା ବେପାରି ଉଠି ଦୁଆର ମୁହଁକୁ ଗଲା । କବାଟରେ ତାଲା ବନ୍ଦ । ସେ ଫେରିଆସି ପ୍ରାର୍ଥନାରେ ବସିଗଲା । ବାହାରୁ ଚିତ୍କାର ରବ ଏତେ ବେଶୀ ହେଲାଯେ କୌଣସି କଥା ବୁଝିବାର ଉପାୟ ନଥିଲା । ପାବ୍‌ଲୋ ପୁରୋହିତଙ୍କୁ କଅଣ କହିଲେ ମାତ୍ର ପୁରୋହିତ କିଛି ଜବାବ ଦେଲେ ନାହିଁ । ପାବ୍‌ଲୋ ନିଜ ବନ୍ଧୁକ ଉଠାଇଲା । ନିଜର ସଙ୍ଗୀମାନଙ୍କୁ ବନ୍ଧୁକ ନେଇ ଘରର ଶେଷ ମୁଣ୍ଡକୁ ଯିବାକୁ କହିଲା । ପାବ୍‌ଲୋ ପୁଣି ୨ଥର ପୁରୋହିତଙ୍କୁ ଚାବି ଦେଖାଇ କଅଣ କହିଲା କିନ୍ତୁ ସେ ପ୍ରାର୍ଥନା କରିବାକୁ ଲାଗିଲେ । ଏହାପରେ ପାବ୍‌ଲୋ ଆଉ ଗୋଟାଏ ସିଗ୍ରେଟ ବନାଇ ଟାଣି ଟାଣି ଚାବିଟା ପ୍ରହରୀ ହାତକୁ ଫିଙ୍ଗି

ଦେଲା । ପ୍ରହରୀ କବାଟ ଫିଟାଇ କରପଟିଆ ହୋଇଗଲା ଏବଂ ବନ୍ଧ ଭଙ୍ଗା ସୁଅପରି କ୍ଷିପ୍ର ଜନତା ଭିତରେ ପଶି ପିଟାପିଟି ଦଲା ଚକଟା କରିବାକୁ ଲାଗିଗଲେ । ପୁରୋହିତଙ୍କୁ ଧରି ତଳମୁହାଁ କରି ଦାଆ ଦ୍ୱାରା ହାତଗୋଡ଼ କାଟିଦେଇଲେ । ବହୁତ ହାତଗୋଡ଼ ଘର ଭିତରେ ପଡ଼ିରହିଲା । ଏମିତି ଭାବରେ ସହରର ଫ୍ୟାସିଷ୍ଟମାନଙ୍କର ଧ୍ୱଂସ ଘଟିଲା । ଏ ଦୃଶ୍ୟ ଆଖିରେ ଦେଖିବାର ନୁହେଁ କିମ୍ବା ନ ଦେଖିଲେ ବିଶ୍ୱାସ କରିହେବ ନାହିଁ । ଶେଷକୁ ଯେଉଁ ମଦୁଆଟା ଜଣେ ଦଲାଚକଟାରେ ଦରମରା ହୋଇଥିବା ମଣିଷକୁ କିରାସିନ ଢାଳି ପୋଡ଼ିବାକୁ ଯାଉଥିଲା ତାକୁ ଜଣେ କିଏ ଆମରି ତରଫର ଲୋକ ମୂଷଳରେ ପିଟି ପୂର୍ବୋକ୍ତ ଲୋକଟାକୁ ଗାଡ଼ିରେ ଲଦି ନେଇ ପାହାଡ଼ ଉପରୁ ନଦୀକୁ ଫିଙ୍ଗିଦେଲା ।

ସେ ଦିନ ରାତିରେ ଆମ ଦଳର ସଭା ବସିପାରିଲା ନାହିଁ, କାରଣ ଅଧିକାଂଶ ତାହା ମାତାଲ ହୋଇ ଯାଇଥିଲେ ।

ସେ ଦିନ ରାତିରେ ମୁଁ ପାବ୍‌ଲୋ ସାଙ୍ଗରେ ଶୋଇଲି । ଖିଆପିଆ ମଧ୍ୟ କଲୁ କିନ୍ତୁ ଏତେ କ୍ଲାନ୍ତ ହୋଇ ଯାଇଥିଲୁଯେ କେହି ମୁହଁ ଫିଟାଇ ନଥିଲେ । ଲଜ୍ଜା ଓ ଅନ୍ୟାୟ କାର୍ଯ୍ୟ ପାଇଁ ମୁଁ ଅତ୍ୟନ୍ତ ବିମର୍ଷ ହୋଇ ପଡ଼ିଥିଲି, ଯେମିତି ବିମର୍ଷ ଆଜି ଉଡ଼ାଜାହାଜ ଦେଖି ହୋଇଅଛୁ । ଗୋଟାଏ ଅମଙ୍ଗଳ ଆଶଙ୍କା ମୋର ଜାତ ହେଲା ଯେମିତି ଆଜି ହୋଇଅଛୁ ଏବଂ ସେଦିନ ମଧ୍ୟ ୩ଦିନ ପରେ ଅମଙ୍ଗଳ ଘଟିଥିଲା । ଗୋଟିଏ ହୋଟଲରେ ବସି ଭୋଜନ କରୁ କରୁ ପାବ୍‌ଲୋ ମୋତେ ପଚାରିଥିଲା ଦୃଶ୍ୟଟା ମୋତେ ଭଲ ଲାଗିଲା କି ? ମୁଁ ଜବାବ ଦେଇଥିଲି ଡନ୍ ଫଷ୍ଟିନୋ ଛଡ଼ା ବାକୀ ସବୁଙ୍କ ମୃତ୍ୟୁରେ ମୁଁ ବ୍ୟଥା ପାଇଅଛୁ । କିନ୍ତୁ ସବୁଯାକ ଦୃଶ୍ୟ ପାବ୍‌ଲୋକୁ ଭଲ ଲାଗିଲା ବୋଲି ସେ ମୋତେ କହିଲା । ପାବ୍‌ଲୋ ପୁରୋହିତଙ୍କୁ ଘୃଣା କରେ । ଏଣୁ ମୁଁ ପଚାରିଥିଲି "ପୁରୋହିତ ମୃତ୍ୟୁ ତୋତେ ଭଲ ଲାଗି ନଥିବ ।"

ପାବ୍‌ଲୋ ଦୁଃଖରେ କହିଲା 'ମୋହର ଗୋଟାଏ ମାୟା ସେ ଭାଙ୍ଗି ଦେଇଅଛୁ । କାରଣ ମରିବାବେଳେ ସେ ଅଧୀର ହତାଶ ଓ ବ୍ୟାକୁଳ ହୋଇ ମଲା । ସେ ପୁରୋହିତ ଏଣୁ ନିର୍ଭୀକଭାବେ ମୃତ୍ୟୁବରଣ କରି ଅନ୍ୟକୁ ଆଦର୍ଶ ଦେଖାଇବା ଉଚିତ ଥିଲା । ବିଶେଷ କରି ସେ ସ୍ପେନଦେଶୀୟ ପୁରୋହିତ ।'

ମୁଁ କହି ପକାଇଲି "ସେ ଖୁବ୍ ଭଲଭାବରେ ମୃତ୍ୟୁକୁ ଆଲିଙ୍ଗନ କଲା । କୌଣସି ପ୍ରକାର ଆନୁଷ୍ଠାନିକତା ପ୍ରକାଶର ସୁବିଧା ସୁଦ୍ଧା ପାଇ ନଥିଲା ?"

ପାବ୍‌ଲୋ କହିଲା 'ନା ସାରାଦିନ ମୁଁ ପୁରୋହିତ ମୃତ୍ୟୁ ଦେଖିବାକୁ ଅପେକ୍ଷା କରିଥିଲି । ଭାବିଥିଲି ସେ ସମସ୍ତଙ୍କ ଶେଷକୁ ଆସିବ । ବଡ଼ ଆଶାରେ ମୁଁ ଅପେକ୍ଷା

କରିଥିଲେ । ପୁରୋହିତ ମରିବା ମୁଁ କେବେ ଦେଖି ନଥିଲି କିନ୍ତୁ ତାହାର ମୃତ୍ୟୁ ଦୃଶ୍ୟରେ ମୁଁ ହତାଶ ହୋଇଅଛି । ପୁରୋହିତ ସମ୍ବନ୍ଧରେ ମୋ ବିଶ୍ୱାସ ତୁଟି ଯାଇ ଅଛି ।'

'ଆଜିତ ମୋତେ ବିପ୍ଳବର ଅଘୁମାରମ୍ଭ' ମୁଁ ବ୍ୟଙ୍ଗ କରି କହିଲି ।

'ନା—ମୋ ବିଶ୍ୱାସ ତୁଟିଯାଇଛି ।' 'ତୁ ବୁଝୁ ନାହୁଁ ପିଲାର୍ । ସେ ଜଣେ ସ୍ପେନଦେଶୀ ପୁରୋହିତ ।' ପାବ୍‌ଲୋ କହିଲା ।

ମୁଁ କହିଲି "ସ୍ପେନଦେଶୀୟ ବୋଲି ବୃଥା ଗର୍ବ ଛଡ଼ା ଅଉ କଅଣ ଅଛି ? ମରିବା ସଭିଙ୍କର ସମାନ, ମରିବାକୁ ସମସ୍ତଙ୍କର ଭୟ । ତୁମେ କଅଣ କ୍ୟୁହି ଇଂରେଜ ?"

ରବର୍ଟ ଜର୍ଡ଼ାନ୍ କହିଲେ 'ଦିନ ପ୍ରାୟ ୧୨ଟା, ଚାଲିଯିବା ।'

ପିଲାର୍ କହିଲା 'ହଁ ଯିବା, କିନ୍ତୁ ପାବ୍‌ଲୋ କଥାଟା ଶେଷ କରିଦିଏ । ସେ ଦିନ ରାତିରେ ସେ ମୋତେ କହିଲା ଆଜି ରାତିରେ କିଛି କରିବା ନାହିଁ ।'

ମୁଁ କହିଲି 'ଭଲ କଥା, ମୁଁ ବଡ଼ ଖୁସି ।'

'ଏତେ ଲୋକ ମାରି ପକାଇ ଯୌନ କ୍ରିୟା କଲେ କୁରୁଚି ପ୍ରକାଶ ପାଇବ ।'

ମୁଁ କହିଲି "ଆହା ମୋ ଜିତେନ୍ଦ୍ରିୟ ସାଧୁ ପୁରୁଷ । ମୁଁ ବହୁ ବର୍ଷ ଷଣ୍ଢ ଲଢ଼ୁଆ ଲୋକଙ୍କ ସଙ୍ଗେ କଟାଇଅଛି ଏବଂ ଲଢ଼େଇ ପରେ ତାଙ୍କ ଢଙ୍ଗ ମୋତେ ଅଜଣା ବୋଲି ଭାବୁଛୁ ?'

ପାବ୍‌ଲୋ କହିଲା 'ପିଲାର ମୋ କଥା ବିଶ୍ୱାସ କର । ଆଜିଠାରୁ ମୋର ସବୁ ଶେଷ । ମୋତେ ଗାଳି ଦେ ନାହିଁ ।'

ସେଦିନ ରାତିରେ ସେ ସାନ ଶିଶୁପରି ଶୋଇଗଲା । ସକାଳେ ମୁଁ ତାକୁ ଉଠାଇଲି । ମାତ୍ର ସାରା ରାତି ମୁଁ ଶୋଇ ନଥିଲି । ମୁଁ ଜାଗିରହି ଚଉକିରେ ବସି ଝିଅ୍ଡ଼ିକିବାଟେ ସେହି ରାସ୍ତାକୁ ଚାହିଁ ରହିଥିଲି । ଦିନମାନର ଜଘନ୍ୟ ଦୃଶ୍ୟ ମୋ ଆଖି ଆଗରେ ନାଚି ଯାଉଥିଲା । ରାତିଟା ନିଥର, ନୀରବ, କେବଳ ଝରଣାରୁ ଝରଝର ଜଳପତନର ଧ୍ୱନି । ଜଣେ ସ୍ତ୍ରୀଲୋକର ବିକଳ ବିଳାପ ଶୁଣି ମୁଁ ଅଳିନ୍ଦ ପାଖକୁ ଯାଇ ଦେଖିଲି ଡନ୍ ଗୁଇଲ୍‌ର ମୋର ସ୍ତ୍ରୀ କାନ୍ଦୁଅଛି । ମୁଁ ଘର ଭିତରକୁ ପଳାଇଗଲି । ମୋ ଜୀବନରେ ସେ ଦିନଟା ସବୁଠାରୁ ଦୁର୍ଯ୍ୟୋଗ । ଆଉ ଗୋଟିଏ ଦିନ - ଛଡ଼ା ।'

ମେରଆ ପଚାରିଲା 'ଅନ୍ୟ ଦନଟି ?'

ଟଙ୍କଣାର ୩ଦିନ ପରେ ଫ୍ୟାସିଷ୍ଟ୍‌ମାନେ ସହରକୁ ପୁନର୍ଦଖଲ କଲେ ।

ମେରଆ କହିଲା 'ଆଉ ସେ କଥା । ଯାହା ଶୁଣିଲଣି ତାହାହିଁ ଯଥେଷ୍ଟ ।'

'ମୁଁ ତ ତୋତେ ଶୁଣାଇବାକୁ ରଜି ନଥିଲ । ସେ କଥା ପଢ଼ିଲୁ କହି ଦେଇଥିଲ । ବର୍ତ୍ତମାନ ତୁ ଭୟଙ୍କର ସ୍ୱପ୍ନ ଦେଖିବୁ ।'

ମେରଆ କହିଲା 'ନା ସ୍ୱପ୍ନ କଥା ନୁହେ, କିନ୍ତୁ ମୁଁ ଆଉ ଶୁଣିପାରିବ ନାହିଁ ।'

ରବର୍ଟ ଜର୍ଡାନ୍ କହିଲେ 'ତେବେ ଥାଉ, ଆଉ କେବେ କହିବ ।'

ପିଲାର୍ କହିଲା 'ହଁ, କିନ୍ତୁ ମେରଆ ପକ୍ଷରେ ଏହା ଖରାପ ହେବ ।'

ମେରଆ କହିଲା 'ନା, ମୁଁ ଶୁଣିବାକୁ ଇଚ୍ଛୁକ ନୁହେ, ମୁଁ ଥିଲାବେଳେ ତୁ କହିବୁ ନାହିଁ, ନଚେତ ଇଚ୍ଛା ନଥିଲେ ମଧ୍ୟ ମୁଁ ଶୁଣି ପକାଇବ ।'

ପିଲାର୍ କହିଲା 'ଆଲୋ ଲାଣ୍ଡି, ବ୍ୟସ୍ତ ହୁଅନା—ମୁଁ କହିବ ନାହିଁ । ଆଉ କେବେ ଇଂରେଜକୁ ଏକୁଟିଆ କହିବ ।'

'କିନ୍ତୁ ସେ ଯେଉଁଠି ଥିବେ ମୁଁ ତ ସେଇଠି ରହିବ, ଅତଏବ ତୁ ଆଦୌ କହିବୁ ନାହିଁ ।'

'ତୁ କାମ କରୁଥିଲାବେଳେ ମୁଁ କହିବ ।'

"ନା ନା ଆଦୌ କହିବୁ ନାହିଁ ।"

'କିନ୍ତୁ ଯେତେବେଳେ ଆରମ୍ଭ କରିଛୁ ବାକିତକ କହିବା ଉଚିତ । ତେବେ ତୁ ଶୁଣିପାରିବୁ ନାହିଁ ।'

'ଏହି ହତ୍ୟା ବର୍ଣ୍ଣନା ଛଡ଼ା ତୋର କଅଣ ଅନ୍ୟ କିଛି ପ୍ରୀତିକର କଥା ନାହିଁ ?'

ପିଲାର କହିଲା 'ଆଜି ଦ୍ୱିପ୍ରହରକୁ ତୁ ଆଉ ଇଂରେଜ ମନଇଚ୍ଛା କଥା ହୁଅ ।'

'ତେବେ ସେ ଦ୍ୱିପ୍ରହର ଉଡ଼ିଉଡ଼ି ଆସିଯାଉ ।'

"ହଁ, ଉଡ଼ି ଆସିବ ଆଉ ସେମିତି ବାହୁଡ଼ି ଯିବ ।"

"ଆଗେ ଆସୁ ।"

# ଏକାଦଶ ପରିଚ୍ଛେଦ

ଦେବଦାରୁ ବଣ ଭିତରେ ସେମାନେ ଅଧିତ୍ୟକାସ୍ଥ ପ୍ରାନ୍ତରରୁ ତଳକୁ ଖସି ଉପତ୍ୟକାରେ ପହଞ୍ଚିଲେ । ଉପରେ ନଦୀର ସମାନ୍ତର ଭାବରେ ଉଠାଣି ଉଠି କ୍ରମେ ଗୋଟିଏ ଚକ୍ରାକାରରେ ବୁଲିବୁଲି ପାହାଡ଼ ଚୂଡ଼ାରେ ଚଢ଼ିଲେ । ଏତିକିବେଳେ ଜଣେ ଲୋକ ବନ୍ଧୁକ ଧରି ଗୋଟାଏ ଗଛ ଉହାଡରୁ ବାହାରି ପଡ଼ି ତାଙ୍କୁ ଅଟକିବାପାଇଁ କହି ପିଲାର୍‌କୁ ଚିହ୍ନି ପଚାରିଲା "ତୋ ସାଙ୍ଗରେ ଏ ଜଣକ କିଏ ?"

ପିଲାର୍ ଜବାବ ଦେଲା "ସେ ଜଣେ ଇଂରେଜ ଏବଂ ତାଙ୍କ ନାମ ହେଉଛି ରବର୍ଟୋ । କି ଭୟଙ୍କର ଢଳା ଉଠାଣିରେ ବାବା !"

ପ୍ରହରୀ ଜଣକ ରବର୍ଟ ଜର୍ଡାନ୍‌ଙ୍କୁ ନମସ୍କାର କରି କରମର୍ଦ୍ଦନ ପାଇଁ ହାତ ବଢ଼ାଇ କୁଶଳ ପ୍ରଶ୍ନ କଲା । ଜର୍ଡାନ୍ ତାକୁ ପ୍ରତ୍ୟଭିବାଦନ କଲେ । ଲୋକଟା ଥିଲା ଯୁବକ । ମୁଣ୍ଡରେ ଟୋପି ନଥିଲା । ହାଲୁକା ସରୁ ଦେହର ଗଠନ, ନାକଟା ଛଞ୍ଚାଣ ପରି, ହନୁହାଡ଼ ବଡ଼ ଏବଂ ଧୂସରିଆ ଆଖି । କେଶ କଳା ଓ କର୍କଶ । ସେ ଖୁବ୍ ବଳିଷ୍ଠ ଭାବରେ କରମର୍ଦ୍ଦନ କରି ବନ୍ଧୁଭାବର ସୂଚନା ଦେଲା । ସେ ମେରିଆକୁ ମଧ୍ୟ ଅଭିବାଦନ ଜଣାଇ ସେ କ୍ଲାନ୍ତ ହୋଇଛି କି ନାହିଁ ପଚାରିଲା । ମେରିଆ କହିଲା "ଯୋଆକ୍ୱିନ୍, ଆମେ ଚାଲିବା ଅପେକ୍ଷା ବହୁବେଳ ଏକ ଜାଗାରେ ବସି ଗପ କରୁଥିଲୁ ।"

ଯୋଆକ୍ୱିନ୍ ପଚାରିଲା "ତୁମେ କଅଣ ଡାଇନାମାଇଟ୍ ଫୁଟାଇବା ଲୋକ ? ଆମେ ତୁମ କଥା ଶୁଣିଅଛୁ ।"

ରବର୍ଟ ଜର୍ଡାନ୍ କହିଲେ "ହଁ ମୁଁ ଡାଇନାମାଇଟ୍‌ବାଲା । ଆମେ ପାର୍ଟିଲୋକେ ସେଠାରେ ରାତି କଟାଇଥିଲୁ ।"

'ତୁମକୁ ଦେଖି ମୁଁ ବଡ଼ ଖୁସି । ଟ୍ରେନ୍‌ପାଇଁ ଆସିଛ ?'

ରବର୍ଟ ଜର୍ଡାନ୍ ହସି ପକାଇ ପଚାରିଲେ "ତୁମେ କଣ ଗତ ଟ୍ରେନବେଳେ ଥିଲ ?"

ଯୋଆକ୍ୱିନ୍ କହିଲେ "ମୁଁ ଫେର୍ ନଥିଲି ? ତେବେ ଇଏ କେଉଁଠୁ ଆସିଲା କୁଆଡୁ ? ଏହା କହି ମେରିଆକୁ ଦେଖାଇ କହିଲେ 'ଏହାକୁ ପରା ସେଇଠାରୁ ପାଇଥିଲୁ ।' ତୁ ବଡ଼ ସୁନ୍ଦରୀ ହେଲୁଣି । ତୋତେ କେହି ସେକଥା କହିଲଣି ତ ?"

ମେରିଆ କହିଲା 'ହଉ, ମୁହଁ ବନ୍ଦକର ଯୋଆକ୍ୱିନ୍ ! ତୋତେ ଧନ୍ୟବାଦ । ବାଳ କଟାଇଲେ ତୋ ଚେହେରା ବଦଳିଯିବ ।'

ଯୋଆକ୍ୱିନ୍ କହିଲା 'ତୁ ପରା ଏତେ ଟିକେ ଥିଲୁ ? ମୁଁ ତୋତେ କାନ୍ଧରେ ବସାଉଥିଲି ?'

ପିଲାର୍ ଗମ୍ଭୀର କଣ୍ଠରେ କହିଲେ 'ତୁ ଏକା ନୋହୁ, କିଏ ଅବା ତାକୁ ନ କାନ୍ଧେଇଛି । ବୁଢ଼ା କାହିଁ ?'

'କ୍ୟାମ୍ପରେ ଅଛି ।'

'କାଲି ରାତିରେ କେଉଁଠି ଥିଲା ?'

'ସେଗୋଭିଆରେ ।'

'କିଛି ଖବର ଆଣିଛି ?'

'ହଁ ।'

"ଭଲ ନା ମନ୍ଦ ?"

"ମନ୍ଦ ।"

'ଉଡ଼ାଜାହାଜ ଦେଖିଥିଲ ?'

'ହଁ କିନ୍ତୁ ମୋତେ ସେକଥା କୁହନାହିଁ ସାଥୀ ଡାଇନାମାଇଟ୍‌ବାଲା । ସେ ସବୁ କି ବିମାନ ?'

'ହିଙ୍କେଲ୍ ୧୧୧ ବୋମାରୁ । ହିଙ୍କେଲ୍ ଓ ଫିଆଟ୍ ।' ରବର୍ଟ ଜର୍ଡାନ୍ କହିଲେ ।

'ତଳଆଡ଼କୁ ଡେଣାଥିବା ସେ ବଡ଼ ବିମାନଗୁଡ଼ିକ କଅଣ ?'

'ସେଗୁଡ଼ିକ ହେଉଛି ହୁଙ୍କେଲ୍ ୧୧୮ ।'

"ଯେଉଁ ନାମ ଦିଅ, ସେ ସବୁ ଖରାପ । -ହଁ, -ମୁଁ ତୁମକୁ ତେର କରାଇ ଦେଉଛି । ମୁଁ ତୁମକୁ ସେନାପତି ପାଖକୁ ନେଇଯିବି ।"

'ସେନାପତି ପାଖକୁ ?' ପିଲର୍ ପଚାରିଲା ।

ଯୋଆକ୍ୱିନ କହିଲା 'ସାଥୀଙ୍କ ଅପେକ୍ଷା ସେନାପତି କହିବା ଅଧିକ ସାମରିକ କାଯ୍ଦିଦାର କଥା ।'

ପିଲର୍ ହସି ପକାଇ କହିଲା 'ତୁ ତ ସାମରିକ କାଯ୍ଦିଦାର ମୁଣ୍ଡପାତ କରୁଅଛୁ ।'

ଯୋଆକ୍ୱିନ କହିଲା 'ତା ନୁହେ । ସାମରିକ ପଦ ସବୁ ଆଦେଶଜ୍ଞାପନ ଏବଂ ଶୃଙ୍ଖଳା ରକ୍ଷା ପକ୍ଷରେ ବଡ଼ ସୁବିଧାଜନକ ।'

ପିଲର୍ କହିଲା 'ହେଇଥିଟି ଜଣେ ତୋ ରୁଚିର ଲୋକ । ଇଂରେଜ ଜାତିର ଖୁବ୍ ଗମ୍ଭୀର ।'

ମେରିଆକୁ ଯୋଆକ୍ୱିନ କହିଲା 'ତୋତେ କାନ୍ଧେଇ କରି ନେବି କି ?' ଏହା କହି ତା କାନ୍ଧରେ ହାତ ରଖି ହସିଦେଲା । ମେରିଆ କହିଲା ଯେଉଁ ଥରଟିଏ କରିଥିଲୁ ସେତିକି ଯଥେଷ୍ଟ ।

'ତୋର ମନେଅଛି ?' ସେ ପଚାରିଲା ।

ମେରିଆ କହିଲା 'ମୋତେ ବୋହିନେବା ମନେ ଅଛି, କିନ୍ତୁ ତୁ ବୋଲି ମନେ ନାହିଁ । ଜିପ୍‌ସି ମୋତେ ବହିବା ଜାଣେ କାରଣ ସେ ମୋତେ ବହୁବାର ପକାଇ ଦେଇଥିଲି । ସେ ଯାହାହେଉ ତୋତେ ଧନ୍ୟବାଦ । ଦିନେ ମୁଁ ତୋତେ ବହିନେବି ।'

ଯୋଆକ୍ୱିନ୍ କହିଲା 'ମୋର ଖୁବ୍ ଭଲ ସ୍ମରଣ ଅଛି । ଥରେ ତୋ ଦୁଇ ଗୋଡ଼ ଧରିଥିଲି ତୋ ପେଟ ମୋ କାନ୍ଧରେ ଥିଲା, ତୋ ମୁଣ୍ଡ ମୋ ପିଠିରେ ଏବଂ ବାହୁ ମୋ ବେକରେ ଝୁଲୁଥିଲା ।'

ମେରିଆ ହସି ଦେଇ କହିଲା 'ତୋର ସ୍ମରଣ ଶକ୍ତି ଖୁବ୍ ପ୍ରଖର ଦେଖୁଛି । ମୋର କିନ୍ତୁ ତୋ କାନ୍ଧ, ପିଠି, ବେକ କିଛି ମନେ ନାହିଁ ।'

ଯୋଆକନ୍ କହିଲା 'ଆଉ କିଛି ଜାଣିବାକୁ ଚାହୁଁ ?'

'କେଉଁ କଥା ?'

'ତୁ ମୋ ପିଠିରେ ଝୁଲୁଥିଲା ବେଳେ ପଛପଟୁ ଘନଘନ ଗୁଳି ଆସୁଥିଲା ?'

ମେରଆ କହିଲା "କେଡ଼େ ନପଟ ଓଲୁଟା । ଗିପ୍ସି କଅଣ ଏଇଥିପାଇଁ ମୋତେ କାନ୍ଦଉଥିଲା ?"

'ସେଥିପାଇଁ, ଆଉ ତୋ ଗୋଡ଼ ଧରିବା ପାଇଁ ।'

'ଆହାରେ ମୋର ଧନୁର୍ଦ୍ଧର, ଆହାରେ ମୋର ରକ୍ଷାକର୍ତ୍ତା ।'

ପିଲାର୍ କହିଲା 'ଶୁଣ ଟୋକି, ଏହି ଟୋକା ତୋତେ ବହୁତ କାନ୍ଦେଇ ଅଛି । ସେତେବେଳେ ତୋ ଗୋଡ଼ ଚଳୁ ନଥିଲା । ପଛରୁ ଗୋଲି ଚାଲିଥାଏ । ତୋତେ ସେ ପକାଇ ଦେଇ ସହଜରେ ଗୁଳି ରେଞ୍ଜର ସୀମାରୁ ଖସିଯାଇ ପାରିଥାନ୍ତା ।'

ମେରଆ କହିଲା "ମୁଁ ତାକୁ ଧନ୍ୟବାଦ ଦେଇ ସାରିଛି ଏବଂ ପରେ ତାକୁ କାନ୍ଦେଇବ । ମୋତେ ଥଟ୍ଟା କରିବାକୁ ଦିଅ । ମୁଁ କାନ୍ଦିବାକୁ ଚାହେଁନା ।"

ଯୋଆକ୍ୱିନ୍ ମେରଆକୁ ଚିଡ଼େଇବା ପାଇଁ କହିଲା 'ଯେ·ସେ ତାକୁ ପକାଇ ଦେଇ ଥାଆନ୍ତା । କେବଳ ପଛରୁ ପିଲାର୍ ଗୁଳି ମାରିବା ଡରରେ ପକାଇ ନଥିଲି ।'

ପିଲାର୍ କହିଲା 'ମୁଁ କାହାକୁ ଗୁଳି ମାରେ ନାହିଁ ।'

ଯୋଆକ୍ୱିନ୍ କହିଲା 'ଗୁଳି କଅଣ ହେବ, ତୁମ ମୁହଁତ ଗୁଳିର ବଡ଼ବାପ ।'

ପିଲାର କହିଲା 'ଟୋକାର କଥାର ଶୀରୀ ଦେଖ । ପିଲାଦିନେ କେଡ଼େ ଭଦ୍ର କଥା କହୁଥିଲୁ । ଆନ୍ଦୋଳନ ପୂର୍ବରୁ କଅଣ କରୁଥିଲୁ ?'

'ମୁଁ ୧୬ ବର୍ଷର ପିଲା ଥିଲି । କରନ୍ତି କଅଣ ?'

'ତେବେ କିଛି ତ କରୁଥିବୁ ?'

'ହଁ, ଜୋତା ପାଲିସ କରୁଥିଲି ।'

ପିଲାର୍ କହିଲା 'ନା ଆଉ କିଛି ଅଛି ? ତୁ ତାହା ନ ପାରିଲୁ କାହିଁକି ?' ଏହା କହି ସେ ତାହାର ଶ୍ୟାମଳ ମୁଖ, ନମନୀୟ ତନୁ, ଗୁଚ୍ଛକେଶ ଏବଂ ଗୋଇଠି ଚାଲିପ୍ରତି ଦୃଷ୍ଟି ଦେଲେ ।

'କିଏ କହିଲା ପାଗଳ ନାହିଁ ?'

'କହିବ ଆଉ କିଏ, ତୋ ଚେହେରା । ମୁଣ୍ଡରେ ଚୁଟି ରଖିଲୁଣି ।'

'ବୋଧହୁଏ ଭୟରେ ପାଗଳ ନାହିଁ ।'

'ତୋ ଚେହେରାଟି ଭଲ, ହେଲେ ମୁହଁଟା ବାଜେ । ଟ୍ରେନ ଧ୍ୱଂସବେଳେ ଠିକ୍ ଥିଲୁ ତ ?'

'ବର୍ତ୍ତମାନ ସେଥିକୁ ମୋର ଭୟ ନାହିଁ । ତାହାଠାରୁ ଖରାପ ଦୃଶ୍ୟ ଦେଖି ଅଛି । ଲଢ଼େଇ ଷଣ୍ଢଠାରୁ ବିପଦଜନକ ମେସିନଗନ୍ ଦେଖିଛି । ବର୍ତ୍ତମାନ ସେଭଳି ପରିସ୍ଥିତିରେ ପଡ଼ିଗଲେ ମୋ ଗୋଡ଼ ଥିର ରହିବ ନାହିଁ ।'

ପିଲର୍ ରବର୍ଟ ଜର୍ଡାନ୍‌ଙ୍କୁ ବୁଝାଇ ଦେଲା "ଇଏ ଷଣ୍ଢ ଲଢ଼େଇରେ ମାଲ ହେବାକୁ ଲେଉଥିଲା ମାତ୍ର ଡରିଗଲା ।"

ଯୋଆକ୍ୱିନ୍ ପଚାରିଲା "ସାଥୀ ଡାଇନାମାଇଟ୍‌ବାଲା, ତୁମେ କଅଣ ଲଢ଼େଇ ଷଣ୍ଢ ପସନ୍ଦ କର ।"

"ଖୁବ୍ ପସନ୍ଦକରେ ।"

"ଭାଲାଡୋଲିଡ୍‌ଠାରେ ଷଣ୍ଢଙ୍କୁ ଦେଖିଛ ?"

"ହଁ । ସେପ୍‌ଟେମ୍ବର ମାସରେ ଫେରିଆଠାରେ ଦେଖିଥିଲି ।"

"ସେଇଠି ତ ମୋ ଘର । କେଡ଼େ ସୁନ୍ଦର ସହରଟା କିନ୍ତୁ ସେଠାରେ ଭଲ ଲୋକମାନେ ବଡ଼ ଦୁଃଖ କଷ୍ଟ ପାଇଅଛନ୍ତି । ସେମାନେ ମୋ ବାପାଙ୍କୁ ଗୁଳି କରିଦେଲେ । ମୋ ମାଆ ଭିଣୋଇ ଓ ଭଉଣୀ ମଧ୍ୟ ମଲେ ।"

"ରବର୍ଟ ଜର୍ଡାନ୍ କହିଲେ 'କି ନୃଶଂସ ବ୍ୟବହାର ।' ବହୁବାର ବହୁ ବ୍ୟକ୍ତିଙ୍କ ମୁହଁରୁ ସେ ଏହି ଶୋକାବହ ଇତିବୃତ୍ତ ଶୁଣିଲେଣି । ବାପ ମା ଭାଇଭଉଣୀଙ୍କ ମୃତ୍ୟୁ କଥା କହିଲାବେଳେ ଲୋକେ କଇଁ କଇଁ ହୋଇ ପଡ଼ୁଥାନ୍ତି । ଏହି ମର୍ମନ୍ତୁଦ କାହାଣୀ ଶୁଣି ଶୁଣି ସବୁଦା ତାଙ୍କ ତୁଣ୍ଡରୁ ସ୍ୱେଚ୍ଛାରେ ବାହାରିପଡ଼େ 'କି ପାଶବିକ ଅତ୍ୟାଚାର ।'

ସେ ସିନା ଖାଲି ବାପ ମାଆର ମୃତ୍ୟୁ ସମ୍ବାଦ ଶୁଣିଥିଲେ କିନ୍ତୁ ଫ୍ୟାସିଷ୍ଟମାନଙ୍କ ମୃତ୍ୟୁ ଭଳି ଭୟାବହ ଦୃଶ୍ୟର ବର୍ଣ୍ଣନା ଯାହା ପିଲର୍ କହିଲା ତାହା ଶୁଣି ନଥିଲେ । "ତୁମର ଏ ସବୁ ଶୁଣିବା କଥା । ହାଲ୍‌ଘରେ, ମୋଟର ଟ୍ରକରେ, ବାଟ୍‌ବଜାରରେ, ଟୋଟାରେ, ପଡ଼ିଆରେ କାହାକୁ ନା କାହାକୁ ଗୁଳି କରି ମାରି ଦିଆ ହୋଇଥିବା କଥା

ତୁମେ ଶୁଣିଛ; ହୁଏତ ପଛରେ ମୁର୍ଦ୍ଦାର ମଧ୍ୟ ଦେଖିଛ କିନ୍ତୁ ପିଲର୍ ତାହାର ଜୀବନ୍ତ ବର୍ଣ୍ଣନାଦ୍ୱାରା ସେ ସବୁ ମୋତେ ପ୍ରତ୍ୟକ୍ଷ ଭାବରେ ଦର୍ଶାଇଅଛୁ ।"

ପିଲର୍ ଲେଖିପାରନ୍ତା କି ? ମୁଁ ଯଦି ସୁଯୋଗ ପାଏ ଏବଂ ସବୁ କଥା ମନେ ଥାଏ ତେବେ ପିଲର୍ ବର୍ଣ୍ଣନା ମୁଁ ଅବିକଳ ଲେଖିଯିବି । ବାପ୍‌ରେ ବାପ୍, ତାହାର ବର୍ଣ୍ଣନା କରିବା ଢଙ୍ଗ କି ମାରାତ୍ମକ । ଡନ୍ ଫାଷ୍ଟିନୋର ମରଣ ପରି କୌଣସି କାହାଣୀ ମୁଁ କେବେ ପିଲର୍ କହିବା ଭଳିରେ ଲେଖି ନାହିଁ । ଲେଖି ପାରନ୍ତି କି । ବହୁତ ବିଷୟ ତ ମୁଁ ଜାଣେ । ଶତ୍ରୁ ପକ୍ଷପଛେ ଗୁପ୍ତ କାମକରି ଅନେକ କିଛି ଦେଖିଛି କିନ୍ତୁ ଗ୍ରାମର ଲୋକମାନଙ୍କ ପୂର୍ବରୁ ଚିହ୍ନି ଥିବା ହେଉଛି ବଡ଼ ଦରକାର ।

ଏକ ଜାଗାରେ ରହିବା ତ ଆମ ପକ୍ଷରେ ସମ୍ଭବ ନୁହେ । ରହିଲେ ଶାସ୍ତି ଗ୍ରହଣ କରିବାକୁ ହୋଇଥାଏ । ଏଣୁ କାମଟା ଶେଷ କରି ସ୍ଥାନ ଛାଡ଼ି ପଳାଇବା ଆମର ବ୍ରତ । ସୁତରାଂ କାର୍ଯ୍ୟର ପରିଣାମ ପାଇଁ ଆମେ ଅପେକ୍ଷା କରି ନଥାଉଁ । ରାତିରେ ଆସି କୌଣସି କୃଷୀ ଘରେ ରାତ୍ରିବାସ କରି ଦିନତମାମ ଲୁଚି ପୁଣି ରାତିକୁ ପଳାଇଯିବା ହେଲା ଆମର ନିର୍ଘଣ୍ଟ । କାମସାରି ପଳାଇଯିବା ହେଲା ଆମର କାମ ।

ଆମେ ଯାହା କରିବାକୁ ଆସିଥାଉ, ସେ କାମ ଘଟିଲା ବେଳକୁ ଆମେ ସେଠାରେ ନଥାଉ । ଗୁପ୍ତ ସମର୍ଥକମାନେ ନିଜ କାମ ସାରି ପଳାଇ ଯାଆନ୍ତି କିନ୍ତୁ ଦାଉ ସଧାଯାଏ ନିରୀହ ଗ୍ରାମବାସୀଙ୍କ ଉପରେ । ଏମିତି ବରାବର ଘଟି ଆସୁଥିବା ମୋତେ ଜଣା । ଏଥି ନିମିତ୍ତ ମନରେ ମଧ୍ୟ ଦୁଃଖ ହୋଇଥାଏ । କେତେ ଲୋକ ଏଭଳି କାମ କରି ଗର୍ବ ଅନୁଭବ କରିଆନ୍ତି, ନିଜର ବଡ଼ିମା ଦେଖାଇ ହୋଇଥାନ୍ତି କିନ୍ତୁ ଏସବୁ ପାଇଁ ମୋତେ ବଡ଼ ଲଜ୍ଜା ଲାଗେ । ମନରେ ଘୃଣା ଓ ଧିକାର ଜନ୍ମେ । ପିଲର୍ ମୋ ଆଖିରେ ଅଙ୍ଗୁଳି ଦେଇ ଏଭଳି ଧ୍ୱଂସାତ୍ମକ କାର୍ଯ୍ୟର ପରିଣାମ ଦେଖାଇ ଦେଇଥିଲା ।

ତଥାପି ଏହା ଲୋକଙ୍କ ଶିକ୍ଷାର ଗୋଟିଏ ଅଙ୍ଗ । କାମ ଶେଷ ହେଲେ ଶିକ୍ଷା ମଧ୍ୟ ପୂର୍ଣ୍ଣାଙ୍ଗ ହୋଇଯିବ । ଯୁଦ୍ଧରେ କେବଳ ଅନେକ କଥା ଶୁଣି ଶୁଣି ଶିକ୍ଷା ଲାଭ ହୋଇଥାଏ । ଜର୍ଡାନ୍‌କୁ ସେ ଯୁଦ୍ଧ ପୂର୍ବରୁ ୧୦ ବର୍ଷ ସ୍ପେନରେ ବାସ କରିଥିଲେ । ସ୍ପେନ ଦେଶର ଭାଷା ଭଲ ଭାବରେ ଲେଖିପଢ଼ି ଜାଣିଥିବାରୁ ଏବଂ ବହୁ ସ୍ଥାନ ଭ୍ରମଣ କରିଥିବାରୁ ଲୋକେ ତାଙ୍କୁ ମୁଖ୍ୟତ ବିଶ୍ୱାସ କରୁଥିଲେ । ସ୍ପେନ ଦେଶର ଲୋକେ ମୂଳତ ନିଜ ନିଜ ଗ୍ରାମପ୍ରତି ଅନୁରକ୍ତ । ପ୍ରଥମେ ଦେଶ, ତତ୍ପରେ ଜାତି, ତତ୍ପରେ ପ୍ରଦେଶ, ତତ୍ପରେ ଗ୍ରାମ, ପରିବାର ଏବଂ ଶେଷକୁ ପେଶା ଏବଂ ଏହି ପର୍ଯ୍ୟାୟ କ୍ରମେ

ତିମର ଜ୍ଞାନଥିଲେ ସ୍ପେନ ଲୋକ ତିମ ପ୍ରତି ବିଶ୍ୱସ୍ତ ହୋଇ ଉଠିବ । ଯିଏ ଏତକ ଜାଣିଥିବ ସେ କେବେ ସ୍ପେନରେ ବିଦେଶୀ ବୋଲି ବିବେଚିତ ହେବ ନାହିଁ । ପ୍ରତ୍ୟକ୍ଷ ସ୍ୱାର୍ଥ ସଂଘର୍ଷ ଛଡ଼ା ସ୍ପେନ୍‌ର ଲୋକେ ଏପରି ଲୋକଙ୍କୁ ବିଦେଶୀ ଭଳି ବ୍ୟବହାର ମଧ୍ୟ କରିବେ ନାହିଁ । ତାଙ୍କୁ କେହି ବିଦେଶୀ ବୋଲି ଭାବୁ ନଥିଲେ ଓ ସେ ମଧ୍ୟ ନିଜେ ତାହା ବୋଧ କରୁ ନଥିଲେ ।

ଅବଶ୍ୟ ସ୍ପେନ୍‌ର ଲୋକେ ଭ୍ରମ ବିରୁଦ୍ଧାଚରଣ କରିପାରନ୍ତି । କିନ୍ତୁ ଏମିତି ବିରୁଦ୍ଧାଚରଣ ସମସ୍ତଙ୍କ ସହିତ କରିଥାନ୍ତି । ନିଜ ମଧ୍ୟରେ ମଧ୍ୟ ବିବାଦ କରିଥାନ୍ତି । ୩ ଜଣ ଏକାଠି ହେଲେ ଦୁଇଜଣ ଏକଜୁଟ ଜଣକ ବିରୁଦ୍ଧରେ ଯାଆନ୍ତି ପୁଣି ଦୁଇଜଣ ମଧ୍ୟ ନିଜ ମଧ୍ୟରେ କଳି କରିଥାନ୍ତି । ଏହା ଅବଶ୍ୟ ସବୁ କ୍ଷେତ୍ରରେ ନୁହେ ତଥାପି ଘନ ଘନ ଘଟୁଥିବାରୁ ଏହାକୁ ସାଧାରଣ ନୀତି ବୋଲି ଧରି ନିଆଯାଇପାରେ ।

ଏପରି ଭାବିବା ଉଚିତ ନୁହେ । କେହି ତ ତାଙ୍କ ଚିନ୍ତାରେ ବାଧା ଦେଉ ନାହିଁ । ପରାଜୟ ସମ୍ବନ୍ଧରେ ଚିନ୍ତା କରିବା ଠିକ୍ ହେବ ନାହିଁ । ପ୍ରଥମ କାମ ହେଲା ଯୁଦ୍ଧ ଜିଣିବା । ଯୁଦ୍ଧରେ ଜୟ ନକଲେ ସବୁ ସରିଯିବ । ସେ ସବୁ କଥା ଦେଖିଛନ୍ତି, ଶୁଣିଛନ୍ତି ଏବଂ ମନେ ରଖିଛନ୍ତି । ସେ ଯୁଦ୍ଧରେ ଲିପ୍ତ ଏଣୁ ସେଥିରେ ପୂର୍ଣ୍ଣ ପ୍ରାଣରେ ସହଯୋଗ କରି ଯଥା କର୍ତ୍ତବ୍ୟ ସମ୍ପନ୍ନ କରୁଅଛନ୍ତି । ତେବେ କେହି ତାଙ୍କ ମନ ଉପରେ ବଡ଼ ନୁହେ କିମ୍ବା ତାଙ୍କର ଦେଖିବା ବା ଶୁଣିବା ଶକ୍ତିକୁ ନିୟନ୍ତ୍ରଣ କରିପାରିବ ନାହିଁ । ସେ ପରେ ନିଜର ଇଚ୍ଛାମତେ ନିଜର ସିଦ୍ଧାନ୍ତ କରି ପାରିବେ । ସେଥିପାଇଁ ବହୁ ଉପାଦାନ ମିଳିଅଛି ଏବଂ ଆହୁରି ମିଳିବ । ବେଳେ ବେଳେ ଟିକିଏ ବାହୁଲ୍ୟ ମଧ୍ୟ ଘଟୁଅଛି ।

ପିଲାର୍ ନାମକ ମହିଳା ଜଣକ କଥା ସେ ଭାବିଲେ । ଯାହାଘଟୁ ନା କାହିଁକି ଯଦି ଅବସର ମିଳିବ ତେବେ ମୁଁ ତାହା ପାଖରୁ ସେ କାହାଣୀର ଅବଶିଷ୍ଟାଂଶ ଶୁଣିବି । ସେ ଦୁଇଟା ପିଲାଙ୍କ ସହିତ ଯାଉଅଛି । ଏହି ତିନିଜଣଙ୍କୁ ବଳି ସ୍ପେନ ଦେଶରେ ଆଉ ଅଧିକ ଭଲ ଲୋକ ମିଳିବେ ନାହିଁ । ପିଲାର୍ ପାହାଡ଼ ହେଲେ ଟୋକା ଟୋକୀ ଦୁଇଜଣ ପାହାଡ଼ରେ ଦୁଇଟି ଗଛ ପରି । ବୁଢ଼ା ଗଛ ତ ସବୁ କଟା ହୋଇଯାଇଛି ଏଣିକି ଏହି ନୂଆଗଛ ବଢ଼ୁଅଛି । ସେମାନେ ଯେଉଁ ଦୁର୍ଗତି ଭୋଗ କରି ଅଛନ୍ତି ତାହା ସତ୍ତ୍ୱେ ବି ସେମାନେ ସତେଜ, ନିର୍ମଳ ଅନାବିଳ ରହିଅଛନ୍ତି ସତେ ଯେପରି କିଛି ଦୁର୍ଭାଗ୍ୟ ତାଙ୍କୁ ସ୍ପର୍ଶ କରି ନାହିଁ । ପିଲାର୍‌ର କଥା ମତେ ମେରିଆ ବର୍ତ୍ତମାନ ସୁସ୍ଥ ହୋଇ ଉଠୁଅଛି । ସେ ଯେ ଖୁବ୍ କଦାକାର ହୋଇଥିଲା ଧରି ନିଆଯାଉ ।

୧୧ଶ ବ୍ରିଗେଡ୍‌ରେ ଯୋଗ ଦେଇଥିବା ଜଣେ ବେଲୁଚିସ୍ଥାନ ବାଳକ କଥା ତାଙ୍କର ମନେ ପଡ଼ିଗଲା । ବାଳକଟି ନିଜ ଗ୍ରାମର ଆଉ ୫ ଜଣଙ୍କ ସହିତ ଯୋଗ ଦେଇଥିଲା । ୨୦୦ ଜଣ ଲୋକ ଏହି ଗାଁଟିରେ ଥିଲେ । ପିଲାଟି ଗାଁରୁ କେବେ ବାହାରକୁ ଯାଇ ନଥିଲା । ହାନ୍‌ସ ବ୍ରିଗେଡ୍ ଦଳରେ ସେ ପ୍ରଥମେ ପିଲାଟିକୁ ଦେଖିଲେ । ଅନ୍ୟ ୫ଟି ପିଲା ଲଢ଼େଇରେ ମରି ଯାଇଥିଲେ ଏବଂ ଏହି ପିଲାଟି ଏକାବେଳେକେ ଭାଙ୍ଗି ପଡ଼ିଥିଲା । ତାକୁ ସେଠାରେ କର୍ମଗୃହଙ୍କ ଖାନା ଟେବୁଲ ପାଖରେ ଅର୍ଦଳି କାମ ଦିଆ ଯାଇଥିଲା । ତା ହାତ ଦୁଇଟା ଥିଲା ଗୃଷୀ ମଜୁରିଆର ହାତ ପରି ବଡ଼, ମୁହଁଟା ମଧ୍ୟ ଥିଲା ଖୁବ୍ ବଡ଼ ଏବଂ ଗଣ୍ଠିଆ । ସେ ଖାଦ୍ୟ ଥାଳା ନେବା ଆଣିବା କରୁଥାଏ ଏବଂ ନୀରବରେ କାନ୍ଦୁଥାଏ । ତୁମେ ତାକୁ କିଛି ବରାଦ କର, କିଛି ଆଣିବାକୁ କୁହ, ସେ ଅଶ୍ରୁ ଆଖିରୁ ଲୁହ ଗଡ଼ାଉଥିବ । ରୋଷାଇ ଶାଳାରେ ବସି ବସି ମଧ୍ୟ କାନ୍ଦେ । ସମସ୍ତେ ତା ପ୍ରତି ସଦୟ ଥିଲେ ମଧ୍ୟ ତା' କାନ୍ଦଣା ବନ୍ଦ ହୋଇ ନଥିଲା । ତାହାର କଅଣ ଘଟିଲା ଏବଂ ସେ ପୁଣି ଯୁଦ୍ଧ କରିବାପାଇଁ ସକ୍ଷମ ହେଲା କି ନାହିଁ, ଏତିକ ସେ ସନ୍ଧାନ କରିବେ ।

ମେରିଆ ବର୍ତ୍ତମାନ ଖୁବ୍ ସୁସ୍ଥ ସବଳ । ଅନ୍ତତଃ ଏହାହିଁ ମନେ ହୁଏ । କିନ୍ତୁ ସେ ତ ନିଜେ ମାନସିକ ରୋଗର ଡାକ୍ତର ନୁହନ୍ତି ? ପିଲାର୍‌କୁ ସେ ବିଦ୍ୟା ଜଣା । ଦୁହେଁ ଗତ ରାତିରେ ଏଠି ରହିବା ବୋଧହୁଏ ଭଲ ହୋଇଅଛି । ତାଙ୍କ ନିଜ ପାଇଁ ତ ନିଶ୍ଚୟ ଭଲ । ଆଜି ସେ ଖୁବ୍ ପ୍ରଫୁଲ୍ଲ, ସତେଜ, ସ୍ୱାସ୍ଥ୍ୟବାନ ଏବଂ ସୁଖୀ ହୋଇଅଛନ୍ତି । ଅବସ୍ଥାଟା ପ୍ରଥମରୁ ଖରାପ ମନେ ହେଉଥିଲା, ହେଲେ ତାଙ୍କର ଭାଗ୍ୟ ଭଲ । ଏମିତି ବହୁତ ଖରାପ ଅବସ୍ଥା ଦେଇ ସେ ଆସିଛନ୍ତି । ମେରିଆ ପ୍ରକୃତରେ ଭାରି ସୁନ୍ଦର । ସେ ବେକ ଖୋଲା ଖାକି କାମିଜ ପିନ୍ଧି ମନ ଖୁସିରେ ବୁଲାବୁଲି କରୁଅଛି । ତା ବୁଲାଟା ଘୋଡ଼ାଛୁଆ ପରି । ସବୁବେଳେ ଏପରି ଜୁଟିବ ନାହିଁ । ହୁଏତ ଏହା ତାଙ୍କର ଚନ୍ଦ୍ରାର ମୂର୍ତ୍ତିମନ୍ତ ଛବି, ହୁଏତ ଏଟା ତାଙ୍କର କଳ୍ପନା ମାତ୍ର ହୁଏତ ଗ୍ରୀଷ୍ମ ରାତ୍ରି ଦେଖିଥିବା କୌଣସି ନାରୀର ଛବି ଜୀବନ୍ତ ହୋଇ ଉଠିଛି । ଗାବୋ ଏବଂ ହାର୍‌ଲୋ ତାଙ୍କର ମନେ ପଡ଼ିଗଲା । ସେ ବହୁବାର ସ୍ୱପ୍ନରେ ହାର୍ଲୋର ସଙ୍ଗ ସୁଖ ପାଇଅଛନ୍ତି । ଏଟା ମଧ୍ୟ ସେହିଭଳି ସ୍ୱପ୍ନ ହୋଇପାରେ । ତେବେ ଗାବୋର ସ୍ମୃତି ଖୁବ୍ ପ୍ରଖର ଭାବରେ ତାଙ୍କ ମନରେ ଜାଗିଥିଲା । ପୋଜୋବ୍ଲାଙ୍କୋ ଆକ୍ରମଣରେ ପୂର୍ବ ରାତ୍ରିରେ ଗାବୋ ତାଙ୍କ ପାଖରେ ଶୋଇଥିଲା । ତାକୁ କୁଣ୍ଢାଇ ଧରିଲାବେଳେ ସେ ପିନ୍ଧିଥିଲା ରେଶମ ଭଳି ଚିକ୍‌କଣ ଉଲ୍‌ର ଗେଞ୍ଜି । ସେ ନଇଁ ପଡ଼ିଲାବେଳେ ତାହାର କେଶଗୁଚ୍ଛ ତାଙ୍କ ମୁହଁରେ ପଡ଼ିଥିଲା । ଗାବୋ ତାଙ୍କୁ ଭଲ ପାଉଥିଲେ ମଧ୍ୟ ସେ ଯେ ତାକୁ ଭଲ ପାଉଥିଲେ ଏକଥା କାହିଁକି ପ୍ରକାଶ କରି ନଥିଲେ ବୋଲି

ପଗୃରଥିଲା । ସେ କ୍ରୀଡ଼ାନରା କମ୍ବା ଉଦାସୀନ ଅଥବା ଦୂରେ ଦୂରେ ରହୁ ନଥିଲା । ଘାଟେବା ଥିଲା ଯେମିତ ସୁନ୍ଦର ସେମିତ ସ୍ପର୍ଶ-ବ୍ୟାକୁଳ । ସେ ଥରଟିଏ ଆସିଥିଲା । ହ୍ୱାର୍ଲୋ ବହୁବାର ଆସିଥିଲା—ତଥାପି—ଏମିତ ନାନାବିଧ ସ୍ମୃତ ରୋମନ୍ଥନ, ନାନାବିଧ ସ୍ୱପ୍ନ ବିଳାସ କଲେ ।

ସେ ପୁଣି ଭାବିଲେ, ମୁଁ ବର୍ତ୍ତମାନ ମେରଆକୁ ଛୁଇଁପାରେ, ହୁଏତ ମୋର ଭୟ ହେଉଅଛି, ହୁଏତ ଏପର କିଛି ଘଟି ନାହିଁ । ସବୁତକ ଚନ୍ତା ମୋର କଳ୍ପନା । ଏମିତ କଳ୍ପନାରେ ବହୁ ପରଚତ ତନ୍ୱୀଙ୍କ କଥା ସ୍ମୃତ ପଥରେ ଜାଗ୍ରତ ହୋଇଥାଏ ।

ଏମାନେ ସବୁ ଆସି ଟ୍ରକରେ, ହୋଟଲରେ, ଗ୍ରୁଡ଼ାଣିରେ, ମୋଟର ଗ୍ୟାରେଜରେ, ବଣପାହାଡ଼ରେ ତାଙ୍କ ସେହି ବିଛଣା ଖୋଳରେ ପଶି ତାଙ୍କ ପାଖରେ ଶୋଇ ରହନ୍ତ । ସେ ଶୋଇ ମଡ଼ିଲା ପରେ ସେମାନେ ଆସନ୍ତ । ବାସ୍ତବ ଜୀବନ ଅପେକ୍ଷା କଳ୍ପନାରେ ସେମାନେ ଅଧିକ ରମଣୀୟ, ସୁନ୍ଦର ଓ ଉପଭୋଗ୍ୟ । ସ୍ୱପ୍ନ କ ସତ୍ୟ ଜାଣିବା ପାଇଁ ହାତ ଛୁଇଁ ପରୀକ୍ଷା କରିବାକୁ ସୁଦ୍ଧା ଡର ଲାଗେ । କାଳେ ସୁଖ ସ୍ୱପ୍ନ ଭାଙ୍ଗି ବାସ୍ତବର ନିଷ୍ଠୁରତା ପ୍ରକାଶ ପାଇଯିବ ।

ପାଦେ ଆଗେଇ ସେ ମେରଆ ବାହୁକୁ ଧରି ତାହାର କମନୀୟ ତନୁର କୋମଳତା ଅନୁଭବ କଲେ । ମେରଆ ହସି ଦେଲା । ସେ ତାକୁ ସମ୍ବୋଧନ କଲେ ଏବଂ ମେରଆ ମଧ୍ୟ ପ୍ରତ-ସମ୍ବୋଧନ ଜଣାଇଲା । ସେ ତାହାର ଶ୍ୟାମଳ ମୁଖ, ହରିଦ୍ରା ଧୂସର ଚକ୍ଷୁ ଏବଂ ଦୀର୍ଘ ଅଧରରେ ହାସ୍ୟରେଖା ଏବଂ ଅଦୀର୍ଘ କେଶ ଦେଖିବାକୁ ଲାଗିଲେ । ମେରଆ ମୁହଁ ଟେକି ହସିଦେଲା ।

ବଣ ଶେଷକୁ ସେମାନେ ଏଲ୍‌ସୋର୍ଡ଼ୋର ଶିବିର ଦେଖି ପାରିଲେ । ଓଲଟା ବେଲଟାଏ ପର ସେ ସ୍ଥାନଟା ଗୋଟାଏ ଗୋଲକାର ଛିପ । ଚୂନ ପଥରର ଏହି ସବୁ ଅବବାହିକା ଗୁହାରେ ପୂର୍ଣ୍ଣ । ସମ୍ମୁଖରେ ଦିଶୁଥାଏ ଦୁଇଟା ବଡ଼ ଗୁହା । ପାହାଡ଼ର ବୁଦା ଗୁଳ୍ମ ତାକୁ ଢାଙ୍କି ଦେଇଥାଏ । ସ୍ଥାନଟା ପାବ୍‌ଲୋ ଆଡ୍‌ଡ଼ାଠାରୁ ଅଧିକ ଭଲ ।

ପିଲାର୍ ଯୋଅକ୍ୱିନକୁ ପଚାରିଲା "ତୋ ପରିବାରକୁ କପର ଗୁଳି ମାରିଲେ ?"

'ସେମିତ କିଛି ନୁହେଁ । ସେମାନେ ଅନ୍ୟ ଅନେକଙ୍କ ପର ଭାଲାଡୋଲିଡ୍ ସହରର ବାମପନ୍ଥି ଦଳଭୁକ୍ତ । ଫ୍ୟାସିଷ୍ଟମାନେ ସହରକୁ ନିଷ୍କଳଙ୍କ କରିବାକୁ ଯାଇ ପ୍ରଥମେ ବାବାଙ୍କୁ ମାରିଲେ ଯେହେତୁ ସେ ସମାଜବାଦୀଙ୍କୁ ଭୋଟ୍ ଦେଇଥିଲେ । ତା ପରେ ମାରିଲେ ମାଆଙ୍କୁ । ସେ ମଧ୍ୟ ସେହିପର ଭୋଟ ଦେଇଥିଲେ । ଅଥଚ ସେଟା

ମାଆଙ୍କର ପ୍ରଥମ ଥର ପାଇଁ ଭେଟ । ଏହାପରେ ଜଣେ ଭଗିନୀପତିକୁ ମାରିଲେ । ସେ ଥିଲା ଟ୍ରାମଗୃଳକ ସମିତିର ଜଣେ ସଭ୍ୟ । ଅଥଚ ସମିତିରେ ସଭ୍ୟ ନହେଲେ କେହି ଟ୍ରାମ ଚଲାଇ ପାରିବେ ନାହିଁ ଏହା ଜଣା କଥା । ସେ ରାଜନୀତିର ଧାର ଧାରୁ ନଥିଲା । ମୁଁ ତାଙ୍କୁ ଭଲ କରି ଜାଣିଥିଲି । ବରଂ ସେ ଟିକେ ନିର୍ଲଜ ଥିଲା । ସେ ଭଲ ରକମର ସାଥୀ ମଧ୍ୟ ହୋଇ ନଥିଲା । ଏହାପରେ ଅନ୍ୟ ଭଣୋଇ ମୋ ପରି ପାହାଡ଼କୁ ଗୃଲିଯାଇଥିଲା । ସେ ମଧ୍ୟ ଟ୍ରାମଗୃଳକ ସମିତିର ସଭ୍ୟ ଥିଲା । ସେମାନେ ଭାବିଲେ ଭଉଣୀ ଜାଣିଛି ସେ କେଉଁଠାରେ ଅଛି କିନ୍ତୁ ପ୍ରକୃତରେ ତାକୁ ଜଣାନଥିଲା; ଏଣୁ କରି ଭଉଣୀକୁ ମାରି ପକାଇଲେ ।"

ପିଲାର୍ ରାଗରେ କହିଲା "ନର-ରାକ୍ଷସ । ଆଚ୍ଛା ଏଲ୍ ସୋର୍ଡୋ କାହିଁ ? ମୁଁ ତାକୁ ଦେଖୁ ନାହିଁ ।"

ଯୋଆକ୍ୱିନ ଠିଆ ହୋଇପଡ଼ି ବନ୍ଧୁକ ମୁଠା ମାଟିରେ ଡରି ଦେଇ ଜବାବ ଦେଲା "ଏଇଠି ଅଛି । ସମ୍ଭବତଃ ଭିତରେ ଅଛି । ପିଲାର୍ ମୋ କଥା ଶୁଣ । ମେରିଆ ତୁ ମଧ୍ୟ ମୋତେ କ୍ଷମା କରିବୁ, କାରଣ ମୁଁ ମୋ ପରିବାର କାହାଣୀ କହି ତୋତେ ମନୋବ୍ୟଥା ଦେଇଅଛି । ମୁଁ ଜାଣେ ସମସ୍ତଙ୍କର ଏକା ଦଶା ଏବଂ ଏସବୁ ନ କହିବା ଭଲ ?"

ପିଲାର୍ କହିଲା "ନା ନା ତୁ କହିବା ଠିକ୍ ହୋଇଅଛି । ପରସ୍ପରର ସୁଖ ଦୁଃଖରେ ସହାନୁଭୂତି ସାହାଯ୍ୟ ନ କଲେ ଜନ୍ମ ଯେ ବୃଥା । ଦୁଃଖର କାହାଣୀ ଶୁଣି କିଛି ନ କହିବାଟା ହେଉଛି ଅତି ଶୀତଳ ଉଦାସୀନତା ।"

"କିନ୍ତୁ ମୋ କଥାରେ ମେରିଆ ଆଘାତ ପାଇବ । ତାହାର ଜୀବନରେ ବହୁତ ଦୁର୍ଭୋଗ ଘଟିଲାଣି ।"

ମେରିଆ ଜବାବ ଦେଲା "ମୋ ଆଧାର ଏତେ ବଡ଼ଯେ ତୋ କଥାରେ ତାହା ପୂର୍ଣ୍ଣ ହେବନାହିଁ । ଶୁଣିକରି ମୋର ଗଭୀର ଦୁଃଖ ହେଉଛି । ଆଶାକରେ ତୋ ଭଉଣୀ ଭଲରେ ଅଛି ।"

ଯୋଆକ୍ୱିନ୍ କହିଲା "ଏ ପର୍ଯ୍ୟନ୍ତ ଭଲ ଅଛି । ସେମାନେ ତାକୁ ଜେଲ୍-ଖାନାରେ ରଖିଛନ୍ତି କିନ୍ତୁ ଦୁର୍ବ୍ୟବହାର କଲାପରି ମନେ ହେଉନାହିଁ ।"

ରବର୍ଟ ଜର୍ଡ଼ାନ୍ ପଚାରିଲେ "ପରିବାରର ଆଉ କିଏ କିଏ ଅଛନ୍ତି ।"

ଟୋକାଟା ଜବାବ ଦେଲା 'ମୋ ଛଡ଼ା ଆଉ କେହି ନାହିଁ । ଥିଲେ ଥାଇପାରେ ପାହାଡ଼କୁ ଯାଇଥିବା ଭଣୋଇ ଜଣକ । ମାତ୍ର ମୁଁ ଭାବୁଛି ସେ ମରିଯାଇ ଅଛି ।'

ମେରଆ କହିଲା "ହୁଏତ ସେ ଭଲରେ ଥିବ । ହୁଏତ ଅନ୍ୟଦଳ ସହିତ ଅନ୍ୟ ପାହାଡ଼ରେ ଥିବ ।"

ଯୋଆକ୍ୱିନ୍ କହିଲା "ମୋ ଦୃଷ୍ଟିରେ ସେ ମୃତ । ସେ କେବେହେଲେ କଷ୍ଟ ସହିଷ୍ଣୁ ନଥିଲା । ଟ୍ରାମଗାଡ଼ି ଗୃଳକ ପକ୍ଷରେ ପାହାଡ଼ରେ ରହିବା ଭଳି ସାମର୍ଥ୍ୟ ନଥାଏ । ଗୋଟାଏ ବର୍ଷ ସେ ଠାକ ପାରବ ବୋଲି ମୋର ଭରସା ନାହିଁ । ତା ଗ୍ରୁଡ ମଧ୍ୟ ଦୁର୍ବଳ ଥିଲା ।"

ମେରଆ ତା କାନ୍ଧରେ ହାତ ରଖି କହିଲା "ହୁଏତ ସେ ଭଲରେ ଅଛି ।"

ଯୋଆକ୍ୱିନ୍ କହିଲା "ହଁ ଲେ ଝିଅ, କାହିଁକି ବା ନଥିବ ?"

ଝୋକାଟା ସେଠାରେ ଠିଆ ହୋଇଥିଲାବେଳେ ମେରଆ ତା ପାଖକୁ ଯାଇ ତା ଗ୍ରୀବା ଧର ଚୁମା ଖାଇଲା । କାନ୍ଦୁଥିଲା ବୋଲି ଯୋଆକ୍ୱିନ ମୁହଁ ବୁଲାଇ ନେଲା ।

ମେରଆ କହିଲା "ଏଟା ହେଲା ଭଉଣୀର ଚୁମା । ଭାଇ ଜ୍ଞାନରେ ମୁଁ ତୋତେ ଚୁମା ଖାଇଲି ।" ଝୋକାଟା ନୀରବରେ ଅଶ୍ରୁପାତ କରବାକୁ ଲାଗିଲା ।

ମେରଆ ପୁଣି କହିଲା "ମୁଁ ତୋ ଭଉଣୀ । ମୁଁ ତୋତେ ଭଲପାଏ । ତୋର ପରବାର ଥିଲା । ଆମେ ସମସ୍ତେ ତୋ ପରବାର ।"

ପିଲାର୍ କହିଲା "ଏହି ଇଂରେଜ ସହିତ ସମସ୍ତେ । ନୁହେଁ କି ଇଂରେଜ ?"

ରବର୍ଟ ଜର୍ଡାନ୍ ବାଳକକୁ କହିଲେ 'ହଁ, ଆମେ ସମସ୍ତେ ତୋ· ପରବାର ଯୋଆକ୍ୱିନ୍ ।'

ପିଲାର୍ କହିଲା "ଇଂରେଜ, ସେ ତୋ ଭାଇ ।"

ରବର୍ଟ ଜର୍ଡାନ୍ ବାଳକର କାନ୍ଧ ଧର କହିଲେ 'ଆମେ ସମସ୍ତେ ଭାଇ ।' ବାଳକଟି ମୁଣ୍ଡ ହଲାଇ କହିଲା 'ମୋ କଥା କହି ମୁଁ ଲଜ୍ଜା ବୋଧ କରୁଅଛି । ଏପର କରୁଣ କାହାଣୀ ସମସ୍ତଙ୍କୁ କଷ୍ଟ ଦେଇଥାଏ । ମୁଁ ତୁମ୍ଭମାନଙ୍କୁ ଉତ୍ପୀଡ଼ନ କଲି ବୋଲି ଲଜ୍ଜିତ ।'

ପିଲାର୍ ଗଭୀର ସ୍ନେହମିଶା ସ୍ୱରରେ କହିଲା "ତୋ ଲଜ୍ଜା ପୋଡ଼ିଯାଉ । ମେରଆ ଯଦି ପୁଣି ତୋତେ ଚୁମାଖାଏ ତେବେ ମୁଁ ମଧ୍ୟ ଚୁମା ଖାଇବାକୁ ଆରମ୍ଭ କରବ । ବର୍ଷକ ପୂର୍ବେ ମୁଁ ଜଣେ ଷଣ୍ଢ ଲଢୁଆଳକୁ ଚୁମା ଖାଇଥିଲି । ସେ ଲୋକଟା

ମଧ୍ୟ ତୋ ପରି ବଫଲ ହୋଇଥିଲା । ବଫଲ ଲଢ଼୍ଆଲ ସାମ୍ୟବାଦୀ ଦଳଭୁକ୍ତ ହେଲେ ମୁଁ ଚୁମା ଖାଇବ । ଇଂରେଜ, ତାକୁ ଧର, ମୁଁ ଠିକ୍‌ଏ ଭଲକରି ଚୁମ୍ବନ କରନ୍ତାଏ ।”

ବାଲକଟି ଶୀଘ୍ର ବୃଲ୍‌ପଡ଼ି କହି ଉଠିଲା 'ନାଁ ନାଁ । ମୋତେ ଛାଡ଼ । ମୁଁ ଭଲ ଅଛି । ମୁଁ ଲଜ୍ଜାବୋଧ କରୁଅଛି ।' ସେ ଠିଆହୋଇ ନିଜର ମୁହଁକୁ ସଂଯତ କଲା । ମେରିଆ ରବର୍ଟ ଜର୍ଡ଼ାନ୍‌ଙ୍କ ହାତ ଧଇଲା । ପିଲାର୍ ନିଜ ପିଠିରେ ହାତ ରଖି ବାଲକଟିକୁ ଅନାଇ ଅଟ୍ଟା କରିବାକୁ ଲାଗିଲା ।

ସେ କହିଲା 'ମୁଁ ଚୁମା ଖାଇଲେ କୌଣସି ଭଉଣୀ ଭଳି ଚୁମା ଖାଇବ ନାହିଁ । ଏକମାତ୍ର ଭଉଣୀ ପରି ଚୁମା ଖାଇବ ।'

ବାଲକଟି କହିଲା "ରହସ୍ୟ କରିବା ଦରକାର ନାହିଁ । ମୁଁ ଭଲ ଅଛି । ମୋ କଥା କହିଲ ବୋଲି ମୁଁ ଦୁଃଖିତ ।”

ପିଲାର୍ କହିଲା 'ହଉ ତେବେ ବୃଲ ବୁଢ଼ାକୁ ଭେଟିବା । ଏପରି ମାନସିକ ଉତ୍ତେଜନା ଦ୍ୱାରା ମୁଁ କ୍ଳାନ୍ତ ହୋଇଯାଏ ।'

ବାଲକ ତା ଆଡ଼କୁ ଅନାଇଲା । ତା ଗ୍ରୀବାଣୀରୁ ଜଣାଗଲା ଯେ ସେ ମନରେ ଆଘାତ ପାଇଅଛି । ପିଲାର କହିଲା 'ତୋ ମାନସିକ ଉତ୍ତେଜନା ନୁହେ, ମୋ ନିଜର । ଏଣ୍ଡ଼ି ଲଢ଼୍ଆଲ ହୋଇ ଏ କି କୋମଳତା ତୋର ?'

ଯୋଆକ୍ୱିନ କହିଲା "ମୁଁ ସେଥିରେ ବିଫଳ ହୋଇଅଛି, ତୁମେ ବାରମ୍ବାର ସେ କଥା କୁହ ନାହିଁ ।”

'କିନ୍ତୁ ତୁ ତ ମୁଣ୍ଡରେ ଚୁଟି ବଢ଼ାଇ ଅଛୁ ?'

'ହଁ ସେଥିରେ ଦୋଷ କଅଣ ? ଲଢ଼ୁଆଲ ହେବା ଦ୍ୱାରା ଆର୍ଥିକ ଉନ୍ନତି ଘଟିବ । ଅନେକ ଲୋକ ଏପରି ଶିକ୍ଷାକଲେ କାମପାଇ ପାରିବେ । ଗଭର୍ଣ୍ଣମେଣ୍ଟ ଏହା ନିଷ୍ପ୍ୟୁଣ କରିବେ ଏବଂ ହୁଏତ ଏଣିକି ମୋର ଆଉ ଡର ରହିବ ନାହିଁ ।

ପିଲାର୍ କହିଲା 'ହଁ ହୁଏତ ତୋ ଅନୁମାନ ଯଥାର୍ଥ ।'

ମେରିଆ କହିଲା "ପିଲାର୍, ତୁ ଏପରି ନିଷ୍ଠୁର ଭାବରେ କାହିଁକି କହୁଅଛୁ ? ମୁଁ ତୋତେ ଖୁବ୍ ଭଲପାଏ କିନ୍ତୁ ତୋ ଧରଣ ଅତ୍ୟନ୍ତ ବର୍ବର ହୋଇ ଉଠୁଛି ।”

ପିଲାର କହିଲା 'ମୁଁ ହୁଏତ ବର୍ବର ଭଳି ବ୍ୟବହାର କରୁଅଛି । ଶୁଣ ଇଂରେଜ, ଏଲ୍‌ସୋର୍ଡ଼ୋକୁ ତୁମେ କଅଣ କହିବ ଭାବିଛ ?'

'ହଁ ।'

'ସେ ଲୋକଟା ତୁମ ମୋ ଭଳି ବେଶୀ ଭାବପ୍ରବଣ ନୁହେଁ ବା ବାଜେ ବକ୍ ବକ୍ କରେ ନାହିଁ ।'

ମେଣ୍ଢ଼ା ରାଗିଯାଇ କହିଲା 'ତୁ ଏପରି ଭାବେ କାହିଁକି କହୁଅଛୁ ?'

ପିଲାର୍ ଯାଉ ଯାଉ କହିଲା 'ଜାଣେନା । ତୁ କାହିଁକି ଭାବୁଅଛୁ ?'

'ମୁଁ ମଧ୍ୟ ଜାଣେନା ।'

ପିଲାର୍ ରାଗରେ କହିଲା "ବେଳେବେଳେ ଅନେକ ବିଷୟରେ ମୁଁ ଶ୍ରାନ୍ତ ଅନୁଭବ କରେ । ସେଥିରୁ ଗୋଟିଏ ହେଉଛି ବୟସ, ବୁଝିଲୁ ? ୪୮ବର୍ଷ ବୟସ୍କ ସାଙ୍ଗକୁ କୁତ୍ସିତ ବଦନଶ୍ରୀ । ଅନ୍ୟ ଗୋଟିଏ ହେଉଛି କୌଣସି ବ୍ୟର୍ଥ କ୍ଷଣ ଲଡ଼ୁଆଳ ମୁହଁରେ ଭୟର ଚିହ୍ନ ଦେଖିଲେ । ସେ ପୁଣି ସାମ୍ୟବାଦ ପ୍ରବୃତ୍ତିସମ୍ପନ୍ନ ହୋଇଥିଲା । ରହସ୍ୟରେ ମୁଁ ତାକୁ ଚୁମ୍ବା ଖାଇପାରେ ।"

ବାଳକଟି କହିଲା 'ତୁଚ୍ଛା ମିଛ କଥା । ମୋ ମୁହଁରେ ଭୟର ଚିହ୍ନନାହିଁ ।'

'ହଁ ମିଛ କଥା । ତୁମେ ସବୁ ମୁଣ୍ଡଗଣ୍ଡି ବୁଝିଛ । ଛାଡ଼ ସେ କଥା । ନେଇତ ସାନ୍ତୁଆଗୋ ଆସିଲାଣି । କହୋ ସାନ୍ତୁଆଗୋ, ଭଲ ତ ?'

ପିଲାର୍ ଯେଉଁ ଲୋକକୁ ଏହା କହିଲା, ସେ ଲୋକଟା ମୋଟା ଓ ଖଟାକୃତ । ବର୍ଣ୍ଣ ଶ୍ୟାମଳ, ଚଉଡ଼ା ହନୁହାଡ଼, ନାକ ଶୁକ ନାସା ପରି, ଉପର ଓଠ ଲମ୍ବା, ମୁହଁ ଚଉଡ଼ା ଓଠ ପତଳା । ସେ ଚକ୍କଣ ଭାବରେ କ୍ଷୌର ହୋଇଥାଏ ଏବଂ ଗୁହା ଭିତରୁ ତାଙ୍କ ଆଡ଼କୁ ଫରକଟା ଗୋଡ଼ କରି ବାହାରି ଆସିଲା । ଗାଈ-ଜଗୁଆଳର ମୋଜା ଓ ବୁଟ୍ ସେ ପିନ୍ଧିଥିଲା । ବଡ଼ ଗରମ ପଡ଼ୁଥିଲେ ମଧ୍ୟ ଉଲ୍‌ର ଜଙ୍ଘିଆ ଓ ଚମଡ଼ାର କୁରୁତା ତା ଦେହରେ ଥାଏ । ସେ ପିଲାର ଓ ରବର୍ଟ ଜର୍ଡ଼ାନ ସହିତ କରମର୍ଦ୍ଦନ କରି ମେଣ୍ଢ଼ା କାନ୍ଧ ଆପୁଡ଼େଇଲା ଏବଂ ପିଲାର୍‌କୁ ଖାଇଛ କି ନାହିଁ ପଚାରିଲା । ପିଲାର୍ ମୁଣ୍ଡ ହଲାଇ ଜବାବ ଦେଲା । ଏହାପରେ ରବର୍ଟ ଜର୍ଡ଼ାନ୍‌ଙ୍କୁ ଖାଇବା ପିଇବା କଥା ପଚାରିଲା । ସେ ମଧ୍ୟ ଖାଇ ସାରିଲେଣି କହି ଧନ୍ୟବାଦ ଦେଲେ ।

ଏଲ୍ ସୋର୍ଡ଼ୋ କହିଲା 'ହୁଇସ୍କି ?'

'ତୋ ପାଖରେ ଅଛି ?'

'ତୁମେ କଅଣ ଇଂରେଜ, ରୁଷୀୟ ନୁହ ?'

'ମୁଁ ମାର୍କିନ ।'

'ଏଠାରେ ଅଳ୍ପ ମାର୍କିନଅଛନ୍ତି ।'

'ବର୍ତ୍ତମାନ ଅଧିକ ।'

'ମନ୍ଦ ନୁହେଁ, ଉତ୍ତର ନା ଦକ୍ଷିଣ ଆମେରିକାରୁ ?'

'ଉତ୍ତର ।'

'ଇଂରେଜଙ୍କ ପର । କେବେ ପୋଲ ଉଡ଼ାଇବ ?'

'ପୋଲ କଥା ତୁମକୁ ଜଣା ।' ସେ ହୁଁ କହିବାରୁ କହିଲେ 'ପଅରଦିନ ।'

ଏଲ୍ ସୋର୍ଡ଼ୋ ସନ୍ତୋଷ ପ୍ରକାଶ କରି ପିଲର୍‌କୁ ପାବ୍‌ଲୋର କଥା ପଚାରିଲା । ପିଲର୍ ମୁଣ୍ଡ ହଲାଇବାରୁ ହସିଦେଲା । ପୁଣି ଥରେ ହସି ମେରିଆକୁ କହିଲା "ଏଠାରୁ ଚାଲିଯା । ଅଧଘଣ୍ଟା ପରେ ଫେରିବୁ ।" ଏହା କହି ନିଜ ପକେଟରୁ ଘଣ୍ଟା କାଢ଼ି ଦେଖିଲା ।

ଖଣ୍ଡିଏ ଚଉରସ୍ କାଠ ଉପରେ ସମସ୍ତଙ୍କୁ ବସିବାକୁ କହି ଯୋଆକ୍ୱିନ୍‌କୁ ନିଜର ବୁଢ଼ା ଆଙ୍ଗୁଳି ଦ୍ୱାରା ସେମାନେ ଆସିଥିବା ମାର୍ଗ ମେରିଆକୁ ଇସାରା କଲା । ମେରିଆ କହିଲା 'ସେ ଯୋଆକ୍ୱିନ୍‌କୁ ନେଇ ଚାଲିଯିବ ଏବଂ ପରେ ଫେରି ଆସିବ ।'

ଏଲ୍ ସୋର୍ଡ଼ୋ ଗୁହା ଭିତରକୁ ଯାଇ ୩ଗୋଟି ଗିଲାସ ଏବଂ ଏକ ପାଇଣ୍ଟ୍ ହ୍ୱିସ୍କି ଏବଂ ମାଠିଆଏ ପାଣି ନେଇ ଆସିଲା । ଗିଲାସକୁ କାଠ ଉପରେ ରଖି ମାଠିଆକୁ ତଳେ ଥୋଇଲା । ଏହାପରେ ଜର୍ଡ଼ାନ୍‌ଙ୍କ ହାତରେ ବୋତଲ ଦେଇ କହିଲା ଏଠାରେ ବରଫ ନାହିଁ । ନିଜ ହାତରେ ଗିଲାସ ଟାଣି ପିଲାର୍ କହିଲା ଯେ ତାହାର ବରଫ ଦରକାର ନାହିଁ ।

ଏଲ୍ ସୋର୍ଡୋ କହିଲା 'ଗତରାତରେ ମାଟିରେ ବରଫ ଜମିଥିଲା । ବର୍ତ୍ତମାନ ତରଳିଗଲାଣି । ବରଫ ମିଳିବ ସେହି ଦୂର ପାହାଡ଼ରେ ।'

ରବର୍ଟ ଜର୍ଡାନ୍ ଏଲ୍ ସୋର୍ଡ଼ୋ ଗିଲାସରେ ମଦ ଢାଳିବାକୁ ଯାଆନ୍ତେ ସେହି କାଲ ଲୋକଟା କହିଲା 'ମୋ ପାଇଁ ଢାଳିବା ଦରକାର ନାହିଁ । ନିଜ ନିଜ ପାଇଁ ଢାଳ ।'

ରବର୍ଟ୍ ଜର୍ଡ଼ାନ୍ ପୂରା ଗିଲାସେ ମଦ ଢାଳି ପିଇଦେଲେ । ସୋର୍ଡ଼ୋ ତାଙ୍କୁ ଚାହିଁଥାଏ । ସେ ମଦ ପିଇ ସାରିଲା ପରେ ତାଙ୍କ ହାତକୁ ମାଠିଆ ବଢ଼ାଇ ଦେଲା ।

ସେ ଗିଲାସେ ଅଣ୍ଡା ପାଣି ମଧ୍ଯ ପିଇ ନେଲେ । ସୋର୍ଡ଼ୋ ଅଧଗିଲାସେ ମଦରେ ପାଣି ମିଶାଇ ନିଜେ ପିଇଲା । ତପୂରେ ମଦ ପିଇବ କି ନାହିଁ ପଚାରିଲାରୁ ପିଲାର୍ ମନା କରି ଖାଲି ପାଣି ମାଗିଲା । ସୋର୍ଡ଼ୋ ଜର୍ଡ଼ାନ୍‌ଙ୍କୁ ଲକ୍ଷ୍ୟ କରି କହିଲା ମୁଁ ବହୁତ ଇଂରେଜଙ୍କୁ ଜାଣେ । ସମସ୍ତେ ବହୁତ ହୁଇସ୍କି ପିଇଥାନ୍ତି ।'

"କେଉଁଠାରେ ଜାଣିଲୁ ?"

"ରାଞ୍ଚ୍‌ଠାରେ । ସେମାନେ ଆମ କର୍ତ୍ତାଙ୍କର ବନ୍ଧୁ ଥିଲେ ।"

"ହୁଇସ୍କି କେଉଁଠାରୁ ପାଇଲୁ ?"

'ସେ ଶୁଣି ନ ପାରି କଅଣ ବୋଲି ପଚାରିଲା ।'

ପିଲାର୍ କହିଲା 'ସେ ପରା କାଲା । ତା ଆର କାନରେ ଢୋଲ ପିଟ ।' ସୋର୍ଡ଼ୋ ମଧ୍ଯ ତା ଭଲ କାନଟା ଦେଖାଇ ଦେଲା ।

ରବର୍ଟ ଜର୍ଡାନ୍ ପାଟିକରି ପଚାରିଲେ 'ହୁଇସ୍କି କେଉଁଠାରୁ ଆଣିଲୁ ?'

'ମୁଁ ନିଜେ ତିଆର କରିଅଛୁ ।' ଏକଥା ଶୁଣି ମୁହଁକୁ ନେଉଥିବା ଗିଲାସ ଅଟକି ଗଲା ନାହିଁ ।

ସୋର୍ଡ଼ୋ ତାଙ୍କ କାନ୍ଧ ଥାପୁଡ଼େଇ କହିଲା "ନା, ମୁଁ ଥଟ୍ଟା କରୁଥିଲି । ହୁଇସ୍କି ଲା-ଗ୍ରାଞ୍ଜାରୁ ଆଣିଅଛୁ । କାଲି ରାତିରେ ଶୁଣିଲିଯେ ଜଣେ ଇଂରେଜ ଡାଇନା-ମାଇଟ୍ ଫୁଟାଇଲା ଲୋକ ଆସିଛୁ । ମନ ବଡ଼ ଖୁସି ହେଲା, ତୁମପାଇଁ ଏହା ସାଇତି ରଖିଥିଲି । ଏହା କପରି ଲାଗୁଛୁ ?"

"ଖୁବ୍ ଭଲ । ହୁଇସ୍କି ଉଚ୍ଚ ଦରର ।"

"ଶୁଣି ଖୁସି ହେଲି । ଆଜି ରାତିରେ ଖବର ନେଇ ଆସିଛ ।"

"କି ଖବର ?"

"ସୈନ୍ୟ ଚଳାଚଳ ।"

"କେଉଁଠି ?"

"ସେଗୋଭିଆଠାରେ । ତୁମେ ତ ଉଡ଼ାଜାହାଜ ଦେଖିଥିବ ?"

"ହଁ ।"

"ଅବସ୍ଥା ଖରାପ ?"

"ହଁ ଖରାପ ।"

"ସୈନ୍ୟ ଚଳାଚଳ କେଉଁଠାରେ ?"

'ଭିଲକାଷ୍ଟିନ୍ ଓ ସେଗୋଭିଆ ମଧ୍ୟରେ । ଭାଲାଡୋଲଡ୍ ରାସ୍ତାରେ ଭିଲା କାଷ୍ଟିନ୍ ଓ ସାନ୍ ରଫେଲ ମଧ୍ୟରେ ବହୁତ ସୈନ୍ୟ ଚଳାଚଳ ହେଉଅଛି ।'

"ତୁ କଅଣ ଭାବୁଛୁ ?"

'ଆମକୁ ପ୍ରସ୍ତୁତ ରହିବାକୁ ପଡ଼ିବ ।'

'ସମ୍ଭବ ।'

'ସେମାନେ ସେ କଥା ଜାଣିଛନ୍ତି ଓ ପ୍ରସ୍ତୁତ ହେଉ ଅଛନ୍ତି ।'

'ହୋଇପାରେ ।'

'ଆଜି ରାତିରେ ପୋଲ ଉଡ଼ାଇ ଦେଉନାହଁ ।'

'ହୁକୁମ ନାହିଁ ।'

'କାହା ହୁକୁମ ?'

'ସେନାପତିଙ୍କର ।'

ପିଲାର ପଚାରିଲା 'ପୋଲ ଉଡ଼ାଇ ଦେବ । ସମୟଟା କଅଣ ଏତେ ଗୁରୁତର ?'

'ସବୁଠାରୁ ବେଶୀ ଗୁରୁତର ।'

କିନ୍ତୁ ଶତ୍ରୁପକ୍ଷ ସୈନ୍ୟ ଆଣି ପହଞ୍ଚାଇ ଦେଲେ କଥା ସରିଯିବ ।

'ଆନ୍‌ସେଲ୍‌ମୋ ରାସ୍ତା ଜଗିଅଛି । ସେ ଫେରିଲେ ତାହାର ହାତରେ ରିପୋର୍ଟ ଲେଖି ପଠାଇବ ।'

ସୋର୍ଡୋ ପଚାରିଲା 'ତୁମର ରାସ୍ତା ଜଗୁଆଳୀ ରହିଅଛି ?'

କାଲ ଲୋକଟା ତାଙ୍କ କଥାର କେତେ ଅଂଶ ଶୁଣି ପାରିଅଛି ଜର୍ଡାନ୍ ତାହା ଜାଣି ପାରିଲେ ନାହିଁ । କହିଲେ 'ହଁ ଜଗୁଆଳୀ ଅଛି ।'

ସୋର୍ଡୋ କହିଲା 'ମୁଁ ମଧ୍ୟ ଅଛି । କାହିଁକି ବର୍ତ୍ତମାନ ପୋଲ ଧ୍ୱଂସ କରୁ ନାହଁ ?"

'ଉପରବାଲାଙ୍କ ହୁକୁମ ମାନିବାକୁ ବାଧ୍ୟ ।'

ସୋର୍ଡ଼ୋ କହିଲା 'ଏ କଥା ମୁଁ ପସନ୍ଦ କରୁନାହିଁ ।'

'ମୁଁ ମଧ୍ୟ । ଜର୍ଡ଼ାନ୍ କହିଲେ । ସୋର୍ଡ଼ୋ ମୁଣ୍ଡ ହଲାଇ ଧୂର୍ତ୍ତ ଢଙ୍ଗରେ ହସିଦେଇ ପଚାରିଲା 'ମୋତେ କଅଣ ପାଇଁ ଖୋଜୁଥିଲ ?'

'ତୋ ପାଖରେ କେତେ ଲୋକ ଅଛନ୍ତି ?'

'ଆଠ ଜଣ ।'

'ଆମକୁ ଟେଲିଫୋନ ତାର କାଟିଦେବାକୁ ହେବ ।' ରାସ୍ତା ମରାମତିବାଲାର ଘର ଆକ୍ରମଣ ଓ ଦଖଲ କରି ପୋଲ ଆଡ଼କୁ ପଳେଇବାକୁ ହେବ ।'

'ଇଏତ ତ ଖୁବ୍ ସହଜ ।'

"ଏସବୁ ତୋତେ ଲିଖିତ ଆକାରରେ ଦିଆଯିବ ।"

"ସେତେ ପରିଶ୍ରମ କରିବା ଅନାବଶ୍ୟକ । ପାବ୍‌ଲୋ କଥା ?"

ଟେଲିଫୋନ୍ କାଟିବ, କରତକଲ ପାଖ ଜଗୁଆଳୀ ଘର ଆକ୍ରମଣ ଓ ଦଖଲ ନେଇ ପୋଲ ଆଡ଼କୁ ପଳେଇବ ।

ପିଲାର୍ ବଡ଼ପାଟିରେ ପଚାରିଲା "ହିଟି ଆସିବା କପରି ? ଆମେ ୭ ଜଣ ପୁରୁଷ, ୨ ଜଣ ମହିଳା ଏବଂ ୫ଟା ଘୋଡ଼ା ତମର ?"

"ଆମର ୮ ଜଣ ମଣିଷଙ୍କୁ ୪ଟା ଘୋଡ଼ା । ଆମର ଘୋଡ଼ା ଊଣା" ସୋର୍ଡ଼ୋ କହିଲା ।

ପିଲାର୍ କହିଲା "ମୋଟ୍ ୧୭ ଜଣ ଲୋକ ଏବଂ ୯ଟା ଘୋଡ଼ା । ମାଲମତା ଯିବ କପରି ?"

ସୋର୍ଡ଼ୋ କିଛି ଜବାବ ନଦେବାରୁ ରବର୍ଟ ଜର୍ଡାନ୍ ତା' ଭଲ କାନରେ ବଡ଼ ପାଟିକରି କହିଲେ "ଅଧିକ ଘୋଡ଼ା ପାଇବାର ଉପାୟ ନାହିଁ ?"

ସୋର୍ଡ଼ୋ ଅଙ୍ଗୁଳି ଗଣି ଜବାବ ଦେଲା "ଯୁଦ୍ଧ ଲାଗିବାର ବର୍ଷେ ହେଲା । ସେଥିରେ ୪ଟା ଘୋଡ଼ା ମିଳିଲା, ଆଉ ତୁମେ ୨୪ ଘଣ୍ଟାରେ ୮ଟା ଘୋଡ଼ା ଲୋଡ଼ୁଅଛ ?"

ରବର୍ଟ ଜର୍ଡ଼ାନ୍ କହିଲେ "ହଁ । ତୁମେ ଏଠାରୁ ଚାଲିଯାଉଅଛ, ଆଉ ଆଗପରି ସନ୍ତର୍ପଣରେ ରହିବାର ଆବଶ୍ୟକ ନାହିଁ, ବର୍ତ୍ତମାନ ମଧ୍ୟ ସତର୍କ ହେବା କଥା ନୁହେଁ । ଏସବୁ ଜାଣି ତୁମେ କେଉଁଠାରୁ ଦଉଡ଼ କାଟି ୮ଟା ଘୋଡ଼ା ଚୋରାଇ ଆଣି ପାରିବ ନାହିଁ ?"

ଯୋଡ଼୍ଟା କହିଲା "ମିଳିବା ନମିଳିବା ସ୍ଥିରତା ନାହିଁ ।"

"ତୋର ସ୍ୱୟଂକ୍ରିୟ ରାଇଫଲ୍‌ଟାଏ ଅଛି ? କେଉଁଠାରେ ଅଛି, କି ଧରଣର, କେତେ ସଂଖ୍ୟକ ଗୁଳି ?" ଜର୍ଡାନ୍ ପଚାରିଲେ ।

ଯୋଡ଼୍ଟା କହିଲା "ହଁ, ରାଇଫଲ୍ ପାହାଡ଼ ଉପର ଅଂଶରେ ରହିଛି । କୋମ୍ପାନୀ ନାମ ଜାଣେନାହିଁ । ସେଥିରେ ଗୁଳିଭର୍ତ୍ତି ୫ ଗୋଟା ଥାଳା ଅଛି ।" ଏକଥା ଶୁଣି ତାହାର ବ୍ୟବହାର କିଏ ଜାଣେ କି ନା ପଚାରିବାରୁ ଯୋଡ଼୍ଟା କହିଲା ସେ ନିଜେ ଅତି ଅଳ୍ପ ଜାଣେ । ହେଲେ ଏ ଜାଗାରେ ତାହା ଫୁଟାଇ ଗଣ୍ଡଗୋଳ ଘଟାଇବା ଉଚିତ ନୁହେଁ ।"

ରବର୍ଟ ଜର୍ଡାନ୍ ପଚାରିଲେ "ହାତବୋମା ଅଛି କି ? ରାଇଫଲ୍‌ଟା ମୁଁ ପରେ ଦେଖିବି ।"

"ହାତବୋମା ବହୁତ ଅଛି । ପ୍ରତି ରାଇଫଲ୍ ପିଛୁ ୧୫୦ ଦଫା । ବେଶୀ ମଧ୍ୟ ହୋଇପାରେ ।"

"ଅନ୍ୟ ଲୋକଙ୍କ କଥା କଅଣ ?"

"କେଉଁ ବିଷୟରେ ?"

"ମୁଁ ପୋଲ ଧ୍ୱଂସ କାର୍ଯ୍ୟରେ ଲିପ୍ତ ଥିଲାବେଳେ ରାସ୍ତାଘାଟ ଜଗିବା ପାଇଁ ଉପଯୁକ୍ତ ସଂଖ୍ୟାରେ ସୈନ୍ୟ ରହିବା ଆବଶ୍ୟକ । ଆମର ଯାହା ଅଛି ତାହାର ଦୁଇଗୁଣ ଲୋଡ଼ା ।"

"ବ୍ୟସ୍ତ ହୁଅନାହିଁ । ଲୋକ ଜଗିବେ । ଦିନ କି ରାତି ।"

'ଦିନ ।'

"ତେବେ ଚିନ୍ତା କରନା ।"

ରବର୍ଟ ଜର୍ଡାନ୍ କହିଲେ "ମୋତେ ନିର୍ଘାତ ୨୦ଜଣରୁ ଅଧିକ ଲୋକ ଲୋଡ଼ା ।"

"ଭଲ ଲୋକ ନାହାନ୍ତି । ଅନିର୍ଭରଶୀଳ ଲୋକ ହେଲେ ଚଳିବ ?"

"ନା । ଆଉ କେତେ ଜଣ ଭଲ ଲୋକ ମିଳି ପାରନ୍ତି ?"

"ବଡ଼ ଜୋର ୪ ଜଣ ।"

"ଏତେ ଅଳ୍ପ ।"

"ଅନ୍ୟଙ୍କୁ ବିଶ୍ୱାସ କରି ହେବ ନାହିଁ ।"

"ଘୋଡ଼ା ରଖୁଆଳ ?"

"ସେଥିପାଇଁ ଅଧିକ ବିଶ୍ୱାସୀ ଲୋକ ଲୋଡ଼ା ।"

"ଯଦି ମିଳେ ତେବେ ୧୦ ଜଣ ଭଲ ଲୋକ ଅଧିକ ଦରକାର ।"

"୪ ଜଣ ।"

"ଆନ୍‌ସେଲ୍‌ମୋ କହୁଥିଲା ଏଠା ପାହାଡ଼ ଓ ବଣରେ ଶତାଧିକ ଲୋକ ଅଛନ୍ତି ।"

"କାମିକା ନୁହନ୍ତି ?"

ରବର୍ଟ ଜର୍ଡାନ୍ ପିଲାର୍‌କୁ କହିଲେ "ତୁ ପରା ୩୦ ଜଣ ଏକପ୍ରକାର ବିଶ୍ୱାସଯୋଗ୍ୟ ଲୋକ ମିଳିବେ ବୋଲି କହୁଥିଲୁ ?"

ପିଲାର୍ ବଡ଼ପାଟିରେ ସୋର୍ଡୋକୁ କହିଲା "ଇଲିଆସ୍‌ଙ୍କ ଲୋକବାକ କଥା କଅଣ ?"

"ଭଲ ନୁହେ ।"

ରବର୍ଟ ଜର୍ଡାନ୍ ପଚାରିଲେ "୧୦ ଜଣ ପାଇପାରିବୁ ନାହିଁ ?" ସୋର୍ଡୋ ତାଙ୍କୁ ବଲ୍‌ବଲ୍ କରି ଅନାଇ ମୁଣ୍ଡ ହଲାଇଲା ଏବଂ ୪ ଅଙ୍ଗୁଳି ଦେଖାଇ ୪ ଜଣ ବୋଲି କହିଲା ।" ·

ରବର୍ଟ ଜର୍ଡାନ୍ କହିଲେ "ଅଗ୍ରୁ ତୋ ଲୋକ ଭଲ ତ ?" ଏଭଳି ପଚାରି ସାରି ସେ ଦୁଃଖିତ ମଧ୍ୟ ହେଲେ । ସୋର୍ଡୋ ପୁଣି ମୁଣ୍ଡ ହଲାଇଲା ।"

"ସେ ସ୍ପେନ୍ ଭାଷାରେ କହିଲେ "ବିପଦ ସୀମା ଭିତରେ କଅଣ ଦଗାଦେବେ ?"

"ସମ୍ଭବତଃ ଦେଇ ପାରନ୍ତି ।" ଦମ୍ଭ ନକରି ସୋର୍ଡୋ କହିଲା ମୋ ପକ୍ଷରେ ୪ ଯାହା ୪୦ ସେଇଆ । ବରଂ ୪ ଜଣ ବିଶ୍ୱାସୀ ଲୋକ ବେଶୀ ସଂଖ୍ୟକ ଅବିଶ୍ୱାସୀ ଅପେକ୍ଷା ଭଲ । ଏହି ଯୁଦ୍ଧରେ ମନ୍ଦ ଲୋକଙ୍କ ସଂଖ୍ୟା ବହୁତ ବେଶୀ । ୨।୪ ଜଣ ଭଲ ମିଳିବେ । ଦିନକୁଦିନ ଭଲ ଲୋକ ସଂଖ୍ୟା ଊଣା ହେଉଅଛି । ତୋ ମତ କଅଣ ପିଲାର୍ ?"

ପିଲାର୍ କହିଲା "ତୁତ ଜାଣୁ ଦିନକୁଦିନ ଅବସ୍ଥା ଖରାପ ହେଉଅଛି ।"

ରବର୍ଟ ଜର୍ଡାନ୍‌ଙ୍କୁ ସୋର୍ଡୋ କହିଲା 'ଠିକଏ ପିଇନଥ । ମୁଁ ମୋ ଲୋକଛଡ଼ା ଅଧିକ ୪ ଜଣ ଆଣିବି । ମୋଟରେ ୧୨ ଜଣ । ଆଜି ରାତିରେ ସବୁ କଥା ଚର୍ଚ୍ଚା କରିବା । ମୋ ପାଖରେ ୬୦ ଖଣ୍ଡ ଡାଇନାମାଇଟ୍ ଅଛି । ତମର ଦରକାର ?'

'ଶତକଡ଼ା କେତେଭାଗ ଶକ୍ତିଶାଳୀ ?' ଜର୍ଡାନ୍ ପଚାରିଲେ ।

"କହି ପାରିବ ନାହିଁ, ତେବେ ସବୁତକ ସାଧାରଣ । ଆଣିବି କି ?"

'ଉପର ମୁଣ୍ଡର ଗ୍ରେଟ ପୋଲଟା ତାହାଦ୍ୱାରା ନଷ୍ଟ କରିବା ଚମତ୍କାର ହେବ । ତୁ ଆଜି ରାତିରେ ଆସିବୁ ତ ? ସାଙ୍ଗରେ ତାହା ଆଣିବୁ । ସେ ପୋଲଟି ନଷ୍ଟ କରିବାପାଇଁ ମୋତେ ଆଦେଶ ମିଳି ନାହିଁ କିନ୍ତୁ ତାହା ନଷ୍ଟକରିବା ଦରକାର ।'

ସୋର୍ଡୋ କହିଲା 'ମୁଁ ରାତିରେ ଆସିବି । ଆସିଲେ ଘୋଡ଼ା ଖୋଜିବି ।'

"ଘୋଡ଼ା ମିଳିବାର ସମ୍ଭାବନା ଅଛି ତ ?"

"ଅଛି । ବର୍ତ୍ତମାନ ଖାଇନିଅ ।"

ରବର୍ଟ ଜର୍ଡାନ୍ ଭାବିଲେ "ଲୋକଟାର କଥା କହିବା ଧରଣ ଏହିଭଳି କିମ୍ବା ବିଦେଶୀଙ୍କୁ ବୁଝାଇବା ପାଇଁ ଏପରି ଧରଣ ଆବଶ୍ୟକ ବୋଲି ତାହାର ଧାରଣା ।"

ପିଲାର୍ ସୋର୍ଡୋକୁ ପଚାରିଲେ 'ଏଠା କାମ ଶେଷକରି ଆମେ କୁଆଡ଼େଯିବା ?'

ସୋର୍ଡୋ ମୁହଁ ନଫିଟାଇ କାନ୍ଧ କୁଞ୍ଚନକଲା ।

ପିଲାର୍ କହିଲା "ସବୁକଥା ବନ୍ଦୋବସ୍ତ କରିବାକୁ ହେବ ।"

ସୋର୍ଡୋ କହିଲା 'ନିଶ୍ଚୟ, ନହେବ ବା କାହିଁକି ?'

ପିଲାର୍ କହିଲା 'ଅବସ୍ଥାତ ବହୁତ ଖରାପ ହୋଇ ରହିଅଛି । ବର୍ତ୍ତମାନ ସବୁ କଥା ଭଲ ଭାବରେ ଭାବିଚିନ୍ତି ବନ୍ଦୋବସ୍ତ କରିବାକୁ ପଡ଼ିବ ।'

ସୋର୍ଡୋ ପଚାରିଲା 'ସେକଥା ସତ, କିନ୍ତୁ ତୁ କଅଣ ପାଇଁ ଚିନ୍ତିତ କାଲେ ?'

ପିଲାର୍ ତାକୁ ଶୁଣାଇଲା "ସବୁ କଥା ପାଇଁ । ସୋର୍ଡୋ ମୁରୁକି ହସି କହିଲା 'ସ୍ପେନ ଭାଷାରେ କହିଲା—ବାଆ ଚଲେ ବାସ୍ଥାର କସ ଯାଏ ? ତୁ ତ ପାବ୍‌ଲୋ ସାଙ୍ଗରେ ରହିଅଛୁ ?'

ସୋର୍ଡୋର ସ୍ପେନସ୍ ଭାଷାରେ ବିଶୁଦ୍ଧ ଜ୍ଞାନ ଦେଖି ରବର୍ଟ ଜର୍ଡାନ୍ ବିସ୍ମିତ ହେଲେ । ଭାବିଲେ ଏଭଳି ସୁବୋଧ ଭାଷାରେ କଥା କହିବା ଭଲ ।

ପିଲାର୍ ପୁଣି ପଚାରିଲା "ଆମ୍ଭେମାନେ କୁଆଡ଼େ ଯାଇପାରିବା କିଛି ଭାବିଛୁ ?"

ସୋର୍ଡ଼ୋ କହିଲା "କୁଆଡ଼େ କଅଣ ? କେତେ ଜାଗା ଅଛି । ତୁ ଗ୍ରୀଡ଼ୋସକୁ ଜାଣୁ ?"

"ସେଠାରେ ମଧ୍ୟ ବହୁତ ଲୋକ ଅଛନ୍ତି । ଫ୍ୟାସିଷ୍ଟମାନେ ସମୟ ପାଇଲାକ୍ଷଣି ସବୁ ଯାଗାରୁ ଆମ ଚିହ୍ନ ଲୋପ କରିଦେବେ ।"

'ହଁ, କିନ୍ତୁ ଆମ ଦେଶଟା ଯେମିତି ସୁବିଶାଳ ସେମିତି ବଣଜଙ୍ଗଲ ପୂର୍ଣ୍ଣ ।'

"ଗ୍ରୀଡ଼ୋସ୍‌କୁ ଯିବା ବଡ଼ କଷ୍ଟ ସାଧ୍ୟ" ପିଲାର୍ କହିଲା ।

ସୋର୍ଡ଼ୋ ଜବାବ ଦେଲା 'କଅଣ ଅବା କଷ୍ଟ ସାଧ୍ୟ ନୁହେଁ ? ଗ୍ରୀଡ଼ୋସ୍ କିମ୍ବା ଅନ୍ୟ ଯେ କୌଣସି ସ୍ଥାନକୁ ଆମେ ଯାଇପାରିବା । ରାତିରେ ରାତିରେ ଯିବା । ବର୍ତ୍ତମାନ ଏ ସ୍ଥାନଟି ଅତ୍ୟନ୍ତ ବିପଦସଙ୍କୁଳ । ଏତେକାଳ ଯେ ଏଠାରେ ରହି ଗଲୁଣି ଏହାହିଁ ଦୈବ ଅନୁଗ୍ରହ । ଏଠା ଅପେକ୍ଷା ଗ୍ରୀଡ଼ୋସ୍ ନିରାପଦ ସ୍ଥାନ ।'

ପିଲାର୍ ପଚାରିଲା 'ମୁଁ କୁଆଡ଼େ ଯିବାକୁ ଚାହେଁ ଜାଣୁ ? ମୁଁ ପିରାଭିପାର-ମେରାକୁ ଯିବା ପାଇଁ ରାଜିନୁହେଁ । ମୁଁ ସାଧାରଣତନ୍ତ୍ର ସୀମା ଭିତରକୁ ଯିବାକୁ ଚାହେଁ ।'

'ହଁ ତାହା ସମ୍ଭବ ।'

"ତୋ ଲୋକବାକ ଯିବେ ?"

'ମୁଁ କହିଲେ ଯିବେ ।'

'ମୋ ଲୋକଙ୍କ କଥା ମୁଁ ଜାଣେ ନାହିଁ । ପାବ୍‌ଲୋ ମଙ୍ଗିଲେ ମଙ୍ଗିପାରେ । ସେ ସ୍ଥାନଟା ଅପେକ୍ଷାକୃତ ନିରାପଦ । ସୈନ୍ୟଦଳରେ ମିଶିବା ପାଇଁ ତାହାର ବୟସ ନାହିଁ । ତେବେ କର୍ତ୍ତୃପକ୍ଷ ଯଦି ବେଶୀ ବୟସର ଲୋକମାନଙ୍କୁ ଡାକନ୍ତି କଥା ସ୍ୱତନ୍ତ୍ର ହେବ । ଜିପ୍‌ସିଟା ଯିବାକୁ ମଙ୍ଗିବ ନାହିଁ । ଅନ୍ୟମାନଙ୍କ କଥା କହି ପାରିବ ନାହିଁ ।'

ଏଲ୍ ସୋର୍ଡୋ କହିଲା 'ଦୀର୍ଘକାଳ ହେଲା ଏଠାରେ କିଛି ଘଟିନାହିଁ, ଏଣୁ କରି ଲୋକେ ବିପଦର ମାତ୍ରା ଉପଲବ୍‌ଧି କରୁ ନାହାନ୍ତି ।'

ରବର୍ଟ ଜର୍ଡ଼ାନ୍ କହିଲେ "ଆଜିକାର ଉଡ଼ାଜାହାଜମାନ ଦେଖି ସେମାନେ ବିପଦ ସମ୍ବନ୍ଧରେ ସାବଧାନ ହୋଇଯିବେ । ମୁଁ ଭାବୁଛି ତୁମେ ଗ୍ରୀଡ଼ୋସଠାରୁ ମଧ୍ୟ ଭଲ କାମ ଚଳାଇ ପାରିବ ।'

ଯୋର୍ଡ଼ୋ ଚକ୍ଷୁ ବିସ୍ଫାରିତ କରି ତାଙ୍କୁ ଅନାଇଲା । ସେ ଦୃଷ୍ଟିରେ ବନ୍ଧୁତ୍ୱର ଲକ୍ଷଣ ନଥିଲା । ଜର୍ଡ଼ାନ୍ ପୁଣି କହିଲେ 'ତୁମେ ସେଠାରୁ ଅଧିକ ଫଳପ୍ରଦ ରୀତିରେ ଆକ୍ରମଣ କରି ପାରିବ ।'

ଯୋର୍ଡ଼ୋ ପଚାରିଲା 'ଜଣା ପଡ଼ୁଛି ତୁମେ ଗ୍ରୀଡ଼ୋସ ବିଷୟରେ ଅଭିଜ୍ଞ ।'

'ହଁ, ତୁମେ ପ୍ରଧାନ ରେଲ୍ ଲାଇନ୍ ଉପରେ ସେଠାରୁ ଆକ୍ରମଣ ଚଲାଇ ପାରିବ । ଆମେ ଦକ୍ଷିଣ ଅଞ୍ଚଳ ଏଷ୍ଟ୍ରିମାଦୁରାଠାରେ ଯେପରି କରୁଥିଲୁ ତୁମେ ସେହିପରି ବାରମ୍ବାର ରେଲ୍ ଲାଇନ୍ କାଟି ଦେଇ ପାରିବ । ଗ୍ରୀଡେସ୍ ଠାରେ ତୁମେ 'ଅନେକ କାମ କରି ପାରିବ ଏବଂ ତାହା ସାଧାରଣତନ୍ତ୍ର ଇଲାକାକୁ ଫେରିବା ଅପେକ୍ଷା ଅଧିକ ଲାଭ ଜନକ ହେବ ।'

ରବର୍ଟ ଜର୍ଡ଼ାନ୍ କହିଲେ 'ଏ କଥା କହୁଥିଲାବେଳେ ଦୁହେଁ ଅପ୍ରସନ୍ନ ହୋଇ ଉଠିଲେ ଏବଂ ଦୁହେଁ ପରସ୍ପରକୁ ଚାହିଁଲେ । ଶେଷକୁ ଯୋର୍ଡ଼ୋ ପଚାରିଲା 'ତୁମେ ସତକୁ ସତ ଗ୍ରୀଡ଼ୋସ୍ ସମ୍ବନ୍ଧରେ ଅଭିଜ୍ଞ ? ରବର୍ଟ ଜର୍ଡ଼ାନ୍ ଏକଥା ସ୍ୱୀକାର କରିବାରୁ ପୁଣି ପଚାରିଲା 'ତୁମେ ତେବେ କୁଆଡ଼େ ଯିବ ?'

ରବର୍ଟ ଜର୍ଡ଼ାନ୍ କହିଲେ 'ବାର୍କୋ ଡ଼ି ଆଭିଲା । ତାହା ଏ ସ୍ଥାନ ଅପେକ୍ଷା ଭଲ । ସେଠାରୁ ପ୍ରଧାନ ରେଲପଥ ଏବଂ ବିଜାର ଓ ପ୍ଲାସେନ୍‌ସିଆ ଭିତରେ ଥିବା ରେଲପଥ ନଷ୍ଟ କରିବା ଚେଷ୍ଟା କରିବ ।'

ଯୋର୍ଡ଼ୋ କହିଲା "ଭାରି କଠିନ କାମ ।"

ତାହାଠୁଁ ବିପଦ ସଙ୍କୁଳ ସ୍ଥାନ ହେଉଛି ଏଷ୍ଟ୍ରିମାଦୁରା । ସେଠିତ ପୁଣି ସେହି ରେଲପଥ କାଟିବା ପାଇଁ ଆମ୍ଭେମାନେ ଅଭିଯାନ ଚଲାଇଥିଲୁ ?'

ଯୋର୍ଡ଼ୋ କହିଲା 'ତୁମ ବହୁବଚନରେ କଥା କହୁଛ ସୁତରାଂ ଅନ୍ୟ କିଏ ଥିଲେ ?'

'ଏଷ୍ଟ୍ରିମାଦୁରାର ଗରିଲା ଦଳ । ସଂଖ୍ୟାରେ ପ୍ରାୟ ୪୦ଜଣ ।' ଜର୍ଡ଼ାନ୍ କହିଲେ ।

ପିଲାର୍ ପଚାରିଲା "ସେହି ଅଦ୍ଭୁତ ନାମଧାରୀ ସ୍ନାୟୁବିକାରଗ୍ରସ୍ତ ଲୋକଟା କଅଣ ସେଇଠାରେ କାମ କରିଥିଲା । ବର୍ତ୍ତମାନ ସେ କାହିଁ ?"

ରବର୍ଟ ଜର୍ଡ଼ାନ୍ ଜବାବ ଦେଲେ 'ହଁ, ସେ ମରିଯାଇ ଅଛନ୍ତି । ମୁଁ ମଧ୍ୟ ସେହିଠାରୁ ଆସିଅଛି ।'

ପିଲାର୍ ପଗ୍ଭରିଲା 'ଏ ପ୍ରଶ୍ନର ମର୍ମ ବୁଝିଲ ?'

ରବର୍ଟ ଜର୍ଡ୍ଡାନ୍ ମନେ ମନେ ଭାବିଲେ ସେ ସେ ଭୁଲ୍‌କରି ପକାଇଲେ । ସ୍ପେନଦେଶୀ ଲୋକଙ୍କୁ କେବେ କହିବା ଠିକନୁହେ ଯେ ଅନ୍ୟ ଲୋକମାନେ ତାଙ୍କ ଅପେକ୍ଷା ଭଲ କାମ କରିପାରନ୍ତି । ସେ ନିଜର କାର୍ଯ୍ୟଗରିମା ଏବଂ ଦକ୍ଷତା କଥା କହି ପକାଇ ସେମାନଙ୍କ ଆତ୍ମସମ୍ମାନରେ ଆଘାତ ଦେଇଅଛନ୍ତି । ତାଙ୍କୁ ମନରଖା ତୋଷାମଦଆ କଥା ନକହି କର୍ତ୍ତବ୍ୟ ଶିକ୍ଷା ଦେଇ ଅଛନ୍ତି । ଏଥିରେ ସେମାନେ ଖୁବ୍‌ଶ ରାଗାନ୍ୱିତ । ଯାହାହେଉ, ହୁଏତ ସେମାନେ ଏହା ହଜମ କରିନେବେ, ନହୁବା ନୁହେ । ଆଉ ଉପାୟ ନାହିଁ । ପ୍ରକୃତରେ ଏ କାଗା ଅପେକ୍ଷା ସେମାନେ ଗ୍ରୀଡ଼ୋସଠାରେ ଖୁବ୍ ଭଲ ସାହାଯ୍ୟ କରିପାରିବେ । କାସ୍କିନ୍ ସେହି ଟ୍ରେନ ଧ୍ୱଂସ କରିଦେବା ଦିନଠାରୁ ଆଜିପର୍ଯ୍ୟନ୍ତ ଏମାନେ ଆଉ କିଛି କରି ନାହାନ୍ତି । ସୁତରାଂ ଅଖି ଦୁଶିଆ କିଛି ଘଟି ନାହିଁ । ଟ୍ରେନ୍ ଧ୍ୱଂସରେ ଫ୍ୟାସିଷ୍ଟମାନଙ୍କର ଗୋଟିଏ ଇଞ୍ଜିନ ଏବଂ କେତେ ଜଣ ସୈନ୍ୟ ଛଡ଼ା ଅଧିକ କିଛି କ୍ଷତି ହୋଇନାହିଁ । ଅଥଚ ସେହି କ୍ଷୁଦ୍ର କାମଟାକୁ ଏମାନେ ରାମଚରିତ ଯୁଦ୍ଧ ମନେ କରି ଆସ୍ଫାଳନ କରୁଛନ୍ତି । ଗ୍ରୀଡ଼ୋସ୍‌କୁ ଯିବାକୁ ସେମାନେ ହୁଏତ ଲଜ୍ଜାବୋଧ କରିବେ, ହୁଏତ ମୋତେ ଏଠାରୁ ଘଉଡ଼ି ଦେବେ । ଯେଉଁ ଦିଗରୁ ଦେଖ ଅବସ୍ଥାଟା ସୁଖପ୍ରଦ ନୁହେ ।'

ପିଲାର୍ ପଗ୍ଭରିଲା 'ଇଂରେଜ ଶୁଣ, ତୁମର ସ୍ନାୟୁ କିପରି ଅଛି ?'

ରବର୍ଟ ଜର୍ଡ୍ଡାନ୍ କହିଲେ 'ସବୁ ଠିକ୍ ।'

'ଗତଥର ଯେଉଁ ଡାଇନାମାଇଟ୍‌ବାଲା ସେମାନେ ପଠାଇଥିଲେ ସେ ସବୁ ବିଷୟରେ କରିତ୍କର୍ମା ଥିଲେ ମଧ୍ୟ ସ୍ନାୟୁବିକ ଦୁର୍ବଳ ଥିଲେ ।'

ରବର୍ଟ ଜର୍ଡ୍ଡାନ୍ କହିଲେ 'ହଁ, ଆମ ଭିତରେ ସ୍ନାୟୁଦୁର୍ବଳ ଲୋକ ମଧ୍ୟ ଅଛନ୍ତି ।'

ପିଲାର୍ କହି ଲାଗିଲା 'ମୁଁ କହୁନାହିଁ ଯେ ସେ ଭୀରୁଲୋକ ଥିଲେ । ସେ ଖୁବ୍ ଭଲଭାବରେ କର୍ତ୍ତବ୍ୟ ସାଧନ କରିଥିଲେ । କିନ୍ତୁ ତାଙ୍କର କଥାବାର୍ତ୍ତା ଧରଣ ଅତ୍ୟନ୍ତ ହାମବଡ଼ା ଢଙ୍ଗର ଥିଲା । ସାଣ୍ଟିଆଗୋ ଟ୍ରେନ ଧ୍ୱଂସ କରିଥିବା ସେହି ଟ୍ରେନର ଡାଇନାମାଇଟ୍‌ବାଲାଟି ଟିକିଏ ଅଦ୍ଭୁତ ଧରଣର ନଥିଲେ କି ?'

କାଲ ଲୋକଟି ମୁଣ୍ଡ ହଲାଇ ରବର୍ଟ ଜର୍ଡ୍ଡାନ୍ ଆଡ଼େ ଦୃଷ୍ଟି କଲା । ତା ଆଖି ଦୁଇଟା ପଟେ ଆଳରେ ଦୁଇଟା କଣାପରି ଦିଶୁଥାଏ କାରଣ ତା ମୁହଁ ଏତେ ଚେପ୍ଟା ।

ରବର୍ଟ ଜର୍ଡ଼ାନ୍ କାଲ୍‌ଟାର କାନରେ କହିଲେ 'ସେ ଲୋକ ମରିଯାଇଅଛି ।' କିପରି ମଲା ବୋଲି ସୋର୍ଡ଼ୋ ପଚାରିବାରୁ କହିଲେ 'ସେ ସାଙ୍ଘାତିକ ଭାବରେ ଆହତ ହୋଇଥିଲେ, ଚାଲିବାକୁ ସମ୍ପୂର୍ଣ୍ଣ ଅକ୍ଷମ ଥିଲେ ଏଣୁ ମୁଁ ତାଙ୍କୁ ଗୁଳି କରି ମାରି ଦେଇଅଛି ।'

ପିଲାର୍ କହିଲା 'ଏମିତି ସମ୍ଭାବନା କଥା ସେ ସବୁବେଳେ କହୁଥିଲେ । ଏହି ଚିନ୍ତା ତାଙ୍କୁ ଆଚ୍ଛନ୍ନ କରିଥିଲା ।' ରବର୍ଟ ଜର୍ଡାନ୍ ଏଥିରେ ଏକମତ ହେଲେ ।

ସୋର୍ଡ଼ୋ ପଚାରିଲା 'ଆହତ ହେଲେ କିପରି; ଟ୍ରେନ୍ ଧ୍ୱଂସ କାମରେ ?'

ରବର୍ଟ ଜର୍ଡାନ୍ କହିଲେ 'ଟ୍ରେନ୍ ଧ୍ୱଂସ କରିସାରି ଅନ୍ଧାରରେ ଫେରୁଥିଲୁ । ବାଟରେ ଦଳେ ଫ୍ୟାସିଷ୍ଟ୍ ଟହଲ୍‌ଦାର ସୈନ୍ୟଙ୍କ ହାବୋଡ଼ରେ ପଡ଼ିଲୁ । ଆମେ ସମସ୍ତେ ଦୌଡ଼ି ପଳାଇ ଗଲାବେଳେ ତାଙ୍କ ପିଠି ଉପର ଅଂଶରେ ଗୁଳିମାଡ଼ ବସିଲା । ସେ ଅନେକ ବାଟ ଆମ ସଙ୍ଗରେ ଗଲେ ମାତ୍ର ସେହି ଜଖମ ଯୋଗୁଁ ଆଉ ଚାଲି ପାରିଲେ ନାହିଁ । ଆହତ ଅବସ୍ଥାରେ ସେଠାରେ ପଡ଼ି ରହିବାକୁ ଅନିଚ୍ଛା ପ୍ରକାଶ କରିବାରୁ ମୁଁ ତାଙ୍କୁ ଗୁଳିକରି ସବୁ ଯନ୍ତ୍ରଣାର ସମାଧାନ କରିଦେଲି ।'

ସୋର୍ଡୋ କହିଲା "ତେବେ ଏହା ସେତେ ଖରାପ ନୁହେଁ ।"

"ତୁମର ସ୍ନାୟୁ ଠିକ୍‌ଥିବା କଅଣ ସୁନିଶ୍ଚିତ ?" ପିଲାର୍ ପଚାରିଲା ।

ସେ କହିଲେ 'ହଁ, ମୋର ସ୍ନାୟୁ ମେ ବୋଗାନାନ ନୁହେଁ ଏକଥା ମୁଁ ଭଲ କରି ଜାଣେ । ମୁଁ ଭାବୁଛି ଯେ ପୋଲ୍‌ଟା ଉଡ଼ାଇ ଦେବା ପରେ ସେମାନଙ୍କର ଗ୍ରୀଡୋସ୍‌କୁ ଯିବା ଭଲ ।'

ରବର୍ଟ ଜର୍ଡାନଙ୍କ ମୁହଁରୁ ଏତକ ଶୁଣି ପିଲାର୍ ତୁଣ୍ଡରେ ଅଶ୍ଳୀଳ କଥାର ନୁଆର ଛୁଟିଲା । କଥାଗୁଡ଼ାକ ଫୁଟିଲା ପାଣି ପରି ଦେହରେ ଭେଦିଗଲା ।

ସୋର୍ଡ଼ୋ ରବର୍ଟଙ୍କୁ ମୁକ୍ତ ହସିଲା ଆନନ୍ଦ ଅନୁଭବ କଲା । ଶେଷରେ ଏହି ଗାଳି ଶେଷ କରି ପିଲର୍ ପାଣି ମାଠିଆ ଉଠାଇ ଢକ୍‌ଢକ୍ ପାଣି ପିଇ ଅଣ୍ଡାପଡ଼ି କହିଲା 'ଆମ୍ଭେମାନେ ପରେ କଅଣ କରିବୁ ସେ କଥାରେ ମୁଣ୍ଡ ଖେଳାଅ ନାହିଁ ଇଂରେଜ । ତୁମେ ସାଧାରଣତନ୍ତ୍ର ଇଲାକାକୁ ଫେରିଯାଅ । ଆମେ ଏହି ବଣ ଜଙ୍ଗଲରେ ବଞ୍ଚିବୁ କି ମରିବୁ ତୁମର ଭାବିବା ଦରକାର ନାହିଁ ।'

ଯୋର୍ଡ୍ଡୋ କହିଲା 'ପିଲାର୍ ଅଣ୍ଡା-ହୁଅ । ଆମେ ମରିବୁ ନାହିଁ, ବଞ୍ଚିବୁ ।'

ପିଲାର୍ ଜବାବ ଦେଲା 'ମରିବୁ କି ବଞ୍ଚିବୁ ସେକଥା ଆମେ ଜାଣୁ । ଇଂରେଜ, ମୁଁ ତୁମକୁ ପସନ୍ଦକରେ । ତୁମେ ଯେଉଁ କାମ ପାଇଁ ଆସିଛ ସେତକ ସାରିନାଅ । ଆମେ କଅଣ କରିବୁ ସେ ସମ୍ବନ୍ଧରେ ପାଟି ଫିଟାଅ ନାହିଁ ।'

ରବର୍ଟ ଜର୍ଡାନ୍ କହିଲେ 'ହଉ ତୁମ ଚିନ୍ତା ତୁମର । ମୁଁ ହସ୍ତକ୍ଷେପ କରିବି ନାହିଁ ।'

ପିଲାର୍ କହିଲା 'କିନ୍ତୁ ତୁମେ କରିଅଛ । ତୁମେ ସେହି ଦାଢ଼ିକୁ ନେଇ ସାଧାରଣତନ୍ତ୍ର ଇଲାକାକୁ ଫେରିଯାଅ । କିନ୍ତୁ ଯେଉଁମାନେ ତୁମପରି ପରଦେଶୀ ନୁହନ୍ତି ଏବଂ ତୁମେ ମା' ଦୁଧ ପିଉଥିଲାବେଳେ ସାଧାରଣତନ୍ତ୍ରର ନୈଷ୍ଠିକ ସେବକ ଥିଲେ ତାଙ୍କ ପାଇଁ ରାସ୍ତା ବନ୍ଦ କରନାହିଁ ।'

ପିଲାର୍ ବଡ଼ପାଟିରେ କଥା କହି ବକ୍ତବ୍ୟ ଶେଷ କଲାବେଳକୁ ପଦ ଚିହ୍ନ ଅନୁସରଣ କରି ମେରିଆ ସେଠାରେ ପହଞ୍ଚିଗଲା । ସେ ଜର୍ଡାନଙ୍କ ପ୍ରତି ପ୍ରବଳଭାବରେ ମୁଣ୍ଡ ଟୁଙ୍କାରି ଅଙ୍ଗୁଳି ହଲାଇ ସତର୍କ କରିଦେଲା । ପିଲାର୍ ଦେଖିଲା ଯେ ରବର୍ଟ ଜର୍ଡାନ୍ ମେରିଆକୁ ଚାହିଁ ହସିଦେଲେ । ସେ ପୁଣି କହିଲା 'ହଁ ମୁଁ ତାକୁ ଦାଢ଼ି ବୋଲି କହିଅଛି, ତାହା ଯଥାର୍ଥ । ମୁଁ ଅନୁମାନ କରୁଅଛି ତୁମ୍ଭେ ଦୁହେଁ ଭାଲେନ୍ସିଆକୁ ଯିବ; ଆଉ ଆମ୍ଭେମାନେ ଗ୍ରୀଡୋସ୍‌ରେ ହେଲା ପୁଞ୍ଜି ଖାଇବୁ ।'

ମେରିଆ କହିଲା 'ପିଲାର୍, ତୁ ଯେବେ କହୁଛୁ ତେବେ ମୁଁ ଦାଢ଼ି । ତୋ କଥାହିଁ ଠିକ୍ କିନ୍ତୁ ଏତେ ଉଗ୍ର କାହିଁକି ? କଅଣ ହୋଇଛି ?'

ପିଲାର୍ କାଠଗର ଉପରେ ବସି ପଡ଼ିଲା । ତାହାର ରାଗ ଉଭେଇଗଲା ଏବଂ ଟଣଟଣିଆ ସ୍ୱର ମଧ୍ୟ ବଦଳିଗଲା । ସେ କହିଲା 'କିଛି କଥା ନୁହେ । ମୁଁ ତୋତେ ଦାଢ଼ି କହିନାହିଁ । କିନ୍ତୁ ସାଧାରଣତନ୍ତ୍ର ସୀମାକୁ ଫେରିବାପାଇଁ ମୋର ପ୍ରବଳ ଆଗ୍ରହ ।'

ମେରିଆ କହିଲା 'ହଁ, ଆମ୍ଭେମାନେ ସମସ୍ତେ ଯାଇପାରୁ ।'

ରବର୍ଟ ଜର୍ଡାନ୍ କହିଲେ 'ଅବଶ୍ୟ । ଯେବେ ଗ୍ରୀଡୋସ୍ ତୁମର ପସନ୍ଦ ନୁହେ ତେବେ ସାଧାରଣତନ୍ତ୍ରକୁ ଯିବା ।'

ଯୋର୍ଡା ଏକଥା ଶୁଣି ମୁରୁକି ହସା ଦେଲା । ପିଲାର ପୁଣି ସମ୍ପୂର୍ଣ୍ଣ ଶାନ୍ତ ଭାବରେ କହିଲା 'ହଉ ଦେଖାଯିବ । ଆଗେ ମୋତେ ଗିଲାସେ ତୁମର ସେହି ଦୁର୍ଲଭ

ପୁରସ୍କାର ଦେଲ । ରାଗରେ ମୋ ତଣ୍ଟି ଶୁଖି କାଠ ହୋଇ ଯାଇଅଛି । କଅଣ ଘଟୁଅଛି ପରେ ଦେଖିବା ।'

ଏଲ୍ ସୋର୍ଡୋ ବୁଝାଇଲା 'ଦେଖିଲ ତ ସାଥୀ, ସକାଳ ବେଳାଠାରୁ କଷ୍ଟକର ।' ବର୍ତ୍ତିମାନ ସୋର୍ଡୋ ଅଶୁଦ୍ଧ ସ୍ପେନ ଭାଷା ନକହି ଜର୍ଡାନ୍ଙ୍କ ଆଡ଼କୁ ଧୀର ଭାବରେ ଚାହିଁଥାଏ । ସେ ଚାହାଣିରେ ସନ୍ଦେହ, ସମ୍ମାନ କିମ୍ବା ଶ୍ରେଷ୍ଠତ୍ୱର ଚିହ୍ନ ନଥିଲା, ଥିଲା ବୁଝାଇ ଦେବାର ଆଗ୍ରହ । ସେ ଶୁଦ୍ଧ ଭାଷା ପ୍ରୟୋଗ କରି କହିଲା 'ତୁମର କଅଣ ଆବଶ୍ୟକ ମୁଁ ବୁଝି ପାରୁଅଛି । ଜଗୁଆଳୀ ଘର ଧ୍ୱଂସ କରିବା ଏବଂ ତୁମେ ପୋଲ୍ ଧ୍ୱଂସ କଲାବେଳେ ପୋଲର ଦୁଇ ମୁଣ୍ଡ ଜଗିବା ଗୁରୁତ୍ୱ ମଧ୍ୟ ମୁଁ ବୁଝୁଅଛି । ଏ କାମ ରାତିରେ କିମ୍ବା ସକାଳ ପୂର୍ବରୁ କରିବା ସହଜ ହେବ ।'

ରବର୍ଟ ଜର୍ଡାନ୍ ସେ ପ୍ରଶ୍ନରେ ହଁ ଭରି ମେରିଆକୁ ହାତରେ ସେଠାରୁ କିଛିକାଳ ପାଇଁ ଚାଲିଯିବାକୁ ଇଙ୍ଗିତ କଲେ । ବାଳିକାଟି ଶୁଣି ପାରିବ ନାହିଁ ଏମିତି ଦୂରକୁ ଚାଲିଯାଇ ବସି ରହିଲା । ଦୁଇ ବଳାଗଣ୍ଠିରେ ସେ ନିଜର ଦୁଇ ହାତ ଥୋଇଥାଏ ।

ସୋର୍ଡୋ କହିଲା 'ଦେଖ, ପୋଲ ଉଡ଼ାଇବା କୌଣସି ସମସ୍ୟା ନୁହେଁ । କିନ୍ତୁ ଏ ସ୍ଥାନ ଛାଡ଼ି ଅନ୍ୟ କୁଆଡ଼େ ଦିନବେଳେ ପଳାଇଯିବା ଅତି ସାଙ୍ଘାତିକ କଥା ।'

ରବର୍ଟ ଜର୍ଡାନ୍ କହିଲେ 'ତାହାତ ଖୁବ୍ ସୁସ୍ପଷ୍ଟ । ମୁଁ ତାହା ଚିନ୍ତାକରି ଦେଖିଅଛି । ତୁମେ ଯଦି ଦିନବେଳେ କରିବାକୁ ଚାହଁ ତେବେ ମୁଁ ସେଥିରେ ମଧ୍ୟ ରାଜି ।'

ସୋର୍ଡୋ କହିଲା 'ତୁମେ ହେଉଛ ଜଣେ—ଆମେ ହେଲୁ ଅନେକ ପ୍ରାଣୀ ।'

ରବର୍ଟ ଜର୍ଡାନ୍ କହିଲେ 'କିମିତି କଅଣ କରିବା କଥା ମୁଁ ବୁଝିପାରୁ ଅଛି ।'

ସୋର୍ଡୋ ଜବାବ ଦେଲା 'ରାତିରେ ପୋଲଟା ଉଡ଼ାଇ ଦେବା ସହଜ । କିନ୍ତୁ ତୁମେ ସେ କାମ ଦିନବେଳେ କରିବା ସର୍ତ୍ତ ବାଢ଼ିବାରୁ ଅନେକ ଗୁରୁତର ପରିଣତି କଥା ଉପୁଜୁ ଅଛି ।'

'ମୁଁ ଜାଣେ ?'

'ଅଚ୍ଛା, ରାତିରେ କଲେ କ୍ଷତି କଅଣ ?'

'ମୋତେ ସେଥିପାଇଁ ପ୍ରାଣଦଣ୍ଡ ହୋଇଯିବ ।'

'କିନ୍ତୁ ଦିନବେଳେ ସେ କାମ କଲେ ଆମ ସଭିଙ୍କର ପ୍ରାଣଯିବାର ସମ୍ଭାବନା ଅଛି ।'

ରବର୍ଟ ଜର୍ଡାନ କହିଲେ 'ମୁଁ ମୋ କର୍ତ୍ତବ୍ୟ ଶେଷ ହେଲାପରେ, ମରିବା ପାଇଁ ତିଳମାତ୍ର ଭ୍ରୂକ୍ଷେପ କରେ ନାହିଁ । କିନ୍ତୁ ତୁମ କଥା ମଧ୍ୟ ମୁଁ ବୁଝୁଅଛି । ଦିନବେଳେ ତୁମ୍ଭେମାନେ ପଳାଇବା ସହଜ ନୁହେ ।'

ସୋର୍ଡୋ କହିଲା 'ହଁ ଦିନବେଳେ ମଧ୍ୟ ପଳାଇବା ବ୍ୟବସ୍ଥା କରି ହେବ । ମୁଁ ତୁମକୁ ବୁଝାଇ ଦେବାକୁ ଚାହେ ଯେ କାହିଁକି ଜଣେ ଆଗରୁ ଭାବ ରଖିଛି ଏବଂ ଆଉ ଜଣେ ରାଗି ରହିଛି । ତୁମେ ଗ୍ରାଡୋସ୍ ଯିବାକୁ କହୁଅଛ ସତେ ଯେମିତି ତାହା ଏକ ସାମରିକ କୌଶଳ କିନ୍ତୁ ଗ୍ରାଡୋସ୍‌ରେ ପହଞ୍ଚିବା ସବୁଠାରୁ ଅଦ୍ଭୁତ କର୍ମ ହେବ ।' ଜର୍ଡାନ୍ କିଛି ଜବାବ ଦେଲେ ନାହିଁ । ସୋର୍ଡୋ ପୁଣି କହିଲା 'ମୋ କଥା ଶୁଣ । ମୁଁ ବେଶୀ କଥା କହୁଛି ବୋଲି ଧରିବ ନାହିଁ । ମୋର ଉଦ୍ଦେଶ୍ୟ ହେଲା ଆମ୍ଭେମାନେ ପରସ୍ପରକୁ ଯେପରି ଭଲ ଭାବରେ ବୁଝି ପାରିବା । ଆମେ ଯେ ଏଠାରେ ଏ ଯାବତ୍ ପ୍ରାଣ ନେଇ ରହିଅଛୁ, ଏହାହିଁ ଏକ ଅଲୌକିକ ଘଟଣା । ଫ୍ୟାସିଷ୍ଟ୍-ମାନଙ୍କର ଆଳସ୍ୟ ଓ ନିର୍ବୋଧ ପଣ ହେଉଛି ଏହି ଅଲୌକିକ ଘଟଣାର ଉତ୍ସ । ଅବଶ୍ୟ ସେମାନେ ସମୟକ୍ରମେ ଏହି ଭ୍ରମ ବୁଝି ପାରି ପ୍ରତିକାର କରିବେ । ଅବଶ୍ୟ ଆମ୍ଭେମାନେ ଅତି ସତର୍କ, ଅତି ସନ୍ତର୍ପଣରେ ଏହି ପାହାଡ଼ରେ ଅଛୁ ଏବଂ କିଛି ଗଣ୍ଡଗୋଳ ଘଟିବାକୁ ଦେଉନାହୁଁ ।'

'ମୁଁ ସେକଥା ଜାଣେ ।'

'କିନ୍ତୁ ବର୍ତ୍ତମାନ ଆମକୁ ଏ ଜାଗା ଛାଡ଼ିବାକୁ ପଡ଼ିବ । ସୁତରାଂ କିପରି ଭାବରେ ଯିବୁ ତାହା ବିଶେଷ ଭାବରେ ଚିନ୍ତା କରିବା କଥା ।'

'ନିଶ୍ଚୟ ।'

ସୋର୍ଡୋ କହିଲା 'ହଉ ତେବେ ଚାଲ ଖାଇବା । ମୁଁ ବହୁତ କଥା କହିଲିଣି ।'

ପିଲାର୍ କହିଲା 'ତୋତେ ଏତେ ବେଶୀ କଥା କହିବା ମୁଁ କେବେ ଦେଖି ନଥିଲି । ଏହା କଅଣ ଏହି ଗିଲାସର କରାମତି ?'

ସୋର୍ଡୋ ଜବାବ ଦେଲା 'ନା ହୁଇସ୍କି ଯୋଗୁଁ ମୁଁ ବାଚାଳ ହୋଇନାହିଁ, ପ୍ରକୃତରେ ଏତେ କଥା ମୋର କହିବାର କାରଣ ଘଟି ନଥିଲା ।'

ରବର୍ଟ ଜର୍ଡାନ୍ କହିଲେ 'ମୁଁ ତୁମର ସାହାଯ୍ୟ ଏବଂ ବିଶ୍ୱସ୍ତତାରେ ମୁଗ୍ଧ । ପୋଲ ଧ୍ୱଂସ କରିବା ସମସ୍ତ ନିର୍ଦ୍ଦେଶ ଯୋଗୁଁ ତୁମର ଯେଉଁ ଘୋର ବିପତ୍ତି ଉପୁଜିବ ତାହା ମଧ୍ୟ ମୁଁ ହୃଦୟଙ୍ଗମ କରୁଅଛି ।'

ଯୋର୍ଡୋ କହିଲା 'ସେପରି କିଛି ନାହିଁ । ଆମ୍ଭେମାନେ ଏଠାରେ ଯାହା ପାରିବୁ ତାହା କରିବାକୁ ରହିଅଛୁ । କିନ୍ତୁ ଏ ବିଷୟଟା ବଡ଼ ଜଟିଳ ।'

ରବର୍ଟ ଜର୍ଡାନ୍ କହିଲେ 'କିନ୍ତୁ କାଗଜ କଲମରେ ଅତି ସହଜ । ଆକ୍ରମଣ ଆରମ୍ଭ ହେଲାକ୍ଷଣି ପୋଲ ଉଡ଼ାଇ ଦିଆଯିବ ଯାହା ଫଳରେ ଶତ୍ରୁପକ୍ଷର ଯାନବାହନ ତୋପ ସୈନ୍ୟ କିଛି ସେ ବାଟରେ ଆସି ପାରିବ ନାହିଁ । ଏଟା ଲେଖିଦେବା ବଡ଼ ସରଳ ।'

ଯୋର୍ଡୋ କହିଲା 'ହଁ, ସବୁ ଯଦି ଖାଲି କାଗଜ କଲମରେ ଲେଖା ଲେଖିରେ ଚଳନ୍ତା ତେବେ ସହଜ ସରଳତମ ଆଉ କଅଣ ରହନ୍ତା ?'

ରବର୍ଟ ଜର୍ଡାନ୍ କହିଲେ 'ପ୍ରବାଦ ଅଛି, ତତଲା ପାଣିରେ ଘର ପୋଡ଼େ ନାହିଁ ।'

ପିଲାର୍ କହିଲା 'କିନ୍ତୁ କାଗଜ ଲେଖା ବଡ଼ ଦରକାରୀ । ମୁଁ ତୁମର ସେହି ଆଦେଶ ଲିପି ବ୍ୟବହାର କରିବାକୁ ଚାହେଁ ।'

'ମୁଁ ମଧ୍ୟ' ଜର୍ଡାନ୍ କହିଲେ 'କିନ୍ତୁ ଏପରି ଭାବରେ ଯୁଦ୍ଧ ଜୟ ହୁଏ ନାହିଁ ।'

ପିଲାର୍ କହିଲା 'ନା ହୁଏ ନାହିଁ । ମୁଁ କିନ୍ତୁ କଅଣ ଚାହେଁ ତୁମେ ଅନୁମାନ କରି ପାରୁଛ ?'

ଯୋର୍ଡୋ କହିଲା "ତୁ ଚାହୁଁ ସାଧାରଣତନ୍ତ୍ରକୁ ଫେରିବାକୁ ।" ଯୋର୍ଡୋ ଭଲ କାନଟାକୁ ପିଲାର୍ ମୁହଁ ପାଖରେ ଲଗାଇ ଚିଖି କହିଲା 'ଆଗେ ଯୁଦ୍ଧରେ ଜିଣୁ, ପରେ ସାଧାରଣତନ୍ତ୍ର କଥା ଭାବିବା ।'

ପିଲାର୍ କହିଲା 'ଭଲ କଥା । ବର୍ତ୍ତମାନ ଇଶ୍ୱରଙ୍କ ଦୋହାଇ, ଖାଇ ବସ ।'

# ଦ୍ୱାଦଶ ପରିଚ୍ଛେଦ

ସେମାନେ ଏଲ୍ ସୋର୍ଡୋର ଅଡ୍ଡାରୁ ଝିଅଡିଆ ସ.ର ଗୁଳା ବାଟରେ ତଳକୁ ଓହ୍ଲାଇ ଆସିଲେ । ସୋର୍ଡୋ ତାଙ୍କୁ ତଳ ଚଟି ପର୍ଯ୍ୟନ୍ତ ବାଟ ବତାଇ ଦେବାକୁ ଆସିଲା । ସେଇଠାରେ ସେ ସେମାନଙ୍କୁ ନମସ୍କାର କରି ବିଦାୟ ନେଲା । ରବର୍ଟ ଜର୍ଡ଼ାନ୍ ପ୍ରଭୃତି ଆହୁରି ତଳକୁ ଖସିଗଲେ ଏବଂ ସୋର୍ଡୋ ସେହି ଚଟିଠାରେ ଠିଆହୋଇ ତାଙ୍କୁ ଚାହିଁ ରହିଲା । ମେରିଆ ତା' ଆଡ଼କୁ ବୁଲାପଡ଼ି ଫେକା ଫିଙ୍ଗିବା ଧରଣରେ ପୂରା ହାତଟା ଉପରକୁ ଉଠାଇ ସ୍ପେନଦେଶୀ ଧରଣରେ ନମସ୍କାର କଲା । ଖାଇ ବସିଥିଲାବେଳେ ସେ ନିଜର ମେଣ୍ଢା ଚମ କୋଟ୍‌ର ବୋତାମ ଆଦୌ ଫିଟାଇ ନଥିଲା 'କେବଳ ମଝିରେ ମଝିରେ ଭଙ୍ଗା ଭଙ୍ଗା ସ୍ପେନସ ଭାଷାରେ ରବର୍ଟ ଜର୍ଡ଼ାନ୍‌ଙ୍କୁ ସାଧାରଣତନ୍ତ୍ରର ହାଲଚାଲ ପଚାରିଥିଲା । ସେ ଚାହୁଁଥିଲା ଏମାନେ କିପରି ଶୀଘ୍ର ବିଦାୟ ହେବେ ।

ଗଲାବେଳେ ପିଲାର୍ କହିଥିଲା 'ହଉ ତେବେ ସାନ୍ତୁଆଗୋ, ଆମେ ଚାଲିଲୁ ।'

ସେ ଜବାବ ଦେଇଥିଲା 'ହଉଯାଅ, ସବୁ ଠିକ ଅଛି । ମୁଁ ଭାବି ଦେଖିବି ।' ପାହାଡ଼ ଚଢ଼ିଲାବେଳେ ଯେପରି କଷ୍ଟ ହୁଏ ବର୍ତ୍ତମାନ ତାହା ନ ହେବାରୁ ସେମାନେ ସହଜରେ ସେହି ଗୁଳାଏ ଗୁଳାଏ ବଣ ଭିତରେ ତଳକୁ ଖସି ଆସିଲେ । ଜର୍ଡ଼ାନ୍ ପିଲାର୍ ଏବଂ ମେରିଆ ଚୁପଚାପ୍ ଦ୍ରୁତ ଚାଲିଆସି ଗଡ଼ାଣି ମୁଣ୍ଡରେ ପହଞ୍ଚି ସେଠାରୁ ଉପତ୍ୟକାର ଉଠାଣି ଚଢ଼ି ଶେଷକୁ ପଡ଼ିଆରେ ପହଞ୍ଚିଲେ ।

ମେ ମାସର ଗରମ । ଶେଷ ଉଠାଣିର ଅଧାବାଟରେ ପିଲାର୍ ଦମ୍ ନେବାକୁ ଠିଆ ହେବାରୁ ରବର୍ଟ ଜର୍ଡ଼ାନ୍ ଦେଖିଲେ ଯେ ତା କପାଳରୁ ଝାଳଧାର ବହୁଛି ।

ସେଥିରେ ତା ଆଖି ପାଖ କଳା, ମୁହଁ ପାଣ୍ଡୁର ଏବଂ ଚମଡ଼ା ପିଙ୍ଗଳ ବର୍ଣ୍ଣ ହୋଇ-ଉଠିଛୁ । ଏହା ଦେଖି ସେ କହିଲେ ଯେ ଦ୍ରୁତ ଚାଲିବା ଦ୍ୱାରା ସେମାନେ ଥକିଗଲେଣି ଏଣୁ କିଛିକ୍ଷଣ ବିଶ୍ରାମ କରିବା ଉଚିତ । ପିଲାର୍ ସେଥିରେ ରାଜି ନ ହେବାରୁ ମେରିଆ ମଧ୍ୟ ସେମିତି ଅନୁରୋଧ କଲା । ପିଲାର୍ ତାକୁ ଧମକାଇ ଚୁପ୍ ରହିବାକୁ କହିଲା । ଏହାପରେ ସେମାନେ ପୁଣି ଉଠାଣି ଉଠିଲେ କିନ୍ତୁ ଉଠାଣିର ଚୂଡ଼ାରେ ପହଞ୍ଚିଲା ବେଳକୁ ପିଲାର ଅଣନିଶ୍ୱାସୀ ହୋଇ ପଡ଼ିଲା । ତାହାର ସର୍ବାଙ୍ଗ ଝାଳରେ ଜୁଡ଼ୁବୁଡ଼ୁ ଏବଂ ପାଣ୍ଡୁରତା ସୁସ୍ପଷ୍ଟ ।

ବର୍ତ୍ତମାନ ବସି ପଡ଼ି ବିଶ୍ରାମ ନେବାକୁ ମେରିଆ ଅନୁରୋଧ କରିବାରୁ ପିଲାର୍ ବାଧା ନ ଦେଇ ଗୋଟିଏ ଦେବଦାରୁ ଗଛ ତଳେ ବସି ପଡ଼ିଲା । ଅନ୍ୟ ଦୁଇଜଣ ମଧ୍ୟ ବସି ଦୂରରେ ପାହାଡ଼ ଶିଖକୁ ଦେଖିବାକୁ ଲାଗିଲେ । ଅପରାହ୍ଣର ପ୍ରାରମ୍ଭବେଳେ ଶିଖ ଉପରେ ତୁଷାର ରାଶି ଆଖି ଝଲସାଇ ଦେଉଥାଏ । ପିଲାର କହିଲା 'ତୁଷାର ଗୁଡ଼ାକ କି ବାଜେ ବସ୍ତୁ କେଡ଼େ ସୁନ୍ଦର ଦିଶୁଛି । ଆଜି ମୋର କଅଣ ହେଲା କେଜାଣି ମୁଁ ଅଯଥାରେ ତୋ ପ୍ରତି ରୁଢ଼ ବ୍ୟବହାର କଲି ।

ମେରିଆ କହିଲା 'ତୁ ରାଗରେ ଯାହା କହୁ ମୁଁ ତାକୁ କେବେ ଧରେ ନାହିଁ । ତୁ ତ ଅନେକ ସମୟରେ ଚିଡ଼ିଯାଇ ଥାଉ ।' ପିଲାର୍ ଜବାବ ଦେଲା 'ନା ଆଜି ଯାହି ।ହେଲି ତାହା ରାଗିବାଠାରୁ ଅଧିକ ଖରାପ ।'

ମେରିଆ କହିଲା "ଆଜି ତୋ ଦେହ ଭଲ ନାହିଁ ।" ପିଲାର୍ କହିଲା 'ସେ କଥା ମଧ୍ୟ ନୁହେଁ । ଆଇଲୁ, ମୋ କୋଳରେ ମୁଣ୍ଡ ରଖି ବସିଲୁ !" ମେରିଆ ତା ନିକଟକୁ ଘୁଞ୍ଚିଯାଇ ହାତକୁ ତକିଆ ଭଳି କରି ପିଲାର୍ କୋଳରେ ମୁଣ୍ଡ ରଖି ଶୋଇ ତା ମୁହଁକୁ ଚାହିଁ ହସିଦେଲା । ପିଲର୍ ବାଳିକାର ମୁଣ୍ଡ ଆଉଁସୁ ଥାଏ ଏବଂ ପଢ଼ିଆ ଆର ପଟେ ପାହାଡ଼ ଶୃଙ୍ଗକୁ ଚାହିଁଥାଏ । ସେ ବାଳିକାର କପାଳରୁ କାନ ମୁଣ୍ଡାଯାଏ ଅଙ୍ଗୁଳି ବୁଲାଉଥାଏ । କିଛିକ୍ଷଣ ପରେ କହି ଉଠିଲା 'ଇଂରେଜ, ତୁମେ ଏହାକୁ ଅଳ୍ପ ପରେ ପାଇ ପାରିବ ।'

ମେରିଆ ଏପରି ନ କହିବାକୁ ଅନୁରୋଧ କରିବାରୁ କହିଲା 'ହଁ ସେ ତୋତେ ନେବେ । ତୁ କେମିତି ଯିବୁ ମୁଁ ଚାହୁଁଥିଲି କିନ୍ତୁ ବର୍ତ୍ତମାନ ମୁଁ ଇର୍ଷାନ୍ୱିତ ।'

ମେରିଆ ତାକୁ ଏପରି କହି ନାହିଁ ବୋଲି ଅନୁରୋଧ କଲେ ମଧ୍ୟ ସେ ବାରମ୍ବାର ସେହି କଥା କହିବାକୁ ଲାଗିଲା ।

ମେରିଆ କହିଲା 'ତୁ ତ ମୋତେ ନିଜେ କହିଅଛୁ ଯେ ଆମ ଭିତରେ ସେପରି କିଛୁ ସମ୍ପର୍କ ନାହିଁ ।'

ପିଲାର୍ ଉତ୍ତର ଦେଲା 'ହଁ ସବୁବେଳେ କିଛୁ ଗୋଟାଏ ସମ୍ପର୍କ ଥିଲା ଯାହା ରହିବା ଅନୁଚିତ କିନ୍ତୁ ମୁଁ ବିଚଳିତ ନୁହେଁ । ପ୍ରକୃତରେ ମୁଁ ସବୁବେଳେ ତୋତେ ସୁଖି ଦେଖିବା ଛଡ଼ା ଆଉ କିଛୁ ଲୋଡ଼ୁନାହିଁ ।'

ମେରିଆ ପିଲାର୍ କୋଳରେ ହାଲୁକା ଭାବରେ ମୁଣ୍ଡ ରଖି ବସି ରହିଲା ।

ପିଲାର୍ କହିଲା 'ଦେଖ ଝିଅ, ମୁଁ ତୋତେ ଭଲପାଏ, ସେ ତୋତେ ନେଇ ପାରନ୍ତି । ମୁଁ ମଧ୍ୟ ତୋହରି ପରି ରକ୍ତମାଂସର ସ୍ତ୍ରୀଲୋକ । ସ୍ତ୍ରୀଲୋକର ସୃଷ୍ଟି ପୁରୁଷ ପାଇଁ । କିନ୍ତୁ ଏହି ଦିନବେଳେ ମୁଁ ଆନନ୍ଦରେ ସ୍ୱୀକାର କରୁଅଛି ଯେ ତୋପାଇଁ ମୋହର ନାନାଚିନ୍ତାଦିକ ।'

'ମୁଁ ମଧ୍ୟ ତୋତେ ଭଲପାଏ ।'

'ଚୁପ୍, ବାଜେ କଥା କହନାହିଁ । ମୋ କଥାର ଅର୍ଥ ତୁ ଜାଣିପାରିବୁ ନାହିଁ ।'

'ହଁ ମୁଁ ଜାଣେ ।'

'ହଁ, ତୁ ଜାଣୁ ଯେ ତୁ ଇଂରେଜ ପାଇଁ । ଏହା ସାକ୍ଷ୍ୟ ଲକ୍ଷ୍ୟ ପ୍ରତ୍ୟକ୍ଷ କଥା ଏବଂ ଉଚିତ ମଧ୍ୟ । ମୁଁ ମଧ୍ୟ ଏହା ଛଡ଼ା ଆଉ କିଛୁ କାମନା କରେ ନାହିଁ । ମୁଁ ଅଯଥା କଥା କହୁନାହିଁ, ସତ୍ୟହିଁ କହୁଅଛି । ଖୁବ୍ ଅଳ୍ପ ଲୋକ ତତେ ସତ୍ୟ କଥା କହିବେ ଏବଂ କୌଣସି ସ୍ତ୍ରୀଲୋକ କେବେ କହିବ ନାହିଁ । ମୁଁ ଇର୍ଷାପର ବୋଲି ଅକୁଣ୍ଠିତ ଭାବରେ ପ୍ରକାଶ କରୁଅଛି ।'

ମେରିଆ କହିଲା 'ଆଉ, ସେ କଥା କହ ନାହିଁ ।'

'କହିବି ନାହିଁ ? କାହିଁକି କହିବି ନାହିଁ ? ହଁ ବରାବର କହିବି । ମୋ ଇଚ୍ଛା । କହିବାକୁ ଯେତେବେଳେ ସୁଖବୋଧ ହେବ ନାହିଁ ସେତେବେଳେ ଆଉ କହିବି ନାହିଁ । ସେହି ସମୟ ପ୍ରାୟ ଆସିଗଲାଣି । ଆଉ କହିବି ନାହିଁ ବୁଝିଲୁ ?' ପିଲାର୍ ଏହା କହୁଥିଲା ବେଳେ ଦୁହିଁଙ୍କ ଉପରେ ଦୃଷ୍ଟି ରଖିଥିଲା । ମେରିଆ ପୁଣି ଥରେ ବାରଣ କରିବାରୁ ପିଲାର୍ କହିଲା 'ତୁ ମୋ କୁନି ଝିଅ । ହଉ ବର୍ତ୍ତମାନ ମୁଣ୍ଡ ଉଠାଇ ନେ । ମୋର ସେହି ମୋହ ତୁଟିଗଲାଣି ।' ମେରିଆ କହିଲା 'ବୃଥା ମୋହ ନୁହେଁ । ମୋ ମୁଣ୍ଡ ଯେଉଁଠି ରହିବା କଥା ସେଇଠି ଅଛି ।'

'ନା ନା ଉଠାଇ ନେ ।' ଏହା କହି ନିଜର ବଡ଼ ବଡ଼ ହାତ ବାଳିକାର ମୁଣ୍ଡ ତଳେ ଦେଇ ତାକୁ ଟେକି ଦେଲା । ତାପରେ କହିଲା 'ଆଉ ତୁମେ ଇଂରେଜ, ତୁମ ଜାଭରେ କଅଣ କଣ୍ଟା ପିଠା ହୋଇଛନ୍ତି ?' ସେ ପାହାଡ଼ଆଡ଼େ ଚାହିଁଥିଲା ।

କର୍ଡାନ୍ କହିଲେ 'କଣ୍ଟା କାହିଁକି ଫୁଟିବ ?'

ପିଲାର୍ ବାଳିକାର ମୁଣ୍ଡ ମାଟିରେ ରଖି ଦେଇ କହିଲା "ତେବେ କଅଣ ଗିଳିଛଯେ ମୁହଁରେ କଥା ନାହିଁ । ହଉ ନିଅ, ତୁମ କୁନିକୁ ଏବେ ନିଅ । ମୁଁ ଆଉ କେବେ ତାକୁ ତୁମଠାରୁ ଛଡ଼ାଇ ନେବି ନାହିଁ । କୁନି ନାମଟି ଖୁବ୍ ଭଲ ଲାଗୁଛି । ଏହି ନାମରେ ଆଜି ସକାଳେ ତୁମେ ତାକୁ ଡାକିବାର ମୁଁ ଶୁଣିଛି ।" ଜର୍ଡାନ୍‌ର ଗଣ୍ଡ ଦେଶ ଲାଲ୍ ହୋଇଗଲା । ସେ କହିଲେ "ତୁ ବଡ଼ ଶକ୍ତ ସ୍ତ୍ରୀଲୋକ ।"

ପିଲର୍ କହିଲା "ନା, ମୁଁ ବଡ ସରଳ, ଏଣୁ କୁଟିଳ ପରି ବୋଧ ହୋଇଥାଏ । ଆଚ୍ଛା ତୁମେ କଅଣ କୁଟିଳ ଇଂରେଜ ?"

"ନା, ମୁଁ ତୁମ ପରି ସରଳ ନୁହେଁ ।"

ପିଲର୍ ଜବାବ ଦେଲା "ମୁଁ ତୁମ ଉପରେ ଖୁବ ସନ୍ତୁଷ୍ଟ ।" ଏହାପରେ ସେ ଆଗକୁ ଝୁଙ୍କି ହସି ପକାଇ ରହସ୍ୟରେ କହିଲା 'ବର୍ତ୍ତମାନ ତୁମଠାରୁ ତୁମ କୁନିକୁ କିମ୍ବା କୁନିଠାରୁ ତୁମକୁ ଛଡାଇ ନେଇ ପାରନ୍ତି କି ?'

"ପାରିବ ନାହିଁ ?"

"ମୁଁ ତାହା ଜାଣେ କିନ୍ତୁ ମୁଁ ମୁହଁରେ ତାହା କହିଲେ ମଧ୍ଯ କାମରେ ତାହା ଗୃହେ ନାହିଁ ।"

"ମୁଁ ସେ କଥା ବିଶ୍ୱାସ କରେ ।" କିନ୍ତୁ ଏହି ବାଜେ କଥାରୁ ଲାଭ କଅଣ ?"

ମେରିଆ କହିଲା "ଆଜି ତୁ ବିପରୀତ ଜଣା ପଡୁଛୁ ?"

"ହଁ, ମୁଁ ଆଜି ନିଜର ସ୍ୱଭାବରେ ରହି ନାହିଁ । ପୋଲ ବିସ୍ଫୋରଣଟା ମୋ ମୁଣ୍ଡ ବିଗାଡ଼ି ଦେଇଅଛି ଇଂରେଜ !"

ରବର୍ଟଜର୍ଡାନ୍ କହିଲେ "ତେବେ ପୋଲଟାର ନୂଆ ନାମ ହେଲା 'ମୁଣ୍ଡବିଥା ପୋଲ ।' ଭଙ୍ଗା ଚଢ଼େଇ ପିଞ୍ଜରା ପରି ମୁଁ ପୋଲଟାକୁ ସେହି ପାହାଡ଼ ଗହ୍ୱରରେ ଫିଙ୍ଗିଦେବି ।"

ପିଲର୍ କହିଲା "ମୁଁ କଦଳୀ ଖାଏ, ତୁମେ ଦୁହେଁ କଥାବାର୍ତ୍ତା କର ।"

ରବର୍ଟ ଜର୍ଡ଼ାନ୍ କହିଲେ "ନା, ଚାଲ ଗୁମ୍ଫାକୁ ଫେରିଯିବା । ମୋର ବହୁତ କାମ ଅଛି ।"

"ଯାଅ, ତୁମେ ଦୁହେଁ ଟିକିଏ ଏକାଠି ହେଲ !"

ମେରିଆ କହିଲା "ଏ ବୁଢ଼ୀ କଅଣ ବାଜେ କଥା କହୁଛ ମ ?"

ପିଲର୍ କହିଲା "ବାଜେ ହେଲେ ହେଲା । ତୁମେ ଦୁହେଁ ଏକାଠି ରୁହ । ମୁଁ ରହସ୍ୟରେ ଈର୍ଷାର କଥା କହିଥିଲି । ଯୋଆକ୍ୱିନ୍ କଟାକ୍ଷରୁ ମୁଁ ମୋର କୁତ୍ସିତ ରୂପ ବୁଝିପାରି ରାଗି ଯାଇଥିଲି । ତୋତେ ୧୯ବର୍ଷ, ଏତିକି ମୋ ଇର୍ଷାର କାରଣ । ୧୯ବର୍ଷ ସବୁଦିନେ ରହିବ ନାହିଁ । ହଉ ମୁଁ ଯାଉଛି ।" ଏହା କହି ସେ ଠିଆହେଲା ।

ରବର୍ଟ ଜର୍ଡ଼ାନ୍ ଆଗରୁ ଠିଆ ରହିଥିଲେ । ମେରିଆ ମାଟିରେ ବସିଥାଏ ।

ରବର୍ଟ ଜର୍ଡ଼ାନ୍ କହିଲେ "ଚାଲ ସମସ୍ତେ ଗୁମ୍ଫାକୁ ଫେରିବା । ସେଠାରେ ବହୁତ କାମ ବାକିରହିଛି ।" ପିଲାର୍ ମୁଣ୍ଡ ହଲାଇ ମେରିଆକୁ ଇଙ୍ଗିତରେ ପଚାରିଲା ସେ ବାଟ ଚିହ୍ନିଛି କି ନାହିଁ । ମେରିଆ ହଁ ବୋଲି କହିବାରୁ ପିଲର୍ ଚାଲିଯିବାକୁ ଉଦ୍ୟତ ହୋଇ କହିଲା ଯେ ସେ ଆଗରୁ ଯାଇ ଭଲ ଖାଦ୍ୟ ପ୍ରସ୍ତୁତ ରଖିବ । ସେ ପଡ଼ିଆ ଭିତରେ ଆଗେଇ ନଦୀ ଆଡ଼କୁ ଗଲା । ସେଇଟା ହେଉଛି ଗୁମ୍ଫାକୁ ଯିବା ବାଟ ।

ରବର୍ଟ ଜର୍ଡ଼ାନ୍ କହିଲେ 'ଅପେକ୍ଷା କର, ଆମେ ସମସ୍ତେ ଯିବା ଭଲ ହେବ ।'

ମେରିଆ କିଛି ନ କହି ବସି ରହିଲା । ପିଲାର୍ ଚାଲିଗଲା । ଏହାପରେ ରବର୍ଟ ଜର୍ଡ଼ାନ୍ ପଚାରିଲେ "ସେ ଅସୁସ୍ଥ ଜଣା ପଡୁଥିଲା । ଭଲ ଅଛି ତ ?"

ମେରିଆ କହିଲା "ନା ସେ ଯାଉ ।"

'ମୁଁ ତା ସଙ୍ଗରେ ଯିବା ଉଚିତ ।'

"ନାହିଁ ସେ ଯାଉ ।" ମେରିଆ କହିଲା ।

# ତ୍ରୟୋଦଶ ପରିଚ୍ଛେଦ

ପାହାଡ଼ିଆ ପ୍ରାନ୍ତରର ଗୁଳ୍ମ ଉପର ଦେଇ ସେ ଦୁହେଁ ଗ୍ଭଲି ଆସୁଥିଲେ । ରବର୍ଟ ଜର୍ଡ଼ାନ୍‌ଙ୍କ ଗୋଡ଼ରେ ଗୁଳ୍ମର କଣ୍ଟା ଫୋଡ଼ି ହୋଇଗଲା । କୋଷବଦ୍ଧ ପିସ୍ତଲଟା ତାଙ୍କ ଜଙ୍ଘରେ ଚେଦ୍‌ବି ହେଲା, ମୁଣ୍ଡରେ ଖରାର ତେଜ ବାଜିଲା କିନ୍ତୁ ପିଠିରେ ପର୍ବତ ଶୃଙ୍ଗରୁ ତୁଷାର ଉପର ଦେଇ ପ୍ରବାହିତ ଶୀତଳ ସମୀରଣ ବାଜିଲା । ବାଳିକାଟି ଅଙ୍ଗୁଳି ସହିତ ଅଙ୍ଗୁଳି ଛନ୍ଦି ତାଙ୍କ ହାତକୁ ଦୃଢ଼ ଭାବରେ ଧରିଥିଲା । ଅଙ୍ଗୁଳି ହାତ ମଣିବନ୍ଧ ପାପୁଲି ଦୁହିଁଙ୍କର ଲାଗି ରହିଥିବାରୁ ଗୋଟିଏ ରକମର ସ୍ପନ୍ଦନ ସେ ଅନୁଭବ କଲେ ଯାହାକି ପ୍ରଭାତ ପବନର ମୃଦୁ ସ୍ପର୍ଶ ପରି ସତେଜ, ପକ୍ଷୀପର ପରି ହାଲୁକା ଏବଂ ମସୃଣ କିମ୍ବା ବାୟୁଶୂନ୍ୟ ସ୍ଥାନରେ ନିଶ୍ଚଳ ନଥିର ବୃକ୍ଷରୁ ଶୁଷ୍କ ପତ୍ରଟିଏ ଝଡ଼ିବା ଭଳି ଶବ୍ଦ ଶୂନ୍ୟ, ଅଶ୍ରୋତବ୍ୟ ଅଥଚ ସ୍ପର୍ଶଗମ୍ୟ । ଏହା ସତ୍ତ୍ୱେ ଅନୁଭୂତଟା ଯେମିତି ଶକ୍ତ, ସେମିତି ପ୍ରବଳ, ସେହିପରି ତାତ୍‌କାଳୀକ ଏବଂ ସେହିପରି ବ୍ୟଥା ପୂର୍ଣ୍ଣ ଯେ ଦୁହିଁଙ୍କର ହସ୍ତର ପାରସ୍ପରିକ ଚାପରେ ଏକ ପୁଲକ ଶିହରଣ ଦୁହିଁଙ୍କର ସର୍ବାଙ୍ଗୀକ ହୋଇ ଉଠିଲା । ସେ ବ୍ୟଥାରେ ଥିଲା ଅଭାବର ଶୂନ୍ୟତା । ସୂର୍ଯ୍ୟକିରଣ ବାଳିକାର ଗୋଧୂମ ବର୍ଣ୍ଣର କେଶଗୁଚ୍ଛରେ, ସ୍ୱର୍ଣ୍ଣାଭ ମସୃଣ ବଦନ ଲାବଣ୍ୟରେ ଏବଂ ସୁବଙ୍କିମ ଗ୍ରୀବାରେ ପଡ଼ି ଚକ୍‌ଚକ୍ ହେଲାରୁ ରବର୍ଟ ଜର୍ଡ଼ାନ୍ ତା' ମସ୍ତକକୁ ବଙ୍କାଇ ଧରି ଚୁମ୍ବନ କଲେ । ଚୁମ୍ବନ କଲାବେଳେ ତାଙ୍କର ଅଙ୍ଗ ଶିହରଣ ଜାଣିପାରି ସେ ତାକୁ ଦୃଢ଼ ଆଲିଙ୍ଗନ କଲେ । ସେତେବେଳେ ବାଳିକାର ପୟୋଧର ଦୁଇଟି ତାଙ୍କ ବକ୍ଷରେ ଚପି ହୋଇଗଲା । ସେ ଦୁଇ ହସ୍ତରେ ସ୍ତନ ଦୁଇଟି ଧରି ବୁଝିଲେ ଯେ ତାହା ଶକ୍ତ । ତତ୍ପରେ ସେ ବାଳିକାର କାମିଜ ବୋତାମ ଫିଟାଇ ନଇଁପଡ଼ି ସ୍ତନକୁ ଚୁମ୍ବନ କଲେ । ବାଳିକା ମୁଣ୍ଡ ପଛକୁ ବଙ୍କାଇ ଥରୁଥାଏ । ବାଳିକା ନିଜର ଚିବୁକ ତାଙ୍କ ମୁଣ୍ଡ

ପଛପାଖକୁ ନୁଆଁଇଁ ନେଲାରୁ ସେ ତାହାର ମୁଣ୍ଡ ଧରି ନିଜ ମୁଣ୍ଡରେ ଲଗାଇଲେ । ସେ ସିଧା ହୋଇ ବାଳିକାକୁ ଏପରି ଶକ୍ତ ଭାବରେ ଆଲିଙ୍ଗନ କଲେ ଯେ ବାଳିକାର ପାଦ ମାଟିରୁ ଉଠିଗଲା । ବାଳିକାର ଅଧର ତାଙ୍କ ଗଳା ପାଖରେ ରହିଲା । ସେତେବେଳେ ମଧ୍ୟ ସେ ଥରୁଥାଏ । ସେ ତାକୁ ତଳେ ଠିଆ କରାଇ ଗମ୍ଭୀର ପ୍ରେମରେ ମେରିଆ, ମୋ ମେରିଆ ବୋଲି ଅର୍ଦ୍ଧସ୍ଫୁଟ ସ୍ୱରରେ ଡାକିବାକୁ ଲାଗିଲେ । ଏହାପରେ ପଚାରିଲେ "ଆମେ କୁଆଡ଼େ ଯିବା ?"

ମେରିଆ ମୁହଁ ଫିଟାଇ କିଛି ନ କହି ତାଙ୍କ କାମିଜ ଭିତରେ ହାତଗଲାଇଲା ।

ସେ ବୁଝି ପାରିଲେ ଯେ ମେରିଆ ତାଙ୍କ କାମିଜ ବୋତାମ ଫିଟାଉ ଅଛି ।

ମେରିଆ କହିଲା "ତୁମେ ଚୁମା ଖାଇଲ, ମୁଁ ମଧ୍ୟ ଚୁମା ଖାଇବି ।"

'ନା, ଥାଉ ମୋ କୁନି ।'

"ହଁ ହଁ । ତୁମେ ଯାହା ଯାହା କଲ, ମୁଁ ସେମିତି କରିବି ।"

"ନା ତା, କରିବା ସମ୍ଭବ ନୁହେ ।"

"ନୁହେ, କାହିଁକି ନୁହେ, କୁହ, କୁହ ।"

ଏହାପରେ ଦଳିତ ଗୁଳ୍ମର ଗନ୍ଧ ବାହାରିଲା । ଗୁଳ୍ମର କାଣ୍ଡ ବଙ୍କାଇ କରି ବାଳିକାର ମୁଣ୍ଡ ତଳେ କର୍କଶତା ସୃଷ୍ଟି କଲା । ଉଜ୍ଜ୍ୱଳ ସୂର୍ଯ୍ୟ କିରଣ ତାହାର ନିମୀଳିତ ଆଖି ଉପରେ ପଡ଼ିଲା । ସେ ଯେ ଗ୍ରୀବା ବଙ୍କାଇ ଗୁଳ୍ମ ମୂଳରେ ରଖିଅଛି, ତାହାର କ୍ଷୁଦ୍ର ରସନା ଯେ ମୁହୁର୍ମୁହୁ ସଚଳ ହୋଇ ଉଠୁଛି ଏବଂ ଦୃଢ଼ ମୁଦ୍ରିତ ଚକ୍ଷୁର ଭ୍ରୂଲତା ଯେ ଅନୁକ୍ଷଣ ସୂର୍ଯ୍ୟ କିରଣରେ କମ୍ପିତ ହୋଇ କ୍ଷଣକ୍ଷଣକେ ବିବିଧ ବର୍ଣ୍ଣ ଧାରଣ କରୁଅଛି ଏ ଦୃଶ୍ୟ ରବର୍ଟ ଜର୍ଡ଼ାନ୍ ସାରା ଜୀବନରେ ବିସ୍ମୃତ ହେବେ ନାହିଁ । ବାଳିକା ପକ୍ଷରେ ସୂର୍ଯ୍ୟ କିରଣ ଲାଲ୍, ପୀତାଭ, ସ୍ୱର୍ଣ୍ଣାଭ ପ୍ରଭୃତି ବିବିଧ ବର୍ଣ୍ଣ ସୃଷ୍ଟି କଲା । ସେ ଭାବିଲା ଏସବୁ ଏକାନ୍ତ ତାହାର ନିଜସ୍ୱ । ରବର୍ଟ ଜର୍ଡ଼ାନଙ୍କ ପକ୍ଷରେ ଏହା ହେଲା ଏକ ସୀମାହୀନ, ଅନ୍ତହୀନ ମହା ଅନ୍ଧକାର ମାର୍ଗ । କାଳକାଳକୁ ଏ ମାର୍ଗରେ ଗଲେ ମଧ୍ୟ କାହିଁ ପହଞ୍ଚି ହେବ ନାହିଁ । ଯେତେ ଯାଅ, ଯେତେ ଧାଇଁଲି ହୁଅ, ଯେତେ ଖୋଜ କିନ୍ତୁ ମାର୍ଗ ରହିବ ଅସୀମର ଶେଷ ପ୍ରାନ୍ତରେ, ମହାଶୂନ୍ୟତାରେ । ଦୁହେଁ ସେଇଠାରେ ଥିଲେ । ତାଙ୍କ ପାଇଁ କାଳସ୍ରୋତ ସ୍ଥାଣୁ ହୋଇଗଲା ଏବଂ ପଦ ତଳୁ ଧରଣୀ ଅପସରି ଗଲା ।

ରବର୍ଟ ଜର୍ଡ଼ାନ୍ କରପଟିଆ ହୋଇ ଗୁଳ୍ମ ଉପରେ ଶୋଇ ଗୁଳ୍ମର ଚେର ଏବଂ ମାଟିର ଗନ୍ଧ ଆଘ୍ରାଣ କରିବାକୁ ଲାଗିଲେ । ତାଙ୍କର ଲଗ୍ନ ସ୍କନ୍ଧ ଓ ବକ୍ଷରେ

ସୂର୍ଯ୍ୟ ରଶ୍ମି, ସ୍ତ୍ରୀପର ଫୋଡ଼ି ହୋଇଗଲା । ବାଳକାଟି ତାଙ୍କ ଆଗରେ ଆଖି ବନ୍ଦ କରି ଶୋଇଥିଲା । ସେ ଆଖି ମେଲି ତାଙ୍କୁ ଗୃହିଁ ମୃଦୁ ହସିଲା । ସେ ମଧ୍ଯ ଅତି ଶ୍ରାନ୍ତ କଣ୍ଠରେ କ୍ଷୀଣ ସ୍ୱରରେ ଡାକଲେ 'କଲୋ କୁନି ।' ସେ ହସିଦେଇ କହିଲା 'ହଁ ମୋ ଇଂରେଜ ।'

ଆଲସ୍ୟ ବିଜଡ଼ିତ ହୋଇ ସେ ଉତ୍ତର ଦେଲେ "ମୁଁ ତ ଇଂରେଜ ନୁହେ ?"

ବାଳକା କହିଲା "ହିଁ, ତୁମେ ଇଂରେଜ, ଆଉ ମୋ ଇଂରେଜ ।" ସେ ଦୁଇ ହାତ ବଢ଼ାଇ ତାଙ୍କର ଦୁଇ·ଖାନ ଧରି କପୋଳରେ ଚୁମା ଖାଇଲା । ଏହାପରେ ପଗ୍ଗରିଲା "କିପରି ହେଲା ? ଏଥର ମୁଁ ଭଲଭାବେ ଚୁମା ଖାଇଲି ତ ?"

ଏହାପରେ ଦୁହେଁ ନଦୀ କୂଳେ କୂଳେ ଗଲେ । ରବର୍ଟ କର୍ଜାନ୍ କହିଲେ "ମେରିଆ ମୁଁ ତୋତେ ଭଲପାଏ । ତୁ ଏତେ ସୁନ୍ଦର, ଏତେ ବିଚିତ୍ର ଏବଂ ଏପରି ରମଣୀୟ ଏବଂ ତୋ ପାଖରେ ଥିଲେ ମୋ ମନ ଏପରି ଉତ୍ଫୁଲ୍ଲ ହୋଇ ଉଠେ ଯେ ମୁଁ ଭାବେ ତୋତେ ଭଲ ପାଉ ପାଉ ମରିଗଲେ ମଧ୍ଯ ମୋର ତୃପ୍ତି ହେବ ।"

ସେ ଜବାବ ଦେଲା 'ଏହି କଥା ? ମୁଁ ତ ପ୍ରତିଥର ମରିଯାଏ । ତୁମେ କଅଣ ମରନାହିଁ ?'

'ନା, ପ୍ରାୟ ମଲାପରି । ଆଚ୍ଛା ମାଟି ହଲିବା ତୁ ବୁଝି ପାରିଲୁ ?'

"ହଁ । ମୁଁ ମରିଥିଲି । ଦୟାକରି ତୁମେ ମୋତେ କୁଣ୍ଢାଇ ଧର ।"

"ନା, ମୁଁ ତୋ ହାତକୁ ଭଲପାଏ । ସେତିକ ଯଥେଷ୍ଟ ।"

ରବର୍ଟ କର୍ଡ଼ାନ୍ ତା ଆଡ଼କୁ ଗୃହିଁ ତପୃରେ ପଡ଼ିଶା ଆଡ଼େ ଦୃଷ୍ଟି ଦେଲେ । ସେଠାରେ ଗୋଟିଏ ଛଞ୍ଚାଣ ଶିକାର କରୁଥିଲା । ଦ୍ୱିପ୍ରହରର ବଡ଼ବଡ଼ ମେଘଖଣ୍ଡମାନ ପାହାଡ଼ ଉପରୁ ଅସୁଥିଲା ।

ସେମାନେ ପୁଣି ହାତ ଧରାଧରି ହୋଇ ଗୃଲିଲାବେଳେ ମେରିଆ ପଗ୍ଗରିଲା "ଅଚ୍ଛା, ଅନ୍ୟ ସ୍ତ୍ରୀଲୋକଙ୍କ ସହିତ ତୁମେ ଏପରି ସୁଖ ପାଇ ନାହଁ ?"

"ନା, ପ୍ରକୃତରେ ନୁହେ ।"

"ତୁମେ ତ ଅନ୍ୟ ଅନେକଙ୍କୁ ପ୍ରେମ କରିଅଛ ?"

"ହଁ କେତେକଙ୍କୁ କରିଛି କିନ୍ତୁ ତୋ ପରି ନୁହେ ।"

"ସେମାନଙ୍କ ସଙ୍ଗେ ଏପରି ଘଟି ନ ଥିଲା । ସତ ?"

"ହଁ ସୁଖ ପାଇଥିଲି, କିନ୍ତୁ ଏପରି ନୁହେଁ ।"

"ସେତେବେଳେ ପାଦତଳର ମାଟି ସଚଳ ହୋଇଥିଲା କି ?"

"ନା କେବେ ନୁହେଁ ।"

"ତେବେ ଏହା ହେଲା ଆମର ଗୋଟିଏ ଦିନର ଅଭିଜ୍ଞତା । ଆମ ଭାଗ୍ୟକୁ ଏତିକି ଘଟିଲା । ତୁମେ ମୋତେ ପ୍ରେମ କର ତ ? ମୋ ଉପରେ ସନ୍ତୁଷ୍ଟ ତ ? ମୁଁ ଭବିଷ୍ୟତରେ ଅଧିକ ଭଲ ଦିଶିବି । ମେରିଆ କହିଲା ।"

"ତୁ ତ ଏଇକ୍ଷଣି ଖୁବ୍ ସୁନ୍ଦର ।"

"ନା ନୁହେଁ । ତୁମେ ମୋ ମୁଣ୍ଡ ବାଳରେ ଅଙ୍ଗୁଳି ପୂରାଇ ଆଉଁସି ଦିଅ ।"

ଜର୍ଡାନ୍ ସେପରି କଲେ । ତାହାର ଶ୍ଳେଷ୍ଟ ଓ କୋମଳ ବାଳଗୁଡ଼ିକ ହାତ ଦେଲେ ଶୋଇ ପଡୁଥାଏ ଏବଂ ପୁଣି ଛିଡ଼ି ହୋଇଥାଏ । ସେ ଦୁଇ ହାତରେ ମେରିଆର ମୁଣ୍ଡ ଧରି ମୁହଁ ବୁଲାଇ ଚୁମ୍ବା ଖାଇଦେଲେ ।"

ମେରିଆ କହିଲା 'ଚୁମ୍ବା ଖାଇବାକୁ ମୋର ଭାରି ଇଚ୍ଛା କିନ୍ତୁ ଠିକ୍ ମତେ ଖାଇ ଜାଣେ ନାହିଁ ।'

'ଦରକାର ନାହିଁ ।'

ମେରିଆ କହିଲା 'ତୁମର ସ୍ତ୍ରୀ ହେଲେ ମୋତେ ସବୁ ପ୍ରକାରେ ତୁମକୁ ଖୁସି କରିବାକୁ ହେବ ।'

'ମୁଁ ଖୁସି ଅଛି, ଆଉ ଅଧିକ ହେବାର ନାହିଁ । ଅଧିକ ଖୁସି ହେଲେ ମଧ୍ୟ ଆଉ ଅଧିକ କିଛି କରି ପାରିବି ନାହିଁ ।'

ମେରିଆ ମନ ଖୁସିରେ କହିଲା 'ତୁମେ ଦେଖିବ, ଅଳ୍ପ ଦିନେ ମୋର ଏହି ସାନ ସାନ ବାଳ ବଡ଼ ହୋଇଯିବ । ଦିନକୁ ଦିନ ଏହା ବଢ଼ୁଛି । ବାଳ ବଢ଼ିଗଲେ ମୁଁ କୁତ୍ସିତ ଦିଶିବି ନାହିଁ । ହୁଏତ ତୁମେ ମୋତେ ଅଧିକ ଭଲ ପାଇବ ।'

'ତୋ ଦେହ ପୃଥିବୀରେ ସବୁଠାରୁ ସୁନ୍ଦର ।'

'ନା ଏହା ତରୁଣ ଏବଂ କ୍ଷୀଣ ।'

'ନା । ସୁନ୍ଦର ଶରୀରରେ ମାଦକତା ଅଛି । କାହିଁକିଯେ ଜଣେ ଏପରି ସୁନ୍ଦର ବୋଧହୁଏ ଓ ଆଉ ଜଣେ ହୁଏ ନାହିଁ, ମୁଁ କହି ପାରିବି ନାହିଁ । କିନ୍ତୁ ତୁ ସୁନ୍ଦର ।'

'ତୁମ ଦୃଷ୍ଟିରେ ।' ମେରଆ କହିଲା 'ହଁ କେବଳ ତୁମ ପାଖରେ ମୁଁ ସୁନ୍ଦର ।' କିନ୍ତୁ ଏତିକରେ ମୁଁ ତୁମକୁ ତୃପ୍ତ ରଖିବି ନାହିଁ । ମୁଁ ତୁମର ଯତ୍ନ ନେବାର କୌଶଳ ଶିକ୍ଷା କରିବି ।'

'ସତ କହିଲ, ଅଉ କେବେ ମାଛି ହୋଇଥିଲା କି ?

'ଆଉ କେବେ ହେଲ ନାହିଁ । ମୁଁ ସତ କହୁଛି ।'

ମେରଆ ପଚାରିଲା "ତୁମେ ବର୍ତ୍ତମାନ ଅନ୍ୟକିଛି ଭାବୁଅଛ ?"

'ହଁ, ମୋ କାମ କଥା ଭାବୁଛି ।'

'ଆମର ଘୋଡ଼ା ଥାଆନ୍ତା କି ଆମେ ଦୁହେଁ ପାଖାପାଖି ଘୋଡ଼ା ଛୁଟାଇ ପାରନ୍ତେ । ଏବଂ ମୋ ସୁଖର କେବେ ହେଲେ ଅବସାନ ନହୁଅନ୍ତା ।'

"ଉଡ଼ାଜାହାଜରେ ଅମେ ଉଡ଼ିବା' ରବର୍ଟ ଜର୍ଡାନ୍ ଅନ୍ୟମନସ୍କ ହୋଇ କହିଲେ । ସୁଦୂର ଗଗନରେ ଚକ୍ରାକାରରେ ଉଡ଼ି ବୁଲିବା । କେବେ ତଳକୁ ଖସିବା, କେବେ ଉପରକୁ ଉଠିବା । ମୁଁ ସୁଖ ବିଭୋର ଥାଇ ଏହା ଲକ୍ଷ୍ୟ ସୁଦ୍ଧା କରିବି ନାହିଁ ।" ଏହା କହି ସେ ହସିଲା ।

'ତୋ ସୁଖର କାମନା ଯେ ସୁଦୂର ପ୍ରସାରି ବୋଲି' ସେ ଉତ୍ତର ଦେଲେ ।

ରବର୍ଟ୍ ଜର୍ଡାନ୍ ହଠାତ୍ ଅନ୍ୟମନସ୍କ ହୋଇ ଗଲେ । ତାଙ୍କର କାୟା ମେରଆ ପାଖରେ ଥିଲେ ମଧ୍ୟ ମନ ଚିନ୍ତାକରୁଥିଲା ପୋଲ କଥା । ବର୍ତ୍ତମାନ ତ ସବୁ-କଥା ଠିକ୍ ଠାକ୍ । ମାନସ ଚକ୍ଷୁରେ ସେ ଦେଖିଲେ ପୋଲ ଦୁଇ ମୁଣ୍ଡରେ ଦୁଇ ଜଗୁଆଳୀ ଆନ୍‌ସେଲ୍‌ମୋ ଏବଂ ଗିପ୍‌ସି ଜଣକ । ଜନଶୂନ୍ୟ ରାସ୍ତା ଉପରେ ଚଳାଚଳ । ସେ ଦେଖିଲେ କେଉଁଠାରେ ଡାଇନାମାଇଟ୍ ରଖିବେ, କେଉଁ ସମତଳ ସ୍ଥାନରେ ସ୍ୱୟଂକ୍ରିୟ ରାଇଫଲ ରଖିବେ, କିଏ ଏହା ଚଳାଇବ ?' ସେ ସିନା ଗୋଟାଏ ମୁଣ୍ଡରେ ରହିବେ, ଅନ୍ୟ ପାଖରେ କିଏ ରହିବ ? ସେ ବିସ୍ଫୋରକ ରଖି ଖୁଣ୍ଟି ପୋଡ ବାନ୍ଧି ଦେଲେ । ନିଜର ଛୋପି ଭଣ୍ଡାରେ ପୋତ ଦେଲେ । ଲମ୍ବା ତାର ଟାଣନେଇ ପୁରୁଣା ବାକ୍ସ ଯାଏ ଗଲେ । ବାକ୍ସଟା ହିଁ ଫୁଟିବ । ଏହା ପରେ ସେ ଯାହା ଘଟିବ ବା ଘଟିପାରେ ସେ କଥା ଚିନ୍ତାକଲେ । ଯଦି କିଛି ଭୁଲ ଘଟେ ତେବେ କଅଣ ହେବ ? ଗୁଡ଼ ସେ ଚିନ୍ତା । ବାଳିକାକୁ ମୁଁ ପ୍ରେମ କରୁଅଛି । ମୋ ମସ୍ତିଷ୍କ ପରିଷ୍କାର ଅଛି । ଏତେବେଳେ ଦୁଷ୍ଚିନ୍ତା କରିବା ଉଚିତ ନୁହେ । ଯାହା କରିବାକଥା ତାହା କରିଅଛି । କଅଣ ଘଟିବ ତାହା ମୁଁ ଜାଣେ ।

କିଅଣ ପାଇଁ ଲଢ଼ୁଛ ସେ କଥା ବୁଝି ସମସ୍ତ ତୁମେ ଲଢ଼େଇରେ ଯୋଗଦେଇ ଅଛ । ତୁମେ ଯାହା କରୁଅଛ ଏବଂ କରିବାକୁ ବାଧ୍ୟ ହେଉଅଛ ତାହା ହେଉଛି ଯୁଦ୍ଧ ଜିଣିବା କଥା । ଆମେ ଏ ଯେଉଁ ଲୋକମାନଙ୍କୁ କାମରେ ଲଗାଇ ଅଛୁ ସେମାନେ ଆମର ବଡ଼ ବଡ଼ ପ୍ରିୟ ଲୋକ । ଯୁଦ୍ଧରେ ଏମିତ ଭାବରେ ସୈନ୍ୟମାନଙ୍କୁ ନିୟୋଜିତ କରା ଯାଇଥାଏ । ସୁତରାଂ ସେ ଲୋକମାନଙ୍କ ପ୍ରତି କର୍ତ୍ତବ୍ୟଜ୍ଞାନ ଆମର ନିର୍ବ୍ୟକ୍ତିକ ହେବା ବିଚିତ୍ର ନୁହେଁ । ପାବ୍‌ଲୋ ଯେ ଖୁବ୍ ଗୁଳାଖିଆ ଏହା ଜଣା କଥା । ଅବସ୍ଥା କେତେଦୂର ଖରାପ ତାହା ପାବ୍‌ଲୋ ସାଙ୍ଗେ ସାଙ୍ଗେ ଜାଣିଗଲା । ସ୍ତ୍ରୀ ଲୋକଟି ଆମ ସପକ୍ଷରେ ଥିଲା ଏବଂ ଅଛି କିନ୍ତୁ କାହିଁ କାରଣରୁ ପ୍ରତିକ୍ରିୟା ଅନୁମାନ କରି ନେଇ ସେ ଶିଥିଳ ପ୍ରୟତ୍ନ ହୋଇ ଉଠିଲାଣି । ସୋର୍ଡୋ ସବୁକଥା ଏକ ଲହମାରେ ବୁଝି ନେଲା । ସେ ନିଜର ଭୂମିକା ଅବଶ୍ୟ ପୂରଣ କରିବ ତଥାପି ଅନ୍ୟ ଜଣଙ୍କ ପରି କାମଟା ସେ ପସନ୍ଦ କରୁ ନାହିଁ ।

ତୁମେ କହିବ, ମୋର କଅଣ ଘଟିବ ସେ କଥା ମୁଁ ଭାବୁ ନାହିଁ । ମୁଁ ଭାବୁଛି ପିଲାର୍ ଓ ବାଳିକାଟିର କଥା । ହଉ, ତୁମେ ଏଠାକୁ ଆସି ନଥିଲେ ତାଙ୍କର କଅଣ ଘଟି ଥାଆନ୍ତା । ତାଙ୍କର କଅଣ ଘଟିଥିଲା ଏବଂ ତୁମେ ଆସିବା ପୂର୍ବରୁ ତାଙ୍କର ଅବସ୍ଥା କଅଣ ହୋଇଥିଲା ? ଏମିତ ଭାବେ ଭାବିବା ଠିକ୍ ହେବ ନାହିଁ । ହୁକୁମ ତାମିଲ୍ କରିବା ଛଡ଼ା ତୁମର ତାଙ୍କପ୍ରତି ଅନ୍ୟ କୌଣସି ଦାୟିତ୍ୱ ନାହିଁ । ତୁମେ ତ ହୁକୁମ୍ ଦେଲବାଲା ନୁହ । ଗୋଲ୍‌ଜ୍ ସେ ହୁକୁମ ଦେବାର ବ୍ୟକ୍ତି । ଗୋଲ୍‌ଜ୍ ହେଉଛନ୍ତି ଜଣେ ସୁଦକ୍ଷ ସେନାପତି । ଏମିତ ଲୋକଟିଏ ଆଉ ମିଳିବ ନାହିଁ । ସେ ସବୁଠାରୁ ଶ୍ରେଷ୍ଠ ସେନାପତି । କିନ୍ତୁ ଫଳ କଅଣ ଘଟିବ ତାହା ଜାଣିଥାଇ କୌଣସି ଅସମ୍ଭବ ଆଦେଶ ମାନିବା ଉଚିତ ହେବ କି ? ସେ ଗୋଲ୍‌ଜ୍ ବା ଯଏ ସେ ଆଦେଶ ଦେଉ । ସେ ଦଳପତି ହେଉ କିମ୍ବା ସୈନ୍ୟାଧ୍ୟକ୍ଷ ହେଉ । କିନ୍ତୁ ଆଦେଶ ଅନୁସାରେ କାମ ନକରି କେମିତ ବା ପ୍ରମାଣ କରି ହେବ ଯେ ତାହା ଅସମ୍ଭବ । ଅସମ୍ଭବ ବୋଲି ତୁମେ କେମିତ ଜାଣିବ ? ଯଦି ସମସ୍ତେ ଏହି ଭଳି ଅସମ୍ଭବତ୍ୱ ଦ୍ୱାହି ଦିଅନ୍ତି ତେବେ କାମ କେମିତ ଚଳିବ, ଅବସ୍ଥା କଅଣ ହେବ ?

ଆଦେଶ ଅସମ୍ଭବ ମନେ କରୁଥିବା ବହୁ ସେନାପତିଙ୍କୁ ସେ ଜାଣନ୍ତି । ଏଷ୍ଟ୍ରିମାଦୁରାର ସେ ଗଧ ସେନାପତି ଗୋମେଜ୍ ହେଉଛି ଜଣେ । ଯମାଯୋଟ ଯମୁଙ୍କ ସମର ଗୁଳିଥିଲା ବେଳେ ସେ କରାପଟୁ ଆକ୍ରମଣ କରି ନଥିଲେ । ନିଜର ପ୍ରିୟ ଲୋକଙ୍କୁ ନେଇ ଆକ୍ରମଣ ଚଳାଇବା ମଧ୍ୟ ଦୁର୍ଭାଗ୍ୟର କଥା ।

ଆମ ପକ୍ଷର ଲୋକେ ଯେତେ ଯେତେ କାମ କରିଆଛନ୍ତି ତଦ୍ୱାରା ଆମକୁ ଅତ୍ୟୁଚ୍ଚ ଓ ସାହାଯ୍ୟ ହେଉଥିବା ଲୋକେ ହିଁ ବିପଦଗ୍ରସ୍ତ ହୋଇ ଅଛନ୍ତି । ଏତେ

କରିବାର କାରଣ ହେଉଛି ଯେ ଭବିଷ୍ୟତରେ ସମାଜ ଜନପଦ ଓ ଦେଶରେ ଶାନ୍ତି ଶୃଙ୍ଖଳା ଓ ସମୃଦ୍ଧି ସ୍ଥାପିତ ହେବ । ଯେତେ ପୁରୁଣା ହେଲେ ମଧ୍ୟ ଏହା ସତ୍ୟ ।

ଯଦି ସାଧାରଣ ତନ୍ତ୍ର ହାରିଯିବ ତେବେ ତହିଁରେ ଆସ୍ଥାବାନ୍ ଲୋକେ ସ୍ପେନରେ ରହି ପାରିବେ ନାହିଁ । ଫ୍ୟାସିଷ୍ଟ ଅଧିକୃତ ଅନ୍ୟ ଅଞ୍ଚଳମାନଙ୍କ ଅବସ୍ଥା ଦେଖି ଏହାହିଁ ଅବଶ୍ୟମ୍ଭାବୀ ବୋଲି ସେ ଜାଣି ପାରିଅଛନ୍ତି ।

ପାବ୍‌ଲୋ ଗୋଟାଏ ଜପଟ ଓଲୁ ମାତ୍ର ଅନ୍ୟ ଲୋକମାନେ ଖୁବ୍ ଭଲ । ସୁତରାଂ ସେମାନଙ୍କୁ ଏଭଳି କାମରେ ପ୍ରବର୍ତ୍ତାଇବା ଦ୍ୱାରା ତାଙ୍କ ପ୍ରତି ବିଶ୍ୱାସ-ଘାତକତା କରାଯିବ ନାହିଁ କି ? କିନ୍ତୁ ସେମାନେ ଯଦି କିଛି ନକରନ୍ତି ତେବେ ହପ୍ତାକ ମଧ୍ୟରେ ଦୁଇଦଳ ଅଶ୍ୱାରୋହୀ ଆସି ସେମାନଙ୍କୁ ଖୋଜି ବାହାର କରି ନଷ୍ଟ ଭ୍ରଷ୍ଟ କରି ଦେବେ ।

ନା । ସେମାନଙ୍କୁ ଏପରି ଭାବରେ ଛାଡ଼ିଯିବା ଦ୍ୱାରା କିଛି ଲାଭ ନାହିଁ । ଛାଡ଼ିବାକୁ ହେଲେ ସମଗ୍ର ଦେଶରେ ସମସ୍ତଙ୍କୁ ଛାଡ଼ିବାକୁ ପଡ଼ିବ ଏବଂ କେଉଁଠାରେ କୌଣସି ପ୍ରକାର ବାଧାବିଘ୍ନ ଘଟାଇବାକୁ ହେବ ନାହିଁ ଅର୍ଥାତ୍ ଫ୍ୟାସିଷ୍ଟ ଶାସନ ଗ୍ରହଣ କରି ନେବାକୁ ହେବ । ସେପରି ଅବସ୍ଥାରେ ସାମାଜିକ ଯୋଜନା ଏବଂ ତତ୍ସମ୍ବନ୍ଧୀୟ କାର୍ଯ୍ୟସୂଚୀର କଅଣ ଘଟିବ । ସେ କଥା ଅନ୍ୟମାନେ ଭାବିବେ । ଯୁଦ୍ଧ ପରେ ସେ ଅନ୍ୟକାମ କରିବେ । ସେ ସାଧାରଣ ତନ୍ତ୍ରରେ ବିଶ୍ୱାସୀ ଏବଂ ଦେଶକୁ ଭଲ ପାଆନ୍ତି ଏବଂ ସାଧାରଣତନ୍ତ୍ର ଧ୍ୱଂସ ହୋଇଗଲେ ତାଙ୍କ ମତାବଲମ୍ବୀ ଶତଶତ ନରନାରୀଙ୍କ ଅସହ୍ୟ ଅବସ୍ଥା ଉପୁଜିବ ଏହା ଜାଣି ସେ ଯୁଦ୍ଧରେ ଯୋଗ ଦେଇ ଅଛନ୍ତି । ଯୁଦ୍ଧ ଚାଲିଥିଲା ପର୍ଯ୍ୟନ୍ତ ସେ ସାମ୍ୟବାଦୀ ନିୟମ ଅଧୀନରେ ଅଛନ୍ତି । ସ୍ପେନ ଦେଶରେ ସାମ୍ୟବାଦୀମାନେ ସବୁଠାରୁ ଭଲ ଶୃଙ୍ଖଳା, ଆଦର୍ଶ ଏବଂ ଅନାବିଲ ନିଷ୍ଠା ଦେଖାଇ ଅଛନ୍ତି । ଏଥିପାଇଁ ସେ ମନେ ପ୍ରାଣେ ସାମ୍ୟବାଦୀ ଦଳର ସମର୍ଥକ ହୋଇ ଯୁଦ୍ଧ ଶେଷ ପର୍ଯ୍ୟନ୍ତ ରହିବେ । ସାମ୍ୟବାଦୀଙ୍କର କାର୍ଯ୍ୟସୂଚୀ ଓ ଶୃଙ୍ଖଳାକୁ ସେ ଶ୍ରଦ୍ଧା କରନ୍ତି ।

ତାଙ୍କର ରାଜନୀତି କିଛି ନାହିଁ । କିନ୍ତୁ ଏକଥା ଅନ୍ୟକୁ କହିବା ଅନାବଶ୍ୟକ, ଯୁଦ୍ଧପରେ ସେ ପୂର୍ବପରି ସ୍ପେନଭାଷାର ଶିକ୍ଷକ ହୋଇ ପେଟ ପାଳିବେ ଏବଂ ଭଲ ବହି ଖଣ୍ଡିଏ ଲେଖିବେ । ଏହା ତାଙ୍କ ପକ୍ଷରେ ସହଜ ହେବ ।

ପାବ୍‌ଲୋ ସହିତ ସେ ରାଜନୀତି ଚର୍ଚ୍ଚା କରିବେ । ପାବ୍‌ଲୋର ରାଜନୀତି ବିକାଶ କେତେଦୂର ତାହା ଜାଣିବା ଭଲ । ବୁଢ଼ା ଲେରିକ୍‌ସଙ୍ଗପରି ପାବ୍‌ଲୋ

ବୋଧହୁଏ ବାମପନ୍ଥୀରୁ ଡାହାଣପନ୍ଥୀ ହେବାକୁ ଯାଉଅଛୁ । ପାବ୍‌ଲୋ ଓ ଲେରକ୍‌ସଙ୍କ ଭିତରେ ବହୁତ ସାମଞ୍ଜସ୍ୟ ରହିଛି । ଫ୍ରିଟୋ ମଧ୍ୟ ଏମିତିକା ଜଣେ ଲୋକ । ପାବ୍‌ଲୋ ଓ ଫ୍ରିଟୋ ଦୁହିଁଙ୍କର ଶେଷ ବିଜୟ ସମ୍ବନ୍ଧରେ ସମାନ ବିଶ୍ୱାସ ଥିଲା । ତାଙ୍କ ରାଜନୀତି ହେଲା ପୋଡ଼ାରିଗୈରଙ୍କ ନୀତି । ସାଧାରଣତନ୍ତ୍ର ଶାସନ ଖୁବ୍ ଭଲ କିନ୍ତୁ ସେ ଶାସନରୁ ପୋନାରିଗୈରଙ୍କୁ ନପାନ୍ତ କରିବାକୁ ପଡ଼ିବ । ସେମାନେ ନିଜର କାର୍ଯ୍ୟ ଦ୍ୱାରା ଯେଉଁ ପରିସ୍ଥିତି ଘଟାଇଲେ ତାହା ପ୍ରତିକ୍ରିୟା ସ୍ୱରୂପ ତ ବିଦ୍ରୋହ ଆରମ୍ଭ ହୋଇଅଛି । ଏ ଯୁଦ୍ଧରେ ନେତାମାନେ ହିଁ ହେଉଛନ୍ତି ସର୍ବସାଧାରଣଙ୍କ ଶତ୍ରୁ । ଏପରି ଘଟଣା ଇତିହାସରେ ବିରଳ ।

'ସର୍ବସାଧାରଣଙ୍କ ଶତ୍ରୁ' ଏହି ଶବ୍ଦଟା ଶୁଣିବାକୁ ଖୁବ୍ ଲୋଭନୀୟ ମାତ୍ର ସେ ବର୍ତ୍ତମାନ ଏହା ଏଡ଼ିଯିବେ । ମେରିଆ ସହିତ ଏକାଠି ଶୟନ କରି ତାଙ୍କ ମନରେ ଏ ଚିନ୍ତା ଜାତ ହୋଇଅଛି । ନେତାମାନଙ୍କୁ ସେପରି ସମାଲୋଚନା ନକଲେ ମଧ୍ୟ ପାଦ୍ରୀମାନଙ୍କ ଧର୍ମ ପ୍ରଚାର ଭଙ୍ଗିରେ 'ଦେଶବାସୀଙ୍କର ଶତ୍ରୁ' ବୋଲି କେତେଗୁଡ଼ାଏ ପୁରୁଣା ମୁଖରୋଚକ ଶବ୍ଦାଡ଼ମ୍ବର ବିଶେଷଣ ଅନିଚ୍ଛା ସତ୍ତ୍ୱେପି କହି ପକାଉ ଅଛନ୍ତି । ବିପ୍ଳବୀ କିମ୍ବା ଦେଶପ୍ରେମୀ ଉଭୟଙ୍କ ପକ୍ଷରେ ତାଙ୍କର ମନୋଭାବ ଏହିଭଳି । ଅବଶ୍ୟ ଏଥିରେ ସତ୍ୟ ନାହିଁ ତଥାପି ସବୁ କ୍ଷେତ୍ରରେ ଏପରି ମତବ୍ୟକ୍ତ କରିବା ଅତି ହାଲୁକା ରୀତି । ଗତରାତି ଏବଂ ଆଜି ମଧ୍ୟାହ୍ନ ପରଠାରୁ ତାଙ୍କର ମନ ଖୁବ୍ ପରିଷ୍କାର ହୋଇ ଯାଇଅଛି । ଅନ୍ଧବିଶ୍ୱାସ ବଡ଼ ଅଡ଼ୁଆ ବିଷୟ । ନିଜର ମତାମତର ଯଥାର୍ଥତା ସମ୍ବନ୍ଧରେ ପୂର୍ଣ୍ଣ ନିଶ୍ଚିନ୍ତତା ନଥିଲେ ଅନ୍ଧ ବିଶ୍ୱାସ ଜନ୍ମି ନପାରେ । ସେହି ନିଶ୍ଚିନ୍ତତା ଧର୍ମପ୍ରାଣତା ଓ ସମୟ ଉପରେ ପ୍ରତିଷ୍ଠିତ । ସଂଯମ ହେଉଛି ଶୁଣା କଥାର ପରିପନ୍ଥି ।

ସେହି ସମ୍ଭାବ୍ୟକୁ ପରୀକ୍ଷା କଲେ ତାହା ପ୍ରତିପାଦିତ ହୋଇ ପାରିବ କି ? ଖୁବ୍ ସମ୍ଭବ ଏଇଥିପାଇଁ ସାମ୍ୟବାଦୀମାନେ ସବୁବେଳେ ସରଳ ଓ ସହଜ ଅଭ୍ୟାସ ଅର୍ଥାତ୍ ଯଦୃଚ୍ଛାବାଦ ଉପରେ ଆଘାତ କରିଥାନ୍ତି । ତୁମେ ମଦପିଇ ମାତାଲ ହେଲେ କିମ୍ବା ବ୍ୟଭିଚାର କଲେ କିମ୍ବା କୁମାରୀ ଧର୍ଷଣ କଲେ ଏହା ନିଜର ଅଧୋଗତି ଜାଣିପାରି ଏବଂ ଚିତ୍ତ ଦୌର୍ବଲ୍ୟକୁ ଧର୍ମାତ୍ମାମାନଙ୍କ ନିର୍ଦ୍ଦେଶ ବିରୁଦ୍ଧ ବୋଲି କହିଥାଅ । ସବୁ ଦୋଷ ଲାଦିଦିଅ ଗୁର୍ବାକଙ୍କ ଦୈହିକ ମୁକ୍ତିବାଦ ପଦ୍ଧତି ଉପରେ । ଏ ତୁମେ । କିନ୍ତୁ ସେ ବି ଜଣେ ମହାପୁରୁଷ ଯେହେତୁ ସେ ମୃତ । ତୁମେ ତ ଦିନେ ମରି ସବୁ ବିପଦରୁ ଖୋହି ପାଇବ । ଯାଉ ସେ ଚିନ୍ତା ବର୍ତ୍ତମାନ ମେରିଆ କଥା ଭାବିବା ଉଚିତ ।

ତାଙ୍କର ଅନ୍ଧବିଶ୍ୱାସ ପ୍ରତି ମେରିଆ ଅତ୍ୟନ୍ତ ବିରୂପ । ବର୍ତ୍ତମାନ ପର୍ଯ୍ୟନ୍ତ ମେରିଆ ତାଙ୍କ ସଂକଳ୍ପ ଶିଥିଳ କରିପାରି ନାହିଁ କିନ୍ତୁ ସେ ମରିବାକୁ ରାଜି ନୁହନ୍ତି ।

ସେ କୌଣସି ୱୀରର କିମ୍ବା ନିଜର ବିଶ୍ୱାସ ପାଇଁ ମୃତ୍ୟୁ ବରଣ କରି ଅମର ହେବାକୁ ଇଚ୍ଛୁକ ନୁହନ୍ତି । ସେ କୌଣସି ଇତିହାସ ପ୍ରସିଦ୍ଧ ଯୁଦ୍ଧ ନେତା ଭଳି ହେବାକୁ ଚାହାନ୍ତି ନାହିଁ; କିମ୍ବା ଦେଶକୁ ରକ୍ଷା କରିବା ପାଇଁ ନିଜ ପ୍ରାଣବଳୀ ଦେବାକୁ ଆଗ୍ରହୀ ନୁହନ୍ତି । ସେ ମୋରିଆ ସଙ୍ଗରେ ଦୀର୍ଘକାଳ ଅତିବାହିତ କରିବାକୁ ବ୍ୟଗ୍ର । ଏହାହିଁ ତାଙ୍କର ପ୍ରବଳ ବାସନା ।

ତାଙ୍କୁ ଏପରି ଦୀର୍ଘକାଳ ପାଇଁ ମୋରିଆ ସଙ୍ଗସୁଖ ମିଳିବ ଏହା ସେ ବିଶ୍ୱାସ କରୁ ନଥିଲେ । ମିଳିବାଟା ସର୍ବଥା ବାଞ୍ଛନୀୟ । ସେ କୌଣସି ହୋଟେଲ୍‌କୁ ଯାଇ ଡାକ୍ତର ଓ ଶ୍ରୀମତୀ ଲିଭିଂଷ୍ଟୋନ୍ ବୋଲି ନାମ ଲେଖାନ୍ତେ କି ?

ତାଙ୍କୁ ବାହା ହେଲେ କେମିତି ହୁଅନ୍ତା । ହଁ ସେ ନିଶ୍ଚୟ ବାହା ହେବେ ଏବଂ ଦୁହେଁ ଶ୍ରୀ ଓ ଶ୍ରୀମତୀ ରବର୍ଟ ଜର୍ଡ଼ାନ୍ ନାମରେ ପରିଚିତ ହେବେ । ସନ୍‌ଭ୍ୟାଲେ ଇଡାହୋର ଅଧିବାସୀ କିମ୍ବା ଏମିତି କୌଣସି ଗୋଟାଏ ସ୍ଥାନର ଅଧିବାସୀ ।

ସ୍ପେନ୍‌ଦେଶୀୟ ବାଳିକାମାନେ ଖୁବ୍ ଭଲ ଘରଣୀ ହୋଇଥାନ୍ତି । ତାଙ୍କର ସେପରି କେହି ପତ୍ନୀ ନଥିଲେ ବୋଲି ସେ ଏକଥା ଜାଣନ୍ତି । ମୁଁ ବିଶ୍ୱବିଦ୍ୟାଳୟର ଅଧ୍ୟାପନା କାମକୁ ଫେରିଗଲେ ମୋରିଆ ହେବ ଜଣେ ଶିକ୍ଷକର ସ୍ତ୍ରୀ । ସ୍ପେନ୍ ଭାଷା ଶିକ୍ଷାର୍ଥୀମାନେ ଯେତେବେଳେ ସନ୍ଧ୍ୟାକୁ ତମାଖୁ ଖାଇବାକୁ ମୋ ଘରକୁ ଆସିବେ ଏବଂ ମୋ ସହିତ ପ୍ରାଚୀନ ମନୀଷୀମାନଙ୍କ ସମ୍ବନ୍ଧରେ ମୂଲ୍ୟବାନ ଆଲୋଚନା କରିବେ ସେତେବେଳେ ମୋରିଆ ମଧ୍ୟ ତାଙ୍କୁ ଖ୍ରୀଷ୍ଟଧର୍ମ ପାଇଁ ଯୁଦ୍ଧ କରି ପ୍ରାଣ ଦେଇଥିବା ମହାତ୍ମାମାନଙ୍କର କାହାଣୀ ପ୍ରତ୍ୟକ୍ଷ ଭାବରେ ବର୍ଣ୍ଣନା କରି ବୁଝାଇ ପାରିବ ।

ମଣ୍ଟାନାର ମିସୌଲିଠାରେ ଲୋକେ ମୋରିଆକୁ କେତେଦୂର ପସନ୍ଦ କରିବେ ଭାବି ପାରୁନାହିଁ । ଅବଶ୍ୟ ମୋତେ ମିସୌଲିଠାରେ କାମ ମିଳିଲେ ହେଲା । ଉପସ୍ଥିତ ମୋତେ ସେଠା ଲୋକେ ଜଣେ ସାମ୍ୟବାଦୀ ବୋଲି ଧରିନେଇ ଶତ୍ରୁପକ୍ଷ ତାଲିକାଭୁକ୍ତ କରିଅଛନ୍ତି । କେତେବେଳେ କଅଣ ହେବ କିଛି ଜାଣିବାର ଉପାୟ ନାହିଁ । ମୁଁ କଅଣ କରିଛି ସେ ସମ୍ବନ୍ଧରେ ମୋର କିଛି ପ୍ରମାଣ ନାହିଁ । ବସ୍ତୁତ ତାଙ୍କୁ କହିଲେ ମଧ୍ୟ ସେମାନେ ବିଶ୍ୱାସ କରିବେ ନାହିଁ । କଟକଣା ଜାରି ହେବା ପୂର୍ବରୁ ମୋ ଗୁପ୍ତପତ୍ର ସ୍ପେନ୍ ଦେଶପାଇଁ ବଳବତ୍ତର ଥିଲା ।

୩୭ର ହେମନ୍ତ କାଳ ପର୍ଯ୍ୟନ୍ତ ଫେରିବାର ସମ୍ଭାବନା ନାହିଁ । ମୁଁ ୩୬ ର ଗ୍ରୀଷ୍ମ-କାଳରେ ଆସିଥିଲି । ଛୁଟି ବର୍ଷକ ପାଇଁ ଥିଲେ ସୁଦ୍ଧା ୩୭ର ନୂଆ ପଢ଼ା ଆରମ୍ଭ

ଯାଏ ନଗଲେ ଚଳିପାରେ । ଏହା ଭିତରେ ବହୁତ ସମସ୍ୟା ଅଛି । ଆଜି ଓ କାଲି ମଧ୍ୟରେ ମଧ୍ୟ ବ୍ୟବଧାନ ବିସ୍ତର ବୋଲି କୁହାଯାଇପାରେ । ବିଶ୍ୱବିଦ୍ୟାଳୟ ସମ୍ବନ୍ଧରେ ଭାବନାର କାରଣ ନାହିଁ । ନୂଆ ପଢ଼ା ଆରମ୍ଭ ହେଲାବେଳେ ସେଠାରେ ପହଞ୍ଚିଲେ ହେଲା । ଏତିକି ପ୍ରତି ନଜର ରଖିବାକୁ ହେବ ।

ବହୁତ ଦିନ ହେଲା ଏକ ବିଚିତ୍ର ଜୀବନଯାତ୍ରା ଚାଲିଅଛି । ମୋ କାମ ହେଲା ଷ୍ଟେସନ୍ ସମ୍ପର୍କରେ । ଏଣୁ ଷ୍ଟେସନରେ ରହିବା ସ୍ୱାଭାବିକ ଏବଂ ଯଥାର୍ଥ । ଖରାଦିନେ ମୁଁ ଇଞ୍ଜିନିୟରିଂ ଏବଂ ଜଙ୍ଗଲ ଇଲାକାରେ କାମ କରି ରାସ୍ତା ନିର୍ମାଣ କରିଥିଲି । ବିଗଗ୍ନ ମଧ୍ୟ କରିଥିଲି । ଯନ୍ତ୍ରପାତି ଗୋଲାବାରୁଦ ବ୍ୟବହାର ପ୍ରଣାଳୀ ମଧ୍ୟ ଶିକ୍ଷା କରିଥିଲି । ଏଣୁ ମୋ ପକ୍ଷରେ ପୋଲ ଭାଙ୍ଗିଦେବା ଏକ ସାଧାରଣ କାମ, ଠିକିଏ ଭାବନାଚିନ୍ତାରେ କଲେ ମଧ୍ୟ ନିର୍ଭୁଲ କାମ ମୁଁ କରିଥାଏ ।

ଧ୍ୱଂସ କରିବା କାମ ଥରେ ଗ୍ରହଣ କରିନେଲେ ତାହା ସମସ୍ୟା ଛଡ଼ା ଆଉ କିଛି ନୁହେଁ । କିନ୍ତୁ ଏହା ସହିତ ଆହୁରି ଅନେକ ବସ୍ତୁ ସଂଶ୍ଳିଷ୍ଟ । ଯାହାକି ଭଲ ନୁହେଁ ଅଥଚ ମୁଁ ତାକୁ ଅତି ସହଜ ଭାବରେ ଗ୍ରହଣ କରିଅଛି । ଗୋଟାଏ କିଛି ଧ୍ୱଂସ କରିବା ପାଇଁ ଯେଉଁ ଉଦ୍ୟମ ଏବଂ ନିପୁଣତା ଲୋଡ଼ା ତାହା କାହାକୁ ହତ୍ୟା କରିବାର ଉଦ୍ୟମ ସଙ୍ଗେ ପ୍ରାୟ ସମାନ । ବଡ଼ ବଡ଼ କଥା ଦ୍ୱାରା ଏପରି କାର୍ଯ୍ୟ ଅଧିକ ସମର୍ଥନ ଯୋଗ୍ୟ ହୋଇ ନପାରେ କିମ୍ବା ହତ୍ୟା ଦୋଷ ଶୂନ୍ୟ ହୋଇ ନପାରେ । ପ୍ରକୃତରେ ମୁଁ ବଡ଼ ସହଜରେ ଏହି ପୋଲ ଧ୍ୱଂସ କରିବାକୁ ରାଜି ହୋଇଗଲି । ସାଧାରଣତଃ କାମ ଶେଷ କଲାବେଳକୁ ମୁଁ କଅଣ ହୋଇଥିବି ତାହା ଅତି ମାତ୍ରାରେ ସନ୍ଦେହ ସମାକୁଳ । ମୋର ଧାରଣା ବହି ଲେଖା କାମ ଆରମ୍ଭ କରି ମୁଁ ସବୁ ସନ୍ଦେହରୁ ରକ୍ଷା ପାଇଯିବି । ଥରେ ଲେଖିବାକୁ ଆରମ୍ଭ କଲେ ସନ୍ଦେହ ଆପଣାଛାଏଁ ଚାଲିଯିବ । ଲେଖି ପାରିଲେ ବହି ଖଣ୍ଡିକ ଖୁବ୍ ଭଲ ହେବ । ଅନେକମାନଙ୍କ ଲେଖାଠାରୁ ବହୁତ ଭଲ ।

କିନ୍ତୁ ଭବିଷ୍ୟତ ଚିନ୍ତାରୁ ଲାଭ ନାହିଁ । ଅଦ୍ୟତନ ବର୍ତ୍ତମାନ ହିଁ ପ୍ରଧାନ ବିଷୟ । ସୁତରାଂ ବର୍ତ୍ତମାନ ପାଇଁ ଯାହା ମିଳୁଛି ସେତିକି ଗ୍ରହଣ କରିବା ବୁଦ୍ଧିମାନର କାମ । ପୋଲ କାମଟା ଯଦି ବିଫଳ ହୁଏ ସଫଳ ହେବାର ବଡ଼ ବେଶୀ ସମ୍ଭାବନା ଜଣା ପଡୁନାହିଁ ।

ମେରିଆ କିନ୍ତୁ ଭଲ ବ୍ୟବହାର କରୁଅଛି । ମୁଁ ବୋଧହୁଏ ଜୀବନରେ ତାହାଠାରୁ ସେତିକି ପାଇବାର ହକଦାର । ହୁଏତ ମୋ ପରମାୟୁ ୭କୋଡ଼ି ୧୬

ବର୍ଷ ନ ହୋଇ ମୋଟେ ଷୋଳ ୧୬ ଘଣ୍ଟାରେ ପରିସମାପ୍ତ ହେବ । ଏହି ୭୨ ଘଣ୍ଟାର ଅର୍ଥ ହେଉଛି ମୋଟେ ତିନିଦିନ ମାତ୍ର ।

ଜଣେ ଲୋକ ୭୦ବର୍ଷରେ ଯେଉଁ ପରିପୂର୍ଣ୍ଣ ଜୀବନଯାପନ କରିପାରେ ତାହା ୭୨ଘଣ୍ଟାରେ ମଧ୍ୟ କରିପାରେ । ତେବେ ସେଥିପାଇଁ ଜୀବନର ପ୍ରତିଟି ମୁହୂର୍ତ୍ତିକୁ ସାର୍ଥକ କରିବାକୁ ପଡ଼ିବ । କେବଳ ଗୋଟାଏ ନିର୍ଦ୍ଦିଷ୍ଟ ବୟସ ହେଲେ ଏହି ଚିନ୍ତା ଓ ସୂତ୍ର କାର୍ଯ୍ୟପ୍ରଦ ହୋଇପାରେ ।

ସେ ମନେ ମନେ ଚିନ୍ତା କଲେ ଏ ଗୁଡ଼ାକ କି ବାଜେ ଭାବନା କରୁଅଛି । ଶେଷଥର ପାଇଁ ଗୋଟିଏ ଯୁବତୀ ସହିତ ମୁଁ ମାଦ୍ରିଡ୍‌ଠାରେ ରାତ୍ରିବାସ କରିଥିଲି । ନା, ନା ଏସ୍କୋରିଆଲଠାରେ ଏହା କରିଥିଲି । ହଠାତ୍ ରାତିରେ ନିଦ ଭାଙ୍ଗିଯିବାରୁ ଭାବିଲି ଆଉ କିଏ ଶୋଇଛି । ଏହି ଚିନ୍ତାରେ ମୁଁ ଉତ୍ତେଜିତ ହୋଇ ଉଠିଲି । ଶେଷକୁ ବୁଝିଲି ସେ କିଏ ? ଅବଶ୍ୟ ଏହା ଖୁବ୍ ମଧୁର ହୋଇଥିଲା । ଏହା ପୂର୍ବରୁ ମାଦ୍ରିଡ୍‌ଠାରେ ଜଣେ ତରୁଣୀ ସହିତ ଏକାଠି ଶୋଇଥିଲି । ମନକୁ ବୁଝାଇବା ପାଇଁ ମିଥ୍ୟା ପ୍ରବୋଧନା ଓ ମିଥ୍ୟା ପରିଚୟ ଦେଲେ ମଧ୍ୟ ଘଟଣା ଏହିପରି । ସୁତରାଂ ସ୍ପେନ ଦେଶୀ ମହିଳାଙ୍କ ରୋମାଞ୍ଚ କାହାଣୀ ମୁଁ ସଗୌରବରେ ଗାଇ ବୁଲୁଅଛି । ଯାହା ଜୁଟିଥିଲା ତାହା ସାମୟିକ ଛଡ଼ା ଅନ୍ୟ କିଛି ନୁହେ । ଅର୍ଥାତ୍ ସେ ସବୁ ସଙ୍ଗ ସୁଖ ଥିଲା କେବଳ ମାତ୍ର ଦୈହିକ ଓ କ୍ଷଣିକ । କିନ୍ତୁ ମେରିଆର ସଙ୍ଗ ସୁଖରେ ଆନନ୍ଦ ଓ ପ୍ରେମ ଦୁଇ ପାଉଅଛି । ତା ସଙ୍ଗରେ ରହି ମଲେ ମଧ୍ୟ ମୋର ଆନନ୍ଦ । ଏପରି ଯେ ଘଟିବ ମୁଁ କେବେ ଭାବି ନଥିଲି ।

ଯଦି ମୋ ଜୀବନର ବର୍ଷକ ସହିତ ଘଣ୍ଟାଟିଏ ଅଦଳ ବଦଳ କରିବାକୁ ପଡ଼େ ତେବେ ସେ ମୂଲ୍ୟ ମୋତେ ମିଳି ଯାଇଅଛି ବୋଲି ମୁଁ ଭାଗ୍ୟବାନ୍ । ଦୀର୍ଘ ସମୟ ବୋଲି ଯଦି କିଛି କିମ୍ବା ଜୀବନର ଅବଶିଷ୍ଟାଂଶ କିମ୍ବା ବର୍ତ୍ତମାନଠାରୁ ଶେଷ ପର୍ଯ୍ୟନ୍ତ ବୋଲି କୌଣସି ପରିମାପର ସତ୍ତା ନଥାଏ ତେବେ ମୁଁ କହିପାରେ ବର୍ତ୍ତମାନରେ ହିଁ ମୁଁ ତୃପ୍ତ, ଉଚ୍ଛ୍ୱସିତ ଏବଂ ସନ୍ତୁଷ୍ଟ । ଏହି ବର୍ତ୍ତମାନହିଁ ମୋର ସ୍ଥିତି ଓ ମୋର ନିଖିଳ ବିଶ୍ୱ ଏବଂ ଜୀବନ । ପ୍ରାଣ ଓ ପତ୍ନୀ, ମୁଁ ଓ ସେ । ନା, ନା, ଏଥିରେ କାମ ଚଳିବ ନାହିଁ । ଫରାସୀମାନେ ପୁରୁଷକୁ ସ୍ୱାମୀରେ ପରିଣତ କଲେ । ଏହି ଶ୍ରୀ ଓ ଶ୍ରୀମତୀ ଏକ ସାର୍ବଜନୀନ ଚିନ୍ତାଧାରା । ଜୀବନ ମରଣ ଯୁଦ୍ଧ ବିଗ୍ରହ ଏ ସବୁତ ଅତି ସ୍ୱାଭାବିକ, ଅତି ସନାତନ । ଏଥିରେ ସେ ଜର୍ମାନର ଜଡ଼ବାଦ କଥା ମଧ୍ୟ ଭାବିନେଲେ ଏବଂ ନିଜର ଯଥାସର୍ବସ୍ୱ ବିନିମୟରେ ମେରିଆକୁ ଗ୍ରହଣ କରିବାକୁ ପ୍ରସ୍ତୁତ ହେଲେ ।

ବର୍ତ୍ତମାନ ସମସ୍ତେ ମିଳିମିଶି କାମ କରିବେ । ତାହାର ମଧ୍ୟ ବାଳମ୍ବ ନାହିଁବ କାମଟା ବଡ଼ ଖରାପ । ଏମିତକା କାମ ସକାଳବେଳେ କରିବା ସମ୍ଭବ ନୁହେଁ । ଅସମ୍ଭବ ପରିସ୍ଥିତିରେ ରାତିର ଅନ୍ଧକାର ପର୍ଯ୍ୟନ୍ତ ଅପେକ୍ଷା କରିବା ଦରକାର । ଅନ୍ଧକାରରେ ସେପରି କାମ ଅପେକ୍ଷାକୃତ ସୁସାଧ୍ୟ ଓ ନିରାପଦ । ଯଦି ଦିନବେଳେ ପୋଲଟା ଉଡ଼ାଇ ଦିଆଯାଏ ତେବେ ? ଏହାର ପରିଣାମ ଯୋର୍ଡୋ ବିସ୍ତୃତ ଶୁଦ୍ଧ ସ୍ପେନିସ୍ ଭାଷାରେ ବୁଝାଇ ଦେଇଅଛି । ମୁଁ ଏହି କାମର ଦାୟିତ୍ୱ ଗୋଲ୍‌ଜଠାରୁ ପାଇ ଏ ସମ୍ବନ୍ଧରେ ଚିନ୍ତା କରିନାହିଁ ଏମନ୍ତ ନୁହେଁ । ମନ୍ଦ କଥାଟାହିଁ ମୁଁ ନିଜେ ବେଶୀ ଭାବିଅଛି । ଗତ ଦୁଇ ରାତି ହେଲା ପେଟ ଭିତରେ ମୋର ଏହି କଥାଟା ହିଁ ଜମାଟ ବାନ୍ଧି ଯାଇଅଛି ।

ତୁମେ ତୁମର ଚରାଚରିତ ଧାତରେ ଜୀବନ ବିତାଉ ଅଛ । ତହିଁର ସାର୍ଥକତା ସମ୍ବନ୍ଧରେ ମଧ୍ୟ ସଚେତନ ଅଥଚ ଶେଷକୁ ଦେଖିଲି ତାର ପରିଣତି ଅର୍ଥଶୂନ୍ୟ । ତୁମର ପ୍ରଥମରେ କୌଣସି ସନ୍ଦେହ ନଥିଲା । ସନ୍ଦେହ ତୁମର ହେବ ନାହିଁ ବୋଲି ଭାବିଥିଲି । ବାଧାବିଘ୍ନ ତୁମ ଆଖିରେ ପଡ଼ି ନଥିଲା । ସବୁ ହିସାବ ମତେ କରି ଯାଉଥିଲି । ଅସମ୍ଭବ ଅବସ୍ଥାରେ ପୋଲଟାଏ ଧ୍ୱଂସ କରିବା ପାଇଁ ତୁମେ ଆଦିଷ୍ଟ ହେଲ । ଏହା ଉପରେ ପ୍ରତିଆକ୍ରମଣ ରୋଧ କରିବାର ଉପାୟ ନିର୍ଭର କରୁଅଛି । ହୁଏତ ସେପରି ପ୍ରତିଆକ୍ରମଣ ସେପଟୁ ଆରମ୍ଭ ହୋଇ ଗଲାଣି । ଠିକ୍ ଏତିକିବେଳେ ତୁମକୁ ଜୁଟିଗଲା ମେରିଆ ପରି ଜଣେ ବାଳିକା । ଆଉ କରିବ କଅଣ ?

ପିଲାର୍ ଭଳି ଜଣେ ସ୍ତ୍ରୀଲୋକ ଏହି ବାଳିକାକୁ ମୋ ଶଯ୍ୟା ଖୋଳ ଭିତରକୁ ପେଲି ପୂରାଇ ଦେଲା । ଫଳଟା ତାହାହିଁ ହେଲା ଯାହା ସଚରାଚର ହୋଇଥାଏ । ଏଇତ । ପିଲାର୍ ପୂରାଇ ଦେଲା, ମୁଁ ନିଜେ ନାଗର ହୋଇଗଲି ଏମିତି ମିଥ୍ୟା କହି ନିଜକୁ ପ୍ରତାରଣା କରିବା ଠିକ୍ ନୁହେଁ । ଅସଲ କଥା ହେଉଛି ବାଳିକାକୁ ଦେଖିଲାକ୍ଷଣି ମୁଁ ଆକୃଷ୍ଟ ହୋଇଥିଲି । ସେ ପହିଲେ ମୋ ସାଙ୍ଗରେ କଥା କହିଲାବେଳୁ ମୁଁ ତା ପ୍ରେମରେ ବୁଡ଼ି ଯାଇଥିଲି । ଏକଥା ମୁଁ ଅନ୍ୟକୁ ଭୁଲାଇଲେ ମଧ୍ୟ ନିଜକୁ ଭୁଲାଇ ପାରିବି ନାହିଁ । ଅବଶ୍ୟ ଏପରି ଘଟିବ ବୋଲି ମୁଁ ଭାବି ନଥିଲି ତଥାପି ବର୍ତ୍ତମାନ ଅନ୍ୟ ଉପରେ ଦୋଷ ଲଦିବା ଠିକ୍ ନୁହେଁ । ମେରିଆ ପ୍ରଥମଥର ପାଇଁ ଲୁହା ମଗିଡ ନେଇ ଆସିଲା ବେଳୁଁ ମୁଁ ଆଉ ନିଜ ଆୟତ୍ତରେ ରହି ନଥିଲି ।

ସେତିକିବେଳୁ ତ ମୁଁ ଠୋକର୍ ଖାଇଅଛି, ବର୍ତ୍ତମାନ ମିଛ କହି କି ଲାଭ ? ତାକୁ ଯେତେ ଥର ଦେଖିଲି ସେତେ ଥର ମୋ ଅନ୍ତର ଉଦ୍‌ବେଳିତ ହୋଇଉଠିଲା । ଏତିକି ସ୍ୱୀକାର କରିବା ଭଲ । ହଉ ସ୍ୱୀକାର କଲି । ପିଲାର୍ ତାକୁ ତୁମ ଉପରକୁ

ଠେଲଦେବା କଥା ବାଜେ । ପିଲାର୍ ବଡ଼ ବୁଦ୍ଧିମତୀ । ସେ ବାଳକାର ଖୁବ୍ ଯତ୍ନ ନେଇଅଛି । ବାଳକାଟି ଖାଦ୍ୟଥାଳା ନେଇ ଗୁହା ମୁହଁକୁ ଆସିଲାକ୍ଷଣି ପିଲାର୍ ସବୁ ଘଟଣା ବୁଝିନେଲା । ଏଇଥିପାଇଁ ସେ ଅବସ୍ଥାକୁ ସହଜ କରିଦେଲା । ତାହାର ସେହି କ୍ରିୟା ଫଳରେ ଗତ ରାତି ଓ ଆଜଦିନର ମଜାକୁ ମୁଁ ପାଇ ପାରିଅଛି । ସେ ମୋଠାରୁ ଅଧିକ ସଭ୍ୟ ଏବଂ କେଉଁ ସମୟରେ କଅଣ କରିବା ଦରକାର ତାହା ଜାଣେ । ହଁ, ପିଲାର୍ ସମସ୍ତ ମୂଲ୍ୟବୋଧ ସ୍ୱତନ୍ତ୍ର ଭିନ୍ନ । ସେ ଆଘାତ ସହ୍ୟ କରିଅଛି କାରଣ ସେ ଯାହା ହରାଇ ଅଛି ଅନ୍ୟ କେହି ତାହା ହରାଉ ଏହା ପିଲାର୍ ଇଚ୍ଛା ନଥିଲା । ହରାଇବା ଭାବନା ଏତେ ବଡ଼ ଯେ ସେ ତାହା ସହ୍ୟ କରି ପାରି ନଥାନ୍ତା । ଏଇଥିପାଇଁ ସେ ପାହାଡ଼ ଭିତରେ ସେପରି ଆଘାତ ଗ୍ରହଣ କରିନେଲା ଏବଂ ଆମ୍ଭେମାନେ ତାକୁ ତିଳମାତ୍ର ସାହାଯ୍ୟ କରି ନଥିଲୁ ।

ଏହାହିଁ ଘଟିବା କଥା । ଏତକ ମାନିନେବା ଉଚିତ । ବର୍ତ୍ତମାନ ଆଉ ଦୁଇଟି ପୂରାରାତ ତାକୁ ପାଇ ପାରିବ ନାହିଁ । ଥରେ ରାତସାରା, ଥରେ ଦିନବେଳେ, ହୁଏତ ଆଉ ଥରେ ରାତରେ ମେରିଆକୁ ପାଇଲେ ପାଇ ପାରିବ କିନ୍ତୁ ଏତକରେ ଇତି । ଜୀବନସାରା ଏକାଠି ରହିବା ଆଶା ଦୁରାଶା ମାତ୍ର ।

ସୁଖ, ସ୍ୱାଚ୍ଛନ୍ଦ୍ୟ, କେଳିକୌତୁକ, ଘରଦ୍ୱାର, ବେଶଭୂଷା ଏକାଠି ଘର କରିବା, ଖାଇବା ପିଇବା, ଆରାମ କରିବା, ଦାମ୍ପତ୍ୟ ଜୀବନର ମାଧୁର୍ଯ୍ୟରେ ବିଭୋର ରହିବା । ଏସବୁ ମୋ ଭାଗ୍ୟରେ ନାହିଁ । ଏତକ ମିଳିଲେ ଜୀବନ ସାର୍ଥକ ହୋଇଥାଏ ଏବଂ ଲୋକର ଅନ୍ୟ କିଛି କାମ୍ୟ-କାମନା ରହେ ନାହିଁ । ଏଣୁ ସେ ହାଇଁପାଇଁ କରେ ନାହିଁ । ଯଦି ଏସବୁ ନମିଳିଲା ତେବେ ଯେତିକ ମିଳିଲା ସେତିକରେ ସନ୍ତୁଷ୍ଟ ହେବା ଉଚିତ ।

କିନ୍ତୁ ମୁଁ ଲୋଡ଼ୁଛି ଆକାଶ କୁସୁମ । ମୁଁ ଯଦି ପ୍ରକୃତରେ ସେହି ବାଳିକାକୁ ପ୍ରେମ କରୁଥାଏ ତେବେ ତାହାର ଦୀର୍ଘକାଳତ୍ୱ ବା ଅବିଚ୍ଛିନ୍ନତା କଥା ନଭାବି ତାହାର ଅଭାବ, ପ୍ରଗାଢ଼ତା କିମ୍ବା ଗମ୍ଭୀରତା ଦ୍ୱାରା ପୂରଣ କରିପାରେ । ଆଗକାଳର ଲୋକେ ସାରାଜୀବନ ପାଇଁ ପ୍ରଣୟିନୀ ଲୋଡ଼ୁଥିଲେ । ମୁଁ ଦେଢ଼ଦିନ ପାଇଁ ଯେତିକ ପାଇ ନିଜକୁ ଭାଗ୍ୟବାନ ମନେ କରୁଅଛି । ଏହି ଦୁଇ ରାତିର ପ୍ରେମରେ ମୁଁ ଅନୁଭବ କରୁଅଛି ପ୍ରେମର ପୂର୍ଣ୍ଣତା, ସମ୍ମାନ, ସୁଖଦୁଃଖ, ସ୍ୱାସ୍ଥ୍ୟ, ଅସୁସ୍ଥତା, ମୃତ୍ୟୁ ସବୁ କିଛି । ମୁଁ ଜାଣେ ମରଣ ଘଟାଏ ବିଚ୍ଛେଦର ବିଷଫଳ ହା ହୁତାଶ । ଏହା ଭଲ ନୁହେ । ଯାହା ଭଲ ନୁହେ ସେପରି କାମ କରିବ ନାହିଁ । ଗୁଡ଼ ।

ଗୋଲ୍‌ଜ୍ ଏସବୁ କଥା କହିଥିଲେ । ସେ ଯେତେ ବେଶୀ ସମୟ ରହିଥିଲେ ସେତେ ଅଧିକ ସ୍ଫୂର୍ତ୍ତି କରିଥିଲେ । ଅନଭ୍ୟସ୍ତ ଗୃହକାର ପାଇଁ ଏହି କ୍ଷତିପୂରଣ କଥା

ସେ କହୁଥିଲେ । ଗୋଲଜିଙ୍କ ଏହା ଥିଲା କି ? ସମୟର ଅଭାବ, କାର୍ଯ୍ୟର ଜରୁରୀତା ଏବଂ ପାରିପାର୍ଶ୍ୱିକ ଅବସ୍ଥା ଏହା ଘଟାଇ ଥିଲାକି ? ତୁଳନାମୂଳକ ପରିସ୍ଥିତିରେ ଏପରି ଦଶା କଅଣ ସମସ୍ତଙ୍କର ଘଟିଥାଏ ? କିମ୍ବା ବିଶେଷ କାରଣ ଯୋଗୁଁ ତାଙ୍କ ପାଇଁ ଖାସ୍ କରି ଘଟିଥିଲା । ଲାଲ୍‌ଫୌଜର ଅଶ୍ୱାରୋହୀ ଦଳ ତୁଳନା କରୁଥିଲାବେଳେ ଗୋଲଜ୍ ଏମିତି ତରବରିଆରେ ଅଳ୍ପକାଳ ଶୋଇବାକୁ ପାଇ ମେରିଆ ଭଳି କୌଣସି ବାଳିକାର ପ୍ରେମରେ ପଡ଼ିଥିଲେ କି ?

ସମ୍ଭବତଃ ଗୋଲଜ୍ ଏତିକି ଜାଣିଥିଲେ ବୋଲି ସେ କହୁଥିଲେ ଯେ ଏବେ ଦୁଇ ରାତିର ସୁଖକୁ ସମଗ୍ର ଜୀବନର ସୁଖ ବୋଲି ଧରି ନେବାକୁ ପଡ଼ିବ । ଆମର ବର୍ତ୍ତମାନ ଯେଉଁ ଜୀବନଧାରା ଚାଲିଅଛି ସେଥିରେ ଖୁବ୍ ଅଳ୍ପ ସମୟ ଭିତରେ ସବୁକିଛି ଭୋଗ ବିଳାସକୁ ଶେଷ କରିଦେବାକୁ ପଡ଼ିବ ।

ଏପରି ବିଶ୍ୱାସ ଖୁବ୍ ଭଲ କିନ୍ତୁ ମେରିଆ ଯେଉଁ ଅବସ୍ଥା ଫେର୍‌ରେ ପଡ଼ି ଏପରି ହୋଇଅଛି ଏକଥା ସେ ପ୍ରତ୍ୟୟ କରୁ ନଥିଲେ । ଅବଶ୍ୟ ଦୁହିଙ୍କର ଅବସ୍ଥାର ପ୍ରତିକ୍ରିୟା ଯୋଗୁଁ ଯଦି ମେରିଆର ରୀତି ସେପରି ଘଟିଥିଲା ତେବେ କଥା ସ୍ୱତନ୍ତ୍ର । କେବଳ ମେରିଆର ଗୋଟିଏ ଅବସ୍ଥା ସେତେ ଭଲ ନଥିଲା ବୋଲି ସେ ଭାବିଲେ । ନା ଭଲ ନଥିଲା ।

କିନ୍ତୁ ଯାହା ହେବାର ଥିଲା ତାହା ହୋଇଅଛି । କିନ୍ତୁ ଏହା ପସନ୍ଦ କରିବାକୁ କୌଣସି ବାଧ୍ୟତାମୂଳକ ଆଇନ ନାହିଁ । ମୁଁ ଯାହା ଅନୁଭବ କରିଅଛି ତାହା କରିବି ବୋଲି ତ ଆଗରୁ ଜାଣି ନଥିଲି । ଏହିଭଳି ସାରାଜୀବନ କଟାଇବାକୁ ମୁଁ ବ୍ୟଗ୍ର । ମୋ ଅନ୍ତର କହୁଛି 'ହଁ ହେବ, ତୁ ସାରାଜୀବନ ତାକୁ ପାଇବୁ । ତୋର ଅତୀତ ବା ଭବିଷ୍ୟତ ନାହିଁ ରହିଛି କେବଳ ବର୍ତ୍ତମାନ । କେବେ ଏହି ସତ୍ୟ ଉପଲବ୍ଧି କରିବୁ ? କେବଳ ବର୍ତ୍ତମାନ, କେବଳ ଦୁଇଟି ଦିନ ଏବଂ ଏହି ଦୁଇଟି ଦିନ ହିଁ ତୋର ଜୀବନ । ତାହା ଭିତରେ ସବୁ ବିଷୟ ଆନୁପାତିକ ଭାବରେ ରହିବ । ଦୁଇ ଦିନିଆ ଜୀବନ କଟାଇବାକୁ ହେଲେ କୌଣସି ବିଷୟରେ ଅଭିଯୋଗ ନକରି କିମ୍ବା ଅଧିକ କିଛି ଯାଚଞ୍ଚା ନକରି ଚଳିବାକୁ ପଡ଼ିବ । ତାହାହିଁ ହେବ ସୁନ୍ଦର ଜୀବନ । ଦିନ ମାସ ବର୍ଷ ଦ୍ୱାରା ଭଲ ଜୀବନର ମାପ କରାଯାଇ ନଥାଏ ।'

ସୁତରାଂ ଚିନ୍ତା ନକରି ଯାହା ମିଳୁଛି ତାହା ଗ୍ରହଣ କର ଏବଂ ନିଜର କର୍ତ୍ତବ୍ୟ ସମ୍ପାଦନ କର । ତେବେ ଯାଇ ଦୀର୍ଘ ଏବଂ ସୁଖକର ଜୀବନ ତୁ ପାଇବୁ । ଅଧୁନା ତୁ ଆନନ୍ଦ ଉପଭୋଗ କରିଅଛୁ । ତେବେ ଆଉ ଆପତ୍ତି କରିବାର କାରଣ ନାହିଁ । ଏଭଳି

କାମରେ ଏହାହିଁ କାମ୍ୟ । ସେ ନିଜ ଯୁକ୍ତିରେ ନିଜେ ସନ୍ତୁଷ୍ଟ ହୋଇ ଉଠିଲେ । ଖାଲି ବହି ପଢ଼ି ଶିକ୍ଷା ଲାଭ ହୋଇ ନଥାଏ । ପ୍ରକୃତ ଶିକ୍ଷା ପାଇଁ ବହିଲୋକର ସଂସ୍ପର୍ଶରେ ଆସିବାକୁ ପଡ଼ିବ । ଏପରି କୌତୁକାବହ କଳ୍ପନା କରି ସେ ତୃପ୍ତି ବୋଧ କଲେ ଏବଂ ବାଳକାକୁ ପୁଣି କହିଲେ "ପ୍ରିୟେ, ତୁ କିଛି କହୁଥିଲୁ କି ?"

ବାଳକା ଜବାବ ଦେଲା "ମୁଁ କହୁଥିଲି ଯେ ତୁମେ ନିଜ କାମପାଇଁ ବ୍ୟସ୍ତ ହେବା ଦରକାର ନାହିଁ । ମୁଁ ତମ କାମରେ ହସ୍ତକ୍ଷେପ କରିବି ନାହିଁ କିମ୍ବା ବାଧା ଦେବି ନାହିଁ । ମୋ ଦ୍ୱାରା ଯଦି କିଛି କରିବାର ଥାଏ ତେବେ ମୋତେ କହିବ ।"

ରବର୍ଟ ଜର୍ଡାନ୍ ଜବାବ ଦେଲେ "କାମଟା ଏତେ ସହଜ ଯେ ତୋର ସାହାଯ୍ୟ ବାହୁଲ୍ୟ ।"

"ପୁରୁଷର କପରି ଯତ୍ନ ନେବାକୁ ହୁଏ ସେକଥା ମୁଁ ପିଲାର୍‌କୁ ପଚାରି ବୁଝିନେବି । ମୁଁ ତାହାହିଁ କରିବି । ଏମିତି ଶିକ୍ଷା କରୁଥିଲାବେଳେ ମୁଁ ନିଜେ ମଧ୍ୟ ବହୁତ କଥା ଜାଣିପାରିବି । ଅଉ କେତେ କଥା ତୁମେ ମୋତେ ଶିଖାଇ ଦେଇ ପାରିବ ।"

"ନା, କିଛି କରିବାର ନାହିଁ ।"

"ନାହିଁ ? ତୁମର ବିଛଣା ଖରାରେ ଶୁଖାଇବାର ଅଛି । ତାପରେ ଝାଡ଼ିଝୁଡ଼ି ସଫାକରି କୁହୁଡ଼ି ପଡ଼ିବା ପୂର୍ବରୁ ଘରଭିତରକୁ ନେଇ ଯାଇଥିବା କଥା । ତୁମେ କହୁଛ କିଛି ନାହିଁ ।"

"ତା' ପରେ ?"

"ତାପରେ ତୁମର ମୋଜା ଧୋଇବାକୁ ହେବ, ହଲେ ମୋଜା କାମ ଦେବ ନାହିଁ, ଦୁଇହଳ ଦରକାର ।"

"ଆଉ କଅଣ ?"

"ଅଉ ତୁମେ ମୋତେ ଦେଖାଇ ଦେଲେ ମୁଁ ତୁମର ପିସ୍ତଲରେ ତେଲ ଦେଇ ସଫା କରିବି ।"

ରବର୍ଟ ଜର୍ଡାନ୍ କହିଲେ "ମୋତେ ଗୋଟାଏ ଚୁମାଖାଇଲୁ ।"

"ନାହିଁ, ଆଗେ ମୋ କଥା ଶୁଣ । ମୋତେ ପିସ୍ତଲ ସଫା କରିବା ଶିଖାଇ ଦେବ ତ ?" ପିଲର୍ ପାଖରେ ତେଲ ଓ ଚୁଣ୍ଡା କନା ଅଛି । ଗୁହାରେ ଖଣ୍ଡିଏ ସଫା କରିବା କାଢ଼ି ମଧ୍ୟ ଅଛି ।"

"ହଉ, ମୁଁ ନିଶ୍ଚୟ ଶିଖାଇ ଦେବି ।"

"ଏହାପରେ ପିସ୍ତଲ ଫୁଟାଇବା ମୋତେ ଶିଖାଇ ଦେଲେ ଆମ ଭିତରୁ କଣେ ଦରକାରବେଳେ ଗୁଳି କରି ପାରିବ କିମ୍ବା ଆତ୍ମହତ୍ୟା କରିପାରିବ । ଲଢ଼େଇରେ ଜଖମ ହୋଇ ଚଳତଶକ୍ତି ରହିତ ହେଲେ ଏବଂ ଶତ୍ରୁ ଦ୍ୱାରା ବନ୍ଦୀ ହେବାର ଇଚ୍ଛା ନଥିଲେ ଏପରି ପରିସ୍ଥିତି ଉପୁଜିପାରେ ।"

ରବର୍ଟ ଜର୍ଡ଼ାନ୍ କହିଲେ "ଭାରି ମଜ୍ଜାର କଥା ତ । ଏମିତିକା ଭାବନା ତୋର ବେଶୀ ଅଛି କି ?"

ମେରିଆ କହିଲା "ନା ବେଶୀ ନାହିଁ । ତେବେ ଏଟା ଖୁବ୍ ଭଲ ଭାବନା । ପିଲର୍ ମୋତେ ଏଟା ଦେଇ ଏହାର ବ୍ୟବହାର କୌଶଳ ମଧ୍ୟ ଶିଖାଇ ଅଛି ।" ଏହାକହି ସେ ନିଜ ସ୍ତ୍ରୁଟ ପକେଟର ବୋତାମ ଫିଟାଇ ଖଣ୍ଡିଏ ଚମଡ଼ା ଥଳି କାଢ଼ିଲା । ଥଳିରେ ଖଣ୍ଡେ କ୍ଷୁର ଥିଲା । ସେ କ୍ଷୁରର ରବର ଢାଙ୍କୁଣି କାଢ଼ି କହିଲା "ମୁଁ ଏଖଣ୍ଡି ସବୁବେଳେ ପାଖରେ ରଖିଥାଏ । ପିଲର୍ କହିଅଛି ଯେ କାନମୁଣ୍ଡାର ଗୋଟିଏ ରଗ ଉପରେ କ୍ଷୁର ରଖି ବାହାରପଟୁ ଭିତର ଆଡ଼କୁ ଟାଣିଆଣିଲେ କଟିଯିବ । ରକ୍ତ ବନ୍ଦ ହେବ ନାହିଁ । ସେ ରଗଟା କୁଆଡ଼େ ବହୁତ ବଡ଼ ରଗ । ସେପରି କଲେ ଆଦୌ କଷ୍ଟ ହେବ ନାହିଁ କିନ୍ତୁ ମୃତ୍ୟୁ ସୁନିଶ୍ଚିତ ।" ଏହାକହି ସେହି ରଗଟା ଦେଖାଇ ଦେଲା ।

ରବର୍ଟ ଜର୍ଡ଼ାନ୍ କହିଲେ 'ହଁ ସତ କଥା । ସେ ରଗଟା ହେଉଛି ସ୍କନ୍ଧଧମନୀ ।' ସେ ଭାବିଲେ ଯୁଦ୍ଧର ଅବଶ୍ୟମ୍ଭାବୀ ପରିଣାମ ଚିନ୍ତାକରି ସେ ଏମିତି କାମ ପାଇଁ ମଧ୍ୟ ନିଶ୍ଚିତ ଭାବରେ ପ୍ରସ୍ତୁତ ରହିଅଛି ।

ମେରିଆ କହିଲା "କିନ୍ତୁ ଏପରି ଶିରାକାଟି ମରିବା ଅପେକ୍ଷା ତୁମେ ମୋତେ ଗୁଳି କରି ମାରିଦେବାକୁ ମୁଁ ଅଧିକ ପସନ୍ଦ କରିବି । ଏକଥା ତୁମେ ପ୍ରତିଜ୍ଞା କର ।"

ରବର୍ଟ ଜର୍ଡ଼ାନ୍ କହିଲେ "ନିଶ୍ଚୟ କରିବି, ପ୍ରତିଜ୍ଞା କରୁଅଛି ।"

ମେରିଆ ତାଙ୍କୁ ଧନ୍ୟବାଦ ଦେଇ କହିଲା "କାମଟା ସହଜ ନୁହେ ବୋଲି ସେ ଜାଣେ ।"

ରବର୍ଟ ଜର୍ଡ଼ାନ୍ କହିଲେ "ହଉ ହେଲା ।" ଏହାପରେ ସେ ଭାବିଲେ ଯେ ସେ ଏସବୁ କଥା ଭୁଲି ଯାଇଥିଲେ । ନିଜ କର୍ତ୍ତବ୍ୟ ସାଧନରେ ଏକାଗ୍ର ହେବା ଦ୍ୱାରା ଗୃହ ଯୁଦ୍ଧର ସୁନ୍ଦର ବସ୍ତୁ ସବୁ ଭୁଲି ଯାଇଥିଲେ । କାସ୍‌କିନ୍ ଏହା ଭୁଲି ନଥିଲେ ବୋଲି ତାଙ୍କର କାମ ନଷ୍ଟ ହୋଇଥିଲା । କାସକିନ୍‌କୁ ମାରିଲାବେଳେ ମୋ ମନ ତ ଗୁଁ ଘୁଁ କରି ନଥିଲା । ଏମିତି କିଛି କରିବାକୁ ପଡ଼ିବ ବୋଲି ସେ ଜାଣିଥିଲେ ମାତ୍ର ଏପର୍ଯ୍ୟନ୍ତ ସେପରି ଘଟଣା ଘଟିନାହିଁ ।

ମେରିଆ ତାଙ୍କ କଡ଼େ କଡ଼େ ଚାଲୁ ଚାଲୁ ସ୍ତ୍ରୀସୁଲଭ ଗାମ୍ଭୀର୍ଯ୍ୟରେ କହିଲା "ଆହୁରି ଅନେକ କାମ ମୁଁ ତୁମ ପାଇଁ କରିପାରେ ।

"ମୋତେ ଗୁଳି କରିବାଛଡ଼ା ?"

"ହଁ । ତୁମ ଡବାରୁ ସିଗ୍ରେଟ୍ ସରିଗଲେ ମୁଁ ସିଗ୍ରେଟ୍ ବଳିଦେବି । ପିଲାର୍, ମୋତେ ଭଲ ଭାବରେ ସିଗ୍ରେଟ୍ ବଳିବା ଶିଖାଇ ଅଛି ।"

ରବର୍ଟ ଜର୍ଡ଼ାନ୍ କହିଲେ "ଚମତ୍କାର ! ଆଚ୍ଛା ସିଗ୍ରେଟ୍ କାଗଜରେ ଛେପ ଦେଇ ତୁ ଯୋଡ଼ିଦେବୁ ତ ?"

"ହଁ । ଆଉ ତୁମେ ଯୁଦ୍ଧରେ ଆହତ ହେଲେ ମୁଁ ତୁମର ଯତ୍ନ ନେବି । ତୁମ କ୍ଷତ ସ୍ଥାନ ଧୂଆଧୋଇ କରି ବାଣ୍ଡେଜ୍ ବାନ୍ଧିଦେବି, ତୁମକୁ ଶୁଆଇ ଦେବି ।"

ରବର୍ଟ ଜର୍ଡାନ୍ କହିଲେ "ମୁଁ ଆହତ ହେବି ନାହିଁ ।"

ତେବେ ତୁମେ ବେମାର ପଡ଼ିଲେ ମୁଁ ସୁଶ୍ରୂଷା କରିବି । ତୁମକୁ ଝୋଳ ରାନ୍ଧି ଦେବି, ତୁମ ବିଛଣା ସଫା କରିଦେବି, ତୁମକୁ ବହି ପଢ଼ି ଶୁଣାଇବି ।"

"ହୁଏତ ମୁଁ ବେମାର ହେବି ନାହିଁ" ରବର୍ଟ ଜର୍ଡାନ୍ କହିଲେ ।

"ତେବେ ମୁଁ ତୁମକୁ ବଡ଼ିସକାଳୁ କାଫି ବନାଇ ଦେବି ।"

ରବର୍ଟ ଜର୍ଡାନ୍ କହିଲେ "ମୁଁ କାଫି ପିଇବା ପସନ୍ଦ ନକଲେ—"

"ନା, ତୁମେ କରିବ । ଆଜି ତୁମେ ଦୁଇ ପିଆଲା କାଫି ପିଇବା ମୁଁ ଦେଖିଛି ।

ରବର୍ଟ ଜର୍ଡାନ୍ ମେରିଆର ପିଠି ଆପୁଡ଼େଇ ସ୍ନେହରେ କହିଲେ "ଧର, ମୁଁ କାଫି ଛାଡ଼ିଦେବି, ଯୁଦ୍ଧରେ ଆହତ ହେବି ନାହିଁ କି ବେମାର ପଡ଼ିବି ନାହିଁ, ତମାଖୁ

ଅଭ୍ୟାସ ଗ୍ରୁଡ଼ିବ, ନିଜ ମୋଜା ଓ ଲୁଗାପଟ୍ଟା ବିଛଣା ନିଜ ହାତରେ ସଫା କରିବ ସେତେବେଳେ ତୁ କଅଣ କରିବୁ ?"

"ସେତେବେଳେ ପିଲାର୍‌ଠାରୁ କଇଞ୍ଚି ମାଗିଆଣି ତୁମ ବାଳ କାଟିଦେବି ।"

"ମୁଁ ବାଳକଟା ପସନ୍ଦ କରେ ନାହିଁ ।"

"ମୁଁ ମଧ୍ୟ କରେ ନାହିଁ । ତୁମ ବାଳ ଏଇଭଳି ଭଲ ଦିଶୁଛି । ଯଦି କିଛି କରିବାକୁ ନଥାଏ ତେବେ ତୁମ ପାଖରେ ବସି ଜଗିବି ଏବଂ ରାତିରେ ପ୍ରେମ କରିବି ।"

ରବର୍ଟ ଜର୍ଡ଼ାନ୍ କହିଲେ "ଆଚ୍ଛା, ତୋ ଶେଷ କଥାଟା ଖୁବ୍ ଉପାଦେୟ ।"

ମେରିଆ କହିଲା "ଇଂରେଜ, ମୋତେ ମଧ୍ୟ ତାହା ଭଲ ଲାଗିବ ।"

"ଇଂରେଜ ନୁହେଁ, ମୋ ନାମ ରବର୍ଟୋ ।"

"ନା, ମୁଁ ତୁମକୁ ଇଂରେଜ ବୋଲି ଡାକିବି, ପିଲାର୍ ସେହି ନାମରେ ଡାକେ ।"

"ତଥାପି ମୁଁ ରବର୍ଟୋ ।"

ମେରିଆ କହିଲା "ନା, ନା ସାରାଦିନ ତୁମେ ଇଂରେଜ ରହିଲ । ଆଚ୍ଛା ଇଂରେଜ, ମୁଁ ତୁମ କାମରେ ସାହାଯ୍ୟ କରିପାରିବି ?"

"ନା । ମୋ କାମ ମୁଁ ଏକା କରିବି । ସେଥିପାଇଁ ଧୀର ବୁଦ୍ଧି ଓ ଥଣ୍ଡା ମଗଜ ଲୋଡ଼ା ।"

'ବେଶ୍, କେବେ ତାହା ଶେଷ ହେବ ?'

'ଭାଗ୍ୟ ପ୍ରସନ୍ନ ଥିଲେ ଆଜି ରାତିରେ ।'

'ଉତ୍ତମ ।'

ତଳୁ କାହାର ତୁଣ୍ଡ ଶବ୍ଦ ଶୁଣାଗଲା ।

ଆଙ୍ଗୁଳି ଦେଖାଇ ଜର୍ଡାନ୍ କିଏ ବୋଲି ପଚାରିଲେ ।

ତାଙ୍କ ଅଙ୍ଗୁଳି ନିର୍ଦ୍ଦେଶିତ ଦିଗକୁ ଚାହିଁ ମେରିଆ କହିଲା 'ନିଶ୍ଚୟ ପିଲାର୍ ଆସୁଛି ।

ପଡ଼ିଆର ତଳ ମୁଣ୍ଡରେ ବଣର ପ୍ରଥମ ଗଛ ଯେଉଁଠାରେ ଆରମ୍ଭ ପିଲାର୍ ସେହିଠାରେ ନିଜ ହାତରେ ମୁଣ୍ଡ ରଖି ବସିଥିଲା । ଗଛ ଛାଇରେ ସେ ଗୋଟାଏ କଳା ବୋକଗୁ ପରି ଦିଶୁଥାଏ ।

ରବର୍ଟ ଜର୍ଡ଼ାନ୍ ତାକୁ ଡାକି ଡାକି ଦୌଡ଼ିଲେ । ଅାଣ୍ଠୁଏ ଉଚ୍ଚ ଘାସ ଭିତରେ ସେ ଦୌଡ଼ି ଦୌଡ଼ି ବେଦମ ହୋଇ ଶେଷକୁ ଚାଲିଲେ । ପିଲାର୍ ନିଜ ହାତ ଛନ୍ଦି ସେଥିରେ ମୁଣ୍ଡ ରଖି ବସିଥାଏ । ସେ ପାଖକୁ ଆସି ଡାକିଲେ 'ପିଲାର୍ ।'

ପିଲାର୍ ମୁଣ୍ଡ ଟେକି ପଚାରିଲା 'କଅଣ ଏତେ ଶୀଘ୍ର ତମର ପ୍ରେମଲୀଳା ସରିଗଲା ?'

ଜର୍ଡ଼ାନ୍ ନଇଁପଡ଼ି ପଚାରିଲେ । 'ତୁ କଅଣ ଅସୁସ୍ଥ ?'

ସେ କହିଲା 'ନା, ମୁଁ ଶୋଇ ପଡ଼ିଥିଲି ।'

ଇତ୍ୟବସରେ ମେରିଆ ମଧ୍ୟ ତା ପାଖକୁ ଆସି ଆଣ୍ଠେଇ ପଡ଼ି ପଚାରିଲା 'କେମିତି ଅଛୁ, ଭଲ ତ ?'

ପିଲାର୍ ବସିଲା ଜାଗାରୁ ନଉଠି ଜବାବ ଦେଲା 'ଖୁବ୍ ଭଲ ଅଛି । ଆଚ୍ଛା ଇଂରେଜ, ତୁମେ ପୁଣି ପୁରୁଷ କୌଶଳ କରୁଥିଲ ?

ତାହା କଥାକୁ ଉପେକ୍ଷା କରି ରବର୍ଟ ଜର୍ଡାନ୍ ପଚାରିଲେ 'ତୋ ଦେହ ଖରାପ ହୋଇନାହିଁ ତ ?'

'ନା । ମୁଁ ଶୋଇ ପଡ଼ିଥିଲି । ତୁମେ ?'

'ନା, ମୁଁ ଶୋଇ ନାହିଁ ।'

ପିଲାର୍ ମେରିଆକୁ କହିଲା "ଦେଖୁଛୁ ଦୁହିଁଙ୍କର ଏକା ଦଶା ।"

ରବର୍ଟ ଜର୍ଡାନ୍ କହିଲେ "ତା କଥା ଛାଡ଼ ।"

ପିଲାର୍ କହିଲା 'ତମ ସାଙ୍ଗରେ କେହି କଥା କହୁ ନାହିଁ ।' ମେରିଆକୁ ପୁଣି ଥରେ ଡାକିଲା । ସେ ନଚାହିଁବାରୁ କହିଲା 'ଦେଖୁଛୁ ତୋତେ ଖୁବ୍ ଭଲ ଲାଗୁଛି ।' ମେରିଆ କିଛି ଜବାବ ଦେଲାନାହିଁ ଏବଂ ଜର୍ଡାନ୍ ସେକଥା ଏଡ଼ାଇବାକୁ ଚାହିଁଲେ । ପିଲାର୍ ଧମକ ଦେଇ କହିଲା 'ତୁମେ ଚୁପ୍ କର । ଆଚ୍ଛା ମେରିଆ, ମୋତେ ଗୋଟାଏ କଥା କହିଲୁ ଦେଖି । ତୁ ଆପଣାଛାଏଁ କହିଯା ।' ମେରିଆ ମୁଣ୍ଡ ହଲାଇଲା । ରବର୍ଟ ଜର୍ଡାନ୍ ଭାବିଲେ ଏମିତିକା ସ୍ତ୍ରୀଲୋକ ଓ ତାହାର ସେହି ମଦୁଆ ସ୍ୱାମୀ ଓ କୁକୁଡ଼ାଭଡ଼ି ଅଡ଼ୁଆ ନେଇ କାମ କରିବାକୁ ନଥିଲେ ତା ଗାଲରେ କସିକରି ଚାପୁଡ଼ାଏ ମାରନ୍ତେ ଯେ—ପିଲାର୍ ପୁଣି ଥରେ ମେରିଆକୁ କହିଲା 'ମୋତେ କହ ।'

ମେରିଆ ପୁଣି ନାହିଁ କଲାରୁ ରବର୍ଟ ଜର୍ଡାନ୍ କହିଲେ 'ତାକୁ ପଚାର ନାହିଁ ।' ତାଙ୍କର କଣ୍ଠସ୍ୱର ବିକୃତ ହୋଇ ଉଠିଥାଏ । ସେ ତାକୁ ଚାପୁଡ଼ାଟାଏ ମାରିବା ପୁଣି ପାଞ୍ଚିଲେ ।

ପିଲାର୍ ତାଙ୍କୁ ପାଟି ଫିଟାଇଲା ନାହିଁ । ସାପ କମ୍ବା ବଲେଇ ପକ୍ଷୀ ଧରିଲା ଖେଳର ଭଙ୍ଗି ବା ଗତି ପିଲାର୍ ଠାରେ ନଥିଲା । ଅଥବା ଜୋର ଜବରଦସ୍ତି ର କିଛି ଲକ୍ଷଣ ନଥିଲା । ତଥାପି ସାପର ଫଣା ବିସ୍ତାର ସଦୃଶ ପ୍ରଭାବ ରବର୍ଟ ଜର୍ଡାନ୍ ଅନୁଭବ କଲେ । କିନ୍ତୁ ସେ ପ୍ରଭାବ ମନ୍ଦ ଉଦ୍ଦେଶ୍ୟରେ ନୁହେଁ, ଅନୁସନ୍ଧାନ କରି ଜାଣିବା ଉଦ୍ଦେଶ୍ୟରେ । ରବର୍ଟ ଜର୍ଡାନ୍ ଏତକ ବୁଝିପାରି ଅଥୟ ଧଇଲେ ।

ପିଲାର୍ କହିଲା 'ମେରିଆ, ମୁଁ ତୋତେ ସ୍ପର୍ଶ କରିବି ନାହିଁ । ତୁ ଆପଣାଛାଏଁ କହିଯା ।' ପିଲାର୍ ଏହି କଥା ସ୍ପେନ ଭାଷାରେ କହିଥିଲା । ମେରିଆ ମୁଣ୍ଡ ହଲାଇଲାରୁ ପିଲାର୍ କହିଲା 'ମୋ କଥା ଶୁଣିଲୁ ତ ମେରିଆ ! ତୋ ନିଜ ଇଚ୍ଛାରେ ମୋତେ କହିଯା । ଯାହା ଘଟିଲା ସବୁତକ କହ ।'

ମେରିଆ କୋମଳ କଣ୍ଠରେ କହିଲା 'ନା, ନା ।'

ପିଲାର୍ କହିଲା 'ବର୍ତ୍ତମାନ ତୁ ମୋତେ ସବୁ କହିବୁ । କେମିତି ନକହିବୁ ଦେଖିବି ।'

ମେରିଆ ତା' ଆଡ଼କୁ ନଅନାଇ କହିଲା 'ମାଟି ହାଲିଲା । ପ୍ରକୃତରେ ସେକଥା ମୁଁ ତୋତେ କହି ପାରିବି ନାହିଁ ।'

ପିଲାର୍ ସ୍ନେହ ଓ ବନ୍ଧୁତ୍ୱ ପୂର୍ଣ୍ଣ ସ୍ୱରରେ କହିଲେ 'ହଁ ।' ତା କଥାରେ ବାଧ ବାଧକତା ନଥିଲା । ରବର୍ଟ ଜର୍ଡାନ୍ ତା କପାଳରେ ସ୍ୱେଦବିନ୍ଦୁ ଦେଖି ପାରିଲେ । ସେ ପୁଣି କହିଲା 'ହଁ, ଏପରି ଘଟିଥିଲା ।'

ଏକଥା ସତ ବୋଲି କହି ମେରିଆ ଓଠ କାମୋଡ଼ି ପକାଇଲା ।

ପିଲାର ସାନୁକମ୍ପ ସ୍ୱରରେ କହିଲା 'ହଁ, ସେକଥା ସତ । କିନ୍ତୁ ସେ ବିଷୟ ତୁ ତୋ ନିଜ ଜାତି ଲୋକଙ୍କୁ କହିବୁ ନାହିଁ । ସେମାନେ ବିଶ୍ୱାସ କରିବେ ନାହିଁ । ଆଚ୍ଛା ଇଂରେଜ, ତୁମର ରକ୍ତ ମିଶା ନୁହେଁ ତ ?'

ପିଲାର ଉଠିବାକୁ ଉଦ୍ୟତ ହୁଅନ୍ତେ ରବର୍ଟ ଜର୍ଡାନ୍ ତାକୁ ଧରି ଉଠାଇ ଦେଇ କହିଲେ 'ନା, ମୋ ରକ୍ତ ମୋ ଜାଣିବାରେ ମିଶା ନୁହେଁ ।'

ପିଲାର କହିଲା, 'ମେଣ୍ଢଆର ରକ୍ତ ମଧ୍ୟ ମିଶା ନୁହେଁ । ବଡ଼ ଅଦ୍ଭୁତ କଥା ।'

ମେଣ୍ଢଆ କହିଲା 'କିନ୍ତୁ ସେପରି ଘଟିଥିଲା ପିଲାର ।'

ପିଲାର କହିଲା 'ହଁ ଲୋ ଝିଅ ମୋ ଯୌବନବେଳେ ଏପରି ଘଟିଥିଲା । ସତେ ଯେମିତି ପଦତଳୁ ମାଟି ଖସିଗଲା । କାଲେ ପୂରାପୂରି ବାହାରେଯିବ ଭାବ ମୁଁ ଡରି ଯାଇଥିଲି । ଗତ ରାତିରେ ଏମିତି ଘଟିଥିଲା ।

ମେଣ୍ଢଆ କହିଲା 'ତୁ ମିଛ କହୁଛୁ ।'

ପିଲାର ଜବାବ ଦେଲା 'ହଁ, ମୁଁ ମିଛ କହୁଛି । ସାରାଜୀବନରେ ମାତ୍ର ୩ ଥର ଏପରି ଘଟିଥାଏ । ସତକୁ ସତ ମାଟି ଟଳିଲା ?'

'ହଁ, ସତକୁ ଟଳିଲା ।'

'ତୁମେ କଅଣ କହୁଛ ଇଂରେଜ, ମିଛ କୁହନାହିଁ ।'

ରବର୍ଟ ଜର୍ଡାନ୍ କହିଲା 'ହଁ, ମାଟି ଟଳିବା ସତ ।'

ପିଲାର୍ କହିଲା 'ଭଲ କଥା । ଏହା ଏକ ବିଶେଷ ଘଟଣା ।'

ମେଣ୍ଢଆ ପଚାରିଲା '୩ ଥର ହେଲିବା କଥା କାହିଁକି କହିଲୁ ?'

ପିଲାର୍ କହିଲା '୩ ଥର । କିନ୍ତୁ ତୁ ତ ଥରଟିଏ ଦେଖିଗଲୁ । ଅନେକଙ୍କ ପକ୍ଷରେ ଆଦୌ ଏପରି ହୋଇ ନଥାଏ । ତୁ ଠିକ୍ ଜାଣୁ ତ ?'

ମେଣ୍ଢଆ ଜବାବ ଦେଲା 'ଏତେ ହେଲିଲା ଯେ ମୁଁ ପଡ଼ି ଯାଇଥାନ୍ତି ।'

ପିଲାର୍ କହିଲା 'ହଁ, ମୁଁ ତାହା ବିଶ୍ୱାସ କରୁଅଛି । ହଉ ଚାଲ, ଛାଉଣିକୁ ଫେରିବା ।'

ରବର୍ଟ ଜର୍ଡାନ୍ ପଚାରିଲେ 'ତିନଥର ବୋଲି କହିବାର ତାତ୍ପର୍ଯ୍ୟ କଅଣ ?' ଏତେବେଳକୁ ସେମାନେ ଦେବଦାରୁ ବଣରେ ଯାଉଥିଲେ ।

ପିଲାର୍ ମୁହଁ ଆମ୍ବିଲା କରି ତାଙ୍କୁ ଚାହିଁ କହିଲା 'ମୋତେ ତୁମେ ଏ ଘଟଣା ତୁଚ୍ଛ ବାଜେ ବୋଲି କହିବ ନାହିଁ ଇଂରେଜ।'

'ଏଟା କଅଣ ତୁମ ହସ୍ତରେଖା ବିଦ୍ୟାପରି ଗୋଟାଏ ପ୍ରକାର କୁହୁକ ?'

'ନା, ଏହା ଗିଟାନୋ ଜାତି ଲୋକଙ୍କ ପକ୍ଷରେ ସାଧାରଣ ଓ ପ୍ରମାଣିତ ଜ୍ଞାନ ।'

'ଆମେ ତ ଆଉ ଗିଟାନୋ ନୋହୁ !'

'ତା ନୋହୁ, କିନ୍ତୁ ବେଳେବେଳେ ଗିପ୍‌ସି ନହୋଇ ମଧ୍ୟ ଏପରି ସୌଭାଗ୍ୟ ଜୁଟିଥାଏ ।'

'ତେବେ ୩ ଥର ହାଲବା କଥା ତୁମର ସତ୍ୟ ଅଭିମତ ?'

ସେ ତାଙ୍କ ଆଡ଼କୁ ଅଖାଡ଼ୁଆ ଭାବରେ ଅନାଇ କହିଲେ 'ଇଂରେଜ, ମୋତେ ବିରକ୍ତ କର ନାହିଁ । ମୋ ଦୃଷ୍ଟିରେ ତୁମେ ଏତେ ତରୁଣ ଯେ ତୁମ ସହିତ ସେକଥା ଚର୍ଚ୍ଚା କରିବା ଅସଙ୍ଗତ ।'

ମେରିଆ କ'ଣ କହିବାକୁ ଯାଉଥିଲା । ପିଲାର ତାକୁ ବନ୍ଦ କରି ଦେଇ କହିଲା 'ତୋ ପକ୍ଷରେ ଥରେ ମାତ୍ର ଘଟିଲା । ଆଉ ଦୁଇଥର ଘଟିବା ବାକି ଅଛି ।'

ରବର୍ଟ ଜର୍ଡାନ୍ ପଚାରିଲେ 'ଆଉ ତୋ ପକ୍ଷରେ—'

'ମୋ ପକ୍ଷରେ ଆଉ ଦୁଇଥର ଘଟିବ । ତହୁଁ ଅଧିକ ନୁହେ' ପିଲାର୍ କହିଲା ।

କାହିଁକି ନୁହେ ବୋଲି ମେରିଆ ପଚାରିଲାରୁ ପିଲାର୍ ତାକୁ ଧମକ ଦେଇ କହିଲା "ତୁ ଅତି ପିଲା, କିଛି ବୁଝିବୁ ନାହିଁ ।' ରବର୍ଟ ଜର୍ଡାନ୍‌ଙ୍କ ସେହିଭଳି ପ୍ରଶ୍ନରେ ମଧ୍ୟ ସେ ସମାନ ଜବାବ ଦେଲା ।

ରବର୍ଟ ଜର୍ଡାନ୍ ମନେ ମନେ ଭାବିଲେ ହଉ ନକହିଲେ ନାହିଁ । ମୋ ପକ୍ଷରେ କିଛି ଘଟିନାହିଁ । ମୁଁ ବହୁତ ଗିପ୍‌ସିଙ୍କୁ ଜାଣେ । ସେମାନେ ସବୁ ବିଚିତ୍ର ପ୍ରାଣୀ । ଆମେ ନିଜେ କିଛି ଊଣା ନୋହୁ । ତଫାତ୍ ଏତିକି ଯେ ଆମକୁ ସତ୍‌ଭାବରେ ଜୀବିକା ଅର୍ଜନ କରିବାକୁ ପଡ଼େ । ଆମେ କେଉଁ ଜାତିର ଲୋକ, ଆମର ଜାତିଗତ କି ଅଧିକାର ଅଛି କି ରହସ୍ୟ ଆମ ଜାତିର ନିଜସ୍ୱ, ଏକଥା କେହି ଜାଣନ୍ତିନାହିଁ । ରାତିରେ ଆମର କ'ଣ ଘଟେ କେହି ଜାଣନ୍ତିନାହିଁ । ଦିନବେଳେ କିଛି ଘଟିଲେ ହୁଏତ ବୁଝିହୁଏ । ଯାହା ଘଟିବାର ଘଟି ଯାଇଅଛି । ବର୍ତ୍ତମାନ ଏହି ସ୍ତ୍ରୀଲୋକ ସେ ସବୁ କଥା ବାଳିକାର ନିଜ ମୁହଁରୁ ଶୁଣିବାକୁ ଚାହେ । ସେ କହିବାକୁ ନାରାଜ । ସେ ଏହା ଗ୍ରହଣ କରି ହୁଏତ କହିବାକୁ ବାଧ୍ୟ ହେବ । ସମ୍ଭବତଃ ପାହାଡ଼ରେ ଥିଲାବେଳେ ପିଲାର ଗିପ୍‌ସିଙ୍କଠାରୁ ମାଡ଼ଖାଇଥିବ । ବର୍ତ୍ତମାନ କିନ୍ତୁ ସେ ସମସ୍ତଙ୍କ ଉପରେ ନିଜର କ୍ଷମତା ଜାରିକରୁଅଛି । ସେ ଯଦି ଖରାପ ହୋଇଥାନ୍ତା ତେବେ ବହୁ ପୂର୍ବରୁ ଗୁଳି ଚୋଟରେ ମରି ଥାଆନ୍ତାଣି । ଅତଏବ ତାହାର ଉଦ୍ଦେଶ୍ୟ ମନ୍ଦ ନୁହେ । ସେ କେବଳ ମେରିଆ ଜରିଆରେ ଜୀଇଁ ରହିବାକୁ ଚାହେ ।

ଏହି ଯୁଦ୍ଧଟା ଶେଷ ହୋଇଗଲେ ମୁଁ ତାଙ୍କ ଚରିତ୍ର ବିଶ୍ଳେଷଣ କରିବି । ପିଲାରଠାରୁ ମୋ ଗବେଷଣା ଆରମ୍ଭ ହେବ । ଆଜି ଦିନଟା ସେ ବଡ଼ ଜଟିଳ କରି ଦେଇଛି । ଏହା ପୂର୍ବରୁ ସେ ଜିପ୍‌ସି ଢଙ୍ଗରଙ୍ଗ ଦେଖାଇ ନଥିଲା । ଖୁବ୍ ସମ୍ଭବ ହସ୍ତରେଖା ପାଠ କଥା ତାହାର ଜାଲ ବିଦ୍ୟା ନୁହେ । ଅବଶ୍ୟ ମୋ ହାତରେ କଅଣ ଦେଖିଲା ମୋତେ କହିନାହିଁ । ଯାହା ଦେଖିଥିବ ସେଥିରେ ସେ ନିଜେ ପୂର୍ଣ୍ଣ ବିଶ୍ୱାସୀ ନିଶ୍ଚୟ କିନ୍ତୁ ଏଥିରୁ ତ କିଛି ପ୍ରମାଣିତ ହେଉନାହିଁ । ଏହିପରି ଚନ୍ତାକରି ସେ ପିଲରକୁ ଡାକଲେ । ପିଲାର ଉତ୍ତର ଦେବାରୁ କହିଲେ 'ଏପରି ରହସ୍ୟରେ କଥା କୁହନାହିଁ । ଏଥିରେ ମୁଁ ଶ୍ରାନ୍ତ ହୋଇ ପଡ଼ୁଛି । ମୁଁ ଭବିଷ୍ୟତ୍‌ବାଣୀ, ପ୍ରେତପିଶାଚ କିମ୍ବା, ଭାଗ୍ୟବର୍ଣ୍ଣନା, ଡାହାଣୀ ବିଦ୍ୟା ପ୍ରଭୃତି ଆଦୌ ବିଶ୍ୱାସ କରେ ନାହିଁ । ତୁ ବାଳକାକୁ ଆଉ ଭଣ୍ଡା ନାହିଁ ।'

'ହଉ ।' ପିଲାର ଜବାବ ଦେଲା ।

"ଆମ ହାତରେ ବହୁତ କାମ ରହିଛି । ଏମିତିକା କୁହୁକ ବିଦ୍ୟା ଆମ କାମକୁ ଜଟିଳ କରି ପକାଇବ । ମୁଁ ଚାହେଁ ରହସ୍ୟ ଊଣା ପଡ଼ୁ କିନ୍ତୁ କାମ ବେଶୀ ହେଉ ।"

ପିଲର୍‌ ଜବାବ ଦେଲା "ଏକଥା ମୁଁ ଅସ୍ୱୀକାର କରୁନାହିଁ । ଆଚ୍ଛା ଇଂରେଜ, ପ୍ରକୃତରେ କଅଣ ମାଟି ଚହଲିଥିଲା ?"

"ତୁ ଭୁଲିଲନି । ହଁ, ମାଟି ଚହଲିଥିଲା ।" ରବର୍ଟ ଜର୍ଡାନ୍ ଜବାବ ଦେଲେ ।

ଏପରି କଥାରେ ପିଲର୍‌ ଓ ଜର୍ଡାନ୍ ଦୁହେଁ ହସି ପକାଇଲେ । ଏହାପରେ ପିଲର୍‌ ପୁଣି କହିଲା "ଇଂରେଜ, ହେ ଇଂରେଜ, ତୁମେ ବଡ଼ ପ୍ରହସନାତ୍ମକ ହୋଇ ଉଠିଛ । ନିଜର ଗାମ୍ଭୀର୍ଯ୍ୟ ଫେରାଇ ଆଣିବା ପାଇଁ ତୁମକୁ ବହୁତ ବେଶୀ କାମ କରିବାକୁ ପଡ଼ିବ ।"

ମନେ ମନେ ରବର୍ଟ ଜର୍ଡାନ୍ ଅଧୋପାତକୁ ଯାଉ ବୋଲି କାମନା କଲେ । ତାଙ୍କର କଥାବାର୍ତ୍ତା ଚାଲିଥିଲା ବେଳେ ମେଘ ସୂର୍ଯ୍ୟଙ୍କୁ ଢାଙ୍କି ପକାଇଲା । ପାହାଡ଼ ଆଡ଼କୁ ଚାହିଁ ଦେଖିଲେ ଯେ ଆକାଶରେ ମେଘ ଘୋଟି ଆସୁଅଛି ।

ଆକାଶକୁ ଅନାଇ ଦେଇ ପିଲର୍‌ କହିଲା "ଆଜି ବରଫ ପଡ଼ିବ ।"

"ଏହି ଭଳି ଜୁନ୍ ମାସରେ ବରଫ ବର୍ଷା ହେବ ?"

"ଆଶ୍ଚର୍ଯ୍ୟ କଅଣ ? ଏଠା ପାହାଡ଼ଗୁଡ଼ା ତ ଆଉ ଋତୁର ଅପେକ୍ଷା କରି ନଥାନ୍ତି । ଆମେ ଏଠାରେ ମଇ ମାସର ଶୁକ୍ଳ ପକ୍ଷରେ ପଡ଼ିଅଛୁ ।"

'ନା, ନା, ବରଫ ବର୍ଷା ହୋଇ ନପାରେ ।' ରବର୍ଟ ଜର୍ଡ଼ାନ୍ କହିଲେ ।

'ତୁମ ଇଚ୍ଛା ଯାହା ହେଉନା କାହିଁକି, ନିର୍ଘାତ ବରଫ ବର୍ଷିବ ।'

ରବର୍ଟ ଜର୍ଡ଼ାନ୍ ମେଘାଚ୍ଛନ୍ନ ଆକାଶକୁ ଅନାଇଲେ । ସୂର୍ଯ୍ୟ ହଳଦିଆ ହୋଇ କ୍ରମେ ପୂରା ଲୁଚିଗଲେ । ସମଗ୍ର ଆକାଶମଣ୍ଡଳରେ ମେଘ ଘୋଟିଗଲା ଏବଂ ଖଣ୍ଡ ଖଣ୍ଡ ଧୂସର ମେଘ ପାହାଡ଼ର ଶିଖ ଘୋଡ଼ାଇ ଦେଲା । ସେ କହି ଉଠିଲେ 'ହଁ, ତୋ ଅନୁମାନ ଯଥାର୍ଥ ।

# ଚତୁର୍ଦ୍ଦଶ ପରିଚ୍ଛେଦ

ଗୁଡ଼ଣିରେ ପହଞ୍ଚିଲା ବେଳକୁ ରୀତିମତ ତୁଷାରପାତ ଆରମ୍ଭ ହୋଇ ଯାଇଥିଲା । ବଣର ବୃକ୍ଷ ଭିତରେ ଏ ତୁଷାର ଖଣ୍ଡମାନ ତିର୍ଯ୍ୟକ ଭାବରେ ପତିତ ହେଉଥିଲା । ପ୍ରଥମେ ଅଳ୍ପ ପରିମାଣରେ ପରେ ଥଣ୍ଡା ପବନ ବହିବାରେ ବହୁଳ ଭାବରେ ପାହାଡ଼ଆଡ଼ୁ ମାଡ଼ି ଆସୁଥିଲା । ରବର୍ଟ ଜର୍ଡ଼ାନ୍ ଗୁହା ଦୁଆରେ ରାଗିମାଗି ଠିଆ ରହି ତୁଷାରପାତ ଦେଖୁଥିଲେ ।

ପାବ୍‌ଲୋ ଆଖି ଲାଲ ଲାଲ କରି ମୋଟା ଗଳାରେ କହିଲା 'ବର୍ତ୍ତମାନ ବହୁତ ତୁଷାର ବୃଷ୍ଟି ହେବ ।' ରବର୍ଟ ଜର୍ଡ଼ାନ୍ ଗିପ୍‌ସି ଆସିଲାଣି କି ନାହିଁ ପଚାରିବାରୁ ସେ କହିଲା ଯେ ସେ କମ୍ପା ବୁଢ଼ା ଦୁହିଙ୍କ ଭିତରୁ କେହି ଆସିନାହାନ୍ତି । ଜର୍ଡ଼ାନ୍ ତାକୁ ଜଗୁଆଳୀ ଘାଟିଯାଏ ସାଙ୍ଗରେ ଯିବାକୁ ଡାକିବାରୁ ପାବ୍‌ଲୋ ସେ କାମରେ କୌଣସି ଅଂଶ ଗ୍ରହଣ କରିବାକୁ ନାସ୍ତି କଲା । ତହୁଁ ଜର୍ଡ଼ାନ୍ ଏକାକୀ ଯିବାକୁ ଉଦ୍ୟତ ହୁଅନ୍ତେ ପାବଲୋ କହିଲା 'ମୁଁ ତ ବର୍ତ୍ତମାନ ଯିବିନାହିଁ ଏବଂ ତୋଫାନରେ ତୁମେ ମଧ୍ୟ ବାଟ ପାଇବ ନାହିଁ ।'

'ଗଡ଼ାଣିର ଠିକ୍ ମୁଣ୍ଡରେ ରାସ୍ତା ଉପରେ ଏହି ଘରଟା ଅବସ୍ଥିତ ।'

'ହଁ, ତୁମେ ତାହା ପାଇ ପାରିବ କିନ୍ତୁ ତୁମର ଦୁଇ ଜଗୁଆଳୀ ବରଫଯୋଗୁ ଚାଲି ଆସିଥିବେ, ତୁମେ ତାଙ୍କୁ ବାଟରେ ଭେଟି ପାରିବ ନାହିଁ ।'

'ବୁଢ଼ା ମୋତେ ଚାହିଁ ବସିଥିବ ।'

'ନା, ତୁଷାରପାତଯୋଗୁଁ ସେ ଫେରି ଅସୁଥିବ । ଏହା କହି ପାବ୍‌ଲୋ ପ୍ରବଳ ବେଗରେ ତୁଷାର ବର୍ଷା ଗୁହା ଦୁଆରେ ଥାଇ ଦେଖିଲା ଏବଂ ତୁଷାରପାତ ଜର୍ଡ଼ାନ୍‌କୁ ଭଲ ଲାଗେ କି ନାହିଁ ପଚାରିଲା । ଜର୍ଡ଼ାନ୍ ଗୁଡ଼ାଏ ଗାଳି ଦେଇ ପାବ୍‌ଲୋର ଅସ୍ପଷ୍ଟ ଦେଖି ପାରୁଥିବା ଚକ୍ଷୁକୁ ଅନାଇ ହସି ଦେଲେ ।

ସେ କହିଲା "ଇଂରେଜ, ତୁଷାର ବୃଷ୍ଟି ତୁମର ଆକ୍ରମଣ ବନ୍ଦକଲା । ଏବେ ଗୁହା ଭିତରକୁ ଚାଲ । ତୁମ ଲୋକବାକ ମଧ୍ୟ ଏଇକ୍ଷଣି ପହଞ୍ଚିଯିବେ ।"

ଗୁହା ଭିତରେ ମେଣ୍ଟଆ ଚୁଲି ଜଳାଇବାରେ ବ୍ୟସ୍ତଥିଲା ଏବଂ ପିଲାର୍ ଖାଇବା ଟେବୁଲ ସଜାଡ଼ୁଥିଲା । ଚୁଲିରୁ ବହୁତ ଧୂଆଁ ବାହାରୁଥିବାରୁ କାଠି କୁଣ୍ଡା ଦେଇ ମେଣ୍ଟଆ ପଙ୍ଖା କରି ନିଆଁ ଜଳାଇଲା । ଚୁଲି ଜଳି ଉଠିବାରୁ ଭିତରପଟ ଆଲୋକିତ ହୋଇଗଲା ।

ରବର୍ଟ ଜର୍ଡ଼ାନ୍ ପଚାରିଲେ "ତୁମେ କଅଣ ଭାବୁଛ, ବହୁତ ତୁଷାରପାତ ଘଟିବ ?"

ପାବ୍‌ଲୋ ସନ୍ତୁଷ୍ଟ ହୋଇ କହିଲା "ହଁ, ବହୁତ ପଡ଼ିବ ।" ଏହାପରେ ପିଲାର୍‌କୁ ଡାକି କହିଲା 'ତୁ ମଧ୍ୟ ଏହା ପସନ୍ଦ କରୁନାହୁଁ । ବର୍ତ୍ତମାନ ତୁ ତ ଏଠାର କର୍ତ୍ତ୍ରୀ ଏଣୁ ତୁ ତୁଷାର ବୃଷ୍ଟିକୁ ପସନ୍ଦ କରିବୁ ନାହିଁ ।'

ପିଲାର୍ ମୁହଁ ଆଡ଼କରି ଜବାବ ଦେଲା 'ବରଫ ପଡ଼ିଲେ ପଡ଼ିବ ।'

ପାବ୍‌ଲୋ କହିଲା 'ଇଂରେଜ, କିଛି ମଦ ପିଇନଅ । ମୁଁ ତ ଦିନତମାମ ମଦ ପିଇ ପିଇ ବରଫ ବୃଷ୍ଟିକୁ ଚାହିଁ ରହିଥିଲି ।'

ରବର୍ଟ ଜର୍ଡ଼ାନ୍ କହିଲେ 'ହଉ ତେବେ ମୋତେ ବାଟିଏ ଦେ ।' ଏହାପରେ ଦୁହେଁ ମଦ ପିଆଲା ଛୁଆଁଇଲେ । ପାବ୍‌ଲୋ ତୁଷାର ପ୍ରାଚୁର୍ଯ୍ୟ କାମନା କଲା । ଜର୍ଡ଼ାନ୍ ମନେ ମନେ କହିଲେ ଇସ୍ତେ ଗୋଟାଏ କ୍ଷୀଣଦୃଷ୍ଟି ହିଂସ୍ର ଆତତାୟୀ । ମଦ ପିଆଲା ତୋ ଦାନ୍ତରେ ଠୋକର ଦେବାକୁ ମୋ ଇଚ୍ଛା କିନ୍ତୁ କରିପାରୁ ନାହିଁ । ସହିବାକୁ ପଡ଼ିବ ।

ପାବ୍‌ଲୋ କହିଲା 'ତୁଷାର ବୃଷ୍ଟି ଅତି ସୁନ୍ଦର । ତୁଷାର ବୃଷ୍ଟିବେଳେ ତୁମେ ଆଉ ବାହାରେ ଶୋଇବାକୁ ଯିବନାହିଁ ।' ରବର୍ଟ ଜର୍ଡ଼ାନ୍ ଭାବିଲେ ଲୋକଟାର ମୁଣ୍ଡରେ ଏମିତି ଚିନ୍ତା ପଶିଛି ।

ପ୍ରକାଶ୍ୟରେ କହିଲେ, "ଦେଖୁଛୁ, ତୋର ଗୁଡ଼ାଏ ଆପଦ, ନୁହେ କି ପାବ୍‌ଲୋ ?"

ସେ ଭଦ୍ରଭାବରେ ସେକଥା ଅସ୍ୱୀକାର କରି କହିଲା "ବହୁତ ଥଣ୍ଡା, ବହୁତ ଓଦା ।"

ରବର୍ଟ ଜର୍ଡ଼ାନ୍ ଭାବିଲେ ମୋର ଏହି ହଂସପକ୍ଷ ପ୍ରସ୍ତୁତ ଶଯ୍ୟା କଅଣ ପାଇଁ ଯେ ୬୫ ଡଲାର୍ ଦାମ ଇସ୍ପେ କାହୁଁ ଜାଣିବ । ଥରେ ତା ଭିତରେ ଶୋଇଲେ ଗୋଟିଏ ଡଲାର୍ ଅସୁଲ ହେବ ।

ତାପରେ ଭଦ୍ରଭାବରେ ପଗ୍ଚରିଲେ 'ମୁଁ ତେବେ ଗୁହା ଭିତରେ ଶୋଇବ ?'

ହଁ ବୋଲି ଜବାବ ପାଇ ଜର୍ଡ଼ାନ୍ ପାବ୍‌ଲୋକୁ ଧନ୍ୟବାଦ ଦେଇ କହିଲେ "ନା, ମୁଁ ବାହାରେ ଶୋଇବ ।"

"ବରଫ ବର୍ଷାରେ ପଦାରେ ଶୋଇବ ?"

"ହଁ, ହଁ, ବରଫ ବର୍ଷାବେଳେ ମଧ୍ୟ ପଦାରେ ଶୋଇବ ।" ଏହାକହି ସେ ପାବ୍‌ଲୋକୁ ନାନାପ୍ରକାର ଭର୍ତ୍ସନା କଲେ । ଏହାପରେ ଚୁଲିମୁଣ୍ଡରେ ମେଋଆ ପାଖକୁ ଗଲେ । ମେଋଆ ଆଉ ଖଣ୍ଡେ କାଠ ଚୁଲିରେ ଦେଇ ନିଆଁକୁ ତେଜୁଥିଲା । ସେ ମେଋଆକୁ କହିଲେ "ଅତି ସୁନ୍ଦର ତୁଷାର ବୃଷ୍ଟି ହେଉଅଛି ।"

ମେଋଆ ଜବାବ ଦେଲା "କିନ୍ତୁ ତୁମ କାମ ପକ୍ଷରେ ବଡ଼ ଅସୁବିଧା । ତୁମେ ବିବ୍ରତ ବୋଧ କରୁନାହଁ କି ?"

ରବର୍ଟ ଜର୍ଡ଼ାନ୍ କହିଲେ "ବିବ୍ରତ ହୋଇ ଲାଭ କଅଣ ? ରାତଖିଆ ପ୍ରସ୍ତୁତ ହେବାକୁ କେତେ ବିଳମ୍ବ ଅଛି ?"

ପିଲାର୍ କହିଲା "ମୁଁ ଭାବିଥିଲି ତୁମକୁ ବଡ଼ ଭୋକ ଲାଗିବଣି । ତୁମେ ଖଣ୍ଡେ ଛେନା ଖାଇବ କି ?" ସେ ଧନ୍ୟବାଦ ଦେଲାରୁ ପିଲାର୍ ଖଣ୍ଡେ ଛେନା କାଟି ଦେଲା । ଏଥିପାଇଁ ଶେଣୀରୁ ଝୁଲୁଥିବା ବଡ଼ ଛେନାକୁ ଆଣି ଛୁରୀ ଦ୍ୱାରା କାଟିଲା । ସେ ଠିଆ ଠିଆ ଖାଇଲେ । ଛେନାଖଣ୍ଡିକ ଟିକିଏ ମାଢ଼ିଆ ଗନ୍ଧାଉଥିବାରୁ ଉପଭୋଗ୍ୟ ହେଲି ନାହିଁ ।

ଟେବୁଲ୍ ପାଖରେ ବସି ପାବ୍‌ଲୋ ମେଋଆକୁ ତାର ଟେବୁଲ୍‌ଟା ଭଲଭାବରେ ପରିଷ୍କାର କରିବାକୁ କହିଲା । ପିଲାର୍ କହି ଉଠିଲା "ଆଗେ ତୋ ନିଜ ସଙ୍ଗୁଲି, ତୋ ମୁହଁ, ତୋ କାମିଜ ସଫା କରିପକା ପରେ ଟେବୁଲ କଥା କହିବୁ ।"

ପାବ୍‌ଲୋ ପୁଣି ଥରେ ମେରିଆକୁ ଡାକିବାରୁ ପିଲାର୍ କହି ଉଠିଲା "ସେ ଜିମାରେ ଶୁଉ୍ ଅଛି, ତା କଥା ଶୁଣନା ।"

ପାବ୍‌ଲୋ କହି ଉଠିଲା "ମେରିଆ, ବରଫ ବର୍ଷା ହେଉଛି ଏବଂ ବଡ଼ ସୁନ୍ଦର ଦିଶୁଅଛି ।"

ରବର୍ଟ ଜର୍ଡ଼ାନ୍ ଭାବିଲେ "ଏହି କପଟ ଓଲୁ ମୋ ଶୋଇବା ପୋଷାକର ମହତ୍ତ୍ୱ ଜାଣେନାହିଁ । ମୁଁ ଯେ କାହିଁକି ସେଥିପାଇଁ ଉଡ୍ କୋମ୍ପାନୀକୁ ୬୫ ଡଲାର ଦାମ ଦେଇ ସେ ଧାରଣା କରିପାରିବ ନାହିଁ । ଗିପ୍‌ସି ଏତେବେଳେ ଆସି ଯାଆନ୍ତାକି ? ଗିପ୍‌ସି ଆସିଲାକ୍ଷଣି ମୁଁ ବୁଢ଼ାର ସନ୍ଧାନରେ ବାହାରିବି । ମୁଁ ଏହିକ୍ଷଣି ଯାଆନ୍ତି କିନ୍ତୁ ଖୁବ୍ ସମ୍ଭବ ବାଟ ବଣା ହୋଇଯିବ । ସେ କେଉଁଠାରେ ଜଗିଛି ତାହା ମୁଁ ଜାଣେନା ।" ସେ ପାବ୍‌ଲୋକୁ କହିଲେ "ବରଫ ପେଣ୍ଡୁ କରି ପେଣ୍ଡୁ ଲଢ଼ାଇବ ?"

ପାବ୍‌ଲୋ ପଚାରିଲା "ତୁମେ କଅଣ କହୁଛ ?"

ରବର୍ଟ ଜର୍ଡ଼ାନ୍ କହିଲେ "କିଛି ନୁହେ, ତୁମ ଘୋଡ଼ା ଜିନ୍ ଭଲକରି ଢାଙ୍କି ଦେଇଅଛ ତ ?"

"ହଁ ।"

ରବର୍ଟ ଜର୍ଡ଼ାନ୍ କହିଲେ "ଘୋଡ଼ାକୁ ଦାନା ଖୋଇବାକୁ ଯିବ ନା ଯଦୃଚ୍ଛା ଛାଡ଼ିଦେବ ?"

ଏକଥା ଇଂରେଜୀରେ କହିବାରୁ ପାବ୍‌ଲୋ ବୁଝି ନପାରି କଅଣ ବୋଲି ପଚାରିଲା ।

ରବର୍ଟ ଜର୍ଡ଼ାନ୍ ଜବାବ ଦେଲେ "ନାହିଁ, ମୁଁ କିଛି କହୁନାହିଁ । ତୁମ ଭାବନା ତୁମର । ମୁଁ ଏଠାରୁ ଚାଲି ଯାଉଅଛି ।"

"ତୁମେ ଇଂରେଜୀରେ କାହିଁକି କହିଲ ?"

"ମୁଁ ନିଜେ ଜାଣେ ନାହିଁ । ହୁଏ ତ କ୍ଲାନ୍ତ ହୋଇ ଉଠିଲେ ବେଳେବେଳେ ମୋ ମୁହଁରୁ ଇଂରେଜୀ ବାହାରି ପଡ଼େ । କିମ୍ବା ବେଶୀ ବିରକ୍ତ ବା ବାଧାପ୍ରାପ୍ତ ହେଲେ ଇଂରେଜୀ ଭାଷା ବ୍ୟବହାର କରି ତାହାର ଶବ୍ଦ ଶୁଣେ । ଏଥିରେ କିଛି ସାନ୍ତ୍ୱନା ମଧ୍ୟ ମିଳେ । ତୁ ମଧ୍ୟ ଏହି ଭାଷା ପ୍ରୟୋଗ କରିବାକୁ ଚେଷ୍ଟା କରିବୁ ।"

ପିଲାର୍ କହିଲା 'ଇଂରେଜ, ତୁମେ ଯାହା କହିଲ ତାହା ଶ୍ରୁତି ମଧୁର କିନ୍ତୁ ମୁଁ ବୁଝି ପାରିଲି ନାହିଁ ।'

ରବର୍ଟ ଜର୍ଡାନ୍ କହିଲେ "ମୁଁ ଇଂରେଜୀ ଭାଷାରେ କିଛି କହି ନାହିଁ ବୋଲି କହିଥିଲି ।"

"ତା ହେଲେ ଆମ ସ୍ପେନ୍ ଭାଷା ବ୍ୟବହାର କର ଏହା ଯେମିତି ସଂକ୍ଷେପ, ସେମିତି ସରଳ ।"

ରବର୍ଟ ଜର୍ଡାନ୍ କହିଲେ "ନିଶ୍ଚୟ ।" କିନ୍ତୁ ଭାବିଲେ ହେ ପିଲାର୍, ହେ ପାବ୍ଲୋ, ଆଲୋ ମେରିଆ, ପିଲାର, ଆଉ ତୁମେ ଦ୍ୱିଜଦ୍ୱୟ, ତୁମ ନାମ ପାଶୋରି ଦେଇଛି, ତୁମେ, ମୁଁ, ଯୁଦ୍ଧ, ରକ୍ତପାତ, ବରଫ ପଡ଼ୁଛି, ଅନ୍ଧାର ହୋଇଅଛି, ଜିପ୍‌ସି ଓ ବୁଢ଼ା ଙ୍କୁ ଦେଖିବାକୁ ହେବ ଏମିତି ଅନେକ କଥା କହିବାକୁ ହେବ । ଏସବୁ କହି କହି ମୁଁ ଯେତେବେଳେ କ୍ଳାନ୍ତ ଅନୁଭବ କରେ ସେତେବେଳେ ପଦେ ଅଧେ ଇଂରେଜୀ କହି ପାଟି ବଦଳାଏ । "ଆଚ୍ଛା ହେଉ, ମୋତେ ଅଉ ପିଆଲାଏ ମଦ ଦିଅ ତ । ଭୀଷଣ ତୁଷାର ପଡ଼ୁଅଛି । ନୁହେଁ କି ?" ଏହି କଥା ସ୍ପେନ ଭାଷାରେ ସେ ପାବ୍‌ଲୋଙ୍କୁ କହିଲେ । ନିଶାରେ ଚୁର୍ ରହି ପାବ୍‌ଲୋ ଖାଲି ମୁଣ୍ଡ ହଲାଇ ମୃଦୁହାସ୍ୟ କରି କହିଲା "ବର୍ତ୍ତମାନ ଆକ୍ରମଣ ବନ୍ଦ, ପୋଲ ଭାଙ୍ଗିବା ବନ୍ଦ, ଖାଲି ତୁଷାର ।"

ରବର୍ଟ ଜର୍ଡାନ୍ ତା ପାଖରେ ବସି ପଡ଼ି ପଚାରିଲେ "ଏହି ତୁଷାରପାତ କଅଣ ଦୀର୍ଘ ସମୟ ପାଇଁ ଚାଲିବ ବୋଲି ତୁ ଆଶା କରୁଛୁ ? କଅଣ ସାରା ଗ୍ରୀଷ୍ମକାଳ ଆମେ ଏହି ତୁଷାରପାତ ଯୋଗୁଁ ଗୋଟିଏ ଜାଗାରେ ବସି ରହିବାକୁ ବାଧ୍ୟ ହେବୁ ?"

ପାବ୍‌ଲୋ କହିଲା "ସାରା ଗ୍ରୀଷ୍ମକାଳ ନୁହେଁ, ଆଜି ରାତି ଓ କାଲି ଦିନକ ଏହା ଚାଲିବ ।"

"ଏପରି ଭାବିବାର କାରଣ କଅଣ ?"

"ଦୁଇ ରକମର ଝଡ଼ ଅଛି । ଗୋଟାଏ ଆସେ ପିରେନିସ୍ ପର୍ବତମାଳାଆଡ଼ୁ । ଏହାଯୋଗୁ ଭୀଷଣ ଥଣ୍ଡାପଡ଼େ କିନ୍ତୁ ସେଆଡ଼ୁ ଝଡ଼ ବହିବାର ସମୟ ଆଉ ନାହିଁ ।" ପାବ୍‌ଲୋ ଭବିଚନ୍ତ୍ର ଧୀର ଭାବରେ କହିଲା ।

ରବର୍ଟ ଜର୍ଡାନ୍ କହିଲେ "ଭଲ ଯୁକ୍ତିଯୁକ୍ତ କଥା ।"

ପାବ୍‌ଲୋ କହି ଚାଲିଲା "ଅଙ୍କାରର ଝଡ଼ ଆସୁଛି କାଣ୍ଟାବ୍ରିକୋ ଆଡ଼ୁ । ଏହା ସାମୁଦ୍ରିକ । ଏହି ପବନ ଯୋଗୁଁ ଝଡ଼ ପ୍ରବଳ ହୋଇଥାଏ ଏବଂ ଅଧିକ ତୁଷାରପାତ ଘଟେ ।"

ରବର୍ଟ ଜର୍ଡାନ୍ ପଚାରିଲେ "ତୁମେ ଏହା କାହାଠାରୁ ଶିଖିଛ ଓସ୍ତାଦ୍ ?" ବର୍ତ୍ତମାନ ତାଙ୍କର ରାଗ ଥଣ୍ଡା ପଡ଼ି ଯାଇଥିଲା । ସେ ଝଡ଼ ଦେଖି ବଡ଼ ବଡ଼ ଯେପରି ଉତ୍ତେଜନା ବୋଧ କରିଥାନ୍ତି ତାହା ବୋଧ କଲେ । ତୋଫାନ, ବାତ୍ୟା, ଆକସ୍ମିକ ବୃଷ୍ଟି, ଗ୍ରୀଷ୍ମଦେଶୀୟ ଝଡ଼, କିମ୍ବା ବଜ୍ରବିଦ୍ୟୁତ ସହିତ ପାହାଡ଼ିଆ ବର୍ଷା ଦେଖିଲେ ସେ ଉତ୍ତେଜିତ ହେଉଥିଲେ । ଉତ୍ତେଜନାଟା ଠିକ୍ ରଣ ଉନ୍ମାଦନା ଭଳି ପ୍ରଖର କିନ୍ତୁ ନିଷ୍କଳୁଷ । ରଣ ଭୂମିରେ ଯେଉଁ ପବନ ପ୍ରବାହିତ ହୁଏ ତାହା ତପ୍ତ ଓ ଶୁଷ୍କ, ତୁମ କଣ୍ଠ ତାଳୁ ଶୁଷ୍କ କରିପକାଏ । ତାହା ମଧ୍ୟ ପ୍ରବଳ ଓ ପ୍ରଖର ଏବଂ ଧୂଳିମାଟି ମିଶା । ଦିନମାନର ଯୁଦ୍ଧର ପରିଣାମ ସଙ୍ଗେ ତାହା ଥମିଯାଏ । ଏପରି ଝଡ଼ ସହିତ ସେ ପରିଚିତ ।

କିନ୍ତୁ ତୁଷାର ଝଡ଼ ଏହାର ବିପରୀତ । ଏପରି ଝଡ଼ରେ ତୁମେ ପଶୁ ରାଇଜର ସମଦଶା ଭୋଗିଥାଅ । ପଶୁମାନେ କୁଆଡ଼େ ଯାଆନ୍ତି ଜାଣି ପାରନ୍ତି ନାହିଁ । କେବେ କେବେ ହରିଣମାନେ ମଣିଷ କୁଡ଼ିଆରେ ମଧ୍ୟ ପଶି ଯାଆନ୍ତି । ବରଫ ଝଡ଼ରେ ତୁମେ ଘୋଡ଼ାଚଢ଼ି ବଣ୍ୟ ଛେଳିର ଅତି ନିକଟକୁ ଗଲେ ମଧ୍ୟ ସେ ତୁମକୁ ନିଜ ଦଳିଆ ମନେକରି ଭୟରେ ପଳାଇବ ନାହିଁ ବରଂ ତୁମଆଡ଼କୁ ଆଗେଇ ଆସିବ । ବରଫ ଝଡ଼ରେ ଜନ୍ତୁ ଜାନୋୟାର ଶତ୍ରୁତା ଭୁଲି ଯାଆନ୍ତି । ପବନ ଖୁବ୍ ପ୍ରବଳ ହେଲେ ମଧ୍ୟ ନିର୍ମଳ ରହିଥାଏ । ପବନ ବନ୍ଦ ହୋଇଗଲେ ଦିଗଦିଗନ୍ତ ନିଶ୍ଚଳ, ନିଥର ଏବଂ ଗୁମ୍‌ସୁମ୍ ହୋଇଉଠେ । ଉପସ୍ଥିତ ଝଡ଼ଟା ସେହିପରି ପ୍ରବଳ ହୋଇଥିବାରୁ ସବୁ ନଷ୍ଟ କରି ପକାଇଲେ ମଧ୍ୟ ଉପଭୋଗ୍ୟ ।

ପାବ୍‌ଲୋ କହିଲା "ମୁଁ ବହୁକାଳ ଶଗଡ଼ ଚଳାଉଥିଲି । ସେତେବେଳେ ୪ ଚକିଆ ମୋଟରଗାଡ଼ି ପ୍ରଚଳନ ହୋଇ ନଥିଲା । ବଡ଼ ବଡ଼ ଶଗଡ଼ରେ ମାଲମତା ନେଇ ମୁଁ ପାହାଡ଼ ଆରପଟରେ ପହଞ୍ଚାଉଥିଲି । ସେହି ବ୍ୟବସାୟରେ ଏଠା ପାଣିପାଗର ପ୍ରକୃତ ଶିକ୍ଷା କରିଥିଲି ।"

"ତେବେ ତୁମେ ଏହି ଆନ୍ଦୋଳନରେ ପଶିଲ କିପରି ?"

ପାବ୍‌ଲୋ ଜବାବ ଦେଲା "ମୁଁ ଟିକେ ବାମପନ୍ଥୀ ଲୋକ । ଅଷ୍ଟୁରିଆର ଜନସାଧାରଣଙ୍କ ସମ୍ପର୍କରେ ମୁଁ ବେଶୀ ଆସିଥିଲି । ସେମାନଙ୍କର ରାଜନୀତିକ ବିକାଶ ଖୁବ୍ ବେଶୀ । ମୁଁ ଚିରକାଳ ସାଧାରଣତନ୍ତ୍ରର ସପକ୍ଷବାଦୀ ।"

"ଆନ୍ଦୋଳନ ପୂର୍ବରୁ କଅଣ କରୁଥିଲ ?"

"ମୁଁ ଜାରାଗୋଜାର ଜଣେ ଘୋଡ଼ା ଠିକାଦାର ପାଖରେ କାମ କରୁଥିଲି । ସେ ଷଣ୍ଢଲଢ଼େଇ ପାଇଁ ଏବଂ ସୈନ୍ୟଦଳପାଇଁ ଘୋଡ଼ା ଯୋଗାଣ ବ୍ୟବସ୍ଥା କରୁଥିଲା । ସେହି ସମୟରେ ମୋର ଦେଖାହୁଏ ପିଲାର୍ ସହିତ । ସେ ସେତେବେଳେ ଷଣ୍ଢ ଲଢୁଆଳ ଫିନିଟୋ ପାଲେନ୍ସିଅଙ୍କ ପାଖରେ ଥିଲା । ଏହାତ ସେ ନିଜେ ତୁମକୁ କହିଅଛି ।" କଆଡକ ପାବ୍ଲୋ ସଗର୍ବରେ କହିଲା ।

ଟେବୁଲ ପାଖରେ ବସିଥିବା ଭାଇ ଦୁଇଟି ମଧ୍ୟରୁ ଜଣେ କହିଲା "ଫିନିଟୋ ସେମିତ ପ୍ରଖ୍ୟାତ ଲଢୁଆଳ ନଥିଲା ।" ଏତିକି କହି ଷ୍ଟୋଭ୍ ସାମନାରେ ଠିଆ ହୋଇଥିବା ପିଲାର୍‌କୁ ଚାହିଁଲା ।

ପିଲାର୍ ବୁଲପଡ଼ି ଲୋକଟାକୁ ଅନାଇ କହିଲେ "ହଁ, ସେ ପ୍ରକୃତରେ ପ୍ରସିଦ୍ଧ ଲଢୁଆଳ ନଥିଲା ।"

ଗୁହାଭିତର ଚୁଲି ପାଖରେ ଠିଆ ହୋଇ ପିଲାର୍ ଆଖିରେ ଦିଶିଲା ସତେ ଯେପରି ସେହି ଖର୍ବକାୟ ଶ୍ୟାମଳ ପ୍ରଶାନ୍ତ, ବିଷର୍ଣ୍ଣନେତ୍ର, ଠାକରାଗାଲ, କୁଞ୍ଚିତ କେଶ ଏବଂ କପାଳରେ ଟୋପି ଦାଗଥିବା ଷଣ୍ଢ ଲଢୁଆଳ ଠିଆ ରହିଛନ୍ତି । ସମ୍ମୁଖରେ ତାଙ୍କର ସେହି ୫ ବର୍ଷିଆ ଷଣ୍ଢ । ଷଣ୍ଢଟା ନିଜ ସିଙ୍ଗରେ ଘୋଡ଼ାକୁ ଭୂଇଁରୁ ଶୂନ୍ୟକୁ ଟେକି ରଖିଛି । ଘୋଡ଼ାର ଦୀର୍ଘ ଗ୍ରୀବା ଉପରକୁ ଉତ୍ତୋଳିତ ଏବଂ ଲଢୁଆଳ ସେହି ଗ୍ରୀବାକୁ ତେଣ୍ଟା ଦେଇ ଭୂଷୁଛନ୍ତି । ଷଣ୍ଢ ଘୋଡ଼ାକୁ ଟେକି ଶୂନ୍ୟେ ଶୂନ୍ୟେ କରୁଡ଼ି ଦେଲା । ଲଢୁଆଳ ତଳେ କାଠ ବାଡ଼ଉପରେ ପଡ଼ିଗଲେ ଏବଂ ଷଣ୍ଢର ଗୋଟାଏ ଗୋଡ଼ର ଠୋକର ଖାଇଲେ । ଷଣ୍ଢ ସିଙ୍ଗଟେକି ଆହତ ଘୋଡ଼ାଟାକୁ ଚାହିଁଥାଏ । ତାକୁ ଦେଖାଗଲା ଯେ ଫିନିଟୋ ଷଣ୍ଢ ସମ୍ମୁଖରେ ଠିଆରହିଅଛି । ଖଣ୍ଡିଏ ବାଡ଼ିରେ ଲାଲବନାତ ଗୁଡ଼ାଇ ତାକୁ ଷଣ୍ଢ ଆଗରେ ଏପାଖ ସେପାଖ ବୁଲାଉଅଛି, କେବେ କେବେ ତା ମୁହଁ ଉପରେ ପକାଉ ଅଛି; ଧୀରେଧୀରେ ଷଣ୍ଢର ଚୂଳ ଉପରେ ଘଷାଇ ନେଇ ଯାଉଛି ଯେମିତିକି ଷଣ୍ଢଟା କ୍ଷିପ୍ତ ହୋଇ ମୁଣ୍ଡ ନୁଆଁଇ ଆକ୍ରମଣ କରିବ । ଫିନିଟୋ ଏକ ହାତରେ ଲାଲ ବନାତ ଓ ଅନ୍ୟ ହାତରେ ନିଜର ତରବାରୀ ଧରି ପ୍ରସ୍ତୁତ ରହିଥାଏ । ଏହାପରେ ତୀକ୍ଷ୍ଣକଣ୍ଠରେ ଚିତ୍କାର କଲା ଏବଂ କ୍ରମେ ନିଜର ସୁବିଧା ଦେଖି ଷଣ୍ଢ ବେକରେ ତରବାରୀ ଭୁଷିଦେଲା । ଷଣ୍ଢ ଭୀଷଣ ବେଗରେ ବୁଲି ପଡ଼ିବାରୁ ଫିନିଟୋ ହାତରୁ ତରବାରୀ ଖସିଗଲା କିନ୍ତୁ ତତ୍ପରତାର ସହିତ ସେ ଷଣ୍ଢ ସମ୍ମୁଖରୁ ହଟିଗଲା । ଆହତ ଷଣ୍ଢ କିଛିକାଳ ଗୁଣ ଖୁରାରେ ମାଟି ଖୋଳି କ୍ରମେ ଟଳିପଡ଼ିଲା ଏବଂ ବିଜୟୀ ଉଲ୍ଲାସ କରି

ଫିନଟୋ ଧୀରେ ଧୀରେ ଘେର ଭିତରୁ ଜନତାକୁ ଅଭିବାଦନ କରି ବାହାରି ଆସିଲା । ତାହାର ସହକାରୀ ଜଣକ ପଛେ ପଛେ ଥାଏ ।

ପିଲାର୍ ଏହି ଚଳ୍ପାକରି କହିଲା "ଫିନଟୋ ଲଢ଼ୁଆଳ ନଥିଲା । ଏମିତିକା ଅଯୋଗ୍ୟ ଷାଣ୍ଢୁଲୋକ ଗହଣରେ ମୋ ଦିନ ବର୍ତ୍ତମାନ କଟୁଅଛି ।"

ପାବ୍ଲୋ କହିଲା "ହଁ, ସେ ଭଲ ଲଢ଼ୁଆଳ ହେଲେ ବାଙ୍ଗଡ଼ା ହେବାରୁ ଅସୁବିଧାରେ ପଡ଼ିଥିଲା" ପ୍ରିମିଟିଭୋ କହିଲା "ସେ ଯକ୍ଷ୍ମାରୋଗୀ ।"

ପିଲାର୍ ପଚାରିଲା "ଯକ୍ଷ୍ମାରୋଗୀ ? ଏ ଦେଶରେ ଯକ୍ଷ୍ମାରୋଗୀ ନହେବ କିଏ ? ଯେଉଁଠି ମୁଷ୍ଟିମେୟ ଲୋକ ଭୋଜନର ଆତିଶଯ୍ୟରେ ଅଜୀର୍ଣ୍ଣରୋଗ ଭୋଗନ୍ତି ଅଥଚ ଅଧିକାଂଶ ଅଭୁକ୍ତ ବା ଅର୍ଦ୍ଧଭୁକ୍ତ ରହନ୍ତି, ଯେଉଁଠାରେ ଧନୀ କେତେ ଜଣ ରହନ୍ତି ବିଶାଳ ସୌଧରେ ଆଉ ଅଧିକାଂଶ ରହନ୍ତି ଧୂଳିମାଟି ସନ୍ତସନ୍ତିଆ ବସ୍ତିରେ, ଯେଉଁଠି ୨୪ ଜଣ ଧନୀଙ୍କ ପାଇଁ ପ୍ରଥମ ଶ୍ରେଣୀର ବିଳାସ ଖଞ୍ଜା ଆଉ ଗରିବ ରେଲ୍ ମାସୁଲ୍ ଦେଇ ନପାରି ଛେପ ଖଙ୍କାର ଧୂଳିଭରା ବେଞ୍ଚତଳେ ବସ୍ତାପରି ଲେପ୍ଟି ରହିଥାନ୍ତି, ସେଠାରେ ଯକ୍ଷ୍ମା ହେବା ବିଚିତ୍ର କଅଣ ? ମୁଠାଏ ଧାନାଚଳା ପାଇଁ ଯେଉଁଠି ଲୋକ ମାଂତଗାଳକୁ ଅଙ୍ଗଭୂଷଣ କରିଛନ୍ତି ସେଠାରେ ଯକ୍ଷ୍ମା ହେବା ସ୍ୱାଭାବିକ ।

ଫିନଟୋ ବାଙ୍ଗଡ଼ା, କଣ୍ଠସ୍ୱର ଗୁଉଁଗୁଉଁକା ଏବଂ ଭାରି ଡରକୁଳିଆ । ଷଣ୍ଢ ଲଢ଼େଇକୁ ତାର ଭାରି ଡର ହେଲେ ଘେର ଭିତରେ ପଶିଗଲେ ସେ ସମ୍ପୂର୍ଣ୍ଣ ଭୟ ଶୂନ୍ୟ । ମୁଁ ଏମିତିକା ଲୋକ ଦେଖି ନଥିଲି । ଆଚ୍ଛା ପାବ୍ଲୋ ତୁ ବର୍ତ୍ତମାନ ମରିବାକୁ ଡରୁଅଛୁ । କିନ୍ତୁ ଫିନଟୋ ସବୁବେଳେ ବଡ଼ ଡରକୁଳିଆ ଥିଲେ ମଧ୍ୟ ଲଢ଼େଇ ଘେରରେ କପରି ସିଂହ ବିକ୍ରମ ଦେଖାଇଥିଲା ଜାଣୁ ତ ?"

ଦ୍ୱିତୀୟ ଭାଇ ଜଣକ କହିଲେ "ସେ ଅଦ୍ଭୁତ ସାହସୀ ଥିଲେ । କିନ୍ତୁ ତା ପରି ଡରୁଆ ଲୋକ ମୁଁ ଦ୍ୱିତୀୟ ଦେଖି ନାହିଁ । ଷଣ୍ଢ ସଙ୍ଗେ ଲଢ଼ିବା ତ ଦୂରର କଥା ସେ ଘରେ ଷଣ୍ଢ ମୁଣ୍ଡଟା ସଜାଇ ରଖିବାକୁ ସୁଦ୍ଧା ଡରେ । ଥରେ ଭାଲଡୋଲିଡ୍-ଠାରେ ମେଳାରେ ସେ ପାବ୍ଲୋ ରୋମିରୋଙ୍କର ଷଣ୍ଢକୁ ଖୁବ୍ ଭଲ ଭାବରେ ମାରିଥିଲେ ।"

ପ୍ରଥମ ଭାଇ ଜଣକ କହି ଉଠିଲା 'ହଁ, ହଁ, ମୋ ମନେଅଛି । ମୁଁ ସେଦିନ ଦର୍ଶକ ମଞ୍ଚରେ ଥିଲି । ଷଣ୍ଢଟା ସାବୁନ ରଙ୍ଗର ବଡ଼ ସିଙ୍ଗାଳିଆ ଓ ଖୁବ୍ ବଳୁଆ ଥିଲା । ଭାଲଡୋଲିଡ୍ଠାରେ ଏହା ଥିଲା ତାଙ୍କର ଶେଷ ଷଣ୍ଢ ଲଢ଼େଇ ।'

ପିଲାର୍ କହି ଉଠିଲା "ଠିକ୍ କଥା । ପରେ କଲୋନ୍‌ର କାଫିଖାନାରେ କେତେ ଜଣ ଉଗ୍ରାତ୍ମା ଲୋକ, ଫିନକୋ ନାମରେ ନିଜ କ୍ଲବର ନାମକରଣ କରି ଜଣ୍ଡେ ଷଣ୍ଢ ମୁଣ୍ଡକାଟି କାଠପଟାରେ ଖଞ୍ଜି କାନ୍ଥରେ ଟଙ୍ଗାଇ ରଖିଥିଲେ । ସେମାନେ ମୁଣ୍ଡଟାକୁ କନା ଦେଇ ଢାଙ୍କି ରଖିଥିଲେ । ଯେମିତି ଭାବରେ ରାଜାଘରେ ଆମୋଦ ପ୍ରମୋଦବେଳେ ପୁଣ୍ୟାତ୍ମାମାନଙ୍କର ମୂର୍ତ୍ତିକୁ ଢାଙ୍କି ଦିଆଯାଇଥାଏ । ଷଣ୍ଢର ସେହି ମୁଣ୍ଡଟା ଫିନକୋକୁ ସେମାନେ ଏକ ଭୋଜି ସଭାରେ ଉପହାର ଦେଇଥିଲେ । ସେହି ଭୋଜି ସଭାରେ ପାଷ୍ଟୋରା, ନାନା ପିନସ୍, କେତେ ଜଣ ଜିପ୍‌ସି ଓ କେତେଜଣ ବେଶ୍ୟା ଉପସ୍ଥିତ ଥିଲେ । ସୁରୁଚି ସମ୍ବନ୍ଧରେ ପାଷ୍ଟୋରା ଏବଂ ଜଣେ ବେଶ୍ୟା ଯୁକ୍ତିତର୍କ କ୍ରମେ ହାତାହାତି ଅବସ୍ଥାରେ ପରିଣତ ହୋଇଥିଲା । ମୁଁ ଫିନକୋ ପାଖରେ ବସିଥିଲି । ମୋ ମନ ଖୁବ୍ ଖୁସିଥିଲା । ଦେଖିଲି ଫିନକୋ ସେ କଟା ଷଣ୍ଢ ମୁଣ୍ଡଆଡ଼କୁ ଆଦୌ ଅନାଉ ନାହିଁ ।"

ଫିନକୋ ଖିଆପିଆ ମଧ୍ୟ ସେପରି କରି ନଥିଲା କାରଣ କାରାଗୋଜାଠାରେ ଶେଷ ଲଢ଼େଇ କରିବାକୁ ଯାଇ ସେ ପେଟରେ ଆଘାତ ପାଇଥିଲା । ସେ ଜଖମର ଦାଉ ଏବଯାଏ ମଧ୍ୟ ରହିଅଛି ବୋଲି ତା ପେଟରେ ବେଶୀ ଖାଦ୍ୟ ରହିପାରେ ନାହିଁ । ବେଳେ ବେଳେ ରକ୍ତ ବାନ୍ତି କରିଥାଏ । ଭୋଜିବେଳେ କେତେଥର ଏପରି କରିଥିଲା । "ହଁ, କଅଣ କହୁଥିଲି ?"

"ଷଣ୍ଢ ମୁଣ୍ଡ ସଜାଇବା କଥା" ପ୍ରିମିଟିଭୋ କହିଲା ।

ପିଲାର୍ କହିଲା "ହଁ, ମନେ ପଡ଼ିଲା । ଅଳ୍ପ କେତେଟା କଥା କହିବା ଦରକାର । ତୁମେ ଜାଣ ଫିନକୋ କେବେ ଆମୋଦ ପ୍ରିୟ ନଥିଲା । ସେ ଗମ୍ଭୀର ପ୍ରକୃତି ଲୋକ । ମୁଁ ତାକୁ କେଭେ ହସିବାର ଦେଖି ନାହିଁ । ନକଲିଆ କଥାରେ ମଧ୍ୟ ସେ ହସେ ନାହିଁ । ସବୁକଥା ସେ ଗମ୍ଭୀର ଭାବରେ ଗ୍ରହଣ କରିଥାଏ । କିନ୍ତୁ ଏହି ଭୋଜି ସଭା ଖାସ ତାହାରି ପାଇଁ କରାଯାଇଥିଲା ଏବଂ କ୍ଲବର ନାମ ରଖାଗଲା ଫିନକୋ କ୍ଲବ । ଏପରି କ୍ଷେତ୍ରରେ ସେ ହସି ଖୁସିରେ ଆମୋଦପ୍ରମୋଦରେ ଯୋଗ ଦେବା କଥା । ସୁତରାଂ ଶିଷ୍ଟତା ଅନୁସାରେ ସେ ଟିକେ ସ୍ଫୁର୍ତ୍ତି ପ୍ରଦର୍ଶନ କଲେ ମଧ୍ୟ ରୁମାଲରେ ରକ୍ତ ବାନ୍ତି ପୋଛୁବା ମୁଁ ଭଲ କରି ଲକ୍ଷ୍ୟ କରିଥିଲି । ତାହାର ୩ ଖଣ୍ଡଯାକ ରୁମାଲ ଏହି ରକ୍ତ ବାନ୍ତିରେ ଭିଜି ଯାଇଥିଲା । ଏହାପରେ ମୋତେ ସେ ଚୁପ୍‌ଚାପ କହିଲା ଯେ ସେ ଆଉ ସହ୍ୟ କରିପାରୁ ନାହିଁ । ଚାଲିଯିବା ।"

"ମୁଁ ତାହାର ଯନ୍ତ୍ରଣା ବୁଝିପାରି କହିଲି ହଉ ତେବେ ଆସ ଚାଲିଯିବା" ସେତେବେଳେ ଅନ୍ୟମାନେ ଅତ୍ୟଧିକ ଆନନ୍ଦ କୋଳାହଳରେ ଘର ଫଟାଇ ଦେଉଥିଲେ ।

ଫିନଟୋ କହିଲି "ମୋ ନାମରେ କ୍ଲବର ନାମ ରଖାଯାଇଛି ସୁତରାଂ ମୋର ତ ମଧ୍ୟ କିଛି ବାଧ୍ୟ ବାଧକତା ରହିଛି । ମୁଁ ଗଲେ ଚଳିବ କି ?" ତୋର ଯଦି କଷ୍ଟ ହେଉଛି ତେବେ ଯିବା ଉଚିତ ବୋଲି ମୁଁ କହିବାରୁ ସେ କହିଲି ସେ ରହିବ । କେବଳ କିଛି ହାଲୁକା ମଦ ପିଇବାକୁ ଚାହିଁଲି ।

ସେ କିଛି ଖାଇନାହିଁ ଏଣୁ ଖାଲି ପେଟରେ ମଦ ପିଇବା ଭଲ ନୁହେ ବୋଲି ମୁଁ କହିଲି । ବିଶେଷତ ତା ପେଟରେ ବେମାର । କିନ୍ତୁ କିଛି ଉତ୍ତେଜକ ନପିଇ ସେହି ଆନନ୍ଦ ହଟ୍ଟଗୋଳରେ ରହିବା ତା ପକ୍ଷରେ ସମ୍ଭବ ନଥିଲି । ସୁତରାଂ ସେ ମଦ ପିଇଲି, ପ୍ରାୟ ବୋତଲେ ଖଣ୍ଡେ ଢକ୍‌ଢକ୍ ପିଇଗଲି । ରୁମାଲ ୩ ଖଣ୍ଡ ତ ଖରାପ ହୋଇ ଯାଇଥିଲି ଏଣୁ ବର୍ତ୍ତମାନ ଗାମୁଛାରେ ମୁହଁରୁ କାଶ ସହିତ ବାହାରୁଥିବା ରକ୍ତ ଝଲକା ପୋଛିବାକୁ ଲାଗିଲି ।

ବର୍ତ୍ତମାନ ଭୋଜି ଏପରି ଏକ ସ୍ତରରେ ପହଞ୍ଚି ଯାଇଥିଲି ଯେ ସଭ୍ୟମାନଙ୍କ ଭିତରୁ କେହି କେହି ଜଣେ ଜଣେ ଛୀଣାଙ୍ଗି ବେଶ୍ୟାକୁ କାନ୍ଧରେ ବସାଇ ଟେବୁଲ ଚାରିପଟେ ପରିକ୍ରମା କରିବାକୁ ଲାଗିଲେ । ପାଷ୍ଟୋରା ଗୀତ ଗାଇଲି ଏବଂ ନିନୋ ରିକାର୍ଡୋ ଗୀତାର୍ ବଜାଇଲି । ସମସ୍ତ ଜନସଂଘ ଚରମ ଉପଭୋଗ୍ୟ ଏବଂ ମାତାଲଙ୍କ ବନ୍ଧୁତ୍ୱର ଶ୍ରେଷ୍ଠତମ ଚିହ୍ନ । ଏତେ ଉତ୍ସାହ ଉଦ୍ଦୀପନା ପୂର୍ଣ୍ଣ ଭୋଜି ସଭା ମୁଁ ଆଉ କେବେ ଦେଖି ନଥିଲି । ଅଥଚ ଏତେ ବେଳଯାଏ ଉତ୍ସବର ପ୍ରଧାନ ଅଙ୍ଗ ଥିଲି ଯେଉଁ ଷଣ୍ଢ ମୁଣ୍ଡ ଉନ୍ମୋଚନ, ତାହା କରାଯାଇ ନଥାଏ ।

ମୁଁ ଗୀତ ବାଦ୍ୟର ଲାଳିତ୍ୟରେ ଏତେଦୂର ବିଭୋର ହୋଇ ପଡ଼ିଥିଲି ଯେ ଫିନଟୋ ନିଜ ଗାମୁଛାଟା ପୂରା ରକ୍ତ ପୋଛି ଖରାପ କରି ମୋ ଗାମୁଛା ନେବାରେ ଜାଣିପାରି ନଥିଲି । ମୁଁ ଘନ ଘନ କରତାଳି ଦେଇ ଗାୟକ ଓ ବାଦକଙ୍କୁ ସମ୍ବର୍ଦ୍ଧନା ଜଣାଉଥିଲି । ଫିନଟୋ ଅଧିକ ମଦ ପିଇ ଲାଲଆଖିରେ ଟଳମଟଳ ହୋଇ ଆନନ୍ଦରେ ସମସ୍ତଙ୍କୁ ଚାହିଁଥାଏ । ସେ କଥାବାର୍ତ୍ତା ବେଶୀ କରୁ ନଥାଏ କାରଣ ତଦ୍ୱାରା ଅଧିକ ରକ୍ତ ବାନ୍ତି ଘଟିବ କିନ୍ତୁ ସେ ଯେ ଏହି ଉଲ୍ଲାସରେ ପୂର୍ଣ୍ଣମାତ୍ରାରେ ଯୋଗ ଦେଇଅଛି ଏକଥା ଧରା ପଡ଼ି ଯାଉଥାଏ ।

ଏମିତି ଭାବରେ ଭୋଜି ଚାଲିଥିଲି । ମୋ ପାଖରେ ଯେଉଁ ଲୋକଟି ବସିଥିଲି ସେ ହେଉଛି ରାଫେଲ୍ ଗାଲୋଙ୍କର ପୂର୍ବତନ ମେନେଜର । ସେ ମୋତେ ଗୋଟିଏ କାହାଣୀ କହୁଥିଲେ । କାହାଣୀର ଶେଷାଂଶ ହେଲା "ରାଫେଲ୍ ମୋ ପାଖକୁ ଆସି କହିଲେ ତୁମେ ହେଉଛ ମୋର ଦୁନିଆରେ ଶ୍ରେଷ୍ଠତମ ଏବଂ ମହତ୍ତମ ବନ୍ଧୁ । ମୁଁ

ତୁମକୁ ନିଜର ମହୋଦର ଭଳି ସ୍ନେହ କରେ । ମୁଁ ତୁମକୁ ଗୋଟିଏ ଉପହାର ଦେବ ।" ଏହାକହି ସେ ମୋତେ ଗୋଟିଏ ସାରାବସା ଗୃଦର କଣ୍ଠା ଦେଇ ମୋ ଦୁଇ ଗାଲରେ ଚୁମା ଖାଇଲେ । ଆମେ ଦୁହେଁ ଅଭିଭୂତ ହୋଇଗଲୁଁ । ଏହା ପରେ ରାଫେଲ୍ ହୋଟେଲରୁ ବାହାର ଗଲେ । ଟେବୁଲ୍ ପାଖରେ ବସିଥିଲେ ରେନାଟା ।

ମୁଁ ତାଙ୍କୁ କହିଲି "ସେହି ଅବଜିଆ ଗିପ୍‌ସି ଆଉ ଜଣେ ମେନେଜର ସଙ୍ଗରେ ଚୁକ୍ତିନାମା ଦସ୍ତଖତ କରିଅଛୁ ।" ରେନାଟା ମୋ କଥାର ଅର୍ଥ ଜାଣି ପଗ୍ଦରିଲା ।

ଗାଲୋର୍ ମେନେଜର କହିଲେ "ମୁଁ ସେ ଲୋକଟା ପାଖରେ ୧୦ ବର୍ଷ ମେନେଜର କରିଅଛୁ କିନ୍ତୁ ସେ ମୋତେ କେବେ କିଛି ଉପହାର ଦେଇ ନାହାନ୍ତି ।" କଥାର ଅର୍ଥ ଏହାହିଁ ଧରିବାକୁ ହେବ । ଏହାହିଁ ପ୍ରକୃତ କଥା ଏବଂ ଏହି କାରଣରୁ ଗାଲୋ ତାଙ୍କ କାମ ଛାଡ଼ିଦେଇ ଅଛି ।

ଏତକବେଳେ ପାଷ୍ଟୋରା କଥାବାର୍ତ୍ତାରେ ଯୋଗ ଦେଲେ । ସେ ରାଫେଲ୍ ନିନ୍ଦାର ନିନ୍ଦାବାଦ କଲେ । ଯୋଗ ଦେଇ ନଥିଲେ ଯେହେତୁ ସେ ନିଜେ ରାଫେଲ୍‌ର ବେଶୀ କୃତ୍ସା ପ୍ରକାଶ କରୁଥିଲେ । କିନ୍ତୁ ମେନେଜର ଗିପ୍‌ସିମାନଙ୍କୁ ନିନ୍ଦା କରି କହିବାରୁ ସେ ପ୍ରତିବାଦ କରିଥିଲେ । ସେ ଏପରି ଜୋର୍ ଦେଇ ଏପରି ଶବ୍ଦ ସବୁ ଉଚ୍ଚାରଣ କଲେ ଯେ ମେନେଜରଙ୍କ ମୁହଁ ବନ୍ଦ ହୋଇଗଲା । ମୁଁ ପାଷ୍ଟୋରାଙ୍କୁ ଥମାଇବା ପାଇଁ ବାହାରିଲି । ଆଉ ଗୋଟାଏ ସଙ୍ଗୀତ ମଧ୍ୟ ଆରମ୍ଭ ହୋଇଗଲା । ଘର ଭିତରେ ଏତେ ବେଶୀ ହଟ୍ଟଗୋଳ ଉଠିଲା ଯେ କେହି କାହାର କଥା ଶୁଣି ପାରିଲେ ନାହିଁ । କେବଳ ମାତ୍ର ବେଶ୍ୟା ଶବ୍ଦଟା ସବୁକୁ ଟପି ଶୁଣା ଯାଉଥିଲା । ଶେଷକୁ ସବୁ ଶାନ୍ତ ହେଲାରୁ ଆମେ ୩ ଜଣ ଆମର ମଦ ଗିଲାସକୁ ଗୃହିଁ ବସି ରହିଲୁ । ସେତେବେଳେ ଦେଖିଲି ଫିନଟୋ ସେହି ଆବୃତ୍ତ ଫଣ୍ଟ ମୁଣ୍ଡକୁ ଛୁନିଆ ହୋଇ ଗୃହିଁ ଅଛି । ମୁଣ୍ଡ ଉନ୍ମୋଚନ ପୂର୍ବରୁ ସଭାପତି ନିଜର ଭାଷଣ ଆରମ୍ଭ କଲେ । ସମସ୍ତେ ତାଳିମାରି କମ୍ବା ଟେବୁଲ୍ ପିଟି ତାଙ୍କ ଭାଷଣକୁ ସମ୍ବର୍ଦ୍ଧନା ଜଣାଇଲେ । ମୁଁ ଦେଖିଲି ଫିନଟୋ ମୋ ଗାମୁଛାରେ ରକ୍ତ ପୋଛିବାରେ ଲାଗିଛି ଏବଂ କ୍ରମେ ଚଉକି ଭିତରେ ଗୁନ୍ଥି ହୋଇ ଯାଉଛି । ତଥାପି ଖିନ୍ନ ଏବଂ ମୁଗ୍‌ଧ ଦୃଷ୍ଟିରେ କନାଡଙ୍କା ମୁଣ୍ଡଟାଆଡ଼େ ଆଖି ରଖିଛି । ଭାଷଣ ଶେଷବେଳକୁ ଫିନଟୋ ମୁଣ୍ଡ ହଲାଇବା ଆରମ୍ଭ କରି ଚଉକି ଉପରେ ଅଧିକ ଲେପ୍‌ଟିଗଲା ।

ମୁଁ ପଗ୍ଦରିଲି "କେମିତି ବୋଧ କରୁଛ ବାବୁ ।" ସେ ମୋ ଆଡ଼କୁ ଅନାଇ ମୋତେ ଚିହ୍ନି ପାରିଲି ନାହିଁ । ଖାଲି ମୁଣ୍ଡ ହଲାଇ ନାହିଁ ନାହିଁ କହିଲା ।

ସଭାପତି ତାଙ୍କ ଭାଷଣ ଶେଷକରି ମେଜ ଉପରେ ଠିଆ ହୋଇ ମୁଣ୍ଡ ଉଙ୍କା କନାକୁ ଟାଣିଦେଲେ । କନା ଖଣ୍ଡ ଆସି ଗୋଟାଏ ସିଙ୍ଗରେ ଅଟକି ଯିବାରୁ ସେ ତାକୁ ଠିକେ ଫିଟାଇଲେ । ଷଣ୍ଢର ସିଙ୍ଗ ଖୁବ୍ ଚକ୍‌ଚକ୍ କରୁଥାଏ । ସିଙ୍ଗ ଅଗରେ ଝିଙ୍ଗପକ୍ଷୀର ଧଳା ଖିଲ ବସିଥାଏ । ଆଖି ଦୁଇଟା ଦାଉ ଦାଉ ହେଉଥାଏ । ମୁଣ୍ଡଟା ଜୀବନ୍ତ, ନାସାପୁଡ଼ା ଖୋଲା । ଷଣ୍ଢ ସତେ ଯେମିତି ତରୀହି ଗୃହିଁଅଛୁ ଫିନଟୋକୁ ।

ଭୋଜି ସଭାରେ ସମସ୍ତେ ହର୍ଷଧ୍ୱନି ଓ ପ୍ରଶଂସା କରିବାକୁ ଲାଗିଲେ । ଫିନଟୋ ଆହୁରି ବେଶୀ ଚଉକରେ ଲାଖିଗଲା । ଏହାପରେ ସମସ୍ତେ ଶାନ୍ତ ହୋଇ ତା ଆଡ଼କୁ ଅନାଇଲେ । ସେ କେବଳ ଷଣ୍ଢ ମୁଣ୍ଡକୁ ଗୃହିଁ ନାହିଁ ନାହିଁ କରି ଥରେ ବଡ଼ ପାଟିକଲା ଏବଂ ତା ମୁହଁରୁ ଝଲକାଏ ରକ୍ତ ବାହାରି ପଡ଼ିଲା । ଏହାକୁ ସେ ଗାମୁଛାରେ ପୋଛିବାକୁ ଚେଷ୍ଟାକଲା ନାହିଁ । ସେ କହିଲା ଅଠକାଳ ବାରମାସୀ ମୁଁ ପ୍ରସ୍ତୁତ । ଟଙ୍କା ରୋଜଗାର କରିବା ଦରକାର । ଖାଇବା ପିଇବା ଦରକାର ମାଣ ମୋ ପେଟର ବଥଯୋଗୁଁ ମୁଁ ଖାଇ ପାରିବ ନାହିଁ । ବର୍ତ୍ତମାନ ତ ମୌସମ ଶେଷ ହୋଇଗଲା । ଏହାକହି ସେ ଷଣ୍ଢ ମୁଣ୍ଡକୁ ଗୃହିଁ ଗୃହିଁ ମୁଣ୍ଡ ନୁଆଁଇଲେ ଏବଂ ଗାମୁଛା ଖଣ୍ଡିକ ମୁହଁରେ ଲଗାଇଲେ । ଏହାପରେ ଆନନ୍ଦ ଉଲ୍ଲାସରେ ଭୋଜି ସଭା ଆରମ୍ଭ ହେଲେହେଁ ନବାକ୍ ଭାବରେ ବଫଳ ହୋଇଗଲା ।

ପ୍ରିମିଟିଭୋ ପଚାରିଲା "ଏ ଘଟଣାର ନେତୋଦନ ପରେ ତାଙ୍କର ମୃତ୍ୟୁ ହେଲା ?"

ପିଲାର୍ କହିଲା "କାମ୍ପୋଗୋଜାଠାରେ ପାଇଥିବା ଶେଷ ଆଘାତରୁ ସେ ଆଉ ଭଲ ହେଲା ନାହିଁ । ସେହି ଶୀତକାଳରେ ସେ ମଲା । ଦେହ ଫାଡ଼ି ହେବା ଅପେକ୍ଷା ଦେହ ଭିତର ଆଘାତ ଅଧିକ ଭୟାବହ ଏବଂ ଅନାରୋଗ୍ୟ । ସେ ଯେତେଥର ଷଣ୍ଢ ଲଢ଼େଇକୁ ଗଲା ପ୍ରତିଥର ଗୋଟାଏ ଆଘାତ ପାଇଥିଲା । ଏଥିପାଇଁ ଷଣ୍ଢ ଲଢୁଆଳ ଭାବରେ ସେ ସଫଳତା ହାସଲ କରି ନଥିଲା । ବାଙ୍ଗଡ଼ା ଥିବାରୁ ଷଣ୍ଢ ସିଙ୍ଗରୁ ଖସି ଆସିବା ତା ପକ୍ଷରେ ଦୁଃସାଧ୍ୟ ଥିଲା । ପ୍ରାୟ ପ୍ରତିଥର ତା କଙ୍କାଳରେ ଷଣ୍ଢ ସିଙ୍ଗ ଗେଞ୍ଜ ହୋଇ ଯାଇଥିଲା କିନ୍ତୁ ସବୁ ଆଘାତ ମାରାତ୍ମକ ନଥିଲା ।"

ପ୍ରିମିଟିଭୋ କହିଲା ତାଙ୍କପରି ବାଙ୍ଗଡ଼ା ଲୋକ ଷଣ୍ଢ ଲଢୁଆଳ ହେବା ଉଚିତ ନଥିଲା । ପିଲାର୍, ରବର୍ଟ ଜର୍ଡାନଙ୍କୁ ଗୃହିଁ ମୁଣ୍ଡ ହଲାଇ ଲୁହା କଡ଼େଇ ଉପରେ ନଇଁ ପଡ଼ିଲା । ଏହି ସ୍ପେନ ଦେଶୀୟମାନେ କିଜାଣି କି ଜାତିର ଲୋକ ।

ବାଙ୍ଗଡ଼ା ହୋଇ ସେ କାହିଁକି ଷଣ୍ଢ ଲଢ଼େଇରେ ମିଶିଲା । ଏକଥା ମୁଁ ବହୁବାର ଶୁଣିଲଣି । କହିବାର ତ କିଛି ନାହିଁ ଏଣୁ କେବଳ ଘଣ୍ଟଣାଟା ବୁଝାଇ ଚୁପ୍ ରହିଯାଏ । ନଜାଣିଲା ଲୋକ ପକ୍ଷରେ ପ୍ରଶ୍ନ କରିବା ବଡ଼ ସହଜ । କିଛି ନଜାଣି ମନ୍ତବ୍ୟ କରିବା ବେହିଜ କଥା । କିଏ କହୁଛି ପକ୍ଷୀ, କିଏ କହୁଛି ବାଙ୍ଗଡ଼ା । ଏମିତି ନାନା ଟିକା ଟିପ୍ପଣୀ ।

ବର୍ତ୍ତମାନ ଚୁଲ୍ଲୀ ଉପରେ ଝୁଙ୍କି ପଡ଼ି ସେ କଳ୍ପନା ଚକ୍ଷୁରେ ଦେଖିଲେ ବିଛଣା ଉପରେ ଉଲଗ୍ନ ଦେହରେ ଫିନଟୋ ଶୋଇ ରହିଅଛି । ଦୁଇଜଙ୍ଘ ତାହାର ଫାଟି ଦଫାଳ । ଡାହାଣ ପାଖ କଙ୍କାଳ ଉପରେ ଏକ ଗଭୀର ଗୋଲ୍‌କାର କ୍ଷତ । କାଖ ତଳଯାଏ ବ୍ୟାଣ୍ଡେଜ ଭିଡ଼ା । ମୁଖ ଗମ୍ଭୀର, ଚକ୍ଷୁ ମୁଦ୍ରିତ, କୁଞ୍ଚିତ କେଶ କପାଳ ଉପରେ ଅବିନ୍ୟସ୍ତ । ସେ ବିଛଣାରେ ବସି ତାଙ୍କ ଗୋଡ଼ ଅଉଁସୁଅଛି ଏବଂ ପେଶି ଓ ଶିରାସବୁକୁ ମୃଦୁ ସଞ୍ଚାଳନ କରୁ କରୁ ପଚାରୁଛି 'କେମିତି ଅଛ ?'

'ଖୁବ୍ ଭଲ ପିଲର ।'

'ଗୋଡ ଅଉଁସିଦେବି ?'

'ନା, ପିଲାର୍ ହାତ ଦଅ ନାହିଁ ।'

'ଜଙ୍ଘ ପାଖ ?'

'ନା ହାତ ଦେଲେ ବଡ଼ କାଟିବ ।'

'ଔଷଧ ମାଲିସକଲେ ଭଲ ଲାଗିବ ?'

'ନା କିଛି କର ନାହିଁ ।'

'ଧୋଇ ପୋଛି ଦେବ ?'

'ଖୁବ୍ ଆସ୍ତେ ଆସ୍ତେ କର ।'

'ତୁମେ ଶେଷ ଷଣ୍ଢ ଲଢ଼େଇରେ ଚମତ୍କାର ଲଢ଼ିଥିଲ ।'

'ହଁ ମୁଁ ତାକୁ ଭଲଭାବରେ ମାରିଥିଲି ।'

ଏହାପରେ ତାକୁ ଧୋଇ ପୋଛି ଗୁଦର ଘୋଡ଼ାଇ ସେ ତା ପାଖରେ ଶୋଇଗଲା । ସେ ଗୋଟିଏ ହାତ ବଢ଼ାଇ ପିଲର୍‌କୁ ସ୍ପର୍ଶ କଲା । ସେ ପିଲର୍‌କୁ ପଦେ

ଆଦରର କଥା ମଧ୍ୟ କହିଲା । ଏହା ପରେ ସେ ଶୋଇ ପଡ଼ିଲା । ପିଲାର୍ ତାଙ୍କ ହାତ ଦୁଇଟି ଧରି ଥାଏ ।

ନିଦ ବାଉଳାରେ ସେ ବେଳେ ବେଳେ ଭୟରେ ଚମକି ପଡ଼ି ପିଲାର୍ ହାତକୁ ମୁଠାଇ ପକାଉଥିଲା । ଏମିତି ଭାବରେ ପିଲାର୍ ତାଙ୍କ ସହିତ ୫ ବର୍ଷ କଟାଇ ଅଛି, ଏବଂ କେବେହେଲେ ଅନ୍ୟ ପ୍ରତି ଆସକ୍ତି ପ୍ରକାଶ କରି ନାହିଁ । ଏହାପରେ ଫିନିଟୋ ମଲରୁ ଅନ୍ତ୍ୟେଷ୍ଟି କ୍ରିୟା ଶେଷକରି ପିଲାର୍ ପାବ୍‌ଲୋ ସହିତ ରହିଲା । ପାବ୍‌ଲୋ ସେତେବେଳେ ଷଣ୍ଢ ଲଢ଼େଇରେ ଅଶ୍ୱାରୋହୀ ଲଢୁଆଳ ପାଇଁ ଘୋଡ଼ା ଯୋଗାଉ ଥିଲା । କିନ୍ତୁ ପୂର୍ବର ସେହି ସାହସ ଓ ବିକ୍ରମ ତାହାର ଲୋପ ପାଇ ଯାଇଥାଏ । ଅବଶିଷ୍ଟ ରହିଛି ପିଲାର୍ ନିଜେ ।

ପିଲାର୍ ମେରିଆକୁ ଡାକି ସାବଧାନ କରାଇ ଦେଲା । ନିଆଁ ରେ ସାବଧାନ ହୋଇ ରନ୍ଧାବଢ଼ା ନକଲେ ବସ୍ତି ଜଳିଯିବ ।

ଠିକ୍ ଏତିକିବେଳେ ଜିପ୍‌ସି ଆସି ପହଞ୍ଚିଲା । ସର୍ବାଙ୍ଗ ତାହାର ବରଫ । ସେ ଦୁଆରମୁହଁରେ ଠିଆହୋଇ ବନ୍ଧୁକ ଉପରୁ ବରଫ ଝାଡ଼ି ଦେଲା । ରବର୍ଟ ଜର୍ଡାନ୍ ଦୁଆର ମୁହଁକୁ ଉଠିଯାଇ ତାକୁ ଖବର ପଚାରିଲେ । ଜିପ୍‌ସି କହିଲା "୬ ଘଣ୍ଟିଆ ପହରା, ଦୁଇଜଣ ଲେଖାଁ । ପୋଲ୍ ଉପରେ ବୁଲୁଛି । ୮ ଜଣ ମଣିଷ ଓ ଜମାଦାର ରାସ୍ତା ମରାମତି କଲାବାଲା କୁଡ଼ିଆ ଘରେ । ହେଇ ନିଅ ତୁମ ଘଣ୍ଟା ।"

'କରତି କଲ କଥା କଅଣ ?'

'ବୁଢ଼ା ସେଠାରେ ଅଛି । ସେ ରାସ୍ତା ଓ କଲ ଦୁଇଟାକୁ ନଜର ରଖିବ ।'

'ରାସ୍ତାରେ କଅଣ ଚଳାଚଳ ?'

'ସବୁଦିନପରି ସମାନ, ଅସାଧାରଣ କିଛିନାହିଁ । କେତେଗୁଡ଼ା ମୋଟର ଗାଡ଼ି ।'

ଜିପ୍‌ସି ଥଣ୍ଡାରେ ଥରୁଥାଏ । ତା ମୁହଁ ଓ ହାତ ଶେତା ପଡ଼ି ଯାଇଥାଏ । ସେ ଗୁହା ଦୁଆରେ ଠିଆହୋଇ କୁର୍ତ୍ତା ଫିଟାଇ ବରଫ ଝାଡ଼ିଲା । କହିଲା 'ପହରା ବଦଳିବା ଯାଏ ମୁଁ ସେଠାରେ ଥିଲି । ଦିନ ୧୨ଟା ଓ ସନ୍ଧ୍ୟା ୬ଟା ବେଳେ ପହରା

ବଦଳେ । ପହର୍ ସମସ୍ତ ବଂଡ଼ ଦୀର୍ଘ । ଭାଗ୍ୟକୁ ତାଙ୍କ ସୈନ୍ୟ ଦଳରେ ମୁଁ ନାହିଁ ।’

ରବର୍ଟ ଜର୍ଡାନ୍ ନିଜର ଚମଡ଼ା କୋଟ୍ ପିନ୍ଧିନେଇ କହିଲେ ‘ଗ୍ଲଲ ବୁଢ଼ା ପାଖକୁ ଯିବା ।’

ଗିପ୍‌ସି କହିଲା“ମୁଁ ଝିକିଏ ନିଆଁ ନ ପୁଇଁଲେ କିମ୍ବା ଝୋଲ ନ ଖାଇଲେ ଏଠାରୁ ହଲିବ ନାହିଁ । ମୁଁ ଏହାଙ୍କ ଭିତରୁ ଜଣେ କାହାକୁ କହି ଦେଉଛି ସେ କେଉଁଠାରେ ଅଛି । ସେ ତୁମକୁ ବାଟ କଢ଼ାଇ ନେବ ।’ ଏହା କହି ଟେବୁଲ୍ ପାଖରେ ବସିଥିବା ଲୋକଙ୍କୁ ଡାକି ପଚାରିଲା “ତୁମ ଭିତରୁ କିଏ ଇଂରେଜକୁ ବୁଢ଼ା ପାଖକୁ ବାଟ ଦେଖାଇ ନେଇଯିବ ?”

ଫର୍ଣ୍ଣାଣ୍ଡୋ ଟିଆହୋଇପଡ଼ି କହିଲା “ମୁଁ ଯିବି । ସେ ଜାଗାଟା କେଉଁଠି ମୋତେ କହିଦିଅ ।” ଗିପ୍‌ସି ତାକୁ ଘାର ଟାଣି ଆନ୍‌ସେଲ୍‌ମୋ ଥିବା ସ୍ଥାନ ନିର୍ଦ୍ଦେଶ କରିଦେଲା ।

# ପଞ୍ଚଦଶ ପରିଚ୍ଛେଦ

ଗୋଟିଏ ବଡ଼ ଗଛର ଗଣ୍ଡିରେ ଆନ୍‌ସେଲ୍‌ମୋ କୁଙ୍କୁଡ଼ି କାଙ୍କଡ଼ି ହୋଇ ବସିଥାଏ । ତା ଦୁଇ ପାଖରେ ବରଫ ବର୍ଷା ଚାଲିଥାଏ । ସେ ଗଛ ଦେହରେ ଲେପଟି ହୋଇ ରହି ଦୁଇ ହାତକୁ କୁରୁତା ଅସ୍ତିନ ଭିତରେ ପୂରାଇ ଦେଇଥାଏ । ମୁଣ୍ଡଟା ଢାଙ୍କିବାକୁ କୁରୁତାକୁ ଯଥାସମ୍ଭବ ଉପରକୁ ଉଠାଇ ଦେଇଥାଏ । ସେ ଭାବିଲା, ସେଠାରେ ବେଶୀବେଳ ରହିଲେ ଅଣ୍ଟାରେ ପଥର ପାଲଟିଯିବ । ସେଥିରେ କାହାର ଲାଭ ହେବ ନାହିଁ । ଇଂରେଜ ମୋତେ ଏଠାରେ ଅନ୍ୟ ଲୋକ ନ ଆସିବାଯାଏ ରହିବାକୁ କହିଥିଲା ମାତ୍ର ସେତେବେଳେ ତ ଏହି ଝଡ଼ର କଥା ଜଣା ନଥିଲା ! ରାସ୍ତାରେ ବିଶେଷ ଗତିବିଧି ତ ଦେଖା ଯାଉନାହିଁ । କରତକଲ ପାଖ ଘାଟିକଥା ସବୁ ମୋତେ ଜଣା । ବର୍ତ୍ତମାନ ମୋର ଗୁମ୍ଫାକୁ ଫେରିଯିବା ଉଚିତ । ସାଧାରଣ ବୁଦ୍ଧି ସମ୍ପନ୍ନ ପ୍ରତ୍ୟେକ ଲୋକ ମୋ ଫେରିବା ଆଶା କରୁଥିବେ । ମୁଁ ଆଉ ଅଳ୍ପ ଅପେକ୍ଷା କରି ଫେରିଯିବି । ସବୁ ଦୋଷ ଏହି କଡ଼ାକଡ଼ି ଆଦେଶଲିପିର । ଅବସ୍ଥାର ପରିବର୍ତ୍ତନରେ କଅଣ କରିବାକୁ ହେବ ସେ କଥା କିଛି ନାହିଁ । ସେ ନିଜ ଗୋଡ଼ ହାତକୁ ରକ୍ତ ଚଳାଚଳ ପାଇଁ ଘଷିଲା । ଗଛ ଡାଳର ଉହାଡ଼ରେ ଅଣ୍ଟା କିଛି ଉଣା ଥିଲା । ଏବେ ତ ସେ ପୁଣି ଚାଲି ଚାଲି ଯିବାକୁ ବାଧ୍ୟ ।

ନିଜ ଅଣ୍ଟା ପାଦ ଘଷୁଥିବା ବେଳେ ରାସ୍ତାରେ ମୋଟର ଗାଡ଼ିର ଆବାଜ ଶୁଣି ପାରିଲା । ଗାଡ଼ିଟାର ରଙ୍ଗ ସାଗୁଆ ଓ ମାଟିଆ । ରଙ୍ଗ ବଦଳିଆ ଭାବରେ ବୋଳା । ଗାଡ଼ିର ଜଞ୍ଜିରର ଗୋଟାଏ ଦାନ୍ତ ଖଟ୍ ଖଟ୍ ଶବ୍ଦ କରୁଥାଏ । ବରଫାବୃତ ରାସ୍ତା-ଦେଇ ଗାଡ଼ିଟା ଚାଲିଥାଏ । ଝିଡ଼କି କାଚ ଗୁଡ଼ାକ ନୀଳ ରଙ୍ଗର ବୋଳି ଭିତରପଟ

ଦେଖାଯାଉ ନଥାଏ । କାଚରେ ସାନ ଅର୍ଦ୍ଧବୃତ୍ତ ରଙ୍ଗଶୂନ୍ୟ । ତାହାର ଭିତରେ ବ ଲୋକେ ବାହାର ଦୃଶ୍ୟ ଦେଖି ପାରନ୍ତି । ଗାଡ଼ିଖଣ୍ଡି ଦୁଇବର୍ଷର ପୁରୁଣା ପୌର ସହରର ଗାଡ଼ି । ରୋଲସ୍‌ ରଏସ୍‌ ଶ୍ରେଣୀର କିନ୍ତୁ ଏହାକୁ ବେରଙ୍ଗ କରି ସାମରିକ କାମରେ ବ୍ୟବହାର କରାଯାଉଅଛି । ଏ କଥା ଆନ୍‌ସେଲ୍‌ମୋ ଜାଣି ନଥିଲା । ଗାଡ଼ି ଭିତରେ ୩ ଜଣ ହାକିମ ଟୋପିରେ କାନ ଢାଙ୍କି ବସିଥିଲେ କିନ୍ତୁ ବାହାରକୁ ଦିଶୁ ନଥିଲେ । ଦୁଇଜଣ ପଛ ଆସନରେ ଏବଂ ଜଣେ ଭଙ୍ଗା ଆସନରେ ବସିଥିଲେ । ଭଙ୍ଗା ଆସନରେ ଥିବା ହାକିମ ଜଣକ ଧଳା କାଚ ବାଟେ ବାହାରକୁ ଚାହିଁଥିଲେ, ମାତ୍ର କେହି କାହାକୁ ଦେଖିପାରି ନଥିଲେ ।

ଠିକ୍ ତା ତଳଦେଇ ଗାଡ଼ି ଚାଲିଗଲା । ଆନ୍‌ସେଲ୍‌ମୋ ଗାଡ଼ିର ଚାଳକକୁ ପରିଷ୍କାର ଦେଖି ପାରିଲା । ସେ ମୁଣ୍ଡରେ ଇସ୍ପାତର ଶିରସ୍ତ୍ରାଣ ପିନ୍ଧିଥାଏ । ଏହା କମ୍ବଳ ଟୋପିକୁ ଟେକି ଦେଖାଯାଉଥାଏ । ଚାଳକ ପାଖରେ ଲମ୍ବା ବନ୍ଧୁକ ଧରି ଜଣେ ଅର୍ଦ୍ଦଳୀ ବସିଥିଲା । ଗାଡ଼ି ଚାଲିଗଲା ପରେ ଆନ୍‌ସେଲ୍‌ମୋ ନିଜ ପକେଟରୁ ରବର୍ଟ ଜର୍ଡାନ୍‌ଙ୍କ ଚିପା କାଗଜ ଦୁଇଖଣ୍ଡ ବାହାର କରି ମୋଟରଗାଡ଼ି ଚିହ୍ନିତ ଜାଗାରେ ଦାଗ ଦେଲା । ସେଦିନ ସେହି ରାସ୍ତାରେ ଏଇଟା ହେଉଛି ୧୦ମ ଗାଡ଼ି । ୬ଟା ଗାଡ଼ି ଫେରି ଆସିଲେଣି ୪ଟା ଉପର ମୁଣ୍ଡରେ ରହିଛି । ସେହି ରାସ୍ତାରେ ୧୦ଖଣ୍ଡ ମୋଟର ଯିବା କିଛି ଅ ।ସ୍ୱାଭାବିକ ଘଟଣା ନୁହେ କିନ୍ତୁ ଗାଡ଼ିଗୁଡ଼ିକ କେଉଁ କେଉଁ କୋମ୍ପାନୀର ସେକଥା ଆନ୍‌ସେଲ୍‌ମୋକୁ ଅଜ୍ଞାନ । କେଉଁ ଗାଡ଼ି ଜେନେରାଲ୍‌ର ଆଉ କେଉଁ ଗାଡ଼ି ସାମରିକ ଦପ୍ତରର ତାହା ସେ ଜାଣିନାହିଁ । ରବର୍ଟ ଜର୍ଡାନ୍ ନିଜେ ଥିଲେ ଏ ସବୁକଥା ଜାଣିପାରି ତହିଁର ତାତ୍ପର୍ଯ୍ୟ ବୁଝିଥାନ୍ତେ । କିନ୍ତୁ ବୁଢ଼ା କେବଳି ମୋଟର ଚିହ୍ନ କାଗଜରେ ଚିପିବା ଛଡ଼ା ଆଉ କିଛି କରିପାରି ନଥିଲା ।

ଆନ୍‌ସେଲ୍‌ମୋ ଏତେ ବେଶୀ ଥଣ୍ଡା ବୋଧକଲା ଯେ ଅନ୍ଧାର ପୂର୍ବରୁ ଗୁମ୍ଫାକୁ ଫେରିଯିବା ସିଦ୍ଧାନ୍ତ କରି ପକାଇଲା । ରାସ୍ତା ଭୁଲିବା ପାଇଁ ତାହାର ଭୟ ନଥିଲା ମାତ୍ର ଥଣ୍ଡାଟା ଏତେ ବେଶୀ ଏବଂ ତୁଷାର ପଡ଼ିବାର ସମ୍ଭାବନା ନଥିବାରୁ ସେ ସେଠାରେ ରହିବା ନିରର୍ଥକ ମନେକଲା । ସେ ଠିଆହୋଇ ମାଟିରେ ଗୋଡ଼ ପିଟି ତୁଷାର ବୃଷ୍ଟି ଭିତରକୁ ଚାହିଁଲା । ଯାଉଁ ଯାଉଁ ନ ଫେରି ସେ ଗଛକୁ ଆଉଜି କିଛିକ୍ଷଣ ରହିଗଲା ।

ଇଂରେଜ ମୋତେ ଏଠାରେ ରହିବାକୁ କହିଥିଲେ । ହୁଏତ ସେ ବର୍ତ୍ତମାନ ମୋ ପାଖକୁ ଆସୁଥିବେ । ମୁଁ ଯଦି ଚାଲିଯାଏ ତେବେ ମୋତେ ଖୋଜିବାକୁ ଯାଇ ସେ ବରଫରେ ବାଟ ବଣା ହୋଇଯିବେ । ଏହି ଯୁଦ୍ଧରେ ଆମ୍ଭେମାନେ ଆଦେଶ ଅମାନ୍ୟ

ଏବଂ ଶୃଙ୍ଖଳାହୀନ କାମ କରି ବହୁ କଷ୍ଟ ଉଠାଇଲୁଣି । ଇଂରେଜଙ୍କୁ ମୁଁ ଆଉ କିଛି କାଳ ଅପେକ୍ଷା କରିବି । ନିତାନ୍ତ ସେ ମଧ୍ୟ ନ ଆସନ୍ତି ତେବେ ଆଦେଶ ଅମାନ୍ୟ କରି ମୋତେ ଚାଲିଯିବାକୁ ହେବ । ମୋତେ ରିପୋର୍ଟ ଦେବା ଏବଂ ଆହୁରି ଅନେକ କାମ କରିବାକୁ ଅଛି । ଏଠାରେ ରହି ବରଫ ପାଲଟିବା ବାହୁଲ୍ୟ ଏବଂ ନିରର୍ଥକ ।

ରାସ୍ତା ସେପଟୁ କରତ କଳର ଧୂଆଁ, ଚେମିନି ବାଟେ ବରଫ ଭିତରେ ତା ଆଡ଼କୁ ଭାସି ଆସୁଥିଲା । ଫ୍ୟାସିଷ୍ଟମାନେ ବଡ଼ ଆରାମରେ ଗରମ ଉପଭୋଗ କରୁଅଛନ୍ତି । କିନ୍ତୁ କାଲି ରାତିରେ ଆମେ ତାଙ୍କୁ ମାରି ପକାଇବା । ଏହା ଏକ ବିଚିତ୍ର ବିସ୍ମୟ ଏବଂ ଏକଥା ଭାବିବାକୁ ମୋତେ ଭଲ ଲାଗୁନାହିଁ । ମୁଁ ଦିନମାନ ତାଙ୍କୁ ଦେଖୁଛି । ସେମାନେ ମଧ୍ୟ ଆମରି ପରି ମଣିଷ । ମୁଁ ସିଧା ସଳଖରେ କରତ କଳକୁ ଯାଇପାରେ । ସେଠାରେ କେହି ମୋତେ ବାଧା ଦେବେ ନାହିଁ । ଏକମାତ୍ର ଅନ୍ତରାୟ ହେଉଛି ଯେ ସେମାନେ ସବୁ ପଥିକଙ୍କର ଛାଡ଼ପତ୍ର ଦେଖିବାକୁ ଲୋଡ଼ିଥାନ୍ତି । ତାଙ୍କର ମୋ ଭିତରେ ଉପରବାଲାଙ୍କ ହୁକୁମଟା ହେଉଛି ଏକମାତ୍ର ଅନ୍ତରାୟ । ମୁଁ ତାଙ୍କୁ ଫ୍ୟାସିଷ୍ଟ୍ ବୋଲି କହିଲେ ମଧ୍ୟ ସେମାନେ ମୋରିପରି ଗରୀବ । ଆମ ଭିତରେ ଯୁଦ୍ଧ କରିବା ଅନୁଚିତ ।

ସେ ଘାଟିରେ ଯେଉଁମାନେ ଅଛନ୍ତି ତାଙ୍କ କଥାବାର୍ତ୍ତା ଶୁଣି ମୁଁ ବୁଝିଛି ଯେ ସେମାନେ ହେଉଛନ୍ତି ଗାଲେଗୋ ଜାତିର ଲୋକ । ସେମାନେ ନିଜ ସ୍ଥାନ ଛାଡ଼ି ପଳାଇ ଯିବେ ନାହିଁ । ଯଦି ଯାଆନ୍ତି ତେବେ ତାଙ୍କ ପରିବାରଙ୍କୁ ଗୁଳି ମାରିଦିଆ ଯିବ । ଗାଲେଗୋ ଜାତିର ଲୋକେ ହୁଏତ ଖୁବ୍ ବୁଦ୍ଧିଆ ନୁହେଁ ତ ଅତି ବୋକା ଓ ନୃଶଂସ ହୋଇ ଥାଆନ୍ତି । ମୁଁ ଉଭୟ ଦଳର ଲୋକଙ୍କୁ ଜାଣେ । ଲିଷ୍ଟର ହେଉଛି ଜଣେ ଗାଲେଗୋ ଜାତିର ଲୋକ ଏବଂ ତା ଘର ହେଉଛି ଫ୍ରାଙ୍କୋଙ୍କ ସହରରେ । ବର୍ଷର ବର୍ତ୍ତମାନ ସମୟରେ ବରଫ ବର୍ଷା ଦେଖି ଗାଲେଗୋମାନେ କଅଣ ଭାବୁଥିବେ କେଜାଣି ? ତାଙ୍କ ଦେଶରେ ଏପରି ଉଚ୍ଚ ପାହାଡ଼ ନାହିଁ । ତାଙ୍କ ଦେଶରେ ସବୁବେଳେ ବର୍ଷା ହୁଏ ଏବଂ ଜମି ସୁଶ୍ୟାମଳ ।

କରତକଳର ଖିଡ଼କି ବାଟେ ଗୋଟିଏ ଆଲୁଅ ଦେଖି ଆନ୍‌ସେଲ୍‌ମୋ ଥରିଯାଇ ଇଂରେଜଙ୍କୁ ଗାଳି ଦେଲା । ଗାଲେଗୋମାନେ ଆମ ଦେଶରେ ଘର ଭିତରେ ବେଶ୍ ଉଷୁମରେ ରହି ଅଛନ୍ତି ଆଉ ମୁଁ ଏଠାରେ ଗଛ ଉହାଡ଼ରେ ଶୀତରେ ଥରୁଅଛି । ପାହାଡ଼ ଖୋଲରେ ଆମେ ପଶୁପରି ରହିଅଛୁ । କିନ୍ତୁ କାଲି ପଶୁମାନେ ଖୋଲରୁ ବାହାରି ଆସିବେ ଏବଂ ଆଜି ଯେଉଁମାନେ ଆରାମ କରୁଅଛନ୍ତି ସେମାନେ

ମରବେ । ଯେମିତ ଆମେ ଓଟେରେ ଆକ୍ରମଣ କଲାବେଳେ ମରଥିଲେ । ସେ ଓଟେରେ କଥା ମନେ ପକାଇବାକୁ ପସନ୍ଦ କଲାନାହିଁ ।

ସେଦନ ରାତରେ ସେ ପଦ୍ଧଲେ ଓଟେରେ ଠାରେ ମଣିଷ ମାରଥିଲା । ଏଠା ଘାଟି ଦଖଲ ପାଇଁ ସେ ଆଉ ମଣିଷ ମାରବାକୁ ପ୍ରସ୍ତୁତ ନୁହେଁ । ଓଟେରେ ଠାରେ ସେ ମନ୍ତ୍ରୀ ମୁଣ୍ଡରେ କମ୍ବଳ ଘୋଡ଼ାଇ ଦେଇ ଥିବାରୁ ପାବ୍‌ଲୋ ତାକୁ ଛୁରୀ ଭୂଷି ହତ୍ୟା କରଥିଲା । ମନ୍ତ୍ରୀ ଆନ୍‌ସେଲ୍‌ମୋର ଗୋଡ଼ ଧର କମ୍ବଳ ଭିତରୁ ଚିତ୍କାର କରୁଥିଲା । କମ୍ବଳ ଉପରେ ହାତ ମାର ଆନ୍‌ସେଲ୍‌ମୋ ତାଙ୍କୁ ଛୁରୀ ମାରବାରୁ ସେ ଗୋଡ଼ ଗୁଡ଼ି-ଦେଇଥିଲା । ଲେକଟାର ପାଟିତୁଣ୍ଡ ବନ୍ଦ କରବା ପାଇଁ ଆନ୍‌ସେଲ୍‌ମୋ ତା ତଣ୍ଟିରେ ଆଣ୍ଠୁ ଦାବୀ ଦେଇଥିଲା । ସେ ତାକୁ ଛୁରୀ ଭୂଷିଲା ବେଳେ ପାବ୍‌ଲୋ ଝିଡ଼ିକବାଟେ ଘର ଭିତରକୁ ବୋମା ଫୋପାଡ଼ି ଥିଲା । ଘର ଭିତରେ ଘାଟି ଜଗୁଆଳୀମାନେ ଶୋଇଥିଲେ । ଲଗ୍ ଲଗ୍ ପାବ୍‌ଲୋ ଆଉ ଦୁଇଟି ବୋମା ଫିଙ୍ଗିଲା । ବୋମା ଆବାଜ ସଙ୍ଗେ ସଙ୍ଗେ ସବୁ ଜଳ ଉଠିଲା ସତେ ଯେପର ବିଶ୍ୱ ପ୍ରଳୟଙ୍କରୀ ଅଗ୍ନି ଶିଖା । ଯେଉଁମାନେ ଶୋଇଥିଲେ ସେମାନେ ଚେଇଁଉଠି ଦ୍ୱିତୀୟ ବୋମା ବିସ୍ଫୋରଣରେ ଗତାସୁ ହୋଇଥିଲେ । ପାବ୍‌ଲୋ ସେତେବେଳେ ସମଗ୍ର ଦେଶରେ ଧ୍ୱଂସଲୀଳା ଚଳାଇ ଥିଲା ଏବଂ କୌଣସି ଫ୍ୟାସିଷ୍ଟ ଘାଟି ତା ହାତରୁ ରାତରେ ନରାପଦ ନଥିଲା ।

ବର୍ତ୍ତମାନ ପାବ୍‌ଲୋର ବକମ ଶେଷ ହୋଇଛି ଏବଂ ତାହାର ବାହାଦୁରୀ ଆଉ ନାହିଁ । ବର୍ତ୍ତମାନ ଅବସ୍ଥାରେ ତାକୁ ଦୁଇ ପାହାର ମାଇଲେ ମଧ୍ୟ ସେ ନରାହପର ସହ୍ୟ କର ନେଉଛି । ପାବ୍‌ଲୋ ଦେଖିବାକୁ ଅସୁନ୍ଦର ଏବଂ ବହୁତ ବଦଳି ଯାଇଥିଲେ ମଧ୍ୟ ସେତେ ଖରାପ ଲୋକ ନୁହେ ବୋଲି ଆନ୍‌ସେଲ୍‌ମୋ ଭାବିଲା ।

ଅଣ୍ଟାଟା ବହୁତ ବେଶୀ । ଇଂରେଜ ଆସୁ ଏବଂ ମୋତେ ଘାଟିର କାହାରକୁ ହତ୍ୟା କରବାକୁ ନ ହେଉ । ଏହି ଗୃହଜଣ ଗାଲେଗୋ ଓ ତାଙ୍କର ଜମାଦାରକୁ ଯିଏ ମାରବ ମାରୁ । ଇଂରେଜ ମୋତେ କହିଥିଲେ ଯେ ମାରବା ଯଦ ନହାତ ଆବଶ୍ୟକ ହୁଏ ତେବେ ମୁଁ ମାରବ କନ୍ତୁ ସେ ମୋତେ ତାଙ୍କ ସହିତ ପୋଲ ଧ୍ୱଂସ କାମ କରବାକୁ କହୁଛନ୍ତି । ହତ୍ୟାକରବା କାମ ଅନ୍ୟଲୋକ କରବେ । ପୋଲ ପାଇଁ ଲଢ଼େଇ ଲାଗିବ । ସେ ଲଢ଼େଇରୁ ଯଦ ମୁଁ ବର୍ତ୍ତିଯାଏ ତେବେ ଜାଣିବ ମୋଭଳି ବୁଢ଼ାଲୋକ ଏ ଯୁଦ୍ଧରେ ଯେତକ କରବା କଥା ସେତକ କରଗଲା । ହଉ, ଆଗେ ଇଂରେଜ ଆସନ୍ତୁ । ମୁଁ ଭୀଷଣ ଅଣ୍ଟାଭୋଗୁଛି ଏବ ଘାଟିଘରେ ଗାଲେଗୋମାନେ ଦବ୍ୟ ଆରାମରେ ଥିବାର ଦେଖି ପାରୁଅଛି । ଏ ଯୁଦ୍ଧ ଶେଷ ହୋଇ ଯାଆନ୍ତା ଓ ମୁଁ ମୋ ଘରେ ଥାଆନ୍ତି କ ? କନ୍ତୁ ବର୍ତ୍ତମାନ ମୋ ଘର କାହିଁ ? ଘରକୁ ବାହୁଡ଼ିବା ପୂର୍ବରୁ ଆମକୁ ଏହି ଯୁଦ୍ଧ ଜିଣିବାକୁ ପଡ଼ିବ ।

କରିଡରକାଲି ଭିତରେ ଜଣେ ସୈନିକ ନିଜ ବିଛଣାରେ ବସି ଜୋତାରେ ଚର୍ବି ଲିଗାଉଥିଲା । ଆଉ ଜଣେ ଶୋଇଥିଲା । ତୃତୀୟ ଜଣଙ୍କ ଗ୍ରେଷାଇ କରୁଥିଲା ଏବଂ ଜମାଦାର ବସି ଖବରକାଗଜ ପଢୁଥିଲା । କାନ୍ଥରେ ଝୁଣ୍ଟା ମାଗ ସେମାନେ ଶିରସ୍ତ୍ରାଣ ଟଙ୍ଗାଇ ଥିଲେ ଏବଂ ବନ୍ଧୁକମାନ କାନ୍ଥ ପଛରେ ଡେର ରଖିଥିଲେ ।

ବେଞ୍ଚରେ ବସିଥିବା ସୈନିକ ଜଣଙ୍କ ପଚାରିଲା "ଏଟା କଭଳି ଦେଶ ଯେଉଁଠି ଜୁନ୍ ମାସରେ ବରଫ ପଡ଼ୁଛି ।"

ଜମାଦାର କହିଲା "ଇଟିୟୁ ତ ଗୋଟାଏ ସମସ୍ୟା ।"

ଗଢୁଥିବା ସୈନିକ କହିଲା "ବର୍ତ୍ତମାନ ମେ ମାସର ଶୁକ୍ଳପକ୍ଷ । ଏହା ତ ଆହୁରି କେତେଦିନ ରହିବ ।"

ବେଞ୍ଚରେ ବସିଥିବା ସୈନିକ ପୁଣି ପଚାରିଲା "ଏଟା ପୁଣି କଭଳି ଦେଶ ଯେଉଁଠି ମେ ମାସରେ ତୁଷାର ବୃଷ୍ଟି ହୋଇପାରେ ?"

ଜମାଦାର ଜବାବ ଦେଲା "ଏହି ପାର୍ବତ୍ୟ ଅଞ୍ଚଳରେ ମେ ମାସରେ ବରଫ ପଡ଼ିବା ବିରଳ କଥା ନୁହେଁ । ମେ ମାସରେ ମାଦ୍ରିଦ୍‌ଠାରେ ମୁଁ ଅନ୍ୟ ମାସ ଅପେକ୍ଷା ଅଧିକ ଥଣ୍ଡା ଭୋଗିଥିଲି ।"

ଗଢୁଥିବା ସୈନିକ କହିଲା "ଏବଂ ଅଧିକ ଗରମ ମଧ୍ୟ ।"

ଜମାଦାର କହିଲା "ତାପମାନ ଯନ୍ତ୍ର ଅନୁସାରେ ମେ ମାସରେ ଚରମ ଉତ୍ତାପ ଓ ଚରମ ଶୀତ ପଡ଼ିଥାଏ । ଆମର ଏହି କାଷ୍ଟିଲ୍‌ଠାରେ ଯେମିତି ଗରମ ହୁଏ ସେମିତି ଥଣ୍ଡା ମଧ୍ୟ ମେ ମାସରେ ପଡିପାରେ ।"

ବସିଥିବା ସୈନିକ କହିଲା "ହଁ, ତା ସାଙ୍ଗକୁ ବର୍ଷା ମଧ୍ୟ । ମେ ମାସର ଗତ କେତେଦିନ ପ୍ରାୟ ସବୁଦିନେ ବୃଷ୍ଟି ହୋଇଅଛି ।"

ଗଢୁଥିବା ସୈନିକ କହିଲା "ନା, ନା, ତା ନୁହେଁ । ମେ ମାସର ଗତ କେତେଦିନ ଅପ୍ରେଲର ଶୁକ୍ଳପକ୍ଷ ବୋଲି ଧରିବାକୁ ହେବ ।"

ଜମାଦାର କହିଲା "ତୋ କଥା ଓ ତୋ ଚନ୍ଦ୍ର କଥା ଶୁଣି ଶୁଣି ମୁଣ୍ଡ ଖରାପ ହୋଇଯିବ । ଚନ୍ଦ୍ର ପକ୍ଷ କଥା ଛାଡ଼ିଦେ ।"

ରାନ୍ଧୁଥିବା ସୈନିକ ଜଣକ କହିଲା "ଯେ କେହି ସମୁଦ୍ରରେ କମ୍ପା ସ୍ଥଳ ଭାଗରେ ବାସ କରୁଥିବେ ସେମାନେ ଜାଣନ୍ତି ଚନ୍ଦ୍ର ହିଁ ହେଉଛି ଅସଲ କାରଣ, ମାସରୁ କିଛି ଯାଏ ଆସେ ନାହିଁ । ଉଦାହରଣ ସ୍ୱରୂପ ଦେଖ ବର୍ତ୍ତମାନ ମେ ମାସର ଶୁକ୍ଳପକ୍ଷ ଅଥଚ ଜାନ୍‌ର ଋତୁ ଘଟୁଅଛି ।"

ଜମାଦାର କହିଲା "ତୋ କଥାର ଅର୍ଥ ହେଉଛି ଆମେ ଯେଉଁ ଋତୁ ଯେବେ ହେବା କଥା ତାହାର ପଛରେ ପଡ଼ୁଛୁ । ଏଭଳି ଚିନ୍ତାକଲେ ମୁଣ୍ଡ ବ୍ୟଥା ହେବା ସ୍ୱାଭାବିକ ।"

ରାନ୍ଧୁଥିବା ସୈନିକ କହିଲା "ଆପଣ ଲୁଗୋ ସହର ବାସୀନ୍ଦା, ଆପଣ ସମୁଦ୍ର କମ୍ପା ଗ୍ରାମାଞ୍ଚଳ କଥା କଅଣ ଜାଣିବେ ?"

"ଲୋକ ସହରରେ ରହି ସମୁଦ୍ର କମ୍ପା ଗ୍ରାମାଞ୍ଚଳ ବାସୀଙ୍କଠାରୁ ଅଧିକ ଜାଣିପାରେ ।"

"ଏହି ଚନ୍ଦ୍ର ପକ୍ଷରେ ପ୍ରଥମ ସାର୍ଡାଇନ ମାଛମାନେ ବହୁତ ଆସିବା କଥା । ବର୍ତ୍ତମାନ ସାର୍ଡାଇନ ମାଛ ଧରିବା ପାଇଁ ମାଛଧରା ବୋଟ୍‌ମାନ ପ୍ରସ୍ତୁତ ହେଉଥିବ । ମାକେରଲ୍ ମାଛ ସବୁ ଉତ୍ତର ଦିଗକୁ ଚାଲି ଯାଇଥିବେଣି ।" ରାନ୍ଧୁଥିବା ସୈନିକ କହିଲା ।

ଜମାଦାର ପଚାରିଲା "ତୋ ଘର ଯଦି ନୋୟାଠାରେ ତେବେ ତୁ ନୌବାହିନୀରେ କାହିଁକି ଯୋଗ ନଦେଲୁ ?"

"ମୋ ଜନ୍ମସ୍ଥାନ ହେଉଛି ନେଗ୍ରିରା, ନୋୟା ନୁହେଁ । ନେଗ୍ରିରା ହେଉଛି ତାମ୍ବ୍ରେ ନଦୀର ଉପର ମୁଣ୍ଡରେ । ଏଣୁ ମୋତେ ସ୍ଥଳ ସୈନ୍ୟରେ ଗ୍ରହଣ କଲେ ।"

ଜମାଦାର କହିଲା "ଅତି ଦୁର୍ଭାଗ୍ୟ ।"

ବସିଥିବା ସୈନିକ ଜଣକ କହିଲା "ଭାବନାହିଁ ଯେ ନୌବାହିନୀରେ ବିପଦ ଊଣା । ନୌଯୁଦ୍ଧ ନ ଘଟିଲେ ମଧ୍ୟ ଶୀତଦିନେ ସମୁଦ୍ର ଉପକୂଳ ବିପଦ ସଙ୍କୁଳ ।"

ଜମାଦାର କହିଲା 'ସ୍ଥଳ ସୈନ୍ୟଠାରୁ ଅଧିକ ଖରାପ କିଛି ହୋଇ ନପାରେ ।'

ରାନ୍ଧୁଥିବା ସୈନ୍ୟ କହିଲା 'ଆପଣପରା ଜମାଦାର, ଆପଣଙ୍କ ତୁଣ୍ଡରେ ଏଭଳି କଥା ଶୋଭା ପାଏନାହିଁ ।'

ଜମାଦାର ଜବାବ ଦେଲ "ନା, ମୁଁ ବିପଦର କଥାହିଁ କହୁଛୁ । ବୋମା ବର୍ଷଣବେଳେ ଯାହା ସହ୍ୟ କରିବାକୁ ପଡ଼େ; ଆକ୍ରମଣ କରିବାର ଆବଶ୍ୟକତା ଏବଂ ଦୁର୍ଗ ପ୍ରାଚୀରରେ ପହରା ଦେବା ଦାୟିତ୍ୱ କଥାକୁ ମୁଁ ସୂଚାଉଅଛୁ ।"

ବସି ରହିଥିବା ସୈନିକ କହିଲା "ଏଠାରେ ଆମର ସେ ସବୁ କିଛି ନାହିଁ ।"

ଜମାଦାର କହିଲା "ସେଟା ହେଉଛି ଈଶ୍ୱରଙ୍କ ଦୟା । କିନ୍ତୁ କେତେବେଳେ ଯେ ଆକ୍ରାନ୍ତ ହେବୁଁ କିଏ କହିବ ? ଉପସ୍ଥିତ ଅବସ୍ଥା ପରି ସହଜ ଅବସ୍ଥା ତ ଚିରକାଳ ରହିବ ନାହିଁ ?"

"ଆଉ କେତେକାଳ ଏମିତି ରହିପାରିବୁ ବୋଲି ଆପଣ ଭାବୁଛନ୍ତି ?"

ଜମାଦାର କହିଲା 'ମୁଁ ଜାଣେନାହିଁ । ଯୁଦ୍ଧଭମାମ ଏମିତି ଚାଟିଯାଆନ୍ତା କି ।'

ଠିଆ ହୋଇଥିବା ସୈନିକ କହିଲା "ଏକାଦିକ୍ରମେ ୭ ଘଣ୍ଟିଆ ପହରା କାମ ବହୁତ ଦୀର୍ଘ ।"

ଜମାଦାର କହିଲା "ଝଡ଼ ଚାଲିଥିବା ଯାଏ ୩ ଘଣ୍ଟିଆ ପହରା କରାଇବା । ଏହାହିଁ ସାଧାରଣ ରୀତି ।"

ବସିଥିବା ସୈନିକ ପଚାରିଲା "ଏ ଯେଉଁ ସାମରିକ ଦପ୍ତରର ମୋଟରଗାଡ଼ି ଗଲା ତାହାର ତାତ୍ପର୍ଯ୍ୟ କଅଣ । ସେ ଗାଡ଼ିର ରୂପରେଖ ମୋ ମନରେ ଖଟକା ଜନ୍ମାଇ ଅଛି ।"

ଜମାଦାର କହିଲା 'ମୋତେ ମଧ୍ୟ ତାହା ଭଲ ଦିଶୁନାହିଁ । ଏମିତିକା ଜିନିଷ ସବୁ ବିପଦର ଚିହ୍ନ ।'

ଠିଆ ହୋଇଥିବା ସୈନ୍ୟ କହିଲା 'ବିମାନ ଫୌଜ ଆଉ ଗୋଟିଏ ଖରାପ ଲକ୍ଷଣ ।'

ଜମାଦାର କହିଲା 'ଆମର ବିମାନବାହିନୀ ଖୁବ୍ ଶକ୍ତିଶାଳୀ । ଲାଲ୍ ଫୌଜର ଆମ ପରି ବିମାନ ବହର ନାହିଁ । ଆଜିର ଉଡ଼ାଜାହାଜମାନ ଯେ କୌଣସି ଲୋକକୁ ଆନନ୍ଦ ଦେଇପାରେ ।'

ବସିଥିବା ସୈନ୍ୟଟି କହିଲା 'ଲାଲଫୌଜର ବିମାନବାହିନୀ ଶକ୍ତିଶାଳୀ ଥିଲାବେଳେ ମୁଁ ଦେଖିଅଛି । ଦୁଇ ଇଞ୍ଜିନ୍‌ଯୁକ୍ତ ଉଡ଼ାଜାହାଜ ମୁଁ ଦେଖିଛି । ତାହାର ଭୟାବହତା ସହ୍ୟାତୀତ ।'

ଜମାଦାର କହିଲା "ସେକଥା ସତ କିନ୍ତୁ ବର୍ତ୍ତମାନ ସେମାନଙ୍କ ଆମ ବିମାନ ପରି ଶକ୍ତିଶାଳୀ ନୁହେଁ । ଆମର ବିମାନବାହିନୀ ଅପରାଜେୟ ।"

ସେମାନେ କରତକଲ ଭିତରେ ଏହିପରି କଥାବାର୍ତ୍ତା ହେଉଥିଲାବେଳେ ଆନ୍‌ସେଲ୍‌ମୋ ବରଫପାତ ମଧ୍ୟରେ ରାସ୍ତାଆଡ଼କୁ ଅନାଇ ଅପେକ୍ଷା କରିଥିଲା ଏବଂ କରତକଲ ଭିତରୁ ଆଲୁଅକୁ ଚାହିଁଥିଲା ।

ସେ ଭାବିଲା ମଣିଷ ମାରିବା ମୋ କାମ ନୁହେଁ । ଯୁଦ୍ଧ ପରେ ଏହି ହତ୍ୟାପାଇଁ ଏକ ବିରାଟ ପ୍ରାୟଶ୍ଚିତ କରିବାକୁ ପଡ଼ିବ । ଯୁଦ୍ଧ ପରେ ଯେବେ ଧର୍ମ ଲୋପ ପାଇଯାଏ ତେବେ କୌଣସି ପ୍ରକାର ସାମାଜିକ ପ୍ରାୟଶ୍ଚିତ ଅନୁଷ୍ଠିତ ହେବ ଯଦ୍ୱାରା ସମସ୍ତଙ୍କ ପାପ ପ୍ରକ୍ଷାଳିତ ହୋଇଯିବ । ସେତିକି ନ ହେଲେ ଆମେ ପ୍ରକୃତରେ ମଣିଷ ପରି ବଞ୍ଚିପାରିବୁ ନାହିଁ । ବେଳେ ବେଳେ ହତ୍ୟା କରିବା ଦରକାର, ଏକଥା ମୁଁ ଜାଣେ ତଥାପି ଏହା ମଣିଷ ପକ୍ଷରେ ନିନ୍ଦନୀୟ । ସେଇଥିପାଇଁ ମୁଁ ଭାବୁଛି ଯୁଦ୍ଧ ଶେଷ ହୋଇଗଲେ ସବୁ ହତ୍ୟା ଦୋଷ ପ୍ରକ୍ଷାଳନ ପାଇଁ ଗୋଟାଏ ବିରାଟ ପ୍ରାୟଶ୍ଚିତ କରାଯିବ ।

ଆନ୍‌ସେଲ୍‌ମୋ ଲୋକ ହିସାବରେ ଖୁବ୍ ଭଲ ଥିଲା । ସେ ଏକାକୀ ରହୁଥିଲା ବେଳେ ଏହି ହତ୍ୟା କଥା ବିଶେଷ ଭାବୁଥିଲା ଏବଂ ସେ ବହୁ ସମୟରେ ଏକା ରହୁଥିଲା ।

ଇଂରେଜ ସମ୍ବନ୍ଧରେ ସେ ବିସ୍ମୟ ବୋଧକଲା । ସେ କହୁଥିଲେ ଯେ ହତ୍ୟା ନିମିତ୍ତ ସେ ଚିନ୍ତିତ ନୁହନ୍ତି ଅଥଚ ସେ ଯେପରି ଭାବପ୍ରବଣ ସେହିପରି ଦୟାଳୁ । ହୁଏତ ଯୁବକ ଦଳରେ ଏହା ବଡ଼ କଥା ନୁହେଁ । ହୁଏତ ବିଦେଶୀ କିମ୍ବା ବିଧର୍ମୀଙ୍କ ପକ୍ଷରେ ଏପରି ଧାରଣା ନଥାଇ ପାରେ କିନ୍ତୁ ମୁଁ ଭାବୁଛି ଯେ ଯେଉଁ ଲୋକ ହତ୍ୟା କରିବ ସେ ଦିନେ ନା ଦିନେ ପଶୁ ବୋଲି ଗଣ୍ୟ ହେବ । ଦରକାର ପଡ଼ୁଥିଲେ ମଧ୍ୟ ହତ୍ୟା ହେଉଛି ମହାପାପ । ସେଥିପାଇଁ ଆମକୁ ପରେ ଅବଶ୍ୟ ଖୁବ୍ କଠୋର ପ୍ରାୟଶ୍ଚିତ କରିବାକୁ ପଡ଼ିବ ।

ଅନ୍ଧକାର ହୋଇଗଲାରୁ ସେ ପୁଣିଥରେ ରାସ୍ତା ସେପଟେ ଆଲୁଅଟା ପ୍ରତି ଚାହିଁ ନିଜ ଛାତିରେ ହାତ ଅଉଁସି ଉଷୁମ କଲେ । ବର୍ତ୍ତମାନ ସେ ନିଶ୍ଚିତ ଭାବରେ ଗୁମ୍ଫାକୁ ଫେରିଯିବ ଅଥଚ କିଛି ଗୋଟାଏ ଭାବନା ତାକୁ ଗଛ ତଳେ ଅଟକାଇ ରଖିଲା । ବରଫ ବର୍ଷା ମଧ୍ୟ ଖୁବ୍ ବେଶୀ ହେଉଥାଏ । ଅଳ୍ପ ରାତିରେ ପୋଲଟା ଉଡ଼ାଇ ଦେବା ପାଇଁ

ସେ ଭାବିଲା । ଏଭଳି ସ୍ଥିତିରେ ଘାଟି ଘର ଦଖଲ କରିବା ସହଜ । ପୋଲ ଉଡ଼ାଇ ଦେବା ମଧ୍ୟ କଠିନ ନୁହେଁ । ସବୁକାମ ସହଜରେ କରି ହେବ । ଏହାପରେ ସେ ଗଛ ମୂଳେ ଠିଆହୋଇ ଗୋଡ଼ ପିଟିବାକୁ ଲାଗିଲା ଓ ପୋଲ କଥା ଆଉ ଭାବିଲାନାହିଁ । ଅନ୍ଧାର ହୋଇଗଲେ ସେ ସବୁବେଳେ ନିସଙ୍ଗ ବୋଧ କରିଥାଏ ଏବଂ ଆଜିର ନିସଙ୍ଗତା ତା ପ୍ରାଣକୁ ଶୂନ୍ୟ କରି ପକାଇଲା ଯେମିତି କ୍ଷୁଧାର ତାଡ଼ନା କରିଥାଏ । ପୂର୍ବେ ସେ ନିଜର ନିସଙ୍ଗତାକୁ ପ୍ରାର୍ଥନା ଦ୍ୱାରା କୋହଳ କରି ପାରୁଥିଲା ଏବଂ ଅନେକ ସମୟରେ ଶିକାରରୁ ଫେରିଲା ପରେ ସେ ଗୋଟିଏ ପ୍ରାର୍ଥନା ବହୁବାର ଆବୃତ୍ତି କରି ସୁସ୍ଥ ହେଉଥିଲା । ବିପ୍ଳବ ଆରମ୍ଭ ହେଲା ଦିନଠାରୁ ସେ ଆଉ ପ୍ରାର୍ଥନା କରି ନଥିଲା । ପ୍ରାର୍ଥନା କରି ନପାରି ତା ମନ ହାଲିଆ ପାଇଁ ହେଉଥିଲେ ମଧ୍ୟ ପ୍ରାର୍ଥନା କରିବାଟା ବର୍ତ୍ତମାନ ଅସଙ୍ଗତ ଓ କପଟତା ହେବ ବୋଲି ଧରି ନେଇଥିଲା । ସବୁ ମଣିଷ ଯାହା ପାଉଛନ୍ତି ତହୁଁ କିଛି ଅଧିକ ଅନୁଗ୍ରହ ଭିକ୍ଷା କରିବାକୁ ସେ ଇଚ୍ଛୁକ ନଥିଲା ।

ସେ ନିଜେ ସଙ୍ଗୀହୀନ କିନ୍ତୁ ଏହିପରି ନିସଙ୍ଗ ବୋଧ କରିଥାନ୍ତି ସମସ୍ତ ସୈନିକ ଓ ତାଙ୍କର ପରିବାର କିମ୍ବା ଯେଉଁମାନଙ୍କର ପିଲାପିଲି ବା ପିତାମାତା ମରିଯାଇ ଥାନ୍ତି । ନିଜର ସ୍ତ୍ରୀ ଆନ୍ଦୋଳନ ଆରମ୍ଭ ପୂର୍ବରୁ ମରି ଯାଇଥିବାରୁ ସେ ଆନନ୍ଦ ଅନୁଭବ କରିଥିଲା । ସ୍ତ୍ରୀ ଏ ଆନ୍ଦୋଳନ କଥା ବୁଝି ନଥାନ୍ତା । ତାହାର ପିଲାପିଲି ନଥିଲେ କିମ୍ବା ଜନ୍ମିବେ ନାହିଁ । ଦିନବେଳେ କାମରେ ବ୍ୟସ୍ତରହି ସେ ନିଜକୁ ଏକୁଟିଆ ନଭାବିଲେହେଁ ରାତିର ଅନ୍ଧକାରରେ ଭୀଷଣ ଏକାକୀତ୍ୱ-ବୋଧ କରୁଥିଲା । କିନ୍ତୁ ତାହାର ଗୋଟାଏ ଏପରି ବସ୍ତୁ ଅଛି ଯାହାକି କୌଣସି ବ୍ୟକ୍ତି କିମ୍ବା ଭଗବାନ ସ୍ୱୟଂ କାଢ଼ି ନେଇ ପାରିବେ ନାହିଁ । ସେଇଟି ହେଉଛି ସାଧାରଣ ତନ୍ତ୍ର ପାଇଁ ସେ ଯେଉଁ ଭଲ କାମ କରିଅଛି । ଭଲପାଇଁ ସେ ଯେଉଁ କଠିନ ପରିଶ୍ରମ କରି ଅଛି ତାହାର ଫଳ ଅନ୍ୟ ସମସ୍ତେ ଉପଭୋଗ କରି ପାରିବେ । ଆନ୍ଦୋଳନ ଆରମ୍ଭ ହେଲା ଦିନରୁ ସେ ଯଥା ଶକ୍ତି କାମ କରିଅଛି ଏବଂ ଲଜ୍ଜିତ ହେବା ଭଳି କିଛି କରି ନାହିଁ ।

କେବଳ ହତ୍ୟା କରିଥିବା ଯୋଗୁଁ ସେ ଅନୁତପ୍ତ । ତଥାପି ସର୍ବସାଧାରଣଙ୍କ ହିତ ପାଇଁ କରିଥିବା ପାପର ପ୍ରାୟଶ୍ଚିତ୍ତ ପାଇଁ ସୁଯୋଗ ନିଶ୍ଚୟ ଆସିବ ଏବଂ କୌଣସି ପ୍ରକାର ଉଚିତ ପଦ୍ଧତି ମଧ୍ୟ ସ୍ୱୀକୃତ ହେବ । ଇଂରେଜ ସହିତ ସେ ଏ ବିଷୟରେ ଆଲୋଚନା କରିବ କିନ୍ତୁ ସେ ବୋଧହୁଏ ଯୁବକ ଥିବାରୁ ତାହାର ବ୍ୟଥା ବୁଝି ପାରିବେ ନାହିଁ । ଇଂରେଜ ପୂର୍ବେ ଏହି ହତ୍ୟା ପ୍ରସଙ୍ଗ ଉଠାଇ ଥିଲେ କିମ୍ବା ସେ ନିଜେ ସେ କଥା କହିଥିଲା । ଇଂରେଜତ ଅନେକ ଲୋକ ହତ୍ୟା କରିଥିବେ ତଥାପି ସେ କାମ ସେ ପସନ୍ଦ କରନ୍ତି ବୋଲି ଜଣା ପଡ଼ୁ ନଥିଲା । ଯେଉଁମାନେ ଏଭଳି କାମ ଭଲ ପାଆନ୍ତି ସେମାନେ ସବୁବେଳେ ଅନ୍ୟସଡ଼ା ଶ୍ରେଣୀଭୁକ୍ତ ।

ନିଶ୍ଚୟ ନରହତ୍ୟା ମହାପାପ । ଏହା କରିବା ପାଇଁ ଆମର କୌଣସି ଅଧିକାର ନାହିଁ । ଯଦ୍ୟପି ବା ବେଳେ ବେଳେ ତାହାର ଆବଶ୍ୟକତା ଘଟିଥାଏ । ସ୍ପେନ୍‌ରେ କିନ୍ତୁ ଲୋକେ କଥାଟାକୁ ଗୁରୁତ୍ୱ ଦିଅନ୍ତି ନାହିଁ। ଅନେକ ସମୟରେ ବିନା ଦରକାରରେ ମଧ୍ୟ ହତ୍ୟା କରି ଆନ୍ତି । ଏପରି ଅନ୍ୟାୟର କୌଣସି ପ୍ରତିକାର ମଧ୍ୟ ନଥାଏ । ମୋ ପକ୍ଷରେ ଏକଥା ଏତେ ଭାବିବା ଅନୁଚିତ କିନ୍ତୁ ଚିନ୍ତାଟା ଛାଡ଼ିପାରୁ ନାହିଁ । ଯାହାଙ୍କ ଯାହାଙ୍କ ଗୋଟାଏ କିଛି ପ୍ରାୟଶ୍ଚିତ୍ତର ବ୍ୟବସ୍ଥା ହୁଅନ୍ତା କି ମୁଁ ତାହା କରି ନିଜ ବୋଝ ହାଲୁକା କରନ୍ତି । ଅନ୍ୟ ସବୁକଥା ପାଇଁ ଲୋକ କ୍ଷମା ପାଇପାରେ । ଦୟା ପ୍ରଦର୍ଶନ କରି ଅଥବା ଅନ୍ୟ ଶୋଭନ ମାର୍ଗରେ କୃତ ଅନ୍ୟାୟର ପ୍ରତିକାର କରିପାରେ କିନ୍ତୁ ସବୁ-ଠାରୁ ବଡ଼ ପାପ ହେଉଛି ହତ୍ୟା । ପରେ ହୁଏତ ଲୋକ ସମ୍ପ୍ରାହର କେତେଦିନ ରାଷ୍ଟ୍ର ପାଇଁ କାମ କରି କିମ୍ବା ଅନ୍ୟକିଛି କରି ନିଜ ପାପର ବୋଝ ଲଘୁ କରିପାରେ । ଗୀର୍ଜାରେ ଦାନଧ୍ୟାନ କରି ଆଗ କାଳରେ ଯେମିତି କରୁଥିଲେ ହୁଏତ ସେମିତି କିଛି କରିବାକୁ ପଡ଼ିବ । ଗୀର୍ଜାରେ ପାପ ସମ୍ବନ୍ଧରେ ବହୁପ୍ରକାର ବ୍ୟବସ୍ଥା ଥିଲା । ଏହିପରି ଚିନ୍ତାକରି ସେ ନିଜ ମନର ବୋଝ ଲଘୁ କଲା ଏବଂ ରବର୍ଟ ଜର୍ଡାନ୍ ଆସିଲା ବେଳେ ଅନ୍ଧାରରେ ହସୁଥିଲା ।

ରବର୍ଟ ଜର୍ଡାନ୍ ତା ପିଠି ଆପୁଡ଼େଇ ମୃଦୁ ସ୍ୱରରେ ପଚାରିଲେ "ବୁଢ଼ା କେମିତି ଅଛୁ ?"

'ଭାରି ହେମାଳ' ଆନ୍‌ସେଲ୍‌ମୋ କହିଲା । ବରଫବର୍ଷା ଆଡ଼କୁ ପିଠିକରି ଫର୍ଣ୍ଣାଣ୍ଡେଜ୍ ଅଳ୍ପ ଦୂରରେ ଠିଆ ହୋଇଥିଲା ।

ରବର୍ଟ ଜର୍ଡାନ୍ ମୃଦୁ ସ୍ୱରରେ କହିଲେ 'ଚାଲ ଗୁମ୍ଫାକୁ ଯିବୁ । ତୋତେ ଏଠି ଅଣ୍ଡାରେ ରଖିବା ଏକ ଅପରାଧ ।

ଆନ୍‌ସେଲ୍‌ମୋ ହାତ ବଢ଼ାଇ କରତକଳ ଅଳୁଅ ଦେଖାଇ ଦେଲା ।

'ପହରା କାହିଁ ?'

'ସେ ଏଠାରୁ ଦେଖାଯାଉ ନାହିଁ, ଟାଙ୍କ ଆଡ଼େ ଅଛି ।'

'ହଉ ଚାଲ ଗୁମ୍ଫାକୁ ଯିବା, ସେଇଠାରେ ତୋ କଥା ଶୁଣିବି । ସେମାନେ ଚୁଲିକୁ ଯାଆନ୍ତି ।'

ଆନ୍‌ସେଲ୍‌ମୋ କହିଲା 'ନାହିଁ ଦେଖନ୍ତୁ ।'

ରବର୍ଟ ଜର୍ଡାନ୍ କହିଲେ 'ମୁଁ ସକାଳବେଳେ ଦେଖିବି । 'ନେଇ ନିଅ କିଛି ପିଇ ପକାଅ ।' ଏହା କହି ସେ ବୁଢ଼ା ହାତକୁ ବୋତଲ ବଢ଼ାଇ ଦେଲେ । ବୁଢ଼ା

ଠିପି ଫିଟାଇ କିଛି ପିଇ ନେଲା । ପିଇସାରି ମୁହଁ ପୋଛି ଆରାମରେ କହିଲା 'ଇଏତ ନିଆଁ ।'

'ହଉ, ଚାଲ ଯିବା' । ରବର୍ଟ ଜର୍ଡାନ କହିଲେ ।

ଅନ୍ଧକାର ଗାଢ଼ ହୋଇ ଉଠିଥାଏ । ଖଣ୍ଡ ଖଣ୍ଡ ତୁଷାର ଏବଂ ଗଛର କଳା ଗଣ୍ଡି ଛଡ଼ା ଆଉ କିଛି ଦେଖା ଯାଉ ନଥାଏ । ଫର୍ଣ୍ଣାଣ୍ଡୋ ପାହାଡ଼ ଉଠାଣିରେ ଅଳ୍ପ ଦୂରରେ ଠିଆ ରହିଥାଏ । ରବର୍ଟ ଜର୍ଡାନ୍ ଭାବିଲେ ଯେ ସିଗ୍ରେଟ୍ ପିଆ ଲୋକଟାକୁ ମଧ୍ୟ ଢୋକେ ଦେବାକୁ ହେବ । ଏହା ଭାବି ସେ ଫର୍ଣ୍ଣାଣ୍ଡୋକୁ ଡାକି ମଦ ଯାଚିଲେ ମାତ୍ର ସେ ଧନ୍ୟବାଦରେ ତାହା ପ୍ରତ୍ୟାଖ୍ୟାନ କଲା ।

ରବର୍ଟ ଜର୍ଡାନ୍ ଭାବିଲେ ଏହି ସିଗ୍ରେଟ୍ ଖୋରମାନେ ମଦ ପିଅନ୍ତି ନାହିଁ । ମୋ ବୋତଲରେ ମଦ ମଧ୍ୟ ବେଶୀ ନାହିଁ । ବୁଢ଼ାକୁ ଭେଟିବାରୁ ମୁଁ ସୁଖି । ଏହା ପରେ ସେ ପୁଣି ବୁଢ଼ାର ପିଠି ଆପୁଡ଼େଇ ଉଠାଣି ଉଠିଲେ ।

ଆନ୍‌ସେଲ୍‌ମୋ କହିଲା "ତୁମକୁ ଦେଖି ମୁଁ ମଧ୍ୟ ସୁଖ ବୋଧ କରୁଅଛି । ମନ ଖରାପ ଥିଲା ବେଳେ ତୁମକୁ ଦେଖିଲେ ମୁଁ ଆନନ୍ଦ ପାଇ ଥାଏ । ହଉ ଚାଲ ଯିବା ।"

'ହଁ, ପାବ୍ଲୋଙ୍କ ପ୍ରାସାଦକୁ ଫେରିଯିବା ।' ରବର୍ଟଜ ର୍ଡାନ୍ ଆନ୍‌ସେଲ୍‌ମୋକୁ କହିଲେ । ସ୍ପେନ୍ ଭାଷାରେ ଏହା ଅଦ୍ଭୁତ ଶୁଭିଲା ।

ଆନ୍‌ସେଲ୍‌ମୋ କହିଲା "ସେହି ଭୟଙ୍କର ପ୍ରାସାଦ ?"

ରବର୍ଟ ଜର୍ଡାନ୍ ବୁଢ଼ା ମୁଣ୍ଡରେ ଖୁସିରେ ହାତ ଦେଇ କହିଲେ 'ହଁ ସେହି ନଷ୍ଟ ଡମ୍ବର, ଗୁହା ।'

ଫର୍ଣ୍ଣାଣ୍ଡୋ ପଚାରିଲା 'କି ଡ଼ମ୍ବ ?'

ରବର୍ଟ ଜର୍ଡାନ୍ କହିଲେ 'ଥଟାରେ କହିଲି ନା । ଅଣ୍ଡା ନୁହେଁ, ଅନ୍ୟ ଲୋକ ସବୁ ।'

ଫର୍ଣ୍ଣାଣ୍ଡୋ ପଚାରିଲା "ନଷ୍ଟ ହେଲେ କିପରି ?"

"ମୁଁ ଜାଣେ ନା । ବହି ପଢ଼ି ବୁଝ । ପିଲାରକୁ ପଚାର ।' ଏହା କହି ସେ ଆନ୍‌ସେଲ୍‌ମୋକୁ ଭଲ ଭାବରେ ଧରି କହିଲେ 'ଶୁଣ ତୋତେ ଦେଖିପାରି ମୁଁ ସୁଖି

ହେଲ । ତୁ ଜାଣନା ଯେ ଏ ଦେଶରେ ଜଣକୁ କୌଣସି ଜାଗାରେ ଛାଡ଼ି ପୁଣି ତାଙ୍କୁ ସେହିଠାରେ ପାଇବା କେପରି କଡ଼ କଥା ।' ଏହା ଦେଶ ବିରୁଦ୍ଧ କଥା ଏବଂ ଏଥିରୁ ଜଣା ପଡ଼ିଲା ବୁଢ଼ା ଉପରେ ତାଙ୍କର କି ଅଗାଧ ବିଶ୍ୱାସ ।

ଆନ୍‌ସେଲ୍‌ମୋ କହିଲା "ମୁଁ ମଧ୍ୟ ଖୁସି କିନ୍ତୁ ଫେରିଯିବାକୁ ବାହାରୁ-ଥିଲି ।"

ରବର୍ଟ୍ ଜର୍ଡାନ୍ ଆନନ୍ଦରେ କହିଲା 'ହଁ ଯିବା ଉଚିତ ନୋହିଲେ ଏଠାରେ ପଥର ପାଲଟି ଯାଇ ଥାଆନ୍ତୁ ।'

ସେଠାରେ ହାଲ ଚାଲ କଅଣ ବୋଲି ଅନ୍‌ସେଲ୍‌ମୋ ପଚାରିବାରୁ ରବର୍ଟ ଜର୍ଡାନ୍ ସେଠାର ହାଲ ଖୁବ୍ ଭଲ ବୋଲି ଜବାବ୍ ଦେଲେ ।

ହଠାତ୍ ତାଙ୍କ ମନ ଅନନ୍ଦରେ ଭରିଗଲା । ବିପ୍ଳବୀ ବାହିନୀର ନେତାଙ୍କ ଜୀବନରେ ଅନନ୍ଦ ଅନୁଭବ କ୍ୱଚିତ ଘଟିଥାଏ । ନିଜର କୌଣସି ଗୋଟିଏ କଡ଼ର ସୈନ୍ୟ ଅକ୍ଷତ ଅଛନ୍ତି ବୋଲି ଜାଣିଲେ ଯେଉଁ ଆନନ୍ଦ ମିଳେ ସେହିପରି । ଦୁଇପାର୍ଶ୍ୱ ଯଦି ଶତ୍ରୁକୁ ଅଟକାଇ ରଖି ପାରନ୍ତି ତେବେ ତ କଥା ନାହିଁ । କିଏ ଏହା କରିବ ବୋଲି ସେ ଜାଣନ୍ତି ନାହିଁ । ପାର୍ଶ୍ୱଭାଗ ଲମ୍ବାଇ ଦେଲେ ଶେଷକୁ ଦେଖା ଯିବ ଯେ ଶେଷକୁ ଜଣେ ଲୋକ ମୁଣ୍ଡରେ ସବୁ ବୋଝ । ସେ ଏହି ପ୍ରତିଂସିଙ୍କ ଲୋଡ଼୍ ନଥିଲେ, କିନ୍ତୁ ଏ ଲୋକଟା ଖୁବ ଭଲ । ଯୁଦ୍ଧ ଲାଗିଲେ ଏହାକୁ ବାମପାର୍ଶ୍ୱରକ୍ଷୀ କରାଯିବ । ଯୁଦ୍ଧଟା ଖୁବ୍ ଚେଷ୍ଟିଆ ଲଢ଼େଇ ହେବ । ମୁଁ ବର୍ତ୍ତମାନ ସବୁକଥା ତୋତେ କହିବି ନାହିଁ, ମୁଁ ସବୁବେଳେ ମୋ ସୁବିଧା ମତେ ଯୁଦ୍ଧ କରିବାକୁ ଚାହେଁ । ଅଗେନ୍‌କୋର୍ଟ ଠାରୁ ଆଜିଯାଏ ଯେତେ ଯେତେ ଯୁଦ୍ଧ ଘଟିଛି ସେଥିରେ କାହାର ଭୁଲ ହୋଇଥିଲା ସେ ସମ୍ବନ୍ଧରେ ମୁଁ ଗୋଟାଏ ସିଦ୍ଧାନ୍ତ କରିଅଛି । ଏ ଯୁଦ୍ଧ ମୁଁ ଅଳପ କେତେଜଣ ବଚ୍ଛା ବଚ୍ଛା ଲୋକ ନେଇ ଚଳାଇବି ।"

ସେ ପୁଣି ଥରେ ଦୁହେଁ ପରସ୍ପରକୁ ଭେଟି ସୁଖି ହେବା କଥା ପ୍ରକାଶ କଲେ । ଅନ୍ଧାରରେ ଉଠାଣି ଚଢ଼ିଲାବେଳେ ପବନ ପଛପଟୁ ବହୁଥିଲା । ଆନ୍‌ସେଲ୍‌ମୋ ଆଉ ଏକାକୀତ୍ୱ ବୋଧ କଲା ନାହିଁ । ଇଂରେଜ ଆସିଲାବେଳଠୁ ତାହାର ନିସଙ୍ଗ ଭାବ କଟି ଯାଇଥାଏ । ଇଂରେଜ ତା ସହିତ ଅଛା କରିଛନ୍ତି ଏବଂ ତାକୁ ଦେଖି ସନ୍ତୁଷ୍ଟ ହୋଇଛନ୍ତି । ସେ କହିଛନ୍ତି ସବୁ ଠିକ୍ ଅଛି, ବିବ୍ରତ ହେବାର କାରଣ ନାହିଁ । ମଦ ପିଇ ତାହାର ଶୈତ୍ୟ ଊଣା ପଡ଼ିଗଲା ଏବଂ ବର୍ତ୍ତମାନ ବାଟଚଲାରେ ଗୋଡ଼ ମଧ୍ୟ ଉଷ୍ମ ହୋଇ ଉଠିଲା ।

ବାଟରେ ବେଶୀ ଚଳପ୍ରଚଳ ନଥିଲା ବୋଲି ସେ ରବର୍ଟ ଜର୍ଡାନ୍‌ଙ୍କୁ କହିଲା । ରବର୍ଟ ଜର୍ଡାନ କହିଲେ "ସେକଥା ଗୁମ୍ଫାରେ କରିବା ।" ଏହା ଶୁଣି ଆନ୍‌ସେଲ୍‌ମୋ ନିଜର କର୍ତ୍ତବ୍ୟପରାୟଣତାରେ ଆନନ୍ଦବୋଧ କଲା ।

ଗୁମ୍ଫାକୁ ଫେରି ଆସିଥିଲେ ଭଲ ହୋଇଥାନ୍ତା । ତାହାହିଁ ଥିଲା ବୁଦ୍ଧିମାନର କାମ । ଉପସ୍ଥିତ ପରିସ୍ଥିତିରେ ତାହାହିଁ ଯଥାର୍ଥଥିଲା ବୋଲି ରବର୍ଟ ଜର୍ଡାନ୍ ଭାବିଲେ । ଏପରି ଘଟଣା ସ୍ପେନ ଦେଶରେ ସୁଦୁର୍ଲଭ । ତୋଫାନରେ ନିଜ ସ୍ଥାନରେ ରହିବା ବନ୍ଧୁ ଆକ୍ରମଣ ସଙ୍ଗେ ସମାନ । ଏଇଥିପାଇଁ ତ ଜର୍ମାନମାନେ ଆକ୍ରମଣକୁ ତୋଫାନ ବୋଲି କହିଥାନ୍ତି । ମୁଁ ନିଶ୍ଚୟ ଏପରି କର୍ତ୍ତବ୍ୟ-ନିଷ୍ଠ ଆଉ ଦୁଇଜଣ ପାଇ ପାରିବି । ଫର୍ଣ୍ଣାଣ୍ଡୋଟା ରହିବ କି ? ସମ୍ଭବ ରହିବ । ସେହିତ ମୋତେ ଏଠାକୁ ବର୍ତ୍ତମାନ ଆସିବାକୁ ପ୍ରବର୍ତ୍ତାଇଥିଲା । ସେ ଭାରି ଏକଜିଦିଆ । ମୋତେ କେତେ ବିଷୟ ସନ୍ଧାନ କରିବାକୁ ପଡ଼ିବ । ବର୍ତ୍ତମାନ ସେ କଅଣ ଭାବୁଥିବ କେଜାଣି । ସେ ଫର୍ଣ୍ଣାଣ୍ଡୋକୁ ସେକଥା ପଚାରିବାରୁ ସେ ଉକ୍ତ ପ୍ରଶ୍ନର କାରଣ ପଚାରିଲା ।

ରବର୍ଟ ଜର୍ଡାନ୍ କହିଲେ "ମୁଁ ବଡ଼ କୌତୁହଳୀ; ସେହି କାରଣରୁ ପଚାରୁଛି ।"

ଫର୍ଣ୍ଣାଣ୍ଡୋ କହିଲା "ମୁଁ ରାତି ଭୋଜନ କଥା ଭାବୁଥିଲି ।"

"ତୁମକୁ ତେବେ ଭାରି ଭୋକ । ପିଲାର୍ କିପରି ରାନ୍ଧେ ?" ଫର୍ଣ୍ଣାଣ୍ଡୋ ଏହାର ଜବାବ ଦେଲାରୁ ଜର୍ଡାନ୍ ଭାବିଲେ ଲୋକଟା ଦ୍ୱିତୀୟ କ୍ଲାଉଡ୍ । ମୋର ଧାରଣା ସେ ତୋଫାନରେ ସୁଦ୍ଧା ସ୍ଥାନ ଛାଡ଼ିଯିବ ନାହିଁ ।"

ତିନିଜଣଯାକ ବରଫ ବୃଷ୍ଟି ଭିତରେ ଉଠାଣି ଚଢ଼ି ଗୁମ୍ଫାକୁ ଗଲେ ।

## ଷୋଡ଼ଶ ପରିଚ୍ଛେଦ

ବରଫ ଝଡ଼ ମାଡ଼ଖାଇ ରବର୍ଟ ଜର୍ଡାନ୍ ପ୍ରଭୃତି ଧୂଆଁ ଳିଆ ଗୁହାଭିତରେ ପଶି ଅନେକାଂଶରେ ଉଷ୍ଣତା ଅନୁଭବ କଲେ । ତାଙ୍କୁ ଦେଖି ପିଲାର୍ ନିଜ ପାଖକୁ ଡାକି କହିଲା ଯେ ସୋର୍ଡୋ ସେଠାରେ ଅଛି । ବର୍ତ୍ତମାନ ଘୋଡ଼ାଙ୍କୁ ଦେଖିବାକୁ ଯାଇଅଛି ଏବଂ ରବର୍ଟ ଜର୍ଡାନ୍ଙ୍କ ପାଇଁ କିଛି ଖବର ରଖିନାହିଁ ।

ରବର୍ଟ ଜର୍ଡାନ୍ ଗୁହାରେ ପଶିଲାବେଳେ ପାବ୍ଲୋକୁ ଦେଖିଥିଲେ ଏବଂ ପାବ୍ଲୋ ତାଙ୍କୁ ଦେଖି ହସି ଦେଇଥିଲା । ବର୍ତ୍ତମାନ ପାବ୍ଲୋ ଖାନା ଟେବୁଲ ପାଖରେ ବସିଥିବାର ଦେଖି ହାତ ହଲାଇଲେ । ପାବ୍ଲୋ କହିଲା "ଇଂରେଜ, ବରଫ ପଡ଼ୁଅଛି ।" ସେ ମୁଣ୍ଡ ହଲାଇଲେ ।

ମେରିଆ କହିଲା "ତୁମ ଜୋତା କାଢ଼, ମୁଁ ନେଇ ଚୁଲ୍ଲୀପାଖରେ ଶୁଖାଇ ଦେବି ।"

ରବର୍ଟ ଜର୍ଡାନ୍ କହିଲେ "କିନ୍ତୁ ସାବଧାନ ଯେପରି ଜୋତା ପୋଡ଼ି ନଯାଏ । ଏଠାରେ ମୁଁ ଖାଲି ଗୋଡ଼ରେ ଚଲାବୁଲା କରି ପାରିବି ନାହିଁ ।" ଏହାପରେ ପିଲାର୍‌କୁ ବୁଝି ପଚାରିଲେ "କଥା କଅଣ ? ସନ୍ତ୍ରୀ ବସିଛି କି ? କୌଣସି ଜଗୁଆଳୀକୁ ପଠାଇ ଅଛ ତ ?"

"ଏହି ଝଡ଼ରେ ପଠାଇବି ?"

ସେ ଟେବୁଲ ପାଖରେ ୬ ଜଣ ଲୋକ କାନ୍ଥକୁ ଆଉଜି ବସିଥିଲେ । ଆନ୍‌ସେଲ୍‌ମୋ ଓ ଫର୍ଣ୍ଣାଣ୍ଡୋ ତା କୁରୁତାରୁ ତୁଷାର ଝାଡ଼ୁଥିଲେ ଏବଂ ପାଇଜାମା ପିନ୍ଧାଉ ପିନ୍ଧାଉ ଗୋଡ଼କୁ ଗୁହା ଦୁଆର ବନ୍ଧରେ ଘଷୁଥିଲେ ।

ମେରଆ କହିଲା "ମୁଁ ତୁମର କୁରୁତା ଖୋଲି ନେଉଅଛି । ସେଥିରେ ବରଫ ଭରାଇବାକୁ ଦେବା ଠିକ୍ ହେବ ନାହିଁ ।"

ରବର୍ଟ ଜର୍ଡାନ୍ ନିଜେ କୁରୁତା ଖସାଇ ଦେଲେ, ପାଇଜାମାରୁ ବରଫ ଝାଡ଼ି ପକାଇ ଜୋତାର ଫିତା ଫିଟାଇଲେ ।

ପିଲାର୍ କହିଲା "ଦେଖୁଛି ଏଠାରେ ସବୁ ଜିନିଷ ତୁମେ ଓଦା କରି ପକାଇବ ।"

"ତୁ ତ ମୋତେ ଡାକିଲୁ ।"

"ହଁ, କିନ୍ତୁ ଦୁଆର ମୁହଁକୁ ଫେରଯାଇ ବରଫ ଝାଡ଼ିବାପାଇଁ ତ ମୁଁ ଅଟକାଇ ନଥିଲି ।"

ରବର୍ଟ ଜର୍ଡାନ୍ ଖାଲି ଗୋଡ଼ରେ ସେହି ମଇଳା ଘରେ ଠିଆ ହୋଇ କହିଲେ "ମୁଁ କ୍ଷମା ମାଗୁଛି । ମେରଆ ମୋ ପାଇଁ ହଳେ ମୋଜା ଖୋଜିଆଣିଲୁ ।"

ଚୁଲିରେ ଖଣ୍ଡେ କାଠ ଗୁଞ୍ଜିଦେଇ ପିଲାର୍ କହିଲା "ପ୍ରଭୁ ଓ ସ୍ୱାମିନ ।"

ରବର୍ଟ ଜର୍ଡାନ୍ କହିଲେ "ଯେତିକି ସମୟ ରହିଅଛି ତାହାର ସୁଯୋଗ ନେବାକୁ ହେବ ।" ମେରଆ ତାଲି ପଡ଼ିଥିବା ଖବର ଦେଲାରୁ ରବର୍ଟ ଜର୍ଡାନ୍ ତାକୁ ଗୁଡ଼ି ଫିଙ୍ଗିଦେଲେ । କିନ୍ତୁ ପ୍ରଥମଟା ପଇଲି ବୋଲରୁ ତାଲରେ ନ ଗଳାଇରୁ ଦ୍ୱିତୀୟ ବୋଲରୁ ତାଲରେ ଲଗାଇବାକୁ କହିଲେ । ମେରଆ ବୋଲରୁ ଫିଟାଇ ମୋଜା ହଳେ କାଢ଼ି ପୁଣି ତାଲି ପକାଇ ଦେଲା ଏବଂ ମୋଜା ଓ ସ୍ଲିପର ଆଣି ତାଙ୍କୁ ଫେରାଇ କହିଲା 'ଏଠି ବସି ମୋଜା ପିନ୍ଧ, ଗୋଡ଼କୁ ଘସି ନିଅ ।' ଜର୍ଡାନ୍ ହସିକରି କହିଲେ 'ତୋ ମୁଣ୍ଡବାଳରେ ଘସି ଘସି ଶୁଖାଇ ପାରିବୁ ନାହିଁ ?' ପିଲାର୍‌କୁ ଶୁଣାଇ ସେ ଏକଥା କହିଲେ ।

ପିଲାର୍ କହିଲା "ମାଆଲୋ କି ଘୁଷୁରି ବୁଦ୍ଧି, ପଶିଲେ ଢଙ୍ଗ ଦେଖାଇଲେ ସତେ ଯେମିତି ଦୁର୍ଗାଧ୍ୟକ୍ଷ । ବର୍ତ୍ତମାନ ପାଲଟିଗଲେ ପୂର୍ବ ଭୂତପୂର୍ବ ସାଆନ୍ତ । ମେରଆ ତାଙ୍କୁ କାଠ ଫାଳଆରେ ପାହାରେ ଦେଲୁ ।"

ରବର୍ଟ ଜର୍ଡାନ୍ ଜବାବ ଦେଲେ "ନାହିଁ, ମୁଁ ଖୁସିଥିବାରୁ ରହସ୍ୟ କରୁଥିଲି ।"

'ତୁମେ ଖୁସି ?'

'ହଁ । ସବୁ କଥା ଭଲଭାବରେ ଶୁଣୁଛି ।'

ମେରଆ କହିଲା "ରବର୍ଟୋ, ବସିପଡ଼ ଗୋଡ଼ ଶୁଖାଅ । ମୁଁ ତୁମ ପାଇଁ ପିଇବା ପାଇଁ ଆଣୁଅଛି । ଅଣ୍ଟା ଉଣା ହୋଇଯିବ ।"

ପିଲାର୍ କହିଲା 'ତୁ କଅଣ ଭାବୁଛୁ ମେ ଲୋକଟାର ପାଦ କେବେ ଓଦା ହୋଇ ନଥିଲା କିମ୍ବା ସେବେ ତୁଷାରପାତ ହୋଇ ନଥିଲା ?'

ମେରଆ ତାଙ୍କ ପାଇଁ ଖଣ୍ଡେ ମେଣ୍ଢା ଚମ ଆଣି ତଳେ ଥୋଇ ଦେଇ କହିଲା 'ତୁମ ଜୋତା ଶୁଖିବାଯାଏ ଏହି ଚମ ଉପରେ ପାଦରଖ ।'

ଚମ ଖଣ୍ଡିକ ତଟକା ଶୁଖିଥାଏ ଏବଂ ତାହା କଷ କରାହୋଇ ନଥାଏ ବୋଲି ଜର୍ଡାନ୍ ମୋଜାପିନ୍ଧା ଗୋଡ଼ ତା ଉପରେ ରଖିବାରୁ ତାହା ପାର୍ଚ୍ଚମେଣ୍ଟ କାଗଜ ପରି ମଡ଼ ମଡ଼ ହେଲା । ଚୁଲ୍ଲୀ ଲଈ ଧୂଆଁ ହେଉଥିବାରୁ ପିଲାର୍ ମେରଆକୁ କାଠ ଦେଇ ଫୁଙ୍କି ଜଳାଇ ଦେବାକୁ କହିଲା ।

ମେରଆ ଜବାବ ଦେଲା 'ତୁ ନିଜେ ଜଳା, ମୁଁ ସୋର୍ଡୋ ଛାଡ଼ି ଯାଇଥିବା ବୋତଲ ଖୋଜୁଅଛି ।'

'ବୋତଲଟା ବସ୍ତା ପଛପଟେ ଅଛି । ଦେଖୁଛୁ ତୁ ଦୁଧଖିଆ ପିଲାଙ୍କ ପରି ତାଙ୍କର ଯତ୍ନ ନେବାକୁ ଆରମ୍ଭ କଲୁଣି ।' ପଲାର କହିଲା ।

ମେରଆ କହିଲା 'ନା, ତା ନୁହେ, ଜଣେ ଲୋକ ଓଦା ହୋଇ ଅଣ୍ଟା ଭୋଗୁଥିଲେ ଯାହା କରିବା କଥା ମୁଁ ସେତକ କରୁଅଛି । ସେ ପୁଣି ଏହିକ୍ଷଣି ପଦାରୁ ଆସିଛନ୍ତି ।' ଏହାପରେ ରବର୍ଟ ଜର୍ଡାନ୍ ବସିଥିବା ଜାଗାକୁ ବୋତଲଟା ଆଣି କହିଲା 'ନେଇ ନଅ । ଆଜି ଦ୍ୱିପ୍ରହର ଯାଏଁ ଏହିମାନ ବୋତଲ । ବୋତଲଟି ଦ୍ୱାରା ସୁନ୍ଦର ଲାମ୍ପ ମଧ୍ୟ ଜଳାଇ ହେବ । ତୁମେ ଏହା କପର ଖାଇବ ରବର୍ଟୋ ।' ସେ ବୋତଲଟିକୁ ପ୍ରଶଂସା ଦୃଷ୍ଟି ଦେଲା ।

ରବର୍ଟ ଜର୍ଡାନ୍ କହିଲେ ଯେ 'ଇଂରେଜ ସମ୍ବୋଧନଟା କଅଣ ବଦଳିଗଲା ?'

ଲଜ୍ଜାରେ ମୃଦୁ କଣ୍ଠରେ ମେରଆ କହିଲା 'ଅନ୍ୟମାନଙ୍କ ଆଗରେ ମୁଁ ତୁମକୁ ରବର୍ଟୋ ବୋଲି ଡାକଥାଏଁ । ହଁ, ତୁମେ ଏହା କପର ପିଇବ ?'

ପାବ୍‌ଲୋ ରବର୍ଟ ଜର୍ଡାନ୍ ପ୍ରତି ମୁଣ୍ଡ ହଲାଇ ତତ୍‌କ୍ଷଣାତ୍ କହିଲା 'ହଁ, ରବର୍ଟୋ। କଅଁ ଲର୍ଡ ରବର୍ଟୋ, କେମିତି ପିଇବ ?'

ରବର୍ଟ ଜର୍ଡାନ୍ ପଚାରିଲେ 'ତୁ କଅଣ କରୁ ଗୁହ୍ନ ?'

ପାବ୍‌ଲୋ ମୁଣ୍ଡରେ ଟୋପି ନାଡ଼ି କରି କହିଲା 'ମୁଁ ତ ମଦ ପିଇ ପିଇ ମାତାଲ ହୋଇ ଗଲଣି ।'

ରବର୍ଟ ଜର୍ଡାନ୍ ସ୍ପେନ ଭାଷାରେ କହିଲେ 'ତେବେ ସୁରା ଦେବତା ପାଖକୁ ଯାଆ ।'

"ସେ କିଏ ?" ପାବ୍‌ଲୋ ପଚାରିଲା ।

ରବର୍ଟ ଜର୍ଡାନ୍ କହିଲେ 'ତୋର ଜଣେ ସାଥୀ ।'

ପାବ୍‌ଲୋ ଭାରି ଗଳାରେ କହିଲା 'ଏହି ପର୍ବତରେ ମୁଁ ତ କେବେ ତାଙ୍କ ନାମ ଶୁଣି ନାହିଁ ।'

ରବର୍ଟ ଜର୍ଡାନ୍ ମେରିଆକୁ କହିଲେ 'ଆନ୍‌ସେଲ୍‌ମୋକୁ ଏକ ପିଆଲା ଦେ । ସେ ହେମାଳ ଭେଟିଅଛି ।' ସେ ଶୁଖିଲା ମୋଜା ହିଲେ ପିନ୍ଧୁଥିଲେ । ପିଆଲାରେ ମଦ ଓ ପାଣି ଖୁବ୍ ପରିଷ୍କାର ଏବଂ ସାମାନ୍ୟ ଉତ୍ତେଜନା ବୋଧହେଲା ।

କିନ୍ତୁ ତାଙ୍କର ସେହି ଅଦ୍ଭୁତ ସୁରାସାର ପିଇଲେ ପେଟ ଭିତର ଯେପରି ମୋଡ଼ି ହୁଏ ସେପରି ହେଲ ନାହିଁ । ସେ ଭାବିଲେ ସୁରାସାର ସମାନ କିଛି ହୋଇ ନପାରେ । ଏ ଜାଗାରେ ହୁଇସ୍କି ମଦ ସ୍ୱପ୍ନ । ତାହା କେବଳ ସ୍ପେନର ଲଗ୍ରାଞ୍ଜାରେ ସୁଲଭ୍ୟ । ଯୋଡ଼ି ତାଙ୍କ ଭଳି ବିସ୍ଫୋରଣକାରୀଙ୍କୁ ସାକ୍ଷାତ କରିବାକୁ ଆସି ହୁଇସ୍କି ବୋତଲଟିଏ ଆଣି ଏଠାରେ ଗୁଡ଼ିଯିବା ଖୁବ୍ ବନ୍ଧୁତ୍ୱର ନିଦର୍ଶନ । ଏହା ସାଧାରଣ ଶିଷ୍ଟତା ହୋଇ ନପାରେ । ତାହା ହୋଇଥିଲେ ବୋତଲ ଗୁଡ଼ି ନଯାଇ ସମସ୍ତଙ୍କ ସଙ୍ଗରେ ବସି ପିଇବା କଥା । ଅନ୍ତତଃ ଫରାସୀମାନେ ଏହାହିଁ କରିଥାନ୍ତି ଏବଂ ବାକି ପଡ଼ିଲେ ଅନ୍ୟ ଉପଲକ୍ଷ ପାଇଁ ସାଇତି ରଖି ଦିଅନ୍ତି । ଏପରି କରିବାର ପ୍ରକୃତ ଅର୍ଥ ହେଉଛି ଯେ ସେ ଭାବିଛି ଆମେ ଏହାକୁ ଖୁବ୍ ପସନ୍ଦ କରିବୁ କାରଣ ଆମେ ଏମିତି ଏକ ଜାଗାରେ ଏମିତି ଏକ କାମରେ ଲିପ୍ତ ଯେ ଅନ୍ୟ କଥା ଭାବିବାର ଅବସର ନାହିଁ । ଏହାହିଁ ହେଉଛି ସ୍ପେନ ଦେଶୀୟ ପ୍ରଥା । ଏଥିରୁ ନବାଗତଙ୍କ ପ୍ରତି ତାହାର ଶ୍ରଦ୍ଧା ସଦିଚ୍ଛା ଓ ସ୍ନେହ ପରିସ୍ଫୁଟ । ନାନାପ୍ରକାର ସ୍ପେନସ୍ ଲୋକ ଅଛନ୍ତି । ତଥାପି ହୁଇସ୍କି ଆଣିଦେବା ଅତି ଚମତ୍କାର ।

ଅନ୍‌ସେଲ୍‌ମୋକୁ ପଚାରିଲେ "କେମିତି ଲାଗୁଛି ?" ବୁଢ଼ା ଚୁଲ୍ଲୀମୁଣ୍ଡରେ ତାହାର ବିଶାଳ ହାତରେ ପିଆଲା ଧରି ମୁଣ୍ଡ ହଲାଇ ହସୁଥାଏ ।

"ଭଲ ନୁହେ ?' ସେ ପୁଣି ପଚାରିଲେ ।

ଆନ୍‌ସେଲ୍‌ମୋ କହିଲା "ଟୋକା ଏଥିରେ ପାଣି ମିଶାଇ ଦେଇଅଛି ।"

ମେରିଆ କହିଲା "ହଁ ତ । ରବର୍ଟୋ ସେମିତି ପସନ୍ଦ କରନ୍ତି । କାହିଁକି ତୁ କଅଣ ଭିନ୍ନ ଭାବରେ ପିଉ ?"

ଆନ୍‌ସେଲ୍‌ମୋ କହିଲା "ନା, ନା ସେପରି କିଛି ନୁହେ । ତେବେ ମୁଁ ଗୁହେ ପିଉ ପିଉ ପେଟ ଭିତର ଜଳି ଉଠିବ ।"

ରବର୍ଟ ଜର୍ଡାନ୍ କହିଲେ 'ହଉ, ପାଣି ମିଶା ମୋତେ ଦେ । ଆଉ ଅମିଶାରୁ କିଛି ତାକୁ ଦେ । ତା ପେଟ ଜଳୁ ।'

ସେ ଉକ୍ତ ପିଆଲାର ମଦକୁ ନିଜ ପାତ୍ରରେ ଢାଳି ନେଇ ଖାଲି ପିଆଲା ମେରିଆକୁ ଦେବାରୁ ମେରିଆ ବୋତଲରୁ ହୁଇସ୍କି ସେଥିରେ ଦେଲା । ଆନ୍‌ସେଲ୍‌ମୋ ଆରାମରେ ମୁଣ୍ଡ ପଛକୁ ନୁଆଇଁ ତାହା ନିଜ ତଣ୍ଟିରେ ଢାଳିଦେଲା । ମେରିଆ ବୋତଲ ଧରି ଠିଆ ହୋଇଥାଏ । ବୁଢ଼ାର ଅଖି ପୋଡ଼ି ପାଣି ବାହାରି ଆସିଲା । କହିଲା 'ଏହାହିଁ ଦରକାର ।' ଏହାପରେ ଓଠ ଚାଟିଲା ।

ମେରିଆ ରବର୍ଟ ଜର୍ଡାନ୍‌ଙ୍କ ପାଖକୁ ଆସି ସେ ଖାଇବାକୁ ପ୍ରସ୍ତୁତ କି ନୁହେ ବୋଲି ପଚାରିଲା । ହୁଇସ୍କି ବୋତଲ ତା' ହାତରେ ଥାଏ । ଖାଦ୍ୟ ପ୍ରସ୍ତୁତ ହୋଇ ଗଲାଣି କି ନାହିଁ ବୋଲି ରବର୍ଟ ଜର୍ଡାନ୍ ପ୍ରଶ୍ନ କଲାରୁ କହିଲା "ଯେତେବେଳେ ଇଚ୍ଛା ଖାଇପାର ।"

ଅନ୍ୟମାନେ ଖାଇ ସାରିଲେଣି କି ନାହିଁ ବୋଲି ପଚାରିବାରୁ କହିଲା "ମୁଁ, ଅନ୍‌ସେଲ୍‌ମୋ ଓ ଫର୍ଣ୍ଣାଣ୍ଡୋ ବ୍ୟତୀତ ଅନ୍ୟ ସମସ୍ତେ ଖାଇ ନେଲେଣି ।"

'ହଉ ତେବେ, ଆମକୁ ପରସ । ତୁ ନିଜେ ?' ରବର୍ଟ ଜର୍ଡାନ୍ ପ୍ରଶ୍ନ କଲେ ।

'ମୁଁ ପରେ ପିଲାର୍ ସହିତ ଖାଇବି ।'

'ଆମ ସାଙ୍ଗରେ ଖା ।'

'ନା, ସେଟା ଭଲ ଦଶିବ ନାହିଁ ।'

'ନାହିଁ, ଆ, ଆମ ସାଙ୍ଗେ ଖାଇବୁ । ଆମ ଦେଶରେ ସ୍ୱାମୀ ନିଜ ସ୍ତ୍ରୀ ଆଗରୁ ଖାଆନ୍ତି ନାହିଁ ।'

'ସେଟା ତୁମର ଦେଶ । ଏଠାରେ ପରେ ଖାଇବା ଭଲ ।'

ପାବ୍‌ଲୋ ମୁଣ୍ଡ ଟେକି କହିଲା 'ତାଙ୍କ ସାଙ୍ଗରେ ଖା, ପି, ଶୋ, ମର ଏବଂ ତାଙ୍କ ଦେଶ ପ୍ରଥା ଅନୁସରଣ କର ।'

ଲୋକଟା ସାମନାରେ ଠିଆ ହୋଇ ରବର୍ଟ ଜର୍ଡାନ୍ ପଚାରିଲେ "ତୋତେ କଅଣ ନିଶା ଧରିଲାଣି ?" ସେହି ଅପରିଚ୍ଛନ୍ନ ଲୋକ ମନ ଖୁସିରେ ଗୃହି ପଚାରିଲା 'ତୁମ ଦେଶ କେଉଁଠି ? ଇଂରେଜ ଯେଉଁଠାରେ ମାଇପେ ମିଶିପେଙ୍କ ସଙ୍ଗେ ଏକାଠି ଖାଆନ୍ତି ।'

'ମାର୍କିନ ଯୁକ୍ତରାଷ୍ଟ୍ରର ମଣ୍ଟାନା ରାଜ୍ୟରେ ।'

'ସେଠି କଅଣ ପୁରୁଷ ଲୋକ ମହିଳାଙ୍କ ପରି ଗାଉନ୍ ପିନ୍ଧନ୍ତି ?'

"ନା । ସେପରି ହୁଏ ସ୍କଟ୍‌ଲାଣ୍ଡ୍‌ରେ ।"

"କିନ୍ତୁ ଶୁଣ ଇଂରେଜ, ତୁମେ ଯେତେବେଳେ ଗାଉନ୍ ପିନ୍ଧିବ—।'

ରବର୍ଟ ଜର୍ଡାନ୍ କହିଲେ "ମୁଁ ପିନ୍ଧେ ନାହିଁ ।"

ପାବ୍‌ଲୋ କହି ଲାଗିଲା 'ତୁମେ ଯେତେବେଳେ ଗାଉନ୍ ପିନ୍ଧ, ତା ତଳେ କଅଣ ପିନ୍ଧ ?'

ରବର୍ଟ ଜର୍ଡାନ୍ କହିଲେ "ସ୍କଟ୍‌ଲାଣ୍ଡ୍‌ବାସୀମାନେ କଅଣ ପିନ୍ଧନ୍ତି ମୁଁ ଜାଣେ ନାହିଁ । ବେଳେ ବେଳେ ମୁଁ ତାହା ବିଚାର ମନେ କରିଥାଏଁ ।"

ଏସ୍‌କୋସେସ୍ ମାନେ ନୁହନ୍ତି । ତାଙ୍କ କଥା କିଏ ପଚାରେ । ଏମିତି ଗୋଟାଏ ବିରଳ ନାମରୁ ବା କଅଣ ଯାଏ ଆସେ । ମୁଁ ତାହା ଖାତିର କରେ ନାହିଁ । ମୁଁ ପଚାରୁଛି, ଇଂରେଜ, ଗାଉନ୍ ତଳେ ତୁମ ଦେଶରେ କଅଣ ପିନ୍ଧି ଥାଆନ୍ତି ।'

ରବର୍ଟ ଜର୍ଡାନ୍ କହିଲେ "ମୁଁ ପରା ତୋତେ ଦୁଇଥର କହି ସାରିଲଣି ଯେ ଆମ୍ଭେମାନେ ଗାଉନ୍ ପିନ୍ଧୁ ନାହୁଁ । ମାତାଲ ହୋଇ କମ୍ବା ରହସ୍ୟରେ ମଧ୍ୟ ପିନ୍ଧି ନଥାଉ ।"

ପାବ୍‌ଲୋର ଏକା ପ୍ରଶ୍ନ ସେ ଗାଉନତଳେ କଅଣ ପିନ୍ଧନ୍ତି । ଏକଥା ସମସ୍ତେ ଜାଣନ୍ତି । ସୈନ୍ୟମାନେ ମଧ୍ୟ ଗାଉନ୍ ପିନ୍ଧି ଥିବାର ଫଟୋ ସେ ଦେଖି ଅଛି । ସର୍କସରେ ମଧ୍ୟ ଦେଖି ଅଛି । ଅତଏବ ସେ କଅଣ ପିନ୍ଧନ୍ତି ସେ କଥା କହିବାକୁ ରବର୍ଟ ଜର୍ଡ଼ାନ୍‌ଙ୍କୁ ଜିଦ୍ କଲା ।

ରବର୍ଟ୍ ଜର୍ଡ଼ାନ୍ ଚିଡ଼ିଯାଇ କହିଲେ 'ତୋ ମୁଣ୍ଡ ଗଣ୍ଡି ।'

ଏ କଥାରେ ଆନ୍‌ସେଲ୍‌ମୋ ଓ ଅନ୍ୟ ଶ୍ରୋତାମାନେ ହସି ପକାଇଲେ । କେବଳ ମାତ୍ର ଫର୍ଣ୍ଣାଣ୍ଡୋ ଛଡ଼ା । ଏମିତକା ଅଶ୍ଳୀଳ କଥା ସ୍ତ୍ରୀ ଲୋକଙ୍କ ଉପସ୍ଥିତରେ କହିବା ତାକୁ ବଡ଼ ଖରାପ ଲାଗିଲା ।

ପାବ୍‌ଲୋ କହିଲା "ତାହା ସାଧାରଣ ଖାଦ୍ୟ । କିନ୍ତୁ ମୁଁ ଭାବୁଛି, ସେଥିରୁ ବହୁତ ଗୁଡ଼ାଏ ଥିଲେ ତୁମେ ଆଉ ଗାଉନ୍ ପିନ୍ଧନ୍ତି ନାହିଁ ।"

ଖଣ୍ଡିଆନାକା ପ୍ରିମିଟିଭୋ କହିଲା "ଇଂରେଜ, ସେ ନିଶାରେ ଚୁର୍ ଅଛି । ଆଉ ତାକୁ କଥା କହିବାକୁ ଦିଅନାହିଁ । ବରଂ କହିଲ ଦେଖି ତୁମ ଦେଶରେ କ'ଣ ଫସଲ ହୁଏ ।'

ରବର୍ଟ ଜର୍ଡ଼ାନ୍ ଜବାବ ଦେଲେ 'ଗୋରୁ ଛେଳି, ମେଣ୍ଢା, ପ୍ରଭୃତି ପଶୁ ଏବଂ ଗହମ, ସିମ ଓ ବିଟ୍ ପ୍ରଭୃତି ଶସ୍ୟ ।

ତନହେଁ ଯାକ ଅନ୍ୟ ଲୋକଙ୍କୁ ଲଗାଲଗି ହୋଇ ଟେବୁଲ୍‌ରେ ବସିଲେ । କେବଳ ପାବ୍‌ଲୋ ମଦ ବୋଲ୍ ନିକଟରେ ଟିକିଏ ଘୁଞ୍ଚିକରି ବସିଥିଲା । ଗତ ରାତି ପରି ଆଜି ମଧ୍ୟ ମାଂସ ସିଝା ଖାଇବାକୁ ମିଳିଲା । ରବର୍ଟ ଜର୍ଡ଼ାନ ଗୋ-ଗ୍ରାସରେ ଖାଇବାକୁ ଲାଗିଲେ ।

ପ୍ରିମିଟିଭୋ କଥାବାର୍ତ୍ତା ଚଳାଇବା ପାଇଁ ଭଦ୍ର ଭାବରେ ପଚାରିଲା "ତୁମ ଦେଶରେ ପାହାଡ଼ ପର୍ବତ ମଧ୍ୟ ଥିବ ?" ପାବ୍‌ଲୋର ମାତାଲମିରେ ସେ ବିବ୍ରତ ବୋଧ କରୁଥିଲା ।

'ହଁ, ବହୁତ ଉଚ୍ଚ ପର୍ବତମାନ ଅଛି ।'

'ଚରାଭୂଇଁ ?'

'ଚମତ୍କାରଚରାଭୂଇଁ ବଣରେ ଅଛି । ତାକୁ ସରକାର ନିୟନ୍ତ୍ରଣ କରଆନ୍ତି । ଶୀତଦିନେ ପଶୁମାନେ ପାହାଡ଼ ତଳେ ଚରନ୍ତି ।'

'ସେଠା ଜମିର ମାଲିକ ଗୃହୀମାନେ ତ ?'

ଅଧିକାଂଶ ଜମି ହେଉଛି ଗ୍ରାମୀମାନଙ୍କର । ପ୍ରଥମେ ସବୁ ଜମି ସରକାରଙ୍କର ଥିଲା । କିନ୍ତୁ ଯେ କେହି ଲୋକ ସେଠାରେ ବସ ବାସ କରି ଓ ତାହାର ଉନ୍ନତି କରିବ ବୋଲି ଚୁକ୍ତି କରି ସରକାରଙ୍କ ଠାରୁ ଦେଢ଼ଶ ମାଣ ପର୍ଯ୍ୟନ୍ତ ଜମି ନେଇ ପାରେ ।

ଅଗଷ୍ଟିନ୍ ପଚାରିଲା "ଇଏତ ଏକ ଗୃହ ଜମି ସଞ୍ଚାର ବ୍ୟବସ୍ଥା । ଏହା କିପରି ହୋଇପାରିଲା କୁହତ ?'

ରବର୍ଟ ଜର୍ଡ଼ାନ ତାଙ୍କ ଦେଶର ଥାନା ପାହି ପ୍ରଭୃତି ଜମିର ବର୍ଣ୍ଣନା କଲେ । ସେ ନିଜେ ଏହାକୁ କୃଷି ସଞ୍ଚାର ବୋଲି ଭାବି ନଥିଲେ ।

ପ୍ରିମିଟିଭୋ କହିଲା "ଏହାତ ଅତି ଚମତ୍କାର ବ୍ୟବସ୍ଥା । ତେବେତ ତୁମ ଦେଶରେ ସାମ୍ୟବାଦ ପ୍ରବର୍ତ୍ତିତ ହୋଇ ଅଛି ।'

'ନା । ତାହା କେବଳ ସାଧାରଣତନ୍ତ୍ର ଶାସନରେ ହିଁ ସମ୍ଭବ ।'

ଅଗଷ୍ଟିନ କହିଲା 'ମୋ ମତରେ ସବୁ ବିଷୟ ସାଧାରଣ ତନ୍ତ୍ର ଅଧୀନରେ ସମ୍ଭବ । ଅନ୍ୟ କୌଣସି ପ୍ରକାର ଶାସନ ପ୍ରଣାଳୀର ଆବଶ୍ୟକତା ନାହିଁ ।'

ତୁମ ଦେଶରେ ଭୂସ୍ୱାମୀ ଅଛନ୍ତି ? ଆନ୍ଦ୍ରେଜ ପଚାରିଲା ।

'ବହୁତ ।'

'ତେବେତ ବହୁତ ବେଆଇନ କାମ ଚାଲୁଥିବ ?

'ବହୁତ ।'

'ତୁମେ ତାକୁ ଦୂର କରିବ ?'

'ଆମେତ ବାରମ୍ବାର ଚେଷ୍ଟା କରୁଅଛୁ । ତଥାପି ଅନେକ ରହି ଯାଇଛି ।'

'କିନ୍ତୁ ଖୁବ୍ ବଡ଼ ବଡ଼ ଯମିଦାରୀ ନାହିଁ । ଯାହାକୁ ନିଶ୍ଚୟ ଭାଙ୍ଗିଦେବା ଦରକାର ପଡ଼ି ପାରେ ?'

'ହଁ ଅଛି, କିନ୍ତୁ ଅନେକଙ୍କର ଅଭିମତ ଯେ ଟିକଶ ହାର ଯୋଗୁଁ ତାହା ବଳେ ଭାଙ୍ଗି ଯିବ ।'

'କିପରି ?'

ରବର୍ଟ ଜର୍ଡାନ ବେଲରେ ପୋଛୁ ପୋଛୁ ତାଙ୍କୁ ଆୟ କର ଏବଂ ଉତ୍ତରାଧିକାରୀ କର କପର ଲାଗୁ ହୁଏ ତାହା ବୁଝାଇ ଦେଇ କହିଲେ ,କିନ୍ତୁ ବଡ଼ ଜମିଦାରୀ ସବୁ ରହି ଯାଇଅଛି । ଏହା ଛଡ଼ା ଜମି ଉପରେ ଭୂରାଜସ୍ୱ ମଧ୍ୟ ଦେବାକୁ ପଡ଼େ ।'

'ବଡ଼ ବଡ଼ ଜମିଦାରମାନେ ଏବଂ ଧନୀ ଲୋକମାନେ ଏପରି ଖଜଣା ଧାର୍ଯ୍ୟ ବିରୁଦ୍ଧରେ ବିପ୍ଳବ କରିବେ । ଏଭଳି ଖଜଣା ବିପ୍ଳବାତ୍ମକ ବୋଲି ମୁଁ ଭାବୁଛି । ନିଜ ନିଜର ଅସ୍ତିତ୍ୱ ରକ୍ଷା କରିବା ପାଇଁ ସେମାନେ ସରକାରଙ୍କ ବିରୁଦ୍ଧରେ ବିଦ୍ରୋହ କରିବେ । ଫ୍ୟାସିଷ୍ଟମାନେ ଆମର ଏଠାରେ ଯେମିତି କରି ଅଛନ୍ତି ।' ପ୍ରିମିଟିଭୋ କହିଲା ।

'ଏହା ମଧ୍ୟ ସମ୍ଭବ ।'

'ତେବେ ତ ଆମଭଳି ତୁମେ ମଧ୍ୟ ତୁମ ସରକାରଙ୍କ ବିରୁଦ୍ଧରେ ଲଢ଼ିବ ।'

'ହଁ, ଆମକୁ ଲଢିବାକୁ ହେବ ।'

'କିନ୍ତୁ ତୁମ ଦେଶରେ ଫ୍ୟାସିଷ୍ଟ ବେଶୀ ନାହାନ୍ତି ?'

'ଅନେକ ଅଛନ୍ତି କିନ୍ତୁ ସେମାନେ ନିଜକୁ ଫ୍ୟାସିଷ୍ଟ ବୋଲି ଜାଣି ନାହାନ୍ତି । ମାତ୍ର ସମୟ ଆସିଲେ ତାହା ଜାଣି ପାରିବେ ।'

'କିନ୍ତୁ ବିଦ୍ରୋହ ନ କରିବା ଯାଏ ତୁମେତ ତାଙ୍କୁ ମାରି ପାରିବ ନାହିଁ ?'

"ନା, ଆମେ ତାଙ୍କୁ ମାରି ପାରିବୁ ନାହିଁ । କିନ୍ତୁ ଆମ୍ଭେମାନେ ଲୋକମାନଙ୍କୁ ଶିକ୍ଷା ଦେଇପାରୁ । ସେମାନେ ଫ୍ୟାସିଷ୍ଟବାଦକୁ ଭୟ କରି ତାହା ସହିତ ଲଢ଼ିବାକୁ ପ୍ରସ୍ତୁତ ରହିବେ" ରବର୍ଟ ଜର୍ଡାନ ଉତ୍ତର ଦେଲେ ।

ଆଣ୍ଡ୍ରିଜ୍ ପୁଣି ପଚାରିଲା "କେଉଁ ଦେଶରେ ଫ୍ୟାସିଷ୍ଟ ନାହାନ୍ତି ଜାଣ ?"

"କେଉଁଠି ?"

ଆଣ୍ଡ୍ରିଜ ହସି ହସି ଜବାବ ଦେଲା "ପାବ୍‌ଲୋର ସହରରେ ।"

ପ୍ରିମିଟିଭୋ ପଚାରିଲା "ପାବ୍‌ଲୋ ଗ୍ରାମରେ କଅଣ ଘଟିଥିଲା ଜାଣ ?"

ରବର୍ଟ ଜର୍ଡାନ କହିଲେ "ସେ ସେ ତାହା ପିଲାର୍ ଠାରୁ ଶୁଣି ଅଛନ୍ତି ।"

ପାବ୍‌ଲୋ ଧୀର ଗଳାରେ କହିଲା "ସେ ସ୍ତ୍ରୀଲୋକଟା ଶେଷପର୍ଯ୍ୟନ୍ତ ସବୁ ଦେଖିପାରି ନଥିଲା କାରଣ ସେ ଝିଙ୍କାପାଖେ ଚଉକିରୁ ପଡ଼ି ଯାଇଥିଲା ଏଣୁ ତୁମକୁ ସବୁ କଥା କହିପାରି ନଥିବ ।"

ପିଲାର୍ କହିଲା "ହଉ, ମୁଁ ଯେତେବେଳେ ସବୁ କଥା ଜାଣେ ନାହିଁ, ତେବେ ତୁ ତାଙ୍କୁ ସବୁ କଥା କହି ଦେ ।"

ପାବ୍‌ଲୋ କହିଲା "ନା, ମୁଁ ସେକଥା କାହାକୁ କେବେ କହି ନାହିଁ ।"

ପିଲାର୍ ଜବାବ ଦେଲା "କହିନାହୁଁ କିମ୍ବା କହିବୁ ନାହିଁ । ବର୍ତ୍ତମାନ ତୁ ସେ ଘଟଣା ପାଇଁ ଅନୁତାପ କରୁଅଛୁ ।"

ପାବ୍‌ଲୋ କହିଲା "ନା, ଏକଥା ମଧ୍ୟ ସତ୍ୟ ନୁହେଁ । ଯଦି ମୋପରି ଅନ୍ୟ ସମସ୍ତେ ଫ୍ୟାସିଷ୍ଟ୍‌ମାନଙ୍କୁ ମାରି ପକାଇଥାନ୍ତେ ତେବେ ଆଜି ଏହି ଯୁଦ୍ଧ ଚାଲି ନଥାନ୍ତା । କିନ୍ତୁ ଯାହା ଘଟିଯାଇଛି ତାହାର ପୁନରାଭିନୟ ପାଇଁ ମୁଁ ପ୍ରସ୍ତୁତ ନୁହେଁ ।"

ପ୍ରିମିଟିଭୋ "ତୁ କଅଣ ନିଜ ରାଜନୀତି ବଦଳାଇବାକୁ ଯାଉଛୁ ? ନତୁବା ଏପରି କହିବାର ତାତ୍ପର୍ଯ୍ୟ କଅଣ ?"

"ପାବ୍‌ଲୋ ଉତ୍ତର ଦେଲା ଯେ ସେ ତାର ରାଜନୀତିକ ମତ ବଦଳାଇ ନାହିଁ ମାତ୍ର ସେ କାମଟା ଅତି ଜଘନ୍ୟଥିଲା । ସେତେବେଳେ ସେ ମଧ୍ୟ ଥିଲା ଗୋଟାଏ ରାକ୍ଷସ ।"

ପିଲାର୍ କହିଲା "ଆଉ ଏବେ ହୋଇଅଛୁ ମଦୁଆ ।"

"ହଁ, ତୋ ଅନୁମତି ନେଇ ।" ପାବ୍‌ଲୋ କହିଲା ।

ପିଲାର୍ କହିଲା "ତୁ ସେହି ରାକ୍ଷସ ଥିଲାବେଳେ ମୁଁ ତୋତେ ଅଧିକ ପସନ୍ଦ କରୁଥିଲି । ମଦୁଆ ହେଲେ ମଣିଷଙ୍କର କଥା ଅଲଗା । ଚୋରି ନ କଲାବେଳେ ଚୋର ମଧ୍ୟ ଏହି ଶ୍ରେଣୀର । ଅନ୍ୟଠାରୁ ଧମକ ଦେଇ ପଇସା ଖାଇବା ଲୋକ ନିଜ ଘରେ ସେପରି କରି ନଥାଏ । ହତ୍ୟାକାରୀ ନିଜ ଘରେ ହାତ ଧୋଇ ସାଫ୍ ରହିପାରେ । କିନ୍ତୁ ମଦୁଆ ଅତି ଘୃଣ୍ୟ । ସେ ନିଜ ରକ୍ତ ବାନ୍ତିରେ ଜୁଡ଼ୁବୁଡ଼ୁ ହୋଇ ନିଜ ଶରୀରକୁ ମଦରେ ମିଳାଇ ଦେଇଥାଏ ।"

ପାବ୍‌ଲୋ ଧୀର ଭାବରେ କହିଲା "ତୁ ତ ଜଣେ ସ୍ତ୍ରୀଲୋକ; ତୁ କିଛି ବୁଝି ପାରିବୁ ନାହିଁ । ମୁଁ ମଦ ପିଇ ମାତାଲ କିନ୍ତୁ ସୁଖି ରହିପାରନ୍ତି । କେବଳ ମାତ୍ର ସେ

ଲୋକ ହତ୍ୟାର ଚନ୍ତା ମୋତେ ବିମର୍ଷ କରି ପକାଇଛି । ମୁଁ ମର୍ମାନ୍ତିକ ଦୁଃଖ ବୋଧ କରୁଅଛି ।”

ପିଲାର୍ କହିଲା “ଦବୁଡଲୋ ସୋର୍ଡୋ ଆଣିଥିବା ଦରବରୁ କିଛି । ତା’ ବିମର୍ଷଭାବ ବଢ଼ି ଯାଉଛି । କିଛି ପିଇ ନେଇ ଗୁଙ୍ଗା ହୋଇଉଠୁ ।”

ପାବ୍ଲୋ କହିଲା ‘ଯଦି ଶକ୍ତି ଥାଆନ୍ତା ମୁଁ ସେମାନଙ୍କୁ ଜୀଆଇ ଦିଅନ୍ତି ।’

ଅଗଷ୍ଟିନ୍ ବିରକ୍ତିରେ କହି ଉଠିଲା ‘ଏ ଜାଗାଟା କଅଣ ପାଲଟିଲା କି ? ଭେଇପ ଉଚ୍ଛନ ଯାଉନାହିଁ ।’

ପାବ୍ଲୋ କହିଲା ‘ମୁଁ ଗୋଟି ଗୋଟି କରି ସଭିଙ୍କୁ ବଞ୍ଚାଇ ଦାଅନ୍ତି ।’

ଅଗଷ୍ଟିନ୍ ଚଳେଇ କରି କହିଲା ‘ଗାଡପଣ, ମୁହଁ ବନ୍ଦକର ନଚେତ୍ ଏଠାରୁ ବାହାରି ଯା । ତୁ ଯାହାଙ୍କୁ ମାରିଥିଲୁ ସେଗୁଡ଼ା ଥିଲେ ଫ୍ୟାସିଷ୍ଟ୍ ।’

‘କହିଲ ତ, ମୁଁ ତାଙ୍କୁ ବଞ୍ଚାଇବାକୁ ବ୍ୟଗ୍ର’ ପାବ୍ଲୋ କହିଲା ।

ପିଲାର କହିଲା, ‘ତେବେ ତୁ ପାଣିରେ ଗୁଳିବୁ । ମୋ ଜୀବନରେ ତୋଭଳି ମଣିଷ ଦେଖି ନାହିଁ । ଗତ କାଲି ପର୍ଯ୍ୟନ୍ତ ତୋର କିଛି ହେଲେ ମନୁଷ୍ୟତ୍ୱ ଥିଲା । ଆଜି ଆଉ ଅଣୁମାତ୍ର ନାହିଁ । ତଥାପି ତୋ ଦୁଃଖରେ ତୁ ସୁଖ ବୋଧକରୁ ।’

ପାବ୍ଲୋ କହିଲା “ଉଚିତଥିଲା ସମସ୍ତଙ୍କୁ ମାରି ଦେବାକୁ ନରୁବା କାହାକୁ ନୁହେ ।”

ଅଗଷ୍ଟିନ କହିଲ ‘ଇଂରେଜ, ତୁମେ ତା କଥାରେ କର୍ଣ୍ଣପାତ କର ନାହିଁ । ସେ ମାତାଲ । ତୁମେ ସ୍ପେନକୁ କିପରି ଆସିଲ ?’

ରବର୍ଟ ଜର୍ଡାନ୍ କହିଲେ “୧୨ ବର୍ଷ ପୂର୍ବେ ଏ ଦେଶର ଅବସ୍ଥା ଜାଣିବାକୁ ଓ ଭାଷା ଶିକ୍ଷା କରିବାକୁ ମୁଁ ଆସିଥିଲି । ମୁଁ ଏକ ବିଶ୍ୱବିଦ୍ୟାଳୟରେ ସ୍ପେନ୍ ଭାଷାର ଶିକ୍ଷକତା କରିଥାଏ ।”

ପ୍ରିମିଟିଭୋ କହି ଉଠିଲା ‘ହଁ, ହଁ, ତୁମ ଚେହେରା ଅଧ୍ୟାପକ ଚେହେରା ପରି ଦିଶୁଛି ।’

ପାବ୍ଲୋ କହିଲା ‘ଜାଣୁ ତାଙ୍କର ଦାଢ଼ି ନାହିଁ ଦେଖିନାଥ ।’

'ତୁମେ କଅଣ ସତକୁ ସତ ଅଧ୍ୟାପକ ?'

'ନା ଜଣେ ଶିକ୍ଷକ ।'

'କିନ୍ତୁ ତୁମେ ତ ଶିକ୍ଷାବିଦ୍ ।'

'ହଁ ।'

ଆଣ୍ଡ୍ରିଜ୍ ପଚାରିଲା "ସ୍ପେନ ଭାଷା ପଢ଼ାଅ କାହିଁକି, ତୁମେ ଯେତେବେଳେ ଇଂରେଜ, ସେତେବେଳେ ଇଂରାଜୀ ପଢ଼ାଇବା ଅଧିକ ସହଜ ।"

'ସେ ତ ତୁମ ମୋ ପରି ସ୍ପେନ ଭାଷା କହନ୍ତି, ଅତଏବ ସ୍ପେନ ଭାଷା କାହିଁକି ନ ପଢ଼ାଇବେ ।' ଆନ୍‌ସେଲ୍‌ମୋ କହିଲା ।

ଫର୍ଣ୍ଣାଣ୍ଡୋ କହିଲା 'ବିଦେଶୀ ପକ୍ଷରେ ଏହା ଏକ ପ୍ରକାର ଧୃଷ୍ଟତା । ଅବଶ୍ୟ ମୁଁ ତୁମ ଅସମ୍ମାନ ଉଦ୍ଦେଶ୍ୟରେ ଏକଥା କହୁନାହିଁ ଲର୍ଡ ରବର୍ଟୋ !'

ପାବ୍‌ଲୋ ମନେ ମନେ ସନ୍ତୁଷ୍ଟ ହୋଇ କହିଲା 'ସେ ଜଣେ ନକଲି ଅଧ୍ୟାପକ । ତାଙ୍କର ଦାଢ଼ି ନାହିଁ ।'

ଫର୍ଣ୍ଣାଣ୍ଡୋ କହିଲା 'ତୁମେ ନିଶ୍ଚୟ ଇଂରେଜୀ ଭଲ ଜାଣ । ଇଂରେଜୀ ପଢ଼ାଇବା ତୁମ ପକ୍ଷରେ ଅଧିକ ସହଜ ସୁନ୍ଦର ଏବଂ ଭଲ ହୋଇ ନଥାନ୍ତା କି ?'

ପିଲାର୍ ବାଧା ଦେଇ କହିଲା 'ସେ ତ ସ୍ପେନର ଲୋକଙ୍କୁ ପଢ଼ାନ୍ତି ନାହିଁ ।'

ଫର୍ଣ୍ଣାଣ୍ଡୋ ଏକଥା ଶୁଣି ସନ୍ତୁଷ୍ଟ ହେଲା ।

ପିଲାର୍ କହିଲା ଆରେ ଗଧ, ମୋ କଥା ଆଗେ ସରୁ । ସେ ଉତ୍ତର ଆମେରିକାର ଲୋକଙ୍କୁ ସ୍ପେନ୍ ଭାଷା ଶିକ୍ଷା ଦେଇଥାଆନ୍ତି ।'

ଫର୍ଣ୍ଣାଣ୍ଡୋ ପଚାରିଲା 'ଉତ୍ତର ଆମେରିକାର ଲୋକେ କଅଣ ସ୍ପେନ୍ ଭାଷାରେ କଥା କହି ପାରନ୍ତି ନାହିଁ ? ଦକ୍ଷିଣ ଆମେରିକାରେ ତ କହି ଥାଆନ୍ତି ।'

ପିଲାର୍ କହିଲା 'ତୋ ମୁଣ୍ଡରେ କଅଣ ଅଛି କି ? ସେ ଉତ୍ତର ଆମେରିକାର ଇଂରେଜୀ ଭାଷାବାସୀଙ୍କୁ ସ୍ପେନ ଭାଷା ଶିକ୍ଷା ଦେଇଥାଆନ୍ତି ।'

ଫର୍ଣ୍ଣାଣ୍ଡୋ କହିଲା 'ଏହା ସତ୍ତ୍ୱେ ମୁଁ ବରାବର କହିବି ଯେ ଇଂରେଜୀ ପଢ଼ାଇବା ତାଙ୍କ ପକ୍ଷେ ଅଧିକ ସହଜ ।'

ପିଲାର ଆଶା ଗ୍ରଡ଼ ଦେଇ ପଗ୍ଲରଲା 'ସେ ସ୍ପେନ୍ ଭାଷାରେ କଥା କହିବା ତୁ କଅଣ ଶୁଣି ନାହୁଁ ?'

'ହଁ, ଶୁଣିଛୁ ମାତ୍ର ତାଙ୍କର ଉଚ୍ଚାରଣ ଟିକିଏ ଭିନ୍ନ ।'

'କେଉଁଠିକାର ଉଚ୍ଚାରଣ ?' ରବର୍ଟ ଜର୍ଡାନ୍ ପଗ୍ଲରଲେ ।

'ଏକ୍ଷ୍ଟ୍ରିମାଦୁରାର ଟାଣ ତୁମ କଥାରେ ।' ଫର୍ଣ୍ଣାଣ୍ଡୋ ଅନାନ୍ତରିକ ଭାବରେ କହିଲା ।

ପିଲାର୍ କହିଲା "ଆଉ ହବାକଥା ନୁହେଁ । ସେ ଲୋକଗୁଡ଼ାକ କଅଣ ମ ?"

ରବର୍ଟ ଜର୍ଡାନ୍ କହିଲେ 'ଖୁବ୍ ସମ୍ଭବ, ମୁଁ ସେଠାରୁ ସଳଖେ ଏଠାକୁ ଆସିଅଛୁ ।'

ପିଲାର୍ କହିଲା 'ତାକୁ ସେକଥା ଭଲ ଜଣା । ହଇରେ ବୁଢ଼ା ଖୁଣ୍ଟ, ପେଟ ପୂରାଇ ଖାଇଛୁ କି ନାହିଁ କହିଲୁ ?'

ଫର୍ଣ୍ଣାଣ୍ଡୋ ଜବାବ ଦେଲା "ପ୍ରଚୁର ଖାଦ୍ୟ ଥିଲେ ମୁଁ ଆହୁରି ଖାଇ ଥାଆନ୍ତି ।"

ତେବେ ଲର୍ଡ ରବର୍ଟୋ, 'ମୁଁ ତୁମ ବିରୁଦ୍ଧରେ କିଛି କହୁଛି ବୋଲି ଭାବିବ ନାହିଁ ।'

ଅଗଷ୍ଟିନ୍ ସରଳଭାବରେ କହିଲ 'ପୁଣି ସେହି ସାମନ୍ତବାଦ । ଜଣେ ସାଥୀକୁ ସାଆନ୍ତ ବନାଇବା ପାଇଁ କଅଣ ଆମେ ଏହି ବିଦ୍ରୋହ କରିଅଛୁ ?'

ଫର୍ଣ୍ଣାଣ୍ଡୋ ଜବାବ ଦେଲା "ବିଦ୍ରୋହ କରାଯାଇଛି ଏଇଥିପାଇଁ ଯେ ଆମେ ସମସ୍ତେ ପରସ୍ପର ପ୍ରତି ସାଆନ୍ତ । ସାଧାରଣତନ୍ତ୍ର ଅଧୀନରେ ଏହାହିଁ ଘଟିବ ।"

ଅଗଷ୍ଟିନ୍ କହିଲା "ପୁଣି ସେହି ଦୁଧିଆ କଥା, ହେଲେ କଳା ଦୁଧ ।"

'ମୁଁ ଏବେ ମଧ୍ୟ ଭାବୁଛି ଲର୍ଡ ରବର୍ଟୋ, ଇଂରେଜୀ ପଢ଼ାଇଲେ ସହଜ ଓ ସୁନ୍ଦର ହେବ ।'

ପାବ୍ଲୋ କହିଲା 'ତାଙ୍କର ଦାଢ଼ି ନାହିଁ, ସେ ନକଲି ଅଧ୍ୟାପକ ।'

ରବର୍ଟ ଜର୍ଡାନ୍ ତାଙ୍କର ୩ ଦିନିଆ ରୁଢ଼ିରେ ହାତ ମାରି କହିଲେ 'ଦାଢ଼ି ନାହିଁ କଅଣ କହୁଛୁ, ତେବେ ଏସବୁ କଅଣ ?'

ପାବ୍‌ଲେ ମନଟା ଆମୋଦ ପୂର୍ଣ୍ଣ ହୋଇଗଲା । ସେ କହିଲା, 'ସେଗୁଡ଼ା ପୁଣି ଦାଢ଼ି । ତୁମେ ନକଲି ଅଧ୍ୟାପକ ।'

ଅଗଷ୍ଟିନ୍ ଚଡ଼ିଯାଇ କହିଲା "ତୋ ବଡ଼ା ଭିତରେ ଧୂଳିପଡ଼ୁ । ଆଉତାଙ୍କୁ ତୁମେ ପଞ୍ଚାଏ ପାଗଲାଖାନାରେ ପରିଣତ କଲଣି ।"

ପାବ୍‌ଲେ ତାକୁ ଜବାବ ଦେଲା "ତୁ ମଦ ପିଇବା ଦରକାର । ମୁଁ ଏଠାରେ ସବୁ କିଛି ସାଧାରଣ ଦେଖୁଅଛି କେବଳ ମାତ୍ର ଲର୍ଡ଼ରବର୍ଟୋଙ୍କ ଦାଢ଼ି ନ ଥିବାଟା ମୋତେ ଅସାଧାରଣ ମନେ ହୁଏ ।"

ମେରିଆ ରବର୍ଟ ଜର୍ଡ଼ାନ୍‌ଙ୍କ ଗାଲରେ ହାତ ବୁଲାଇ ପାବ୍‌ଲେକୁ କହିଲା "ହଁ ଦାଢ଼ି ଅଛି ।"

ପାବ୍‌ଲେ କହିଲା "ହଁ, ତୋର ଜାଣିବା କଥା ।" ଏହା ଶୁଣି ରବର୍ଟ ଜର୍ଡ଼ାନ୍ ତା ଆଡ଼କୁ ଅନାଇ ଭାବିଲେ ଲୋକଟା—ପୂରା ମାତାଲ ହୋଇନାହିଁ । ତା ପ୍ରତି ଦୃଷ୍ଟି ରଖିବା ଉଚିତ ହେବ । ସେ ସେହି ତୁଷାରପାତ କେତେକାଳ ଚାଲିବ ବୋଲି ପାବ୍‌ଲେର ମତାମତ ଲୋଡ଼ିଲେ ।

ପାବ୍‌ଲେ ଜବାବ ଦେଲାଯେ ସେ ତାଙ୍କର ସମ୍ବାଦରକ୍ଷକ ନୁହେ । ସମ୍ବାଦ ପ୍ରତିଷ୍ଠାନ ପକ୍ଷରୁ ପତ୍ରିକା ବାହାରେ; ସେଟା ପଢ଼ି ଜାଣିବାକୁ କିମ୍ବା ପିଲାର୍‌କୁ ପଚାରିବାକୁ ସେ ବାଦ୍ରୁପ୍ର କରି କହିଲା ।

ରବର୍ଟ ଜର୍ଡ଼ାନ୍ କହିଲେ "ନା ମୁଁ ତୋତେ ପଚାରୁଅଛି ।"

ପାବ୍‌ଲେ କହିଲା "ମୁଁ ତୋର ଧାର ଧାରେ ନାହିଁ କି ତୋ ବାଡ଼ତଳ ରଇତ ନୁହେ । ତୁ, ସେ ମାଇକିନିଆ ଆଜି ସେ ଝୋକ ଗାଡକୁ ଯାଅନ୍ତୁ ।"

ପ୍ରିମିଟିଭୋ କହିଲା "ଇଂରେଜ, ସେଟା ମାତାଲ, ତା କଥା ଧର ନାହିଁ ।"

ରବର୍ଟ ଜର୍ଡ଼ାନ୍ କହିଲେ 'ସେ ସେପରି ମାତାଲ ବୋଲି ମୁଁ ଭାବୁ ନାହିଁ ।'

ମେରିଆ ଠିଆ ହୋଇଥିଲା ଜର୍ଡ଼ାନ୍‌ଙ୍କ ପଛରେ । ଜର୍ଡ଼ାନ୍ ଦେଖିଲେ ଯେ ପାବ୍‌ଲେ ବରାହ ଭଳି ସାନ ସାନ ଆଖି କରି ମେରିଆ ମୁଣ୍ଡକୁ ଚାହିଁଅଛି । ସେ ମନେମନେ ଭାବିଲେ ଯେ ଏ ଯୁଦ୍ଧରେ ଏବଂ ପୂର୍ବ ଯୁଦ୍ଧରେ ସେ ବହୁତ ମଣିଷ

ମାରଅଛନ୍ତି । ପ୍ରତ୍ୟେକେ ଭିନ୍ନ ପ୍ରକାରର ଥିଲେ, ତାଙ୍କ ଭିତରେ କିଛି କଥା ସାଧାରଣ ନଥିଲା କିମ୍ବା କେହି ଚୋର, ଡାକୁ, ଖୁଣୀ ପ୍ରକୃତର ନଥିଲେ । ପାବ୍ଲୋ ନିଶ୍ଚୟ ଦେଖିବାକୁ ଭଲ ନୁହେ ।

ସେ ପାବ୍ଲୋକୁ କହିଲେ "ତୁ ମଦ ପିଇଥିବାରୁ କିମ୍ବା ବର୍ତ୍ତମାନ ମାତାଲ, ଏହା ମୁଁ ବିଶ୍ୱାସ କରୁନାହିଁ ।"

"ହଁ ମୋତେ ନିଶା ଲାଗିଛି । ମଦ ପିଇବା ବଡ଼କଥା ନୁହେ, ମାତାଲ ହେବାଟାହିଁ ବଡ଼ କଥା ।" ପାବ୍ଲୋ ଗାମ୍ଭୀର୍ଯ୍ୟ ସହିତ ଉତ୍ତର ଦେଲା ।

ହଠାତ୍ ଗୁହା ଭିତରେ ସମସ୍ତେ ଏପରି ନୀରବ ହୋଇଗଲେ ଯେ ଜାଳେଣି କାଠର ସେଁ ସେଁ ଶବ୍ଦ ଶୁଣାଗଲା । ପାଦ ଚାପି ରଖିବାରୁ ପଦତଳର ଚମଡ଼ାଚମ ମଡ଼ମଡ଼ ହୋଇଉଠିଲା । ବାହାର ପଟେ ତୁଷାରପାତର ଶବ୍ଦ ମଧ୍ୟ ଶୁଭିବାକୁ ଲାଗିଲା ।

ରବର୍ଟ ଜର୍ଡ଼ାନ୍ ଭାବିଲେ ଏପରି ଲୋକଟାକୁ ପ୍ରାଣରୁ ମାରିଦେଲେ ସବୁ ନଷ୍ଟ ତୁଟିଯିବ । ସେ ଯେ କଅଣ କରିବ ଜଣାନାହିଁ ତେବେ ସେ ଭଲ କିଛି କରିବ ନାହିଁ । ଧନକ ପରେ ପୋଲ୍ ଧ୍ୱଂସ କରିବା କଥା ଏବଂ ଏହି ବଦମାସଟା ପୋଲ୍ ଧ୍ୱଂସ କାମରେ ଏକ ମସ୍ତବଡ଼ ଅନ୍ତରାୟ । ନା, ଏହାର ଚୂଡ଼ାନ୍ତ ମୀମାଂସା ଦରକାର ।

ପାବ୍ଲୋ ତାଙ୍କୁ ଚାହିଁ ମୃଦୁହାସ୍ୟ କରି ଗୋଟିଏ ଆଙ୍ଗୁଳି ଆପଣା କମାଲରେ ବୁଲାଇଲା ଏବଂ ଦୁଇ ପାଖକୁ ମୁଣ୍ଡ ଅଳ୍ପ ହଲାଇ କହିଲା "ନା, ଇଂରେଜ ମୋତେ ରଗାଅ ନାହିଁ ।" ପିଲାର୍କୁ କହିଲା "ଏମିତ ଭାବରେ ତୁ ମୋତେ ଛାଡ଼ି ପାରିବୁ ନାହିଁ ।"

ରବର୍ଟ ଜର୍ଡ଼ାନ୍ କହିଲେ "ନା, କିଛି ବ୍ୟବସ୍ଥା କରିବାକୁ ହେବ । ତୁ ଗୋଟାଏ ଅତି ଭୀରୁ ।

ପାବ୍ଲୋ ଜବାବ ଦେଲା "ହୋଇପାରେ କିନ୍ତୁ ମୁଁ ରାଗିବି ନାହିଁ । ତୁମେ କିଛି ପିଇନାଅ ଇଂରେଜ ।" ଏହାପରେ ଉଦ୍ଦେଶ୍ୟ ବିଫଳ ହେଲା ବୋଲି ସେ ପିଲାର୍କୁ ଇସାରାରେ ବୁଝାଇ ଦେଲା ।

ରବର୍ଟ ଜର୍ଡ଼ାନ୍ କହିଲେ ଚୁପ୍ କର । ମୁଁ ମୋ ନିଜ ପାଇଁ ତୋତେ ରଗାଉ ଅଛି ।'

ପାବ୍ଲୋ କହିଲା "ବୃଥା ପରିଶ୍ରମ । ମୁଁ ମୋଟେ ରାଗିବି ନାହିଁ ।"

ରବର୍ଟ ଜର୍ଡ଼ାନ୍ କହିଲେ "ତୁ ଗୋଟାଏ ଲୁଚ୍ଚା । ତୁ ଗୋଟାଏ କୁତା ।" ସେ ଭାବିଲେ ଆଉ ଛାଡ଼ିବା କଥା ନୁହେ । ତାକୁ ଯେମିତି ହେଲେ ରଗାଇ ବିବାଦ ସୃଷ୍ଟି ପରେ ଶେଷ କରିଦେବା ଉଚିତ । ତାଙ୍କ ମୁଣ୍ଡ ଚକର ଖାଇବାକୁ ଲାଗିଲା ।

ପାବ୍‌ଲେ କହିଲା 'ହଉ, ତୁମେ ଯାହା କହିବ ମୁଁ ସବୁ । ବର୍ତ୍ତମାନ ମୁଁ ତୁମର ସ୍ୱାସ୍ଥ୍ୟ କାମନାରେ ମଦ ପିଉଅଛି । ଏହା କହି ନମସ୍କାର ଜଣାଇ ପିଆଲା ମୁହଁକୁ ନେଲା ।

ରବର୍ଟ ଜର୍ଡ଼ାନ୍ ଭାବିଲେ ଲୋକଟା ଦେଖୁଛି ଯେମିତି ଚାଲାଖ, ସେମିତି କୁଟିଳ । ସେ ମଧ ସୁରାପାତ୍ର ଉଠାଇ ନମସ୍କାର କରି ପିଇଲେ । ଲୋକଟା ବିଶ୍ୱାସ-ଘାତକତା କରିବା ବିଚିତ୍ର ନୁହେ ।

ପାବ୍‌ଲୋ କହିଲା 'ଲର୍ଡ଼ ରବର୍ଟୋ, ତୁମେ ଅଧ୍ୟାପକ ନୁହ, କାରଣ ତୁମର ଦାଢ଼ି ନାହିଁ । ମୋଠାରୁ ନିଷ୍କୃତି ପାଇବାକୁ ହେଲେ ମୋତେ ହତ୍ୟା କରିବାକୁ ପଡ଼ିବ । କିନ୍ତୁ ଏ କାମ ପାଇଁ ତୁମର ଦୋସର କେହି ନାହିଁ ।'

ଏହି କଥା ସେ ଦାନ୍ତ ଚିପି କହିଲା ବୋଲି ତା ମୁହଁ ମାଛ ମୁହଁ ପରି ଲମ୍ବି-ଗଲା । ରବର୍ଟ୍ ଜର୍ଡ଼ାନ୍ ତାକୁ ନମସ୍କାର କରି ମଦ ପିଆଲା ଉଠାଇ ପିଇ କହିଲେ "ମୁଁ ତୋ ପାଖରୁ ବହୁତ କଥା ଶିଖୁଛି ।"

"ଏଁ ! ମୁଁ ତେବେ ପ୍ରଫେସରଙ୍କର ଗୁରୁ । ଅସ ଲର୍ଡ଼ ରବର୍ଟୋ, ଆମେ ବନ୍ଧୁ ହେବା "

"ଆମେ ତ ବନ୍ଧୁ ଅଛେ ହେଁ" ରବର୍ଟ ଜର୍ଡ଼ାନ୍ କହିଲେ ।

"କିନ୍ତୁ ବର୍ତ୍ତମାନ ଭଲ ବନ୍ଧୁ ହେବା "

"ଭଲ ବନ୍ଧୁ ତ ଅମେ ହୋଇ ରହିଛୁ ।"

ଅଗଷ୍ଟିନ୍ କହିଲା "ମୁଁ ତେବେ ଏଠାରୁ ଚାଲିଯାଉଅଛି । ଜୀବନରେ ଏ ଜାତିକା କଥା ୧୦ମହଣ ହଜମ କରିବା କଥା । ଆଜିତ ମୋ ଦୁଇ କାନରେ ଅଧ ମହଣ ଲେଖା ପଶିଗଲାଣି ।"

ପାବ୍‌ଲୋ ତାକୁ କହିଲା "ତୋର ପୁଣି କଅଣ ହେଲାରେ ନିଗ୍ରୋ ? ତୁ କଅଣ ଲର୍ଡ଼ରବର୍ଟୋ ଓ ମୋ ମଧ୍ୟରେ ବନ୍ଧୁତା ହେବା ଚାହୁଁ ନାହୁଁ ?"

ଅଗଷ୍ଟିନ୍ ପାବ୍ଲୋ ପାଖକୁ ଉଠିଯାଇ ତା ହାତ ଧରି କହିଲା "ତୋ ମୁହଁ ସମ୍ଭାଳି କଥା କହ, ନାହିଁ ଉପୁଡ଼ିଲେ ଦେଖିବୁ ।"

"ତୋତେ ସମସ୍ତେ ତାହା କହିଥାନ୍ତି ।" ପାବ୍ଲୋ କହିଲା ।

"ସମସ୍ତେ କହିଲେ ବୋଲି ତୁ କହିବୁ ?"

'ହଉ ତେବେ ଏଣିକି କାଳିଆ ବୋଲି ଡାକିବି ।'

'ନା, ତାହାବି ନୁହେ ।'

'ତେବେ କଅଣ ଲାଲ୍ଆ ?'

'ହଁ, ମୁଁ ଲାଲତାରକା ବ୍ୟାଜ୍ ପିନ୍ଧିଛି । ସାଧାରଣତନ୍ତ୍ର ଦଳରେ ଯୋଗ ଦେଇଛି ମୋ ନା ହେଉଛି ଅଗଷ୍ଟିନ୍ ।'

ପାବ୍ଲୋ କହିଲା "ଦେଖୁଛନା ଇଂରେଜ, ଦେଶପ୍ରେମୀର କିଭଳି ଆଦର୍ଶ ପୁରୁଷ ।"

ଅଗଷ୍ଟିନ୍ ବାଁ ହାତରେ କଷି କରି ଏକ ଗୁଷୁଡ଼ା ବସାଇଦେଲା । ପାବ୍ଲୋ ସେମିତି ବସି ରହିଲା । ତା ଆଖି କୋଣ ମଦ ନିଶାରେ ରକ୍ତବର୍ଣ୍ଣ ହୋଇଥାଏ କିନ୍ତୁ ମୁହଁର ଭଙ୍ଗି ବଦଳିଲା ନାହିଁ । ଆଳୁଅ ଦେଖିଲେ ବିଲେଇ ଯେପରି ଆଖି ମେଲାଇ ଥାଏ ରବର୍ଟ ଜର୍ଡାନ୍ ସେହିପରି ତାକୁ ଚାହିଁ ରହିଲେ ।

ପାବ୍ଲୋ କହିଲା 'ଏହି ସ୍ତ୍ରୀଲୋକ ଉପରେ ଭରସା ରଖିବ ନାହିଁ ।' ଏହା ପରେ ପିଲାର୍ ଆଡ଼େ ବୁଲିପଡ଼ି କହିଲା "ଦେଖ, ମୁଁ ଆଦୌ ରାଗି ନାହିଁ ।"

ଅଗଷ୍ଟିନ୍ ପୁଣି ଥରେ ତା ମୁହଁରେ ମୁଥେ ମାଇଲା । ରବର୍ଟ ଜର୍ଡାନ୍ ଟେବୁଲ୍ ତଳେ ପିସ୍ତଲ ଧରି ଥାଆନ୍ତି । ସେ ଘୋଡ଼ାଆର ଗୁପୁଆଣିକୁ ଟେକି ଦେଇଥିଲେ ଏବଂ ବାମ ହାତରେ ମେରିଆକୁ ଠେଲି ହଟାଇ ଦେଲେ । ସେ ଅଳପ ହଟିଯିବାରୁ ବାଁ ହାତରେ ତା କାନ୍ଧକୁ ଜୋର ପୂର୍ବକ ଠେଲି ଦୂରକୁ ଠେଲି ଦେଲେ । ମେରିଆ ସେଠାରୁ ଚୁଲିଆଡକୁ ଚାଲିଗଲା । ଏହାପରେ ରବର୍ଟ ଜର୍ଡାନ୍ ପାବ୍ଲୋ ମୁହଁକୁ ଅନାଇ ରହିଲେ । ପାବ୍ଲୋ ସେମିତି ବସି ଆଖି ଆଢୁଆ ଗ୍ରେଟ କରି ଅଗଷ୍ଟିନ୍‌କୁ ଦେଖୁଥିଲା । ସେ ନିଜ ଓଠ ଚାଟିଲା ଏବଂ ହାତ ପିଠିରେ ମୁହଁ ପୋଛି ଦେଖିଲା ରକ୍ତ ବହୁଛି । ସେ ଓଠ ଚାଟି ଛେପ ପକାଇ କହିଲା 'ଏଇଆତ ? ମୁଁ ଓଲୁ ନୁହେ ଯେ ରାଗିବି ।'

'ତୁ ଗୋଟାଏ ବିରପୋଡ଼ା ଅଙ୍ଗାର' ଅଗଷ୍ଟିନ୍ କହିଲା ।

ପାବ୍‌ଲୋ କହିଲା 'ତୋତେ ସବୁ ଜଣା । ତୁ ଏହି ମାଇକିନିଆଙ୍କୁ ଭଲ ଭାବେ ଜାଣୁ ।' ଅଗଷ୍ଟିନ୍ ପୁଣି ତା ମୁହଁରେ କସି କରି ମୁଥେ ମାଇଲା ଅଥଚ ପାବ୍‌ଲୋ ହସି ପକାଇଲା ସେଥିରେ ତାହାର ହଳଦିଆ ଭଙ୍ଗା ଦାନ୍ତ ସବୁ ରକ୍ତ ଧାର ଉପରକୁ ଦେଖାଗଲା । ସେ କହିଲା 'ହଉ ଗୁନ୍ତ' ଏଠାରେ କେହି ତୁମର ସାଥୀ ନାହାନ୍ତି ଯେ ମୋତେ ହତ୍ୟା କରିବେ । ତୋ ହାତରେ କିଛି ହେବ ନାହିଁ । ଏହା କହି ପୁଣି ମଦ ଢ଼ାଳିବାକୁ ହାତ ବଢ଼ାଇଲା ।

ଅଗଷ୍ଟିନ୍ କହିଲା "କାପୁରୁଷ ।"

"ତୁମ୍ଭ କଥାରେ କିଛି ହେବ ନାହିଁ ।' ପାବ୍‌ଲୋ ଚାଁ ଚାଁ କରି ମୁହଁରେ ମଦ ଢାଳିଲା ।

ସେ ପୁଣି ଥରେ ଛେପ ପକାଇ କହିଲା 'କଥାଦ୍ୱାରା ମୋ ଦେହରେ ଫୋଟକା ହେବ ନାହିଁ ।'

ଅଗଷ୍ଟିନ୍ ସେଇଠି ଠିଆ ହୋଇ ଧୀରେ ଧୀରେ ପରିଷ୍କାର ଭାବରେ ତାକୁ ଗାଳି, ଅଶ୍ଳୀଳ ଓ ଅସମ୍ମାନ ଜନକ କଥାମାନ ଅତି ଘୃଣାରେ କହୁଥାଏ । ସେ ଘୃଣାଟା ବିଲରେ ଗୋବରମାଟି ପକାଇବାରେ ଲୋକେ ଯେପରି ଫାଉଣ୍ଡ୍ରା ଦେଇ କରନ୍ତି, ହାତ ଲଗାନ୍ତି ନାହିଁ, ଅବିକଳ ସେହିପରି । ପାବ୍‌ଲୋ କହିଲା "ଅଗଷ୍ଟିନ୍ କଥା କ'ଣ ମାଡ଼ ସେଥିରେ ମୁଁ ବିଚଳିତ ନୁହେଁ । ମୋତେ ଆଉ ମାରନାହିଁ ତୋ ହାତ ବଥାଇବ ।" ଅଗଷ୍ଟିନ୍ ସେଠାରୁ ଦୁଆରଆଡ଼କୁ ଯାଆନ୍ତେ ପୁଣି କହିଲା "ବାହାରକୁ ଯାଅନା । ବାହାରେ ତୁଷାରପାତ ଚାଲିଛି । ତୁ ଭିତରେ ରହି ଆରାମ କର ।"

ଅଗଷ୍ଟିନ୍ ଦୁଆରମୁହଁରୁ ଫେରି ତାକୁ ତୁ ତୁକାର କରି ନିଜର ଅତ୍ୟଧିକ ଘୃଣା ପ୍ରକାଶ କଲା ।

ପାବ୍‌ଲୋ ଜବାବ ଦେଲା "ହଁ, ତୁ ମଲାପରେ ମଧ୍ୟ ମୁଁ ବଞ୍ଚିଥିବି ।" ସେ ଆଉ ପିଆଲାଏ ମଦ ଉଠାଇ କହିଲା "ଅଧ୍ୟାପକ ତୁମର ଶୁଭ କାମନାରେ ।" ପିଲାର୍‌କୁ ଅନାଇ କହିଲା "ଆଉ ତୋ ପ୍ରତି ମଧ୍ୟ ଶ୍ରୀମତୀ ସେନାପତିଜୀ ।" ଶେଷକୁ ଅନ୍ୟ ସବୁ ମୋହଗ୍ରସ୍ତଙ୍କ ପ୍ରତି ।"

ଅଗଷ୍ଟିନ୍ ଦ୍ରୁତ ତା ପାଖକୁ ଯାଇ ହାତ କଡ଼ରେ ଏକ ଠେଲା ଦେଇ ମଦ ପିଆଲା ଫିଙ୍ଗିଦେଲା । ପାବ୍‌ଲୋ କହିଲା "ଏଟା ବଡ଼ ଅପଚୟ, ଅତି ଓଲୁଗିରି ।"

ଅଗଷ୍ଟିନ୍ ତାକୁ ଅଶ୍ଳୀଳ ଭାଷାରେ ଗାଳିଦେଲା । ପାବ୍ଲୋ ଆଉ ପିଆଲାଏ ମଦ ନେଇ କହିଲା "ଏଟା ଠିକ୍ ନୁହେଁ, ତୁ ଦେଖୁଛୁ ମୁଁ ମାତାଲ । ମାତାଲ ହେଲେ ମୁଁ କଥା କହି ନଥାଏ । ତୁ ମୋତେ ବେଶୀ କଥା କହିବାର ଦେଖିନାହୁଁ । କିନ୍ତୁ ବୁଦ୍ଧିମାନ ଲୋକ ଏଇଲୋକଙ୍କ ଗହଣରେ ରହିବାକୁ ଗଲେ ବେଳେ ବେଳେ ବାଧ ହୋଇ ମାତାଲ ହୋଇଥାନ୍ତି ।"

ପିଲାର୍ କହିଲା 'ତୋ ଜନ୍ମ ମୁହଁରେ ନିଆଁରେ ଖାରୁ । ତୁ କେଡ଼େ ଖାରୁ ତାହା ମୁଁ ଭଲ କରି ଜାଣେ ।'

ପାବ୍ଲୋ କହିଲା "ମାଇକିନିଆଟାର କଥା ଶୁଣ । ହଉ, ମୁଁ ଘୋଡ଼ାକୁ ଦେଖିବାକୁ ଯାଉଅଛି ।"

ଅଗଷ୍ଟିନ୍ କହିଲା "ଯା, ଯମପୁରକୁ ଯା । ଏଟା କଅଣ ତୋ ଅଭ୍ୟାସରୁ ଗୋଟିଏ ନମୁନା ନୁହେଁ ?"

"ନା, ତୁ ତୋର ହିଂସା ନେଇ ରୁହ ।" ସେ ନିଜର କମ୍ବଳଟୋପି ଖଣ୍ଡିକ କାନ୍ଥରୁ କାଢ଼ି ନେଲା ।

ଅଗଷ୍ଟିନ୍ ପଚାରିଲା "ଘୋଡ଼ା ଦେଖି କଅଣ କରିବୁ ?"

ପାବ୍ଲୋ କହିଲା 'ଦେଖିବାକୁ ଯାଉଛି ।'

'ଘୋଡ଼ା ପ୍ରେମିକ, ତୁ ରସାତଳକୁ ଯା' ଅଗଷ୍ଟିନ୍ କହିଲା ।

ପାବ୍ଲୋ ଜବାବ ଦେଲା 'ଘୋଡ଼ା ମୋର ପ୍ରିୟ । ପଛପଟୁ ଦେଖିଲେ ସେମାନେ ମଧ୍ୟ ସୁନ୍ଦର ଦିଶନ୍ତି ଏବଂ ଏହି ଲୋକଗୁଡ଼ାକ ଅପେକ୍ଷା ଘୋଡ଼ାଙ୍କ ବୁଦ୍ଧି ଭଲ । ଘୋଡା ଦେଖି ନିଜ ମନ ଭୁଲାଇ ହେବ । ଇଂରେଜ ତୁମେ ଘୋଡ଼ାଙ୍କୁ ପୋଲ କଥା କୁହ, ଆକ୍ରମଣବେଳେ ତାଙ୍କର କାମ ବୁଝାଅ, କେମିତି ହଟି ଆସିବା କଥା କୁହ । ଆଚ୍ଛା ଇଂରେଜ ପୋଲ ଧ୍ୱଂସ ପରେ ତାଙ୍କୁ କିଏ ଆଗେଇ ନେବ ? ତୁମର ଏହି ଦେଶ ପ୍ରେମିକମାନଙ୍କୁ କିଏ ଆଗେଇ ନେବ ? ମଦ ପିଉ ପିଉ ଦିନମାନ ମୁଁ ଏହି କଥା ଭାବୁଥିଲି ।'

ଅଗଷ୍ଟିନ୍ ପଚାରିଲେ 'ଭାବି ଭାବି କଅଣ ଠିକ୍ କଲୁ ?'

ପାବ୍ଲୋ ଓଠ ଭିତରେ ଜିଭ ବୁଲାଇ କହିଲା 'ମୁଁ କଅଣ ଠିକ୍ କଲି, ଶୁଣିବୁ ?'

'କୁହ' ଅଗଷ୍ଟିନ୍ ଜବାବ ଦେଲା ।

ପାବ୍ଲୋ ନିଜ କମ୍ବଳ କୋଟ୍ ମୁଣ୍ଡ ଉପରକୁ ଉଠାଇ ଦେବାରୁ ମଇଳା ଚିରକୁଟ କମ୍ବଳ ଝେକ ତା ଗୋଳିଆ ମୁଣ୍ଡର ଆକାର ଧରିଲା ।

ସେ କହିଲା 'ମୁଁ ବହୁତ ଭାବୁଛି ।'

'କଅଣ କଅଣ ଭାବୁଛ ?'

'ଭାବୁଛି ତୁମେ ପଞ୍ଚାଏ ମୋହରେ ପଡ଼ିଅଛ । ଗୋଟାଏ ମାଇକିନିଆ ବୁଦ୍ଧି ଆଉ ଜଣେ ବିଦେଶୀ ଦ୍ୱାରା ଚାଳିତ ହେଉଅଛ । ବିଦେଶୀ ତୁମକୁ ଧ୍ୱଂସ କରିବାକୁ ଆସିଅଛି ।'

ପିଲାର୍ ପାଟିକରି କହିଲା 'ଯା, ଏଠାରୁ ବାହାର ପଦାରେ ତୁଷାର ମାଡ଼ ଖା । ତୋ ଜଘନ୍ୟ ଚେହେରା ଏଠି ଦେଖାନାରେ ଘୋଡ଼ା ।'

ଅଗଷ୍ଟିନ୍ ପ୍ରଶଂସା କରି କହିଲା 'ସ୍ତ୍ରୀ ନା ସେ କଥା ପରି କଥା' ସେ ଅନ୍ୟମନସ୍କ ଏବଂ ବିବ୍ରତ ହୋଇ ଉଠିଥିଲା ।

'ମୁଁ ଯାଉଛି, କିନ୍ତୁ ଶୀଘ୍ର ଫେରି ଆସିବି ।' ପାବ୍ଲୋ ଏତିକି କହି ଦୁଆର ମୁହଁ କମ୍ବଳ ହଟାଇ ପଦାକୁ ଚାଲିଗଲା । ଦୁଆର ମୁହଁରୁ କହିଲା 'ଇଂରେଜ ତୁଷାରପାତ ବନ୍ଦ ହୋଇ ନାହିଁ ।'

# ସପ୍ତଦଶ ପରିଚ୍ଛେଦ

ଗୁହା ଭିତରେ ଏକମାତ୍ର ଆବାଜ ହେଉଥାଏ ଚୁଲ୍ଲୀରୁ । ଗ୍ରୀଣ୍ଡ କଣାବାଟିଙ୍କ ବିରଫ ପଡ଼ୁଥିବାରୁ ନିଆଁରୁ ସେଁ ସେଁ ଆବାଜ ବାହାରୁଥାଏ । ଫର୍ଣ୍ଣାଣ୍ଡୋ ଆଉ ମାଂସ ସିଦ୍ଧ ଅଛି କି ନାହିଁ ବୋଲି ପିଲାର୍‌କୁ ପଚାରିଲା । ପିଲାର୍ ତାକୁ ଚୁପ୍ ହେବାକୁ ଧମକ ଦେବାରୁ ମେରିଆ ତା ବେଲଟା ରନ୍ଧା ଡେକ୍‌ଚି ପାଖକୁ ନେଇ କିଛି ମାଂସ ଯୂଚ୍ଛି ଟେବୁଲ ଉପରେ ଥୋଇ ଦେଲା । ଫର୍ଣ୍ଣାଣ୍ଡୋ ନଇଁପଡ଼ି ଖାଇବାକୁ ଲାଗିଲା ।

ପିଲାର୍ ଟେବୁଲ ପାଖରେ ରବର୍ଟ ଜର୍ଡାନ୍‌ଙ୍କ ସମ୍ମୁଖରେ ବସିଥାଏ । ଅନ୍ୟମାନେ ଘରେ ବସି ଥାଆନ୍ତି ଏବଂ ଅଗଷ୍ଟିନ୍ ଚୁଲୀ ମୁଣ୍ଡରେ ଠିଆ ହୋଇଥାଏ ।

'ଏବେ ତୁମେ ତ ତାକୁ ଦେଖିଲ ଇଂରେଜ, ସେ କଅଣ ବୁଝିଲ ?' ପିଲାର୍ କହିଲା ।

ରବର୍ଟ ଜର୍ଡାନ୍ ପଚାରିଲେ 'ସେ କଅଣ କରିବ ?'

'ସେ ସବୁ କିଛି କରିପାରେ ।'

'ତା' ହ୍ୟାଣ୍ଡି-ମ୍ୟା ରାଇଫଲ୍‌ଟା କାହିଁ ?'

'କମ୍ବଳରେ ଗୁଡ଼ା ହୋଇ ସେ କୋଣରେ ରହିଛି ।' ପ୍ରିମିଟିଭୋ କହିଲା 'ତୁମର ଦରକାର କି ?'

'ବର୍ତ୍ତମାନ କେଉଁଠାରେ ଅଛି ଜାଣିବାକୁ ଇଚ୍ଛାଥିଲା, ପରେ ଦରକାର ହେଲେ ନେବି ।' ଜର୍ଡାନ୍ କହିଲେ ।

ପ୍ରିମିଟିଭୋ ଜବାବ ଦେଲା 'ମୁଁ ତାହା ଆଣି ଶୁଖିଲା ରହିବ ବୋଲି ମୋ କମ୍ବଳରେ ଗୁଡ଼ାଇ ସେଠି ରଖି ଦେଇଛି । ଗୁଳି ସବୁ ସେ ବୋକସ୍ ଭିତରେ ଅଛି ।'

ପିଲାର କହିଲା 'ସେପରି କାମ ସେ କରିବ ନାହିଁ । ରାଇଫଲ୍ ନେଇ ସେ କିଛି କଲା ଭଲ ଲୋକ ନୁହେଁ ।'

'ତୁ ପରି କହିଲୁ ସେ ସବୁକିଛି କରିପାରେ ?'

ପିଲାର ଜବାବ ଦେଲି 'ହଁ, ପରିପାରେ କିନ୍ତୁ ରାଇଫଲ୍ ବ୍ୟବହାର କରିବାରେ ସେ ଅଭ୍ୟସ୍ତ ନୁହେଁ । ବୋମା ଫିଙ୍ଗିବା ହେଉଛି ତାହାର ଅଭ୍ୟାସ ।'

ଜିପ୍‌ସି ଜଣକ କହି ଉଠିଲି 'ତାକୁ ମାରି ନ ପକାଇବା ହେଉଛି ଦୁର୍ବଳତା ଓ ମୂର୍ଖତାର ଚିହ୍ନ । ସାରା ସନ୍ଧ୍ୟାର ଆଲୋଚନାରେ ସେ ପଦେ ହେଲେ କଥା କହି ନାହିଁ । ଗତ ରାତିରେ ରବର୍ଟ ଜର୍ଡାନ୍‌ଙ୍କ ଉଚିତ ଥିଲା ତାକୁ ହତ୍ୟା କରିବା ।'

ପିଲାର୍ କହିଲା 'ହଁ, ମୁଁ ତାକୁ ମାରିବା ସପକ୍ଷରେ । ତାକୁ ମାରିଦିଅ ।' ପିଲାର୍ ମୁହଁ କଳା ଓ କ୍ଲାନ୍ତ ଦେଖାଗଲା ।

ଅଗଷ୍ଟିନ୍ ଚୁଲି ପାଖରେ ହାତ ଝୁଲାଇ ଠିଆ ହୋଇଥାଏ । ତା ଗାଲ ଦୁଇଟାରେ ହନୁହାଡ଼ ତଳେ କଳା ଦାଗ ଏବଂ ଠାକରା । ସେ କହି ଉଠିଲା 'ମୁଁ ପହିଲେ ଏକଥା ବିରୁଦ୍ଧରେ ଥିଲି କିନ୍ତୁ ବର୍ତ୍ତମାନ ଏହା ସମର୍ଥନ କରୁଅଛି । ଲୋକଟା ଅତି ବିପଜ୍ଜନକ । ଆମେ ସମସ୍ତେ ଧ୍ୱଂସ ହେଲେ ସେ ଖୁସି ହେବ ।'

ପିଲାର୍ କ୍ଲାନ୍ତ କଣ୍ଠରେ କହିଲା 'ସମସ୍ତେ ନିଜ ନିଜ ମତ ଦିଅନ୍ତୁ । ଆଣ୍ଡ୍ରେଜ୍ ତୁମର ମତ ?' କପାଳକୁ ବାଳ ଲମ୍ବିଥିବା ଭାଇ ଜଣକ ସେକଥା ସମର୍ଥନ କଲା । ଏହାପରେ ଏଲାଡ଼ିଓ ନାମକ ଅନ୍ୟ ଭାଇ ଜଣକ ମଧ୍ୟ ସମର୍ଥନ କରି କହିଲା ଯେ ଲୋକଟା ସମସ୍ତଙ୍କ ପକ୍ଷରେ ବିପଦ ଏବଂ କୌଣସି କାମରେ ଆସୁନାହିଁ । ପ୍ରିମିଟିଭୋ ମଧ୍ୟ ତାଙ୍କ ସହିତ ଏକମତ ହେଲା କେବଳ ଫର୍ଣ୍ଣାଣ୍ଡୋ ପାବ୍‌ଲୋକୁ ବନ୍ଦୀ କରି ରଖିବା ପ୍ରସ୍ତାବ କଲା । ଏହାଶୁଣି ପ୍ରମିଟିଭୋ କହିଲା 'କିଏ ତାହାକୁ ବନ୍ଦୀ ରଖିବ ? ସେଥିପାଇଁ ଦୁଇ ଜଣଙ୍କୁ ନିଜମା ହୋଇ ଜଗିବାକୁ ପଡ଼ିବ । ଶେଷକୁ ତାକୁ ନେଇ କଅଣ କରାହେବ ।

ଜିପ୍‌ସି କହିଲା 'ଆମେ ତାକୁ ଫ୍ୟାସିଷ୍ଟ୍‌ମାନଙ୍କୁ ବିକିଦେବା ।'

ଅଗଷ୍ଟିନ୍ କହି ଉଠିଲା 'ନା, ନା, ଏପରି ଜଘନ୍ୟ କାମ କରି ହେବ ନାହିଁ ।'

ଜିପ୍‌ସି ଜବାବ ଦେଲା 'ମୁଁ ଭାବିଲି, ଫାସିଷ୍ଟମାନେ ତାକୁ ପାଇଲେ ଖୁସି ହେବେ ।'

'ସେକଥା ଛାଡ଼, ସେପରି ଜଘନ୍ୟ କାମ ଆମେ କରିବୁ ନାହିଁ' ଅଗଷ୍ଟିନ୍ କହିଲା ।

ଜିପ୍‌ସି କହିଲା 'ପାବ୍‌ଲୋଠାରୁ ଆଉ ଅଧିକ ଜଘନ୍ୟ କଅଣ ଥାଇପାରେ ।'

ଅଗଷ୍ଟିନ୍ ଉତ୍ତର ଦେଲା 'ଗୋଟାଏ ଜଘନ୍ୟ କାମ ଆଉ ଗୋଟାଏ ଜଘନ୍ୟ ତାକୁ ଯଥାର୍ଥ ପ୍ରତିପାଦନ କରି ନପାରେ । ବର୍ତ୍ତମାନ ବୁଢ଼ା ଆଉ ଇଂରେଜ କଅଣ କହୁଛନ୍ତି ?'

ପିଲାର୍ କହିଲା 'ସେ ଦୁହେଁ ଏଥିରେ ଲିପ୍ତ ନୁହନ୍ତି, କାରଣ ପାବ୍‌ଲୋ ତାଙ୍କର ନେତା ନଥିଲା ।

ଫର୍ଣ୍ଣାଣ୍ଡୋ କହିଲା 'ଆଉ ପଦେ, ମୋ କଥା ସରିନାହିଁ ।'

'ହଉ ତେବେ କୁହ । ସେ ଫେରିବା ଯାଏ କୁହ । ତୁମେ ଖାଲି କଥା କହୁଥିବ ଅଥଚ ସେ ଆସି ଚୂପ୍‌ଚାପ୍ ହାତ ବୋମା ଫୁଟାଇ ଡାଇନାମାଇଟ୍ ସମେତ ଆମ ସମସ୍ତଙ୍କୁ ଧ୍ୱଂସ କରିଦେବ ।'

ଫର୍ଣ୍ଣାଣ୍ଡୋ ଜବାବ ଦେଲା 'ତୁମେ ଟିକିଏ ବାଡ଼ୁଲା କରି କହୁଛ ପିଲାର । ତା' ମୁଣ୍ଡରେ ଏପରି ପରିକଳ୍ପନା ଥିବାର ମୁଁ ବିଶ୍ୱାସ କରିପାରୁ ନାହିଁ ।'

ଅଗଷ୍ଟିନ୍ କହିଲା 'ମୁଁ ମଧ୍ୟ ତାହା ଭାବୁନାହିଁ, କିନ୍ତୁ ଏଇକ୍ଷଣି ନିଶା ଊଣା ହୋଇଗଲେ ସେ ପୁଣି ମଦ ପିଇବାକୁ ଆସିଯିବ ।'

ରାଫେଲ୍ ପ୍ରସ୍ତାବ କଲା, 'ତାକୁ ସୋର୍ଡୋକୁ ଦେଲେ ସେ ନେଇ ଫ୍ୟାସିଷ୍ଟମାନଙ୍କୁ ଦେବ । ଆମେ ତାକୁ ଅନ୍ଧ କରି ଦେଲେ ସହଜରେ ଅକ୍ତିଆରରେ ରଖି ପାରିବୁ ।'

ପିଲାର୍ ଧମକ ଦେଇ କହିଲା 'ତୁ ଚୁପ୍ କର । ତୋ କଥା ଶୁଣିଲେ ମୋର ମନେ ହୁଏ ତୋତେ ମଧ୍ୟ ଗୁଳି କରିବା ଉଚିତ ।'

ପ୍ରିମିଟିଭୋ କହିଲା 'ଦେଖାଯାଇଛି ଯେ ଫ୍ୟାସିଷ୍ଟ୍‌ମାନେ ଏଥିପାଇଁ କିଛି ଦାମ ଦିଅନ୍ତି ନାହିଁ । ଓଲଟା ତୁମକୁ ମଧ୍ୟ ମାରି ପକାଇବେ ।'

ରଫେଲ୍ ଜବାବ ଦେଲା "ତାକୁ ଅନ୍ଧ କରି ବିକିଲେ କିଛି ଟଙ୍କା ମିଳିବ ।"

"ପୁଣି ଯଦି ଅନ୍ଧ କରିବା କଥା କହିବୁ ତ ତୁ ମଧ୍ୟ ତା ସାଙ୍ଗରେ ଯିବୁ ।" ପିଲାର୍ କହିଲା ।

ଜିପ୍‌ସି ପୁଣି କହିଲା "ପାବ୍‌ଲୋ ନିଜେ ସେହି ଆହତ ସିଭିଲ୍ ଗାର୍ଡକୁ ଅନ୍ଧ କରିଥିଲା । ଏକଥା କଅଣ ଭୁଲିଗଲୁ ?"

ପିଲାର୍ କହିଲା "ତୋ ମୁହଁ ବନ୍ଦ କରୁ ।" ଏମିତିକା ଅନ୍ଧ କରିବା କଥା ରବର୍ଟ ଜର୍ଡାନ୍ ଉପସ୍ଥିତିରେ ଉଠାଇବାରୁ ପିଲାର୍ ଅସ୍ୱସ୍ତି ବୋଧ କଲା ।

ଫର୍ଣ୍ଣାଣ୍ଡୋ କହିଲା "ମୋ କଥା ଶେଷ କରିବାକୁ ଦେଉନାହୁଁ ।"

"ହଉ ତେବେ କହ । ଶୀଘ୍ର ଶେଷ କର ।" ପିଲାର୍ କହିଲା ।

ଫର୍ଣ୍ଣାଣ୍ଡୋ କହିଲା "ଯେତେବେଳେ ତାକୁ ବନ୍ଦୀ କରି ରଖିବା ସମ୍ଭବ ନୁହେଁ, ଯେତେବେଳେ ଫ୍ୟାସିଷ୍ଟମାନଙ୍କୁ ବିକିବା ଜଘନ୍ୟ, ସେତେବେଳେ ତାକୁ ଏକାବେଳକେ ଲୋପ କରିବା ବାଞ୍ଛନୀୟ । ତଦ୍ଦ୍ୱାରା ସମସ୍ତଙ୍କର ନିରାପତ୍ତା ଏବଂ କାର୍ଯ୍ୟ ହାସଲ ସୁଗମ ହେବ ।"

ପିଲାର୍ ଦାନ୍ତ କାମୁଡ଼ି ତାକୁ ଅନାଇ ରହିଲା ମାତ୍ର କିଛି କହିଲା ନାହିଁ ।

ଫର୍ଣ୍ଣାଣ୍ଡୋ କହିଲା "ଏହାହିଁ ହେଉଛି ମୋର ମତ । ସେ ଯେ ସାଧାରଣତନ୍ତ୍ର ପକ୍ଷରେ ବିପଦ ଏକଥା ବିଶ୍ୱାସ କରିବାର ଯୁକ୍ତିଯୁକ୍ତ କାରଣ ମଧ୍ୟ ଅଛି ।"

ପିଲାର୍ କହିଲା "ଇଲୋ, ମାଆଗୋସାଇଁଲୋ, ଜଣେ ଲୋକ ଖୁବ୍ ମୁହଁ କଥାରେ ଆମଲାତନ୍ତ୍ର ପରି ହୋଇଯାଉଛି ।"

ଫର୍ଣ୍ଣାଣ୍ଡୋ କହିବାକୁ ଲାଗିଲା "ତା ନିଜ କଥା ଓ କାମରୁ ଏହା ପ୍ରମାଣିତ ଅଥଚ ପ୍ରାଥମିକ ଅବସ୍ଥାରେ ଆନ୍ଦୋଳନ ପାଇଁ ସେ ଯେତେ ଯେତେ କାମ କରିଥିଲା ସେଥିପାଇଁ ସେ କୃତଜ୍ଞତାର ପାତ୍ର ।" ପିଲାର୍ ଏତେବେଳକୁ ଚୁଲି ମୁଣ୍ଡକୁ ଯାଇ ପୁଣି ଟେବୁଲ୍ ପାଖକୁ ଫେରି ଆସିଥିଲା । ସେ ଫର୍ଣ୍ଣାଣ୍ଡୋକୁ ବୋଲ୍ଟିଏ ବଢ଼ାଇ ଦେଇ କହିଲା ଫର୍ଣ୍ଣାଣ୍ଡୋ ଏହି ବୋଲାକ ମାଂସପିଣ୍ଡ ଖାଇନେ, ଆଉ କଥା କହ ନା, ଆମେ ତୋ ମତ ଜାଣିଲୁ ।"

"ଜେନୁ କପର"—ଫ୍ରିମିଷ୍ଟିଙ୍କେ ନିଜ କଥା ଶେଷ କରି ପାରିଲା ନାହିଁ ।

ରବର୍ଟ ଜର୍ଡ଼ାନ କହି ଉଠିଲେ "ତେବେ ଶୁଣ । ତୁମ ସମସ୍ତଙ୍କର ମତ ଯେତେବେଳେ ଏହାହିଁ ଅଟେ ସେତେବେଳେ ତୁମ ପାଇଁ ମୁଁ ସେ କାମ କରିବାକୁ ପ୍ରସ୍ତୁତ ।"

ସେ ଭାବିଲେ କଥା କଅଣ ଘଟିଲା । ତାହା କଥା ଶୁଣି ମୁଁ ଫର୍ଣ୍ଣାଣ୍ଡୋ ଭଳି କହିବାକୁ ଆରମ୍ଭ କଲିଣି । ସେହି ଭାଷାଟା ବୋଧହୁଏ ସଂକ୍ରାମକ । ଫରାସୀ ଭାଷାଟାହିଁ ହେଲା କୂଟନୀତିର ଭାଷା ଆଉ ସ୍ପେନ୍ ଭାଷା ହେଲା ଅମଲାତନ୍ତ୍ରର ଭାଷା ।

ମେରିଆ ନାହିଁ ନାହିଁ କଲାରୁ ପିଲାର୍ ତାକୁ ମୁହଁ ବନ୍ଦ କରିବାକୁ କହିଲା । ଏସବୁ କଥାରେ ତାହାର କିଛି ମତାମତ ନରହିବା ଭଲ । ରବର୍ଟ ଜର୍ଡାନ୍ ସେହି ଚ୍ଛିତରେ ସେ କାମ କରିବେ ବୋଲି ପ୍ରକାଶ କଲେ । ସେ ଦେଖିଲେ ଆଙ୍ଗୁଳି ଓଠ ସାମନାରେ ରଖି ଗୁହା ମୁହଁକୁ ଅନାଇ ପିଲାର୍ କଅଣ ଇଙ୍ଗିତ କରୁଅଛି । ଗୁହା ମୁହଁରେ ଟଙ୍ଗା ଯାଇଥିବା କମ୍ବଳକୁ ଟେକି ପାବ୍‌ଲୋ ଭିତରକୁ ଆସି ପୁଣି ପର୍ଦାଟା ଝୁଲାଇ ଦେଲା । ସେ ସମସ୍ତଙ୍କ ଆଡ଼କୁ ଚାହିଁ ମୃଦୁ ହସି ପକାଇ ନିଜ ଟୋପିରୁ ତୁଷାରକଣା ଝାଡ଼ି ଦେଇ ପଚାରିଲା 'ତୁମେ ସମସ୍ତେ ମୋ କଥା ପକାଉଥିଲ, ମୁଁ ଆସି ବାଧା ଦେଲି ।' କେହି ତାକୁ ଜବାବ ନ ଦେବାରୁ ସେ ଟୋପିଟା କାନ୍ଥ କଣ୍ଟାରେ ଟଙ୍ଗାଇ କଥା କଅଣ ବୋଲି ପଚାରି ଖାଲି ପିଆଲା ନେଇ ମଦ୍ ଭାଣ୍ଡରେ ବୁଡ଼ାଇଲା । ସେଥିରେ ମଦ ନ ପାଇବାରୁ ମେରିଆକୁ କହିଲା "ଯା'ତ ଚମଡ଼ା ଥଳିରୁ କିଛି ମଦ ଆଣିବୁ ।"

ମେରିଆ ମଦଭାଣ୍ଡଟା ଉଠାଇ କାନ୍ଥରେ ଲଟକିଥିବା ଚମଡ଼ା ଥଳି ପାଖକୁ ଯାଇ ଠିପି ଫିଟାଇ ମଦ କାଢ଼ିଲା । ମେରିଆ ଆଣେଇ ପତ୍ରେ ମଦ କାଢୁଥାଏ ।

ପାବ୍‌ଲୋ କହି ଉଠିଲା 'ସାବଧାନ, ମଦ ବର୍ତ୍ତମାନ ବହୁତ ତଳକୁ ଆସି ଗଲାଣି ।' ଏଥିରେ ମଧ୍ୟ ସବୁ ଚୁପ୍ ଚାପ୍ । ପାବ୍‌ଲୋ ପୁଣି କହିଲା 'ଆଜି ମୁଁ ଚମଡ଼ା ଥଳିର ବହୁତ ମଦ ପିଇଦେଇଛି । ଏଟା ଦିନକର କାମ । ଆଚ୍ଛା ତୁମ ସମସ୍ତଙ୍କ ଜିଭରେ କଅଣ ଖିଲ ଲାଗି ଯାଇଛିକି ?" ଏ କଥାରେ ମଧ୍ୟ କେହି ଜବାବ ନ ଦେବାରୁ ସେ ମେରିଆକୁ ପୁଣି କହିଲା ଭଲ କରି ଠିପି ଲଗାଇଦେ, ଯେପରି ମଦ ତଳେ ଗଡ଼ି ନଯାଏ ।

ଅଗଷ୍ଟିନ୍ କହିଲା "ତୁ ମାତାଲ ହେଲା ଭଳି ବହୁତ ମଦ ଅଛି ।"

ପାବ୍‌ଲୋ କହିଲା "ଯା ହେଉ, ଜଣକର ଜୀବ ଫେରିଗଲା । ମୋର ଶୁଭେଚ୍ଛା ନେ । ମୁଁ ଭାବିଥିଲି ତୁ ବୋକା ହୋଇ ଗଲୁଣି ।"

"କଅଣ ପାଇଁ ?"

"ମୋ ଆଗମନ ଯୋଗୁ ।"

'ଓହୋ, ତୋ ଆଗମନଟା ଏଡ଼େ ଗୁରୁତ୍ୱ ପୂର୍ଣ୍ଣ ।'

ଅଗଷ୍ଟିନ୍ ବୋଧହୁଏ ଉତ୍ତେଜନା ସୃଷ୍ଟି କରୁଅଛି । ସେ ତାକୁ ନିଶ୍ଚୟ ଘୃଣା କରେ । ସେ ମାରିବାକୁ ପ୍ରସ୍ତୁତ । କିନ୍ତୁ ମୁଁ ତ ତାକୁ ଘୃଣା କରେ ନାହିଁ । ସେ ବିରକ୍ତିକର ହେଲେ ମଧ୍ୟ ଅନ୍ଧ କରିଦେବା କାମଟା କରିବାକୁ ପ୍ରସ୍ତୁତ ହୋଇ ସେ ଭିନ୍ନ ରୁଚିର ପ୍ରକାଶ କରିଅଛି । ତଥାପି ଏ ଯୁଦ୍ଧଟା ତାଙ୍କର । ଆଗାମୀ ଧନେ ଦୁଇଦିନ ପାଇଁ ତାହାର କାମ କିଛି ନାହିଁ । ମୁଁ ଏଥିରେ ଲିପ୍ତ ହେବା ଉଚିତ ନୁହେ । ଆଜି ରାତିରେ ମୁଁ ଥରେ ଓଲୁବନି ସାରିଲିଣି ଏବଂ ତାକୁ ମାରିଦେବା ପାଇଁ ମୁଁ ପୂରା ଇଚ୍ଛା କରୁଅଛି । କିନ୍ତୁ ମୁଁ ତତ୍ ପୂର୍ବରୁ ତା ସହିତ ଆଉ ନିର୍ବୋଧପଣିଆ କରିବି ନାହିଁ । ଏଠାରେ ଗୁଳି ଫୁଟାଫୁଟି କିମ୍ବା ଅନ୍ୟ କିଛି କାମୁଡ଼ା କାମୁଡ଼ି ଚଳିବ ନାହିଁ କାରଣ ଡାଇନାମାଇଟ୍ ଗୁଡ଼ା ଏଠାରେ ଅଛି, ହୁଏତ ଏ କଥାଟା କାହାରି ମୁଣ୍ଡରେ ପଶିନାହିଁ; ଜର୍ଡାନ୍ ଏହିପରି ଭାବି ଅଗଷ୍ଟିନ୍‌କୁ ଡାକିଲେ । ବିରକ୍ତିରେ ଅଗଷ୍ଟିନ୍ ପାବ୍‌ଲୋ ଆଡ଼ୁ ମୁହଁ ବୁଲାଇଲା । ସେ ତାହା ସଙ୍ଗେ କଥା କହିବାକୁ ଲୋଡ଼ିବାରୁ କହିଲା ଯେ ପରେ କରିବା । ରବର୍ଟ ଜର୍ଡାନ୍ ତତ୍‌କ୍ଷଣାତ୍ କଥା ହେବାକୁ ଚାହିଁଲେ, ସେ ଗୁହା ମୁହଁକୁ ଚାଲିଗଲେ । ପାବ୍‌ଲୋ ତାଙ୍କ ପଛେ ପଛେ ଗଲା, ଅଗଷ୍ଟିନ୍ ତାଙ୍କ ନିକଟକୁ ଆସିଲାରୁ ସେ ଅନିଚ୍ଛା ଓ ଅବଜ୍ଞା ସହିତ ବାଟ ଛାଡ଼ି ବସ୍ତାରେ କଅଣ ଅଛି ଭୁଲିଗଲୁ କି ବୋଲି ଅତି କ୍ଷୀଣ ସ୍ୱରରେ କହିଲେ ।

ଅଗଷ୍ଟିନ୍ କହିଲା 'ଛେନାଗୁଡ଼ ଅଛି । ଲୋକର ଅଭ୍ୟାସ ହୋଇଗଲେ ଏମିତ ପାଶୋର ଯାଇଥାଏ ।'

'ପାବ୍‌ଲୋ କହିଲା ଯେ ସେ ମଧ୍ୟ ଭୁଲି ଯାଇଥାଏ ।'

ଅଗଷ୍ଟିନ୍ କହିଲା 'ଗଲାତ ମୁଁ ନିସ୍ତରିଗଲି । ଆମେ ସବୁ କେତେ ଓଲୁ ।' ଏହା କହି ସେ ଟଳିଟଳି ଟେବୁଲ୍ ପାଖରେ ବସିପଡ଼ି କହିଲା 'ପୁରୁଣାଦୋସ୍ତ ପାବ୍‌ଲୋ । ଆଉ ତୋକେ ମଦ ଗିଳୁ । ଘୋଡ଼ା ସବୁ କିପରି ଅଛନ୍ତି ?'

"ଖୁବ୍ ଭଲ । ତୁଷାରପାତ ଊଣା ହୋଇଗଲାଣି ।"

'ତୁ କଅଣ ଭାବୁଛୁ ବନ୍ଦ ହୋଇଯିବ ?'

ପାବ୍‌ଲୋ ଉତ୍ତର ଦେଲା 'ହଁ । ବର୍ତ୍ତମାନ ଖୁବ୍ ଅଳ୍ପ ଓ ସାନ ସାନ ଖଣ୍ଡ ପଡ଼ୁଅଛି । ପବନ ଗୁଳିବ କିନ୍ତୁ ତୁଷାର ବନ୍ଦ ହେବ । ପବନର ଦିଗ ବଦଳି ଗଲାଣି ।'

ରବର୍ଟ ଜର୍ଡାନ୍ ପଚାରିଲେ 'ଏହା କାଲି ସୁଦ୍ଧା ପରିଷ୍କାର ହୋଇଯିବ ।'

ପାବ୍‌ଲୋ କହିଲା "ହଁ । ମୁଁ ଭାବୁଛି ଅଣ୍ଟା ମଡ଼ାଲେ ମଧ୍ୟ ଝଡ଼ ଗୁଣ୍ଡିଯିବ ।

ରବର୍ଟ ଜର୍ଡାନ୍ ମନେ ମନେ ଭାବିଲେ ଦେଖ, କେଡ଼େ ବନ୍ଧୁତ୍ୱପୂର୍ଣ୍ଣ । ପବନ ପରି ସେ ମଧ୍ୟ ଗତି ବଦଳାଇ ଅଛି । ତା' ମୁହଁ ଓ ଦେହ ଘୁଷୁରି ପରି । ସେ ଅନେକ ହତ୍ୟା କରିଅଛି ଅଥଚ ତାପମାନ ଯନ୍ତ୍ର ପରି ଅତି ସୂକ୍ଷ୍ମ ଅନୁଭୂତି-ସମ୍ପନ୍ନ । ଘୁଷୁରି ମଧ୍ୟ ଊଣା ବୁଦ୍ଧିଆ ନୁହେ । ପାବ୍‌ଲୋର ଆମ ପ୍ରତି ଅବା ଆମର ଉଦ୍ଦେଶ୍ୟ ପ୍ରତି ଘୋର ବିଦ୍ୱେଷ । ସେହି ବିଦ୍ୱେଷ ଯୋଗୁଁ ସେ ଆମକୁ ଏପରି ଅପମାନ କରୁଅଛି ଯେ ଆମେ ବାଧ୍ୟ ହୋଇ ତାକୁ ହତ୍ୟା କରିବାକୁ ଉଦ୍ୟତ ହେଉ । ଏତକ ସେ ଜାଣି ଗଲାକ୍ଷଣି ବେଶ୍ ଧୀର ନମ୍ର ହୋଇ ଉଠୁଛି ।

"ଇଂରେଜ, ଏଣିକି ଆମର ପାଣିପାଗ ଭଲ ହେବ" ପାବ୍‌ଲୋ କହିଲା ।

ପିଲାର୍ ପଚାରିଲା 'ବହୁବଚନରେ ଆମର କହିବା ତାତ୍ପର୍ଯ୍ୟ କଅଣ ?' ପାବ୍‌ଲୋ କିଛି ମଦ ପିଇନେଇ କହିଲା "ଆମ୍ଭେମାନେ ନୁହେଁତ ଆଉ କଅଣ । ମୁଁ ବାହାରକୁ ଯାଇ ଏକଥା ଭାବି ଦେଖିଲି । ଆମ୍ଭେ ଏକମତ ନହେବୁ ବା କାହିଁକି ?"

ପିଲାର୍ ପଚାରିଲା "କେଉଁଥିରେ ଏକମତ ?"

ପାବ୍‌ଲୋ କହିଲା 'ସବୁ କଥାରେ । ଏହି ପୋଲ ଧ୍ୱଂସ କାମରେ ମୁଁ ତୁମ୍ଭମାନଙ୍କ ସହିତ ଏକମତ ।'

ଅଗଷ୍ଟିନ୍ କହିଲା "ତୁ ଯେଉଁ କଥା କହିଲୁ ତାପରେ କି ଏକମତ ?"

ପାବ୍‌ଲୋ ଜବାବ ଦେଲା 'ହଁ, ପାଗ ବଦଳିବା ସଙ୍ଗେ ମୁଁ ମଧ୍ୟ ବଦଳିଗଲି ।'

ଅଗଷ୍ଟିନ୍ କହିଲା "ଖାଲି ପାଗ ବଦଳିବା ଯୋଗୁ ? ମୁଁ ଯେଉଁ ବିହ୍ଣଗୁପୁଡ଼ା ମାନ ଦେଲି ?"

ପାବ୍‌ଲୋ କହିଲା 'ହଁ, ସେଥିପାଇଁ ମଧ୍ୟ।' ଏହା କହି ନିଜ ଓଠ ଆଉଁସିଲା ।

• ରବର୍ଟ ଜର୍ଡାନ୍ ପିଲାର୍ ଆଡ଼କୁ ଅନାଇଥାନ୍ତି । କୌଣସି ଅଦ୍ଭୁତ ଜନ୍ତୁକୁ ଦେଖିଲା ପରି ସେ ପାବ୍‌ଲୋକୁ ଗୃହିଁଥିଲା । ତାକୁ ଅନ୍ତ କରିବା ପ୍ରସ୍ତାବର ଛାୟା ତେବି ଯାଏ ତା' ମୁହଁରେ । ସେ ଭାବନା ଏଡ଼ିବା ପାଇଁ ସେ ମୁଣ୍ଡ ହଲାଇ କହିଲା "ହଉ ତେବେ ଶୁଣ, ତୋର କଅଣ ଘଟିଛି ?'

"କିଛି ଘଟି ନାହିଁ । ମୁଁ ମୋ ମତ ବଦଳାଇ ଅଛି ଏତିକି ମାତ୍ର ।"

"ତୁ ଦୁଆର ପାଖରେ ଆମ କଥା ଶୁଣୁଥିଲୁ ?"

"ହଁ, କିନ୍ତୁ କିଛି ଶୁଭିଲା ନାହିଁ ।"

"ଆମେ ତୋତେ ମାରି ପକାଇବୁ ବୋଲି ତୋହର ଭୟ ?"

"ମୁଁ ଯେ ଭୟ କରିବା ଲୋକ ନୁହେ, ତୁ ଏତିକି ଜାଣୁ ।"

ଅଗଷ୍ଟିନ୍ ପଚାରିଲା 'ତେବେ ତୋର କଅଣ ଘଟିଛି ? ତୁ ମଦ ପିଇ ମାତାଲ ହେଉଛୁ, ଆମକୁ ଅପମାନ କରୁଛୁ, ଆମ ସହିତ ଭିନ୍ନମତ ହେଉଛୁ, ସ୍ତ୍ରୀଲୋକମାନଙ୍କ ଆଗରେ ଅଶ୍ଳୀଳ କଥା କହୁଛୁ, ଆମ କାମର ବିରୁଦ୍ଧାଚରଣ କରି ଆମ ସମସ୍ତଙ୍କ ମୃତ୍ୟୁ ବିଧାନ କରୁଅଛୁ, ପୁଣି କ୍ଷଣପରେ ବଦଳି ଯାଉଅଛୁ ?'

"ମୁଁ ମାତାଲ ହୋଇଥିଲି ।"

"ବର୍ତ୍ତମାନ ?"

'ମୁଁ ମାତାଲ ନୁହେ ଏବଂ ମୁଁ ମୋର ମତ ବଦଳାଇ ଅଛି ।'

ଅଗଷ୍ଟିନ୍ ଜବାବ ଦେଲା ଅନ୍ୟମାନେ ତୋତେ ବିଶ୍ୱାସ କଲେ କରନ୍ତୁ, ମୁଁ ବିଶ୍ୱାସ କରିବି ନାହିଁ ।'

ପାବ୍‌ଲୋ କହିଲେ 'ବିଶ୍ୱାସ କର ବା ନକର କିନ୍ତୁ ଏହା ନିଶ୍ଚିତ ସତ୍ୟ ଯେ ମୋ ଛଡ଼ା ଅନ୍ୟ କେହି ତୁମକୁ ଗ୍ରୀଡୋସ୍‌କୁ ବାଟ କଢ଼ାଇ ନେଇ ପାରିବ ନାହିଁ ।'

'ଗ୍ରୀଡୋସ୍ କାହିଁକି ?'

ତାହାହିଁ ହେଉଛି ଏକମାତ୍ର ସ୍ଥାନ ଯେଉଁଠାରେ କି ପୋଲ ଧ୍ୱଂସ କଲାପରେ ଯାଇ ରହି ପାରିବୁ ।'

ରବର୍ଟ ଜର୍ଡାନ୍ ପିଲାର୍ ଆଡ଼କୁ ଅନାଇଲେ ଏବଂ ହାତ ଟେକି ତା ଡାହାଣ କାନରେ ମୃଦୁ ଆଘାତ କଲେ । ଚକ୍ଷୁ ତାଙ୍କର ଜିଜ୍ଞାସୁ ।

ପିଲାର୍ ମୁଣ୍ଡ ହଲାଇ ମେରିଆକୁ କଅଣ କହିଲା । ସେ କଥା ମେରିଆ ରବର୍ଟ ଜର୍ଡାନ୍‌ଙ୍କୁ କାନେ କାନେ କହିଦେଲା । ତା ପରେ ରବର୍ଟ ଜର୍ଡାନ୍‌ଙ୍କ ପାଖକୁ ଆସିଲା ।

ଫର୍ଣ୍ଣାଣ୍ଡୋ ବସ୍ତୁର ଗୁଣ୍ଡି ଝାଡ଼ାଇ ପଚାରିଲା 'ପାବ୍‌ଲୋ, ତେବେ ପୋଲ ଧ୍ୱଂସ ପାଇଁ ଆମର ସହଯୋଗ କରିବୁ ?'

ପାବ୍‌ଲୋ କହିଲା 'ହଁ ସାଥୀ ।' ଏହାକହି ସେ ଫର୍ଣ୍ଣାଣ୍ଡୋକୁ ଆଖି ଟିପି ଚାହିଁଲା ।

'ଏ କଥା ସତ୍ୟ ତ ?' ପ୍ରିମିଟିଭୋ ପଚାରିଲା ।

ପାବ୍‌ଲୋ କହିଲା 'ମୋତେ ଭଗବାନଙ୍କ ରାଣ, ମୁଁ ସତ କହୁଅଛି ।'

'ବର୍ତ୍ତମାନ ପୋଲ କାମ ହୋଇପାରିବ ବୋଲି ତୋର ବିଶ୍ୱାସ ହେଲାଣି ?'

'କାହିଁକି ନ ହେବ । ତୁମର କଅଣ ବିଶ୍ୱାସ ନାହିଁ ?'

'ହଁ, ମୋର ବିଶ୍ୱାସ ସବୁବେଳେ ଥିଲା' ଫର୍ଣ୍ଣାଣ୍ଡୋ କହିଲା ।

ଅଗଷ୍ଟିନ୍ କହିଲା 'ମୁଁ ଏଠାରୁ ଚାଲିଯିବାକୁ ଚାହେଁ ।'

'ବାହାରେ ବଡ଼ ଶୀତ ପଡ଼ୁଛି ।'

'ହେଉ ପଡ଼ିଲେ ପଡ଼ୁ । ଏହି ପାଗଳାଗାରର କୋଠରୀରେ ମୁଁ ଅନେକ ଦିନ ଦୁଃଖରେ ରହିପାରେ ।'

'ଏହାକୁ ପାଗଳଖାନା କହିବୁ ନାହିଁ' ଫର୍ଣ୍ଣାଣ୍ଡୋ କହିଲା ।

'ବଡ଼ ଅପରାଧଜନିତ ଅବସ୍ଥା ଦୋଷୀଙ୍କପାଇଁ ଏହା ପାଗଳାଖାନା । ନୁହେଁ ତ ଆଉ କଅଣ ହୋଇପାରେ ?' ଅଗଷ୍ଟିନ୍ ଜବାବ ଦେଲା ।

# ଅଷ୍ଟାଦଶ ପରିଚ୍ଛେଦ

ମେଳା ମହୋତ୍ସବରେ ଆନନ୍ଦ ଉପଭୋଗ ପାଇଁ ତଳଉପର ଏବଂ ଗୋଲଭାବେ ଘୂରିବା ଚରଖିମାନ ଖଞ୍ଜା ହୋଇଥାଏ ଏବଂ ସେଥିରେ ଚଉକି, ଘୋଡ଼ା, ହାତୀ ପ୍ରଭୃତି ବିଭିନ୍ନ ଆସନରେ ବସି ଲୋକେ ଚକ୍ରାକାରେ କିମ୍ବା ତଳ ଉପର ହୋଇ ବୁଲନ୍ତି । କୌଣସି କୌଣସିଟା ପୁଣି ଗୋଲ ବୁଲିଲାବେଳେ ଲହରୀ ଖେଳି ଖେଳି ବୁଲେ ଏବଂ ଯେଉଁଠାରୁ ଆରମ୍ଭ ହୋଇଥାଏ ପୁଣି ପ୍ରତିଥର ବୁଲି ସେହିଠାରେ ପହଞ୍ଚେ । ରବର୍ଟ ଜର୍ଡାନଙ୍କର ଭାବନା ସେହିପରି ତାଙ୍କ ମୁଣ୍ଡ ଭିତରେ ଚକର୍ ଖାଉଥିଲା । ସେ ପାବ୍ଲୋ ସମ୍ବନ୍ଧରେ ଏବଂ ନିଜ କାର୍ଯ୍ୟ ସମାଧାନ ସମ୍ବନ୍ଧରେ ଯେତେ ଯେତେ ଚିନ୍ତା କଲେ, ସବୁତକ ପୁଣି ବୁଲି ବୁଲି ସେହି ମୂଳ ଯାଗାକୁ ଫେରୁଥିଲା । ତାଙ୍କର ଚିନ୍ତା କେତେବେଳେ ଉପରକୁ ଉଠିଯାଉଥିଲା ପୁଣି କେତେବେଳେ ପଡ଼ି ଯାଉଥିଲା ।

ପବନ ବନ୍ଦ ହୋଇ ଯାଇଥାଏ ବୋଲି ଗୁହା ଭିତରଟା ବେଶ୍ ଗରମ ହୋଇ ଉଠିଥାଏ । ସେ ଟେବୁଲ ଉପରେ ନିଜର ଟିପାଖାତା ମେଲାଇ ପୋଲ ଧ୍ୱଂସ କରିବାର ସବୁ ପ୍ରକାର ଯାନ୍ତ୍ରିକ ଅଂଶ ହିସାବ କରି ଦେଖୁଥିଲେ । ସେ ୩ ଖଣ୍ଡି ନକ୍ସା ତିଆରି କଲେ ଏବଂ ସେଥିରେ ପୋଲ ଧ୍ୱଂସ କରିବାର ବିଭିନ୍ନ ଅଂଶ କିଏ କିପରି କରିବ ତାହା ଟିପି ଦେଲେ । ଏହି କାର୍ଯ୍ୟରେ ଯଦି ତାଙ୍କର ମୃତ୍ୟୁ ଘଟେ ତେବେ ଆନ୍ସେଲ୍ମୋ କିପରି କାମଟା ଶେଷ କରିବ ତାହା ସରଳ ଭାବରେ ବୁଝାଇ ଲେଖିଲେ ।

ସେ ଏହି କାମ କରୁଥିଲାବେଳେ, ମେରିଆ ନିକଟରେ ବସି ଦେଖୁଥିଲା । ପାବ୍ଲୋ ଏବଂ ଅନ୍ୟମାନେ ଟେବୁଲ ପାଖରେ ବସି ରହିବା କଥା ସେ ଜାଣୁଥିଲେ ।

ଗୁହା ଭିତରେ ମାଂସ ଓ ଅନ୍ୟ ଖାଦ୍ୟର ବଦଳରେ ବର୍ତ୍ତମାନ ଥିଲା ମଦ ଏବଂ ତମାଖୁର ଗନ୍ଧ ଏବଂ ସେମାନଙ୍କର ଦେହର ଝାଳ ଗନ୍ଧ । ମେରିଆ ନିଜ ହାତ ଟେବୁଲ ଉପରେ ଥୋଇବାରୁ ସେ ତାହା ଉଠାଇ ଦେଲେ । ତା' ହାତଟା ସଦ୍ୟ ସାବୁନରେ ଧୂଆ ହୋଇଥିବାରୁ ସାବୁନିଆ ଗନ୍ଧାଉଥିଲା । ସେ ହାତଟା ଛାଡ଼ି ଦେଇ ତା ଆଡ଼କୁ ନ ଅନାଇ ଆପଣା କାମରେ ଲାଗିଥାନ୍ତି ।

ନକ୍ସା କାମ ଶେଷ କରି ସେ ପୋଲଟା ଉଡ଼ାଇ କାମ କରିବାକୁ ହେବ ସେ ସମ୍ବନ୍ଧରେ ଆଦେଶନାମା ଲେଖିବାକୁ ଲାଗିଲେ । ଲେଖିସାରି ସେ ସନ୍ତୁଷ୍ଟ ହୋଇ ତାକୁ ଥରେ ପଢ଼ିନେଲେ ।

ଭାବିଲେ ଏଥର ସବୁକଥା ପ୍ରାଞ୍ଜଳ କରିଦେଲି । ଏଥିରେ କୌଣସି ତ୍ରୁଟି ନାହିଁ । ଦୁଇ ମୁଣ୍ଡର ଜଗୁଆଳୀ ଘାଟି ଓ ପୋଲଟା ଗୋଲଜଙ୍କ ଆଦେଶ ଅନୁସାରେ ଧ୍ୱଂସ କରିବାକୁ ହେବ । ଏହାହିଁ ମୋର ସମ୍ପୂର୍ଣ୍ଣ ଦାୟିତ୍ୱ । ପାବ୍‌ଲୋ ସମ୍ବନ୍ଧରେ ମୁଣ୍ଡ ଖେଳାଇବା ମୋର ଉଚିତ ନୁହେଁ । ତା କଥା ଯେମିତି ହେଲେ ଫଏସଲା ହେବ । ପାବ୍‌ଲୋ ରହୁକି ଯାଉ ସେ କଥା ଅନ୍ୟମାନେ ବୁଝିବେ । ମୁଁ ଇଚ୍ଛାଟାରେ ଦୁଇ ଦୁଇ ଥର ତା କଥାରେ ମୁଣ୍ଡ ଖେଳାଇ ସାରିଲିଣି । ସେ ଟିପାଖାତା ବନ୍ଦ କରି ମେରିଆକୁ ପଚାରିଲେ ଯେ ସେ କିଛି ବୁଝିଲା କି ନାହିଁ । ମେରିଆ ନାହିଁ ବୋଲି କହି ତାଙ୍କର ଶେଷ ହେଲା କି ନାହିଁ ପଚାରିଲା । ସେ କହିଲେ "ହଁ ବର୍ତ୍ତମାନ ସବୁ ଆଦେଶ ଲେଖି ଦେଲି ।"

ଟେବୁଲ ଆର ପାଖରୁ ପାବ୍‌ଲୋ ଝାପ୍ସା ଦୃଷ୍ଟିରେ ପଚାରିଲା "ଇଂରେଜ କଅଣ କରୁଥିଲ ?" ରବର୍ଟ ଜର୍ଡାନ୍ ଭାବିଲେ ପୁଣି ସେହି ପୁରୁଣା ଚିନ୍ତା ମନରେ ସ୍ଥାନ ଦେବା ଉଚିତ ନୁହେ । ସେ ଉତ୍ତର ଦେଲେ 'ପୋଲ ସମସ୍ୟା ନେଇ ଲେଖୁଥିଲି । ସବୁ ଖୁବ୍ ଭଲ ଭାବରେ କରି ହେବ ।'

ପାବ୍‌ଲୋ କହିଲା "ମୁଁ ମଧ୍ୟ ପଛକୁ ହଟିଯିବା ସମସ୍ୟା ନେଇ ଚିନ୍ତା କରୁଥିଲି ।"

ରବର୍ଟ ଜର୍ଡାନ୍ ତାହାର ଅରକ୍ତିମ ଚକ୍ଷୁ ଓ ଶୂନ୍ୟ ମଦ୍ୟପାତ୍ର ଆଡ଼କୁ ଚାହିଁଲେ । ସେ ଭାବିଲେ ନା, ଆଉ ସେ ପୂର୍ବ ଚିନ୍ତା ମନରେ ଆଣିବା ଠିକ ହେବନାହିଁ । ଗୃହଯୁଦ୍ଧବେଳେ ଗ୍ରାଣ୍ଟ ମଧ୍ୟ ଏହିପରି ମଦ ପିଇ ଚୁର୍ ହେଉ ନଥିଲେ କି ? ଗ୍ରାଣ୍ଟ ଥିଲେ ସେ ପାବ୍‌ଲୋର ମଦପିଆରେ ଭୀଷଣ ରଗି ଯାଆନ୍ତେ । ଗ୍ରାଣ୍ଟ ମଧ୍ୟ ସିଗାର୍

ଟାଣୁଥିଲେ । ପାବ୍‌ଲୋ ମୁହଁରେ ପିକାଟାଏ ଧରି ଟାଣିଲେ ଅବିକଳ ଗ୍ରାଣ୍ଡଙ୍କ ପରି ଦିଶିବ । ସେ ପାବ୍‌ଲୋକୁ ପଚାରିଲେ ଯେ ପଛକୁ ହଟିବା ବୃଦ୍ଧ ସେ କପରି ଭାବରେ ନିର୍ଦ୍ଧାରଣ କରିଅଛ ।

ପାବ୍‌ଲୋ କହିଲା 'ଖୁବ୍ ଭଲ ।'

ତାସଖେଳ ଜାଗାରୁ ଅଗଷ୍ଟିନ୍ ପଚାରିଲା "ତୁ ତେବେ କିଛି ଗୋଟାଏ ମସୁଧା କରିଅଛୁ ?"

ପାବ୍‌ଲୋ ଜବାବ ଦେଲା "ଗୋଟାଏ ନୁହେ, ବହୁ ପ୍ରକାର ।"

'କଅଣ ଏହି ମଦ ବୋଲରୁ ସେ ବୁଦ୍ଧି ପାଇଲୁ ?'

"ହୋଇପାରେ" ବୋଲି କହି ପାବ୍‌ଲୋ ମେରିଆକୁ ପୁଣି ତା ବୋଲରେ ମଦ ଭରି ଦେବାକୁ କହିଲା ।

ଅଗଷ୍ଟିନ୍ କହିଲା "ସେହି ମେଣ୍ଢା ଚମର ମଦ ଥଳିରେ ବହୁତ ସୁନ୍ଦର ସୁନ୍ଦର ଭାବନା ରହିଛି । ତା ଭିତରେ ନିକେ ପଶିଯାଇ ଖୋଜି ଦେଖିଲୁ ।" ପାବ୍‌ଲୋ ଏ କଥାରେ ଜବାବ ଦେଲା ଯେ ସେ ମଦ ବୋଲରେ ମଧ୍ୟ ତାହା ପାଇ ପାରିବ ।

ରବର୍ଟ ଜର୍ଡାନ୍ ଭାବିଲେ ପାବ୍‌ଲୋ ଏଥର ନିଜର ସେହି ଧୂର୍ତ୍ତ ନୀତି ଅନୁସରଣ କରୁ ନାହିଁ । ସେ ବୋଧହୁଏ ତାହାର ପରିଣାମ ଯେ ମରଣ ଏହା ଜାଣି ନେଲାଣି । ମଦୁଆ, ଇତର କିମ୍ବା ନିଷ୍ଠୁର ଲୋକଙ୍କର ପରିଣାମ ଏହାହିଁ ହେବା ସ୍ୱାଭାବିକ । ଖାଲି ଗୋଲକ ଧନ୍ଦାରେ ବୁଲିଥିବା ଛଡ଼ା ସେମାନେ ବାହାରିବା ବାଟ ପାଇ ନଥାନ୍ତି । ସେ ଯାହାହେଉ, ତାଙ୍କ ଭିତରେ ଯେତେ ବାଦ ବିସମ୍ବାଦ ଥାଉ ସେଥିରେ ମୋର ସମ୍ପର୍କ ନାହିଁ ।

ପିଲାର ଚୁଲି ମୁଣ୍ଡରେ ଚଉକି ପକାଇ ବସିଥିଲା । ଦୁଇଜଣ ଖେଳାଳୀଙ୍କ ପିଠି ତା ଆଡକୁ ଥାଏ । ସେ ଖେଳ ଦେଖୁଥିଲା ।

ଗୁହା ଭିତରେ ବାଦ ବିସମ୍ବାଦ ବଦଳରେ ପାରିବାରିକ ଜୀବନର ସ୍ୱାଭାବିକ ସ୍ଥିତି ଦେଖି ରବର୍ଟ ଜର୍ଡାନ୍ ବିସ୍ମିତ ହେଲେ । ଏହା ତାଙ୍କୁ ଅଦ୍ଭୁତ ବୋଧ ହେଲା । ସେ ଭାବିଲେ ଯେ ସେ ଆଉ ସେ ସବୁ ବାଜେ କଥାରେ ମୁଣ୍ଡ ଖେଳାଇବେ ନାହିଁ । ସେ ସବୁ ଦୁଶ୍ଚିନ୍ତା ମୁଣ୍ଡ ବିଗାଡ଼ି ଦେଇଥାଏ ।

ଦୁଇଦିନ ପୂର୍ବେ ପାବ୍‌ଲୋ, ପିଲାର କିମ୍ବା ଅନ୍ୟମାନଙ୍କ ଅସ୍ତିତ୍ୱ ମୁଁ ଜାଣି ନଥିଲି । ମେଣ୍ଢଆ ବୋଲି ମୋ ପାଖରେ ଦିନଆରେ କେହି ନଥିଲା । ଦେଖୁଛୁ ଦିନଆଟା ଖୁବ୍ ସରଳ । ମୁଁ ଗୋଲ୍‌ଜଙ୍କ ଠାରୁ ସମ୍ପୂର୍ଣ୍ଣ ପରିଷ୍କାର ନିର୍ଦ୍ଦେଶ ପାଇ ଏଠାକୁ ଆସିଅଛି । କେତେଗୁଡ଼ିଏ ଅସୁବିଧା ଏବଂ କୁଫଳ ସତ୍ତ୍ୱେପି ସେହି ନିର୍ଦ୍ଦେଶ ପାଳିବା ସମ୍ପୂର୍ଣ୍ଣ ସମ୍ଭବ । ଆମେ ପୋଲଟା ଧ୍ୱଂସ କରି ସାରିଲେ ହୁଏତ ମୁଁ ପୁଣି ଯୁଦ୍ଧ ପ୍ରାନ୍ତକୁ ଫେରି ଯିବି । ଯଦି ଫେରେ ତେବେ ମୁଁ କିଛିକାଳ ମାଦ୍ରିଦ୍ ଠାରେ ରହିବା ପାଇଁ ଅନୁମତି ମାଗିବି । ଏ ଯୁଦ୍ଧରେ କାହାକୁ ଛୁଟି ଦିଆ ଯାଉନାହିଁ କିନ୍ତୁ ୨।୩ ଦିନ ପାଇଁ ମାଦ୍ରିଦ୍ ଯିବାକୁ ମୋତେ ନିଶ୍ଚୟ ଛୁଟି ମିଳିବ ।

ମାଦ୍ରିଦ୍‌ରେ ମୁଁ କେତେଖଣ୍ଡି ବହି କିଣିବି । ଏହାପରେ ଫ୍ଲୋରିଡା ହୋଟେଲ୍‌ରେ ଘରଭଡ଼ା ନେଇ ରହିବି ଏବଂ ଗରମ ପାଣିରେ ଗାଧୋଇବି । ହୋଟେଲର କୁଲି ଲୁଇସକୁ ମଣ୍ଟେକୁରିଆ ଗ୍ରାନ୍‌ଭିଆ ଅବା ଅନ୍ୟ ଯେଉଁଠାରୁ ହେଉ ଏକ ବୋତଲ ସୁରାସାର ମଦ କିଣି ଆଣିବାକୁ ପଠାଇବି । ଗାଧୋଇ ସାରି ମଦ ପିଇ ବିଛଣାରେ ଶୋଇ ବହି ପଢ଼ିବି । ଏହା ପରେ 'ଗୋଲର୍ଡକୁ' ଯାଇ ଦେଖିବି ସେଠାରେ ଖାଇବା ଜିନିଷ ମିଳିବ କି ନାହିଁ ।

ଗ୍ରାନ୍‌ଭିଆ ଠାରେ ଖାଦ୍ୟ ଭଲ ନୁହେଁ ଏଣୁ ସେଠାକୁ ଯିବି ନାହିଁ । ଅଧିକନ୍ତୁ ଠିକ୍ ସମୟରେ ନ ପହଞ୍ଚିଲେ ମିଳିବା ଖାଦ୍ୟ ମଧ୍ୟ ମିଳିବ ନାହିଁ । ସେଠାରେ ପୁଣି ବହୁ ପରିଚିତ ସମ୍ବାଦିକ ରୁଣ୍ଡ ହୋଇଥାନ୍ତି । ତାଙ୍କ ଉପରେ ମୁହିଁ ଫିଟାଇ ହେବ ନାହିଁ ଅଥଚ ମୁହିଁ ବନ୍ଦ କରି ରହିବା ମୋ ପକ୍ଷରେ ସହଜ ନୁହେଁ । ସୁରାସାର ପିଇ କଥା କହିବା ଭଲ ଷ୍ଫୂର୍ତ୍ତି ଜାତ ହେଲେ 'ଗେଲର୍ଡ୍‌କୁ' ଯାଇ କାରକୋଭଙ୍କ ସହିତ ଖାନା ଖାଇବି । ସେଠାରେ ଭଲ ଖାଦ୍ୟ ଓ ଭଲ ମଦ ମିଳେ । ସେଠାରୁ ଯୁଦ୍ଧ ବିଷୟରେ ଖବର ମଧ୍ୟ ଜାଣି ପାରିବି ।

ମାଦ୍ରିଦ୍‌ର ଏହି ଗେଲର୍ଡ୍' ହୋଟେଲ ସେ ପସନ୍ଦ କରୁ ନଥିଲେ । ଏହାକୁ ରୁଷୀୟ ମାନେ ଦଖଲ କରି ନେଇଅଛନ୍ତି । ସେ ପ୍ରଥମେ ସେଠାକୁ ଗଲବେଳେ ତାହା ବିଳାସ ପୂର୍ଣ୍ଣ ଓ ସୁଖାଦ୍ୟ ପରିବେଷିତ ହୋଟେଲ୍ ଥିଲି । ଏହା ଅବରୁଦ୍ଧ ନଗରୀ ପକ୍ଷରେ ବହୁତ ବେଶୀ ଭଲବୋଲି ଧରିବାକୁ ହେବ ଏବଂ ସେଠାରେ କଥାବାର୍ତ୍ତା ଯୁଦ୍ଧର ବିଶେଷ ସମାଲୋଚନାପୂର୍ଣ୍ଣ ଥିଲି । ସେ ସେଠାରେ ଅତି ସହଜରେ ବିଳାସପ୍ରିୟ ହୋଇ ଉଠିଥିଲେ । ତେବେ ରଣକ୍ଷେତ୍ରର ଚିର ସଙ୍କଟମୟ ଏବଂ ଅଭାବ ଅନାଟନ ଭିତରୁ ଯାଇ ଦିନେ ଦୁଇଦିନ ଭଲ ଖାଦ୍ୟପେୟ ସ୍ୱାଦନ କରିବା ସେତେ ଦୋଷାବହ ନୁହେଁ । ଯାହାକୁ ସେ ସମାଲୋଚନା ବୋଲି ଭାବୁଛନ୍ତି ତାହା ପ୍ରକୃତରେ ସତ୍ୟ ।

ତେବେ ଗେଲର୍ଡ଼ ଠାରେ ପୋଲ ଧ୍ୱଂସ କରିବା କାହାଣୀ ବିଶେଷ ସମାଦୃତ ହେବ । ଆଗେ ପୋଲ ଧ୍ୱଂସ କାମ ଶେଷ ହେଉ ।

ମେରିଆକୁ ସେ ଗେଲର୍ଡ଼କୁ ନେଇ ପାରିବେ ନାହିଁ । କିନ୍ତୁ ତାକୁ ହୋଟେଲ୍‌ରେ ଛାଡ଼ି ଗଲେ ସେ ମଧ୍ୟ ଗରମ ପାଣିରେ ଗାଧୋଇବ ଏବଂ ମୁଁ ଗେଲର୍ଡରୁ ଫେରିଲା ବେଳକୁ ତାହାର ପ୍ରସାଧନ ଶେଷ ହୋଇଥିବ । ହଁ, ତା କଥା କାର୍‌କୋଭଙ୍କୁ କହିସାରି ତାକୁ ହୋଟେଲ୍‌ରେ ରଖିବାକୁ ହେବ ଏବଂ ପରେ ଗେଲର୍ଡକୁ ଆଣିବାକୁ ପଡ଼ିବ । ସମସ୍ତେ ତାକୁ ଦେଖିବାକୁ କୌତୁହଳୀ ହେବେ । ଧୁଏତ ମୁଁ ଆଦୌ ଗେଲର୍ଡ଼କୁ ଯିବି ନାହିଁ । ଗ୍ରାନ୍‌ଭିଆରେ ଖାନା ଖାଇ ଫ୍ଲୋରିଡାକୁ ଶୀଘ୍ର ଫେରିଯିବି । କିନ୍ତୁ ଗେଲର୍ଡକୁ ଯିବା ପାଇଁ ମୋର ପ୍ରବଳ ଆଗ୍ରହ । କାରଣ ସେଠାର ଦୃଶ୍ୟ, ସେଠାର ଖାଦ୍ୟ, ସେଠାର ବିଳାସ ମୁଁ ପୃଥିବୀରେ ଉପଭୋଗ କରିବାକୁ ଚାହେଁ । ଗେଲର୍ଡ଼ରୁ ମୁଁ ଫ୍ଲୋରିଡାକୁ ଫେରି ଆସିବି । ସେଠାରେ ମେରିଆ ଅପେକ୍ଷା କରୁଥିବ । ଅବଶ୍ୟ ଏ ସବୁ କରି ହେବ ପୋଲ ଧ୍ୱଂସ କାମ ସମାଧାନ ପରେ ।

ଗେଲର୍ଡ଼ ହେଉଛନ୍ତି ଏମିତି ଗୋଟାଏ ଜାଗା ଯେଉଁଠାରେ କି ପ୍ରସିଦ୍ଧ ଚାଷୀ ଏବଂ ଶ୍ରମିକ ଦଳରୁ ବାହାରିଥିବା ସ୍ପେନ୍‌ଦେଶର ସେନାପତିମାନଙ୍କ ସହିତ ସାକ୍ଷାତ ମିଳିପାରେ । ପୂର୍ବରୁ କୌଣସି ସାମରିକ ତାଲିମ ପାଇ ନଥିଲେ ମଧ୍ୟ ଏମାନେ ଯୁଦ୍ଧ ଆରମ୍ଭ ବେଳକୁ ସୈନ୍ୟ ଦଳରେ ଯୋଗ ଦେଇ ନିଜର ବୁଦ୍ଧି ବଳ ଏବଂ କୌଶଳ ପ୍ରଦର୍ଶନ କରି ବଡ଼ ସେନାପତି ପଦ ପାଇ ଅଛନ୍ତି । ଏମାନଙ୍କ ଭିତରୁ ଅନେକ ରୁଷ ଭାଷା ଜାଣନ୍ତି । କେତେ ମାସ ପୂର୍ବେ ରବର୍ଟ୍ ଜର୍ଡ଼ାନ ଏ କଥା ଜାଣି ପାରିବାରୁ ତାଙ୍କର ଗୋଟାଏ ବଡ଼ ଭୁଲ ଭାଙ୍ଗି ଯାଇଥିଲା ଏବଂ ସେ ନିଜର କାମ ସମ୍ବନ୍ଧରେ ସନ୍ଦିଗ୍ଧ ହୋଇ ପଡ଼ିଥିଲେ । ପରେ ପ୍ରକୃତ ବିଷୟ ଜାଣିଲାରୁ ତାଙ୍କର ସେ ଭାବ କଟି ଯାଇଥିଲା । ୧୯୩୪ ବିଦ୍ରୋହରେ ଏମାନେ ସମସ୍ତେ କାମକରି ବିଫଳ ହେବାରୁ ଦେଶ-ଛାଡ଼ି ରୁଷିଆକୁ ପଳାଇ ଥିଲେ । ରୁଷୀୟମାନେ ତାଙ୍କୁ ଯୁଦ୍ଧବିଦ୍ୟା ଶିକ୍ଷା କରିବାକୁ ସାମରିକ ବିଦ୍ୟାଳୟ ଏବଂ ଲେନିନ୍ ଅନୁଷ୍ଠାନକୁ ପଠାଇଥିଲେ । ସେଠାରେ ତାଲିମ ପାଇଲେ ସେମାନେ ସୈନ୍ୟ ଚାଳନାରେ ଦକ୍ଷତା ହାସଲ କରି ପରବର୍ତ୍ତୀ ବିଦ୍ରୋହରେ ଯୋଗ ଦେଇ ପାରିବେ । ସାମ୍ୟବାଦୀ ଆନ୍ତର୍ଜାତିକ ସଂସ୍ଥା ପକ୍ଷରୁ ଏପରି ଶିକ୍ଷାର ବ୍ୟବସ୍ଥା ରୁଷିଆରେ କରା ଯାଇଅଛି । ବିପ୍ଳବ ବେଳେ କୌଣସି ବିଦେଶୀକୁ ସେଥିରେ ଯୋଗ ଦେବାର ନିୟମ ନାହିଁ । କିମ୍ବା ବେଶୀ କଥା ଜାଣିବାକୁ ଦିଆ ଯାଏ ନାହିଁ । ଯଦି କୌଣସି କାମ ମୁଖ୍ୟତ ଯଥାର୍ଥ ତେବେ ସେ ସମ୍ବନ୍ଧରେ ମିଥ୍ୟା ଧର୍ତ୍ତବ୍ୟ ନୁହେ । ମିଛ ସବୁଠି ଚାଲେ । ଜର୍ଡ଼ାନ୍ ମିଛ କହିବାକୁ ଘୃଣା କରୁଥିଲେ ମାତ୍ର

ଶେଷକୁ ତାହା ତାଙ୍କ ଦେହସହା ହୋଇଗଲା । ସେ ଗେଲର୍ଡ଼ ଠାରେ ଜାଣି ପାରିଲେ ଯେ ଭ୍ଲେନ୍‌ଟିନ୍ ଗନ୍‌ଜାଲେଜ୍ ଓରଫେ ଏଲ୍ କାମ୍ପେସିନୋ କେବେହେଲେ ଗୃଷୀ ନଥିଲେ । ସେ ସ୍ପେନସ୍ ବୈଦେଶିକ ସୈନ୍ୟ ଦଳର ଜଣେ ସାର୍ଜେଣ୍ଟ ଥିଲେ । ନିଜ ଦଳ ଛାଡ଼ି ସେ ମରକୋର ଆବଦେଲ୍ କ୍ରିମଙ୍କ ଦଳରେ ଯୁଦ୍ଧ କରିଥିଲେ । ଏଥିରେ ଦୋଷଟାବା କଅଣ ହେଲା ? ଏ ଯୁଦ୍ଧରେ ଗୃଷୀ ଦଳରୁ ନେତା ବାଛିବା ଉଚିତ । ସମସ୍ତ ଅଭାବରୁ ଭଲ ମନ୍ଦ ବାଛିବାର ଅବସର ମିଳେନାହିଁ । ଜଣେକେହି ପାବ୍‌ଲୋ ଶ୍ରେଣୀର ହେଲେମଧ୍ୟ ଚଳି ପାରେ । ସୁତରାଂ ଜଣେ କାହାକୁ ତୁରନ୍ତ ଠିଆ କରାଇବା କଥା । କାମ୍ପେସିନୋରଙ୍କ ଦାଢ଼ି କଳା ଥିଲା, ଓଠ ନିଗ୍ରୋଙ୍କ ପରି ମୋଟା, ଆଖି ଗୃଉଁଳା । ରବର୍ଟ ଜର୍ଡାନ୍ ତାଙ୍କୁ ଦେଖି ମନେ କରିଥିଲେ ସେ ପ୍ରକୃତ ଗୃଷୀ ନେତା ପରି ସେ ମଧ୍ୟ ବିପକ୍ଷଙ୍କୁ ବାଧା ଦେଇ ପାରିବେ । ସେ ଯେପରି ସାହସୀ ସେପରି ଗୁଣ୍ଡୁଆ ଲୋକଥିଲେ । ଏହା ସତ୍ତ୍ୱେପି ଲୋକଟା ନିଜକୁ ପ୍ରକୃତ ଗୃଷୀ ବୋଲି ବିଶ୍ୱାସ କରୁଥିଲା ଏବଂ ଅତି ଦମ୍ଭରେ ପରିଣାମ ନ ଭାବି ଯାହା ମୁହଁରେ ଆସିଲା କହିଯାଉ ଥିଲା । ବ୍ରିଗେଡ଼୍ ସେନାପତି ହିସାବରେ ସେ ଅଭୁତ ଥିଲା ଏବଂ ପରିପୂର୍ଣ୍ଣ ପରାଜୟ ବେଳେ ମଧ୍ୟ ସେ ନିଜର ଟାଣପଣ ଛାଡ଼ୁ ନଥିଲା ।

ଗେଲର୍ଡ଼୍‌କୁ ଏନ୍‌ରିକ୍ ଲିଷ୍ଟର୍ ନାମକ ଆଉଜଣେ ଗାଲିସିଆ ବାସୀ ପଥୁରିଆ ଆସୁଥିଲେ । ସେ ଏକ ଡିଭିଜନ୍ ସୈନ୍ୟଦଳର ସେନାପତି ଏବଂ ରୁଷ୍ ଭାଷାରେ କଥା କହୁଥିଲେ । ଆଣ୍ଡାଲୁସିଆର ଜଣେ ବଢ଼େଇ ମଧ୍ୟ ଏକ ପାଲଟନ୍‌ର ଅଧିନାୟକ ହୋଇ ଥିଲେ । ତାଙ୍କ ଦେଖା ସେଠାରେ ମିଳୁଥିଲା । ସେ ଲୋକଟି ରୁଷ ଭାଷା ଶିଖିବାର ସୁଯୋଗ ପାଇ ନଥିଲା ହେଲେ ତାଙ୍କର ଦଳଗତ ନିଷ୍ଠା ଅତି ନିର୍ମଳ ବୋଲି ରୁଷୀୟମାନେ ତାଙ୍କୁ ଭରି ଖାତିର କରୁଥିଲେ । ସେ ସବୁଠାରୁ ଭୁଦ୍ଧିମାନ ଥିଲେ ।

ବାସ୍ତବ ଗେଲ୍‌ର୍ଡରେ ବହୁ ବିଷୟ ବ୍ୟବହାରିକ ଭାବରେ ଶିକ୍ଷା କରିବାର ସୁବିଧା ଥିଲା । କିପରି କଅଣ କଲେ ବାସ୍ତବିକ ଫଳପ୍ରଦ ହେବ ତାହା ସେଠାରୁ ଶିକ୍ଷା ମିଳୁଥିଲା । ରବର୍ଟ ଜର୍ଡାନ୍ ନିଜର ଶିକ୍ଷା ଆରମ୍ଭ ମାତ୍ର କରିଛନ୍ତି ସୁତରାଂ ଗେଲର୍ଡ଼ ଯାଇ ନାନା ପ୍ରକାର ଅଭିଜ୍ଞ ଏବଂ କାର୍ଯ୍ୟଦକ୍ଷ ଲୋକଙ୍କ ସମ୍ପର୍କରେ ଆସି ନିଜ ଶିକ୍ଷା ସମ୍ପୂର୍ଣ୍ଣାଙ୍ଗ କରି ପାରିବେ । ପ୍ରଥମ ଅବସ୍ଥାରେ ସେ ନାନା ବାଜେ କଥାରେ ଆସ୍ଥା ସ୍ଥାପନ କରିଥିଲେ ବର୍ତ୍ତମାନ ଅଭିଜ୍ଞତା ବୃଦ୍ଧି ସଙ୍ଗେ ସଙ୍ଗେ ନିଜର ଜ୍ଞାନର ପରିସୀମା ବଢାଇ ପାରିଛନ୍ତି । ସେ ନିଜେ ଯାହା ସତ୍ୟ ବୋଲି ବିଶ୍ୱାସ କରୁଥିଲେ ସେହି ବିଶ୍ୱାସ ସୁଦୃଢ଼ କରିଅଛନ୍ତି । କଅଣ ହେବା ଉଚିତ ସେ କଥା ତାଙ୍କ ପକ୍ଷରେ ଅବାନ୍ତର, କଅଣ ପ୍ରକୃତରେ ଘଟିଅଛି ତାହାହିଁ ତାଙ୍କର ଧ୍ୟେୟ । ଯୁଦ୍ଧବେଳେ ତ ନାନାପ୍ରକାର

ମିଥ୍ୟା ପ୍ରଗ୍ରରଣା ଘଟିଥାଏ କିନ୍ତୁ ସେହି ପ୍ରଗ୍ରରଣାଠାରୁ କାମେସିନୋ, ଲିଷ୍ଟର, ମଡ଼େଷ୍କୋ ପ୍ରଭୃତିଙ୍କର କ୍ରିୟାକଳାପ ଅଧିକ ସତ୍ୟ । ପାଠକେ ଏହି ସତ୍ୟ ସମସ୍ତେ ଜାଣିପାରିବେ ।

ମାଦ୍ରିଦ୍‌କୁ ଯାଇ ହୋଟେଲରେ ଗାଧୋଇ ପାଧୋଇ ବିଶ୍ରାମ କରି ବାହି କିଣି ପଡ଼ି ସେ ଗେଲର୍ଡଙ୍କୁ ଯିବ, ପୂର୍ବରୁ କଳ୍ପନା କରି ରଖିଥିଲେ । ସେତେବେଳେ ମେରିଆ ସମ୍ପର୍କରେ ଆସି ନଥିଲେ । ସେ ବର୍ତ୍ତମାନ ମେରିଅଙ୍କୁ ସାଙ୍ଗରେ ନେଇ ହୋଟେଲରେ ରହିବେ । ଗେଲର୍ଡଙ୍କୁ ଗଲାବେଳେ ମେରିଆ ଏକୁଟିଆ ହୋଟେଲରେ ଅପେକ୍ଷା କରିବ । ଏଟା ଆଉ କି ବଡ଼ କଥା । ଏମିତିତ ମେରିଆ ବଣ ଗୁହାରେ ତାଙ୍କୁ ଅପେକ୍ଷା କରୁଅଛି । ମାଦ୍ରିଦଠାରେ ସେ ୩ଦିନ ରହିବେ । ସେଠାରେ ସିନେମା, ଥିଏଟର୍‌, ଆଜି ମେରିଆକୁ ଦେଖାଇବେ । ୩ଦିନ ଏସବୁ ଉପଭୋଗ କରିବା ପାଇଁ ଯଥେଷ୍ଟ । ମେରିଆ ମଧ୍ୟ ଖୁବ୍‌ ସୁଖି ହେବ ।

ଏଠା ଗୁହାଠାରୁ ଗେଲର୍ଡ ସେତେଦୂର ମନେ ହୁଏ ବାସ୍ତବରେ ସେତେ ନୁହେଁ । କାସ୍କିନ୍‌ ତାଙ୍କୁ ପ୍ରଥମେ ଥିଏଟର୍‌କୁ ନେଇ ଯାଇଥିଲେ । ସେଠାରେ କାସକିନ୍‌ଙ୍କ କଥାରେ ସେ କାର୍‌କୋଭ୍‌ ସହିତ ସାକ୍ଷାତ କରିଥିଲେ । କାର୍‌କୋଭ୍‌ ମାର୍କିନ ଲୋକଙ୍କ ସହିତ ପରିଚିତ ହେବାକୁ ଆଗ୍ରହ ଥିଲେ । କାର୍‌କୋଭ୍‌ ଲେପ୍‌ଡ଼ି ଭେଗାଙ୍କ ଲିଖିତ ଫ୍ଲୁଏଣ୍ଟ ଓଭେଜୁନା ଗୀତିନାଟ୍ୟକୁ ପୃଥିବୀର ଶ୍ରେଷ୍ଠତମ ବୋଲି ମନେ କରୁଥିଲେ ।

କାର୍‌କୋଭ ଚମତ୍କାର ଲୋକ । ତାଙ୍କ ପରି ବୁଦ୍ଧିଆ ଲୋକ ବିରଳ । ସେ ସବୁ ବେଳେ କଳା ବୁଟ ଜୋତା, ପାଉଁସିଆ ପାଇଜାମା ଓ କୁରୁତା ପିନ୍ଧୁଥିଲେ । ତାଙ୍କର ହାତ ଗୋଡ ସାନ ସାନ, ମୁହଁ ଫୁଲୁଙ୍କିଆ ଏବଂ ଦାନ୍ତ ବେମାରି ଯୋଗୁ କଥା କହିଲାବେଳେ ଦାନ୍ତ ଚିପି କଥା କହୁଥିଲେ । ଏହା ସତ୍ତ୍ୱେ ତାଙ୍କର ତୀକ୍ଷ୍‌ଣ ବୁଦ୍ଧି ଏବଂ ଅନ୍ତରର ମର୍ଯ୍ୟାଦା ଜ୍ଞାନ ଯେମିତି ୧୬ପଣି ଥିଲା ବାହ୍ୟିକ ଔଦ୍ଧତ୍ୟ ମଧ୍ୟ ସେହି ପରିଥିଲା ।

ଗେଲର୍ଡ ଏକ ପ୍ରକାର ଲଗ୍ନ ବିଳାସରେ ବୁଡ଼ି ରହିଥିଲା । ଆବିଳତା ମଧ୍ୟ ସେଠାରେ ବିସ୍ତର ଥିଲା । କିନ୍ତୁ ଦୁନିଆର ଏକ ଷଷ୍ଠାଂଶ ଶାସନ କରୁଥିବା ଶକ୍ତିର ପ୍ରତିନିଧି ଏପରି ବିଳାସରେ ବାସକଲେ ଦୋଷ ବୋଲି ଧରିବା ଠିକ୍ ହେବ ନାହିଁ । ପ୍ରଥମେ ରବର୍ଟ ଜର୍ଡାନ୍‌ଙ୍କର ଏହି ଦୃଶ୍ୟ ଦେଖି ବିତୃଷ୍ଣା ଜାତ ହୋଇଥିଲା ମାତ୍ର ପଛକୁ ସେ ମଧ୍ୟ ଏହା ପସନ୍ଦ କରିଥିଲେ । ପ୍ରଥମେ କାସ୍କିନ୍ ଓ କାରକୋଭ୍‌ ତାଙ୍କ

ପ୍ରତି ଘୋର ତାଚ୍ଛଲ୍ୟ ପ୍ରଦର୍ଶନ କରିଥିଲେ ମାତ୍ର ପରେ ତାଙ୍କର କାହାଣୀ ଶୁଣି ସେମାନେ ବଦଳି ବନ୍ଧୁ ପାଲଟି ଗଲେ ।

କାସ୍‌କାନ୍‌ଙ୍କୁ ଷ୍ଟେସନ୍‌ର ଲୋକେ ପସନ୍ଦ ନକଲେ ମଧ୍ୟ ତାଙ୍କର କାମ ପାଇଁ କିଛି କହୁଥିଲେ । ସେ କାମ ବିଷୟ କେହି ରବର୍ଟ ଜର୍ଡାନଙ୍କୁ କହି ନଥିଲେ ମାତ୍ର ବର୍ତ୍ତମାନ କାସକାନ୍ ମଲ୍ଲପରେ କହିବେ ବୋଲି ମନେ ହୁଏ । ସେ ଯାହାହେଉ କାର୍‌କୋଭ୍ ବର୍ତ୍ତମାନ ତାଙ୍କର ଅନ୍ତରଙ୍ଗ ବନ୍ଧୁ । ଏହା ଛଡ଼ା କାରକୋଭ୍‌ଙ୍କର କ୍ଷୀଣାଙ୍ଗୀ ସହଧର୍ମିଣୀ ମଧ୍ୟ ତାଙ୍କର ବନ୍ଧୁ । କାରକୋଭ୍‌ଙ୍କର ଏକ ରକ୍ଷିତା ମଧ୍ୟ ତାଙ୍କର ବନ୍ଧୁ ହୋଇଥିଲା । ସେ ରକ୍ଷିତାର ବେଶଭୂଷା ଅଙ୍ଗ ସୌଷ୍ଠବ ଓ ଗୃହଚଳଣି ସଦା ସର୍ବଦା ପ୍ରେମିକାପରି ରହୁଥିଲା । ଏହି ରକ୍ଷିତା ଜଣଙ୍କର ଆକାଙ୍‌କ୍ଷା ଖୁବ୍ ଉଚ୍ଚ ଥିଲା ଏବଂ ସେ ଅତ୍ୟନ୍ତ ବିଶ୍ୱସ୍ତ ଥିଲା । ଏ ଦୁଇଟି ଛଡ଼ା କାର୍‌କୋଭ୍‌ଙ୍କର ଆଉ ଜଣେ ଦୁଇଜଣ ସ୍ତ୍ରୀ ମଧ୍ୟ ଅନ୍ୟ କେଉଁଠାରେ ଥିବାର ଶୁଣାଯାଇଥିଲା । ସ୍ତ୍ରୀଲୋକ ଚିହ୍ନିବାରେ କାର୍‌କୋଭ୍ ଖୁବ୍ ଦକ୍ଷ ଥିଲେ ।

ଗେଲର୍ଡଠାରେ ତଳ ମହଲ ଦୁଆରେ ସନ୍ତ୍ରୀ ପ୍ରହରୀ ରହୁଥିଲେ । ଆଜି ହୁଏତ ମାଦ୍ରିଦ୍‌ରେ ସେ ସ୍ଥାନଟି ସବୁଠାରୁ ଆରାମପ୍ରଦ ସ୍ଥାନ ହୋଇଥିବ । ସେ ଏହି ବଣ ଜଙ୍ଗଲରେ ନଥାଇ ଆଜି ସେଠାରେ ଥିଲେ କେତେ ଭଲ ନ ହୁଅନ୍ତା ।

ରବର୍ଟ ଜର୍ଡାନ୍ ମେରିଆଙ୍କୁ ନେଇ କାର୍‌କୋଭ୍‌ଙ୍କୁ ଦେଖାଇବେ ବୋଲି ଭାବିଲେ ମାଣେମେତକ କହିବା ପୂର୍ବରୁ ଅନୁମତି ପାଇବା ଦରକାର । ଏଠାରେ କାମ ପରେ ତାଙ୍କୁ ସେଠାରେ କିପରି ଗ୍ରହଣ କରାଯିବ ତାହା ମଧ୍ୟ ଦେଖିବା କଥା । ସେଠାରେ ହୁଏତ ଗୋଲ୍‌ଜ ଆଇପାରନ୍ତି । ମେରିଆ ସମ୍ବନ୍ଧରେ ଗୋଲ୍‌ଜ ତାଙ୍କୁ ଥଟ୍ଟା କରିପାରନ୍ତି ।

ଏହିଭଳି ନାନା ଦୃଶ୍ୟ ସେ କଳ୍ପନା ନେତ୍ରରେ ଦେଖି ଶେଷକୁ ପାବ୍‌ଲୋ ପାଖକୁ ଯାଇ ତାହାର ମଦ ଭାଣ୍ଡରୁ ପିଆଲାଏ ମଦ ଉଠାଇ ନେଲେ । ପାବ୍‌ଲୋ ମୁଣ୍ଡ ହଲାଇ ଅନୁମତି ଦେଲା । ରବର୍ଟ ଜର୍ଡାନ୍ ଭାବିଲେ ଯେ ପାବ୍‌ଲୋ ସାମରିକ ପ୍ରସଙ୍ଗ ନିରୀକ୍ଷଣ କରୁଅଛି । ଲୋକଟା କାର୍ଯ୍ୟକ୍ଷେତ୍ରର ଖ୍ୟାତି ବଦଳରେ ମଦଭାଣ୍ଡରେ ସମସ୍ୟା ସମାଧାନରେ ତତ୍ପର । କିନ୍ତୁ ଯେତେ ବଦମାସ ହେଲେ ମଧ୍ୟ ଲୋକଟାର କିଛି କରାମତି ଅଛି ନଚେତ୍ ଏତେ ଦୀର୍ଘକାଳ ଗୋଟାଏ ଦଳ ଦାଙ୍ଗାର ସହିତ ଚଳାଇ ଆସନ୍ତା କିପରି ? ମାର୍କିନ ଗୃହ ଯୁଦ୍ଧରେ ଏଭଳି ଗରିଲା ନେତା କିପରି କାମକରି ଆଆନ୍ତେ

ରବର୍ଟ କର୍ଡ଼ାନ୍ ଚଳାଇଲେ । ଅନେକ ଅବଶ୍ୟ ଥିଲେ ମାତ୍ର ସେମାନଙ୍କ କଥା ଲୋକେ ଜାଣନ୍ତି ନାହିଁ । ମାର୍କିନ ରଣ ନେତାମାନେ ମଦ ପିଉଥିଲେ ।

ସେନାପତି ଗ୍ରାଣ୍ଟ୍ କିମ୍ବା ରବର୍ଟ କର୍ଡ଼ାନଙ୍କ ନିଜ ଅଜା ମଦ ପିଇ ବହୁକାଳ ମାତାଲ ରହିବା କଥା ସୁବିଦିତ । କିନ୍ତୁ ସେମାନଙ୍କୁ ଥରେ ଜାଗ୍ରତ କରି ପାରିଲେ ନିଶା ସଙ୍ଗେ ସଙ୍ଗେ ଛୁଟିଯାଉଥିଲା । କିନ୍ତୁ ସ୍ପେନ୍‌ର ଏହି ଗୃହ ଯୁଦ୍ଧରେ ଏ ପର୍ଯ୍ୟନ୍ତ ଗ୍ରାଣ୍ଟ୍, ସେରମାନ୍, ଷ୍ଟୋନ ଓ୍ୱାଲ୍ କିମ୍ବା ଜାକସନ୍‌ଙ୍କ ଭଳି ସେନାପତି କୋଉ ପକ୍ଷରୁ ବାହାରି ନାହାନ୍ତି । ତଳ ପାହ୍ୟାର ଯେବ୍ ଷ୍ଟୁଆର୍ଟ କିମ୍ବା ସେରିଡାନ୍ ମଧ୍ଯ ଦେଖା ଯାଇନାହିଁ । ଉଭୟ ପକ୍ଷରେ ଅନେକ ଗୁଡ଼ିଏ ମାକ୍‌କ୍ଲିଲନ୍ ଶ୍ରେଣୀର ଲୋକ ଦେଖା ଦେଇ ଅଛନ୍ତି ମାତ୍ର ।

ଏହି ଯୁଦ୍ଧରେ ସାମରିକ ବିଚକ୍ଷଣ ବ୍ୟକ୍ତି ଜଣେ ହେଲେ ଦେଖାଯାଇ ନାହିଁ । କ୍ଲେବର୍, ଲୁକାସ୍ ଏବଂ ହାନ୍‌ସ ପ୍ରଭୃତି ମାଡ୍ରିଡ୍ ସହରର ପ୍ରତିରକ୍ଷା କଲେକି ଆନ୍ତର୍ଜାତିକ ବିଗ୍ରେଡ୍‌କୁ ଦକ୍ଷତାର ସହିତ ପରିଚାଳନା କରିଅଛନ୍ତି ଏକଥା ସତ୍ୟ ମାତ୍ର ସେମାନଙ୍କ ଗର୍ବ, ଦମ୍ଭ, ଦର୍ପ, ଆତ୍ମମ୍ଭରିତା ଏତେ ବେଶୀ ଏବଂ ପରସ୍ପର ପ୍ରତି ଈର୍ଷା ଏପରି ତୀବ୍ର ଯେ କ୍ଲେବର୍‌ଙ୍କ ଖ୍ୟାତି ପ୍ରଚାର ଦେଖି ମିଆଜା ତାଙ୍କୁ ସେଠାରୁ କାଢ଼ି ନେବାକୁ ରୁଷୀୟମାନଙ୍କୁ ବାଧ୍ୟ କରିଥିଲେ । କ୍ଲେବର୍ ସୈନିକ ହିସାବରେ ଭଲ ହେଲେ ମଧ୍ୟ ସୀମିତ ଶକ୍ତି ବିଶିଷ୍ଟ ଏବଂ ନିଜର ବହୁତ ବଡ଼ାଇ କରୁଥିଲେ । ଗୋଲ୍‌ଜ ଯେମିତି ଭଲ ସୈନିକ୍ ସେମିତି ଦକ୍ଷ ସେନାପତି ମାତ୍ର ତାଙ୍କୁ ତଳ ପାହ୍ୟାରେ ରଖା ଯାଇଅଛି । ସ୍ୱାଧୀନ ଭାବରେ କିଛି କରିବା କ୍ଷମତା ତାଙ୍କର ନାହିଁ । ଉପସ୍ଥିତ ଆକ୍ରମଣ ଗୋଲ୍‌ଜଙ୍କର ସବୁଠାରୁ ବଡ଼ କାମ କିନ୍ତୁ ରବର୍ଟ କର୍ଡ଼ାନ୍ ଯାହା ଶୁଣିଛନ୍ତି ତହିଁରୁ ଏହାକୁ ସେପରି ଗୁରୁତ୍ୱ ଦେଉ ନାହାନ୍ତି । ସେନାପତି ଗଲ୍ ନାମକ ଜଣେ ହଙ୍ଗେରୀୟ ଲୋକ ଅଛନ୍ତି । ତାଙ୍କ ସମ୍ବନ୍ଧରେ ଏତିକେଥା ଶୁଣାଯାଏ ଯେ ତାଙ୍କୁ ଗୁଲି କରି ମାରିଦେବା ଉଚିତ । ଗେଲର୍ଡ୍‌ଠାରେ ଯେଉଁ ସବୁ ଗୁଜବ ଶୁଣାଯାଏ ତହିଁର ଦଶମାଂଶହିଁ ସତ୍ୟ ହେଲେ ସବୁଗୁଡ଼ାକ ଅପଦାର୍ଥ କହିବାକୁ ହେବ ।

ଗୁଆଡାଲଜାରା ଯୁଦ୍ଧରେ ଇଟାଲୀୟ ମାନଙ୍କୁ ବିଧ୍ୱସ୍ତ କରାଯାଇଥିଲା । ସେହି ମାଲଭୂମି ଯୁଦ୍ଧରେ ରବର୍ଟ କର୍ଡ଼ାନ୍ ନଥିଲେ । ସେତେବେଳେ ସେ ଏଷ୍ଟ୍ରିମାଦୁରାଠାରେ ଥିଲେ । ଦୁଇ ସପ୍ତାହ ପରେ ଗେଲର୍ଡଠାରେ ହାନ୍‌ସ ତାଙ୍କୁ ସବୁ ଖବର ଦେଇଥିଲେ । ସେ ଯୁଦ୍ଧରେ ଇଟାଲୀୟମାନେ ପ୍ରାୟ ଜିଣି ଆସୁଥିଲେ । ସେମାନେ ଆମର ସୈନ୍ୟଙ୍କୁ ଛତ୍ର ଭଙ୍ଗ କରାଇବାରେ ସମର୍ଥ ହୋଇଥିଲେ । ଟ୍ରିଜୁଏକଠାରେ ୧୨ଶ ବ୍ରିଗେଡ୍‌ର ସୀମା ରେଖା ସେମାନେ ଭେଦ କରିଥିଲେ । ଏତିକିବେଳେ ଆମ ପକ୍ଷରୁ ଗୋଟିଏ

କୌଶଳ କରିଗଲେ ଯେଉଁ କୌଶଳକି ଇଟାଲୀୟ ଛଡ଼ା ଅନ୍ୟ ଯେ କୌଣସି ଜାତିର ସୈନ୍ୟ ଦଳ ପ୍ରତି ଅପ୍ରଯୁଜ୍ୟ ଏବଂ ସେତିକିରେ ଆମପକ୍ଷ ଲଢ଼େଇ ଜିଣିଗଲେ ।

ଯୁଦ୍ଧ କ୍ଷେତ୍ରର ନକସା ଦେଖାଇ ହାନ୍‌ସ ଏ ସବୁ କଥା ରବର୍ଟ ଜର୍ଡ଼ାନ୍‌ଙ୍କୁ ବୁଝାଇ ଦେଇଥିଲେ । ସେ ନିଜର ମାନଚିତ୍ର ପେନ୍ସିଲରେ ଏହାକୁ ଘାଙ୍ଗେ ଘାଙ୍ଗେ ନେଇ ବୁଲୁଥିଲେ । ହାନ୍‌ସ ଜଣେ ଭଲ ସୈନିକ ଓ ସଙ୍ଗୀ । ଲିଷ୍ଟର୍, ମଡ୍ରେଷ୍ଟୋ ଏବଂ କାମ୍ପେସିନୋଙ୍କର ସ୍ପେନ୍ ଦେଶୀ ସୈନ୍ୟ ସେହି ଯୁଦ୍ଧରେ ଭଲ ଲଢ଼େଇ କରିଥିଲେ । ସୈନ୍ୟଦଳର ପରିଚାଳନା ଏବଂ ଶୃଙ୍ଖଳା ନିମିତ୍ତ ସେନାପତିମାନେ ମଧ୍ୟ ଗୌରବ ପାଇବା କଥା । କିନ୍ତୁ ଏମାନେ କେତେବେଳେ କଅଣ କରିବେ ତାହା ରୁଷୀୟ ପରାମର୍ଶଦାତାଙ୍କ ବିଚାର ମତେ ହେଉଥିଲା । ଉଡ଼ାଜାହାଜର ଚାଳକ ମଧ୍ୟ ସେହି ରୁଷୀୟ ପରାମର୍ଶଦାତାଙ୍କ ନିର୍ଦ୍ଦେଶରେ କାମ କରୁଥିଲେ । ଏ ବର୍ଷ ରୁଷୀୟମାନେ ଅଲଗା ହୋଇଗଲେ ପରେ ଏମାନେ ସ୍ୱାଧୀନ ଭାବରେ କିପରି କରାମତି ଦେଖାଉଛନ୍ତି ଜଣା ପଡ଼ିସିବ ।

ସାମ୍ୟବାଦୀମାନେ ସବୁବେଳେ ଶୃଙ୍ଖଳା ରକ୍ଷା କରିବାରେ ସିଦ୍ଧହସ୍ତ । ସେପରି ଶୃଙ୍ଖଳା ଏବଂ ବାଧ୍ୟତା ଯୋଗୁ ଭଲ ସୈନିକ ପ୍ରସ୍ତୁତ ହୋଇପାରନ୍ତି । ଲିଷ୍ଟର୍ ଶୃଙ୍ଖଳା ଶିଥିଳତାକୁ ନିର୍ମମ ଭାବରେ ଦମନ କରୁଥିଲେ ଏବଂ ଅତି ସାମାନ୍ୟ ତ୍ରୁଟି ପାଇଁ ପ୍ରାଣ ଦଣ୍ଡ ଦେଉଥିଲେ । ମଣିଷ ଜୀବନ ପ୍ରତି ତାଙ୍କର ମମତା ନଥିଲା । ତେବେ ଏକ ଡିଭିଜନ ସୈନ୍ୟଙ୍କୁ ଚଳାଚଳ କରାଇବା କଥା ତାଙ୍କୁ ଜଣାଥିଲା। କୌଣସି ଗୋଟାଏ ଘାଟି ରକ୍ଷା କରିବା, କୌଣସି ଘାଟି ଆକ୍ରମଣ କରି ଦଖଲ ନେବାଠାରୁ ରଣକ୍ଷେତ୍ର କୌଶଳ କ୍ରମେ ସୈନ୍ୟ ପରିଚାଳନା କରିବା ଏକା କଥା ନୁହେ ।

ରବର୍ଟ ଜର୍ଡ଼ାନ୍ ମନେ ମନେ ଭାବିଲେ ଯେ ରୁଷୀୟ ପରାମର୍ଶ ଉଠିଗଲା ପରେ ଲିଷ୍ଟର୍ ସ୍ୱାଧୀନ ଭାବରେ କେମିତି କାମ କରିବେ । ହୁଏତ ରୁଷୀୟମାନେ ଯିବେ ନାହିଁ, ହୁଏତ ସୈନ୍ୟ ଦେଇ ସାହାଯ୍ୟ କରିବେ କିନ୍ତୁ ଏ ଯୁଦ୍ଧରେ ରୁଷିଆର ସ୍ୱାର୍ଥ କଅଣ ? ଏ ସବୁ କଥା ଗେଲର୍ଡ଼ ଠାରେ ଜାଣିହେବ ।

ଏକ ସମୟରେ ଗେଲର୍ଡ଼କୁ ସେ ଖରାପ ମନେ କରୁଥିଲେ । ମାଦ୍ରିଦ୍ ନଗରୀ ୭୩ ନମ୍ବର ଭେଲାସକ୍ୱଏଜ୍‌ର ଏହା ଠିକ୍ ବିପରୀତ । ଭେଲାସ୍‌କ୍ୱଏଜ୍ ଏକ ପ୍ରାଚୀନ ରାଜପ୍ରାସାଦ । ବର୍ତ୍ତମାନ ଆନ୍ତର୍ଜାତିକ ବାହିନୀର ପ୍ରଧାନ କାର୍ଯ୍ୟାଳୟ ହୋଇଅଛି । ସେଠାରେ ଧର୍ମବିଧାନ ମତେ ଲୋକେ ନିଷ୍ଠାଳଙ୍କ ପରି ପବିତ୍ର ଭାବରେ ଚଳୁଥିଲେ । ଏଇଥିପାଇଁ ଭେଲାସ୍‌କ୍ୱଏଜ୍ ଏକ ଆଶ୍ରମ ବୋଲି ଧରାଯାଇ ପାରେ କିନ୍ତୁ ଗେଲର୍ଡ଼ ଠାରେ ବିଳାସ ଏବଂ ଯୌନ ଉଦ୍ଦାମର ତାଣ୍ଡବ ଲୀଳା ।

ତଥାପି ଦୁଇଟି କାରଣରେ ଏକା ଚିନ୍ତା ମନରେ ଉଠିଥାଏ । ତାହା ହେଉଛି ଯେ ତୁମେ ଏକ ଧର୍ମଯୁଦ୍ଧ କରୁଅଛ । ଅବଶ୍ୟ ଧର୍ମଯୁଦ୍ଧ ଶବ୍ଦଟି ଯେଉଁ ଅର୍ଥରେ ପ୍ରଚଳିତ ହୋଇଥିଲା, ଏ ଯୁଦ୍ଧ ତାହା ନୁହେ । ବର୍ତ୍ତମାନ ଶବ୍ଦଟା ଅତି କଳୁଷିତ କାମ ପାଇଁ ମଧ୍ୟ ପ୍ରଯୁକ୍ତ ହେଉଅଛି । ଅମଲାତନ୍ତ୍ରର ଜୁଲମ, ଅପାରଗତା, ଦଳାଦଳି ସତ୍ତ୍ୱେପି ଜନସାଧାରଣଙ୍କ ଭିତରେ ଗୋଟାଏ ପ୍ରକାର ସାମୂହିକ ସାମ୍ୟ ଏବଂ ସମାଜର ମଙ୍ଗଳ ଥିଲା ଆମର ଆଦର୍ଶ ବିଶ୍ୱର ନିପୀଡ଼ିତ ଜନତାଙ୍କୁ ଉଦ୍ଧାର କରିବାର ପବିତ୍ର ବ୍ରତରେ ଉତ୍ସର୍ଗୀକୃତ ଜୀବନ, ଅବିକଳ ଯେପରି ଗିର୍ଜାରେ ଧର୍ମଗ୍ରନ୍ଥ ଶୁଣି ସାଧୁ ପାଲଟିବାର ଆଦର୍ଶ । ଆତ୍ମବିଶ୍ୱାସମତେ ମାନବ ସମାଜ ସହିତ ପରିପୂର୍ଣ୍ଣ ଐକ୍ୟ ସ୍ଥାପନ ଏକ ଅଭିନବ ଅଭିଜ୍ଞତା । ଏ କାମରେ ମୃତ୍ୟୁ ଅତି ତୁଚ୍ଛ କେବଳ କର୍ତ୍ତବ୍ୟ ପୂରଣ ପାଇଁ ତାହା ଏଡ଼ିବା କଥା ନଚେତ୍ ନୁହେ । ପ୍ରତ୍ୟେକ ଲୋକ ଏମିତି କାମରେ ଅଂଶ ଗ୍ରହଣ କରିପାରେ ଏବଂ କରିବା ମଧ୍ୟ ଉଚିତ । ଏହି ଚିନ୍ତା ପ୍ରବଳ ହେଲେ ଲୋକ ଆଦର୍ଶ ପାଇଁ ଯୁଦ୍ଧ କରିପାରେ ।

ଏମିତି ପବିତ୍ର ଆଦର୍ଶରେ ଅନୁପ୍ରାଣିତ ହୋଇ ଯୁଦ୍ଧରେ ମାଡ଼ିବାର ଅଳ୍ପ ପରେ ଯେଉଁମାନେ ଭଲ ଯୁଦ୍ଧ କରି ଜୀଇ ରହନ୍ତି ତାଙ୍କ ମନରୁ ସବୁପ୍ରକାର ପବିତ୍ରତା ଲୋପ ପାଇଥାଏ ।

କୌଣସି ଜାତି ବା ସହରର ସୁରକ୍ଷା ଯୁଦ୍ଧର ଅଙ୍ଗ ବୋଲି ଧରିହେବା ସିବାସ୍‌ର ଯୁଦ୍ଧ ଏହାହିଁ ଥିଲା । ସେଠାରେ ପ୍ରକୃତ ସାଥୀଙ୍କ ସହିତ ସମସ୍ତେ ବିଦ୍ରୋହ କରିଥିଲେ । ପ୍ରଥମେ ଯେତେବେଳେ କଠୋର ଶୃଙ୍ଖଳା ଜାରି କରିବା ଦରକାର ପଡ଼ିଲା ତାହା ମଧ୍ୟ ରବର୍ଟ ଜର୍ଡ଼ାନ ସମର୍ଥନ କରିଥିଲେ । ତୋପ ମାଡ଼ରେ ଲୋକେ ଖାଲି ପରି ପଳାଇ ଯିବାରୁ ତାଙ୍କୁ ପ୍ରାଣଦଣ୍ଡ ଦିଆଯାଇଥିଲା । ରାସ୍ତାକଡ଼ରେ ସେମାନେ ମରି ପଡ଼ିଥିଲେ । ତାଙ୍କର ବନ୍ଧୁକ ଗୁଳି ଏବଂ ମୂଲ୍ୟବାନ ଦ୍ରବ୍ୟ କାଢ଼ି ଆଣିବା ଛଡ଼ା ଅନ୍ୟ କିଛି କେହି କରି ନଥିଲେ । ଏସବୁ ମଧ୍ୟ ନିନ୍ଦନୀୟ ନୁହେ । ନ ଆଣିଥିଲେ ସନ୍ତ୍ରାସବାଦୀମାନଙ୍କ ହାତରେ ତାହା ପଡ଼ିଥାଆନ୍ତା ।

ଦଳ ଛାଡ଼ି ପଳାଇଯିବା ଲୋକଙ୍କୁ ମାରି ପକାଇବା ଅନ୍ୟାୟ ନୁହେ ବରଂ ଦରକାର ଓ ଯଥାର୍ଥ । ପଳାଇଯିବା ନିତାନ୍ତ ସ୍ୱାର୍ଥପରତା । ଫ୍ୟାସିଷ୍ଟମାନେ ଆମକୁ ଆକ୍ରମଣ କରିବାରୁ ଆମେ ତାଙ୍କୁ ସେହି ପାହାଡ଼ର ନାସିରେ ଅଟକାଇଥିଲୁ । ତୋପ ବୃଷ୍ଟି ଛଡ଼ା ବିମାନରୁ ବୋମା ବୃଷ୍ଟି ଶତ୍ରୁପକ୍ଷ କରିଥିଲେ । ଯେଉଁମାନେ ଠାକଗଲେ ସେମାନେ ପାଲଟା ଆକ୍ରମଣ କରି ତାଙ୍କୁ ହଟାଇ ଦେଇଥିଲେ । ପରେ ସେମାନେ

ଯେତେବେଳେ ବର ଭିତରେ ଲୁଚି ପାର୍ଶ୍ୱଦେଶରୁ ଆକ୍ରମଣ କଲେ ସେତେବେଳେ ଆମ ପକ୍ଷର ଲୋକେ ସମ୍ମୁଖ ଦିଗରୁ ପ୍ରତିଆକ୍ରମଣ ଚଲାଇଥିଲେ । ସେମାନେ ଆମକୁ ଛପି ଆଗକୁ ବଢ଼ିଲେ । ଆମେ ବୁଝିଗଲୁ ଯେ ପାଲଟା ଆକ୍ରମଣ ନ ହେବା ଯାଏଁ ଆମେମାନେ ଅବରୁଦ୍ଧ ରହିଥିବୁ । ଏହା ହେଉଛି ଗୁଆ ଡାବୁମାର ଯୁଦ୍ଧ ।

ସଂଗ୍ରାମର ହଟ୍ଟଗୋଲରେ ଯେତେବେଳେ କଣ୍ଠ ତାଳୁ ଉପରେ ଶୁଷ୍କ ହୋଇଯାଏ, ଗୋଲାମାନରେ କାଠମାନ ଧପାଧପ୍ ଭାଙ୍ଗିପଡ଼ି ଗୃହଆଡ଼େ ଚୂନ ବାଲି ଗୋଡ଼ରେ ଭରିଯାଏ ଏବଂ ପ୍ରାଣରେ ଆତଙ୍କର ହାତୁଡ଼ି ଖେଳଉଠେ, ଯେତେବେଳେ ତୁମେ ଆପଣା ମୁଣ୍ଡ ବଞ୍ଚାଇ ଆହତ ଗୋଲନ୍ଦାଜମାନଙ୍କୁ ଧ୍ୱଂସସ୍ତୂପରୁ ଟାଣି ବାହାର କର, ମାଟିରେ ମୁହଁମାଡ଼ି ଆତ୍ମରକ୍ଷା କରି ପୁଣି ତୋପ ଫାୟାର୍ କରିବାକୁ ଚେଷ୍ଟାକର ସେତେବେଳେ ତୁମେ ଉଚିତ କାମ କରୁଅଛ ବୋଲି ନିଜକୁ ସାନ୍ତ୍ୱନା ଦେଇଥାଅ । ସେହି ଗ୍ରୀଷ୍ମ ଓ ଶରତକାଳରେ ତୁମେ ଯେତେ ଯୁଦ୍ଧ କରିଅଛ ସବୁ ଦୁନିଆର ଦରିଦ୍ରମାନଙ୍କୁ ସମସ୍ତ ପ୍ରକାର ନିପୀଡ଼ନରୁ ରକ୍ଷାକରି ଅଭିନବ ସଂସାର ସୃଷ୍ଟି କରିବା ପାଇଁ କରିଥିଲ । ସେ ଯୁଦ୍ଧରେ ତୁମେ ସହ୍ୟ କରିବାକୁ, ଦୁଃଖ ଦୁର୍ଗତିକୁ ଉପେକ୍ଷା କରିବାକୁ, ଶୀତ ବୃଷ୍ଟି ପାଣି କାଦୁଅରେ ଦୀର୍ଘକାଳ ହନ୍ତସନ୍ତ ହୋଇ ଗାତ ଖୋଳିବାକୁ ଓ ନିଜ ଦଳକୁ ସୁରକ୍ଷା କରିବାକୁ ଏସବୁ କରିଥିଲ । ସେହି ଗ୍ରୀଷ୍ମ ଓ ଶରତକାଳର ଅନୁଭୂତ ଅଳ୍ପ କ୍ଳାନ୍ତ ଅବସାଦ, ନିଦ୍ରାଳୁତା, ସ୍ନାୟୁଦୌର୍ବଲ୍ୟ ଏବଂ ଅସ୍ୱାଚ୍ଛନ୍ଦ୍ୟରେ ସମାଧିପ୍ରାପ୍ତ ହୋଇଅଛି । ତଥାପି ଏହା ସଜୀବ ଏବଂ ତୁମେ ଜାଣ ଯେ ଏହି ଅଗ୍ନି ପରୀକ୍ଷା ଭିତରେ ତୁମେ ପଶିଥିଲ କେବଳ ଆଦର୍ଶକୁ ବାସ୍ତବରେ ପରିଣତ କରିବାକୁ । ସେତେବେଳେ ତୁମ ମନରେ ଏକ ସ୍ୱାର୍ଥହୀନ ଆତ୍ମପ୍ରସାଦ ଗମ୍ଭୀର ଏବଂ ବଳିଷ୍ଠ ଭାବରେ ଜାତ ହୋଇଥିଲ । ଆଜି ସେ ସବୁ କଥା ଗେଲର୍ଡଠାରେ ଏକ ନିଦାରୁଣ ଅନୋପଯୋଗ୍ୟ କାହାଣୀରେ ପର୍ଯ୍ୟବସିତ କହିଲେ ଚଳେ ।

ନା, ଗେଲର୍ଡରେ ସେତେବେଳେ ତୁମେ ଜନପ୍ରିୟ ହୋଇପାରି ନଥାନ୍ତ । ତୁମେ ଥିଲ ଅତି ଅକୃତ୍ରିମ, ଏକ ପ୍ରକାର ମହତ୍ତ୍ୱର ପରିପୃଚ୍ଛକ । ହୁଏତ ଏବପରି ଗେଲର୍ଡର ଅବସ୍ଥା ସେତେବେଳେ ନଥିଲା । ନା, ପ୍ରକୃତରେ ନଥିଲା । ଏବକୁ ଗେଲର୍ଡ ବୋଇଲେ ଯେଉଁ ଧାରଣା ଜନ୍ମେ ସେତେବେଳେ ତାହା ନଥିଲା ।

ସେ ସମୟର କଥା କାର୍କୋଭ୍ ତାଙ୍କୁ କହିଥିଲେ । ସେତେବେଳେ ରୁଷୀୟମାନେ ପ୍ୟାଲେସ୍ ହୋଟେଲରେ ରହୁଥିଲେ । ତାଙ୍କ ଭିତରୁ ରବର୍ଟ ଜର୍ଡାନ୍ ତାହାକୁ ଜାଣି ନଥିଲେ । ଏହା ଅବଶ୍ୟ ପ୍ରଥମ ସ୍ୱପକ୍ଷ ଦଳ ଗଠନର ପୂର୍ବର କଥା । ସେତେବେଳେ ସେ କାଚ୍କିନ୍ କିମ୍ବା ଅନ୍ୟ କାହାକୁ ଚିହ୍ନି ନଥିଲେ । କାସ୍କିନ୍

ସେତେବେଳେ ଭଟ୍ଟୋଗ୍ରାଡ଼ ଯୁଦ୍ଧ କରିବାପାଇଁ ସାନ୍ ସେବାଷ୍ଟିଆନ୍‌ରୁ ଯାଇଥିଲେ । ସେ ଉତ୍ତରାଞ୍ଚଳରେ ଇରନ୍‌ଠାରେ ଥିଲେ । ସେହି ଯୁଦ୍ଧ ବିଫଳ ହୋଇଥିଲା । କାପକିନ୍ ଜାନୁଆରୀ ମାସଯାଏ ମାଦ୍ରିଦ୍‌କୁ ଆସି ନଥିଲେ । ରବର୍ଟ ଜର୍ଡାନ୍ ସେତେବେଳେ କାରାବାଞ୍ଚେଲ୍ ଓ ଉସେରାଠାରେ ୩ ଦିନପାଇଁ ପ୍ରବଳ ଯୁଦ୍ଧ ଚଳାଇ ଫାସିଷ୍ଟମାନଙ୍କର ମୁର୍ ସୈନଙ୍କୁ ମାଦ୍ରିଦ୍ ଦଖଲ କରିବାରୁ ହଟାଇ ଦେଇଥିଲେ । ସେ ଯୁଦ୍ଧ ଘରକୁ ଘର ହୋଇଥିଲା ସେ ନଗରର ଉପକଣ୍ଠଯାଏ ଦଖଲରେ ରଖି ମାଦ୍ରିଦ୍ ଉପରେ ଶତ୍ରୁର ଆକ୍ରମଣକୁ ପ୍ରତିହତ କରିଥିଲେ । କାର୍‌କୋଭ୍ ମାଦ୍ରିଦ୍‌ଠାରେ ଥିଲେ ।

କାର୍‌କୋଭ୍ ସେତେବେଳେ କଥା କାହାକେ ଦୋଷ ଦେଖାଉ ନଥିଲେ । ସେତେବେଳେ ପରଜୟ ଅଯନ୍ତ ଜାଣି ସମସ୍ତେ ସବୁକଥାରେ ସମାନ ଅଂଶ ଗ୍ରହଣ କରିଥିଲେ ଏବଂ ବ୍ୟକ୍ତିଗତ ପୁରସ୍କାର ପ୍ରଶଂସା କିମ୍ବା ପାଦବୀ ପାଇଁ କାହାର ଲାଳସା ନଥିଲା । ଏକମାତ୍ର ଲକ୍ଷ୍ୟଥିଲା ପରସ୍ତ ହେଲେ କିଏ କିପରି କାମ କରିବ । ଗଭର୍ଣ୍ଣମେଣ୍ଟ ସହରଟା ଛାଡ଼ି ପଳାଇ ଯାଇଥିଲେ ଏବଂ ସାମରିକ ବିଭାଗର ସମସ୍ତ ମୋଟରଗାଡ଼ି ସଙ୍ଗରେ ନେଇ ଯାଇଥିଲେ । ପ୍ରତିରକ୍ଷା ବାହିନୀକୁ ପରିଦର୍ଶନ କରିବା ପାଇଁ ମିଆଜା ସାଇକଲ୍‌ରେ ବସି ଯିବାକୁ ବାଧ ହୋଇଥିଲେ । ଅବଶ୍ୟ ରବର୍ଟ ଜର୍ଡାନ୍ ଏହା ବିଶ୍ୱାସ କରି ନଥିଲେ କାରଣ ସେ କେବେ ମିଅଜାଙ୍କୁ ସାଇକଲ୍ ଚଢ଼ିବା ଦେଖି ନଥିଲେ । କିନ୍ତୁ କାର୍‌କୋଭ୍ କହିଥିଲେ ଏହା ନିର୍ଘଟ ସତ୍ୟ । ତେବେ ରୁମୀୟ ଖବରକାଗଜ ପାଇଁ ଏହା ଲେଖା ହୋଇଥିବାରୁ କାର୍‌କୋଭ୍ ଏପରି ବିଶ୍ୱାସ ସୃଷ୍ଟି କରିଥିଲେ ।

କିନ୍ତୁ ଆଉ ଗୋଟିଏ କଥା କାର୍‌କୋଭ୍ ଲେଖି ନଥିଲେ । ପାଲେସ୍ ହୋଟେଲରେ ତାଙ୍କ ଦାୟିତ୍ୱରେ ୩ଜଣ ଆହତ ରୁଷ ସୈନିକ ଥିଲେ । ସେଥିରୁ ୨ଜଣ ଟ୍ୟାଙ୍କ୍ ଚାଳକ ଓ ଜଣେ ବିମାନଚାଳକ । ସେମାନେ ଏତେ ସାଘାତିକ ଭାବରେ ଆହତ ହୋଇଥିଲେ ଯେ ତାଙ୍କୁ ଅନ୍ୟତ୍ର ସ୍ଥାନାନ୍ତର କରିବା ସମ୍ଭବ ନଥିଲା । ରୁଷ୍ ସୈନ୍ୟ ଆମ ଦଳରେ ମିଶି ଯୁଦ୍ଧ କରୁଅଛନ୍ତି ଏକଥା ଦୂଣୋକ୍ଷରରେ ପ୍ରକାଶ ପାଇଲେ ଫ୍ୟାସିଷ୍ଟ୍ ସରକାରମାନେ ପ୍ରକାଶ୍ୟ ଭାବରେ ଯୁଦ୍ଧରେ ଯୋଗେ ଦେବେ ବୋଲି ଏ କଥା ଅତି ଗୋପନ ରଖାଯାଇଥିଲା । ସହର ପରିତ୍ୟାଗ କରିବାକୁ ପଡ଼ିଲେ ଏହି ୩ଜଣ ଆହତ ସୈନିକ ଯେପରି ଫ୍ୟାସିଷ୍ଟଙ୍କ ହାତରେ ନ ପଡ଼ନ୍ତି ତାହା ଦେଖିବା କାର୍‌କୋଭ୍‌ଙ୍କ ଦାୟିତ୍ୱ ଥିଲା ।

ଯଦି ସହର ଛାଡ଼ି ପଳାଇବାକୁ ପଡ଼େ ତେବେ ସେମାନଙ୍କର ପରିଚୟର ସମସ୍ତ ଚିହ୍ନ ଲୋପ କରି ସେମାନଙ୍କୁ ବିଷ ଦେଇ ମାରି ପକାଇବାକୁ କାର୍‌କୋଭ୍‌ଙ୍କ ହୁକୁମ ହୋଇଥିଲା । ଜଣଙ୍କ ତଳି ପେଟରେ ୩ଗୋଟି ଗୁଳିମାଡ଼, ଜଣକର ଦାଢ଼ି ପାଟି

ଉଡ଼ି ଗଲାନଲୀ ବାହାର ପଡ଼ିଥାଏ, ଆଉ ବମାନଗୁଳିକର ହାତ, ମୁହଁ ଆଖି ସବୁ ଖଣ୍ଡ ବିଖଣ୍ଡ, ମସ୍ତକ କେଶଶୂନ୍ୟ । ଏଭଳି ବିକଳାଙ୍ଗ ବ୍ୟକ୍ତିଙ୍କର ଶବ ଦେଖି କେହି କହି ପାରିବେ ନାହିଁ ଯେ ଏମାନେ କେଉଁ ଦେଶର ଲୋକ । ମଲାପରେ ମୁର୍ଦ୍ଦାର ଦେଖି କାହାର ଜାତି ଓ ଦେଶ ନିରୂପଣ କରିହେବ ନାହିଁ ।

ଏପରି ଆଦେଶ ପାଳନର ଆବଶ୍ୟକତା ଜାଣିପାରି ତାଙ୍କର ମନୋଭାବ କଅଣ ହୋଇଥିଲା ବୋଲି ରବର୍ଟ ଜର୍ଡ଼ାନ୍ ପଚାରିବାରୁ ସେ ଜବାବ ଦେଇଥିଲେ ଯେ ସେ ତାହା ଭାବି ଦେଖି ନାହାନ୍ତି । ରବର୍ଟ ଜର୍ଡ଼ାନ୍ ଯେତେବେଳେ କହିଲେ ଯେ ହଠାତ୍ ୩ଜଣ ନିଜ ଦଳର ଲୋକଙ୍କୁ ଗୁଳି ଦେଇ ହତ୍ୟା କରିବା ବଡ଼ ସହଜ କାମ ନୁହେ ସେତେବେଳେ କାର୍‌କୋଭ ବିନା ଦ୍ୱିଧାରେ ଜବାବ ଦେଇଥିଲେ ନିଜର ହିତ ଦୃଷ୍ଟିରୁ ତାହା ସାଧନ କରିବା ଆଦୌ କଷ୍ଟକର ନୁହେ । ଏହା କହି ସେ ନିଜ ସିଗ୍ରେଟ୍ ଡ଼ବା ଫିଟାଇ ଗୋଟିଏ ବସ୍ତୁ ରବର୍ଟ ଜର୍ଡ଼ାନ୍‌ଙ୍କୁ ଦେଖାଇଥିଲେ ।

ରବର୍ଟ ଜର୍ଡାନ୍ ପ୍ରତିବାଦ କରି କହିଥିଲେ ଯୁଦ୍ଧ ବନ୍ଦୀମାନଙ୍କୁ ଖାନ ତଲାସି କରି ପ୍ରଥମେ ତ ସିଗ୍ରେଟ ଡବା ଛଡ଼ାଇ ନିଆଯାଇଥାଏ । ହାତ ଦୁଇଟା ତ ଉପରକୁ ଟେକି ରଖିବାକୁ ହୁଏ ।

କାର୍‌କୋଭ୍ ଟିକିଏ ହସି ଦେଇ କହିଥିଲେ ମୋ କୋଟର ପକେଟ ଛାଙ୍କୁଣିରେ ଆଉ ଟିକିଏ ଜିନିଷ ଅଛି । କେବଳ ସେହି ପଟି ଖଣ୍ଡିକ ମୁହଁରେ ଦେଇ କାମୁଡ଼ି ଗିଳିଦେଲେ ହେଲା । ହଁ, ଏଟା ଅବଶ୍ୟ ବହୁତ ଭଲ । ପିତ୍ତା ବାଦାମ ପରି ଜିନିଷଟାର ଗନ୍ଧ କି ନୁହେ ବୋଲି ରବର୍ଟ ଜର୍ଡ଼ାନ୍ ପଚାରିଥିଲେ କାରଣ ଗୋଇନ୍ଦା କାହାଣୀ ବହିର ସେ ଏଭଳି କଥା ପଢ଼ିଥିଲେ । କାର୍‌କୋଭ୍ ଜବାବ ଦେଇଥିଲେ ସେ କେବେ ଗନ୍ଧ ଆଘ୍ରାଣ କରି ନାହାନ୍ତି ତେବେ ଗୋଟାଏ ଭାଙ୍ଗି ଆଘ୍ରାଣ କରାଯାଇ ପାରେ କିନ୍ତୁ ରବର୍ଟ ଜର୍ଡାନ୍ ତାହା କରିଇ ଦେଇ ନଥିଲେ । କାର୍‌କୋଭ୍ ସିଗ୍ରେଟ ଡ଼ବା ବନ୍ଦ କରି ପକେଟରେ ରଖି ଦେଇ କହିଥିଲେ । ମୁଁ ପରାସ୍ତ ହେବା କଥା ଧରି ନେଇନାହିଁ । କିନ୍ତୁ ପରାସ୍ତ ହେବା ସମ୍ଭବ ଏବଂ ଜୀବନରେ ଏପରି ଘଡ଼ି ସନ୍ଧିବେଳେ ମଧ୍ୟ ଆସିବା ସମ୍ଭବ । ସେପରି ସମୟରେ ଏହା ବଡ଼ କାମ ଦେବ । ଆଚ୍ଛା, ତୁମେ କର୍ଡୋବା ରଣକ୍ଷେତ୍ରର ଇସ୍ତାହାର ଦେଖିଅଛ ? ସେଟା ଖୁବ ସୁନ୍ଦର । ସବୁ ଇସ୍ତାହାର ଭିତରେ ଏଖଣ୍ଡି ମୋର ଖୁବ୍ ପ୍ରିୟ ।"

ରବର୍ଟ ଜର୍ଡାନ୍ କର୍ଡୋବା ଯୁଦ୍ଧକ୍ଷେତ୍ରରୁ ମାଡ୍ରିଡ୍ ଆସିଥିଲେ । ତୁମେ ନିଜେ ଯେଉଁ ବିଷୟରେ ବିବୃତି କରିଥାଅ ସେହି କଥା ନେଇ ଯଦି ଅଉ କେହି ତୁମକୁ

ବିଦ୍ରୁପ କଲେ ତେବେ ତୁମେ ତାହା ସହ୍ୟ କରି ପାରିବ ନାହିଁ । ରବର୍ଟ ଜର୍ଡ଼ାନ୍‌ଙ୍କ ଦଶା ଏଇଆ ହୋଇଥିଲା ତେଣୁ ସେ କହିଥିଲେ 'ଇସ୍ତାହାରରେ କଅଣ ଲେଖାଥିଲା ମୋତେ କୁହ ।'

କାର୍‌କୋଭ୍ ବିଚିତ୍ର ଭଙ୍ଗୀରେ ସ୍ପେନ୍‌ଭାଷାରେ କହିଲେ 'ଏକଫୁଟ୍ ମାତ୍ର ଜମିରୁ ନହଟି ଆମର ଗୌରବୋଜ୍ଜ୍ୱଳ ସୈନ୍ୟମାନେ ଅଗ୍ରସର ହେବାରେ ଲାଗି ଅଛନ୍ତି ।' ରବର୍ଟ ଜର୍ଡାନ୍ ଏକଥା ବିଶ୍ୱାସ ନ କଲରୁ କାର୍‌କୋଭ୍ କହିଲେ 'ରୁହ ମୁଁ ସେ ବିଜ୍ଞପ୍ତି ଖଣ୍ଡି ଖୋଜି ଆଣୁଛି ।

ପୋଜୋବ୍ଲାଙ୍କୋ ଅଞ୍ଚଳର ଯୁଦ୍ଧରେ ବହୁବ୍ୟକ୍ତି ହତାହତ ହୋଇଥିବା ସମସ୍ତଙ୍କୁ ଜଣା ଅଥଚ ତାହା ମଧ୍ୟ ଗେଲର୍ଡ଼ଠାରେ ବିଦ୍ରୁପର ବିଷୟ ହୋଇଥିଲା ।

ବର୍ତ୍ତମାନ ଗେଲର୍ଡ଼ର ପରିସ୍ଥିତି ଏହାହିଁ । କିନ୍ତୁ ଏପରି ଅବସ୍ଥା ସବୁଦିନେ ନଥିଲା । ଯୁଦ୍ଧର ପ୍ରାରମ୍ଭିକ ଅବସ୍ଥାରେ ଯେଉଁ ସୈନ୍ୟମାନେ ପ୍ରାଣ ଦେଇ ଫେରିଥିଲେ ତାଙ୍କ ପ୍ରତି ଯଦି ଗେଲର୍ଡ଼ଠାରେ ଏପରି ବ୍ୟବହାର ତେବେ ଗେଲର୍ଡ଼ର ଅବସ୍ଥା କଥା ଜାଣି ସେ ସନ୍ତୁଷ୍ଟ । ସିରା, କାଟ୍‌ବାର୍ସେଲ୍ ଏବଂ ଉସେରା ଯୁଦ୍ଧରେ ଅବସ୍ଥା ଯାହାଥିଲା ବର୍ତ୍ତମାନ ତାହାଠାରୁ ବହୁତ ଭିନ୍ନ । ବର୍ତ୍ତମାନ ଲୋକେ ସହଜରେ କଳୁଷିତ ହୋଇ ପଡୁଛନ୍ତି । କିନ୍ତୁ ପ୍ରକୃତରେ ଏହା ପ୍ରଲୋଭନ କିମ୍ବା ଲୋକ ନିଜର ସରଳତା ହରାଇ ଅଛନ୍ତି କହିହେବ ନାହିଁ । ସବୁ ବିଷୟରେ ଏହାହିଁ ଘଟିବା ସ୍ୱାଭାବିକ ନୁହେଁ କି ? ପ୍ରଥମେ କାର୍ଯ୍ୟଭାର ଗ୍ରହଣ କଲାବେଳେ ଡକ୍ଟର ଡାକ୍ତର, ପୁରୋହିତ କିମ୍ବା ସୈନିକ ଯେଉଁ ସତ୍‌ପ୍ରବୃତ୍ତି ନେଇ ଅଗ୍ରସର ହୋଇଥାନ୍ତି ତାହା ରହେ କି ? ପୁରୋହିତଙ୍କର ନିଷ୍ଠାପୂ ରହେ ନଚେତ୍ ସେ କାମରୁ ତଡ଼ା ଖାଇବେ । ମୁଁ ମନେ କରେ ନାଜୀମାନଙ୍କର ଏହା ରହିଥାଏ ଏବଂ କଠୋର ଆତ୍ମଶୃଙ୍ଖଳା ଯୋଗୁ ସାମ୍ୟବାଦୀମାନଙ୍କର ମଧ୍ୟ ଥାଏ ।

କାର୍‌କୋଭ୍‌ଙ୍କ କଥା ବିସ୍ତାର କରିବାକୁ ସେ ସବୁବେଳେ ଆଗ୍ରହୀ ଥିଲେ । ଶେଷଥର ସେ ଗେଲର୍ଡ଼ଠାରେ ଥିଲାବେଳେ କାରକୋଭ୍ ସ୍ପେନ୍‌ଦେଶରେ ବହୁକାଳ ବାସ କରିଥିବା ଜଣେ ଇଂରେଜ ଅର୍ଥନୀତିଜ୍ଞ ସମ୍ବନ୍ଧରେ ଉଚ୍ଛ୍ୱସିତ ପ୍ରଶଂସା କରିଥିଲେ ରବର୍ଟ ଜର୍ଡ଼ାନ୍ ଏହି ଲୋକର ଲେଖାମାନ ବହୁବର୍ଷ ହେଲା ପଢ଼ି ଆସି ଅଛନ୍ତି ଏବଂ ପ୍ରତ୍ୟକ୍ଷ ପରିଚୟ ନ ଥିଲେହେଁ ତାଙ୍କୁ ଖୁବ୍ ଶ୍ରଦ୍ଧା ସମ୍ମାନ କରୁଥିଲେ । ଏହି ଲୋକଟି ସେ ସ୍ପେନ୍ ସମ୍ବନ୍ଧରେ ଯାହା ଲେଖିଥିଲେ ସେଥିପ୍ରତି ରବର୍ଟ ଜର୍ଡ଼ାନ୍ ଆଦୌ ଆଗ୍ରହୀ ନଥିଲେ । ତାଙ୍କ ଲେଖା ଅତି ପ୍ରାଞ୍ଜଳ ଓ ସରଳ ଥିଲା ଏବଂ ସଂଖ୍ୟାବିଜ୍ଞାନ ସମ୍ବନ୍ଧରେ ଅନେକ ମନଗଢ଼ା ଜାଲ ତଥ୍ୟ ଥିଲା । ତେବେ କୌଣସି ଦେଶ ସମ୍ବନ୍ଧରେ ନିଜର

ଜଣା କଥା ସମ୍ବାଦ ପତ୍ରରେ ପଢ଼ିବା ସେପରି ଗୁରୁତ୍ୱପୂର୍ଣ୍ଣ ନୁହେଁ । ତଥାପି ଲେଖକଙ୍କ ଉଦ୍ଦେଶ୍ୟ ପାଇଁ ତାହା ଜାତ ହୋଇଥାଏ ।

କାସବାଙ୍କେଲ୍ ଆକ୍ରମଣ କରିବାର ଦିନ ଦ୍ୱିପ୍ରହରକୁ ରବର୍ଟ ଜର୍ଡ଼ାନ ଉକ୍ତ ଲୋକଟିକୁ ଶେଷଥର ମାଇଁ ଦେଖିଥିଲେ । ସେମାନେ ମ୍ୟାନ୍ଲଚ୍ଛେଇ ପଥରର ଭାଙ୍ଗିତଦିଆ ମଞ୍ଚରେ ବସିଥିଲେ । ଦୁଇଟି ରାସ୍ତାରେ ଗୁଳି ଚାଲିଥାଏ । ସମସ୍ତେ ଗ୍ଲାନଥା ହୋଇ ଆକ୍ରମଣର ଅପେକ୍ଷାରେ ଥିଲେ । ଗୋଟିଏ ଟ୍ୟାଙ୍କ୍ ତାଙ୍କୁ ପଠାଯିବ ବୋଲି ଉପରୁ ପ୍ରତିଶ୍ରୁତି ମିଳିଥିଲା ମାତ୍ର ତାହା ଆସି ନଥିଲା । ମଣ୍ଟେରୋ ଚନ୍ତାନ୍ୱିତ ହୋଇ ବସି ବସି କହୁଥାନ୍ତି 'ଟ୍ୟାଙ୍କ୍ ଆସିଲା ନାହିଁ ।'

ସେ ଦିନ ଭାରି ଅସ୍ତା ପଡୁଥିଲା । ଧୂଳି ଦିଆ ଧୂଳି ରାସ୍ତାରେ ଗୋଟି ଯାଉଥିଲା । ମଣ୍ଟେରୋଙ୍କ ବାମବାହୁରେ ଗୁଳି ବାଜି ହାତଟା ଅଚଳ ହୋଇ ଯାଇଥାଏ । ସେ କହୁଥାନ୍ତି "ଆମକୁ ଯେମିତି ହେଲେ ଟ୍ୟାଙ୍କ୍ ମିଳିବା ଦରକାର, ତାହାପାଇଁ ଅପେକ୍ଷା କରିବା ଛଡ଼ା ଉପାୟ ନାହିଁ କିନ୍ତୁ ଅପେକ୍ଷାତ କରି ହେଉନାହିଁ । ତାଙ୍କର ହାତର ବ୍ୟଥା ତାଙ୍କୁ ଚଞ୍ଚଳ କରି ପକାଇଥାଏ ।

ମଣ୍ଟେରୋ କହିଥିଲେ ଯେ ଯନ୍ତ୍ରବତୀ ଟ୍ରାମଲାଇନ କୋଣ ଦୋକାନ କୋଠା ପଛରେ ଟ୍ୟାଙ୍କ୍ଟା ଅଟକି ଅଛି । ରବର୍ଟ ଜର୍ଡ଼ାନ୍ ତାହାର ସନ୍ଧାନ ନେବାକୁ ଯାଇ ତାହା ଦେଖିଲେ । କିନ୍ତୁ ସେ ଖଣ୍ଡ ଟ୍ୟାଙ୍କ୍ ନଥିଲା । ସେତେବେଳେ ସ୍ପେନ୍ଦେଶୀ ଲୋକେ ସବୁକିଛିକୁ ଟ୍ୟାଙ୍କ୍ କହୁଥିଲେ । ଏ ଖଣ୍ଡି ପ୍ରକୃତରେ ଖଣ୍ଡିଏ ପୁରୁଣା ସାଞ୍ଜୁଆ ଗାଡ଼ି । ଦୋକାନ କୋଠାର କୋଣ ଉହାଡ଼ ଛାଡ଼ି ଗାଡ଼ିଟାକୁ ଚାଳକ ମ୍ୟାନ୍ଲଚ୍ଛେଇ ମଞ୍ଚକୁ ଆଣିବାକୁ ରାଜି ନଥିଲା ସେ ହାତଯୋଡ଼ି ଗାଡ଼ିର ପଛପଟେ ଠିଆ ହୋଇଥିଲା । ତାହାର ଚମଡ଼ା ଦିଆ ଇସ୍ପାତ ଶିରସ୍ତ୍ରାଣ କାଟରେ ଯାକିଥିଲା । ରବର୍ଟ ଜର୍ଡ଼ାନ୍ ତା ସଙ୍ଗେ କଥା ହେଲାରୁ ସେ କହିଲା ଏହି ସ୍ଥାନ ଛାଡ଼ି ଆଗକୁ ଯିବାକୁ ତାହାକୁ ହୁକୁମ ନାହିଁ ! ସେ ରବର୍ଟ ଜର୍ଡ଼ାନ୍ ଆଡ଼କୁ ଅନାଇ ନ ଥିଲା ।

ରବର୍ଟ ଜର୍ଡ଼ାନ୍ ଚମଡ଼ା ଖୋଳରୁ ପିସ୍ତଲ କାଢ଼ି ତାହାର ନଳୀ ଚାଳକର ଚମଡ଼ା କୋଟ୍ରେ ଠେସି କହିଥିଲେ "ଏହା ହେଉଛି ହୁକୁମ ।" ଚାଳକ ନଜର ସେହି ଶିରସ୍ତ୍ରାଣ ମୁଣ୍ଡରେ ପିନ୍ଧିନେଇ କହିଥିଲା କିନ୍ତୁ ମେସିନ୍ଗନ୍ ପାଇଁ ଗୋଳା ବାରୁଦ ନାହିଁ ।

ରବର୍ଟ ଜର୍ଡ଼ାନ୍ କହିଥିଲେ "କିଛି ପରବା ନାହିଁ । ମଞ୍ଚଠାରେ ଆମର ଗୋଳା ବାରୁଦ ଅଛି, ଆମେ ଭରି ଦେବୁଁ, ଚାଲ ।"

ଚାଳକ କହିଥିଲା "ଅନ୍ୟ ମେସିନ୍‌ଗନ୍ ଚଳାଇବା ଲୋକ ନାହିଁ ଯେ ।"

"ସେ କାହିଁ ? ତୋ ସଙ୍ଗୀ କାହିଁ ?"

ଚାଳକ ଜବାବ ଦେଲା "ଗାଡ଼ୀ ଭିତରେ ମରି ପଡ଼ିଛନ୍ତି ।"

'ତାକୁ ଶୀଘ୍ର କାଢ଼ିପକା, ଖୁବ୍ ଶୀଘ୍ର' ଜର୍ଡାନ୍ କହିଥିଲେ ।

ଚାଳକ କହିଥିଲା "ମୁଁ ତାକୁ ସ୍ପର୍ଶ କରିବ ନାହିଁ । ଅଧିକନ୍ତୁ ସେ ତୋପ ଓ ଚକ ଭିତରେ ଏପରି ମୋଡ଼ିହୋଇ ରହିଅଛନ୍ତି ଯେ ମୁଁ ସେଠି ପଶି ପାରିବ ନାହିଁ ।"

ରବର୍ଟ ଜର୍ଡାନ୍ କହିଥିଲେ "ଆସ ତେବେ ଆମେ ଦୁହେଁ ମିଶି ତାଙ୍କୁ ବାହାର କରିବା ।"

ସାଙ୍ଗୁଆ ଗାଡ଼ୀରେ ଚଢ଼ିଲାବେଳେ ତାଙ୍କ ମୁଣ୍ଡ ଗାଡ଼ୀରେ ପିଟି ହୋଇ ଭ୍ରୂଲତା ପାଖରେ ଅଳ୍ପ କଟି ରକ୍ତ ବହିଥିଲା । ମୁର୍ଦାରଟା ଏଭଳି କାଠହୋଇ ଯାଇଥିଲା ଯେ ଚକ ଭିତରୁ ତା ମୁଣ୍ଡ କାଢ଼ିବାପାଇଁ ହାତୁଡ଼ିରେ ଠୁଙ୍କି ଠୁଙ୍କି କାଢ଼ିବାକୁ ପଡ଼ିଥିଲା । ତା ମୁହଁ ତଳକୁ ଏବଂ ବସିବା ଆସନ ଓ ଚକ ଭିତରେ ପଶି ଯାଇଥାଏ । ଅବଶେଷରେ ସେ ଆଣ୍ଠୁରେ ଠେଲି ମାରି ମାରି ମୁଣ୍ଡ କାଢ଼ିଲେ ଏବଂ ଅଣ୍ଟାକୁ ଟାଣି ଗାଡ଼ୀ ଦୁଆରକୁ ଆଣିଲେ । ତା ପରେ ଚାଳକର ସାହାଯ୍ୟ ମାଗିଥିଲେ ।

ଚାଳକ କହିଥିଲା ଯେ ସେ ତାଙ୍କୁ ସ୍ପର୍ଶ କରିବ ନାହିଁ । ଏହା କହି ଲୋକଟା କାନ୍ଦି ପକାଇଲା ଦୁଇ ଧାର ଲୁହ ତାହାର ଆଖିରୁ ବହି ପଡ଼ିଥିଲା ।

ରବର୍ଟ ଜର୍ଡାନ୍ ଗାଡ଼ୀ ଦୁଆରୁ ଝଟକା ମାରି ଶବଟାକୁ କାଢ଼ିଲେ । ସେହିଭଳି ବଙ୍କା ଭାବରେ ତାହା ଟ୍ରାମ ରାସ୍ତା ଉପରେ ଗଡ଼ି ପଡ଼ିଲା । ହାତ ଦୁଇଟାରେ ଗାଡ଼ୀ ଚଳାଇବା ଚକ ଧରିଥିଲା ।

"ତୋର ସର୍ବନାଶ ହେଉ, ବର୍ତ୍ତମାନ ଗାଡ଼ୀରେ ବସି ଚାଲ" ଏହା କହି ରବର୍ଟ ଜର୍ଡାନ୍ ପିସ୍ତଲ ଉଠାଇଲେ ।

ଠିକ୍ ଏତିକିବେଳେ ସେ ଦେଖିଲେ ଜଣେଲୋକ ଦୋକାନ କୋଠାର ବାରଣ୍ଡାରୁ ତଳକୁ ଆସୁଛନ୍ତି । ସେ ପିନ୍ଧିଥିଲେ ପୁରା ଲମ୍ବା କୋଟ୍, ବାଳ ପାଚିଲା ଓ ମୁଣ୍ଡ ଖୋଲା । ହନୁହାଡ଼ ବଡ଼ବଡ଼ ଓ ଆଖି ଦୁଇଟା ସନ୍ନିକଟ ଓ କୋଟରଗତ । ହାତରେ ଧରିଥିଲେ ସିଗେରେଟ ପାକେଟ । ସାଙ୍ଗୁଆ ଗାଡ଼ୀର ଡ୍ରାଇଭରକୁ ଠେଲି ଚାଳକ

ଆସନରେ ରବର୍ଟ ଜର୍ଡ଼ାନ୍ ବସାଉ ଥିଲାବେଳେ ଗୋଟିଏ ସିଗ୍ରେଟ୍ ସେ ତାଙ୍କ ହାତରେ ଦେଇ କହିଲେ "ଏକ ମିନିଟ୍, ସାଥୀ, ଲଢ଼େଇ ସମ୍ବନ୍ଧରେ ମୋତେ କିଛି କଥା ବୁଝାଇଦେବ କି ?

ରବର୍ଟ ଜର୍ଡ଼ାନ ସିଗ୍ରେଟ୍ ଖଣ୍ଡି ନେଇ ଗୁପ୍ତ ପକେଟରେ ରଖିଲେ । ତାଙ୍କର ଛବି ପୂର୍ବରୁ ଦେଖିଥିଲେ ବୋଲି ବର୍ତ୍ତମାନ ଚହ୍ନି ପାରିଲେ ଯେ ସେ ହେଉଛନ୍ତି ସେହି ବ୍ରିଟିଶ ଅର୍ଥନୀତିଜ୍ଞ ।

ରବର୍ଟ ଜର୍ଡ଼ାନ୍ ପ୍ରଥମେ ଇଂରେଜୀ ପରେ ସ୍ପେନଭାଷାରେ ସାଙ୍ଗୁଆଗୋଡ଼ି ଡ୍ରାଇଭର୍‌କୁ କହିଲେ 'ଏଥର ଚାଲ, ସେହି ଖଣ୍ଡଲଢ଼େଇ ଘେର ଭିତରକୁ । ସେଇଠି ଯେତେ ବଦମାସି କରିବୁ ।' ଏହାକହି ଧଡ଼୍‌କରି ଗାଡ଼ି ଦରଜା ବନ୍ଦ କରିଦେଲେ ଏବଂ ଗାଡ଼ି ଗଡ଼ାଣିରେ ଦ୍ରୁତ ଚାଲିଲା । ଗାଡ଼ି ଦେହରେ ଠୋ ଠୋ ହୋଇ ଗୁଳିମାଡ଼ ପଛରୁ ବାଜୁଥାଏ । ଏହାପରେ ମେସିନ୍‌ଗନ୍‌ର ଗୋଳିମାନ ଆସି ଭୟଙ୍କର ଶବ୍ଦରେ ବାଜିବାକୁ ଲାଗିଲା । ଏହି ଅବସ୍ଥା ମଧ୍ୟ ଦେଇ ସାଙ୍ଗୁଆ ଗାଡ଼ିଟିକୁ ଖଣ୍ଡଲଢ଼େଇ ପଡ଼ିଆର କାନ୍ଥ ଆଢୁଆଳରେ ଅଟକାଇଲା । ଟିକେଟଘର ପାଖରେ ଅକ୍‌ଟୋବର ମାସର ଖଣ୍ଡଲଢ଼େଇ ବିଜ୍ଞାପନ ତେବେ ସୁଦ୍ଧା ଲାଗି ରହିଥିଲା । ସେଠାରେ ଅନ୍ୟାନ୍ୟ ସାଥୀମାନେ ଗୋଳିବାରୁଦ ବନ୍ଧୁକ, ହାତବୋମା କାରତୁସ ପ୍ରଭୃତି ଧରି ପ୍ରସ୍ତୁତ ଥିଲେ । ମଣ୍ଟେରୋ କହି ଉଠିଲେ 'ସାବାସ୍, ଏଥର ଆମ୍ଭେମାନେ ଆକ୍ରମଣ ଆରମ୍ଭ କରିବୁଁ ।'

ସେଦିନ ରାତିରେ ପାହାଡ଼ ଉପର ଶେଷ ଘରେ ରବର୍ଟ ଜର୍ଡ଼ାନ୍ ଆରାମରେ ଶୋଇ ଇଟା କାନ୍ଥରେ କଣାଟିଏ କରି ସେହି କଣାବାଟେ ସମ୍ମୁଖସ୍ଥ ସମତଳ ଯୁଦ୍ଧ କ୍ଷେତ୍ରକୁ ନିରୀକ୍ଷଣ କରୁଥିଲେ । ଫ୍ୟାସିଷ୍ଟମାନେ ପଛକୁ ହଟି ଦୂରସ୍ଥ ମୁଣ୍ଡିଆ ଉପରେ ଛୁଣ୍ଡ ହୋଇଥାନ୍ତି । ମଝିରେଥିବା ଗୋଟିଏ ଗ୍ରାମ ବିଧ୍ୱସ୍ତ ହୋଇ ଯାଇଥାଏ । ଏହି ଦୃଶ୍ୟ ଦେଖି ରବର୍ଟ ଜର୍ଡ଼ାନଙ୍କ ମନରେ ବାଳକସୁଲଭ ଆନନ୍ଦ ଜାତ ହୋଇଥିଲା । ତାଙ୍କର ଲୁଗାପଟା ଝାଳରେ ଭିଜି ଯାଇଥିଲା ଏବଂ ସେ ନଡ଼ା ବିଛାଇ ଶୋଇଥିଲେ । ଖଣ୍ଡିଏ କମ୍ବଳ ଗୁଡ଼ାଇ ହୋଇ ଲୁଗାପଟା ଶୁଖାଉଥିଲେ । ଅର୍ଥନୀତିଜ୍ଞଙ୍କର କଥା ଭାବି ସେ ହସି ଉଠିଲେ ଏବଂ ତାଙ୍କ ପ୍ରତି ରୂଢ଼ତା ପ୍ରକାଶ କରିଥିବାରୁ ଦୁଃଖବୋଧ କଲେ । ଅର୍ଥନୀତିଜ୍ଞ ତାଙ୍କୁ ସିଗ୍ରେଟ୍ ଖଣ୍ଡେ ବଢ଼ାଇ ଦେଇ ସମ୍ବାଦ ପଚାରିବାରୁ ବେସାମରିକ ବ୍ୟକ୍ତିପ୍ରତି ସାମରିକ ବ୍ୟକ୍ତିର ଘୃଣା ତାଙ୍କ ମନରେ ସ୍ୱାଭାବିକ ଜାଗ୍ରତ ହୋଇଥିଲା । ଏହାହିଁ ତାଙ୍କର ରୂଢ଼ତା ।

ବର୍ତ୍ତମାନ ସେହି ଲୋକ ଏବଂ ଗୋଲଡ଼ ସମ୍ବନ୍ଧରେ କାର୍‌କୋଭ୍‌ କହିବାରୁ ସେ ଜାଣି ପାରିଲେ । କାରକୋଭ୍‌ କହିଥିଲେ 'ତୁମେ ସେଦିନ ତାଙ୍କୁ ଭେଟିଥିଲ ।' ସେଦିନ ମୁଁ ପୁଏଣ୍ଟ ଡ଼ି ଝୋଲ୍‌ଡୋଠାରୁ ଅଧିକ ଆଗେଇ ପାରି ନଥିଲି । ସେ କିନ୍ତୁ ରଣଭୂମିର ଅତି ନିକଟରେ ଥିଲେ । ତତ୍ପର ଦିନ ସେ ମାଡ୍ରିଡ୍‌ ଗୁଲିଗଲେ । ଝୋଲ୍‌ଡୋଠାରେ ସେ ଚୂଡ଼ାନ୍ତ ସାହସିକତା ଦେଖାଇଥିଲେ । ସେଠାରେ ସେ ଅସାଧାରଣ କୃତିତ୍ୱ ପ୍ରଦର୍ଶନ କରିଥିଲେ ଏବଂ ଆମର ଅଲ୍‌କାଜର ଦଖଲ ନେବାର ସୂତ୍ରପାତ ଘଟାଇଥିଲେ । ତାଙ୍କୁ ଝୋଲ୍‌ଡୋଠାରେ ଦେଖିଥିଲେ ତୁମେ ତାଙ୍କର ନୈପୁଣ୍ୟ ବୁଝି ପାରିଥାନ୍ତ । ମୋର ବିଶ୍ୱାସ ଯେ ତାଙ୍କରି ଚେଷ୍ଟା ଓ ପରାମର୍ଶ ଯୋଗୁଁ ଆମର ସେଠା ଅବରୋଧରେ ସଫଳ ହୋଇଥିଲୁ । ଯୁଦ୍ଧର ସବୁଠାରୁ ଏହାହିଁ ନିର୍ବୋଧତମ ଅଂଶ । ଏପରି ଚୂଡ଼ାନ୍ତ ନିର୍ବୋଧତା ଆଉ କାହିଁ ଘଟି ନଥିବ । ଆଚ୍ଛା କୁହ ତ ଦେଖି ଆମେରିକାରେ ତାଙ୍କୁ କଅଣ ଭାବନ୍ତି ?"

ରବର୍ଟ ଜର୍ଡ଼ାନ୍‌ କହିଥିଲେ "ଆମେରିକାରେ ତାଙ୍କୁ ମସ୍କୋ ଦଳଭୁକ୍ତ ବୋଲି ଧରାଯାଇଥାଏ ।"

କାର୍‌କୋଭ୍‌ କହିଥିଲେ 'ନା ତାହା ନୁହେ । କିନ୍ତୁ ତାଙ୍କର ମୁହଁଟି ଅଦ୍ଭୁତ ଏବଂ ତାଙ୍କର ମୁହଁ ଓ ଗତିବିଧି ଯୋଗୁ ସେ ସବୁଥିରେ ସଫଳ ହେଉଥିଲେ । ମୋ ମୁହଁ ଯେପରି, ମୁଁ ସେଥିରେ କିଛି କରିପାରୁ ନାହିଁ । ଯାହା କିଛି ଅଳ୍ପ ମୁଁ କରିଛି ତାହା ମୁହଁ ଯୋଗୁ ନୁହେ । ମୋ ମୁହଁକୁ ଦେଖି ଲୋକେ ଅନୁପ୍ରାଣିତ ହୁଅନ୍ତି ନାହିଁ କିମ୍ବା ମୋତେ ବିଶ୍ୱାସ କରନ୍ତି ନାହିଁ । କିନ୍ତୁ ମିଟ୍‌ଚେଲ୍‌ଙ୍କ ମୁହଁ ଯୋଗୁ ସେ ଭାଗ୍ୟବାନ୍‌ । ସେ ମୁହଁଟା ଷଡ଼ଯନ୍ତ୍ରକାରୀର ମୁହଁ । ଯେଉଁମାନେ ବହିରେ ଷଡ଼ଯନ୍ତ୍ର-କାରୀଙ୍କ ବିଷୟ ପଢ଼ିଛନ୍ତି ସେମାନେ ତାଙ୍କୁ ସଙ୍ଗେ ସଙ୍ଗେ ବିଶ୍ୱାସ କରୁଥିଲେ । ତାଙ୍କର ଧରଣ ଅସଲ ଷଡ଼ଯନ୍ତ୍ରକାରୀର ଧରଣ ଥିଲା । ଯେଉଁମାନେ ତାଙ୍କୁ ଦେଖା କରିବାକୁ ଯାଉଥିଲେ ସେମାନେ ମୁହୂର୍ତ୍ତକ ମଧ୍ୟରେ ବୁଝି ପାରୁଥିଲେ ଯେ ସେ ଜଣେ ପ୍ରଥମ ଶ୍ରେଣୀର ଷଡ଼ଯନ୍ତ୍ରକାରୀ । ଆମର ଯେଉଁସବୁ ଧନୀସହକର୍ମୀ ସୋଭିଏଟ୍‌ ରୁଷିଆକୁ ସାହାଯ୍ୟ କରିବାକୁ ଉଦ୍ୟତ ଏବଂ ଯେଉଁମାନେ ଦଳର ଶେଷ ପରିଣାମରେ ନିଜର ସୁରକ୍ଷା ପାଇଁ ଚିନ୍ତିତ ସେମାନେ ଏକ ମୁହୂର୍ତ୍ତରେ ତାଙ୍କର ମୁହଁକୁ ଅନାଇ ଦେଇ ଜାଣି ପାରୁଥିଲେ ଯେ ସେ ହେଉଛନ୍ତି ଆନ୍ତର୍ଜାତିକ ସାମ୍ୟବାଦୀ ଦଳର ଏକ ସୁ-ବିଶ୍ୱସ୍ତ ପ୍ରତିନିଧି ।'

'ତାଙ୍କର କଅଣ ମସ୍କୋ ସହିତ କିଛି ସମ୍ପର୍କ ନାହିଁ ?'

"ନା କିଛି ନାହିଁ । ଶୁଣନ୍ତୁ ସାଥୀ ଜର୍ଡ଼ାନ୍ । ଦୁଇ ରକମର ଓଲୁଂକ କଥା ତୁମେ ଜାଣ କି ?"

"ସାଧାସିଧା ବଦମାସ ?"

"ନା । ଋଷିଆରେ ଯେଉଁ ଦୁଇ କିସମର ଓଲୁ ଅଛନ୍ତି" କାର୍‌କୋଭ୍ କହିଲେ; "ପ୍ରଥମ ହେଉଛି ଶୀତ ଦିନିଆ ଓଲୁ । ସେମାନେ ତୁମ ଦୁଆରକୁ ଆସି ବଡ଼ ପାଟିରେ ଡାକ ପକାନ୍ତି । ତୁମେ ଯାଇ କବାଟ ଫିଟାଇ ଦେଖିବ ସମ୍ପୂର୍ଣ୍ଣ ଅପରିଚିତ ଲୋକ । ତାଙ୍କର ଚାଲିଚଳଣ, ଢଙ୍ଗରଙ୍ଗ, ପୋଷାକ ପରିପାଟି ଏବଂ କଥାବାର୍ତ୍ତା, ମୁଣ୍ଡ ଟୋପି ଓ ଗୋଡ଼ର ବୁଟ୍ ଜୋତା ସବୁ କିଛିରୁ ତାଙ୍କର ହାମବଡ଼ା ମାତବରିତା ଫୁଟି ଉଠେ । ଲୁଗାପଟାରେ ତାଙ୍କର ତୁଷାରଖଣ୍ଡ ଲାଗିଥାଏ । ସେ ଜୋତା କୁରୁତା ସବୁ ତୁମ କବାଟରେ ଠୁଙ୍କି ତୁଷାର ଝାଡ଼ି ଥାଆନ୍ତି । ଇଏହି ହେଉଛନ୍ତି ଶୀତଦିନିଆ ଓଲୁ ।'

'ଖରାଦିନିଆ ଓଲୁ ରାସ୍ତାରେ ଚାଲିଗଲାବେଳେ ଦୁଇ ହାତ ଓ ମୁଣ୍ଡ ଦୋହଲାଇ ଚାଲିଥାଆନ୍ତି । ଲୋକେ ତାଙ୍କୁ ଦେଖିଲାକ୍ଷଣି କହି ଉଠନ୍ତି ଇଏହି ଖରାଦିନିଆ ଓଲୁ । ସେହି ଅର୍ଥନୀତିଜ୍ଞ ଜଣେ ଶୀତଦିନିଆ ଓଲୁଥିଲେ ।'

ରବର୍ଟ ଜର୍ଡ଼ାନ୍ ପଚାରିଲେ 'ତେବେ ଲୋକେ ତାଙ୍କୁ କାହିଁକି ବିଶ୍ୱାସ କରୁଥିଲେ ?'

କାର୍‌କୋଭ୍ କହିଲେ "ତାଙ୍କର ସୁନ୍ଦର ମୁହଁଟି ପାଇଁ । ସେ ଏପରି ଏକ ସ୍ଥାନରୁ ଆସିଛନ୍ତି ଯେଉଁଠାରେ କି ଲୋକେ ତାଙ୍କୁ ଅଗାଧ ବିଶ୍ୱାସ କରୁଥିଲେ । ଏହି ଚିନ୍ତା ପ୍ରକାଶ କରିବାର ଏକ ଅମୂଲ୍ୟ କୌଶଳ ତାଙ୍କୁ ଜଣାଥିଲା । ଏହି କୌଶଳଟି ବଜାୟ ରଖିବାକୁ ତାଙ୍କୁ ଅନବରତ ଭ୍ରମଣ କରିବାକୁ ପଡ଼ୁଥିବ । ତୁମେ ତ ଜାଣ ଯେ ସ୍ପେନ୍‌ର ଲୋକମାନେ ଏକ ବିଚିତ୍ର ମତଗତ ସମ୍ପନ୍ନ । ଏଠା ଗଭର୍ଣ୍ଣମେଣ୍ଟଙ୍କ ପାଖରେ ବହୁତ ସୁନା । ସେମାନେ ବନ୍ଧୁମାନଙ୍କୁ କିଛି ଦେବେ ନାହିଁ । ତୁମେ ନିଜେ ଜଣେ ବନ୍ଧୁ । ତୁମକୁ କାମ କରାଇ ନେବେ ମାତ୍ର କିଛି ଦେବେ ନାହିଁ । କିନ୍ତୁ କୌଣସି ଅବନ୍ଧୁ ରାଷ୍ଟ୍ରର କୌଣସି କୋମ୍ପାନୀ ପ୍ରତିନିଧିଙ୍କୁ ପ୍ରଭାବିତ କରିବା ପାଇଁ ବହୁତ ଟଙ୍କା ଦେଇଥାଆନ୍ତି । ଭଲ କରି ବିଚାର କଲେ ତୁମେ ଏଥିରେ ବିସ୍ମିତ ହେବ ।'

'ମୁଁ ଏହା ପସନ୍ଦ କରେ ନାହିଁ । ସେ ଟଙ୍କା ସବୁ ସ୍ପେନ୍‌ର ଶ୍ରମିକମାନଙ୍କର ।'

"ତୁମର ପସନ୍ଦ କରିବାର କଥା କେହି ପଚାରୁ ନାହିଁ । ଖାଲି ବୁଝିନିଅ । ପ୍ରତିଥର ଦେଖାହେଲେ ମୁଁ ତୁମକୁ ଟିକିଏ ଟିକିଏ ଶିକ୍ଷା ଦେଉଅଛି । ଶେଷକୁ ତୁମେ ସବୁ କଥା ଶିଖିଯିବ । ଜଣେ ଅଧ୍ୟାପକଙ୍କୁ ଶିକ୍ଷାଦେବା ଖୁବ୍ ଚମତ୍କାର କଥା ।

"ଦେଶକୁ ଫେରଗଲେ ମୋତେ ଅଧ୍ୟାପକ ରଖିବେ କ ନାହିଁ ମୁଁ ଜାଣେନା । ସମ୍ଭବତଃ ମୁଁ ସାମ୍ୟବାଦୀ ବୋଲି ମୋତେ ବାହାର କରଦେବେ ।"

"ତେବେ ତୁମେ ସୋଭିଏଟ୍ ଋଷିଆକୁ ଫେରଆସି ସେହିଠାରେ ତୁମର ଲେଖା ପଢା ଚଳାଇବ । ତାହାହିଁ ତୁମ ପକ୍ଷରେ ସବୁଠାରୁ ଭଲ ହେବ ।"

"କନ୍ତୁ ମୋର କାମ ହେଲ ଷ୍ପେନ୍ଭାଷା ଶିକ୍ଷାଦେବା ।"

"ଅନେକ ଦେଶରେ ଷ୍ପେନୀୟ ଭାଷା ଚଳେ । ସେଠାରେ କାମ କରବା ଏଠା ପର କଷ୍ଟସାଧ୍ୟ ହେବ ନାହିଁ । ଏହା ଛଡ଼ା ତୁମକୁ ମନେ ରଖିବାକୁ ହେବ ଯେ ଗତ ୯ମାସ ଧର ତୁମେ ଆଉ ଅଧ୍ୟାପନା କରୁନାହିଁ । ଏହି ୯ମାସ ମଧ୍ୟରେ ହୁଏତ ତୁମେ ନୂଆ ବୃତ୍ତି ଶିଖି ଯାଇଥିବ । ତୁମେ ଭାଷା ସମ୍ବନ୍ଧରେ କେତେ ବହି ପଢ଼ିଅଛ ?" କାର୍କୋଭ୍ ପଚାରିଲେ ।

'ମୁଁ ଏମିଲ୍ ବର୍ଣ୍ଣଙ୍କ ସମ୍ପାଦିତ ମାର୍କସ୍ବାଦର ସରଳ ବହିଖଣ୍ଡିକ ପଢ଼ିଅଛି ।'

"ଏତକ ମାତ୍ର ।"

"ଯଦି ସେତକ ହିଁ ତୁମେ ପଢ଼ିଥାଅ ତେବେ ତୁମର ଜ୍ଞାନ ନିତାନ୍ତ କମ୍ ନୁହେଁ । ସେହି ବହିଖଣ୍ଡି ୧୫୦୦ ପୃଷ୍ଠାର ଅଟେ । ପ୍ରତି ପୃଷ୍ଠା ପାଇଁ କଚ୍ଛ ସମୟ ଦେବା ଉଚିତ । ଏହାଛଡ଼ା ଆହୁରି କେତେ ବହି ତୁମର ପଢ଼ିବା ଉଚିତ ।"

"ବର୍ତ୍ତମାନ ପଢ଼ିବାକୁ ସମୟ ନାହିଁ ।"

କାରକୋଭ୍ କହିଲେ "ମୁଁ ସେ କଥା ଜାଣେ । ଆଜି ନ ହେଉ, ଦିନେ ପଢ଼ିବାକୁ ପଡ଼ିବ । ଅନେକ ବିଷୟ ପଢ଼ିବାକୁ ଅଛି । ତାହା ପଢ଼ିଲେ ଘଟୁଥିବା ବିଷୟମାନ ତୁମେ ଭଲ ବୁଝି ପାରବ ? ଏହା ଫଳରେ ଏକ ଅତି ଉପାଦେୟ ବହି ଲେଖି ପାରବ । ସେ କହିଲେ ବହୁ ଅବଶ୍ୟ ଜ୍ଞାତବ୍ୟ ତଥ୍ୟ ବ୍ୟାଖ୍ୟା କରି ପାରବା । ସମ୍ଭବତ ମୁଁ ନଜେ ସେପରି ବହି ଲେଖିବ ।"

"କିଏ ତୁମଠାରୁ ବେଶୀ ଭଲ ଲେଖିବ ମୁଁ ଜାଣେ ନାହିଁ ।"

କାର୍କୋଭ୍ କହିଲେ "ମୋତେ ମନରଖା କଥା କୁହ ନାହିଁ । ମୁଁ ଜଣେ ସାମ୍ବାଦିକ କନ୍ତୁ ସବୁ ସାମ୍ବାଦିକଙ୍କ ପର ମୁଁ ସାହିତ୍ୟ ବହି ଲେଖିବାକୁ ଚାହେ । ମୁଁ

କାଲ୍‌ଭୋ ସେ ଟେଲେଙ୍କ ବହି ବର୍ତ୍ତମାନ ପଢ଼ୁଅଛୁ । ସେ ଜଣେ ସ୍ପେନ୍ ଦେଶୀୟ ଭଲ ଫ୍ୟାସିଷ୍ଟ । ଅନ୍ୟମାନେ ସେପରି ନୁହନ୍ତି । ମୁଁ ସୋଟେଲୋଙ୍କର ସବୁ ଲେଖା ଓ ବକ୍ତୃତା ପାଠ କରୁଅଛୁ । ସେ ଅତି ବୁଦ୍ଧିମାନ ଲୋକଥିଲେ ଏବଂ ତାଙ୍କୁ ମାରିବା ମଧ୍ୟ ଖୁବ୍ ବୁଦ୍ଧିମାନର କାମ ହୋଇଅଛି ।"

"ମୁଁ ଭାବିଥିଲି ତୁମେ ରାଜନୀତିକ ହତ୍ୟାରେ ବିଶ୍ୱାସ କରନାହିଁ ।"

କାର୍‌କୋଭ୍ କହିଲେ "କିନ୍ତୁ ଆଜିକାଲି ତାହା ବହୁତ ସଂଖ୍ୟାରେ ଘଟୁଅଛି ।"

"କିନ୍ତୁ"—

କାର୍‌କୋଭ୍ ସ୍ମିତ ହାସ୍ୟରେ କହିଲେ 'ବ୍ୟକ୍ତିଗତ ସନ୍ତ୍ରାସବାଦରେ ଆମ୍ଭ-ମାନଙ୍କର ଆସ୍ଥା ନାହିଁ । ଆତତାୟୀ ସନ୍ତ୍ରାସବାଦୀ କିମ୍ବା ବିପ୍ଳବ ବିରୋଧୀ ସଂସ୍ଥା ଉପରେ ଆମର ବିଶ୍ୱାସ ନାହିଁ । ବୁଖାରି ନାଇଟ ଗୋଷ୍ଠୀର ଦୋମୁହାଁ ନୀତି ବର୍ବରତା ଏବଂ ପାଶବିକ ହତ୍ୟାଲୀଳାକୁ ଆମ୍ଭେମାନେ ଅତି ଜଘନ୍ୟ ବୋଲି ଘୃଣା କରୁ ।'

ଜିନୋଭାଇଭ୍, କାମେନେଭ୍, ରାଇକୋଭ୍ ଏବଂ ତାଙ୍କର ଚରଣଚୁମ୍ବିଆ-ମାନଙ୍କୁ ଆମେ ସମାଜର କଳଙ୍କ ବୋଲି ଭାବୁ । ଏହି ସବୁ ସାକ୍ଷାତ ନରପିଶାଚ ମାନଙ୍କୁ ଆମେ ଘୃଣ୍ୟ ଓ ଅସ୍ପୃଶ୍ୟ ବୋଲି ଧରି ନେଇଛୁ । ତଥାପି ରାଜନୀତିକ ହତ୍ୟାକାଣ୍ଡ ଯେ ବହୁଳ ଅନୁଷ୍ଠିତ ଏହା ସ୍ୱୀକାର କରିବି ।"

"ତୁମେ ଭାବୁଛ—"

"ମୁଁ କିଛି ଭାବୁ ନାହିଁ । କିନ୍ତୁ ଏହି ସବୁ ନରପିଶାଚ ଓ ମାନବଜାତିର କଳଙ୍କ ଏବଂ ସମାଜର ଶ୍ୱାନ ଶ୍ରେଣୀଭୁକ୍ତ ସେନାପତି ଓ ନୌଅଧ୍ୟକ୍ଷମାନଙ୍କୁ ଦେଖିଲେ ଦେହ ଘୃଣାରେ କଣ୍ଟକିତ ହୋଇଉଠେ । ଏମାନେ ବିଶ୍ୱାସଘାତକ । ଏହାଙ୍କୁ ଧ୍ୱଂସ କରିବା ଉଚିତ । ଏହିମାନଙ୍କୁହିଁ ଗୁପ୍ତହତ୍ୟା କରାଯାଇଥାଏ । ପ୍ରାର୍ଥକ୍ୟ ବର୍ତ୍ତିମାନ ବୁଝିଲ ?"

ରବର୍ଟ ଜର୍ଡାନ୍ କହିଲେ 'ହଁ ବୁଝିଲି ।'

'ମୁଁ ବେଳେବେଳେ ଥଟ୍ଟା କରିଥାଏ । ତୁମେ ତ ଜାଣ, ଥଟ୍ଟାରେ ମଧ୍ୟ ଥଟ୍ଟା କରିବା କେତେଦୂର ବିପଦଜନକ । ବେଶ୍ । ମୁଁ ଥଟ୍ଟା କରିଥାଏ ବୋଲି ଭାବିବ ନାହିଁ ଯେ ସ୍ପେନ୍‌ର ଲୋକେ ଏଭଳି ବିଶ୍ୱାସଘାତକ ଅପଦାର୍ଥ ସେନାପତିଙ୍କୁ ବେଳହୁଁ ମାରି ନ ଥିବାରୁ ଅନୁତାପ କରିବେ ନାହିଁ । ଏହିଭଳି କେତେ ଲୋକ ବର୍ତ୍ତିମାନ ଆମର

ସୈନ୍ୟାଧ୍ୟକ୍ଷ ହୋଇଅଛନ୍ତି । ମୁଁ କାହାଁକ ଗୁଲି ମାରିବାର ପକ୍ଷପାତୀ ନୁହେଁ ଏବେ ବୁଝିଲ ତ ?'

"ମୁଁ ସେମାନଙ୍କୁ ପସନ୍ଦ ନକଲେ ମଧ୍ୟ ତାଙ୍କୁ ପରବା କରେ ନାହିଁ । ରବର୍ଟ ଜର୍ଡ଼ାନ କହିଲେ ।

କାରକୋଭ୍ କହିଲେ 'ମୁଁ ତାହା ଜାଣେ । ମୋତେ ସେ ଖବର ମିଳିଅଛି ।'

ରବାର୍ଟ ଜର୍ଡାନ୍ କହିଲେ 'ଏହା କଅଣ ଗୁରୁତ୍ୱପୂର୍ଣ୍ଣ ? ମୁଁ କେବଳ ତୁମକୁ ସତ କଥା କହୁଥିଲି ।'

କାରକୋଭ୍ କହିଲେ "ଦୁଃଖକର ହେଲେମଧ୍ୟ ଲୋକଙ୍କ ଉପରେ ନିର୍ଭର କରିବା କାରଣ ଭିତରୁ ଏହା ଅନ୍ୟତମ । ନରୁବା ବିଶ୍ୱାସର ପାତ୍ର ହେବା ପୂର୍ବରୁ ଲୋକଙ୍କୁ ବହୁକାଳ ସାଧାରଣତଃ, ଅପେକ୍ଷା କରିବାକୁ ପଡ଼ିବ ।'

'ଆଉ ମୋତେ କଅଣ ବିଶ୍ୱସ୍ତ ଧରି ଯାଉଛି ?'

'ତୁମ କାମରେ ତୁମେ ଖୁବ୍ ବିଶ୍ୱସ୍ତ ବୋଲି ଗୃହୀତ ହୋଇଅଛ । ମୁଁ ତୁମ ସଙ୍ଗେ ବେଳେବେଳେ କଥା କହି ତୁମର ମନର ଅବସ୍ଥା କଳନା କରିବି । ଦୁଃଖର କଥା, ଆମେ କେବେ ଗାମ୍ଭୀର୍ଯ୍ୟପୂର୍ଣ୍ଣ ଭାବରେ କଥାଭାଷା ହୋଇ ନାହୁଁ ।''

ରବର୍ଟ୍ ଜର୍ଡ଼ାନ୍ କହିଲେ 'ଯୁଦ୍ଧରେ ନ ଜିଣିବା ଯାଏ ମୋ ମନର ଉତ୍କଣ୍ଠା ଯିବ ନାହିଁ ।'

'ତେବେ ତୁମକୁ ଦୀର୍ଘକାଳ ସେପରି ରହିବାକୁ ପଡ଼ିବ ନାହିଁ । କିନ୍ତୁ ତୁମେ ସାବଧାନ ହେଇ ତାହା ଅଳ୍ପ ଅଳ୍ପ ଅନୁଶୀଳ ନ କରିବା ଉଚିତ ।'

ରବର୍ଟ୍ ଜର୍ଡାନ୍ ତାଙ୍କୁ କହିଥିଲେ ଯେ ସେ 'ମୁଣ୍ଡୋ ଓବ୍ରେରୋ' ପଢ଼ିଅଛନ୍ତି । କାର୍‌କୋଭ୍ କହିଥିଲେ ସେ ବହିରେ ଅନେକ ସାରଗର୍ଭକ କଥା ଅଛି । ଉପସ୍ଥିତ ଯୁଦ୍ଧ ସମ୍ବନ୍ଧରେ ତାହାହିଁ ଅତି ଉପାଦେୟ ଲେଖା । ଭଲକଥା । ମୁଁ ତୁମର ଏହି ଅର୍ଥ ଗ୍ରହଣ କଲି ।'

ରବର୍ଟଜର୍ଡାନ୍ କହିଥିଲେ 'ହଁ 'ମୁଁ ତୁମସହିତ ଏକମତ । କିନ୍ତୁ ଯାହା ଯାହା ଘଟୁଛି ତହିଁର ମୂର୍ତ୍ତିଙ୍କ ଚିତ୍ର ପାଇବାକୁ ହେଲେ କେବଳ ଦଳୀୟ ପତ୍ରିକା ପଢ଼ିଲେ ଚଳିବ ନାହିଁ ।''

କାରକୋଭ୍ କହିଥିଲେ ନା, କିନ୍ତୁ ୨୦ ପୃଷ୍ଠା ପଢ଼ିଗଲେ ମଧ୍ୟ ପୁସ୍ତିକାଙ୍କ ଚିତ୍ର ତୁମେ ପାଇ ପାରିବ ନାହିଁ । ଯଦି ପାଅ ତେବେ ତାହା ନେଇ କଅଣ କରିବ ମୁଁ ଭାବି ପାରୁନାହିଁ । ମୋ ପାଖରେ ତ ପ୍ରାୟ ସବୁବେଳେ ସେପରି ଚିତ୍ର ପହଞ୍ଚୁ ଅଛି କିନ୍ତୁ ମୁଁ ତାହା ପାଶୋରିବାକୁ ଚେଷ୍ଟା କରିଥାଏ !'

'ଏହା କଅଣ ମନ୍ଦ ବୋଲି ଭାବୁଛ ?'

'ଆଗ ଅପେକ୍ଷା ଏହା ଭଲ । ଅତି ଖରାପ କେତେକାଂଶରେ ଦୂର ହେଉ ଅଛି । ତଥାପି ସବୁ ସଡ଼ାପଚା । ଆମେ ଏକ ବିରାଟ ବାହିନୀ ସଂଗଠନ କରୁଅଛୁ । ସେଥିମଧ୍ୟରେ ମଡେଷ୍ଟୋ, କାମ୍ପେସିନୋ,ଲିଷ୍ଟର, ଏବଂ ଦୁରାନ ଖୁବ୍ ବିଶ୍ୱସ୍ତ ଲୋକ । ଖାଲି ବିଶ୍ୱସ୍ତ ନୁହନ୍ତି ସେମାନେ ସୁମହାନ୍ । ତୁମେ ଏହା ଦେଖି ପାରିବ । ଆମର ବ୍ରିଗେଡ୍‌ମାନ ବର୍ତ୍ତମାନ ସୁଦ୍ଧା ଅଛି ଯଦିଚ ତାହାଁର କର୍ମଧାରା ବଦଳି ଯାଉଅଛି । କିନ୍ତୁ ଯେଉଁ ସୈନ୍ୟ ଦଳ ଭଲମନ୍ଦ ଲୋକ ମିଶାଇ ଗଠିତ ହୁଏ, ସେ ଦଳ କେବେ ଯୁଦ୍ଧ ଜିଣେ ନାହିଁ । ସମସ୍ତଙ୍କୁ ଏକ ନିର୍ଦ୍ଦିଷ୍ଟ ରାଜନୀତିଙ୍କ ବିକାଶର କ୍ଷେତ୍ରରେ ପହଞ୍ଚାଇବାକୁ ପଡ଼ିବ । ସମସ୍ତଙ୍କୁ ଯୁଦ୍ଧର କାରଣ ଏବଂ ତାହାଁର ଗୁରୁତ୍ୱ ଉପଲବ୍ଧି କରିବା କଥା । ସମସ୍ତେ ଶୃଙ୍ଖଳା ମାନିବାକୁ ବାଧ୍ୟ ଏବଂ ଯୁଦ୍ଧ କାରଣ ଉପରେ ବିଶ୍ୱାସ ରଖିବା ଦରକାର । ଆମ୍ଭେମାନେ ଲୋକଙ୍କୁ ବାଧ୍ୟ କରାଇ ଏକ ବିରାଟ ସୈନ୍ୟ ବାହିନୀରେ ଭର୍ତ୍ତି କରାଇ ଅଛୁ ଅଥଚ ବାଧ୍ୟତା ମୂଳକ ସାମରିକ ବାହିନୀର ଶିକ୍ଷା ପାଇଁ ଯେଉଁ ସମୟ ଲୋଡା ତାହା ଆମ ହାତରେ ନାହିଁ । ସେମାନେ ଗୋଲାଗୁଳି ବୃଷ୍ଟି ବେଳେ କେମିତି ରହିବେ ସେ ଶିକ୍ଷା ଆମେ ଦେଇ ପାରୁ ନାହୁଁ । ଏହାକୁ ଲୋକସେନା ବୋଲି କହିଲେ ମଧ୍ୟ ପ୍ରକୃତ ଲୋକ ସେନାର ଯେଉଁ ଗୁଣ ଓ ମନୋବଳ ରହିବା ଆବଶ୍ୟକ ସେହି ମନୋବଳ ଓ ଲୌହ ଶୃଙ୍ଖଳା ଏହାର ନାହିଁ । ସୁତରାଂ ତୁମେ ବୁଝି ପାରିବ କି ବିପଦ ପୂର୍ଣ୍ଣ ପନ୍ଥା ଆମେ ଗ୍ରହଣ କରିଅଛୁ ।'

''ଆଜି ତୁମେ ବେଶୀ ସହର୍ଷ ନାହଁ ଦେଖୁଛି ।''

କାର୍‌କୋଭ୍ କହିଲେ 'ନା; ଏଇମାତ୍ର ମୁଁ ଭାଲେନ୍‌ସିଆଠାରୁ ଫେରି ଅଛି ! ସେଠାରେ ବହୁ ଲୋକଙ୍କୁ ଦେଖିଥିଲି । ଭାଲେନ୍‌ସିଆ ଠାରୁ କେହି ପ୍ରଫୁଲ୍ଲ ହୋଇ ଫେରେ ନାହିଁ । ମାଦ୍ରିଦ୍ ଠାରେ ତୁମେ ଭଲ ଓ ନିର୍ମଳ ବୋଧ କରିପାର । ସେଠାରେ ପରାଜୟର କୌଣସି ସମ୍ଭାବନା ଦେଖିବ ନାହିଁ । ଭାଲେନ୍‌ସିଆ କଥା ଭିନ୍ନ । ଯେଉଁସବୁ ଭୀରୁ ମାଦ୍ରିଦ୍‌ଠାରୁ ପଳାଇ ଥିଲେ ସେହିମାନେ ସେଠାରେ ଶାସନ କରୁ ଅଛନ୍ତି । ସେମାନେ ମନ ଖୁସିରେ ସେଠାରେ ଆମଲା ତନ୍ତ୍ର ଗୁଳାରେ ପଶି ଯାଇ

ଅଛନ୍ତି । ମାଦ୍ରିଦ୍ ଲୋକଙ୍କ ପାଇଁ ତାଙ୍କର ବଡ଼ ଅବଜ୍ଞା । ତାଙ୍କର ଏକମାତ୍ର ଧ୍ୟେୟ ହେଲା ଯୁଦ୍ଧ ବିଭାଗର କମିଶନରଙ୍କୁ କପରି ଦୁର୍ବଳ କରିହେବ । ଏହା ଛଡ଼ା ତୁମେ ବାର୍ସିଲୋନା ଦେଖିବା ଉଚିତ ଥିଲା ।'

'ସେଠା ଅବସ୍ଥା କଅଣ'?'

'ଏକ ପ୍ରହସନାତ୍ମକ ଗୀତିନାଟ୍ୟ । ପ୍ରଥମେ ତାହା ସବୁ ମଥାପାଗଳ ଏବଂ ରୋମାଣ୍ଟପ୍ରିୟ ବିପ୍ଳବୀଙ୍କ ନନ୍ଦନକାନନ ଥିଲା । ବର୍ତ୍ତମାନ ଜାଲ ସୈନିକମାନଙ୍କର ସ୍ୱର୍ଗ । ସୈନିକମାନେ ପୋଷାକ ପତ୍ର ପିନ୍ଧି ସହରର ତମାମ ନଜର ଗୁମର ଦେଖାଇ ହେବାରେ ବ୍ୟସ୍ତ । ସେମାନେ ଲଢ଼େଇ କରିବା ଛଡ଼ା ଯୁଦ୍ଧର ବାକୀ ସବୁ ସୁବିଧା ଗ୍ରହଣ କରିବାକୁ ଅଭ୍ୟସ୍ତ । ଭ୍ୟାଲେନ୍‌ସିଆ ଦେଖିଲେ ତୁମେ ଅସୁସ୍ଥ ହୋଇ ପଡ଼ିବ କିନ୍ତୁ ବାର୍ସିଲୋନା ଦେଖିଲେ ହସରେ ଫାଟିଯିବ ।'

'ତେବେ ପି, ଓ. ଇଉ. ଏମ. ଅଭିଯାନ କଅଣ ହେଲା ?'

'ସେଟା ମୂଳରୁ ଗୁରୁତର ନଥିଲା । ଗୁଡ଼ାଏ ପାଗଳଙ୍କର ଜନ ପ୍ରବାଦ ଏବଂ ବଣୁଆ ଲୋକଙ୍କର ସମିଶ୍ରଣରେ ବିପଯ୍ୟଣ୍ଟା ପିଲା ଖେଳରେ ପର୍ଯ୍ୟବସିତ ହୋଇଥିଲା । କେତେ ସତ୍ ପ୍ରକୃତିର ବିପଥ ଗ୍ଳକତ ଲୋକ ଅବଶ୍ୟ ଥିଲେ । ସେଠି ଫ୍ୟାସିଷ୍ଟମାନେ ଅଳ୍ପ ଅର୍ଥ ବ୍ୟୟ କରିଥିଲେ । କେବଳ ଜଣେ ବୁଦ୍ଧିଆ ଲୋକ ଥିଲା କିନ୍ତୁ ସେ କିଛି-ନୁହେଁ । ବିଚରା ପି. ଓ. ଇଉ. ଏମ୍ ଲୋକଗୁଡ଼ିକ ଅତି ବେକୁବ୍ ଥିଲେ ।'

'କିନ୍ତୁ ସେ ଅଭିଯାନରେ କଅଣ ବହୁତ ମଲେ ?'

'ନା, ଯୁଦ୍ଧ କରି ସେତେ ମରି ନାହାନ୍ତି ଯେତେ ପଛକୁ ଗୁଳି ଖାଇ ମଲେ ଓ ମରିବେ । ପି. ଓ. ଇଉ. ଏମ ନାମ ନ ଦେଇ, ଏହାକୁ ଗୋଟାଏ ସଂକ୍ରାମକ ବ୍ୟାଧି ନାମ ଦେବାର ଥିଲା । ଏଇ ଯେମିତି ଗାଲୁଆ କମ୍ପ ମିଳିମିଳା । ମାତ୍ର ଏ ବ୍ୟାଧି ଯୋଗୁଁ ଆଖି କାନର ଶକ୍ତି ହ୍ରାସ ହୋଇଥାଏ । ସେମାନେ ମୋତେ, ୱାଲଟର୍, ମଡେଷ୍ଟୋ ଓ ପ୍ରିଟୋକ୍ ମାରିବା ପାଇଁ ଷଡ଼ଯନ୍ତ୍ର କରିଥିଲେ । ଏଇଥିରୁ ବୁଝିବ ତାଙ୍କ ଦଳରେ କପରି ଲୋକ ମିଶିଛନ୍ତି । ଆମ୍ଭେମାନେ ଆଦୌ ଏକାପରି ନୋହୁ । କିନ୍ତୁ ବିଚରା ପି. ଓ. ଇଉ. ଏମ୍ । ସେମାନେ କାହାକୁ ମାରି ପାରି ନଥିଲେ । କି ରଣକ୍ଷେତ୍ର କିମ୍ବା ଅନ୍ୟତ୍ର । ବାର୍ସିଲୋନାରେ କେତେଜଣଙ୍କୁ ମାରିଥିଲେ ମାତ୍ର ।'

'ତୁମେ ସେଠାକୁ ଯାଇଥିଲ ?'

'ହଁ । ସେହି କୁଖ୍ୟାତ ଦଳର ବଦମାସି ବର୍ଣ୍ଣନା କରି ମୁଁ ଏକ ତାର ବାର୍ତ୍ତା ପ୍ରେରଣ କରିଅଛି । ସେ ଦଳରେ ଟ୍ରଟ୍‌ସ୍କାଇଟ୍ ଓ ଫ୍ୟାସିଷ୍ଟ ଉଭୟେ ମିଶି ଅତି ନୀଚ

ଷଡ଼ଯନ୍ତ୍ର କରିଥିଲେ । କିନ୍ତୁ ଫଳ ସେମିତି କିଛି ଘଟିଲା ନାହିଁ । ଜନ୍ କେବଳ ଜଣେ ଲୋକ ଥିଲା । ଆମେ ତାକୁ ଧରିଥିଲୁ କିନ୍ତୁ ସେ ଖସି ପଳାଇ ଗଲା ।'

'ବର୍ତ୍ତମାନ ସେ କେଉଁଠାରେ ?'

'ଆମେ କହୁଥାଉଁ ସେ ପାରିସ୍‌ରେ ଅଛି । ଲୋକଟା ଖୁବ ମେଳାପି ଥିଲା ମାତ୍ର ତାହାର ରାଜନୈତିକ ସ୍କୁଲ୍ ଖରାପ ।'

'ସେମାନେ ଫ୍ୟାସିଷ୍ଟଙ୍କ ସହିତ ଗୁପ୍ତ କଥାବାର୍ତ୍ତା ଚଳାଇ ଥିଲେ । ନୁହେଁକି ?'

'କିଏ ବା ନୁହେଁ ?'

'ଆମେ ନୋହୁଁ ।'

ସେକଥା କିଏ କହିବ ? ମୁଁ ଆଶା କରୁଛି ଆମେ ନୋହୁ । ତୁମେତ ବହୁବାର ଫ୍ୟାସିଷ୍ଟ ଲାଇନ ପଛକୁ ଯାଇଥାଅ । ସାଧାରଣତଃର ପାରିସ୍ ଦୂତାବାସର ସେକ୍ରେଟାରୀ ମାନଙ୍କ ଭାଇ ଭିତରୁ ଜଣେ ବର୍‌ଗୋସ୍‌ର କେତେ ଲୋକଙ୍କୁ ଭେଟିବାକୁ ସେଣ୍ଟ ଜନ୍ ଲୁଜ୍‌କୁ ଗତ ସପ୍ତାହରେ ଯାଇଥିଲେ ।

ରବର୍ଟ ଜର୍ଡାନ୍ କହିଲେ 'ମୁଁ ରଣକ୍ଷେତ୍ରରେ ରହିବାକୁ ପସନ୍ଦକରେ । ରଣକ୍ଷେତ୍ରର ଯେତେ ନିକଟରେ ରହିବ ସେତେ ଭଲ ଲୋକ ପାଇବ ।'

'ଫ୍ୟାସିଷ୍ଟ ଲାଇନ୍ ପଛରେ ଥାଇ କପରି ବୋଧ କରୁଥିଲ ?"

'ଖୁବ୍ ଭଲ । ସେଠାରେ ଚମତ୍କାର ଲୋକ ଭେଟିଥିଲି ।'

'ତେବେ ସେମାନେ ମଧ୍ୟ ଆମ ଲାଇନ ପଛପଟେ ଏମିତିକା ଚମତ୍କାର ଲୋକ ରଖିଥିବେ । ଆମେ ତାଙ୍କୁ ଧରି ଗୁଳି କରୁ । ସେମାନେ ଆମ ଲୋକଙ୍କୁ ଧରି ଗୁଳି କରନ୍ତି । ତାଙ୍କ ଦେଶରେ ଥିଲାବେଳେ ତୁମେ ସବୁବେଳେ ଭାବିବ ଆମ ଭିତରକୁ ସେମାନେ କେତେ ଲୋକ ପଠାଇବେ ।'

"ମୁଁ । ସେମାନଙ୍କ କଥା ଭାବିଅଛି ।"

କାର୍‌କୋଭ୍ କହିଲେ 'ହଉତେବେ । ଆଜିପାଇଁ ତୁମକୁ ଭାବିବା ପାଇଁ ବହୁତ ବିଷୟ ମିଳିଲାଣି ସୁତରାଂ ମାଠିଆରେ ଆଉ ଯେତିକ ମଦ ଅଛି ପିଇନେଇ ବିଦା ହୁଅ । ମତେ ଉପର ମହଲକୁ ଯାଇ ଲୋକଙ୍କ ସହିତ ସାକ୍ଷାତ କରିବାକୁ ହେବ । ପରେ ପୁଣି ଶୀଘ୍ର ମୋ ସହିତ ଦେଖା କରିବ ।'

ରବର୍ଟ୍ କର୍ଡ଼ାନ୍ ଭାବଲେ ଶୈଳର୍ଡଠାରେ ବହୁତ ବିଷୟର ଶିକ୍ଷା ମିଳେ ଏହା ସତ୍ୟ । କାର୍‌କୋଭ୍ ତାଙ୍କ ପ୍ରଣୀତ ଓ ପ୍ରକାଶିତ ଏକମାତ୍ର ବହୁଖଣ୍ଡ ପାଠ କରିଅଛନ୍ତି । ବହୁଖଣ୍ଡର ବିକ୍ରୀ ସେପରି ନୁହେ । ବହୁଖଣ୍ଡିକ ୨ ଶତ ପୃଷ୍ଠାର ଅଟେ ଏବଂ ଏହାକୁ ଦୁଇ ହଜାର ଲୋକ ପଢ଼ିଛନ୍ତି କି ନା ସନ୍ଦେହ । ଦଶବର୍ଷ ସ୍ପେନ୍ ଦେଶରେ ପରିଭ୍ରମଣ କରି ସେ ଯାହା ଆବିଷ୍କାର କରିଥିଲେ ସେ ସବୁ କଥା ଉକ୍ତ ବହିରେ ଲେଖିଅଛନ୍ତି । ସେ ଗୋଡ଼ରେ ଚାଲି, ତୃତୀୟ ଶ୍ରେଣୀ ଯାତ୍ରୀ ହୋଇ କେବେ ଘୋଡ଼ା ଚଢ଼ି, କେବେ ଘୋଡ଼ାଗାଡ଼ିରେ ବସି ଅଥବା ମୋଟର ବସ୍ କିମ୍ବା ଟ୍ରକ୍‌ରେ ସେ ଏହି ଦେଶ ଭ୍ରମଣ କରିଥିଲେ । ସେ ବାସ୍କ, ନାଭାରେ, ଆରାଗନ୍, ଗାଲିସିଆ, କାଷ୍ଟାଇଲ୍ ଏମାନଙ୍କ ବିଷୟ ଭଲ ଭାବରେ ଜାଣନ୍ତି । ବରୋ ଓ ଫୋର୍ଡ୍ ଏବଂ ଅନ୍ୟ ଅନେକଙ୍କ ଦ୍ୱାରା ଏପରି ଭଲ ବହିମାନ ପ୍ରକାଶିତ ହୋଇଅଛି । ସେ କିଛି ଅଧିକ ନୂଆ କଥା ଲେଖିବାକୁ ପାଇ ନଥିଲେ । କିନ୍ତୁ ବହି ଖଣ୍ଡିକ ଭଲ ହୋଇଅଛି ବୋଲି କାର୍‌କୋଭ୍ କହିଥିଲେ । ସେ କହିଥିଲେ "ମୋର ବିଶ୍ୱାସ ତୁମେ ନିରାଟ ସତ୍ୟ ଲେଖିଥାଅ ଏବଂ ଏତକ ବିରଳ । ଏଇଥିପାଇଁ ମୋର ତୁମ ସହିତ ଏତେ ଯୁକ୍ତିତର୍କ । ମୁଁ ଚାହେଁ ତୁମେ କିଛି ବିଷୟ ଜାଣିରଖ ।"

ଭଲ କଥା । ଯୁଦ୍ଧ ଶେଷ ହେଲେ ସେ ଖଣ୍ଡିଏ ବହି ଲେଖିବେ । କିନ୍ତୁ ଯାହା ସତ୍ୟ ବୋଲି ସେ ନିଜେ ଜାଣନ୍ତି ତାହାହିଁ ଲେଖିବେ । କିନ୍ତୁ ଏଥି ନିମିତ୍ତ ତାଙ୍କୁ ଅଧିକ ଭଲ ଲେଖକ ହେବାକୁ ପଡ଼ିବ । ଏହି ଯୁଦ୍ଧରେ ସେ ଯେତେ ଯେତେ ବିଷୟ ଜାଣି ପାରିଅଛନ୍ତି ସେ ସବୁ ସେତେ ସରଳ ନୁହେ ।

# ଊନବିଂଶ ପରିଚ୍ଛେଦ

ମେରିଆ ପଚାରିଲା "ଏଠି ବସି କଅଣ କରୁଅଛ ?" ସେ ତାଙ୍କର ନିକଟରେ ଠିଆ ହୋଇ ଏକଥା କହିଲା ଏବଂ ସେ ମୁହଁ ବୁଲାଇ ହସି ଦେଇ କହିଲେ "କିଛି ନାହିଁ, ମୁଁ ଭାବୁଥିଲି ମାତ୍ର ।"

"କଅଣ ପୋଲ ସମ୍ବନ୍ଧରେ ?"

"ନା । ପୋଲ କଥା ଶେଷ ହୋଇଛି । ମୁଁ ଭାବୁଥିଲି ତୋ କଥା ଆଉ ମାଡ୍ରିଦ୍‌ର ଗୋଟିଏ ହୋଟେଲ କଥା । ସେଠାକାର କେତେକ ରୁଷୀୟଙ୍କୁ ମୁଁ ଜାଣେ । ଦିନେ ମୁଁ ଖଣ୍ଡିଏ ବହି ଲେଖିବି ।"

"ମାଡ୍ରିଦ୍‌ଠାରେ କଅଣ ବହୁତ ରୁଷୀୟ ଅଛନ୍ତି ?"

"ନାହିଁ, ସାମାନ୍ୟ କେତେଜଣ ମାତ୍ର ।"

"କିନ୍ତୁ ଫ୍ୟାସିଷ୍ଟ୍ ମାସିକ ପତ୍ରିକାମାନ ହଜାର ହଜାର ଥିବାର କହନ୍ତି ।"

"ସେ ସବୁ ମିଛ । ପ୍ରକୃତରେ ମାତ୍ର କେତେଜଣ ଅଛନ୍ତି ।"

"ତୁମେ କଅଣ ରୁଷୀୟମାନଙ୍କୁ ଭଲ ପାଅ । ଯେଉଁ ଲୋକଟି ଏଠାରେ ଥିଲା ସେ ତ ଜଣେ ରୁଷୀୟ ?"

"ତୁ ତାଙ୍କୁ ପସନ୍ଦ କରୁଥିଲୁ ?"

"ହଁ । ମୁଁ ସେତେବେଳେ ବେମାର ଥିଲି । କିନ୍ତୁ ସେ ଖୁବ୍ ସୁନ୍ଦର ଓ ସାହସୀ ବୋଲି ମୋର ମନେ ହେଉଥିଲା ।"

ପିଲାର୍ କହିଲା "ବାଜେକଥା । ସେ ପୁଣି ସୁନ୍ଦର ! ତା ନାକ ମୋ ହାତ ପାପୁଲି ପରି ଚେପ୍‌ଟା । ତା'ର ହନୁହାଡ଼ ଛେଲି ପିଠିପରି ଫାଙ୍କ ଫାଙ୍କ ।"

ରବର୍ଟ ଜର୍ଡାନ୍ କହିଲେ "ସେ ମୋର ଜଣେ ଭଲ ବନ୍ଧୁ ଓ ସାଥୀ । ମୁଁ ତାଙ୍କର ବହୁତ ଯତ୍ନ ନେଉଥିଲି ।"

ପିଲାର୍ କହିଲା "ନିଶ୍ଚୟ, କିନ୍ତୁ ତୁମେତ ତାଙ୍କୁ ଗୁଳିକରି ମାରିଲ ।"

ଏକଥା ଶୁଣି ତାସ୍ ଖେଳାଳିମାନେ ମୁଣ୍ଡ ଟେକି ଚାହିଁଲେ ଏବଂ ପାବ୍‌ଲୋ, ରବର୍ଟ ଜର୍ଡାନ୍‌ଙ୍କୁ ତରାଟି ଚାହିଁଲା । କେହି କିନ୍ତୁ ମୁହଁ ଫିଟାଇ ନଥିଲେ । ଏହାପରେ ଗିପ୍‌ସି ରାଫେଲ୍ ପଚାରିଲା "ଏକଥା ସତ୍ୟ ରବର୍ଟୋ ?"

ରବର୍ଟ ଜର୍ଡାନ୍ ଜବାବ ଦେଲେ "ହଁ ସତ୍ୟ ।" ସେ ଭାବିଲେ ପିଲାର୍ ଏ ପ୍ରସଙ୍ଗ ନ ଉଠାଇ ଥାନ୍ତା କି । କିମ୍ବା ସେ ନିଜେ ସେକଥା ଏଲ୍ ସୋର୍ଡୋଙ୍କୁ କହି ନଥାନ୍ତେ କି । ଲୋକଟା ସାଙ୍ଘାତିକ ଭାବେ ଆହତ ହୋଇଥିଲା ଏବଂ ଗୁଳି କରିବାକୁ ନିଜେ ଅନୁରୋଧ କରିଥିଲା ବୋଲି ସେ ଗୁଳି କରିଥିଲେ ।

ଗିପ୍‌ସି କହିଲା "ଆମ ସଙ୍ଗରେ ଥିଲାବେଳେ ସେ ବରାବର ଏପରି ସମ୍ଭାବନା ବିଷୟ କହୁଥିଲେ । ମୁଁ ତାଙ୍କୁ ସେପରି କରିବା ପାଇଁ କେତେଥର ଯେ ଅଙ୍ଗୀକାର କରିଅଛି କହି ପାରିବି ନାହିଁ । କି ବିରଳ ବିଷୟ ।"

ପ୍ରିମିଟିଭୋ କହିଲା "ସେ ଜଣେ ଅସାଧାରଣ ଲୋକ ଥିଲେ । ଅତ୍ୟନ୍ତ ଅଦ୍ଵିତୀୟ ।"

ଦୁଇଭାଇ ଭିତରୁ ଆଣ୍ଡ୍ରିଜ୍ କହିଲା "ପ୍ରଫେସର, ଆଉ ଅନ୍ୟ ସମସ୍ତେ ଶୁଣ । ମଣିଷର ଯାହା ଘଟିବ ସେକଥା ସେ ପୂର୍ବରୁ ଜାଣିବାର ସମ୍ଭାବନା ଅଛି ବୋଲି ତୁମେ ବିଶ୍ୱାସ କର କି ?"

ରବର୍ଟ ଜର୍ଡାନ୍ ଜବାବ ଦେଲେ "ମଣିଷ ତାହା ଜାଣି ନପାରେ ବୋଲି ମୋର ବିଶ୍ୱାସ ।" ପାବ୍‌ଲୋ ତାଙ୍କୁ ଆଖି ବିସ୍ଫାରିତ କରି ଚାହିଁଥାଏ ଏବଂ ପିଲାର୍ ଅନାସକ୍ତ ମୁଖରେ ନିରୀକ୍ଷଣ କରିଥାଏ । "ରଣ କ୍ଷେତ୍ରରେ ଦୀର୍ଘକାଳ ରହିବାରୁ ଏହି ରୁଷୀୟ ସାଥୀ ଜଣକ ମାନସିକ ଦୁର୍ବଳ ହୋଇ ପଡ଼ିଥିଲେ । ଇରନ ଯୁଦ୍ଧ କେତେ ଖରାପ ତୁମେ ସବୁ ଜାଣ । ସେ ସେଠାରେ ଲଢ଼େଇ କରିଥିଲେ । ପରେ ସେ ଉତ୍ତରାଞ୍ଚଳରେ ମଧ୍ୟ ଯୁଦ୍ଧ କରିଥିଲେ । ଶତ୍ରୁପକ୍ଷର ଲାଇନ୍ ପଛରେ କାମ କରିବା

ଦଳ, ଗଡ଼ା ହେଲାରୁ ସେ ସେଥିରେ ମିଶି ଏଠାରେ, ଏସ୍କିମାଦୁରା ଏବଂ ଆଣ୍ଡାଲୁସିଆ-ଠାରେ କାମ କରିଥିଲେ । ମୁଁ ଭାବୁଛି ସେ ବଡ଼ କ୍ଳାନ୍ତ ଏବଂ ଦୁର୍ବଳ ହୋଇପଡ଼ି କୁତ୍ସିତ ବିଷୟ ସବୁ କଳ୍ପନା କରିଥିଲେ ।”

ଫର୍ଣ୍ଣାଣ୍ଡୋ କହିଲା “ସେ ନିଶ୍ଚୟ ବହୁ ଖରାପ ଦୃଶ୍ୟ ଦେଖିଥିବେ ।”

ଆଗ୍ରିସ୍ କହିଲା “ଦୁନିଆରେ ସବୁ ମଣିଷ ଏହା କରନ୍ତି । ମୋ କଥା ଶୁଣ ଇଂରେଜ ! ତୁମେ କଅଣ ମନେ କରୁଛ ଯେ କଅଣ ଘଟିବ ମଣିଷ ତାହା ଆଗରୁ ଜାଣିପାରେ ?”

ରବର୍ଟ ଜର୍ଡାନ୍ କହିଲେ “ନାହିଁ । ଏହା ଅଜ୍ଞତା ଓ କୁସଂସ୍କାର ।”

ପିଲାର୍ କହିଲା “ହଉ ଚାଲୁ, ଏ ସମ୍ବନ୍ଧରେ ଅଧ୍ୟାପକଙ୍କ ମତାମତ ଶୁଣାଯାଉ ।” ଗୋଟାଏ ସବ୍‌ଜାନତା ଭାବ ଦେଖାଇ ହେଉଥିବା ପିଲାକୁ କହିଲା ଭଳି ପିଲାର୍ ତାଙ୍କୁ କହିଲା ।

ରବର୍ଟ ଜର୍ଡାନ୍ କହିଲେ “ମୁଁ ବିଶ୍ୱାସକରେ ଭୟ ଯୋଗୁଁ ଏପରି ଖରାପ ଛବି ଦେଖା ଯାଇଥାଏ । ମନ୍ଦ ଲକ୍ଷଣ ଦେଖିବା—

ପ୍ରିମିଟିଭୋ କହିଲା “ଯଥା ଆଜିର ଉଡ଼ାଜାହାଜମାନ ।”

“ଯଥା ତୋର ଆଗମନ” ପାବ୍‌ଲୋ କୋମଳ ଭାବରେ କହିଲା ଏବଂ ରବର୍ଟ ଜର୍ଡାନ୍ ଟେବୁଲ ଆରପଟେ ତା ଆଡ଼କୁ ଅନାଇଲେ । ସେ ଦେଖିଲେ ଏକଥା ସେ ତାଙ୍କୁ ଉତ୍ତ୍ୟକ୍ତ କରିବା ଉଦ୍ଦେଶ୍ୟରେ ନୁହେ କେବଳ ନିଜର ଭାବ ପ୍ରକାଶ ଉଦ୍ଦେଶ୍ୟରେ କହୁଅଛି । ସେ କହିଚାଲିଲେ “ଖରାପ ଚିହ୍ନ ଦେଖିଲେ ଭୀରୁ ଲୋକ ନିଜର ମୃତ୍ୟୁ ଆସନ୍ନ ବୋଲି କଳ୍ପନା କରିପକାଏ । ଲୋକେ ଭାବନ୍ତି ଲୋକର କଳ୍ପନା ଭବିଷ୍ୟତ୍ ଘଟଣାର ପ୍ରତିଫଳନ ସ୍ୱରୂପ । ଏଥିଁ କିଛି ଅଧିକ ନୁହେ ବୋଲି ମୋର ବିଶ୍ୱାସ । ମୁଁ ଭୂତ ପ୍ରେତ, ଭବିଷ୍ୟତବାଣୀ କିମ୍ବା ଅଲୌକିକ ବସ୍ତୁ ବିଶ୍ୱାସ କରେ ନାହିଁ ।”

ଜିପ୍‌ସି କହିଲା “କିନ୍ତୁ ବିଚାରେ ନାମଧାରୀ ଏହି ଲୋକ ଜଣକ ନିଜ ଭାଗ୍ୟ ପରିଷ୍କାର ଦେଖି ପାରିଥିଲେ ଏବଂ ଅବିକଳ ସେହି ଘଟଣା ଘଟିଥିଲା ।”

ରବର୍ଟ ଜର୍ଡାନ୍ କହିଲେ "ସେ କିଛି ଦେଖି ନଥିଲେ । ଏପରି ସମ୍ଭାବନା ସେ ଆଶଙ୍କା କରୁଥିଲେ ଏବଂ ସେଥିରେ ଆବିଷ୍ଟ ହୋଇ ଯାଇଥିଲେ । ସେ ଯେ କିଛି ଦେଖିଥିଲେ ସେ କଥା ମୋତେ କେହି କହି ପାରିବ ନାହିଁ ।"

ପିଲାର୍ ପଚାରିଲା "ମୁଁ ପାରିବ ନାହିଁ ?" ସେ ଚୁଲୀରୁ କିଛି ଧୂଳି ଉଠାଇ ଫୁଙ୍କି ଉଡ଼ାଇ ଦେଇ କହିଲା "ମୁଁ ମଧ୍ୟ କହି ପାରିବି ନାହିଁ ?"

"ନା, ତୋର ସମସ୍ତ ଭୋଜବାଜୀ, ଜିପ୍‌ସିଗିରି ସତ୍ତ୍ୱେ ବି ତୁ ପାରିବୁ ନାହିଁ ।"

ପିଲାର୍ କହିଲା "ଯେହେତୁ ତୁମେ ହେଉଛ କାଲ ଭିତରେ ଏକ ଅଲୌକିକ ସୃଷ୍ଟି ।" ତୁମେ ନିର୍ବୋଧ ନୁହ କେବଳ ମାତ୍ର କାଲ । କାଲ ଲୋକ ସଙ୍ଗୀତ ଶୁଣିପାରେ ନାହିଁ କିମ୍ବା ବେତାର ଶୁଣିପାରେ ନାହିଁ । ସୁତରାଂ ଏପରି ନ ଶୁଣିବା ଯୋଗୁଁ ସେ କହିପାରେ ଏପରି ବସ୍ତୁ ନାହିଁ । ତୁମ କଥା ଠିକ୍ ଏହିପରି । ବୁଝିଲ ଇଂରେଜ ! ସେହି ଅଭୁତ ନାମଧାରୀ ଲୋକଟିର ମୃତ୍ୟୁ ଲକ୍ଷଣ ତା ମୁହଁରେ ମୁଁ ସ୍ପଷ୍ଟ ଦେଖିଥିଲି । ସତେ ଯେପରି ଲୁହା ତତାଇ କେହି ଦାଗି ଦେଇଥିଲା ।" ନିଜର ବଡ଼ ମୁହଁକୁ ଅଧିକ ବିସ୍ମାରିତ କରି ପିଲାର୍ ଏକଥା କହିଥିଲା ।

ରବର୍ଟ ଜର୍ଡାନ୍ ଜିଦ୍‌କରି କହିଲେ "ନା, ତୁ ଦେଖି ନଥିଲୁ । ତୁ ଦେଖିଥିଲୁ ଭୟ ଓ ଆଶଙ୍କା । ସେ ଯେଉଁ ଅବସ୍ଥା ଭୋଗିଥିଲେ ସେଥିପାଇଁ ଭୟ ଜାତ ହୋଇଥିଲା ଏବଂ ଆଶଙ୍କା ଜନ୍ମିଥିଲା ସେ ଯେଉଁ ଅମଙ୍ଗଳ କଳ୍ପନା କରିଥିଲେ ତାହାରି ପାଇଁ ।"

ପିଲାର୍ କହିଲା "ଭୁଲ ଧାରଣା । ମୁଁ ମୃତ୍ୟୁ ସତେ ଯେପରି ତାଙ୍କ ଗଳାରେ ବସିଅଛି ଏହିପରି ସୁସ୍ପଷ୍ଟ ଦେଖିଥିଲି । ଅଧିକନ୍ତୁ ସେ ନିଜେ ମୃତ୍ୟୁର ଗନ୍ଧ ପାଇଥିଲେ ।"

ରବର୍ଟ ଜର୍ଡାନ୍ କହିଲେ "ମୃତ୍ୟୁର ଗନ୍ଧ ନା ଭୟର ଗନ୍ଧ ପାଇଥିଲେ ?" ଭୟର ଗନ୍ଧ ହିଁ ଅଛି ।"

ପିଲାର୍ କହିଲା "ଶୁଣ, ବ୍ଲାନ୍‌କ୍ୱେଟ୍ ହେଉଛନ୍ତି ପୃଥିବୀରେ ଶ୍ରେଷ୍ଠ ଷଣ୍ଢ ଲଢ଼େଇ ଶିକ୍ଷକ । ସେ ଯେତେବେଳେ ଗ୍ରାନେରୋ ଅଧୀନରେ କାମ କରୁଥିଲେ ସେତେବେଳେ ମୋତେ ଗୋଟାଏ କଥା କହିଥିଲେ । ତାହା ହେଉଛି ଗ୍ରାନେରୋଙ୍କ ମୃତ୍ୟୁ ଦିବସର ଘଟନା । ଷଣ୍ଢଲଢ଼େଇ ମଞ୍ଚକୁ ଆସିବା ପାଇଁ ଦୁହେଁ ସଜବାଜ ହୋଇ

ବାହାରିଥିଲେ । ବାଟରେ ପଡ଼ିଲା ଗୋଟିଏ ଗୀର୍ଜା । ସେଠାରେ ସେମାନେ ବିଶ୍ରାମ ନେଇଥିଲେ । ସେହିଠାରେ ମୃତ୍ୟୁ ଗନ୍ଧ ଏତେ ପ୍ରବଳ ଭାବରେ ପ୍ରକାଶ ପାଇଲା ଯେ ବ୍ଲାନ୍‌କ୍ୱେଟ୍‌ଙ୍କ ଦେହ ଉଳୁଚି ଉଠିଲା । ହୋଟେଲରେ ଶାଧୁଆପାଧୁଆ ବେଲେ କି ପୋଷାକ ପିନ୍ଧିଲାବେଳେ କିମ୍ବା ପରେ ମୋଟରଗାଡ଼ିରେ ପାଖାପାଖି ବସି ଆସିଲା ବେଳେ ଏପରି କିଛି ଗନ୍ଧ ନଥିଲା । ଏହି ଗନ୍ଧ ଗୀର୍ଜାର ଲୁଇସ୍ ରୋକାଙ୍କ ଛଡ଼ା ଆଉ କେହି ପାଇ ନଥିଲେ । ଏପରିକି ମାର୍ସିଆଲ୍ ଏବଂ ଚକୁଏଲୋ ପ୍ରଭୃତି ଦୁଇଜଣ ଯେତେବେଳେ ସେ ଦୁହିଁଙ୍କ ସହିତ ଏକାଠି ପରୀକ୍ଷା ପାଇଁ ଠିଆ ହୋଇଥିଲେ ସେତେବେଳେ ମଧ୍ୟ ଅନ୍ୟ କେହି ଏହା ଧରିପାରି ନଥିଲେ କିନ୍ତୁ ଜୁଆନ୍ ଲୁଇସ ଭିତରେ ଶୁଣୋତା ପଡ଼ିଯାଇଥିଲେ । ଏହା ଦେଖି ବ୍ଲାନ୍‌କୁଏଟ୍ ତାଙ୍କୁ କହିଥିଲେ "ତୁମେ ମଧ୍ୟ ?" ଜୁଆନ୍ ଲୁଇସ୍ କହିଥିଲେ "ହଁ, ତୁମ ଲିଚୁଆଲଠାରୁ ଏ ଗନ୍ଧ ମୁଁ ପାଉଅଛି ।" ବ୍ଲାନ୍‌କୁଏଟ୍ ଜବାବ ଦେଇଥିଲେ "ଆମର ତ କିଛି ଗୃହ୍ୟନାହିଁ । ଆମ ଧାରଣା ଭୁଲ ହେଉ ବୋଲି ଆମେ ଆଶା କରିବା ।"

ଜୁଆନ୍ ଲୁଇସ୍ ଅନ୍ୟମାନଙ୍କ ସମ୍ବନ୍ଧରେ ପଚାରିବାରୁ ବ୍ଲାନ୍‌କୁଏଟ୍ କହିଥିଲେ ଯେ ଅନ୍ୟମାନଙ୍କ କଥା କିଛି ନାହିଁ । କିନ୍ତୁ ଆଜିକା ଗନ୍ଧ ଯେ ଟାଲାଭେରାର ଯୋସ୍ ପାଇଥିବା ଗନ୍ଧଠାରୁ ଉଗ୍ର ଏବଂ ସେହିଦିନ ଦ୍ୱିପ୍ରହରକୁ ପୋକାପେନା ନାମକ ଷଣ୍ଢଟି ଯେ କି ଭେରାଗୁଆ ଗୋଚର କ୍ଷେତ୍ରରୁ ଆସିଥିଲା ସେ ମାନୋଲେ ଗ୍ରାନେରୋଙ୍କୁ ବାଡ଼ର ପଛରେ ଶଠି ମାଦ୍ରିଦ୍‌ର ଦୁଇଜଣ ପ୍ରସିଦ୍ଧ ବ୍ୟକ୍ତିଙ୍କ ସମ୍ମୁଖରେ ମାରି ଦେଇଥିଲା । ଷଣ୍ଢର ସିଙ୍ଗ ମାନୋଲୋର ମୁଣ୍ଡ ଭେଜା ହାଡ଼କୁ ସମ୍ପୂର୍ଣ୍ଣ ଚୂର୍ଣ୍ଣ କରି ଦେଇଥିଲା । ଷଣ୍ଢ ତାଙ୍କୁ ସିଙ୍ଗରେ ଟେକି ପଟା ଉପରକୁ ଫିଙ୍ଗିଦେବାରୁ ଏପରି ଘଟିଥିଲା । ଏକଥା ମୁଁ ନିଜେ ବ୍ଲାନ୍‌କୁଏଟ୍ ମୁହଁରୁ ଶୁଣିଅଛି ।"

ଫର୍ଣ୍ଣାଣ୍ଡୋ ପଚାରିଲି "ତୁମେ କିଛି ଗନ୍ଧ ପାଇଥିଲ ?"

"ନା, ମୁଁ ବହୁତ ଦୂରରେ ଥିଲି । ୩ନମ୍ବର ମଞ୍ଚର ୭ମ ପଂକ୍ତିରେ ମୁଁ ଥିଲି । ଏହା ଗୋଟାଏ କୋଣରେ ଅବସ୍ଥିତ ବୋଲି ମୁଁ ସବୁ ଘଟନା ଦେଖି ପାରିଥିଲି । ସେହି ରାତିରେ ବ୍ଲାନ୍‌କୁଏଟ୍ ଯୋସ୍‌ଲିଟର କାମ କରିଥିଲି ଏବଂ ଯୋସ୍‌ଲିଟ୍ ମଧ୍ୟ ମୃତ୍ୟୁ ଲଭିଥିଲି ।

ବ୍ଲାନ୍‌କୁଇଟ୍ ଏ ଘଟନା ଫରନୋମ୍ୟଠାରେ ଫିନଷୋକୁ କହିଥିଲି । ଫିନଷୋ ଏହା ଜୁଆନ୍‌ଲୁଇସ୍ ସହିତ ମୁକାବିଲା କରିବାରୁ ଲୁଇସ୍ ମୁହଁ ଫିଟାଇ କିଛି ନ କହି ମୁଣ୍ଡ ହଲାଇ ଏହା ସତ୍ୟ ବୋଲି ସୂଚାଇଥିଲି । ଏହା ଘଟିଲାବେଳେ ମୁଁ

ଉପସ୍ଥିତ ଥିଲି । ସୁତରାଂ ଇଂରେଜ, ଅନେକ ସମୟରେ ତୁମେ ଚକ୍ରାଏଲେ, ମାର୍ସିଆଲ୍ ଲାଲଣ୍ଡ ଏବଂ ତାଙ୍କର ସମସ୍ତ ସହକାରୀ ଏବଂ ଅଶ୍ୱାରୋହୀ ସହକର୍ମୀ, ଜୁଆନଲୁଇସ୍ ଓ ମାନୋଲୋ ଗ୍ରାନେରୋଙ୍କ ନାଁ ଶୁଣିବାକୁ ପାଇଛ । ଜୁଆନ୍ ଲୁଇସ୍ ଓ କ୍ଲାନ୍କ୍ୱେଟ କିମ୍ବା ମୁଁ ଏ ଘଟଣା ସମ୍ପର୍କରେ କାଲି ନୋହୁ ।"

"ଗନ୍ଧ ପାଇବା ନାକର କାମ, ତୁମେ କାଲି ବୋଲି କାହିଁକି କହୁଛ ?" ଫର୍ଣ୍ଣାଣ୍ଡୋ ପଚାରିଲା ।

ପିଲାର୍ କହିଲା "ଇଂରେଜ ବଦଳରେ ତୋର ପ୍ରଫେସର୍ ହେବା ଉଚିତ । ମୁଁ ତୁମକୁ ଅନ୍ୟ କଥାମାନ କହିବି । ତୁମେ ନିଜେ ଯାହା ଦେଖି ଶୁଣି ପାରୁ ନାହଁ ତାହାକୁ ସନ୍ଦେହ କରିବା ଠିକ୍ ନୁହେଁ । କୁକୁର ଯାହା ଶୁଣିପାରେ ତୁମେ ତାହା ଶୁଣି ପାରି ନାହିଁ କିମ୍ବା କୁକୁର ଯେଉଁ ଗନ୍ଧ ପାଏ ତୁମେ ସେ ଗନ୍ଧ ପାଇପାରି ନାହିଁ । କିନ୍ତୁ ମଣିଷର କଅଣ ଘଟିପାରେ ସେ ସମ୍ବନ୍ଧରେ ଅଳ୍ପ ଅଭିଜ୍ଞତା ତୁମେ ଲାଭ କଲଣି ।"

ମେରିଆ ରବର୍ଟ ଜର୍ଡାନଙ୍କ କାନ୍ଧରେ ହାତ ରଖିଲା । ସେ ହଠାତ୍ ଭାବିଲେ ଏହି ବାଜେ ପ୍ରସଙ୍ଗ ଶେଷ କରି ଅବଶିଷ୍ଟ ଅଳ୍ପ ସମୟର ସୁଯୋଗ ନେବା ଉଚିତ । କିନ୍ତୁ ସମୟ ହେବାକୁ ବହୁତ ବିଳମ୍ବ ଥାଏ । ସନ୍ଧ୍ୟାର ଏହି ପ୍ରଥମ ଅଂଶଟା ପୁଣି ତ କେମିତି ହେଲେ କଟାଇବାକୁ ପଡ଼ିବ । ଏଣୁ ସେ ପାବ୍ଲୋକୁ ପଚାରିଲେ ସେ ଏଭଳି ଭୋଜବାଜୀରେ ବିଶ୍ୱାସ କରେ କି ନାହିଁ ।

ପାବ୍ଲୋ କହିଲା "ମୁଁ ଜାଣେ ନାହିଁ । ତୁମ ମତ ସହିତ ମୋ ମତର ଅଧିକ ସାମଞ୍ଜସ୍ୟ ଅଛି । କୌଣସି ଅଲୌକିକ ଘଟଣା ମୋ ଜୀବନରେ ଘଟିନାହିଁ । କିନ୍ତୁ ମୋର ଡର ଭୟ ବହୁତ ବେଶୀ । ତେବେ ମୁଁ ବିଶ୍ୱାସ କରେଯେ ପିଲାର୍ ହାତ ଦେଖି ଅନେକ ଭବିଷ୍ୟତ କଥା ଜାଣିପାରେ । ସେ ଯଦି ମିଛ କହୁ ନଥାଏ ତେବେ ସେ ଯେ ମୃତ୍ୟୁର ଗନ୍ଧ ପାଇଥିଲି ମୁଁ ବିଶ୍ୱାସ କରିବାକୁ ରାଜି ।"

ପିଲାର୍ କହିଲା "କଅଣ କହିଲୁ, ମୁଁ ମିଛ କହିବି । ଏଟାତ ମୋର ଆବିଷ୍କାର ନୁହେଁ । କ୍ଲାନ୍କ୍ୱେଟ୍ ନାମକ ଲୋକଟି ଅତ୍ୟନ୍ତ ଗମ୍ଭୀର ପ୍ରକୃତିର ଏବଂ ଭକ୍ତି ପ୍ରବଣ ଥିଲା । ସେ ତ ଆଉ ଜିପ୍‌ସି ନଥିଲା, ସେଥିଲା ଭାଲେନ୍‌ସିଆର ଜଣେ ମଧ୍ୟବିତ୍ତ ଲୋକ ତୁମେ ତାକୁ କଅଣ ଦେଖି ନାହଁ ?"

ରବର୍ଟ ଜର୍ଡାନ୍ ଉତ୍ତର ଦେଲେ 'ହଁ' ମୁଁ ତାଙ୍କୁ ଅନେକ ଥର ଦେଖିଅଛି । ଲୋକଟି ଖର୍ବକାୟ, ପାଣ୍ଡୁର ମୁହାଁ ଏବଂ ଅସ୍ତ୍ରୀନ ଶୂନ୍ୟ କୁରୁତା ପିନ୍ଧାରେ ଅଦ୍ୱିତୀୟ ଥିଲେ । ଗତି ତାଙ୍କର ଅତି କ୍ଷିପ୍ର ଥିଲା ।"

ପିଲାର୍ କହିଲା "ଅବିକଳ ଠିକ୍ । ହୃଦବେଗ ପାଇଁ ତାଙ୍କ ମୁଖ ପାଣ୍ଡୁର ହୋଇଯାଇଥିଲା । ଗିପ୍‌ସିମାନେ କହୁଥିଲେ ମୃତ୍ୟୁ ତାଙ୍କ ପାଖେ ପାଖେ ବୁଲୁଥିଲା କିନ୍ତୁ ସେ କୃଟତା ଦ୍ୱାରା ମୃତ୍ୟୁକୁ ଅନାୟାସରେ ହଟାଇ ଦେଇ ପାରୁଥିଲେ । ଅଥଚ ଗିପ୍‌ସି ନ ହୋଇ ମଧ୍ୟ ସେ ଯୋସ୍‌ଲିଟୋର ମୃତ୍ୟୁ ଗନ୍ଧ ଟାଲଭେରା ଲଢ଼େଇବେଳେ ପାଇଥିଲେ । ଅବଶ୍ୟ ମାନଜିଲ ମଦର ଉଗ୍ରଗନ୍ଧକୁ ଟପି ମୃତ୍ୟୁ ଗନ୍ଧ ସେ କିପରି ଜାଣିଲେ ମୁଁ ବୁଝିପାରେ ନଥିଲି । ଫ୍ଲାନ୍‌କୁଏଟ୍ ଅତି ଅନିଚ୍ଛାରେ ପରେ ଏକଥା କହିଥିଲା କିନ୍ତୁ ଯେଉଁମାନେ ତା କଥା ଶୁଣିଥିଲେ ସେମାନେ କହିଲେ ସବୁ କଥା ଗୋଟାଏ କଳ୍ପନା ଏବଂ ସେ ଯେଉଁ ଗନ୍ଧ ପାଇଥିଲା ତାହା ହେଉଛି ଯୋସ୍‌ର ତତ୍‌କାଳୀନ ଜୀବନ ଯାତ୍ରାର ପରିଣାମ ଅର୍ଥାତ୍ ତାହାର କାଖରୁ ବହୁଥିବା ଝାଳର ଗନ୍ଧ ମାତ୍ର । କିନ୍ତୁ ପରେ ଘଟିଲା ଲୁଇସ୍ ରେଜାର ଅଂଶ ଗ୍ରହଣ କରିଥିବା ମାନୋଲୋ ଗ୍ରାନେରୋଙ୍କ କଥା । ଏକଥା ପରିଷ୍କାର ଯେ ଜୁଆନ୍ ଲୁଇସ ଜଣେ ସମ୍ମାନାର୍ହ ଲୋକ ନଥିଲା । ସେ ଯେପରି ଅତ୍ୟଧିକ ଭାବପ୍ରବଣ ସେହିପରି ରମଣୀ ଆସକ୍ତ ଥିଲା । କିନ୍ତୁ ଫ୍ଲାନ୍‌କୁଏଟ୍ ଶାନ୍ତ ଗମ୍ଭୀର ସତ୍ୟବାଦୀ ଥିଲେ ଏବଂ ମୁଁ କହୁଛି ଯେ ତୁମର ଯେଉଁ ସହକର୍ମୀ ଏଠାରେ ଥିଲେ ମୁଁ ନିଜେ ତାଙ୍କଠାରୁ ମୃତ୍ୟୁଗନ୍ଧ ପାଇଥିଲି ।

ରବର୍ଟ ଜର୍ଡାନ୍ କହିଲେ "ମୁଁ ତୋ କଥା ବିଶ୍ୱାସ କରେ ନାହିଁ । ତୁ ତ କହିଥିଲୁ ଯେ ମିଶ୍ ଲଢ଼େଇ ପୂର୍ବରୁ ଫ୍ଲାନ୍‌କୁଏଟ୍ ଏପରି ଗନ୍ଧ ପାଇଥିଲା କିନ୍ତୁ ଏଠାରେ ତୁ କାସ୍‌କିନ୍ ଆଜି ଟ୍ରେନ ଉଡ଼ାଇବା କାମରେ ସଫଳ ହୋଇଥିଲ । ସେ ତ ଆଜି ସେ କାମରେ ମଲେ ନାହିଁ । ତେବେ ତୁ ଗନ୍ଧ ପାଇଲୁ କିପରି ?"

ପିଲାର୍ ବୁଝାଇଲା "କାମ ସହିତ ତାର ସମ୍ପର୍କ ନାହିଁ । ଇଗ୍‌ନାସି ସାଞ୍ଚେଜଙ୍କ ଠାରୁ ଗତ ଉତ୍ସବବେଳେ ମୃତ୍ୟୁର ଗନ୍ଧ ଏତେ ଉଗ୍ର ଭାବରେ ବାହାରୁଥିଲା ଯେ ଅନେକ ଲୋକ ହୋଟେଲ୍‌ରେ ତାଙ୍କ ପାଖରେ ବସିବାକୁ ନାରାଜ ହୋଇଥିଲେ । ସବୁ ଗିପ୍‌ସି ଏକଥା ଜାଣନ୍ତି ।"

ରବର୍ଟ ଜର୍ଡାନ୍ ଯୁକ୍ତି କଲେ "ମୃତ୍ୟୁ ଘଟିଲା ପରେ ଏସବୁ ଘଟଣା ରଞ୍ଜନା କରି ଯାଇଥାଏ । ସାଞ୍ଚେଜ୍ ମେଜିଆସ୍ ଦୁର୍ଘଟନା ପଥରେ ପଥିକ ବୋଲି ସମସ୍ତେ ଜାଣିଥିଲେ । ଯେହେତୁ ଦୀର୍ଘକାଳ ସେ ଅଭ୍ୟାସ ଛାଡ଼ି ଦେଇଥିଲେ, ତାଙ୍କର ଚଳଣ ଯେମିତି ସ୍ଥିର ସେମିତି ବିପଦସଙ୍କୁଳ ଥିଲା, ତାଙ୍କର ବଳ ଏବଂ ପଦକ୍ଷେପର କ୍ଷିପ୍ରତା ନଥିଲା ଏବଂ ତାଙ୍କର ଚିନ୍ତାଶକ୍ତି ପୂର୍ବପରି ନଥିଲା ।"

ପିଲାର୍ କହିଲା "ହଁ, ଏସବୁ ନିଶ୍ଚୟ ସତ୍ୟ । କିନ୍ତୁ ସବୁ ଗିପ୍‌ସି ଜାଣି ପାରିଥିଲେ ଯେ ତାଙ୍କ ଦେହରୁ ମୃତ୍ୟୁ ଗନ୍ଧ ବାହାରୁ ଅଛି । ସେ ଯେତେବେଳେ ଭିଲା

ଟିରେନାକୁ ଆସିଲେ ଯେତେବେଳେ ଶକାତ୍ରେ ଏବଂ ଫିଲିପି ଗନ୍‌ଜାଲେଜ୍ ପ୍ରଭୃତି ମଦ ଖିଆ ପ୍ରକୋଷ୍ଠର ଶ୍ରେଷ୍ଠ ଦୁଆରବାଟେ ବାହାରି ଯାଇଥିଲେ ।"

ରବର୍ଟ ଜର୍ଡାନ୍ କହିଲେ "ସେମାନେ ହୁଏତ ତାଙ୍କଠାରୁ ଟଙ୍କା କରଜ ନେଇଥିଲେ ।"

ପିଲାର୍ କହିଲା "ଏହା ଅସମ୍ଭବ ନୁହେଁ । କିନ୍ତୁ ସେମାନେ ଯେ ଗନ୍ଧ ପାଇଥିଲେ ଅନ୍ୟମାନେ ସେ କଥା ଜାଣନ୍ତି ।"

ରାଫେଲ୍ କହିଲା "ଇଂରେଜ, ପିଲାର୍ ଯାହା କହୁଛି ତାହା ସତ । ଆମ ଭିତରେ ଏହା ଖୁବ୍ ଜଣା ଶୁଣା କଥା ।"

"ମୁଁ ଏହା ଆଦୌ ବିଶ୍ୱାସ କରେ ନାହିଁ ।" ରବର୍ଟ ଜର୍ଡାନ କହିଲେ ।

ଆନ୍‌ସେଲମୋ କହିଲା "ଶୁଣ ଇଂରେଜ, ମୁଁ ଏସବୁ ଭେଲକିର ବିରୁଦ୍ଧରେ କିନ୍ତୁ ଏ ଦିଗରେ ପିଲାର୍ ବିଶେଷ ଅଭିଜ୍ଞ ବୋଲି ପ୍ରସିଦ୍ଧି ଲାଭ କରିଅଛି ।"

ଫର୍ଣ୍ଣାଣ୍ଡୋ ପଚାରିଲା "ଗନ୍ଧଟା କିଭଳି ? ଗନ୍ଧ ଯେତେବେଳେ ବାହାରିଥିଲା ନିଶ୍ଚୟ ତାହା ଗୋଟାଏ ନିର୍ଦ୍ଦିଷ୍ଟ ନାମବାଚ୍ୟ ହୋଇ ପାରିବ ।"

ପିଲାର୍ ହସି ହସି କହିଲା "ଫର୍ଣ୍ଣାଣ୍ଡିଟୋ, ତୁ ଜାଣିବାକୁ ଚାହୁଁ ? ତୁ କଅଣ ଭାବୁଛୁ ତୁ ଏହା ବାରି ପାରିବୁ ?"

"ଯଦି ଏହା ବାସ୍ତବରେ ଥାଏ ତେବେ ଅନ୍ୟଙ୍କ ପରି ମୁଁ ବା କାହିଁକି ସେ ଗନ୍ଧ ଆଘ୍ରାଣ କରି ନ ପାରିବି ?"

ନିଜର ବଡ଼ ବଡ଼ ହାତକୁ ଆଣ୍ଠୁ ଉପରେ ରଖି ବିଦ୍ରୂପ କରି ପିଲାର୍ କହିଲା "ହଁ, ତୁ କାହିଁକି ଆଘ୍ରାଣ ନ କରିବୁ ? ଆଚ୍ଛା ଫର୍ଣ୍ଣାଣ୍ଡୋ ତୁ କେବେ ଜାହାଜ ଚଢ଼ିଥିଲୁ ?"

"ନାହିଁ, କିମ୍ବା ଚଢିବାକୁ ଚାହେଁ ନାହିଁ ।"

ତେବେ ତୁ ସେ ଗନ୍ଧବାରି ପାରିବୁ ନାହିଁ । ଜାହାଜ ଯେତେବେଳେ ଝଡ଼ରେ ପଡ଼େ ଏବଂ ତହିଁର ଜଳା ବାଟିମାନ ବନ୍ଦ କରି ଦିଆଯାଏ ସେତେବେଳେ ଯେଉଁ ଗନ୍ଧ ବାହାରେ ମୃତ୍ୟୁ ଗନ୍ଧ ସହିତ ତାହାର ଆଂଶିକ ମେଳଅଛି । ଜଳାବାଟି ଶକ୍ତ ଭାବରେ

ପେଟ ଆଣ୍ଠି ବନ୍ଦ କରି ଦେଇ ତାପୂରେ ତାହାଁରେ ପିଡଲ. ମୁଠାରେ ନାକ ଲଗାଇ ରଖିଲେ ବୁଝିବ ଜାହାଜ ଝଲମଲ ହେଉଅଛୁ । ତୁମ ପେଟ ଖାଲି ଏବଂ ତୁମେ ଦୁର୍ବଳ ସେତେବେଳେ ତୁମେ ମୃତ୍ୟୁଗନ୍ଧର ଆଂଶିକ ସେଠାରୁ ପାଇ ପାରିବ ।"

ଫର୍ଣ୍ଣାଣ୍ଡୋ କହିଲା "ତେବେ ଗନ୍ଧ ବାରିବା ମୋ ଭାଗ୍ୟରେ ନାହିଁ କାରଣ ମୁଁ କେଭେ ହେଲେ ଜାହାଜ ଚଢ଼ିବ ନାହିଁ ।"

"ମୁଁ ବହୁବାର ଜାହାଜ ଚଢ଼ି ମେକ୍ସିକୋ, ଭେନଜୁଏଲା ଯାଇଅଛୁ" ପିଲାର୍ କହିଲ ।

ରବର୍ଟ ଜର୍ଡାନ୍ ପଚାରିଲେ 'ବାକିତକ କଅଣ ? ପିଲାର୍ ନିଜର ସମୁଦ୍ର ଯାତ୍ରା କଥା ମନେ ପକାଇ ସଗର୍ବରେ ବ୍ୟଙ୍ଗପ୍ର ଦୃଷ୍ଟିରେ ତାଙ୍କୁ ଗୃହିଁ କହିଲା 'ହଉ ତେବେ ଶୁଣ ଇଂରେଜ କଥା ହେଉଛି ଏତିକ । ଜାହାଜ ଛାଡ଼ି ତୁମେ ମାଦ୍ରିଦ୍ର ପାହାଡ଼ ତଳସ୍ଥ ପୁଏର୍ଟା ଝୋଲଡୋକୁ ବଡ଼ି ସକାଳୁ ଯିବ । ସେଠି ଲଣ୍ଡ ଲଟ୍ଳେଇ ସ୍ଥାନ । ସେଠାରେ ଓଦା ରାସ୍ତାରେ ତୁମମାନଙ୍କୁ ଅପେକ୍ଷା କରିବାକୁ ପଡ଼ିବ । ମନ୍ଜାନାରେସ୍ ଅତ୍ତ୍ରୁକୁହୁଡ଼ି ମାଡ଼ି ଆସି ରାସ୍ତା ଓଦା କରିଥାଏ । ବୁଢ଼ୀମାନେ ନିହତ ହୋଇଥିବା ଜନ୍ତୁଙ୍କର ରକ୍ତ ପିଇବା ପାଇଁ ସକାଳହେଲେ ସେଠାକୁ ଯାଇଥାନ୍ତି । ଯେତେବେଳେ କେହି ଜଣେ ବୁଢ଼ୀକୁ ଦେହରେ ଶାଲ ଗୁଡ଼ାଇ ପାଣ୍ଡୁର ମୁଖ, କୋଟର ଗତଆଖି, ଚିବୁକ ଓ ଗାଲରେ ବାର୍ଦ୍ଧକ୍ୟର ଛାପ ଦେଖିବ । ସେତେବେଳେ ତାକୁ କୁଣ୍ଢାଇ ପକାଇ ମୁହଁରେ ଚୁମ୍ବା ଖାଇବ । ଏପରି କଲେ ତୁମେ ମୃତ୍ୟୁଗନ୍ଧର ୨ୟ ଅଂଶ କଅଣ ଜାଣିପାରିବ । ସେ ବୁଢ଼ୀଙ୍କ ମୁହଁ ସଦ୍ୟ ଅଙ୍କୁରିତ ସିମ ଗଜା ମରି ଶ୍ବେତାଳିଆ ବ୍ରଣରେ ପୂର୍ଣ୍ଣ ଓ ତାହାଁରେ ମୃତ୍ୟୁର ଚିହ୍ନ ଅଙ୍କିତ ।

ଜିପ୍ସି କହିଲା 'ପ୍ରଥମ କଥାଟା ମୋ ଦେହକୁ ମାରି ଦେଲା । ଏହି ଗଜା କଥାଟା ଆଉ ସହି ହେବ ନାହିଁ ।

ପିଲାର୍ ରବର୍ଟ ଜର୍ଡାନ୍ଙ୍କୁ ପଚାରିଲା "ଆଉ ଶୁଣିବ ?"

ସେ କହିଲେ 'ନିଶ୍ଚୟ, ଶିଖିବାର ଦରକାର ହେଲେ ଶିଖିବ ।'

ଜିପ୍ସି କହିଲା ସେ ସିମଗଜା ପରିକମ ବାଲି ବୁଢ଼ୀ କଥା ଶୁଣି ମୋ ଦେହ ଉକ୍ଳୁଟ ଉଠିଲାଣି । ବୁଢ଼ୀଙ୍କର କାହିଁକି ଏହା ଘଟିବ ପିଲାର୍ ? ଆମର ତ ସେପରି ହୁଏ ନାହିଁ ।

ପିଲର ତାଙ୍କୁ ଅଟ୍ଟା କରି କହିଲା 'ତା'ନୁହେ, ଆମେ ସବୁ ବୃଢ଼ୀ ଯୌବନରେ ଖୁବ ସରୁଆ ଥାଉ । କେବଳ ମାତ୍ର ସ୍ୱାମୀର ଅନୁଗ୍ରହ ନିଦର୍ଶନ ଥାଏ ଆମ ଅଙ୍ଗରେ ଦୁଇଟି ଫୁଲ ଭାବରେ । ପ୍ରତ୍ୟେକ ଜିପ୍‌ସି ସେହି ଫୁଲକୁ ଆଗେ ଆଗେ ନେଇ ଚାଲନ୍ତି ।'

ରାଫେଲ୍ କହିଲା 'ଏପରି କହିବାଟା ଅତି କୁତ୍ସିତ ।'

ପିଲାର୍ ଜବାବଦେଲା 'ତୋ ମନକୁ ବାଧିଲା କି ? ତୁ କେବେ କୌଣସି ଗର୍ଭିଣୀ ସ୍ତ୍ରୀ ଲୋକ ଦେଖିଛୁ ?'

'ତୋତେ ଦେଖିଛି ।'

ପିଲର୍ କହିଲା 'ହଉ ଭ୍ରଷ୍ଟ । କାହାକୁ ନ ବାଧିବ ବୋଲି ନୁହେ । ମୋ କହିବାର ମତଲବ ହେଲା ଯେ ବୟସ ସମସ୍ତଙ୍କୁ କୁତ୍ସିତ କରି ପକାଏ । ସେ ସବୁକଥା ବାଖ୍ୟା କରିବ ନାହିଁ । କିନ୍ତୁ ଇଂରେଜ ଯଦି ଉକ୍ତ ଗନ୍ଧ କଥା ଶିକ୍ଷା କରିବାକୁ ଉଦ୍ୟୋଗୀ ତେବେ ତାଙ୍କୁ ସେହି ସ୍ଥାନକୁ ବଡ଼ି ସକାଳେ ଯିବାକୁ ପଡ଼ିବ ।'

ରବର୍ଟ ଜର୍ଡାନ୍ କହିଲେ 'ହଁ ମୁଁ ଯିବି କିନ୍ତୁ ତାଙ୍କୁ ଚୁମ୍ବା ନଖାଇ ଖାଲି ସେମାନେ ମୋ ପାଖ ଦେଇ ଗଲାବେଳେ ଗନ୍ଧ ଆଘ୍ରାଣ କରିବି । ସେ ବିଷ୍ଫୋଟକକୁ ମୋର ବଡ଼ ଭୟ ।"

ପିଲର୍ କହିଲା 'ନା, ଜଣକୁ ଚୁମ୍ବା ଖାଇବାକୁ ହେବ ଇଂରେଜ ତେବେ ଜାଣି ପାରିବ । ତା ପରେ ସେହି ଗନ୍ଧକୁ ନାକରେ ନେଇ ସହରକୁ ଫେରିଯିବ । ବାଟରେ ଯେଉଁଠି ଅଳିଆ ଟିଣ ଦେଖିବ ଯେଉଁଥିରେକି ପଚା ଫୁଲ ପଡ଼ିଥିବ, ତୁମ ନାକ ସେଥିରେ ମାଡ଼ି ରଖିବ । ଆଘ୍ରାଣ କରିବ ଏହି ଦୁଇ ଗନ୍ଧ ମିଶି ଯାହା ହେବ ମୃତ୍ୟୁର ଗନ୍ଧ ତାହାହିଁ ।

'ବର୍ତ୍ତମାନ ସବୁ ବୁଝି ପାରିଲି । କିନ୍ତୁ ସେ କି ଫୁଲ ? ରବର୍ଟ ଜର୍ଡାନ ପଚାରିଲେ ।

'ସେବତି'

ମୁଁ ତାହାର ଗନ୍ଧ ଜାଣେ । ହଉ ତେବେ କୁହ' ରବର୍ଟ ଜର୍ଡାନ କହିଲେ ।

ତା ପରେ ଆଉ ଗୋଟାଏ କଥା । ଦିନଟା ହୋଇଥିବ । ଶାରଦୀୟ ବର୍ଷାକାଳ । ନିତାନ୍ତ ପକ୍ଷେ କିଛି କୁହୁଡ଼ି ନରୁବା ଶୀତର ଆରମ୍ଭ । ତୁମେ ସହର

ଭିତରେ କାଲେ ସାଲୁନ୍‌କୁ ଯିବ । ରାସ୍ତାଘାଟର ସବୁ ଅଳିଆ ଯେଉଁ ନର୍ଦ୍ଦମାରେ ପକାଉଥିବେ । ସେହି ଗନ୍ଧ ଗ୍ରହଣ କରି ତା ସହିତ ମିଶାଇବ ହାତ ଧୁଆ ସାବୁନପାଣି ଓ ସିଗ୍ରେଟ୍ ମୁଣ୍ଡିର ତମାଖୁ ଗନ୍ଧ । ଏହାପରେ ଜାର୍ଡିନ ବୋଟାନିକୋକୁ ଯିବ । ସେଠି ଦେଖିବ ସେହି ସବୁ ନଷ୍ଟ ଯୌବନା ତରୁଣୀ ଯାହାଙ୍କର କି ଘରେ ରହି ପେଶା ଚଳାଇବାର ବୟସ ଓ ରୂପ ନାହିଁ । ସେମାନେ ବଗିଚା ବାଡ଼ କଡ଼ରେ କମ୍ବା ରାସ୍ତା କଡ଼ରେ ଅତି ଅଳ୍ପ ମାତ୍ର ପଇସା ନେଇ ଯାହା ଗ୍ରହିବ ତାହା କରିଥାନ୍ତି । ନାରୀ ଜାତି ଏଇଥି ପାଇଁ ସତେ ଯେପରି ଜନ୍ମି ଛନ୍ତି । ବଗିଚାରେ ପାଇବ ମଲ୍ ଫୁଲ୍ ଗଛର କାଆଁରି । ସେଠାର ମାଟି ରାସ୍ତା ଅପେକ୍ଷା ନରମ । ସେଠି ବଳିବ ଗୋଟାଏ ପରିତ୍ୟକ୍ତ ବସ୍ତା । ପଚା ଫୁଲ୍ ଓ ଓଦା ମାଟି ତାହା ପୂର୍ଣ୍ଣ । ସେହି ସବୁ ଓଦା ଏଣ୍ଟିଲ ମାଟି, ସଢ଼ା ପଚା ଫୁଲର ଗନ୍ଧ ଭରି ଅଖାକୁ ମୁଣ୍ଡରେ ଗୁଡ଼ାଇବ ଏବଂ ତାହା ଭିତରେ ନିଶ୍ୱାସ ନେବ ।'

'ନା, ନା, ତା ନୁହେ ।'

ପିଲାର୍ କହିଲା 'ହଁ, ମୁଣ୍ଡରେ ଗୁଡ଼ାଇ ନିଶ୍ୱାସ ନେବ । ଯଦି ତୁମ ନାସାରୁ ପୂର୍ବର ଗନ୍ଧ ଉଭେଇ ଯାଇ ନଥାଏ ତେବେ ଏହି ଗନ୍ଧ ସହିତ ମିଶି ଯାହା ବାହାରିବ ତାହାହିଁ ହେଉଛି ମୃତ୍ୟୁର ଗନ୍ଧ ।'

'ବେଶ୍, ତେବେ କାସ୍‌କିନ୍ ଏଠାରେ ଥିଲାବେଳେ ଏପରି ଗନ୍ଧାଉଥିଲେ ?' ରବର୍ଟ ଜର୍ଡାନ୍ ପଚାରିଲେ ।

'ହଁ' ।

'ଯଦି ଏହାହିଁ ହୋଇଥାଏ ତେବେ ମୁଁ ତାଙ୍କୁ ଗୁଳିକରି ଭଲ କରିଅଛୁ ।'

ରବର୍ଟ ଜର୍ଡାନ୍ ଗମ୍ଭୀର ଭାବରେ କହିଲେ ।

ଗିପ୍‌ସି କହିଲେ 'ଏତେକଥା ।' ଅନ୍ୟମାନେ ହସି ଉଠିଲେ ।

ପ୍ରିମିଟିଭୋ ଏହା ସମର୍ଥନ କରି କହିଲା 'ଖୁବ୍ ଭଲ କଥା । ଏହା ତାହାକୁ କିଛିକାଳ ପାଇଁ ମୌନ ରଖିବ ।'

ଫର୍ଣ୍ଣାଣ୍ଡୋ କହିଲା 'କିନ୍ତୁ ପିଲାର, ଲର୍ଡ ରବର୍ଟୋଙ୍କ ପରି ଉଚ୍ଚ ଶିକ୍ଷିତ ଲୋକ ଏପରି କୁତ୍ସିତ କାମ କରିବେ ଏହା ତୁମେ ନିଶ୍ଚୟ ଆଶା କରୁନାହଁ ।' ପିଲାର୍ ଏଥିରେ ଏକମତ ହେଲା । 'ସେ ସବୁ କାମ ଅତି ଜଘନ୍ୟ ।' 'ସେ ଯେପରି କୁତ୍ସିତ କାମ କରିବେ ବୋଲି ଭାବିବା ଅନୁଚିତ ।' ଏଥିରେ ମଧ୍ୟ ପିଲାର୍ ଏକମତ ହୋଇ

ଫର୍ଣ୍ଣାଣ୍ଡୋଙ୍କୁ ଶୋଇବାକୁ ଯିବାକୁ କହିଲା । ଏହା ପରେ ସେ ପୁଣି କଅଣ କହିବାକୁ ଯାଉଥିଲା । ମାତ୍ର ପିଲାର୍ ହଠାତ୍ ବିରକ୍ତିରେ କହି ଉଠିଲା 'ମୁହଁ ବନ୍ଦ କର । ନିଜର ବେକୁବି ଆଉ ଦେଖାନା କିମ୍ବା ତୋ ଭଳି ଯେଉଁମାନେ କିଛି ବୁଝି ପାରନ୍ତି ନାହିଁ ତାଙ୍କ ସହିତ ଯୁକ୍ତି ତର୍କରେ ମୋତେ ପ୍ରବର୍ତ୍ତାଇ ବେକୁବ୍ ବନାଅ ନାହିଁ ।'

ଫର୍ଣ୍ଣାଣ୍ଡୋ କହିଲା "ମୁଁ ଯେ କିଛି ବୁଝେ ନାହିଁ, ସେ କଥା ସ୍ୱୀକାର କରୁଅଛି ।'

ପିଲାର୍ ଜବାବ ଦେଲା "ସ୍ୱୀକାର କରିବା କିମ୍ବା ବୁଝିବାକୁ ଚେଷ୍ଟା କରିବା ଦରକାର ନାହିଁ ।''

ହଁ, ବର୍ତ୍ତମାନ ସୁଦ୍ଧା କଅଣ ତୁଷାର ପାତ ଚାଲିଅଛି ?"

ରବର୍ଟ ଜର୍ଡାନ୍ ଗୁହା ମୁହଁକୁ ଯାଇ ପର୍ଦା ହଟାଇ ପଦାକୁ ଚାହିଁଲେ । ଦେଖିଲେ ଯେ ରାତି ନିର୍ମଳ ଓ ଶୀତଳ; ବରଫ ପାତ ଥମି ଯାଇ ଅଛି । ସେ ଗଛ ମୂଳ ସନ୍ଧି ଦେଇ ଦେଖିଲେ ଧରଣୀ ଧବଳିତ ଏବଂ ବୃକ୍ଷ ଚୂଡ଼ା ଉପରେ ଆକାଶ ନିର୍ମଳ । ଅତି ଥଣ୍ଡା ପବନ ସେ ନିଶ୍ୱାସରେ ଗ୍ରହଣ କଲେ । ସେ ଭାବିଲେ ସୋର୍ଡୋ ଯଦି ଆଜି ଘୋଡ଼ା ଚୋରି କରିଥିବ ତେବେ ଅସଂଖ୍ୟ ପଦଚିହ୍ନ ରଖି ଯାଇଥିବ । ସେ ପର୍ଦା ପକାଇ ଦେଇ ପୁଣି ସେହି ଧୂଆଁ ଳିଆ ଗୁହା ଭିତରକୁ ଫେରି ଆସି କହିଲେ 'ତୋଫାନ ବନ୍ଦ ହୋଇ ଗଲଣି । ଆକାଶ ପରିଷ୍କାର ।'

# ବିଂଶ ପରିଚ୍ଛେଦ

ରାତିରେ ସେ ଶୋଇ ଶୋଇ ମେରିଆଙ୍କୁ ଅପେକ୍ଷା କରୁଥିଲେ । ପବନ ନିଶ୍ଚଳ ବୋଲି ଦେବଦାରୁ ବଣ ମଧ୍ୟ ନିସ୍ତବ୍ଧ । ମାଟିରେ ତୁଷାର ଜମି ଯାଇଥାଏ ଏବଂ ଗଛର ଗଣ୍ଡି ମାନ ତୁଷାର ସ୍ତୂପ ଭେଦି ଉପରକୁ ଫୁଟି ବାହାରି ଥାଏ । ସେ ନିଜର ସୁକୋମଳ ବିଛଣା ଖୋଳରେ ପୂରା ଗୋଡ଼ ଲମ୍ବାଇ ତହିଁର ଉଷ୍ଣତା ଅନୁଭବ କରୁଥାନ୍ତି । ମୁଣ୍ଡ ପାଖ ଖୋଲା ଥିବାରୁ ତୀକ୍ଷ୍ଣ ଶୀତଳ ବାୟୁ ତାଙ୍କ ମୁଣ୍ଡରେ ଓ ନାକରେ ପଶି ଯାଉଥାଏ । ସେ ନିଜ ଜୋତା ଓ କୁରୁତା ଗୁଡ଼ାଇ ମୁଣ୍ଡତଳେ ତକିଆ କରି କରିପଟ ହୋଇ ଶୋଇ ଥାଆନ୍ତି । ତାଙ୍କର ଧାତୁ ନିର୍ମିତ ପିସ୍ତଲଟା ସେ ମଣିବନ୍ଧରେ ବାନ୍ଧିବାରୁ ତାହା ତାଙ୍କର କଙ୍କାଳରେ କାଲୁଆ ଲାଗୁଥାଏ । ସେ ପିସ୍ତଲଟାକୁ ଠେଲି ତଳକୁ ଦେଇ ଅନ୍ଧାରେ ଗୁହା ମୁହଁକୁ ଅନାଇ ଥିଲେ । ଆକାଶ ନିର୍ମଳ ଥିବାରୁ ପର୍ଯ୍ୟାପ୍ତ ଆଲୋକ ବରଫରେ ପ୍ରତିଫଳିତ ହୋଇ ଗଛର ଗଣ୍ଡି ମାନ ଦୃଶ୍ୟମାନ କରି ଯାଉଥାଏ ।

ସନ୍ଧ୍ୟାର ଆରମ୍ଭରେ ସେ କୁରାଢ଼ୀ ନେଇ ଗୁହା ଭିତରକୁ ବରଫ ଉପରେ ଖଣ୍ଡେ ଦୂର ଯାଇ ଜଙ୍ଗଲରୁ ଗୋଟିଏ ଗ୍ରୀନ୍ ଗଛଡାଳ କାଟି ଅନ୍ଧାରରେ ତାକୁ ଘୋଷାରି ଘୋଷାରି ଗୁହା କାନ୍ଥ ଆଡ଼ୁଆଲ ଯାଏ ଆଣିଥିଲେ । କାନ୍ଥ କଡ଼ରେ ଗଛଟିକୁ ଠିଆ ଭାବରେ ଧରି କୁରାଢ଼ୀରେ ଡାଳ ପତ୍ର ଗୁଡ଼ିକ ଗଦା କରିଥିଲେ । ଗଛର ଗଣ୍ଡିକୁ ତଳେ ଥୋଇ ଦେଇ ସେ ଗୁହା ଭିତରୁ ଖଣ୍ଡିଏ ଚାରିକୋଣିଆ କାଠ ତକ୍ତା ଆଣି ବରଫ ରାଶି ସଫା କରି ଉକ୍ତ ଡାଳପତ୍ର ବିଛାଇ ଶଯ୍ୟା ରଚନା କରିଥିଲେ । ଗଛର ଗଣ୍ଡିକୁ ସେହି ଶଯ୍ୟାର ଗୋଡ଼ ପାଖରେ ଆଡ଼କରି ରଖିବାରୁ ଡାଳପତ୍ର ସବୁ ଛିତରେଇ ଯାଇ ନଥିଲା । ଗଣ୍ଡିଟା ହଟି ନ ଯିବ ବୋଲି ତା' କଡ଼ରେ ଦୁଇଟା କାଠ ପୋତି ଦେଇ

ଥିଲେ । ଏହା ପରେ ଗୁହା ଭିତରେ ଉକ୍ତ ଡକ୍ତା ଓ କୁରାଢ଼ୀ ଥୋଇ ଦେଇ ଗଲେ । ବାହାରେ କଅଣ କରୁଥିଲେ ବୋଲି ପିଲାର୍ ପଚାରିବାରୁ ସେ ବିଛଣା ପ୍ରସ୍ତୁତ କରୁଥିଲେ । ବୋଲି କହିଲେ ପିଲାର୍ ତାଙ୍କୁ ତା ନିଜ ଆଲମାରି ଡକ୍ତା ନକାଟିବା ପାଇଁ ଇଙ୍ଗିତ ଦେଲା । ସେ ଦୁଃଖ ପ୍ରକାଶ କରିବାରୁ ପିଲାର୍ କହିଲା "କିଛି ପରବା ନାହିଁ, କରତ କଲାରୁ ବହୁତ ପଟା ମିଳିବ । କିପରି ବିଛଣା କରିଅଛ ?'' ନିଜ ଦେଶରେ ଯେପରି କରାଯାଏ, ବୋଲି ଜର୍ଡ଼ାନ୍ ଜବାବ ଦେଲାରୁ ପିଲାର୍ ତାଙ୍କର ସୁଖନିଦ୍ରା କାମନା କଲା । ଏହାପରେ ରବର୍ଟ ଜର୍ଡ଼ାନ୍ ବୋକସ୍ତା ଫିଟାଇ ସେଥିରୁ ଶଯ୍ୟା ଖୋଲଟି ଟାଣି ଆଣିଲେ ଏବଂ ଅନ୍ୟ ପୁଟୁଳା ମାନ ବୋକସ୍ତାରେ ବାନ୍ଧ ରଖି ଖୋଲଟି ନେଇ ସେହି ତାଲପତ୍ର ଉପରେ ବିଛାଇ ତହିଁର ମୁଣ୍ଡ ପଟଟା ଗୁହା କାନ୍ଥର ଆଢ଼ୁଆଳରେ ରଖିଲେ । ଏହା ପରେ ସେ ପୁଣି ନିଜର ବୋକସ୍ତା ଆଣିବାକୁ ଗୁହା ଭିତରକୁ ଗଲାରୁ ପିଲାର୍ କହିଲା କି ଲପର ତାହା ସେ ରଖିବ ।

ରବର୍ଟ ଜର୍ଡ଼ାନ୍ ପଚାରିଲେ । "ଆକାଶ ଖୁବ୍ ପରିଷ୍କାର ଏବଂ ତୋଫାନ ଥମି ଯାଇଛି । ଏଠାରେ ପ୍ରହରୀ ରହିବତ ?'' ପିଲାର କହିଲା 'ହଁ, ଫର୍ଣ୍ଣାଣ୍ଡୋ ପହରା ଦେବ ।' ମେରିଆ ଗୁହା ଭିତର ଅଂଶରେ ଥିବାରୁ ରବର୍ଟ୍ ଜର୍ଡ଼ାନ୍ ତାକୁ ଦେଖି ପାରି ନଥିଲେ । ତହୁଁ ସେ ସମସ୍ତଙ୍କୁ ରାତ୍ରିର ଅଭିବାଦନ ଜଣାଇ ଶୋଇବାକୁ ବାହାରି ଗଲେ । ଗୁହା ଭିତରେ ଥିବା ଅନ୍ୟ ସମସ୍ତେ କାଠ ପଟା ଚମଡ଼ା ଟୁଲ୍ ଏବଂ ଟେବୁଲ ପ୍ରଭୃତ ହଟାଇ ଚୁଲୀ ପ୍ରରପଟେ ଶୋଇବା ଜାଗା ଠିକ୍ କରୁଥିଲେ । ପ୍ରିମିଟିଭୋ ଏବଂ ଆଣ୍ଡ୍ରିଜ୍ ତାଙ୍କୁ ପ୍ରତ୍ୟାଭିବାଦନ ଜଣାଇଲେ । ଆନ୍‌ସେଲ୍‌ମୋ କମ୍ବଳ ଘୋଡ଼ି ହୋଇ ଲମ୍ବ କୁରୁଡାରେ ନାକ ସୁଙ୍ଘା ଛାଙ୍କି ଶୋଇଥାଏ । ପାବ୍‌ଲୋ ଚଉକିରେ ବସି ବସି ନିଦ୍ରିତ ।

ପିଲାର ମୃଦୁ ସ୍ୱରରେ ତାଙ୍କୁ ପଚାରିଲା ଯେ ସେ ବିଛଣା କରିବାକୁ ଖଣ୍ଡେ ମେଣ୍ଢା ଚମ ନେବେ କି ? ରବର୍ଟ ଜର୍ଡ଼ାନ ତାକୁ ଧନ୍ୟବାଦ ଦେଇ ମନା କରି-ଦେଲେ । ତହୁଁ ସେ ତାଙ୍କପାଇଁ ଗାଢ଼ ନିଦ୍ରାର କାମନା କରି କହିଲା ଯେ ସେ ତାଙ୍କର ଜିନିଷ ପତ୍ର ପାଇଁ ଦାୟୀ ରହିବ । ଫର୍ଣ୍ଣାଣ୍ଡୋ ତାଙ୍କ ସଙ୍ଗରେ ବାହାରକୁ ଯାଇ ସେ ବିଛଣା ବିଛାଇଥିବା ସ୍ଥାନରେ ଠିଆ ହେଲା । କମ୍ବଳ କୁରୁଡାରେ ମୁଣ୍ଡ ମୁହଁ ଛାଙ୍କି ସେହି ଅନ୍ଧକାରରେ ଠିଆ ହୋଇ କହିଲା "ଲର୍ଡ଼ ରବର୍ଟୋ, ତୁମର ପଦାରେ ଶୋଇବା ପ୍ରଣାଳୀଟା ବଡ଼ ବିଚିତ୍ର । ତା ପିଠିରେ ବନ୍ଧୁକ ଝୁଲୁ ଥାଏ ।'

'ମୋର ଏହା ଅଭ୍ୟାସ । ନମସ୍କାର । ତୁ କେତେବେଳ ଯାଏ ପହରା ଦେବୁ ?'

'୪ଟା ଗୁଡ ଯାଏ ।'

'ମଝିରେ ମଝିରେ ବେଶ୍ ଥଣ୍ଡା ପଡୁଛି ।'

'ତା ମୋ ଦେହ ସହା ହେଇ ଅଛି ।' ଫର୍ଣ୍ଣାଣ୍ଡୋ କହିଲା ।

ଏହାପରେ ଦୁହେଁ ପରସ୍ପରକୁ ନମସ୍କାର କରି ଯେଝାସ୍ଥାନକୁ ଚାଲିଗଲେ । ସେ ନିଜ ଦେହରୁ ଫିଟାଇଥିବା ଲୁଗାପଟା ବୁଜୁଳା କରି ମୁଣ୍ଡତଳେ ଥୋଇ ବିଛଣାରେ ଶୋଇଲେ । ତଳର ଡାଲପତ୍ର ସ୍ପ୍ରିଙ୍ଗ୍ କାମ ଦେଉଥାଏ । ବିଛଣାର କୋମଳତା ଓ ଉଷ୍ମତା ଖୁବ୍ ସୁଖପ୍ରଦ ଥିଲା । ସେ ଗୁହା ମୁହଁକୁ ଆଗ୍ରହରେ ଅନାଇ ଥାଆନ୍ତି । ତାଙ୍କର ହୃତସ୍ପନ୍ଦନ ବଢ଼ି ଯାଇଥାଏ ।

ରାତି ନିର୍ମଳ ଏବଂ ତାଙ୍କର ମସ୍ତିଷ୍କ ମଧ୍ୟ ପ୍ରବାହିତ ପବନ ପରି ନିର୍ମଳ ଓ ଶୀତଳ ଥିଲା । ବିଛଣା ତଳର ଦେବଦାରୁ ଡାଲପତ୍ରର ଗନ୍ଧ ଏବଂ ଡାଳର କର୍ତ୍ତିତ ସ୍ଥାନରୁ ଝୁଣାର ଗନ୍ଧ ପାଉଥିଲେ । ପିଲାରି କହୁଥିବା ମୃତ୍ୟୁ ଗନ୍ଧ କଥା ମନେ ପକାଇଲେ । କିନ୍ତୁ ସେ ପାଉଥିଲା ପ୍ରେମର ଗନ୍ଧ । ଏହି ସଦ୍ୟ କର୍ତ୍ତିତ ଗଛର ଗନ୍ଧ, କାଠ ଧୂଆଁ, ଶରତରେ ପତ୍ର ପୋଡ଼ାର ଗନ୍ଧ ଏବଂ ପଦଦଳିତ ଘୋଡ଼ା ଘାସର ଗନ୍ଧ ପ୍ରଭୃତି ହେଉଛି ପ୍ରେମ ଗନ୍ଧ । ଶୀତକାଳରେ ପତ୍ର ଝଡ଼ିଗଲେ ତାକୁ ଗୋଲାଇ ଗଦା କରି ରାସ୍ତାରେ ନିଆଁ ଲଗାଇ ଦିଆଯାଇଥାଏ । ସେପରି ଗନ୍ଧ ସେ ମିସୌରୀଠାରେ ପାଇଥିଲେ । ଏ ଗନ୍ଧଟା ବୋଧହୁଏ ଘର ବାହୁଡ଼ିବା ଗନ୍ଧ । ତୁମକୁ କି ଗନ୍ଧ ଲୋଡ଼ା ? ଭାରତୀୟଙ୍କର ଟୋକେଇ ବୁଣା କାଇଁଚ, କି ଧୂଆଁ ଖିଆ ଚମଡ଼ା ଗନ୍ଧ, କି ବସନ୍ତକାଳୀନ ବର୍ଷା ପରେ ମାଟିର ଗନ୍ଧ, କି ଜାହାଜରେ ବସି କୂଳକୁ ଆସିଲା ବେଳେ ସ୍ଥଳଭାଗର ଗନ୍ଧ କମ୍ବା ଗାଲିସିଆର ଅନ୍ତରୀପଠାରୁ କଣ୍ଟା ବଣରେ ଗଲାବେଳେ ସମୁଦ୍ର ଗନ୍ଧ କମ୍ବା ସ୍ଥଳଭାଗରୁ ପ୍ରବାହିତ ପବନର ଗନ୍ଧ କମ୍ବା ନାଗଫେଣି, ଲାଜକୁଲୀ ବା ସମୁଦ୍ର ଅଙ୍ଗୁର ଫୁଲ ଗନ୍ଧ କମ୍ବା ମାଂସଭଜା କାଫି, ଆଡ, ଅଟାତକି କମ୍ବା ସେଁକି ସେକା ଗନ୍ଧ । ଏହିସବୁ ଗନ୍ଧରୁ କଅଣ ତୁମର ପ୍ରିୟ । ସେ ଭାବିଲେ ଯେ ସେ କ୍ଷୁଧାତୁର ତଥାପି ସେ କଡ଼େଇ ଶୋଇ ଗୁହା ଦୁଆରକୁ ଚାହିଁ ରହିଲେ । ନିର୍ମଳ ଗଗନରେ ତାରା ରଶ୍ମି ମାଟିରେ ଜମିଥିବା ତୁଷାର ଉପରେ ପ୍ରତିଫଳିତ ହେଉଥାଏ ।

ଜଣେ କିଏ ଗୁହାରୁ ବାହାରି କମ୍ବଳ ପର୍ଦା ପାଖକୁ ଆସି ଠିଆ ହେଲା । ତାପରେ ଗୋଡ଼ ଚପି ଚପି ଭିତରକୁ ଫେରିଗଲା ।

ସେ ଭାବିଲେ ସମସ୍ତେ ଶୋଇ ନ ପଡ଼ିବାଯାଏ ମେରିଆ ଆସିବ ନାହିଁ । ସମୟ ଖାଲି ଗୁଡ଼ୁଚିଟାକୁ କଟିଯାଉଛି । ରାତି ପ୍ରାୟ ଅଧାଅଧି ହୋଇ ଗଲାଣି । ମେରିଆ କେମିତି ଜଲଦି ଆସୁ ଏହି ଚିନ୍ତାରେ ସେ ବ୍ୟାକୁଳ ହୋଇ ଉଠିଲେ । ଗଛ ଡାଳରୁ ତୁଷାର ଝଡ଼ି ପଡ଼ୁଥିବା ଶବ୍ଦ ଶୁଭୁଥାଏ । ପବନର ବେଗ ସାମାନ୍ୟ ବଢ଼ିଥିବା ସେ ଜାଣି ପାରିଲେ । ହଠାତ୍ ସେ ଗ୍ଲାନିଆ ହୋଇ ଭାବିଲେ ବୋଧହୁଏ ମେରିଆ ଆସିବ ନାହିଁ । ପବନ ବେଗରୁ ସେ ବୁଝି ପାରିଲେ ରାତି ପାହିବା ଡେରି ନାହିଁ । ପବନରେ ଗଛ ହଲୁଥିବାରୁ ତୁଷାର କଣାମାନ ଖସି ପଡ଼ୁଥାଏ । ମେରିଆ କେତେବେଳେ ଆସିବ ଏହି ଚିନ୍ତାରେ ସେ ଉଦ୍‌ଗ୍ରୀବ ହୋଇଥାନ୍ତି ।

ଏହାପରେ ଶୁହାମୁହିଁ କମ୍ବଳ ପର୍ଦା ହଟାଇ ମେରିଆ ଆସିବାର ସେ ଦେଖିଲେ । ଅଳ୍ପକ୍ଷଣ ସେ ଦୁଆର ମୁହଁରେ ଠିଆ ରହିଲା । ରବର୍ଟ ଜର୍ଡାନ୍ ମୁହଁରେ କ୍ଷୀଣ ଭାବରେ ସିଟି ବଜାଇଲେ ମାତ୍ର ମେରିଆ ନ ଶୁଣି ଘର ଅନ୍ଧକାରରେ କଅଣ କରିବାକୁ ଲାଗିଲା । ପରେ ସେ ହାତରେ କିଛି ବସ୍ତୁ ଧରି ଦୌଡ଼ି ଦୌଡ଼ି ଆସି ଆଣ୍ଠେଇପଡ଼ି ତାଙ୍କ ମୁଣ୍ଡରେ ନିଜ ମୁଣ୍ଡ ଲଗାଇଲା । ସେ ନିଜ ପାଦରୁ ତୁଷାର ଝାଡ଼ି ନିଜର ବୋକଗୁଡ଼ିକ ତାଙ୍କୁ ଦେଇ ଚୁମାଖାଇ କହିଲା ଏହାକୁ ତୁମ ତକିଆ ତଳେ ରଖିଦିଅ । ସମୟ ବଞ୍ଚାଇବା ପାଇଁ ମୁଁ ଏତକ ସେଠାରେ ଫିଟାଇ ସାରିଥିଲି ।

"ତୁ ତେବେ ବରଫରେ ଖାଲି ଗୋଡ଼ରେ ଆସିଲୁ ?"

"ହଁ, କେବଳ ମାତ୍ର ଗୋଟାଏ ବାହାପାଞ୍ଚି ପିନ୍ଧିଛି ।"

ସେ ତାଙ୍କୁ ଭିଡ଼ି ଆଲିଙ୍ଗନ କଲେ । ମେରିଆ ତାଙ୍କ ଚିବୁକରେ ନିଜର ମୁଣ୍ଡ ଘସି କହିଲା "ରବର୍ଟୋ ମୋ ଗୋଡ଼ ଛୁଅଁ ନାହିଁ, ତାହା ଭାରି ଜାଳୁଆ ।"

"ତୋ ଗୋଡ଼ ଏହା ଭିତରେ ପୂରାଇ ଦେ, ଉଷୁମ ହୋଇଯିବ ।"

"ନାହିଁ, ମୋ ଗୋଡ଼ ଆପଣାଛାଏଁ ଉଷୁମ ହୋଇଯିବ । ବର୍ତ୍ତମାନ ଜଲ୍‌ଦି କହି ଦିଅ ତୁମେ ମୋତେ ଭଲ ପାଅ ।"

"ହଁ ମୁଁ ଭଲପାଏ । ବହୁତ ଭଲ ପାଏ, ତୋ ଆମା କାତୁରୀ ଏବଂ ଯାନୁ ଗୁଡ଼ିକୁ ଭଲ ପାଏ । ବର୍ତ୍ତମାନ ତୋ ଗୋଡ଼ ଭିତରେ ପୂରାଇ ଉଷୁମ କରିନେ ।"

'ନା, ସେଟା ଖରାପ ହେବ । ଗୋଡ଼ ଆପଣାଛାଏଁ ଉଷୁମ ହୋଇଯିବ । ବରଫ ଉପରେ ଚାଲି ଆସିବାରୁ ଜାଳୁଆ ହୋଇ ଯାଇଛି । ପୁଣି କହ, ମୋତେ ଭଲ ପାଅ ।'

'ମୁଁ ଭଲ ପାଏ ମୋ ଧନମଣି ।'

'ମୁଁ ତୁମକୁ ଭଲ ପାଏ । ମୁଁ ତୁମର ସ୍ତ୍ରୀ ।'

'ସେମାନେ ସମସ୍ତେ ଶୋଇଲେଣି ?'

'ନାହିଁ । କିନ୍ତୁ ମୁଁ ଆଉ ସମ୍ଭାଳି ପାରିଲି ନାହିଁ । କିଛି ଦୋଷ ହେଲାକି ?'

'ନା, କିଛି ଦୋଷ ହୋଇ ନାହିଁ ।' ସେ ମେରିଆର ଦୀର୍ଘକ୍ଷୀଣା ଓ ସୁନ୍ଦର ଶରୀରର ଉଷ୍ଣତା ଅନୁଭବ କରିବାକୁ ଲାଗିଲେ ।

ମେରିଆ କହିଲା 'ତୁମ ହାତ ମୋ ମୁଣ୍ଡରେ ରଖ, ଦେଖେ ମୁଁ ତୁମକୁ ଚୁମାଖାଇ ପାରେ କି ନା ।' ଚୁମା ଖାଇସାରି ପଚାରିଲା 'ଠିକ୍ ହେଲା ତ ?'

ସେ କହିଲେ 'ହଁ ଠିକ୍ ହେଲା । ବର୍ତ୍ତମାନ ତୋ ବାହା କାମିଜ ଫିଟାଇ ପକା ।'

'ଫିଟାଇବା ତୁମେ ଚାହୁଁଅଛ ?'

'ହଁ, ଯଦି ଜାଡ଼ ନକରିବ ତ ଫିଟା ।'

'ଜାଡ଼ ! ମୋ ଭିତରେ ନିଆଁ ଜଳୁଛି ।'

'ମୁଁ ମଧ୍ୟ । ପଛକୁ ଆଉ ଥଣ୍ଡା ଲାଗିବ ନାହିଁ ।

'ନାହିଁ । ପଛକୁ ଆମେ ବଣର ପଶୁପରି ଏକ ହୋଇଯିବୁଁ ଏବଂ ପରସ୍ପରର ଏତେ ସନ୍ନିକଟ ଥିବୁ ଯେ କେହି ବାରି ପାରିବ ନାହିଁ । ତୁମେ ଆମ ଦୁହିଙ୍କ ହୃଦୟ ଏକ ବୋଲି ବୁଝୁଛ ନା ?'

'ହଁ । ଏହା ସତ ।'

'ଏବଂ ବୁଝୁଛ ମୋ ହୃଦୟ ଛଡ଼ା ତୁମର ଭିନ୍ନ ହୃଦୟ ନାହିଁ ।

'ଗୋଡ଼ ନାହିଁ, ପାଦ ନାହିଁ କିମ୍ବା ଶରୀର ମଧ୍ୟ ନାହିଁ ।'

ମେରିଆ କହିଲା 'ଆମେ ଯେ ସ୍ୱତନ୍ତ୍ର । ମୁଁ ସେପରି ହେବାକୁ ଚାହେଁ ।'

'ତୁ ଯଥାର୍ଥରେ ଏହା ଚାହୁଁ ?"

'ହଁ ଚାହେଁ ।' ମେରିଆ ତାଙ୍କ କାନ୍ଧ ପାଖରେ ଓଠ ଲଗାଇ କହିଲା 'ବୋଧହୁଏ ନୁହେଁ । କିନ୍ତୁ ମୁଁ ଏକଥା କହିବାକୁ ଯାଉଥିଲି । ମୁଁ ମେରିଆ, ତୁମେ ହେଉଛ ରବର୍ଟୋ ଏଣୁ ଆମେ ଦୁହେଁ ସ୍ୱତନ୍ତ୍ର । ଏ କଥାରେ ମୁଁ ଆନନ୍ଦ ପାଉ ଅଛି । ଅବଶ୍ୟ

ଯଦି ତୁମେ ଏହା ବଦଳାଇବାକୁ ଇଚ୍ଛା କରିବ ମୁଁ ଆନନ୍ଦରେ ବଦଳି ଯିବି । ମୁଁ ତୁମ ଅସ୍ତିତ୍ୱରେ ନିଜକୁ ମିଶାଇ ଦେବ କାରଣ ମୁଁ ତୁମକୁ ଏତେ ଭଲ ପାଏ ।'

''ମୁଁ ବଦଳାଇବାକୁ ଚାହେଁ ନାହିଁ । ଆମର ସ୍ୱତନ୍ତ୍ର ସତ୍ତା ରହିବା ଭଲ । ସେହି ସ୍ୱତନ୍ତ୍ର ସତ୍ତାରେ ଏକତ୍ୱ ଅନୁଭବ ଭଲ ହେବ ।"

'ବର୍ତ୍ତମାନ ଆମେ ଦୁହେଁ ମିଳି ଏକ ହୋଇଯିବା । ସ୍ୱତନ୍ତ୍ର କିଛି ରହିବ ନାହିଁ । ତୁମେ ନ ଥିଲାବେଳେ ମୋ ଭିତରେ ବିରାଜିବ । ମୁଁ ତୁମକୁ ଏତେ ଭଲପାଏ ଏବଂ ତୁମର ଭଲ ରକମ ଯତ୍ନ ନେବ ।'

ରବର୍ଟ ଜର୍ଡାନ୍ ଗଭୀର ପ୍ରେମରେ ମେରିଆକୁ ସିକ୍ତାର ଭଙ୍ଗିରେ ଥରକୁ ଥର ଡାକୁଥାନ୍ତି । ମେରିଆର କଣ୍ଠରେ ଗଦ୍‌ଗଦ ଭାବ । ମେରିଆ ତାଙ୍କୁ ନିଜର ବିଛଣା ଖୋଲ କାନ୍ଧ ଉପରକୁ ଟାଣିବାକୁ କହିଲା । ଏହାପରେ ବାହାରେ ରାତିର ହିମ-ଶୀତଳତା ସତ୍ତ୍ୱେ ବି ବିଛଣା ଖୋଳର କୋମଳ ଉଷ୍ଣତା, ଭିତରେ ଦୁହେଁ ସର୍ବାଙ୍ଗର ସ୍ପର୍ଶ ସୁଖରେ ଗଭୀର ତୃପ୍ତିରେ ଯୌନ-କ୍ଷୁଧା ମିଟାଇଲେ । କିଛିକ୍ଷଣ ଏପରି କଟିଲା ପରେ ମେରିଆ କହିଲା 'ମୁଁ ଖୁବ୍ ସୁଖୀ କିନ୍ତୁ ଦ୍ୱିପ୍ରହର ବେଳପରି ନୁହେଁ ।'

'ନା ।'

"ମୋତେ ସେତେବେଳେ ବେଶୀ ଭଲ ଲାଗିଥିଲା । ଜଣକର ମରିବା ଦରକାର ନାହିଁ ।"

"ମୋର ମଧ୍ୟ ସେହି ଆଶା ।"

"ମୁଁ ସେ ଉଦ୍ଦେଶ୍ୟରେ କହି ନାହିଁ ।" ମେରିଆ କହିଲା ।

"ମୁଁ ଜାଣେ । ତୋର ଉଦ୍ଦେଶ୍ୟ ଜାଣେ । ଦୁହିଁଙ୍କର ଏକା ଉଦ୍ଦେଶ୍ୟ ।"

"ତେବେ କାହିଁକି ମୋ ଉଦ୍ଦେଶ୍ୟରେ ଏକମତ ନ ହେଲ ?"

"ପୁରୁଷ ପକ୍ଷରେ କିଛି ପାର୍ଥକ୍ୟ ରହିବା ସ୍ୱାଭାବିକ ।"

'ତେବେ ତ ଆମେ ଅଭିନ୍ନ ।'

"ମୋର ମଧ୍ୟ ସେହି କଥା । ମୁଁ ମରିବା କଥା ବୁଝିଥିଲି ବୋଲି ପୁରୁଷର କହିବା କଥା କହିଥିଲି । ଏହା ଅଭ୍ୟାସବଶତଃ ହୋଇଥିଲା ନଚେତ୍ ତୋ ଛଡ଼ା ସହିତ ମୋର କୌଣସି ପାର୍ଥକ୍ୟ ନାହିଁ ।"

'ତୁମେ ଯାହା ହୁଅ ବା ଯାହା କୁହ, ମୁଁ ତୁମକୁ ସେଇଆ ହେବାକୁ ଚାହିବ ।'

'ମୁଁ ତୋତେ ି ତେ ନାମକୁ ଭଲ ପାଏ ।'

"ନା ତାହା ସାଧାରଣ ନାମ ।"

"ନା, ସାଧାରଣ ନୁହେଁ ।" ଜର୍ଡାନ୍ କହିଲେ ।

"ଆସ ବର୍ତ୍ତମାନ ଶୋଇବା ।" ଏହାପରେ ଦୁହେଁ ସୁସୁପ୍ତି କୋଳରେ ନିଜକୁ ଢାଳିଦେଲେ । କିନ୍ତୁ ସକାଳ ସାତରେ ଜର୍ଡାନଙ୍କ ନିଦ ଭାଙ୍ଗିଗଲା । ସେ ମେରିଆକୁ କୁଣ୍ଢାଇ ଧରିଲେ ସତେ ଯେପରି କିଏ ତାଙ୍କଠାରୁ ଛଡ଼ାଇ ନେଉଅଛି, କିନ୍ତୁ ମେରିଆର ନିଦ ଭାଙ୍ଗିଲା ନାହିଁ । ସେ ତାକୁ ଗୋଟିଏ ପାଖକୁ ଗଡ଼ାଇ ଘୋଡ଼ାଇ ଦେଇ ଚାଦର ଭିତରେ ମୁହଁ ପୂରାଇ ଚୁମ୍ବା ଖାଇଲେ, ପରେ ପିସ୍ତଲର ଦଉଡ଼ି ଧରି ହାତ ପାଖରେ ପିସ୍ତଲ ରଖି ରାତକଥା ଭାବି ଭାବି ଶୋଇ ପଡ଼ିଲେ ।

## ଏକବିଂଶ ପରିଚ୍ଛେଦ

ସକାଳ ବେଳକୁ ଉଷ୍ମ ବାୟୁ ବହିଲାରୁ ଗଛରେ ଜମିଥିବା ବରଫ ତରଳି ଧପ୍ ଧପ୍ କରି ତଳେ ପଡ଼ିବାକୁ ଲାଗିଲା। ବସନ୍ତ ଶେଷ ଆଡ଼ର ସକାଳ। ପ୍ରଥମ ନିଶ୍ୱାସ ନେଇ ସେ ବୁଝି ପାରିଲେ ଯେ ତୁଷାରପାତ ହେଉଛି ଏକ ଅସ୍ୱାଭାବିକ, ପାର୍ବତ୍ୟ ଝଡ଼ ଏବଂ ଦ୍ୱିପ୍ରହର ବେଳକୁ ଥମିଯିବ। ଏହାପରେ ଜଣେ ଅଶ୍ୱାରୋହୀ ଆସୁଥିବାର ଶବ୍ଦ ଶୁଣିଲେ। ଘୋଡ଼ାର ଟାପୁ ଭିଜା ବରଫ ଉପରେ ଠକ୍ ଠକ୍ ହୋଇ ଆବାଜ କରୁଥାଏ। ଲୋକଟାର ବନ୍ଧୁକଟା ମଧ୍ୟ ଝୁଲି ଝୁଲି ପଟ୍ ପଟ୍ ଆବାଜ କରୁଥାଏ।

ସେ ମେରିଆକୁ ଜଣାଇବା ପାଇଁ ତା କାନ୍ଧ ଧରି ହଲାଇ କହିଲେ 'ମେରିଆ, ତୁ ଶେଜ ଭିତରେ ରହିଥା।' ସେ ଗୋଟିଏ ହାତରେ ସ୍ୱୟଂକ୍ରିୟ ପିସ୍ତଲ ଧରି ଅନ୍ୟ ହାତରେ କାମିଜ ବୋତାମ ଲଗାଇଲେ। ମେରିଆ ବିଛଣା ଖୋଳରେ ନିଜ ମୁଣ୍ଡ ଲୁଚାଇ ନେଲା। ଅଶ୍ୱାରୋହୀ ବଣ ଭିତରୁ ବାହାରି ଆସିଲା। ଜର୍ଡାନ୍ ନିଜେ ବିଛଣା ଭିତରେ ପଶିଯାଇ ଦୁଇ ହାତରେ ପିସ୍ତଲ ଉଠାଇ ଲୋକ ପ୍ରତି ଲକ୍ଷ୍ୟକରି ରହିଲେ। ସେ ଲୋକକୁ ସେ ପୂର୍ବରୁ ଦେଖି ନଥିଲେ।

ଅଶ୍ୱାରୋହୀ ତାଙ୍କ ସମ୍ମୁଖକୁ ଆସିଗଲା। ସେ ଧୂସର ରଙ୍ଗର ଗୋଟିଏ ଖାସୁ ଘୋଡ଼ା ଚଢ଼ିଥିଲେ। ଖାକି ପାଇଜାମା ଉପରେ ଖଣ୍ଡିଏ କମ୍ବଳର ଘଟାଟୋପ ମୁଣ୍ଡରେ ଗଳାଇ ଥିଲେ ଏବଂ ଓଜନଦାର କଳା ବୁଟ୍ ଜୋତା ଗୋଡ଼ରେ ପିନ୍ଧିଥିଲେ। ଘୋଡ଼ା ଜିନର ଡାହାଣ ପଟ ଖୋଳ ଭିତରୁ ତାଙ୍କର ଲମ୍ବା ବନ୍ଧୁକ ଖଣ୍ଡି ଝୁଲୁ-

ଥାଏ । ଲୋକଟି ଯୁବକ ଏବଂ ବଳିଷ୍ଠ । ବର୍ତ୍ତମାନ ସେ ରବର୍ଟ ଜର୍ଡ଼ାନ୍‌ଙ୍କୁ ଦେଖି ପାରିଲା ।

ସେ ଖୋଳ ଭିତରୁ ଟିଙ୍କି ବନ୍ଧୁକ କାଢ଼ିବାକୁ ମୁହଁ ବୁଲାନ୍ତେ ସେ କମ୍ବଳ ଘଣ୍ଟାଘୋଡ଼ ତଳେ ବାମ ଗୁଡ଼ରେ ଖଣ୍ଡିଏ ଲାଲରଙ୍ଗର ହୁଦା ପିନ୍ଧିଥିବାର ଜର୍ଡ଼ାନ୍ ଦେଖିପାରିଲେ । ରବର୍ଟ ଜର୍ଡ଼ାନ୍ ଏହି ହୁଦାର ଅଳ୍ପ ତଳକୁ ତା ଗୁଡ଼କୁ ଲକ୍ଷ୍ୟକରି ଗୁଳି ଫୁଟାଇଲେ ! ବରଫାବୃତ ବଣ ଭିତରେ ପିସ୍ତଲର ଭୀଷଣ ଶବ୍ଦ ପ୍ରତିଧ୍ୱନିତ ହୋଇ ଉଠିଲା ।

ଘୋଡ଼ାଟି ମାଡ଼ ଖାଇଲା ପରି ଡୋଳ୍ଡ଼ା ଆଗକୁ ମୁହାଁଇଲା ଏବଂ ଯୁବକ ଅଶ୍ୱାରୋହୀ ବନ୍ଧୁକ ଖୋଳ ହାତରେ ଧରି ଜମି ଉପରକୁ ଖସି ପଡ଼ିଲେ । ତାଙ୍କର ଡାହାଣ ଗୋଡ଼ ରେକାବ ଉପରେ ଅଟକି ଗଲା । ଘୋଡ଼ା ବଣ ଭିତରେ ଦୌଡ଼ ପକାଇଲା ଏବଂ ତାଙ୍କୁ ଘୋସାରି ନେଇଗଲା । ତାଙ୍କ ମୁହଁ ମାଟିରେ ଘୋସାରି ହୋଇ ଠୋକର ଖାଉଥାଏ । ରବର୍ଟ ଜର୍ଡ଼ାନ୍ ଗୋଟିଏ ହାତରେ ପିସ୍ତଲ ଧରି ଠିଆହେଲେ ।

ସେହି ବଡ଼ ଧୂସରିଆ ଘୋଡ଼ାଟି ଦେବଦାରୁ ବଣ ଭିତରେ ପୂରା ବେଗରେ ଛୁଟିଥାଏ । ବରଫ ଉପରେ ଲୋକଟାର ଘୋସରା ଚିହ୍ନ ଚଉଡ଼ା ଭାବରେ ପଡ଼ିଥାଏ ଏବଂ ତାହା ରକ୍ତବର୍ଣ୍ଣ ଦିଶୁଥାଏ । ଗୁହା ଭିତରୁ ଲୋକମାନେ ବାହାରି ଆସିବା ଦେଖି ରବର୍ଟ ଜର୍ଡ଼ାନ୍ ଆପଣାର ପାଇଜାମା, ଚକଆରୁ ଫିଟାଇ ପିନ୍ଧିନେଲେ ଏବଂ ମେରିଆକୁ ଲୁଗା ପିନ୍ଧିବାକୁ କହିଲେ ।

ମୁଣ୍ଡ ଉପରେ ବହୁ ଉର୍ଦ୍ଧ୍ୱରେ ଖଣ୍ଡିଏ ଉଡ଼ାଜାହାଜ ଯାଉଥିବା ଆବାଜ ଶୁଭିଲା । ଗଛ ଫାଙ୍କରେ ସେ ଘୋଡ଼ାଟା ଗୋଟାଏ ଜାଗାରେ ଠିଆହୋଇ ରହିଥିବା ଦେଖିଲେ । ଅଶ୍ୱାରୋହୀ ସେତେବେଳେ ମଧ୍ୟ ରେକାବରୁ ତଳକୁ ମୁହଁକରି ଝୁଲୁ ରହିଥାଏ । ପ୍ରିମିଟିଭୋ ତାଙ୍କ ଆଡ଼କୁ ଆସିବାର ଦେଖି କହିଲେ 'ଯା, ସେ ଘୋଡ଼ାକୁ ଧର । ମୁଣ୍ଡିଆ ଉପରେ କିଏ ପହରା ଦେଉଥିଲା ?'

ଗୁହା ଭିତରୁ ପିଲାର୍ ଜବାବ ଦେଲା 'ରାଫେଲ' । ସେ ସେହିଠାରେ ଠିଆ ହୋଇ ରହିଥାଏ ଏବଂ ପିଠିପଟେ ଦୁଇଟା ବେଣୀ ଝୁଲାଇଥାଏ ।

ରବର୍ଟ ଜର୍ଡ଼ାନ୍ କହିଲେ ଅଶ୍ୱାରୋହୀ ଦଳ ବାହାରି ଅଛନ୍ତି । ଶୀଘ୍ର ତୁମର ତୋପ ସେଠାକୁ ନେଇଯାଅ ।' ପିଲାର୍ ଗୁହା ଭିତରେ ଥିବା ଅଗଷ୍ଟିନ୍‌କୁ ଡାକିଲା । ତାପରେ ନିଜେ ଭିତରକୁ ଗୁଲିଗଲା ଏବଂ ସାଙ୍ଗେ ସାଙ୍ଗେ ଦୁଇଜଣ ଲୋକ ଦଉଡ଼ି

ଆସିଲେ । ଜଣକ କାନ୍ଧରେ ୍ପ୍ରିଙ୍ଗ୍‌ଫିଲ୍ଡ ରାଇଫଲ୍ ଏବଂ ଢିପଦ ଝୁଲୁଥାଏ ଅନ୍ୟଜଣେ ଧରିଥାଏ ଏକ ବସ୍ତା ଗୁଳି ।

ରବର୍ଟ ଜର୍ଡ଼ାନ୍ ଅନ୍‌ସେଲ୍‌ମୋକୁ କହିଲେ "ତୁ ମଧ୍ୟ ତାଙ୍କ ସାଙ୍ଗରେ ଯା । ବନ୍ଧୁକ ତଳେ ଶୋଇପଡ଼ି ଢିପଦର ଗୋଡ଼ ମଜବୁତ୍ କରି ଧରି ରଖିବୁ ।" ଏହା ଶୁଣି ତିନିହେଁ ଘୋଡ଼ା ଖୁରା ଦେଖି ଦେଖି ଧାଇଁଲେ ।

ସୂର୍ଯ୍ୟ ସେତେବେଳଯାଏ ପାହାଡ଼ ଉପରକୁ ଉଠି ନଥାଏ । ରବର୍ଟ ଜର୍ଡ଼ାନ୍ ଠିଆହୋଇ ପାଇଜାମା ବୋତାମ ଲଗାଇ କମରପଟି ଭିଡ଼ିଲେ । ବଡ଼ ପିସ୍ତଲଟା ଦଉଡ଼ି ଦ୍ୱାରା ତାଙ୍କ ମଣିବନ୍ଧରେ ଝୁଲୁଥାଏ । ସେ ପିସ୍ତଲଟାକୁ କମରପଟିରେ ଥିବା ଖୋପରେ ପୂରାଇଲେ ଏବଂ ଦଉଡ଼ିର ଫାଶ ମୁଣ୍ଡ ଭିତରେ ଗଳାଇ ଦେଲେ । ଭାବିଲେ ହୁଏତ ଦିନେ କେହି ଏହି ଦଉଡ଼ି ଫାଶ ତାଙ୍କର ଗଳାରେ କସିଦେଇ ମାରିବ । ଏହାପରେ ପିସ୍ତଲକୁ ଗୁହାଁ କହିଲେ ଆଜିକା କାମ ଇସ୍ତେ କରିଅଛୁ । ସେ ପିସ୍ତଲ୍ ଗୁପୁ ଆଣି ଫିଟାଇ ଗୋଟିଏ କାର୍‌ତୋସ୍ ପୂରାଇ ପୁଣି ଗୁପୁଆଣି ଆଣ୍ଠି-ଦେଲେ । କାରତୋସ୍‌ମାନ ପିସ୍ତଲ ଖୋଲ ସହିତ ସଂଯୁକ୍ତ ଗୁଳି ଖୋପରେ ଥାଏ ।

ବଣ ଭିତରକୁ ଅନାଇ ଦେଖିଲେ ଯେ ପ୍ରିମିଟିଭୋ ଘୋଡ଼ାର ଲଗାମ ଧରି ଅଶ୍ୱାରୋହୀର ଗୋଡ଼ ପାଉଁଦାନିରୁ ମୋଡ଼ି କାଢ଼ିଲା । ମୁର୍ଦ୍ଦାରଟା ମୁହଁ ମାଡ଼ି ତୁଷାର ଉପରେ ପଡ଼ିଗଲା, ଏବଂ ପ୍ରିମିଟିଭୋ ତାହାର ପକେଟରେ ହାତ ପୂରାଇ ଖୋଜିବାକୁ ଲାଗିଲା । ସେ ଘୋଡ଼ାକୁ ନେଇ ଆସିବା ପାଇଁ ତାକୁ ଡାକିଲେ । ଆଣ୍ଠେଇପଡ଼ି ନିଜର ଦଉଡ଼ିତଳା ଜୋତା ପିନ୍ଧିଲାବେଳେ ମେଣ୍ଢିଆ ଦେହ ତାଙ୍କ ଆଣ୍ଠୁରେ ବାଜିଲା । ସେ ନଇଁପଡ଼ି ନିଜର ଲୁଗାପଟା ପିନ୍ଧୁଥାଏ । ବର୍ତ୍ତମାନ ତା କଥା ତାଙ୍କ ମନରୁ ଲିଭି ଯାଇଥିଲା । ସେ ଭାବିଲେ ଅଶ୍ୱାରୋହୀ ଜଣକ କିଛି ଭାବ ଚିନ୍ତା କିମ୍ବା କିଛି ଅନ୍ୱେଷଣ କରିବା ଉଦ୍ଦେଶ୍ୟରେ ପଦ ଚିହ୍ନ ଅନୁସରି ଏଠାକୁ ଆସିନଥିଲା । ସେ ପୂର୍ବରୁ ସତର୍କିତ କିମ୍ବା ଆତଙ୍କିତ ମଧ୍ୟ ହୋଇ ନଥିଲା । ସେ ଏଠା ଘାଟି ଉଦ୍ଦେଶ୍ୟରେ ମଧ୍ୟ ଆସି ନ ଥିଲା । ପାହାଡ଼ରେ ବିକ୍ଷିପ୍ତ ଭାବରେ ବୁଲୁଥିବା ଟହଲଦାରମାନଙ୍କ ଭିତରୁ ସେ ଜଣେ । ଜଗୁଆଳୀ ଯେତେବେଳେ ଏହାକୁ ଫେରିବାର ନ ଦେଖିବ ସେତେବେଳେ ଅନ୍ୟମାନେ ଘୋଡ଼ାଖୁରା ଅନୁସରଣ କରି ତାକୁ ଖୋଜିବାକୁ ଆସିବେ । ଯଦି ତାଙ୍କ ଆସିବା ପୂର୍ବରୁ ବରଫ ତରଳିଯାଏ କିମ୍ବା ଜଗୁଆଳୀର କିଛି ଘଟିଯାଏ ତେବେ ଭିନ୍ନ କଥା ।

ସେ ପାବ୍‌ଲୋକୁ କହିଲେ 'ତୁ ବରଂ ତଳକୁ ଯା ।'

ବର୍ତ୍ତିମାନ ସମସ୍ତେ ଗୁହାରୁ ବାହାର ପଡ଼ିଥିଲେ । ସମସ୍ତଙ୍କ ହାତରେ ବନ୍ଧୁକ ଏବଂ କମରପଟିରେ ଗୁଳି ଓ ହାତବୋମା । ପିଲାର୍ ଗୋଟିଏ ଚମଡ଼ା ବେଗ୍ ରବର୍ଟ ଜର୍ଡ଼ାନ୍‌ଙ୍କୁ ବଢ଼ାଇ ଦେଲାରୁ ସେ ୩ଗୋଟି ହାତବୋମା କାଢ଼ି ନେଇ ନିଜ ପକେଟରେ ପୁରାଇଲେ । ଗୁହା ଭିତରକୁ ପଶିଯାଇ ସେ ନିଜର ବସ୍ତା ଦୁଇଟି ଦେଖିଲେ । ଯେଉଁ ବସ୍ତାରେ ସାନ ମେସିନଗନ୍ ଥିଲା ତାକୁ ଫିଟାଇ ନଳୀ ଏବଂ ବନ୍ଧୁକର ଅନ୍ୟ ଅଂଶ ବାହାରକୁ ଆଣି ଖଞ୍ଜି ପକାଇଲେ ଏବଂ ଗୋଟିଏ ଗୁଳି ବନ୍ଧୁକରେ ଏବଂ ୩ଗୋଟି ପକେଟରେ ରଖିଲେ । ଏହାପରେ ବସ୍ତା ବନ୍ଦକରି ସେ ପଦାକୁ ମୁହାଁଇଲେ । ମନେ ମନେ ଭାବିଲେ ଯେ ତାଙ୍କର ଦୁଇଟିଯାକ ପକେଟରେ ଟାଣୁଆ ଜିନିଷ ଭରି ରହିଅଛି । ନଳୀ ଯୋଡ଼ିବା ଠିକ୍ ହୋଇଥିବ ବୋଲି ଆଶା କରି ସେ ପଦାକୁ ଆସି ପାବ୍‌ଲୋକୁ କହିଲେ "ମୁଁ ଉପରକୁ ଯାଉଛି । ଅଗଷ୍ଟିନ୍ ସେ ତୋପ ଫାୟାର୍ କରିପାରିବ ତ ?"

ପ୍ରିମିଟିଭୋ ଘୋଡ଼ାକୁ ଧରି ଆସୁଥିବା ପାବ୍‌ଲୋ ଗୁହାଁଥିଲା । କହିଲା'ହଁ ପାରିବ । 'ଦେଖିଲ କି ଚମତ୍କାର ଘୋଡ଼ା ।'

ବଡ଼ ଧୂସରିଆ ଘୋଡ଼ାଟି ଝାଳରେ ଜଡ଼ସଡ଼ ହୋଇ ଉଠିଥାଏ ଏବଂ ଅଳ୍ପ ଅଳ୍ପ ଥରୁଥାଏ ଦେଖି ରବର୍ଟ ଜର୍ଡାନ ତା କାନ୍ଧ ଆଉଁସି ଦେଲେ ।

ପାବ୍‌ଲୋ କହିଲା "ମୁଁ ଏହାକୁ ଅନ୍ୟମାନଙ୍କ ସଙ୍ଗରେ ରଖିବି ।"

ରବର୍ଟ ଜର୍ଡାନ କହିଲେ "ନା ସେପରି କରିବାର ନୁହେଁ । ଏହି ଘୋଡ଼ାଟାପୁର ଚିହ୍ନ ପଡ଼ିଅଛି । ସେ ଚିହ୍ନ ତାହାରି ଦ୍ୱାରା ଲୁଚାଇବାକୁ ହେବ ।"

ପାବ୍‌ଲୋ କହିଲା "ହଁ, ସତ କଥା । ମୁଁ ତେବେ ତା ଉପରେ ବସି ତାକୁ ନେଇ ଲୁଚାଇ ଦେବି । ବରଫ ତରଳି ଗଲାପରେ ଆଣିବି । ଇଂରେଜ, ଆଜି ତୁମ ବୁଦ୍ଧି ଭାରି ପ୍ରଖର ଦେଖୁଛି ।"

ରବର୍ଟ ଜର୍ଡାନ୍ କହିଲେ "ଜଣେ ତାହାକୁ ତଳକୁ ନିଅ । ଆମ୍ଭମାନଙ୍କୁ ଉପରକୁ ଯିବାକୁ ହେବ ।"

ପାବ୍‌ଲୋ କହିଲା "ତହିଁର ଦରକାର ନାହିଁ । ଘୋଡ଼ସବାର୍ ସେବାଟେ ଆସି ପାରିବେ ନାହିଁ । ଆମ୍ଭେମାନେ ବାହାରି ଯାଇପାରୁ ସେବାଟେ କିମ୍ବା ଅନ୍ୟ ଦୁଇବାଟ ଦେଇ । ଯଦି ଉଡ଼ାଜାହାଜ ଆସୁଛି ତେବେ କୌଣସି ପାଦ ଚିହ୍ନ ନ ରଖିବା ଭଲ ହେବ । ପିଲାର୍, ମୋତେ ମଦ ବୋତଲଟା ଦେ ତ ।"

ପିଲାର୍ କହିଲା "କଅଣ, ପୁଣି ଯାଇ ମଦ ପିଇବୁ ? ହଉ, ତା ବଦଳରେ ଏହାକୁ ନେ ।" ଏହା କହି ତା ପକେଟରେ ଦୁଇଟା ହାତବୋମା ପୂରାଇ ଦେଲା ।

ପାବ୍ଲୋ କହିଲା 'ନା, ମୁଁ ମାତାଲ ହେବ ନାହିଁ । ଅବସ୍ଥାର ଗୁରୁତ୍ୱ ମୁଁ ବୁଝେ । ମୋତେ ବୋତଲଟା ଦେ । ଏସବୁ କାମ ପାଣି ପିଇ ମୁଁ କରିପାରିବ ନାହିଁ ।'

ସେ ହାତ ଉଠାଇ ଲଗାମ ଧରି କୁଦାମାରି ଜିନ୍ ଉପରେ ବସିଲା । ସେ ସେହି ଗୁନିଆ ଘୋଡ଼ାକୁ ଆଉଁସିଲା । ରବର୍ଟ ଜର୍ଡାନ୍ ଦେଖିଲେ ଯେ ସେ ସ୍ନେହର ସହିତ ଘୋଡ଼ା କଙ୍କାଳରେ ନିଜର ଗୋଡ଼ ଘସିଲା । ସାବାସ, ଖୁବ୍ ଭଲ, ପ୍ରଭୃତି ପ୍ରଶଂସାର କଥା ଘୋଡ଼ାକୁ ଶୁଣାଇ ପୁଣି ତାକୁ ଆପୁଡ଼େଇ କହିଲେ ଚାଲିଲୁ । ଏଠାରୁ ଯେତେ ଜଲଦି ଯିବା ସେତେ ଭଲ । ଏହାପରେ ସେ ନଈପଡ଼ା ଘୋଡ଼ା ରେକାବ୍‌ରୁ ସେହି ସ୍ୱୟଂକ୍ରିୟ ଦନ୍ତୁରିତ ନଳୀ ବିଶିଷ୍ଟ ସାନ ମେସିନ୍‌ଗନ୍‌ଟି ବାହାର କଲା । ଯେଥିରେ ୯ମିଲିମିଟର ପିସ୍ତଲ ଗୁଳି ଫାଏର ହେବାର ବ୍ୟବସ୍ଥା ଥାଏ । ତାହା ଦେଖି ପାବ୍‌ଲୋ କହିଲା 'ଦେଖିଲଣି, ଆଧୁନିକ ଅଶ୍ୱାରୋହୀଙ୍କ ହତିଆର କିପରି ହେଲାଣି ?'

ରବର୍ଟ ଜର୍ଡାନ୍ କହିଲେ 'ତୋ ଆଧୁନିକ ଅଶ୍ୱାରୋହୀ ସେଇଠି ମାଟି କାମୋଡ଼ି ପଡ଼ିଛି ।'

ଏହାପରେ ସେ ଆନ୍ସ୍ଲେମୋକୁ କହିଲେ 'ତୁ ଘୋଡ଼ାରେ ଜିନ୍ ଆଦି ବାନ୍ଧି ପ୍ରସ୍ତୁତ ହୋଇଥା । ଯଦି ପୁଲ ଗୁଳିବା ଆବାଜ ଶୁଣିବୁ ତେବେ ବଣ ଭିତରେ ଫାଙ୍କ ଜାଗାକୁ ନେଇ ଆସିବୁ । ତୋ ହାତ ହତିଆର ନେଇ ଆସିବୁ, ସ୍ତ୍ରୀଲୋକମାନଙ୍କ ଜିମା ଘୋଡ଼ା ଦେଇ ଆସିବୁ । ଫର୍ଣ୍ଣାଣ୍ଡୋ, ତୁ ମୋର ବସ୍ତା ଅଣାଇବୁ । ଖୁବ୍ ସାବଧାନରେ ଅଣାଇବୁ ।' ପିଲାର୍‌କୁ କହିଲେ "ତୁ ମଧ୍ୟ ମୋ ବସ୍ତା ଉପରେ ନଜର ରଖିଥିବୁ । ଆଉ ଗଣି ଦେଖିବୁ ଯେପରି ସମସ୍ତେ ଘୋଡ଼ା ନେଇ ଆସିବେ । ଏବେ ଚାଲ ଯିବା ।'

ପିଲାର୍ କହିଲା 'ମେରିଆ ଓ ମୁଁ ଦୁହେଁ ଯିବା ପାଇଁ ସବୁ ବନ୍ଦୋବସ୍ତ କରିବା ।' ଏହାପରେ ଧୂସର ଘୋଡ଼ା ଉପରେ ବସିଥିବା ପାବ୍‌ଲୋକୁ ଦେଖାଇ କହିଲା ଦେଖ, ଗୋଠମାଲିକ ପରି ସେ କିପରି ଜଙ୍ଘ ମାଡ଼ି ବସିଅଛି ।' ପାବ୍‌ଲୋ ସ୍ୱୟଂକ୍ରିୟ ରାଇଫଲ୍‌ରେ ଗୃପୁଆଣି ଲଗାଇବାରୁ ଘୋଡ଼ା ନାକ ବାହାରିଣ କଲା ଦେଖି ପିଲାର କହିଲା 'ଦେଖ ଘୋଡ଼ା କଅଣ କଲାଣି ।'

ରବର୍ଟ ଜର୍ଡାନ୍ ଆଗ୍ରହରେ କହିଲେ 'ମୋର ଦୁଇଟା ଘୋଡ଼ା ଦରକାର ।'

'ତୁମ ଘୋଡ଼ା ବିପଦଜନକ ।'

ତେବେ ମୋତେ ଗୋଟିଏ ଖବର ଦଅ । ଏହାପରେ ମୃତ ଲୋକଟାଙ୍କୁ ଦେଖାଇ କହିଲେ ତା ଲୁଗାପଟା ଫିଟାଇ ତଲାସ କର କାଗଜପତ୍ର ଚିଠି ଯାହା ପାଇବ ସବୁ ମୋ ବସ୍ତାରେ ବାନ୍ଧିଦିଅ, ବୁଝିଲ ?' ପିଲାର୍ ହଁ ବୋଲି କହିବାରୁ ଜର୍ଡ଼ାନ୍ କହିଲେ ଭଲ କଥା । ପାବ୍‌ଲୋ ପହିଲେ ଘୋଡ଼ା ଚଲାଇଲା, ତା ପଛକୁ ଜଣକ ପରେ ଜଣେ ହୋଇ ଅନ୍ୟ ଦୁଇଜଣ ଗଲେ । ଉଦ୍ଦେଶ୍ୟ ହେଲା ବରଫରେ ଯେପରି ବେଶୀ ଦାଗ ନପଡ଼େ । ସାନ ମେସିନଗନ୍‌ର ମୁହଁ ତଳକୁ କରି ରବର୍ଟ ଜର୍ଡ଼ାନ୍ ନେଉଥିଲେ । ସେ ତାକୁ ଆଖପାଖ ମୁଠାରୁ ଧରିଥାନ୍ତି । ସେ ଭାବିଲେ ଏଥିରେ ସେହି ରାଇଫଲ୍‌ର ଗୁଳି ଫୁଟାଇ ହୁଅନ୍ତା କି । ନା ହେବ ନାହିଁ । ଏହା ଜର୍ମାନୀ ପ୍ରସ୍ତୁତ ତୋପ ଆଉ ସେଟା ହେଲା ବୁଢ଼ା କାସ୍କିନଙ୍କର ବନ୍ଧୁକ ।

ସୂର୍ଯ୍ୟ ପାହାଡ଼ ଉପରକୁ ଉଠିଆନ୍ତି । ଗରମ ପବନ ବହୁଥାଏ ଏବଂ ବରଫ ତରଳି ଯାଉଥାଏ । ବସନ୍ତ ଶେଷର ଏକ ଚମତ୍କାର ପ୍ରଭାତ ।

ରବର୍ଟ ଜର୍ଡ଼ାନ୍ ପଛକୁ ବୁଲି ଦେଖିଲେ ମେରିଆ ପିଲାର୍ ପାଖରେ ଠିଆ ହୋଇଅଛି । ତତ୍ପରେ ସେ ତାହା ଦେଖି ଧାଇଁ ଆସିଲା । ଜର୍ଡ଼ାନ୍ ତା ସଙ୍ଗେ କଥା କହିବାକୁ ଟିକେ ପଛେଇ ଗଲେ ।

ମେରିଆ ପଚାରିଲା 'ଶୁଣୁଛ, ମୁଁ ତୁମ ସଙ୍ଗେ ଯାଇପାରିବି କି ?'

"ନାହିଁ । ଏଠି ରହି ପିଲାର୍‌କୁ ସାହାଯ୍ୟ କରିବୁ ।'

ମେରିଆ ତାଙ୍କ ପଛେ ପଛେ ବୁଲି ତାଙ୍କ ବାହୁରେ ହାତ ରଖି କହିଲା 'ମୁଁ ଯିବି ।'

ରବର୍ଟ ଜର୍ଡ଼ାନ୍ ମନାକଲେ । ତଥାପି ସେ ପଛେ ପଛେ ବୁଲି କହିଲା "ଆନ୍‌ସେଲ୍‌ମୋକୁ ଯେମିତି ବତାଇଅଛ ମୁଁ ସେମିତି ଲଞ୍ଜି ପଦ ଧରି ରଖିବି ।"

"ନା, ତୋତେ ଗୋଡ଼ କି ଗଣ୍ଡି କିଛୁ ଧରିବାକୁ ହେବ ନାହିଁ ।' ସେ ତାଙ୍କ କଡ଼େ କଡ଼େ ବୁଲୁବୁଲୁ ତାଙ୍କ ପକେଟରେ ହାତ ପୂରାଇଲା । ଜର୍ଡ଼ାନ ପୁଣି ବାରଣ କରି କହିଲେ 'ଯା, ତୋ ବାହା କାମିଜର ଭଲ ଯତ୍ନନେ ।'

ମେରିଆ କହିଲା "ଯଦି ଯିବି, ତେବେ ଚୁମାଖାଇ ଯାଅ ।"

ସେ କହିଲେ "ତୋର କଅଣ ଲାଜ ନାହିଁ ?"

ମେରିଆ କହିଲା 'ବିଲକୁଲ୍ ନାହିଁ ।'

'ହଉ ଫେରଯା । ବହୁତ କାମ କରିବାର ଅଛି । ସେମାନେ ଘୋଡ଼ାଟାକୁ ଦେଖି ଆସିଲେ ଆମକୁ ଏଇଠାରେ ଯୁଦ୍ଧ କରିବାକୁ ପଡ଼ିବ ।'

ମେରିଆ କହିଲା 'ତୁମେ ଦେଖିଛ ତ, ତା ଗୁଣ୍ଡିରେ କ ହୁଦା ଥିଲା ?'

'ହଁ ଦେଖିଛି ।'

'ହୁଦାଟା ହେଉଛି ପବିତ୍ର ହୃଦୟର ପ୍ରତୀକ ।'

"ହଁ, ନାଭାଠାରେ ସମସ୍ତେ ଏ ଚିହ୍ନ ଧାରଣ କରନ୍ତି ।"

'ଆଉ ତୁମେ ସେଥିପାଇଁ ତାକୁ ଗୁଳି କଲ ?'

ନା, ତା ତଳକୁ ମୋ ଲକ୍ଷ୍ୟଥିଲା ।'

ସେ କହିଲା 'ନା ମୁଁ ସବୁ ଦେଖିଛି ।'

'ତୁ କିଛି ଦେଖିନାହୁ, ଖାଲି ଗୋଟାଏ ଲୋକ ଦେଖିଛୁ । ହଉ ଫେରଯା ।'

"ତେବେ କୁହ ତୁମେ ମୋତେ ଭଲପାଅ ?"

"ନା, ବର୍ତ୍ତମାନ ନୁହେ ।"

"ବର୍ତ୍ତମାନ ଭଲ ପାଅନାହିଁ ?"

"ତୁ ବର୍ତ୍ତମାନ ଫେରିଲୁ । ଅନ୍ୟ ବହୁ କାମ ଭିତରେ ପ୍ରେମ କରିବା ସମ୍ଭବ ନୁହେ ।"

"ମୁଁ ଯାଇ ନି ପଦ ଧରିବ ଏବଂ ତୋପ ଗୁଳିଲଦେଲେ ପ୍ରେମ କରେ ବୋଲି କହିବ ।"

"ତୁ କଅଣ ପାଗଲ ହେଲୁ ? ଯା ଫେରଯା ।"

"ମୁଁ ପାଗଲ ନୁହେ, ମୁଁ ତୁମକୁ ପ୍ରେମ କରେ ।"

"ତେବେ ଫେରଯା ।"

'ହଉ ତେବେ ଯାଉଛି । ତୁମେ ମୋତେ ଭଲ ନପାଇଲେ ମଧ୍ୟ ମୁଁ ଦୁଇଗୁଣ ଭଲ ପାଇବ ।'

ରବର୍ଟ ଜର୍ଡାନ୍ ନିଜ ଚିନ୍ତା ଭିତରେ ଥାଇ ମଧ୍ୟ ହସି ପକାଇଲେ । କହିଲେ "ତୁ ଯେତେବେଳେ ବନ୍ଧୁକ ଆବାଜ ଶୁଣିବୁ ସେତେବେଳେ ଘୋଡ଼ା ସବୁ ନେଇ

ଅସିବୁ, ମୋ ବସ୍ତା ବନ୍ଧା ଆଣିବାକୁ ପିଲାର୍‌କୁ ସାହାଯ୍ୟ କରିବୁ । କିଛି ନ ଘଟିବା ମଧ୍ୟ ସମ୍ଭବ ।"

"ହଉ ମୁଁ ଯାଉଛି । ଦେଖିଲ ପାର୍‌ଲେ କଭଳି ଘୋଡ଼ାରେ ଚଢ଼ିଛି ।"

ସେହି ଧୂସରୀଆ ଜନ୍ତୁ ଘୋଡ଼ାଟା ଆଗେ ଆଗେ ଗ୍ଲୁଥାଏ । ରବର୍ଟ ଜର୍ଡାନ୍ କହିଲେ "ହଁ, ଦେଖୁଛି । ଏବେ ଯା ।"

"ମୁଁ ଯାଉଛି ।" ମେରିଆ ହାତ ମୁଠାକରି ରବର୍ଟ ଜର୍ଡାନ୍‌ଙ୍କ ପକେଟରେ ପୁରାଇଥିଲ ଏବଂ ତାହା ତାଙ୍କ କଙ୍ଘରେ ଗେବ ହୋଇ ଯାଉଥିଲା । ସେ ଗ୍ହିଁ ଦେଖନ୍ତି ଯେ ତା' ଆଖିରେ ଲୁହ । ମେରିଆ ତାଙ୍କ ପକେଟରୁ ହାତ କାଢ଼ି ତାଙ୍କ ବେକରେ ଗୁଡ଼ାଇ ଚୁମ୍ବା ଖାଇଲା । ଏହାପରେ କହିଲା "ଏଥର ଗଲି ।"

ରବର୍ଟ ଜର୍ଡାନ୍ ପଛକୁ ଗ୍ହିଁ ଦେଖନ୍ତି ମେରିଆ ସେହିଠାରେ ଠିଆ ହୋଇଅଛି । ପ୍ରଥମ ପ୍ରଭାତର ସୌରରଶ୍ମି, ତାହାର ଶ୍ୟାମଳ ମୁଖ, ସାନ ସାନ କଟା ସ୍ୱର୍ଣ୍ଣକାନ୍ତ କେଶ ଉପରେ ପଡ଼ିଅଛି । ସେ ହାତ ମୁଠା ଉପରକୁ ଉଠାଇଲା ଏବଂ ବୁଲପଡ଼ି ମୁହଁ ତଳକୁ ପୋତି ଫେରିଗଲା । ପ୍ରିମିଟିଭୋ କହି ଉଠିଲା ଯେ ଯଦି ତା ବାଳଗୁଡ଼ିକ ଏମିତିକା ଲଣ୍ଡାଳିଆ କଟା ହୋଇ ନଥାନ୍ତା ତେବେ ସେ ସୁନ୍ଦର ଦିଶନ୍ତା । ରବର୍ଟ ଜର୍ଡାନ୍ ଅନ୍ୟ ଚିନ୍ତା କରୁଥିବାରୁ କିଛି କହିଲେ ନାହିଁ । ଏହାପରେ ସେ ଶଯ୍ୟା ସଙ୍ଗିନୀ ହିସାବରେ କେମିତିକା ବୋଲି ପ୍ରଶ୍ନରେ ରବର୍ଟ ଜର୍ଡାନ୍ ଗ୍ରିଯାଇ ତାକୁ ମୁହଁ ବନ୍ଦ କରିବାକୁ କହିଲେ ।

ପ୍ରିମିଟିଭୋ କହିଲା "ଲୋକର ଗ୍ରିବା ଉଚିତ ନୁହେଁ—"

ରବର୍ଟ ଜର୍ଡାନ୍ କହିଲେ "ଗ୍ରୁପ୍ ରହିଥା ।" ସେ ପରିସ୍ଥିତି ପରୀକ୍ଷା କରୁଥିଲେ ।

# ଦ୍ୱାବିଂଶ ପରିଚ୍ଛେଦ

ରବର୍ଟ ଜର୍ଡାନ୍ ପ୍ରିମିଟିଭୋଙ୍କୁ ଶୀଘ୍ର ଦେବଦାରୁ ଡାଳ କାଟି ତାଙ୍କ ପାଖକୁ ଆଣିଦେବାକୁ କହିଲେ । ଅଗଷ୍ଟିନ୍‌କୁ କହିଲେ ଯେ ତୋପ ଯେଉଁଠାରେ ରଖାଗଲା ସେ ଜାଗାଟା ଠିକ୍ ନୁହେଁ । ଅଗଷ୍ଟିନ୍ କାରଣ ପଚାରିବାରୁ କହିଲେ ଆଗେ ମୋ କହିବା ଜାଗାରେ ରଖ । ପରେ କାରଣ ଶୁଣିବ । ଏହାକହି ତୋପ ଉଠାଇବାରେ ନିଜେ ହାତ ଲଗାଇଲେ । ସେ ସମ୍ମୁଖସ୍ଥ କୁଦ ଉପରେ ନଜର ପକାଇ ଦୁଇ କଡ଼ର ମୁଣ୍ଡି ଆଉ ଉଚ୍ଚତା ମନେ ମନେ ମାପି କହିଲେ "ନା, ଆହୁରି ଆଗକୁ ହେବ । ଉପସ୍ଥିତ ସେଇଟି ରଖି କାମ ଚଲାଇବା । ପରେ ଭଲ ଭାବରେ ଖଞ୍ଜିବା । ହଁ ସେଇଟି ପଥର ଢେଲା ତିନି ଲଗାଅ । ଏପାଖରେ ଖଣ୍ଡେ ଲଗାଅ । ଆନ୍‌ସେଲ୍‌ମୋ ଗୁହାକୁ ଧାଇଁଯାଇଁ ଖଣ୍ଡେ କୁରାଢ଼ୀ ଆଣିଦେ । ଜଲ୍‌ଦି ।"

"ଅଗଷ୍ଟିନ୍ ତୁ କଅଣ କେବେ ଉପଯୁକ୍ତ ମତେ ତୋପ ଖଞ୍ଜି ଜାଣୁନା ?"

"ଆମେ ତ ସବୁବେଳେ ଏହି ସ୍ଥାନରେ ରଖିଥାଉଁ ?" ଅଗଷ୍ଟିନ୍ କହିଲା ।

"କାସ୍‌କିନ୍ କେଭେ ସେ ଜାଗାରେ ରଖିବାକୁ କହି ନଥିଲେ ?'

"ନା । ତାଙ୍କ ଯିବାପରେ ଆମେ ତୋପ ପାଇଅଛୁ ।"

"ଯିଏ ଆଣିଦେଲା ସେ କଅଣ ତୋପର ବ୍ୟବହାର ଜାଣି ନଥିଲା ?"

"ତୋପ କୁଲିମାନେ ଆଣିଥିଲେ ।"

"କି ଅଦ୍ଭୁତ କଥା । ବ୍ୟବହାର ପ୍ରଣାଳୀ ଶିକ୍ଷା ନଦେଇ ଖାଲି ତୋପଟାଏ ଦେଇଗଲେ ।"

"ହଁ, ଏକରକମ ଉପହାର ଭଳି, ଗୋଟାଏ ଆମକୁ, ଗୋଟାଏ ସୋର୍ଜୋ ପାଇଁ । ଗୃହଜଣ କୁଲି ଏହାକୁ ଆଣିଥିଲେ ଏବଂ ଆନ୍‌ସେଲ୍‌ମୋ ରାସ୍ତା କଢ଼ାଇଥିଲା ।"

"ଲାଇନ୍ ପାର ହେଲାବେଳେ ତୋପ ସମେତ ଲୋକ ୪ ଜଣ ଯେ ମଲେ ନାହିଁ ଏହାହିଁ ବିଚିତ୍ର ।"

ଅଗଷ୍ଟିନ୍ କହିଲା "ମୁଁ ମଧ୍ୟ ଏହାହିଁ ଭାବୁଥିଲି । ଯେଉଁମାନେ ପଠାଇଥିଲେ ସେମାନେ ହୁଏତ ଆଶା କରିଥିଲେ ଯେ ଲୋକ ଗୃହଜଣ ତୋପ ସହିତ ଗାଏବ୍ ହୋଇଯିବେ । କିନ୍ତୁ ଆନ୍‌ସେଲ୍‌ମୋ ତାଙ୍କୁ ଭଲେ ଭଲେ ପହଞ୍ଚାଇ ଦେଲା ।".

"ତୁ ତୋପର ବ୍ୟବହାର ଜାଣୁ ?"

"ହଁ, ମୁଁ ଜାଣେ । ମୁଁ ବ୍ୟବହାର କରିଥିଲି । ପାବ୍‌ଲୋ ମଧ୍ୟ ଜାଣେ, ପ୍ରିମିଟିଭୋ ଓ ଫର୍ଣ୍ଣାଣ୍ଡୋ ମଧ୍ୟ ଜାଣନ୍ତି । ଏହାକୁ ଖଣ୍ଡ ଖଣ୍ଡ କରିବା ଏବଂ ପୁଣି ଖଞ୍ଜି ଦେବା ଆମ୍ଭେମାନେ ଶିକ୍ଷା କରିଅଛୁଁ । ଥରେ ଫିଟାଇ ପକାଇ ଦୁଇ ଦିନଯାଏ ଖଞ୍ଜି ପାରି ନଥିଲୁ । ସେହି ଦିନରୁ ଆଉ ଫିଟାଇନାହୁଁ ।"

"ଏଥିରୁ ବର୍ତ୍ତମାନ ଗୋଳି ଫାଏର୍ ହୋଇ ପାରିବ ତ ?"

"ହଁ ହେବ, କିନ୍ତୁ ଆମେ ଜିପ୍‌ସି କିମ୍ବା ଆଉ କାହାକୁ ଏଥିରେ ଗୋଳି ଫୁଟାଇବାକୁ ଦେଇନାହୁଁ ।"

'ହଉ ଦେଖ, ସେ ଜାଗାରୁ ଏହା ଅକାମି ଥିଲା । ସେହି ସବୁ ମୁଣ୍ଡିଆ ଉପର ଦୁଇକଡ଼ର ରକ୍ଷା କରିବା କଥା କିନ୍ତୁ ତା ବଦଳରେ ଆଶ୍ରୟ ଦେବ ତୁମର ଆକ୍ରମଣକାରୀଙ୍କୁ । ଏପରି ତୋପ ଫାଏର୍ ପାଇଁ ସମତଳ ଭୂମି ଆବଶ୍ୟକ । ଏହାଛଡ଼ା ତୋପ ଏପରି ସ୍ଥାନରେ ରଖିବା କଥା ଯେ ତାହା ଦୁଇ ପାଖକୁ ମଧ୍ୟ ସହଜରେ ନେଇ ହେବ । ବର୍ତ୍ତମାନ ଦେଖ, ଗୃହଆଡ଼ର ନିଘାମାନ ହେଲା କି ନାହିଁ ।'

ଅଗଷ୍ଟିନ୍ କହିଲା 'ହଁ ଦେଖୁଛି । କିନ୍ତୁ ଆମେ ତ ଢେବେ ଆତ୍ମରକ୍ଷା ପାଇଁ ଲଢ଼େଇ କରିନାହୁଁ ? ଅରହିଁଏ ଆମ ସହର ଶତ୍ରୁପକ୍ଷ ଦଖଲ କଲାବେଳେ ସେପରି ଲଢ଼ିଥିଲୁ । ରେଲଗାଡ଼ି ଉଡ଼ାଇଲାବେଳେ ସୈନ୍ୟମାନେ ବନ୍ଧୁକ ଧରି ହାଜର ଥିଲେ ।'

ରବର୍ଟ ଜର୍ଡାନ୍ କହିଲେ 'ହଉ ତେବେ ସମସ୍ତେ ମିଶି ଶିଖିବା । କେତୋଟା ଜିନିଷ ପ୍ରତି ନଜର ରଖିବାକୁ ହେବ ।'

'ଯେଉଁ ଜିପ୍‌ସି ଏଠାରେ ରହିବା କଥା ସେ କାହିଁ ?'

'ମୁଁ ଜାଣେ ନାହିଁ ।'

'କେଉଁଠାରେ ଥିବା ସମ୍ଭବ ?'

'ମୁଁ ଜାଣେ ନାହିଁ ।'

ପାବଲୋ ଘୋଡ଼ାଚଢ଼ି ଗିରିପଥରୁ ବାହାର ଅରେ ବୃକ୍ଷପତ୍ର ସମତଳ ଭୂମିରେ ବୃତ୍ତାକାରରେ ବୁଲିଗଲା । ଏହାଠାରୁ ସ୍ପଷ୍ଟଂନିସ୍ତ ରବର୍ଟଙ୍କ ଫନ୍ଦାଇବା କଥା । ବର୍ତ୍ତମାନ ପାବ୍‌ଲୋ ଗଡ଼ାଣିରୁ ଆସିବାର ଦେଖାଗଲା । ଅଶ୍ୱାରୋହୀଟି ଯେଉଁ ବାଟେ ବାଟେ ଆସିଥିଲା ପାବ୍‌ଲୋ ସେହି ଖୋଜ ଅନୁସରି ଆସୁଥିଲା । ସେ ବାମକୁ ବୁଲିପଡ଼ି ବଣଭିତରେ ଅଦୃଶ୍ୟ ହୋଇଗଲା ।

ରବର୍ଟ ଜର୍ଡାନ୍‌ଙ୍କ ଆଶଙ୍କା ହେଲା ନପୁଣ ଲୋକଟା ସିଧା ସଳଖେ ଶତ୍ରୁପକ୍ଷର ଅଶ୍ୱାରୋହୀଙ୍କ ହାତୁଡ଼ିରେ ପଡ଼େ । ତାକୁ ପାଖରେ ରଖିବା ଉଚିତ ଥିଲା । ପ୍ରିମିଟିଭୋ ଗଛଡାଳ ଆଣି ଦେବାରୁ ରବର୍ଟ ଜର୍ଡାନ୍ ବରଫ ଖୋଳି ତାକୁ ପୋତି ଦୁଇ ପାଖରୁ ଡାଳ ବଙ୍କାଇ ତୋପ ଉପରେ ଗୋଟାଏ ଖିଲଣ ପରି କଲେ । ଏହା କରି କହିଲେ 'ତୋପ ଚଳାଇବା ଲୋକ ଦୁହିଙ୍କ ପାଇଁ କିଛି ଆଢୁଆଳ ଲୋଡ଼ା, ଅତଏବ ଅଧିକ ଡାଳପତ୍ର କାଟିଆଣ । ଏତିକରେ ହେବ ନାହିଁ ମାତ୍ର କୁରାଢ଼ୀ ଆସିବା ଯାଏ ଏତିକରେ କାମ ଚଳୁ । ଆଉ ଶୁଣ, ଯଦି ଉଡ଼ାଜାହାଜର ଗର୍ଜନ ଶୁଣିବ ତେବେ ଯେଉଁଠାରେ ଥିବ ସେଇଠି ମାଟିରେ ଶୋଇ ପଡ଼ିବ । ମୁଁ ତୋପ ପାଖରେ ରହିଲି ।'

ସୂର୍ଯ୍ୟ ଉପରକୁ ଉଠିବାରୁ ଖରା ଟାଣ ହେଲା ଏବଂ ଗରମ ପବନ ବହିବାକୁ ଲାଗିଲା । ପାହାଡ଼ କନ୍ଦରରେ ଏହା ଖୁବ୍ ସୁଖପ୍ରଦ ବୋଧ ହେଉଥାଏ । ରବର୍ଟ ଜର୍ଡାନ୍ ଭାବିଲେ ଆମର ୪ଟା ଘୋଡ଼ା ଅଛି, ଦୁଇଜଣ ସ୍ତ୍ରୀଲୋକ ଅଛନ୍ତି ଓ ମୁଁ ଅଛି । ଏହାଛଡ଼ା ଆନ୍‌ସେଲ୍‌ମୋ, ପ୍ରିମିଟିଭୋ, ଅଗଷ୍ଟିନ୍, ଫର୍ଣ୍ଣାଣ୍ଡୋ ଆଉ ଯେ ଦୁଇଭାଇ ମଧ୍ୟ ଅଛନ୍ତି । ମୋଟ୍ ହେଲେ ୮ଜଣ । ଜିପ୍‌ସିକୁ ମିଶାଇଲେ ୯ଜଣ । ପାବ୍‌ଲୋ ଗୋଟାଏ ଘୋଡ଼ା ନେଇ ଯାଇଅଛି, ତାକୁ ମିଶାଇଲେ ହେବ ୧୦ । ହଁ, ଯେ ଦୁଇଭାଇ ହେଉଛନ୍ତି ଆଣ୍ଡ୍ରିକ୍ ଓ ଇଲାଡ଼ିଓ । ଜଣକୁ ଅଧେ ଘୋଡ଼ା ମଧ୍ୟ ହିସାବରେ ପଡ଼ୁନାହିଁ । ଏଠାରେ ୩ ଜଣ ଲୋକ ରହିଲେ କାମ ଚଳିବ । ୪ ଜଣ ବୁଲିଯାଇ ପାରନ୍ତି । ପାବ୍‌ଲୋକୁ ମିଶାଇଲେ ୫ । ସୁତରାଂ ୨ ଜଣ ବଳକା ହେଉଛନ୍ତି । ଇଲାଡ଼ିଓକୁ ମିଶାଇଲେ ୩ ଜଣ ହେବେ । ହଁ ଲୋକଟା କାହିଁ ?'

ସେମାନେ ଯଦି ବରଫରେ ଘୋଡ଼ା ଟାପୁବାଟ ଆଗେଇ ଯିବେ ତେବେ ଯୋର୍ଜୋର ଦଶା ଯେ କଅଣ ହେବ ଭଗବାନଙ୍କୁ ଜଣା, କାମଟା କଠିନ । ବରଫ ବର୍ଷା ବନ୍ଦ ହୋଇଯିବା ଭଲ କଥା । ବରଫ ଯଦି ଆଜି ତରଲଯାଏ ତେବେ ଏଠାର ସବୁ ଚିହ୍ନ ଲୋପ ପାଇଯିବ କିନ୍ତୁ ସୋର୍ଡୋ ଅବସ୍ଥା ସଙ୍ଗୀନ । ବର୍ତ୍ତମାନ ତ ସୋର୍ଡୋକୁ ସାହାଯ୍ୟ ଦେବାକୁ ସମସ୍ତ ନାହିଁ ।

ଆଜିକ ଯଦି ଯୁଦ୍ଧ ନ ହୁଏ ଏବଂ ଆମେ ବର୍ତ୍ତିଯାଉଁ ତେବେ କାଲି ଯଥାସାଧ୍ୟ ସବୁ ବ୍ୟବସ୍ଥା ବଦଳାଇ ପାରିବା । ଅବଶ୍ୟ ଯେମିତି ହେବା କଥା କି ଯେମିତି କରିବା କଥା ନକଲେ ମଧ୍ୟ ଉପସ୍ଥିତ କ୍ଷେତ୍ରରେ ଆମର ଯେତକ ଅଛି ସେତକ ବିନିଯୋଗ କରି ପାରିବା । ଆଜି ଯୁଦ୍ଧ ହେଲେ ଏକମାତ୍ର ଭଗବାନ ସାହାଭରସା ।

ଉପସ୍ଥିତ ଏହାଠାରୁ ଭଲ ଜାଗା, ବ୍ୟୂହ ରଚନା ପାଇଁ ଦେଖୁନାହିଁ । ବର୍ତ୍ତମାନ ଏ ସ୍ଥାନରୁ ଗୁଳିଗଲେ ପାଦ ଚିହ୍ନ ରହିଯିବ । ଏ ସ୍ଥାନ ଯାହା ଅନ୍ୟ ସ୍ଥାନ ତାହାହିଁ ଅଟେ । କପାଳ ଫାଟିଲେ ଏ ସ୍ଥାନରୁ ପଳାଇବାର ୩ଟା ବାଟ ଅଛି । ରାତ ଅନ୍ଧାରରେ ଏଠା ପାହାଡ଼ର ଯେଉଁ ଅଂଶରେ ଥିଲେ ମଧ୍ୟ ମୁଁ ସକାଳୁ ପୋଲ ପାଖରେ ପହଞ୍ଚି ପାରିବ । ପୂର୍ବେ ସେ କାମପାଇଁ ଏତେ ବେଶୀ ଚିନ୍ତା କରିବାର କାରଣ ନଥିଲି ଅଥଚ ମୁଁ ବୋଧ କରୁଥିଲି । କାମଟା ବର୍ତ୍ତମାନ ସହଜସାଧ୍ୟ ମନେହୁଏ । ଆଶାକରେ ସେମାନେ ଥରେ ହେଲେ ଉଡ଼ାଜାହାଜ ପଠାଇବେ । କାଲିକୁ ତ ରାସ୍ତା ଧୂଳିମୟ ହୋଇଯିବ ।

ଆଜି ଏପାଖ ସେପାଖ ଗୋଟାଏ କିଛି ହେବ । ଭାଗ୍ୟକୁ ସେହି ଅଶ୍ୱାରୋହୀ ଏଠାରେ ନାହିଁ । ଶତ୍ରୁ ଲୋକେ ଆସିଲେ ମଧ୍ୟ ଘୋଡ଼ାଟାପୁ ଚିହ୍ନ ଆଉ ପାଇପାରିବେ ନାହିଁ । ସେମାନେ ଯଦି ଆସନ୍ତି ତେବେ ଭାବିବେ ଯେ ତାଙ୍କ ଲୋକ ଏଠାକୁ ଆସି ଫେରିଏ ବୁଲି ଫେରିଯାଇଅଛି । ପାବ୍‌ଲୋ ଯେଉଁ ଚିହ୍ନ ରଖିଯାଇଅଛି ସେଥିରୁ ସେମାନେ ଏପରି ଭ୍ରମରେ ପଡ଼ିବେ । ବୁଢ଼ା ଘୁଷୁରିଟା କୁଆଡ଼େ ଯିବ କେଜାଣେ । ସେ ବୋଧହୁଏ କୌଣସି ଅଣ୍ଟିରା ହରିଣ ପରି ସବଂନ ମାଟି ରାମ୍ପି ଚିହ୍ନ ରଖି ଉପରକୁ ଉଠିବ ଏବଂ ବରଫ ତରଳିଗଲେ ଗୋଳେଇ ଘୂରି ଫେରି ଆସିବ । ଘୋଡ଼ାଟା ମଧ୍ୟ ତାକୁ ହାନ୍ତସନ୍ତ କରିଥିବ । ସେ ମଧ୍ୟ ଘୋଡ଼ାକୁ ସିଧା ବନାଇଥିବ । ଅବଶ୍ୟ ସେ ଆତ୍ମରକ୍ଷା କରିପାରିବ । ସେ ତ ଏହିଭଳି କାମ କରି ଆସିଲଣି, ହେଲେ ମୋର ତା'ଉପରେ ତିଳମାତ୍ର ବିଶ୍ୱାସ ନାହିଁ ।

ଏଠା ପାହାଡ଼ ଭିତରେ ତୋପ ଲୁଚାଇବା ପାଇଁ ଭଲ ସ୍ଥାନ ପ୍ରସ୍ତୁତ କରିବା ଅଧିକ ଚତୁରତାର କାମ । ଅନ୍ୟନ୍ତ ତୋପ ଖଞ୍ଜିବା ଅପେକ୍ଷା ଏହା ଅଧିକ

ଲାଭପ୍ରଦ । ଏଠି ରହି ମାଟି ଖୋଳି ଲାଗିଲେ ଶତ୍ରୁପକ୍ଷ କମ୍ବା ଉଡ଼ାଜାହାଜ ଦ୍ୱାରା ଧରା ପଡ଼ିବା ସମ୍ଭାବନା ଅଛି । ମୁଁ ତ କୌଣସିମତେ ଏଠି ରହି ଲଢେଇ କରିବି ନାହିଁ । ମୋତେ ସେହି ଡାଇନାମାଇଟ୍ ଓ ଆନ୍‌ସେଲ୍‌ମୋକୁ ସଙ୍ଗରେ ନେଇ ଯିବାକୁ ପଡ଼ିବ । ଗଲାବେଳେ ଆମ ପୃଷ୍ଠ ରକ୍ଷା କରିବ କିଏ ? ପିଲାର୍ ଏପରି କାମ କରି ଆସୁଅଛି; ତାକୁ ଲଗାଇ ଦେଲେ ସେ ଯେତିକି ପାରିବ ତାହା କରିବ ।

ସେ ଗୃହଆଡ଼ ନିରୀକ୍ଷଣ କରୁଥିଲାବେଳେ ଦେଖିଲେ ଯେ ଗିପ୍‌ସି ଜଣକ ମୁଣ୍ଡିଆ ବାମ ପନ୍ଥ ଆସୁଅଛି । ତା ପିଠିରେ ବନ୍ଧୁକ ଝୁଲୁଥାଏ ଏବଂ ସେ ଓଦା ମାଟିରେ ଦୋହଲି ଦୋହଲି ଆସୁଥାଏ । ଦୁଇଟା ଠେକୁଆଙ୍କୁ ଗୋଡ଼ ଧରି ଝୁଲାଇ ଆଣୁଥାଏ । ରବର୍ଟ ଜର୍ଡାନ୍‌ଙ୍କୁ ଦେଖି ସେ ଖୁସି ହୋଇ ଡାକ ପକାଇଲା । ରବର୍ଟ ଜର୍ଡାନ୍ ନିଜ ମୁହଁରେ ହାତ ଦେବାରୁ ଗିପ୍‌ସି ଚମକି ଉଠିଲା । ସେ ପଥର ପଛକୁ ଯାଇ ରବର୍ଟ ଜର୍ଡାନ୍ କୁଙ୍କୁଡ଼ି ହୋଇ ବସିବା ଜାଗାକୁ ଗଲା । ଡାଳ ପତ୍ରରେ ସେ ନିଜର ରାଇଫଲ୍ ଢାଙ୍କି ରଖିଥାଆନ୍ତି । ଗିପ୍‌ସି ବସିପଡ଼ି ଠେକୁଆ ଦୁଇଟା ବରଫରେ ଥୋଇଦେଲା । ସେ ତାକୁ କ୍ଷୀଣ ସ୍ୱରରେ ପଚାରିଲେ "କୁଆଡ଼େ ଥିଲୁ ?"

"ମୁଁ ଏ ଦୁଇଟାର ପିଛା ଧରିଥିଲି । ଏମାନେ ବରଫରେ ବସି ପ୍ରେମ କରୁଥିଲେ ।"

"ଗାଡି ପହଞ୍ଚିଲା ?"

"ମୁଁ ଅଳିଂ ସମସ୍ତ ପାଇଁ ନଥିଲି । କାହିଁକି କିଛି ଘଟିଲା କି ? କିଛି ବିପଦ ସଙ୍କେତ ମିଳିଛି କି ?"

"ଅଶ୍ୱାରୋହୀ ବାହାରି ଅଛନ୍ତି ।"

"ତୁମେ ତାଙ୍କୁ ଦେଖିଛ ?" ଗିପ୍‌ସି ପଚାରିଲା ।

ରବର୍ଟ ଜର୍ଡାନ୍ କହିଲେ "ଜଣେ ଆମ ଶିବିରରେ ଅଛି । ସେ ପ୍ରାତଃଭୋଜନ ପାଇଁ ଆସିଥିଲା ।"

ଗିପ୍‌ସି କହିଲା "ମୁଁ ବନ୍ଧୁକ ଆବାଜ ଭଳି କିଛି ଗୋଟାଏ ଶୁଣିଥିଲି । ତା' ମାଆ ମରୁ । ସେ କଅଣ ଏଠାଏ ଆସି ଯାଇଥିଲା ।"

"ହଁ ଏଠିକି । ତୋ ଘାଟି ?"

"ମୁଁ ଜଣେ ଗନ୍ଧକ ଅଭଗା ।"

"ତୁ ଗିପ୍‌ସି ହୋଇ ନଥିଲେ ମୁଁ ତୋତେ ଗୁଳି କରିଥାନ୍ତି ।"

"ନା, ନା, ରବର୍ଟୋ, ସେପରି କୁହନାହିଁ । ମୁଁ ଦୁଃଖିତ । ଏହି ଠେକୁଆ ମୋତେ ହାଣିଲି । ସକାଳ ପୂର୍ବରୁ ମୁଁ ଶୁଣିଲି ଯେ ଅଣ୍ଡିରାହା ବରଫ ବାମ୍ଫୁଅଛି । ସେମାନଙ୍କର ଯୌନକ୍ରିୟା ତୁମେ କଳ୍ପନା କରି ପାରିବ ନାହିଁ । ମୁଁ ଶବ୍ଦବାରି ଗଲି ମାତ୍ର ତାଙ୍କୁ ପାଇଲି ନାହିଁ । ମୁଁ ପାଦ ଚିହ୍ନ ଅନୁସରି ଯାଇ ମୁଣ୍ଡିଆ ଉପରେ ଦୁହିଙ୍କୁ ମାଇଲି । ବର୍ଷର ଏହି ସମୟରେ ଏମାନଙ୍କ ଦେହରେ କେତେ ଚର୍ବି ଅଛି ଦେଖିଲି । ପିଲାର୍ ଏ ଦୁଇଟା ପାଇଲେ କଅଣ କରିବ ଭାବିଲି । ମୁଁ ଅତ୍ୟନ୍ତ ଦୁଃଖିତ ରବର୍ଟୋ । ଅଶ୍ୱାରୋହୀ ଜଣକ ମଲା ?" "କିଏ ମାଇଲା, ତୁମେ ?" ରବର୍ଟ ଜର୍ଡାନ୍ ହଁ ବୋଲି କହିବାରୁ ଗିପ୍‌ସି ତାଙ୍କୁ ପ୍ରକାଶ୍ୟରେ ଶୁଭବାଦ କରିବାକୁ ଲାଗିଲା ।

ରବର୍ଟ ଜର୍ଡାନ୍ ଟିକିଏ ଖୁସି ହୋଇ କହିଲେ "ତୋ ମୁଣ୍ଡଗଣ୍ଡି କହୁଛି । ଯା ଏହାକୁ ନେଇ ଶୀଘ୍ର ଶିବିରରେ ଦେଇ କିଛି ଖାଇବା ଜିନିଷ ନେଇଆ ।" ଏହାପରେ ସେ ଠେକୁଆକୁ ଧରି କହିଲେ "ଚର୍ବି ବହୁତ ଅଛି ।"

ଗିପ୍‌ସି କହିଲା "ବହୁତ କଅଣ, ମୁଣ୍ଡା ମୁଣ୍ଡା ଚର୍ବି ପଞ୍ଜରା ହାଡ଼ରେ ଜମିଛି । ମୁଁ କେବେ ଏମିତି ଠେକୁଆ ଦେଖି ନଥିଲି ।"

"ହଉ ଯା । ଶୀଘ୍ର ଜଳଖିଆ ନେଇଆ ଆଉ ପିଲାର୍ ପାଖରୁ କାଗଜପତ୍ର ଯାହା ମିଳିଥିବ ମାଗିଆଣ ।"

"ମୋ ଉପରେ ରାଗିନାହଁ ତ ରବର୍ଟୋ ?"

"ନା, ରାଗିନାହିଁ, କିନ୍ତୁ ତୋ ଘାଟି ଛାଡ଼ି ଯାଇଥିଲୁ ବୋଲି ବିରକ୍ତ ହୋଇଅଛି । ହଁ, ଆଜି ଯଦି ଦଳେ ଅଶ୍ୱାରୋହୀ ଆସିଥାନ୍ତେ ?"

"ତୁମ ଉକ୍ତି ଅତି ଯୁକ୍ତିଯୁକ୍ତ" ଗିପ୍‌ସି ଜବାବ ଦେଲା ।

"ତେବେ ଶୁଣ, ଏମିତି ଭାବରେ ଘାଟି ଛାଡ଼ି ଆଉ କେବେ ଫିରୁନାହିଁ । ତୋତେ ମାରିଦେବା କଥା ମୁଁ ଉପର ଠାଉରିଆରେ କହିନାହିଁ ।"

"ନିଶ୍ଚୟ ନୁହେ । ଆଉ ଗୋଟିଏ କଥା । ଆଉ ତ କେବେ ଏମିତିକା ଦୁଇଟା ଠେକୁଆ ଜୁଟିବେ ନାହିଁ । ମଣିଷର ଜୀବନରେ ଏହା ଥରକରୁ ବେଶୀ ଘଟି ନଥାଏ ।"

ରବର୍ଟ ଜର୍ଡାନ୍ କହିଲେ "ହଉ ହେଲା, ଏବେ ଜଲଦି ଯାଇ ଜଳଖିଆ ନେଇଆ ।"

ଗିପ୍‌ସି ଠେକୁଆ ଦୁଇଟା ଉଠାଇ ନେଇ ପଥର ପଛପଟେ ଚୁପ୍‌ଚୁପ୍ ଅଦୃଶ୍ୟ ହୋଇଗଲା । ରବର୍ଟ ଜର୍ଡାନ୍ ସମ୍ମୁଖସ୍ଥ ସମତଳ କ୍ଷେତ୍ର ଏବଂ ପାହାଡ଼ର ନାଳି ତଳକୁ ଚାହିଁ ରହିଲେ । ଗୋଟାଏ କାଉ ଆକାଶରେ ଉଡ଼ି ଉଡ଼ି ଗଛ ଉପରେ ବସିଲା । ଅଳ୍ପ ପରେ ଆଉ ଗୋଟାଏ କାଉ ତା ସଙ୍ଗେ ମିଶିଲା । ରବର୍ଟ ଜର୍ଡାନ୍ କାଉକୁ ଅନାଇ ଭାବିଲେ ଯେ ସେ ଦୁଇଟା ତାଙ୍କର ଜଗୁଆଳି । ସେମାନେ ଚୁପ୍‌ଚୁପ୍ ହୋଇ ବସିଥିବା ଯାଏ ଜଣାପଡ଼ିବ କେହି ଏଆଡ଼େ ବଣ ଭିତରେ ଆସୁନାହାଁନ୍ତି ।

ଗିପ୍‌ସିଟା ସମ୍ପୂର୍ଣ୍ଣ ନିକମା । ତାହାର କୌଣସି ରାଜନୀତି ଜ୍ଞାନ ନାହିଁ କି ଶୃଙ୍ଖଳାବୋଧ ନାହିଁ । ତା' ଉପରେ ନିର୍ଭର କରିହେବ ନାହିଁ । କିନ୍ତୁ କାଲି ପାଇଁ ମୋତେ ତାକୁ ଦରକାର । କାଲି ସେ ଗୋଟାଏ କାମରେ ଲାଗିବ । ଯୁଦ୍ଧରେ ଗିପ୍‌ସିଙ୍କୁ ପାଇବା ବିରଳ । ସେମାନଙ୍କୁ ଅନ୍ୟ ବିବେକୀ ପ୍ରତିବାଦୀମାନଙ୍କ ପରି ଯୁଦ୍ଧ କାମରୁ ଅବ୍ୟାହତି ଦେବା ଉଚିତ । ଅଥବା ଶାରୀରିକ ଏବଂ ମାନସିକ ଅକ୍ଷମ ବ୍ୟକ୍ତି ବୋଲି ଛାଡ଼ି ଦେବା ଉଚିତ । ସେମାନେ କିଛି କାମର ନୁହନ୍ତି । କିନ୍ତୁ ଏହି ଯୁଦ୍ଧରେ ବିବେକୀ ପ୍ରତିବାଦକାରୀଙ୍କୁ ସୁଦ୍ଧା ଛାଡ଼ି ଦିଆଯାଇ ନାହିଁ । କାହାକୁ ଛାଡ଼ି ଦିଆଯାଇ ନାହିଁ । ସମସ୍ତଙ୍କ ପାଇଁ ସମାନ ବ୍ୟବସ୍ଥା । ଏଠାର ଏହି ଅଳସୁଆ ଗୋଷ୍ଠୀକୁ ମଧ୍ୟ ଡକରା ଆସିଛି । ସେମାନେ ମଧ୍ୟ ଏଥିରେ ଯୋଗ ଦେଇଛନ୍ତି ।

ଅଗଷ୍ଟିନ୍ ଓ ପ୍ରିମିଟିଭୋ ଡାଳ ଓ ଝାଟି ନେଇ ଆସିବାରୁ ରବର୍ଟ ଜର୍ଡାନ୍ ରାଇଫଲ୍ ଲୁଚାଇବା ପାଇଁ ଗୋଟିଏ କୃତ୍ରିମ ବୁଦା ସୃଷ୍ଟି କଲେ । ତା ଭିତରେ ରାଇଫଲ୍‌ଟା ଉଡ଼ାଜାହାଜରୁ ମଧ୍ୟ ଦିଶିବ ନାହିଁ । ଦକ୍ଷିଣ ପଟ ପଥରକୁଦର କେଉଁଠି ଜଣେ ଲୋକ ଜଗାଇଲେ ଗୃର ପାଖକୁ ନଜର ଦେଇ ପାରିବ ଏବଂ ଆଉ ଜଣକୁ ବାମ ପଟରେ ରଖିଲେ ସେ ବାଟ ଜଗିବ । ଏକଥା ରବର୍ଟ ଜର୍ଡାନ୍ ତାଙ୍କୁ ବୁଝାଇ ଦେଲେ ।

ସେ କହିଲେ "ଯଦି କାହାକୁ ଆସିବାକୁ ଦେଖିବ ତେବେ ଗୁଳି କରିବ ନାହିଁ । ଗୋଟିଏ ଟେଳା ତଳବାଲାଙ୍କୁ ସତର୍କ କରିବା ପାଇଁ ଗଡ଼ାଇ ଦେବ । ଏହାପରେ ରାଇଫଲ୍ ମୁହଁ ତଳ ଉପର କରିବ ଯେମିତି ମୁଁ କରୁଛି ।" ଏହାକହି ରାଇଫଲ୍ ମୁଣ୍ଡ ଉପରକୁ ଟେକି ଧରିଲେ । ମୁଣ୍ଡ ଉପରେ ତଳ ଉପର କରି ହଲାଇଲେ ଆମେ ଶତ୍ରୁର ସଂଖ୍ୟା ଜାଣି ପାରିବୁ । ନଳୀ ମୁହଁ ତଳକୁ କଲେ ଆମେ ଜାଣିବୁ ସେମାନେ ଘୋଡ଼ାରୁ ଓହ୍ଲାଇଲେଣି । କିନ୍ତୁ ଗୁଳି ଫୁଟାଇବ ନାହିଁ ଯେତେବେଳଯାଏ ଆମ ପଟରୁ ବନ୍ଧୁକ ଆବାଜ ନ ଶୁଣିବ । ଗୁଳି ଚଳାଇବେଳେ ଲୋକର ଆଣ୍ଠୁକୁ ଲକ୍ଷ୍ୟ କରିବ । ମୋର ଏହି ସିଷ୍ଟିରୁ ଯଦି ଦୁଇଥର ଶବ୍ଦ ଶୁଣିବ ତେବେ ଓହ୍ଲାଇ ଆସିବ । ଗଛ ଓହାଡ଼ରେ ଲୁଚି ଲୁଚି ଆମ ଲୋକ ଜଗିଥିବା ପଥର ପାଖକୁ ଆସିବ ।

ପ୍ରିମିଟିଭୋ ବନ୍ଧୁକ ଉଠାଇ କହିଲା "ମୁଁ ବୁଝିଲି । ଏହା ଅତି ସରଳ ।"

"ହଁ ପହିଲେ ସତର୍କ କରିବାକୁ ଢେଲା ଗଡ଼ାଇଦେବ, ତା ପରେ ଶତ୍ରୁର ସଂଖ୍ୟା ଓ ଢଙ୍ଗ ସଙ୍କେତ କରିବ ଜନ୍ମ୍ ସାବଧାନ କେହି ଯେପରି ତୋତେ ଦେଖି ନ ପକାଏ ।"

ପ୍ରିମିଟିଭୋ କହିଲା "ହଁ କରିବ । ହାତବୋମା ମାରି ପାରିବ ତ ?"

"ଆମ ନେତାଙ୍କ କଥା ନ ଶୁଣିବା ଯାଏ କରିବ ନାହିଁ । ଏମିତି ହୋଇପାରେ ଯେ ଅଶ୍ୱାରୋହୀମାନେ ନିଜ ସଙ୍ଗୀକୁ ଖୋଜିବାକୁ ଆସି ପାରନ୍ତି, ଏ ଜାଗା ଦଖଲ ନେବା ତାଙ୍କର ଅଭିପ୍ରାୟ ନୁହେ । ସେମାନେ ପାବ୍‌ଲୋର ଘୋଡ଼ାଟାପୁ ଦେଖି ଦେଖି ଆସି ପାରନ୍ତି । ନିତାନ୍ତ ବାଧ୍ୟ ନ ହେଲେ ଆମେ ଯୁଦ୍ଧ କରିବୁ ନାହିଁ । ଯୁଦ୍ଧକୁ ସବୁ ପ୍ରକାରେ ଏଡ଼ିବାକୁ ଚେଷ୍ଟା କରିବୁ । ବର୍ତ୍ତମାନ ସେଠାକୁ ଯାଅ ।"

"ହଉ ଯାଉଛି କହି ବନ୍ଧୁକ ପିଠିରେ ପକାଇ ପ୍ରିମିଟିଭୋ ଉଚ୍ଚ ପଥରଟା ଚଢ଼ିଗଲା ।"

ଏହାପରେ ରବର୍ଟ ଜର୍ଡାନ୍ ଅଗଷ୍ଟିନ୍‌କୁ ପଚାରିଲେ "ତୁ ତୋପ ସମ୍ବନ୍ଧରେ କଅଣ ଜାଣୁ ?"

ଅଗଷ୍ଟିନ୍ ମାଟିରେ ବସିପଡ଼ିଲା । ଲୋକଟା ଡେଙ୍ଗା, କାଳିଆ, ଗାଡ଼ୁଆ ଆଖିଦାଳି, ପତଳାମୁହାଁ କିନ୍ତୁ ତାହାର ହାତ ଦୁଇଟା ଶ୍ରମଶୀର୍ଣ୍ଣ ଏବଂ ଗଣ୍ଡ ଦେଶ ଅତି ରୁକ୍ଷ । କହିଲା "ତୋପରେ ଗୋଳି ଭରିବା, ଲକ୍ଷ୍ୟ ଠିକ୍ କରିବା ଏବଂ ଫାଏର୍ କରିବା ଛଡ଼ା ଅଧିକ କିଛି ଜାଣେନାହିଁ ।"

ରବର୍ଟ ଜର୍ଡାନ୍ କହିଲେ "ସେମାନେ ୫୦ ମିଟର ପାଖକୁ ନ ଆସିବାଯାଏ କଦାପି ଫାଏର୍ କରିବୁ ନାହିଁ, ତାହା ମଧ୍ୟ କରିବା ପୂର୍ବରୁ ତୁ ନିଶ୍ଚିତଭାବେ ଜାଣିବା ଉଚିତ ଯେ ସେମାନେ ଏହି ଗିରିପଥ ଦେଇ ଆମ ଗୁହାଆଡ଼କୁ ମୋହୁଁ ଅଛନ୍ତି ।"

"ହଁ, ସେ ଗିରିପଥଟା କାଏ ?"

"ଏଇ ସେ ମୁଣ୍ଡିଆଟା ।"

"ଯଦି କୌଣସି ଅଫିସର ସାଙ୍ଗରେ ଥିବ ତେବେ ତାକୁ ପହିଲେ ମାରିବୁ । ତା ପରେ ବନ୍ଧୁକ ଅନ୍ୟମାନଙ୍କ ଆଡ଼କୁ ଘୁରାଇବୁ । ଖୁବ୍ ଧୀରେ ଧୀରେ ବୁଲାଇବୁ । ଏତକ କରିବା ପାଇଁ ଅଳ୍ପ ବଳ ଲୋଡ଼ା । ଏହାକୁ କିପରି ଫୁଟାଇବାକୁ ହୁଏ ତାହା

ମୁଁ ଫର୍ଣ୍ଣାଣ୍ଡୋଙ୍କୁ ଶିଖାଇ ଦେବ । ଶତ୍ରୁଙ୍କର ଧରିବୁ ଯେପରି କି ଏହା ଡେଇଁ ନପଡ଼େ । ଖୁବ୍ ଭଲଭାବରେ ଲକ୍ଷ୍ୟ କରି ଫାଏର କରିବୁ ଏବଂ ଥରକୁ ତିନିରୁ ବେଶୀ ଗୁଳି ଫାଏର କରିବୁ ନାହିଁ । ଫାଏର୍ କଲେ ବନ୍ଧୁକର ନଳୀ ଉପରକୁ ଉଠିଥାଏ । ପ୍ରଥମେ ଜଣକୁ ମାରିବୁ ଏବଂ ତାପରେ ଅନ୍ୟକୁ ଲକ୍ଷ୍ୟ କରିବୁ । ଘୋଡ଼ସବାରକୁ ଦେଖିଲେ ଘୋଡ଼ା ପେଟକୁ ଲକ୍ଷ୍ୟ କରିବୁ । ଜଣେ ଲୋକ ବିପଦକୁ ମଜବୁତ୍‌ଭାବେ ଧରିଥିବ ଯେପରିକି ବନ୍ଧୁକ ଡେଇଁ ନପାରିବ । ସେହି ଲୋକ ବନ୍ଧୁକରେ ଗୁଳି ଭରି ଦେଉଥିବ ।"

"ତୁମେ କେଉଁଠି ରହିବ ?"

"ମୁଁ ଏଠାରେ ବାମ ପଟେ ରହିବି । ମୁଁ ଉଚ୍ଚ ଜାଗାରେଥିଲେ ସବୁଆଡ଼କୁ ନଜର ରଖିବି ଏବଂ ମୋ ଶ୍ରେଷ୍ଠ ବନ୍ଧୁକ ଦ୍ୱାରା ତୋ ବାମପଟ ରକ୍ଷା କରିବି । ସେମାନେ ଆସିଲେ ଆମେ ସମସ୍ତଙ୍କୁ ଧ୍ୱଂସ କରିଦେବା ମାତ୍ର ସେମାନେ ନିକଟକୁ ନ ଆସିଲାଯାଏ ତୁ ଗୁଳି ଛାଡ଼ିବୁ ନାହିଁ ।"

"ମୋର ବିଶ୍ୱାସ, ଆମେ ସମସ୍ତଙ୍କୁ ମାରି ପକାଇବା ।"

"କିନ୍ତୁ ସେମାନେ ନ ଆସିବେ ବୋଲି ମୋର ଆଶା ।"

"ଯଦି ତୁମର ସେହି ପୋଲ କାମଟା ନଥାନ୍ତା ତେବେ ଏଇଠି ସମସ୍ତଙ୍କୁ ମାରି ଆମେ ଚାଲିଯାଆନ୍ତୁ ।"

"ସେଥିରେ ବିଶେଷ କିଛି ଲାଭ ହେବନାହିଁ । କିଛି କାମ ଦେବନାହିଁ । ଯୁଦ୍ଧ ଜିଣିବା ପାଇଁ ପୋଲ ଗୋଟିଏ ଅଂଶ । ଏ କାମଟା ଗୋଟାଏ ଆକସ୍ମିକ କାଣ୍ଡ ବୋଲି ଧରିବାକୁ ହେବ, ସେମିତି ବିଶେଷ କିଛି ତାତ୍ପର୍ଯ୍ୟପୂର୍ଣ୍ଣ ନୁହେ ।"

"କିଛି ନୁହେ କାହିଁକି ? ଜଣେ ଫ୍ୟାସିଷ୍ଟ୍ ମଲେ ଦଳରୁ ଜଣେ ଊଣା ପଡ଼ିବ ।"

"ସେ କଥା ଠିକ୍ କିନ୍ତୁ ପୋଲଟା ଭାଙ୍ଗି ପାରଲେ ଆମ୍ଭେମାନେ ସେଗୋଭିଆ ଦଖଲ କରି ପାରିବା । ତାହା ହେଉଛି ପ୍ରାଦେଶିକ ରାଜଧାନୀ । ଏତିକି ଭାବି ଦେଖ । ଆମ ଦଖଲରେ ଏହା ପ୍ରଥମ ବୋଲି ବିବେଚିତ ହେବ ।"

"ଆମେ ସେଗୋଭିଆ ଦଖଲ କରିପାରିବୁ ଏହା କଅଣ ଆପଣ ପ୍ରକୃତରେ ବିଶ୍ୱାସ କରୁଛନ୍ତି ?"

'ହଁ, ଯଦି ପୋଲ ଭାଙ୍ଗିବା କାମ ଯଥାଯଥ ଭାବରେ କରିପାରୁଁ ।'

'ମୁଁ ପୋଲ ଭାଙ୍ଗିବା ଓ ସମସ୍ତଙ୍କୁ ଏଠାରେ ହତ୍ୟା କରିବା ଦୁଇ କାମ ଘଟୁ ବୋଲି କାମନାକରେ ।'

'ତୋ ଆଶା ତ ବହୁତ ବେଶୀ ଦେଖୁଛୁ ।' ରବର୍ଟ ଜର୍ଡାନ୍ ଉତ୍ତର କଲେ ।

ଏହି କଥାବାର୍ତ୍ତାବେଳେ ରବର୍ଟ ଜର୍ଡାନ୍ କାଉମାନଙ୍କ ଉପରେ ନଜର ରଖିଥିଲେ । ସେ ଦେଖିଲେ ଗୋଟାଏ କାଉକଅଣ ଲକ୍ଷ୍ୟ କରୁଅଛି । କାକା କରିବାରୁ ସେଟା ଉଡ଼ିଗଲା କିନ୍ତୁ ଅନ୍ୟଟା ଗଛରେ ବସି ରହିଲା । ରବର୍ଟ ଜର୍ଡାନ୍ ମୁଣ୍ଡିଆ ଉପରେ ଉର୍ଦ୍ଧ୍ୱରେ ଭ୍ରମିଟିଙ୍ଗ୍ ବସିଥିବା ସ୍ଥାନକୁ ଗୃହିଁଲେ । ଭ୍ରମିଟିଙ୍ଗ୍ ଗୃରିଆଡ଼କୁ ନିରୀକ୍ଷଣ କରୁଥାଏ କିନ୍ତୁ କୌଣସି ସଙ୍କେତ ଦେଇ ନଥିଲା । ରବର୍ଟ ଜର୍ଡାନ୍ ଆଗକୁ ନଇଁପଡ଼ି ତାଙ୍କର ସ୍ୱୟଂକ୍ରିୟ ରାଇଫଲରେ ଘୋଡ଼ାଆରେ ଅଟକାଇ ଦେଲେ । ତା'ପରେ ଗୁଳି ରହିବା ଖୋପ ସବୁ ଦେଖି ଅଟକାଇ ଖସାଇ ରଖିଲେ । କାଉଟା ସେତେବେଳଯାଏ ଗଛରେ ବସିଥିଲା । ଅନ୍ୟଟା ଉଡ଼ି ଉଡ଼ି ପୁଣି ବସିଗଲା । ଖରା ଓ ମବନଯୋଗ୍ୟ ଗଛ ପତ୍ରରେ ଜମିଥିବା ବରଫ ତରଳି ତଳେ ପଡ଼ୁଥିଲା ।

ରବର୍ଟ ଜର୍ଡାନ୍ କହିଲେ 'କାଲି ସକାଳେ ଗୋଟାଏ ହତ୍ୟାଲୀଳା କରିବାକୁ ହେବ । କରତକଲ ଜଗୁଆଳୀ ଘାଟି ନିଶ୍ଚିହ୍ନ କରିବା ଏକାନ୍ତ ଆବଶ୍ୟକ ।'

'ଅଗଷ୍ଟିନ୍ ଜବାବ ଦେଲା ଯେ ପ୍ରସ୍ତୁତଅ ଛୁ ।'

'ଏହା ସାଙ୍ଗକୁ ରାସ୍ତା ମରାମତ କରିବା ଲୋକଙ୍କର ଆବାସସ୍ଥଳ ମଧ୍ୟ ।'

'ଦୁଇଟା ଭିତରୁ ଗୋଟାଏ, ନା ଦୁଇଟାଯାକ ?'

'ଦୁଇଟାଯାକ ନୁହେ । କିନ୍ତୁ ଦୁଇଟାକୁ ଏକ ସଙ୍ଗରେ ଧ୍ୱଂସ କରିବାକୁ ହେବ ।' ରବର୍ଟ ଜର୍ଡାନ୍ କହିଲେ ।

ଅଗଷ୍ଟିନ୍ କହିଲା 'ତେବେ ଦୁଇଟାରୁ ଗୋଟାଏ ହେଉଛି ପହିଲି କାମ । ମୁଁ ବହୁକାଳ ହେଲି କିଛି କରିବା ପାଇଁ ହାଇଁପାଇଁ ହେଉଅଛୁ, ପାବ୍ଲୋ ଆମକୁ ଏଠାରେ ଅଳସୁଆ କରି ପକାଇଛି ।'

କୁରାଢ଼ୀ ହାତରେ ଆନ୍‌ସେଲ୍‌ମୋ ପହଞ୍ଚିଗଲା । ସେ ପଗୃରିଲା 'ଅଉ ଅଧିକ ଡାଳପତ୍ର ଲୋଡ଼ା କି ? ମୁଁ ଦେଖୁଛୁ ତୋପ ଭଲକରି ଢାଙ୍କି ହୋଇଗଲାଣି ।'

ରବର୍ଟ ଜର୍ଡାନ୍ 'ନା, ଅଉ ଡାଳ ଦରକାର ନାହିଁ । ଦୁଇଟି ସାନଗଛ ଅଣ, ଏଟି ପୋତିଦେବା । ତାହେଲେ ସ୍ଥାନଟା ପ୍ରାକୃତିକ ବଣ ପରି ଦଶିବ । ପ୍ରାକୃତିକ ଦଶିଲା ପରି ଯଥେଷ୍ଟ ଗଛ ଏଠ ରେ ନାହିଁ ।'

'ହଉ, ମୁଁ ଆସୁଅଛୁ ।'

• 'ଖୁବ୍ ଭଲ କରି ଉପରଆଡ଼ୁ କାଟିବ ଯେପରି କି ଗଣ୍ଡି ଦେଖା ନଯିବ ।'

ନିଜ ପଛପଟେ ବଣ ଭିତରେ କୁରାଢ଼ୀ ଗ୍ରେଟ ଆବାଜ ସେ ଶୁଣିବାକୁ ପାଇଲେ । ସେ ମୁଣ୍ଡିଆ ଉପରେ ଜଗିଥିବା ପ୍ରିମିଟିଭ୍ରେ ଆଡ଼କୁ ଅନାଇଲେ । ପ୍ରିମିଟିଭ୍ରେ ତଳକୁ ବଣ ଭିତରେ ଗୃହଆଡ଼େ ଗୁହିଁଲି । ସେ ଗୋଟାକ କାଉ ସେତେବେଳେ ମଧ୍ୟ ଗଛରେ ବସିଥାଏ । ଏହାପରେ ବହୁ ଊର୍ଦ୍ଧ୍ୱରେ ଉଡ଼ାଜାହାଜର ଗୁମ୍‌ଗୁମ୍ ଆବାଜ ସେ ପ୍ରଥମେ ଶୁଣି ପାରିଲେ । ସେ ଉପରକୁ ଅନାଇ ଦେଖିଲେ ଅତି ଉଚ୍ଚରେ ଗୋଟିଏ ଯାନ ଧୋବଲି ବସ୍ତୁ ଅତି ଧୀରେ ଧୀରେ ଯାଉଅଛୁ । ସେ ଅଗଷ୍ଟିନ୍‌କୁ କହିଲେ 'ଉଡ଼ାଜାହାଜରୁ ଆମକୁ ଦେଖି ପାରିବେ ନାହିଁ । ତଥାପି ଆମେ ଲୁଚି ରହିବା ଭଲ । ଆଜିର ଏଟା ହେଉଛି ଦ୍ୱିତୀୟ ପର୍ଯ୍ୟବେକ୍ଷଣ ବିମାନ ।'

ଅଗଷ୍ଟିନ୍ ପଚାରିଲା 'କାଲି ଯେଉଁଗୁଡ଼ା ଆସିଥିଲା ସେ ସବୁ କଅଣ ?'

ରବର୍ଟ ଜର୍ଡାନ୍ କହିଲେ 'ଛାଡ଼ ତା କଥା, ସେ ଆଜି ଦୁଃସ୍ୱପ୍ନ ପରି ।'

'ସେମାନେ ତେବେ ସେଗୋଭିଆରେ ଅଛନ୍ତି । ସେ ଦୁଃସ୍ୱପ୍ନ ସଫଳ ହେବା ପାଇଁ ସେଠାରେ ଅଛୁ ।'

ଉଡ଼ାଜାହାଜଖଣ୍ଡି ପାହାଡ଼ ଆରପଟେ ଅଦୃଶ୍ୟ ହୋଇଗଲେ ମଧ୍ୟ ତହିଁର ଇଞ୍ଜିନ ଶବ୍ଦ ଶୁଣା ଯାଉଥିଲା । ରବର୍ଟ ଜର୍ଡାନ୍ ଉପରକୁ ଅନାନ୍ତେ ଦେଖିଲେ ଯେ କାଉଟା ଉଡ଼ିଗଲା । ନ ବୋବାଇ କାଉଟା ବଣ ଭିତରେ ଉଡ଼ିଗଲା ।

# ଏକୋନବିଂଶ ପରିଚ୍ଛେଦ

ରବର୍ଟ ଜର୍ଡାନ୍ ଫୁସ୍‌ଫୁସ୍ କରି ଅଗଷ୍ଟିନ୍‌କୁ ଓହ୍ଲାଇ ଆସିବାକୁ କହିଲେ, ତାପରେ ବୁଲପତ୍ରି ହାତ ଇସାରାରେ ଆନ୍‌ସେଲ୍‌ମୋକୁ ବସି ପଡ଼ିବାକୁ ଜଣାଇଲେ । ସେ ଗୋଟାଏ ଗଛ କାଟି ବଣ ଫାଙ୍କ ଭିତରେ ଢାଙ୍କେଇ କରି ଆଣୁଥିଲା । ସେ ଖଣ୍ଡେ ବଡ଼ ପଥର କଡ଼ରେ ଗଛଟା ପକାଇ ଦେଇ ଲୁଚିଗଲା । ରବର୍ଟ ଜର୍ଡାନ୍ ସମ୍ମୁଖର ଖୋଲା ଜାଗାଆଡ଼େ ନିରୀକ୍ଷଣ କରିବାକୁ ଲାଗିଲେ । ସେ କିଛି ନ ଦେଖିଲେ ବା ନ ଶୁଣିଲେ ମଧ୍ୟ ତାଙ୍କ ହୃତ୍‌ପିଣ୍ଡ ଧଡ଼ଧଡ଼ ହେଉଥାଏ । ତାପରେ ସେ ଶୁଣିଲେ ଖଣ୍ଡିଏ ଟେକା ପଥର ଉପରେ ଠକ୍ ଠକ୍ ହୋଇ ଗଡ଼ିଯାଉଛି । ତାହାଣକୁ ବୁଲିପଡ଼ି ସେ ଦେଖିଲେ ପ୍ରିମିଟିଭୋ ରାଇଫଲ୍ ଟେକି ୪ ଥର ସମାନ୍ତର ଭାବରେ ନୁଆଁଇଲା । କେବଳ ସମ୍ମୁଖସ୍ଥ ବରଫ ଉପରେ ଘୋଡ଼ାଟାପୁ ଛଡ଼ା ସେ ଆଉ କିଛି ଦେଖିବାକୁ ପାଇଲେ ନାହିଁ ।

'ଅଶ୍ୱାରୋହୀ' ସେ ଅତି ମୃଦୁ ସ୍ୱରରେ ଅଗଷ୍ଟିନ୍‌କୁ କହିଲେ । ସେ ତାଙ୍କୁ ଅନାଇବାରୁ ରବର୍ଟ ଜର୍ଡାନ୍ ଦେଖିଲେ ଯେ ତା' ଦେହରୁ ଝାଳ ବହୁଅଛି । ସେ ପାଖକୁ ଆସି ତା କାନ୍ଧରେ ହାତ ଥୋଇଲେ । ଏତିକିବେଳେ ୪ ଜଣ ଅଶ୍ୱାରୋହୀ ବଣ ଭିତରୁ ବାହାରିଲେ । ଅଗଷ୍ଟିନ୍‌ର ପିଠି ପେଶୀ ଶକ୍ତ ହୋଇ ଉଠିଲା ।

ଜଣେ ଅଶ୍ୱାରୋହୀ ଆଗରେ ଏବଂ ୩ଜଣ ତା'ପଛରେ ଥିଲେ । ପ୍ରଥମ ଜଣକ ଘୋଡ଼ାଟାପୁ ଚିହ୍ନ ଖୋଜି ଖୋଜି ଯାଉଥିଲା । ଅନ୍ୟ ତିନିଜଣ ତା' ପଛକୁ ଆସି ୩ ଆଡ଼େ ଖେଦିଗଲେ । ୪ ଜଣଯାକ ଖୁବ୍ ଯତ୍ନର ସହିତ ଖୋଜିବାକୁ ଲାଗିଲେ । ମାଟିରେ ମୁହଁମାଡ଼ି ଶୋଇପଡ଼ି ରବର୍ଟ ଜର୍ଡାନ୍ ତାଙ୍କୁ ଦେଖୁଥାନ୍ତି । ପ୍ରଥମ ଅଶ୍ୱାରୋହୀ

ଜଣକ ପାବ୍‌ଲୋ ଯେଉଁଠାରେ ଅଟକି ଫେରିଥିଲା ସେ ସ୍ଥାନକୁ ଆସିଲା । ଅନ୍ୟମାନେ ଆସି ତାଙ୍କ ସହିତ ମିଶିଲେ ।

ରବର୍ଟ ଜର୍ଡାନ୍ ନିଜର ସ୍ୱୟଂକ୍ରିୟ ରାଇଫଲ୍ ଧରି ନଳୀ ସାମନାରେ ସେମାନଙ୍କୁ ସ୍ପଷ୍ଟ ଦେଖି ପାରିଲେ । ସେମାନଙ୍କ ମୁହଁ, ପାର୍ଶ୍ୱଲମ୍ବିତ ଅସି, ଝାଳ ଟୋପି ଉପରେ ଗୁନ୍‌ମୁନିଆ ଚୂଡ଼ା, ନାଲିରେ ଧରରେ ତର୍ଫିକ କାଟର ପାଇଜାମା ଏବଂ ଘୋଡ଼ାମାନଙ୍କ ଦୁଇ କଡ଼ ଝାଳରେ ଭିଜି ଯାଇଥିବା ସେ ଦେଖି ପାରିଲେ । ନେତା ଜଣକ ଏମାନଙ୍କ ତୋପ ଯେଉଁ ପଥର ଫାଙ୍କରେ ଲୁକାୟିତଥିଲା ସେହିଆଡ଼କୁ ମୁହାଁଇଲା । ଲୋକଟି ଯୁବକ ଏବଂ ଖରା ଓ ପବନରେ କଳା ପଡ଼ିଯାଇଥାଏ । ତା' ଆଖି ଦୁଇଟି ପରସ୍ପରର ନିକଟ, ନାକଟା ଛଞ୍ଚାଣ ନାକପରି ଏବଂ ଚିବୁକ ଖୁବ୍ ଲମ୍ବା ।

ସେ ଘୋଡ଼ା ଉପରେ ବସି ତୋପ ରହିଥିବା ଖୋଲା ଜାଗାକୁ ଦେଖାଇଲା । ଘୋଡ଼ାଟା ଗୁଡକ ରବର୍ଟ ଜର୍ଡାନ୍‌ଙ୍କ ଆଡ଼କୁ କରି ମୁଣ୍ଡ ଟେକିଥାଏ, ଅଶ୍ୱାରୋହୀଙ୍କର ସ୍ୱୟଂକ୍ରିୟ ରାଇଫଲ୍ ବେଣ୍ଟ ଘୋଡ଼ାର ଡାହାଣପଟ ଖୋପରୁ ଆଗକୁ ବଢ଼ି ରହିଥାଏ ।

ରବର୍ଟ ଜର୍ଡାନ୍ ନିଜ କହୁଣିକୁ ମାଟିରେ ଦବାଇ ନିଜ ବନ୍ଧୁକ ନଳୀ ତଳକୁ ଏହି ୪ ଜଣ ଅଶ୍ୱାରୋହୀଙ୍କୁ ଚାହିଁଲେ । ୩ ଜଣ ନିଜ ନିଜର ସ୍ୱୟଂକ୍ରିୟ ରାଇଫଲ୍ ବାହାର କରିଥିଲେ । ଦୁଇଜଣ ନିଜ ନିଜ ଜିନ୍ ସମ୍ମୁଖରେ ଥୋଇଥିଲେ । ଅନ୍ୟ ଜଣକ ଡାହାଣକୁ ରାଇଫଲ୍ ଝୁଲାଇଥିଲା ଏବଂ ନିଜ ପିଚ୍ଛରେ ତାହାର ମୁଠା ରହିଥିଲା ।

ସେ ଭାବିଲେ ନିଜ ରାଇଫଲ୍ ନଳୀ ତଳକୁ ଏତେ ନିକଟରେ ଆଉ କେବେ ଏମାନଙ୍କୁ ପାଇବା ସମ୍ଭବ ନୁହେଁ । ସାଧାରଣତ ପଛପଟ ଦୃଷ୍ଟି ଛିଦ୍ରରେ ଏମାନେ ଅଳ୍ପ ସାନ ସାନ ଦେଖା ଯାଇଥାନ୍ତି । ସେମାନେ ଏପାଖ ସେପାଖ ଧାଁଧପଡ଼ କରିବାରୁ ତୁମ ଆଗରେ କେତେବେଳେ ଖାଲ ଢିପର ବାଧା ପହଞ୍ଚି ଲକ୍ଷ୍ୟ ଭଣ୍ଡୁର କରି ପକାଏ । କେବଳ ମାତ୍ର ରେଳଗାଡ଼ି ଭିତରୁ ବର୍ତ୍ତମାନ ପରି ଦେଖାଯାଇପାରେ । ସେମାନେ ଏତେ ନିକଟରେ ଥିବାରୁ ଦୁଇଗୁଣ ବଡ଼ ଆକାରରେ ଦେଖା ଯାଉଥିଛନ୍ତି । ଏହି ୪ ଜଣଙ୍କୁ ଧ୍ୱଂସ କରିଦେବା ସହଜ ।

ବନ୍ଧୁକର ଆଗପଛ ଦୃଶ୍ୟ ଛିଦ୍ରକୁ ଏକ ରେଖାରେ ରଖି ସେ ସେହି ଛିଦ୍ରରେ ପ୍ରଥମ ଅଶ୍ୱାରୋହୀର ଗୁଡକୁ ଲକ୍ଷ୍ୟ କରି ରାଇଫଲ୍ ଧରିଲେ । ମନେ ମନେ ଭାବିଲେ ଆଙ୍ଗୁଳି ଟିକିଏ ହଲାଇବ ତ ଏହି ଯୁବକ ଧଳପଡଟି ଭୂଲୁଣ୍ଠିତ ହେବେ । ନା, ସେ ତାହା କରିବାକୁ ପ୍ରସ୍ତୁତ ନଥିଲେ । ଏତେବେଳକୁ ଅଗଷ୍ଟିନ୍‌ର କାଶ ଉଠିବାରୁ ସେ

ଜୋରକରି ମୁହଁ ଦବାଇ ଅଣନିଶ୍ୱାସି ହୋଇ ଉଠିଲା । ପ୍ରଥମ ଅଶ୍ୱାରୋହୀ ପାବ୍‌ଲୋ ରଖି ଯାଇଥିବା ଘୋଡ଼ାଝାପୁଲ୍‌ ଦେଖାଇ ଅନ୍ୟ ସଙ୍ଗୀମାନଙ୍କୁ କଅଣ କହିଲା । ସେମାନେ ତାଙ୍କ ପାଖକୁ ଯାଇ ବଣଆଡ଼େ ଫେରିଗଲେ । ଅଗଷ୍ଟିନ୍‌ ଅତି ମୃଦୁ ସ୍ୱରରେ କହିଲା 'ଗଲେ' । ଆନ୍‌ସେଲ୍‌ମୋ ଯେଉଁଠାରେ କଟାଗଛ ପକାଇଥିଲା ରବର୍ଟ ଜର୍ଡ଼ାନ୍‌ ସେଠାକୁ ଦୃଷ୍ଟି ଦେଲେ । ଦୁଇଟି କନାର ଥଳି ଧରି ଜିପ୍‌ସି ଟ୍ରେଫେଲ୍‌ ପଥର ମୁଣ୍ଡିଆରୁ ତାଙ୍କ ଆଡ଼କୁ ଅସୁଥିଲା । ପିଠିରେ ରାଇଫଲ୍‌ ଝୁଲୁଇଥାଏ । ରବର୍ଟ ଜର୍ଡ଼ାନ୍‌ ତାକୁ ହାତ ଇସାରା ଦେବାରୁ ସେ ଲୁଚିଗଲା ।

ଅଗଷ୍ଟିନ୍‌ ଝାଳରେ ଗାଧୋଇପଡ଼ି କହିଲା 'ସେମାନେ ଯାକଙ୍କୁ ମାରି ଦେଇଥାନ୍ତୁ ।'

ରବର୍ଟ ଜର୍ଡ଼ାନ୍‌ କହିଲେ 'ହଁ, ତାହା ସମ୍ଭବଥିଲା ମାତ୍ର ବନ୍ଧୁକ ଆବାଜ ପରେ କଅଣ ଘଟନ୍ତା କିଏ କହିବ ।'

ଠିକ୍‌ ଏତିକିବେଳେ ଆଉ ଗୋଟିଏ ଟେକା ପଡ଼ିବା ଦେଖି ସେ ଶୀଘ୍ର ସେଆଡ଼େ ଅନାଇଲେ । ଜିପ୍‌ସି ଆଉ ଆନ୍‌ସେଲ୍‌ମୋ ଦୁହେଁ ଅଦୃଶ୍ୟ । ସେ ନିଜ ହାତ ଘଡ଼ି ଦେଖିଲେ ଏବଂ ତାପରେ ପ୍ରିମିଟିଭୋ ଯେଉଁଠାରେ ବନ୍ଧୁକ ଉଠାଉଥିଲା ଓ ଖସାଉଥିଲା ସେଆଡ଼େ ଗୁହିଁଲେ । ପାବ୍‌ଲୋ ଯିବାର ୪୫ ମିନଟ୍‌ ହୋଇ ଯାଇଥାଏ ଏହାପରେ ପୁଣି ଦଳେ ଅଶ୍ୱାରୋହୀଙ୍କ ଆସିବା ଶବ୍ଦ ଶୁଭିଲା । ସେ ଅଗଷ୍ଟିନ୍‌ର କାନରେ କହିଲେ 'କିଛି ଚିନ୍ତା ନାହିଁ, ଏମାନେ ମଧ୍ୟ ଗୁଲିଯିବେ ।'

ଦୁଇ ଦୁଇ କରି ୨୦ ଜଣ ଅଶ୍ୱାରୋହୀ ବଣ ଭିତରୁ ବାହାରିଲେ । ସେମାନଙ୍କ ବେଶଭୂଷା ଓ ଅସ୍ତ୍ରଶସ୍ତ୍ର ଅଗବାଲାଙ୍କ ପରି । କିଛିକ୍ଷଣ ବୁଲି ସେମାନେ ମଧ୍ୟ ଗୁଲିଗଲେ । ରବର୍ଟ ଜର୍ଡ଼ାନ୍‌ ଅଗଷ୍ଟିନ୍‌କୁ କହିଲେ 'ଏଥର ବୁଝିଲୁ ?' ଆଗର ୪ ଜଣଙ୍କୁ ମାରିଥିଲେ ଏମାନଙ୍କ ଦାଢ଼ ଭେଟିବାକୁ ପଡ଼ିଥାନ୍ତା । ବରଫାବୃତ ମାଟିରେ ଶୋଇ ପଡ଼ିଥିବାରୁ ତାଙ୍କ କାମିଜ ଛାତି ପାଖରେ ଭିଜି ଯାଇଥିଲା । କିନ୍ତୁ ଛାତି ଧଡ଼ପଡ଼ ଥମି ଯାଇଥାଏ । ଖରା ବେଶୀ ଟାଣହେବାରୁ ବରଫ ଶୀଘ୍ର ତରଳିବାକୁ ଲାଗିଲା । ସେ ସମ୍ମୁଖରେ ବରଫ ତରଳି ବହିଯିବା ଓ ଗଛରୁ ଝରି ପଡ଼ିବା ଦେଖିଲେ । ପ୍ରିମିଟିଭୋ ତା' ଜଗିବା ସ୍ଥାନରୁ ଖାଲି ହାତରେ ସଙ୍କେତ କଲା 'ଆଉ କିଛି ନାହିଁ ।'

ଆନ୍‌ସେଲ୍‌ମୋ ଗୋଟିଏ ମୁଣ୍ଡିଆ ଉପରୁ ଉଙ୍କି ମାରିବାରୁ ରବର୍ଟ ଜର୍ଡ଼ାନ୍‌ ତାକୁ ଗୁଲି ଆସିବାକୁ ସଙ୍କେତ ଦେଲେ । ସେ ପଥରରୁ ପଥରକୁ ଖସି ଶେଷକୁ ତାଙ୍କ ବନ୍ଧୁକ ପାଖରେ ଲମ୍ବ ହୋଇ ଶୋଇଗଲା । କହୁଥାଏ, 'ବହୁତ, ବହୁତ ଲୋକ ।'

ରବର୍ଟ ଜର୍ଡ୍ଡାନ୍ କହିଲେ 'ଆଉ ଗଛ ଦରକାର ନାହିଁ, ଆଉ ବଣ କଟାଇବାର କାମ ନାହିଁ ।'

ଆନ୍‌ସେଲ୍‌ମୋ ଓ ଅଗଷ୍ଟିନ୍ ଦୁହେଁ ହସି ଉଠିଲେ । ସେ କହିଲେ 'ଆମେ ଯେତକ କରିଥିଲୁ ସେତକରେ ବର୍ତ୍ତିଗଲୁ । ବର୍ତ୍ତମାନ ଆଉ ବେଶୀ କଲେ ସେ ଲୋକମାନେ ଯଦି ଫେରନ୍ତି ତେବେ ସନ୍ଦେହ କରିବେ । ସେମାନେ ଓଲୁ ନୁହନ୍ତି । ଏସବୁ କହିବାର ତାତ୍ପର୍ଯ୍ୟ ହେଉଛି ସେମାନଙ୍କୁ ବିପଦର ଗୁରୁତ୍ୱ ବୁଝାଇ ଦେବା । ବିପଦ କଟିଗଲା ପରେ ସେ ନିଜର କଥା କହିବାର ବ୍ୟଗ୍ରତାରୁ ବିପଦର ଭୟବହତା ମାପ କରି ପାରୁଥିଲେ ।

ସେ କହିଲେ 'ଆମେ ଏଇ ଯେଉଁ ଖେଳ ଖେଳିଲୁ ତାହା ଖୁବ୍ ଭଲ ହେଲା ।

ଅଗଷ୍ଟିନ୍ କହିଲା '୧୬ ପଣ କାମ ହେଲା । ସବୁଯାକ ଫ୍ୟାସିଷ୍ଟ ଏମିତି ଧୋକାଖାଇ ମରନ୍ତୁ । ପଡ଼ିଲ ୪ ଜଣକୁ ଆମେ ମାରି ଦେଇଥାନ୍ତୁ ।'

'ତୁ ଦେଖିଲୁ ନା ?' ଆନ୍‌ସେଲ୍‌ମୋକୁ କହିଲା ।

'ହଁ ଦେଖିଥିଲି ।'

ରବର୍ଟ ଜର୍ଡ୍ଡାନ୍ ତାକୁ କହିଲେ, ତୁ ତୋ କାଲିକା ଜାଗା କିମ୍ବା ଅନ୍ୟ କେଉଁ ଭଲ ଜାଗାରେ ରହି ରାସ୍ତାରେ ଯାନବାହନ ଆଦିର ଗତିବିଧି ଲକ୍ଷ୍ୟ କରିବୁ ଯା । ସେ କାମରେ ଆମର ଆଜି ବିଲମ୍ବ ହୋଇଗଲାଣି । ସନ୍ଧ୍ୟାଯାଏ ସେଠି ରହି ଫେରିବୁ । ଆଉ ଜଣେ ତୋ ଜାଗାରେ ପଠାଇବା ।'

"କିନ୍ତୁ ମୋ ପାଦ ଚିହ୍ନ ଯେ ରହିଯିବ ?"

"ବରଫ ତରଳିଗଲା ପରେ ତଳକୁ ତୁ ଯିବୁ । ରାସ୍ତାଟା ବରଫଯୋଗୁ କାଦୁଅ ହୋଇ ଯାଇଥିବ । ରାସ୍ତାରେ ବେଶୀ ମୋଟର ଟ୍ରକ୍ ଚଳାଚଳ କରୁଛି କିମ୍ବା ନରମ ମାଟିରେ ଟ୍ୟାଙ୍କ୍‌ର ଚକ ଚିହ୍ନ ପଡ଼ୁଛି କି ନାହିଁ ଭଲକରି ଦେଖିବୁ । ମୋର ଏତିକି କହିଦେବା କଥା ବାକି ତୁ ସେଠାକୁ ଯାଇ ନିଜେ ଲକ୍ଷ୍ୟ କରିବୁ ।"

"ତୁମେ ମୋତେ ଯିବାକୁ ଅନୁମତି ଦେଉଛ ?" ବୁଢ଼ା ପଚାରିଲା ।

"ନିଶ୍ଚୟ ।"

"ଆଚ୍ଛା ତୁମର ଅନୁମତି ନେଇ ମୁଁ ଲଗ୍ରାଞ୍ଜା ଯାଇ ସେଠାରେ ଗତ ରାତିରେ କଅଣ ଘଟିଥିଲା ବୁଝି ଆସନ୍ତି ଏବଂ ଆଜି ପାଇଁ ଜଣେ ଲୋକ ରଖି ଆସନ୍ତି ଯେ କି ତୁମ କହିଲା ମତେ ନଜର ରଖି ସବୁ ବୁଝନ୍ତା ଏବଂ ଏଠାକୁ ଆସି ଖବର ଦିଅନ୍ତା ଅଥବା ମୁଁ ନିଜେ ଯାଇ ଖବରଟା ନେଇ ଆସନ୍ତି । ଭଲ ହୁଅନ୍ତା ନାହିଁ ?"

"ଅଶ୍ୱାରୋହୀଙ୍କ ହାତୁଡ଼ରେ ପଡ଼ିବା ଭୟ ନାହିଁକି ?"

"ବରଫ ତରଳିଗଲା ପରେ ସେ ଭୟ ରହିବ ନାହିଁ ।"

"ଲଗ୍ରାଞ୍ଜାରେ ଏପରି କରିବା ଭଳି ଦକ୍ଷ ଲୋକ ମିଳିବ ?"

"ହଁ, ମିଳିବ କିନ୍ତୁ ଜଣେ ସ୍ତ୍ରୀଲୋକ । ଲଗ୍ରାଞ୍ଜାରେ ବିଶ୍ୱାସ ଯୋଗ୍ୟ ଅନେକ ସ୍ତ୍ରୀଲୋକ ଅଛନ୍ତି ।"

ଅଗଷ୍ଟିନ୍ କହିଲା "ଏକଥା ମୁଁ ବିଶ୍ୱାସ କରେ । ମୁଁ ଜାଣେ ଯେ ଅନେକ ଅଛନ୍ତି ଯେଉଁମାନେ ଅନ୍ୟ କାମ ବୁଲିଇ ଆଆନ୍ତି । କହିବ ଯଦି ତ ମୁଁ ଯାଇପାରେ ।"

"ନା, ବୁଢ଼ାଯାଉ । ତୁ ଏହି ବନ୍ଧୁକ ବ୍ୟବହାର ଜାଣି ଯାଇଅଛୁ । ଦିନ ମଧ୍ୟ ଶେଷ ହୋଇନାହିଁ ।"

ଆନ୍‌ସେଲ୍‌ମୋ କହିଲା "ବରଫ ତରଳିଲେ ମୁଁ ଯିବ । ବରଫ ଖୁବ୍ ଦ୍ରୁତ ତରଳୁ ଅଛି ।"

ରବର୍ଟ ଜର୍ଡାନ୍ ଅଗଷ୍ଟିନ୍‌କୁ ପଚାରିଲେ "ଆଚ୍ଛା, ପାବ୍‌ଲୋକୁ ଧରିବାର ତାଙ୍କର ସମ୍ଭାବନା କେତେ ଦୂର ?"

ଅଗଷ୍ଟିନ୍ କହିଲା "ପାବ୍‌ଲୋ ଭାରି ଧୂର୍ତ୍ତ । ବିନା କୁକୁରରେ ଲୋକେ କଅଣ ଧୂର୍ତ୍ତ ହରିଣ ଧରି ପାରନ୍ତି ?"

ରବର୍ଟ ଜର୍ଡାନ୍ କହିଲେ "ହଁ, କେବେ କେବେ ପାରନ୍ତି ।"

ଅଗଷ୍ଟିନ୍ କହିଲା "କିନ୍ତୁ ପାବ୍‌ଲୋକୁ ନୁହେ । ଅବଶ୍ୟ ସେ ପୂର୍ବର ଧ୍ୱଂସାବଶେଷ କିନ୍ତୁ ବିନା ଉଦ୍ଦେଶ୍ୟରେ ସେ ଏହି ପାହାଡ଼ରେ ଛନ୍ଦରେ ବସା ବାନ୍ଧି ନାହିଁ । ସେ ମଦ ପିଇ ପିଇ ମଲାପରି ହେଲେ ମଧ୍ୟ ଠିକ୍ ଅଛି ଅଥଚ ତାହା ଆଗରେ ଅନେକ ଗୁଳି ଗ୍ରେଟରେ ମଲେଣି ।"

"ଲୋକେ ଯେତେ କହୁଛନ୍ତି ସେ କଅଣ ସେତେ ଚାଲାକ ?"

"ତହୁଁ ବେଶୀ ।"

"ଏଠାରେ ତ ତାହାର ସେମିତ କମ୍‌ମତ ଦେଖାଇ ନଥିଲା ।"

"କମ୍‌ମତ ନଥିଲେ ତ ସେ କାଲ ରାତରେ ମରଥାନ୍ତା । ମୁଁ ମନେ କରେ ତୁମେ ଗ୍ରାମମାଠ କମ୍ବା ଗରିଲା ଯୁଦ୍ଧ ପ୍ରଣାଳୀ ଜାଣନାହଁ ଇଂରେଜ ! ଗ୍ରାମମାଠ ଏବଂ ଗରିଲା ଯୁଦ୍ଧରେ ପ୍ରଥମ କାମ ହେଲ ବଞ୍ଚି ରହିବା । ଦେଖିଲ ତ ସେ କାଲ ରାତରୁ କେମିତ ବଞ୍ଚି ରହିଅଛି ଏବଂ ମୋ ପାଖରୁ ଓ ତୁମ ପାଖରୁ କେତେ ଗାଳି ହଜମ କରଅଛି ।"

ପାବ୍‌ଲୋ ଆନ୍ଦୋଳନର ଗୋଟିଏ ଶାଖାକୁ ଫେର ଆସିବାରୁ ରବର୍ଟ ଜର୍ଡାନ୍ ତା ବରୁଦ୍ଧରେ କଛି କହିବାକୁ ଇଚ୍ଛା କଲେ ନାହି । ପାବ୍‌ଲୋର କୃତଜ୍ଞତା ସମ୍ବନ୍ଧରେ ସନ୍ଦେହ କର ସେ ଅନୁତାପ ମଧ୍ୟ କଲେ । ପାବ୍‌ଲୋ କେତେ ଗୁଲାଖ ସେ ନଜେ ଜାଣିଥିଲେ । ପୋଲ ଧ୍ୱଂସ କରିବା ହୁକୁମନାମାରେ ଥିବା ଭ୍ରମ ପ୍ରମାଦ, ଦେଖିଲାକ୍ଷଣି ସେ ଧର ପାରଥିଲା । କାମଟା ପସନ୍ଦ କରୁ ନଥିବାରୁ ସେ ନଜର ମନ୍ତବ୍ୟ କରଥିଲା ଏବଂ କାଲବେଳେ ମଧ୍ୟ ଜାଣିଥିଲା ଯେ ସେପର କରିବା ଠିକ୍ ନୁହେ । ଅତ୍ୟଧିକ ଶାନ୍ତ ପରେ ବେଶୀ କଥା କହିଲେ ଏମିତ ପ୍ରସଙ୍ଗ ଆସି ଯାଇଥାଏ । ଏହି ସବୁକଥା ଚନ୍ତା କର ରବର୍ଟ ଜର୍ଡାନ୍ ଆନ୍‌ସେଲ୍‌ମୋକୁ କହିଲେ 'ଦନବେଳେ ଲାଗ୍ରାଞ୍ଜା ଯାଇ ପାରବୁ ?'

ବୁଢ଼ା ଜବାବ ଦେଲା 'ଗଲେ କ୍ଷତ ନାହିଁ । ମୁଁ ତ ସାମରକ ପଟି ବାନ୍ଧି ଯିବ ନାହିଁ ?'

'ଅଗଷ୍ଟିନ୍ କହିଲ 'କମ୍ବା ଡୋଲ ପିଟି ଅବା ଘଣ୍ଟା ଧର ମଧ୍ୟ ଯିବ ନାହିଁ ।'

'ତେବେ ଯିବୁ କେମିତ ?'

'ବଣେ ବଣେ ପାହାଡ଼ ଚଢ଼ି ଉତୁର ।'

'ଯଦ ଧରାପଡ଼ୁ ?'

'ମୋ ପାଖରେ ଗୁପ୍ତପତ୍ର ଅଛି ।'

'ତାହା ଆମ ସମ୍ଭଙ୍କ ପାଖରେ ଅଛି । ତେବେ ଅପରପକ୍ଷ କାଗଜ ଶୀଘ୍ର ନଷ୍ଟ କରଦେବା ଉଚତ ।'

ଆନ୍‌ସେଲ୍‌ମୋ ମୁଣ୍ଡ ହଲାଇ ଗୁପ୍ତ ପକେଟକୁ ଇସାରା କଲା । କହିଲା 'ସେ କାଗଜ ଗିଲ ପକାଇବା କଥା ଅନେକଥର ଭାବଅଛି । କାମଟା ତାହାର ମନୋମତ ନୁହେ ।'

ରବର୍ଟ ଜର୍ଡାନ୍ କହିଲେ 'ଦୁଇ ପକ୍ଷର ଗ୍ରେନେଡ଼ ଚିହ୍ନିବା ପାଇଁ ଗୋଟିକରେ କିଛି ଚିହ୍ନ ଦେବା ଉଚିତ । ମୁଁ ମୋର ଦୁଇ ପକେଟରେ ଦୁଇ ପ୍ରକାର ଗ୍ରେନେଡ଼ ରଖିଅଛି । ସୁତରାଂ ଆକସ୍ମିକ ଅବସ୍ଥାରେ ଭୁଲ କରିବାର ସମ୍ଭାବନା ନାହିଁ ।'

ପ୍ରଥମ ଅଶ୍ୱାରୋହୀ ହାବିଲଦାର ଜଣକ ଆସିଲାବେଳେ ସେମାନେ ବଡ଼ ପାଟିରେ କଥାବାର୍ତ୍ତା କରୁଥିଲେ । ସେଥିରୁ ସେ କିଛି ସନ୍ଦେହ କରିଥିଲା । ରବର୍ଟ ଜର୍ଡାନ୍ ଏକଥା ଭାବିଲେ ।

ଅଗଷ୍ଟିନ୍ କହିଲା 'ଦେଖ ରବର୍ଟୋ, ଲୋକେ କହୁଛନ୍ତି ଗଭର୍ଣ୍ମେଣ୍ଟ ଦିନକୁଦିନ ଅଧିକ ଡାହାଣପନ୍ଥୀ ହେଉଅଛି । ସାଧାରଣତନ୍ତ୍ର ଗଭର୍ଣ୍ମେଣ୍ଟରେ ପୂର୍ବ ସାଥୀ ସମ୍ବୋଧନ ବଦଳରେ ଏବେ ଶ୍ରୀଯୁକ୍ତ, ଶ୍ରୀଯୁକ୍ତା ଶବ୍ଦ ଚଳାଇଲେଣି । ତୁମେ ଏହା ବଦଳାଇ ପାରିବ ନାହିଁ ?'

'ଯେତେବେଳେ ଡାହାଣ ପଟକୁ ବେଶୀ ଝୁଙ୍କିବ ମୁଁ କରପଟେ ରଖି ମଝିକୁ ମିଳାଇ କରିଦେବି ।' ରବର୍ଟ ଜର୍ଡାନ୍ ଜବାବ ଦେଲେ ।

ଅଗଷ୍ଟିନ୍ କହିଲା 'ତାହା ତୁମ କାମିଜରେ ରହିବ । ଆମ୍ଭେମାନେ ଏ ଯୁଦ୍ଧ ଜିଣିବା ଅଥଚ ବିପ୍ଳବ ବିଫଳ ହେବ ?'

ରବର୍ଟ ଜର୍ଡାନ୍ କହିଲେ 'ନା । ଆମ୍ଭେମାନେ ଯଦି ଏହି ଯୁଦ୍ଧ ଜିଣି ନପାରୁ ତେବେ ବିପ୍ଳବ, ସାଧାରଣତନ୍ତ୍ର, ତୁମେ, ମୁଁ ଏବଂ ଅନ୍ୟ କେହି ଠାକିବେ ନାହିଁ ।'

ମୁଁ ତ ସେଇଆ କହେ । ଆମକୁ ଯୁଦ୍ଧ ଜିଣିବାକୁ ହେବ' ଆନ୍‌ସେଲ୍‌ମୋ କହିଲା ।

ଅଗଷ୍ଟିନ୍ କହିଲା 'ଆଉ ତାପରେ, ସାମ୍ୟବାଦୀ, ସନ୍ତ୍ରାସବାଦୀ, ସମସ୍ତଙ୍କୁ ଗୁଳି କରି ମାରିଦେବୁ ।'

ଆନ୍‌ସେଲ୍‌ମୋ କହିଲା 'ନା, ଆମେ ଯୁଦ୍ଧ ଜିଣିବୁ ଏବଂ କାହାକୁ ମାରିବୁ ନାହିଁ । ଆମେ ନ୍ୟାୟର ଶାସନ ପ୍ରତିଷ୍ଠା କରିବୁ । ଲୋକେ ନିଜ ନିଜର ଉଦ୍ୟମ ଅନୁସାରେ ଏଥିର ଉପକାରର ଅଂଶ ଗ୍ରହଣ କରିବେ । ଯେଉଁମାନେ ଆମ ବିରୁଦ୍ଧରେ ଲଢୁଅଛନ୍ତି ସେମାନଙ୍କୁ ତାଙ୍କର ଭ୍ରମ ବୁଝାଇ ଦେବୁ ।'

ଅଗଷ୍ଟିନ୍ କହିଲା 'ବହୁତ ବେଶୀ ଲୋକଙ୍କୁ ଆମେ ହତ୍ୟା କରିବାକୁ ଚାହୁଁ ।'

ସେ ମୁଷ୍ଟିବଦ୍ଧ ଦକ୍ଷିଣ ହସ୍ତକୁ ବାମ ହାତରେ ପିଟି କହିଲା 'ଆମେ କାହାକୁ ଏପରିକି ଫ୍ୟାସିଷ୍ଟ ନେତାଙ୍କୁ ମଧ୍ୟ ମାରିବୁ ନାହିଁ । ବାମଦ୍ୱାରା ସେମାନଙ୍କର ସଂସ୍କାର କରିବୁ ।

କିଛି ବରଫ ଉଠାଇ ମୁହଁରେ ପକାଇ ଅଗଷ୍ଟିନ୍ କହିଲା 'ସେମାନଙ୍କୁ କି କାମ ଦିଆଯିବ ସେକଥା ମୁଁ ଜାଣେ ।'

ରବର୍ଟ ଜର୍ଡାନ୍ ପଚାରିଲେ 'କେଉଁ କାମରେ ପାଞ୍ଚ ?'

'ଦୁଇଟା ଅତି ଚମକପ୍ରଦ ପେଶା ।'

'ତାହା କଅଣ ?' ଅଗଷ୍ଟିନ୍ ଅଧିକ ବରଫ ମୁହଁରେ ପକାଇ ଅଶ୍ୱାରୋହୀ ଯାଇଥିବା ଖୋଲା ଜାଗା ଆଡ଼େ ଗୃହିଁଲା । ତାପରେ ବିରକ୍ତିରେ ତରଳା ବରଫକୁ ପକାଇ କହିଲା 'କି ଖରାପ ଲାଗୁଛି । ସେ ବଦମାସ ଜିପ୍‌ସି ଗଲା କୁଆଡ଼େ ?'

ରବର୍ଟ ଜର୍ଡାନ୍ ପଚାରିଲେ 'ଆରେ ଦୁର୍ମୁଖ, କି ପେଶା କହିଲୁ ଶୁଣେ ?'

ଅଗଷ୍ଟିନ୍ କହିଲା 'ଆକାଶଛତା ସାହାଯ୍ୟ ବିନା ଉଡ଼ାଜାହାଜରୁ ତଳକୁ ଓହ୍ଲାଇବା । ଏଟା ହେଉଛି ଆମର ନିଜ ଲୋକଙ୍କ ପାଇଁ । ଦ୍ୱିତୀୟଟା ହେଉଛି ଘାଟି ଖୁଣ୍ଟରେ ବସାଇ ଶତ୍ରୁପକ୍ଷଙ୍କ ଆଡ଼େ ଠେଲିଦେବା ।'

ଆନ୍‌ସେଲ୍‌ମୋ କହିଲା 'ଏପରିଭାବେ କହିବା ଅସୁନ୍ଦର । ଏଥିରେ ଆମର ସାଧାରଣତନ୍ତ୍ର ପ୍ରତିଷ୍ଠା ହୋଇ ନପାରେ ।'

ଅଗଷ୍ଟିନ୍ କହିଲା "ଫ୍ୟାସିଷ୍ଟମାନଙ୍କ ମାଂସ ଝୋଳରେ ମୁଁ ପହଁରିବାକୁ ପ୍ରସ୍ତୁତ । ଏଥିପାଇଁ ସେ ଗୃରିଜଣ ଅଶ୍ୱାରୋହୀଙ୍କୁ ମାରି ପକାଇବା କଥା ଭାବିଥିଲି । ଏଥିପାଇଁ ମୁଁ ବଡ଼ ବ୍ୟଗ୍ର ମଧ୍ୟ ହୋଇ ଉଠିଥିଲି ।"

ରବର୍ଟ ଜର୍ଡାନ୍ ଶାନ୍ତ ଭାବରେ କହିଲେ "ବର୍ତ୍ତମାନ ତ ଜାଣିଲି ଯେ କି କାରଣରୁ ତାଙ୍କୁ ମାରିବାକୁ ମୁଁ ରାଜି ହେଲି ନାହିଁ ।"

ଅଗଷ୍ଟିନ୍ କହିଲା "ହଁ, କିନ୍ତୁ ମୁଁ ଯେ କେତେଦୂର ଉତ୍ତେଜିତ ହୋଇଥିଲି, ତୁମେ କାହୁଁ ବୁଝିବ ?"

ରବର୍ଟ ଜର୍ଡାନ୍ କହିଲେ "ତୁ ଝୋଳନାଳରେ ଏକାକାର ହୋଇଥିଲୁ ସତ ମାତ୍ର ମୁଁ ଭାବିଲି ତରରେ ହୋଇଅଛୁ ।"

'ଭୟ ଓ ଉତ୍ତେଜନା ଦୁଇ । ଉତ୍ତେଜନଟା ବରଂ ବହୁତ ବେଶୀ ଥିଲା ଗଅଷ୍ଟିନ୍ କହିଲା ।'

ରବର୍ଟ ଜର୍ଡାନ୍ ଭାବିବାକୁ ଲାଗିଲେ "ହଁ ଆମେ ସିନା ଭାବି ଚିନ୍ତି ଅଣ୍ଡା ମନରେ କାମ କରିଥାଉଁ, ତାହାର ସେତିକ ଶକ୍ତି ନାହିଁ । ମାରିବାଟା ତାହାର ଯେପରି ଧର୍ମ ଦୀକ୍ଷା । ନୂତନ ଧର୍ମ ପ୍ରେରଣା ପାଇବା ପୂର୍ବରୁ ତାହାର ପୁରୁଣା ଧର୍ମ ବିଶ୍ୱାସ ଆସିଥିଲା ଭୂମଧ୍ୟସାଗରର ଅପର ପାର୍ଶ୍ୱରୁ । ସେ ଧର୍ମ ସେମାନେ କେବଳ ମାତ୍ର ଦବାଇ ରଖିଛନ୍ତି କେବେହେଲେ ପରିତ୍ୟାଗ କରି ନାହାନ୍ତି । ସେମାନଙ୍କର ବିଶ୍ୱାସ ଓ ଧାରଣା ଭିନ୍ନ । ମାରିବାଟା ତାଙ୍କ ପକ୍ଷରେ ଅପରିହାର୍ଯ୍ୟ । ଏଇଠି ତାଙ୍କର ଆମର ପାର୍ଥକ୍ୟ । ମୁଁ ତ ନିଜେ କେବେ ଆପଣାକୁ କଳୁଷିତ କରି ନାହିଁ । ମୁଁ ଯେତେ ଯେତେ ସ୍ଥାନରେ ଯୁଦ୍ଧ କରିଛି, ଟ୍ରେନ ଧ୍ୱଂସ କରିଛି, କେଉଁଠାରେ ହେଲେ ବ୍ୟକ୍ତିଗତ ସ୍ୱାର୍ଥ ଦ୍ୱାରା କଳୁଷିତ ହୋଇନାହିଁ ।

ବର୍ବର ଏବଂ ପ୍ରାଚୀନ ଆଇବେରିଆନ୍ ଜାତି ଏପରି କରୁଥିଲେ ବୋଲି ବହିରେ ଲେଖା ହୋଇଅଛି । ସେ ସବୁ ଗୁଜବ । ବରଂ ସ୍ୱୀକାର କରିବା ଉଚିତ ଯେ ସୈନିକ ବୃତ୍ତି ଅବଲମ୍ବନ କରି ଆମେ ଅନ୍ୟ ସୈନିକ ପରି ହତ୍ୟା କରିଅଛୁ । ଏ ସମ୍ବନ୍ଧରେ ଆତ୍ମପ୍ରତାରଣା ଭଲ ନୁହେ । ଆନ୍ସେଲ୍ମୋ ପଶୁ ଶିକାରୀ, ଏଣୁ ସେ ମଣିଷ ମାରିବାକୁ କୁଣ୍ଠିତ । ତାକୁ ଆଦର୍ଶ କରି ଲାଭ ନାହିଁ । ପଶୁ ଶିକାରୀ ପଶୁ ମାରିଥାଏ, ସୈନିକ ମଣିଷ ମାରିଥାଏ । ଦୀର୍ଘକାଳ ଧରି ନାନା ସାହିତ୍ୟରେ ନାନା ଧର୍ମର ନରହତ୍ୟା ବିପକ୍ଷରେ ଲେଖା ହୋଇ ଆସୁଛି । ମାତ୍ର ଏହା ଅବାସ୍ତବ ଓ ମିଥ୍ୟାଗୁର ।

କିନ୍ତୁ ଅଗଷ୍ଟିନ୍ ପକ୍ଷରେ ଭୟହିଁ ବଡ଼ କଥା । ଅନ୍ୟଙ୍କ ପକ୍ଷରେ ମଧ୍ୟ ଏହି ଏକ କଥା । ପୁଡ଼ାଏ ଅଛନ୍ତି ବହୁତ ଆତ୍ମବଡ଼ିମା ଦେଖାନ୍ତି । ଭୟ ଜଣା ଅଧିକ ସମସ୍ତଙ୍କର ଅଛି ଓ ରହିବ । ବର୍ତ୍ତମାନ କଥା ବନ୍ଦ କରିବା ଉଚିତ, ସେ ଆନ୍ସେଲ୍ମୋକୁ କହିଲେ 'ଦେଖତ, ଗିପ୍ସି ଖାଦ୍ୟ ଆଣିଲା କି ନାହିଁ । ତାକୁ ଏଠିକୁ ଆସିବାକୁ ଦେ ନାହିଁ । ସେ ଗୋଟାଏ ଓଲୁ, ତୁ ନିଜେ ନେଇଆ । ମୋତେ ବଡ଼ ଭୋକ । ସେ ଯେତେ ଆଣିଥିଲେ ମଧ୍ୟ ଆହୁରି ଆଣିବାକୁ କହିବୁ ।

# ଚତୁର୍ବିଂଶ ପରିଚ୍ଛେଦ

ମେ ମାସ ଶେଷ ଆଡ଼କୁ ଦିନେ ସକାଳ ବେଳ ମେଘମୁକ୍ତ ନିର୍ମଳ ଆକାଶ ତଳେ ଗରମ ପବନ ବହୁଥିଲା । ଜମାଟ ବାନ୍ଧିଥିବା ତୁଷାର ବର୍ଣ୍ଣ ଅତଦ୍ରୁତ ତରଳି ଯାଉଥିଲା । ସେମାନେ ବସି ସକାଳର ଜଳଖିଆ ଖାଉଥାନ୍ତି । ଦୁଇ ଖଣ୍ଡି ବଡ଼ ମାଂସ ମଧ୍ୟରେ କଟୁଥିଲା ଦୁଧ ଛେନା ସାଙ୍ଗକୁ ପିଆଜ ଖଣ୍ଡମାନ ମିଶାଇ ତ୍ରେଷ୍ଟି ପଦ୍ଧତି ସମସ୍ତେ ଖାଉଥିଲେ । ରବର୍ଟ ଜର୍ଡାନ ବଡ଼ ବଡ଼ ଖଣ୍ଡ ପିଆଜ ଖାଇବା ଦେଖି ଅଗଷ୍ଟିନନ୍ କହିଲା ତୁମ ମୁହଁରୁ ପିଆଜ ଗନ୍ଧ ସାଗ୍‌ବଣ ବ୍ୟାମ୍‌ପୀ ଫ୍ୟାସିଷ୍ଟଙ୍କ ପାଖରେ ପହଞ୍ଚିଯିବ । ରବର୍ଟ ଜର୍ଡାନ୍ ମୁହଁ ସଫା କରିବାକୁ ମଦ ଥଳି ମାଗିଲେ । ସେ ଅତି ଭୋକିଲା ଥିଲେ ଏବଂ ମଦ ମୁହଁରେ ଭରତି କରି ଢୋକ ଦେଲେ । ଏହାପରେ ଥଳି ଉପରକୁ ଟେକି ଧିଆ ସଳଖ ସେଥିରୁ ମଦ ମୁହଁରେ ଢାଳି ନେଲେ । ମଦ ଥଳିଟା କଣ୍ଠା ଦେବାଦାରୁ ଡାଳରେ ଠେକେଇ ରହିଥାଏ ଏବଂ ସେ ନିଜ ମୁଣ୍ଡକୁ ଡାଳରେ ଆଉଜାଇ ରଖି ଥାଆନ୍ତି ।

ଅଗଷ୍ଟିନ୍ ମାଂସ ପିଠା ଥାଳିଟା ତାଙ୍କୁ ଠେଲି ଦେଇ ଆଉ ଖାଇବେ କି ନାହିଁ ପଚାରିଲା । ସେ ମନାକରି ତୁ ନିଜେ ଖାଉ ବୋଲି କହିବାରୁ ଅଗଷ୍ଟିନ୍ ସକାଳୁ ଖାଇବାରେ ଅଭ୍ୟସ୍ତ ନୁହେ ବୋଲି କହିଲା । ରବର୍ଟ ଜର୍ଡାନ୍ ତହୁଁ ସେହି ମାଂସ ନେଇ ପିଆଜ କଣ୍ଠା ମିଶାଇ ଖାଇଲେ । ଏହା ଦେଖି ଅଗଷ୍ଟିନ୍ ସେ ସକାଳ ଖିଆରେ ପିଆଜ ଖାଆନ୍ତି କି ବୋଲି ପଚାରନ୍ତେ ସେ କହିଲେ ମିଳିଲେ ଖାଏ । ତାଙ୍କ ଦେଶରେ ସମସ୍ତେ ଏପରି ଖାଇଥାନ୍ତି କି ବୋଲି ପଚାରିବାରୁ କହିଲେ 'ନା, ତାଙ୍କ ଦେଶରେ ଲୋକେ ଏହାକୁ ପସନ୍ଦ କରନ୍ତି ନାହିଁ ।'

ଅଗଷ୍ଟିନ୍ କହିଲ 'ସୁଖର କଥା । ଆମେରିକା ସଭ୍ୟ ଦେଶ ବୋଲି ମୁଁ ସବୁବେଳେ ଭାବିଥାଏ ।"

'ପିଆଜ କଅଣ ପାଇଁ ଖରାପ ?'

'ତା ଗନ୍ଧଟା, ନହେଲେ ଅନ୍ୟ କିଛି ଅବଗୁଣ ନାହିଁ । ଗନ୍ଧଟା ନଥିଲେ ତ ତାହା ଗୋଲାପ ସମାନ ।'

ମୁହଁରେ ମାଂସ ଭରି ରବର୍ଟ ଜର୍ଡ଼ାନ୍ ହସିଦେଇ କହିଲେ 'ହଁ ହଁ ଗୋଲାପ ପରି । ବହୁତ ବେଶୀ ଗୋଲାପ ସଙ୍ଗେ ସାଦୃଶ୍ୟ । ବଡ଼ କୌତୁକର କଥା ।'

ଅଗଷ୍ଟିନ୍ କହିଲ 'ଦେଖ, ପିଆଜ ତୁମ ମଗଜ ବିଗାଡ଼ି ଦେବ । ସାବଧାନ ହୁଅ ।'

ରବର୍ଟ ଜର୍ଡାନ୍ ହସି ହସି କହିଲେ, ପିଆଜ ହେଲା ପିଆଜ । ଆଉ ପଥରର ରୂପାନ୍ତର ହେଲା ଢେମା, ଢେଲା, ବାଲିଗରଡ଼ା ।'

ଅଗଷ୍ଟିନ୍ କହିଲ 'ମଦରେ ମୁହଁ ସଫାକରି ପକାଅ । ତୁମେ ଇଂରେଜ, ଜଣେ ଦୁର୍ଲଭ ଲୋକ । ତୁମ ସଙ୍ଗେ ଗତଥର ଡାଇନାମାଇଟ୍ ଫୁଟାଇବାକୁ ଆସିଥିବା ଲୋକର ପାର୍ଥକ୍ୟ ବହୁତ ।'

"ହଁ, ଗୋଟାଏ ବଡ଼ ପ୍ରାର୍ଥକ୍ୟ ।"

"ମୋତେ କୁହ"

"ମୁଁ ଜୀବିତ କିନ୍ତୁ ସେ ମୃତ । କିନ୍ତୁ କଥା କଅଣ ? ଏପରି କଥା କହିବା ଢଙ୍ଗ ନୁହେଁ । ଖାଦ୍ୟ ପେଟରେ ପଡ଼ିବାରୁ କଅଣ ତୋତେ ଏମିତି ମନଫୁଲାଣିଆ କରି ଦେଲା ? ପିଆଜ ନିଶାରେ କଅଣ ଏତେ ବିଭୋର ? ପିଆଜ କଣ ଏତେ ଖରାପ ? ପିଆଜରେ ତ ମୋର କିଛିକ୍ଷତି ହୋଇନାହିଁ ? ଯେତେ ପିଆଜର ଦୁର୍ଗୁଣ ଗାଇଲେ ମଧ୍ୟ ମୁଁ କିଛି ଦେଖୁନାହିଁ ।'

ଏହାପରେ ଗମ୍ଭୀର ଭାବରେ କହିଲ "ନା, ମୁଁ ସେ ଲୋକ କଥା କହିବ ନାହିଁ । ସେ ଲୋକ ବହୁତ ଦୁଃଖ ଭୋଗିଥିଲ ।"

"ତୁମେ ଭୋଗି ନାହଁ ?"

"ନା, ମୁଁ ଅଳ୍ପ ଭୋଗିଅଛି ।"

ଅଗଷ୍ଟିନ୍ କହିଲା 'ଅଳ୍ପ କଷ୍ଟ ଉଠାଇଥିବା ଲୋକ ଭିତରୁ ମୁଁ ଜଣେ । କଷ୍ଟ ଉଠାଇବା ନ ଉଠାଇବା ଏପରି ଦୁଇ ପ୍ରକାର ଲୋକ ଅଛନ୍ତି ।"

ରବର୍ଟ ଜର୍ଡ଼ାନ୍ ମଦ ଥଳି ଉଠାଇ କହିଲେ 'ସେତେ ଖରାପ ନୁହେ, ଆଉ ମଦ ସଙ୍ଗେ କଷ୍ଟଟା କମିଯାଏ ।"

"ମୁଁ ଅନ୍ୟମାନଙ୍କ ପାଇଁ କଷ୍ଟ ଉଠାଏ ।"

"ଏହା ପ୍ରତ୍ୟେକ ଭଲ ମଣିଷର କର୍ତ୍ତବ୍ୟ ।"

"ନିଜ ପାଇଁ, ଖୁବ୍ କମ୍ ।"

"ତୋର ସ୍ତ୍ରୀ ଅଛନ୍ତି ?"

"ନାହିଁ ।"

'ମୋର ମଧ୍ୟ ନାହିଁ ।' ରବର୍ଟ ଜର୍ଡ଼ାନ୍ ଜବାବ ଦେଲେ ।

"କିନ୍ତୁ ବର୍ତ୍ତମାନ ମେରିଆ ରହିଛି ।"

"ହଁ ।"

ସେ କି ଏକ ଦୁର୍ଲଭ ବସ୍ତୁ । ସେ ଟ୍ରେନ ଧ୍ୱଂସ ପରେ ଆମ ସହିତ ରହିବାରୁ ପିଲାର୍ ତାକୁ ଆଶ୍ରମିକା ଭଳି ସାଂଘାଣ ଭାବରେ ଜଗି ରହିଥିଲା । ଆମ ସଙ୍ଗେ ମିଶିବାକୁ ଦେଉ ନଥିଲା । ସେ କି ଭୀଷଣ ଭାବରେ ତାକୁ ଜଗିଥିଲା ତୁମେ କଳ୍ପନା କରିପାରିବ ନାହିଁ । ଆଉ ତୁମେ ଆସିଲା କ୍ଷଣି ସେ ତାକୁ ତୁମକୁ ସମର୍ପି ଦେଲା । ଏହା ତୁମକୁ କିପରି ଲାଗୁଛି ।"

"ନା, ଏପରିତ ନୁହେ ।"

"ତେବେ କିପରି ?"

"ସେ ତାକୁ ମୋ ମାର୍ଫତ ଛାଡ଼ି ଦେଇଛି ।"

"ଆଉ ସାରା ରାତି ପ୍ରେମ କରି ତୁମେ ତାର ଯତ୍ନ ନେଉଛ ?

"ସେଟା ଭାଗ୍ୟର କଥା ।"

"କିନ୍ତୁ ଯତ୍ନ ନେବାର କି ଶବ୍ଦ ଶୁଣ ।"

"ଜଣେ ଜଣକର ଯତ୍ନ ଏପରି ଭାବରେ ନେଇପାରେ ଏ ଧାରଣା ତୋର ନାହିଁ ।"

"କିନ୍ତୁ ଆମେ ମଧ୍ୟ ସେପରି ଯତ୍ନ ନେଇ ପାରନ୍ତୁ ।"

ରବର୍ଟ ଜର୍ଡ଼ାନ୍ କହିଲେ "ସେ ସମ୍ବନ୍ଧରେ ଅଧିକ ଚର୍ଚ୍ଚା ଠିକ୍ ନୁହେ । ମୁଁ ପ୍ରକୃତରେ ତାହାର ଯତ୍ନ ନେଉଅଛି ।" ମୋ ପକ୍ଷରେ ଏହାଠୁ ବଳି ଗୁରୁତ୍ୱ ପୂର୍ଣ୍ଣ ବିଷୟ ପୃଥିବୀରେ ଆଉ କିଛି ନାହିଁ ।"

"ପୋଲ୍ ଧ୍ୱଂସ କରି ସାରିଲେ ତା' ପରେ କଅଣ ହେବ ।"

"ସେ ମୋ ସାଙ୍ଗରେ ଯିବ ।"

"ତେବେ ଆଉ ଆମେ କେହି ପାଟି ଫିଟାଇବୁ ନାହିଁ ? ତୁମ ଦୁହିଁଙ୍କର ମଙ୍ଗଳ କାମନା କରିବୁ ।" ଏତିକି କହି ଅଗଷ୍ଟିନ୍ ଚମତ୍କାର ମଦ ଥଳିଟା ଉଠାଇ ଭଲକରି ଢୋକେ ପିଇ ଥଳିଟା ରବର୍ଟ ଜର୍ଡ଼ାନକୁ ବଢ଼ାଇ ଦେଇ କହିଲା "ଇଂରେଜ, ଆଉ ଗୋଟାଏ କଥା ।"

"କୁହ"

"ମୁଁ ମଧ୍ୟ ମେରିଆର ଖୁବ ଯତ୍ନ ନେଇଥିଲି ।" ରବର୍ଟ ଜର୍ଡ଼ାନ୍ ତା କାନ୍ଧରେ ହାତ ଥୋଇଲେ ।

ଅଗଷ୍ଟିନ୍ କହିଲା "ମୁଁ ବହୁତ ଯତ୍ନ ନେଇଅଛି । ସେଟା କେହି କଳ୍ପନା କରି ପାରିବ ନାହିଁ ।"

"ମୁଁ ସେକଥା ବୁଝି ପାରୁଛି ।"

"ତେବେ ଶୁଣ, ମୁଁ ଯାହା କହୁଅଛି ତାହା ଅକପଟ ଭାବେ କହୁଛି । ମୁଁ କେବେ ତାକୁ ସ୍ପର୍ଶ କରିନାହିଁ କିମ୍ବା ଅନ୍ୟ କୌଣସି ବ୍ୟବହାର କରିନାହିଁ ତଥାପି ମୁଁ ତାହାର ଭଲ ପାଇଁ ସଦା ତତ୍ପର । ତୁମେ ଇଂରେଜ, ତାକୁ ହାଲୁକା ଦୃଷ୍ଟିରେ ଦେଖିବ ନାହିଁ । ସେ ତୁମ ସହିତ ରାତିରେ ଶୋଇଲେ ମଧ୍ୟ ବେଶ୍ୟା ନୁହେଁ।'

"ମୁଁ ତାହାର ଯତ୍ନ ନେବି ।"

"ମୁଁ ତୁମ କଥା ବିଶ୍ୱାସ କରୁଅଛି । ତୁମେ କିନ୍ତୁ ବୁଝିବ ନାହିଁ ଯେ ବିପ୍ଳବ ଘଟି ନଥିଲେ ଏପରି ବାଳିକାର ଅବସ୍ଥା କଅଣ ହୋଇ ଥାଆନ୍ତା । ତୁମର ଦାୟିତ୍ୱ ବହୁତ ବେଶୀ । ସେ ତୁମ ମୋ ପରି ନୁହେଁ; ପ୍ରକୃତରେ ବହୁତ ନିର୍ଯାତନା ଭୋଗିଅଛି ।"

"ମୁଁ ତାକୁ ବାହାହେବି ।"

"ନା, ନା, ସେକଥା ନୁହେ । ବିପ୍ଳବ ଚାଲିଥିଲାବେଳେ ଏହା ଆବଶ୍ୟକ ନୁହେ । କିନ୍ତୁ ବାହାହେଲେ ଭଲ ହେବ ।"

"ହଁ ମୁଁ ତାକୁ ବାହାହେବି । ମୁଁ ତାହାକୁ ଭଲ ପାଏ ।" ଏକଥା କହିଲା ବେଳେ ରବର୍ଟ ଜର୍ଡାନଙ୍କ କଣ୍ଠରୋଧ ହୋଇ ଆସିଲା ।

ଅଗଷ୍ଟିନ୍ କହିଲା "ପରେ ସୁବିଧା ପାଇଲେ ବାହାହେବ । ସେପରି ଉଦ୍ଦେଶ୍ୟ ରଖିବା ହେଉଛି ବଡ଼ କଥା ।"

"ସେ ଉଦ୍ଦେଶ୍ୟ ମୋର ଅଛି ।"

ଅଗଷ୍ଟିନ୍ କହିଲା "ଶୁଣ, ମୁଁ ବଡ଼ ବେଶୀ ଅନଧିକାର ଚର୍ଚ୍ଚା କରୁଅଛି । କିନ୍ତୁ ଏଠାକାର ବହୁ ବାଳିକାଙ୍କୁ ତ ତୁମେ ଜାଣ ?"

"ହଁ କେତେ ଜଣଙ୍କୁ ଜାଣେ ।"

"ବେଶ୍ୟାଙ୍କୁ ?"

"ନା ସମସ୍ତେ ବେଶ୍ୟା ନୁହନ୍ତି ।"

"କେତେ ଜଣ ?"

"ଅନେକ ।"

"ତାଙ୍କ ସହିତ ଶୋଇଥିଲ ?"

"ନା ।"

"ତେବେ ତ ବୁଝିପାରୁଛ ମେରିଆ ତୁମ ସଙ୍ଗେ ଶୋଇବା ବହୁ ଭାବିଚିନ୍ତି କରିଅଛି ।"

"ମୁଁ ମଧ୍ୟ ।"

"ମୁଁ ଯଦି ଭାବିଥାନ୍ତି ଯେ ତୁମେ ଅତି ହାଲୁକା ମନରେ ଏ କାମ କରୁଛ ତେବେ କାଲି ରାତିରେ ତା ସଙ୍ଗେ ଶୋଇଥିଲାବେଳେ ମୁଁ ତୁମକୁ ଗୁଳି କରି ମାରିଥାନ୍ତି । ଏମିତିକା କଥାପାଇଁ ଆମର ଏଠାରେ ବହୁ ହତ୍ୟା ଘଟିଥାଏ ।"

ରବର୍ଟ ଜର୍ଡାନ କହିଲେ "ଶୁଣ ବୁଢ଼ା, ସମୟ ଅଭାବରୁ ମୁଁ କିଛି ଆନୁଷ୍ଠାନିକ ରୀତି ଆଚରି ପାରିଲି ନାହିଁ । ଆମ ହାତରେ ସମୟ ନାହିଁ । କାଲି ଆମକୁ ଯୁଦ୍ଧ

କରିବାକୁ ହେବ । ମୋ ପକ୍ଷରେ ତାହା ମଧ୍ୟ ଗୁରୁତର ବିଷୟ ନୁହେଁ । କିନ୍ତୁ ମୁଁ ଓ ମେରିଆ ଦୁହିଁଙ୍କ ପକ୍ଷରେ ବର୍ତ୍ତମାନର ସ୍ମୃତି ହିଁ ସମ୍ବଳ କରି ଜୀଇବା ସାର୍ଥକ ହେବ ।"

ଅଗଷ୍ଟିନ୍ କହିଲା "ଦିନଟାଏ ଓ ରାତିଟାଏ ହେଉଛି ବହୁତ ଅଳ୍ପ ସମୟ ।"

"ହଁ, କିନ୍ତୁ କାଲି, ତତ୍ପୂର୍ବ ରାତ୍ରୀ ଏବଂ ଗତ ରାତ୍ରୀ ।"

ଅଗଷ୍ଟିନ୍ କହିଲା "ମୁଁ କିଛି ସାହାଯ୍ୟ କରିବି ?"

"ନା, ଦରକାର ନାହିଁ । ଆମେ ଠିକ୍ ଅଛୁ ।"

"ଯଦି ତୁମ ପାଇଁ କିମ୍ବା ସେ ଲଣ୍ଡି ପାଇଁ କିଛି କରିପାରେ—"

"ନା ।"

"ପ୍ରକୃତରେ ଜଣେ ଆଉ ଜଣକ ପାଇଁ କିଛି କରିପାରେ ନାହିଁ ।"

"ନା, କରିବାର ବହୁତ ଅଛି ।"

"କଅଣ ?"

"ଆଜି କିମ୍ବା କାଲି ଯୁଦ୍ଧ ସମ୍ପର୍କରେ ଯାହା ଘଟୁ ନା କାହିଁକି ମୋ ଉପରେ ବିଶ୍ୱାସ ରଖିବୁ ଏବଂ ମୋ ଆଦେଶ ତୋତେ ଭୁଲ୍ ବୋଧ ହେଲେ ମଧ୍ୟ ପାଳନ କରିବୁ ।"

'ହଁ ବିଶ୍ୱାସ କରିବି । ଏଟା ହେବା ଅଶ୍ୱାରୋହୀଙ୍କ ସଙ୍ଗେ ସନ୍ଦର୍ଭ ଅଥଚ ଆମର ଘୋଡ଼ା ସବୁ ଏଠାରେ ନାହିଁ ।'

'ତାହା ବଡ଼ କଥା ନୁହେଁ । ତୁ ତ ଜାଣୁ ଆମେ ଗୋଟିଏ ଲକ୍ଷ୍ୟରେ କାମ କରୁଅଛୁ । ତାହା ହେଉଛି ଯୁଦ୍ଧ ଜିଣିବା । ଯୁଦ୍ଧ ନ ଜିଣିଲେ ବାକି ସବୁ ବୃଥା ହେବ । କାଲି ପାଇଁ ଆମର ଅତି ଗୁରୁତର କାମ ଅଛି । ଅସଲ ଗୁରୁତର କାମ । ଆମକୁ ଯୁଦ୍ଧ କରିବାକୁ ପଡ଼ିବ । ଯୁଦ୍ଧରେ ଶୃଙ୍ଖଳା ଏକାନ୍ତ ଆବଶ୍ୟକ । ବହୁ ବିଷୟ ଯାହା ଦେଖାଯାଉଛି ପ୍ରକୃତରେ ସେପରି ନୁହେଁ । ଆଦେଶ ମାନି ଚଳିବା, ନିର୍ଭରତା ଏବଂ ବିଶ୍ୱାସରୁ ଜାତ ହୋଇଥାଏ ।'

ଅଗଷ୍ଟିନ୍ କହିଲା, 'ମେରିଆ ଓ ତତ୍ସମ୍ବନ୍ଧୀୟ ସବୁକଥା ସତ୍ତ୍ୱେ ଯେତିକି ସମୟ ପାଇବ ସେତିକରେ ଦୁଇଜଣ ମଣିଷ ପରି ଚଳିବ । ଏଥିରେ ମୋର ସାହାଯ୍ୟ ଲୋଡ଼ା ହେଲେ ମୋତେ ହୁକୁମ ଦେବ କିନ୍ତୁ କାଲିକା କାମରେ ମୁଁ ବିନା ପ୍ରଶ୍ନରେ

ତୁମର ଆଦେଶ ପାଳନ କରିବ । ଯଦି କାଲର କାମପାଇଁ ଜୀବନ ଦେବାକୁ ଦରକାର ତେବେ ଖୁସି ମନରେ ଏବଂ ହାଲୁକା ପ୍ରାଣରେ ମୁଁ ଜୀବନ ଦେବାକୁ ପ୍ରସ୍ତୁତ ।'

ରବର୍ଟ ଜର୍ଡ଼ାନ୍ କହିଲେ 'ମୋର ମଧ୍ୟ ଧାରଣା ଏହାହିଁ ଅଟେ ତଥାପି ତୋ ମୁହଁରେ ଏକଥା ଶୁଣି ମନ ଭାରି ପ୍ରଫୁଲ୍ଲ ହୋଇଗଲା ।'

ଅଗଷ୍ଟିନ୍ ଉପରଆଡ଼େ ଥିବା ପ୍ରିମିଟିଭୋକୁ ଦେଖାଇ କହିଲା 'ଅଧିକନ୍ତୁ ସେ ଖୁବ୍ ନିର୍ଭର ଯୋଗ୍ୟ । ପିଲାର୍ ତୁମର ଧାରଣା ଅପେକ୍ଷା ବହୁତ ବହୁତ ବେଶୀ ବିଶ୍ୱସ୍ତା । ବୁଢ଼ା ଆନ୍‌ସେଲ୍‌ମୋ, ଆଣ୍ଡ୍ରିକ୍ ଓ ଇଲାଡ଼ିଓ ମଧ୍ୟ ସେହିପରି, ଖୁବ୍ ଶାନ୍ତଶିଷ୍ଟ ଅଥଚ ନିର୍ଭରଯୋଗ୍ୟ । ଆଉ ଫର୍ଣ୍ଣାଣ୍ଡୋ କଥା, ତୁମେ ତାହାକୁ କେତେଦୂର ମନେ କରିଛ ମୁଁ ଜାଣେନାହିଁ । ସେ ଖୁବ୍ ଲାପ୍‌ଭାରି ଲୋକ ଏକଥା ସତ । ତାହାର ଧରଣ ଦେଖିଲେ ମନେ ହେବ ସେ ଭାରି ଅଳସୁଆ, ଗାଡ଼ି ଉଠାଣି ଉଠିବା ବେଳେ ବଳଦ ଯେପରି ମଠେଇଥାଏ କିନ୍ତୁ ଯୁଦ୍ଧରେ ଯେଉଁ ହୁକୁମ ଦେବ ତାହା ପାଳନରେ ତାହାର ଆନୁଗତ୍ୟ ତୁମେ ନିଜେ ଦେଖିବ ।'

'ଆମ୍ଭେମାନେ ଭାଗ୍ୟବାନ୍ ।'

'ନା, ଆମର ଦୁଇଟି ଦୁର୍ବଳ ବସ୍ତୁ ରହିଛି । ସେ ଦୁଇଟି ହେଉଛି ଜିପ୍‌ସି ଜଣକ ଓ ପାବ୍‌ଲୋ । କିନ୍ତୁ ସୋର୍ଡୋର ଦଳଟି ଆମ ଦଳ ଅପେକ୍ଷା ଖୁବ୍ ଭଲ । ଆମେ ତ କିଛି ନୋହୁଁ କହିଲେ ଚଳେ ।'

'ତେବେ ତ ସବୁ ଭଲ ।'

ଅଗଷ୍ଟିନ୍ କହିଲା 'ହଁ, କିନ୍ତୁ ଯୁଦ୍ଧ ଆଜି ହୋଇଥାନ୍ତା କି ।'

'ମୁଁ ମଧ୍ୟ ସେଇଆ ଚାହେଁ, ଏ କାମ ଶେଷ କରିବା ଭଲ କିନ୍ତୁ ହୋଇପାରୁ ନାହିଁ ।'

'ତୁମେ କଅଣ ଅବସ୍ଥା ଖରାପ ମନେ କରୁଛ ?'

'ହେବା ଅସମ୍ଭବ ନୁହେଁ ।'

କିନ୍ତୁ ବର୍ତ୍ତମାନ ତ ଇଂରେଜ, ତୁମେ ବେଶ୍ ପ୍ରଫୁଲ୍ଲ ଅଛ ?'

'ହଁ ।'

'ମୁଁ ମଧ୍ୟ । ମେରିଆ ଓ ଅନ୍ୟ କଥା ସତ୍ତ୍ୱେ ସି ।'

'କାରଣ ଜାଣ ?'

'ନା ।'

'ମୁଁ ମଧ୍ୟ ଜାଣେନା । ବୋଧହୁଏ ଦିନର କର୍ମମତ । ଦିନଟା ଭଲ ଦେଖା ଯାଉଛି ।'

'କିଏ କହିବ ? ହୁଏତ ଆମକୁ ଯୁଦ୍ଧ ଆରମ୍ଭ କରିବାକୁ ପଡ଼ିପାରେ ।'

'ମୁଁ ମଧ୍ୟ ସେଇଆ ଭାବୁଛି । କିନ୍ତୁ ଆଜି ନୁହେ । ଯେତେ ଗୁରୁତ୍ୱପୂର୍ଣ୍ଣ ବା ସୁବିଧାପ୍ରଦ ହେଲେ ମଧ୍ୟ ଆମକୁ ଅଜି ଦିନଟା ଗଡ଼ାଇ ନେବାକୁ ହେବ ।' ଏହିକଥା କହୁଥିଲା ବେଳେ ସେ କଅଣ ଗୋଟାଏ ଶୁଣି ପାରିଲେ । ଶବ୍ଦଟା ବହୁଦୂରରୁ ଉଷ୍ମ ବାୟୁସ୍ତର ଭେଦ କରି ଉପରଆଡ଼ୁ ଆସୁଥିଲା । ସେ ଠିକ୍ କରି ନପାରି କାନ ଡେରି ଶୁଣିବାକୁ ଲାଗିଲେ । ସେ ପ୍ରିମିଟିଭୋ ଆଡ଼କୁ ଚାହିଁଲେ । ସେ ମଧ୍ୟ ଏହି ଆବାଜ ଶୁଣିବା ଭଳି ଜଣାପଡ଼ିଲା । ଏହାପରେ ଆଉ କିଛି ଶୁଣାଗଲା ନାହିଁ । ଦେବଦାରୁ ବଣ ଦେଇ ପବନ ସାଁ ସାଁ ବହୁଥାଏ । ସେ ଅତି ତତ୍ପରତାର ସହିତ କାନ ଡେରିଲେ । ସେ ପୁଣି ଅତି କ୍ଷୀଣ ଆବାଜ ପାଇଲେ । ସେ ଶୁଣିଲେ ଅଗଷ୍ଟିନ୍ ସ୍ୱଗତଃ କରୁଅଛି 'ମୋ ପକ୍ଷରେ ଏହା ଶୋକାବହ ନୁହେ । ମେରିଆକୁ ଆଉ କେଭେ ନ ପାଇଲେ ମଧ୍ୟ ମୋର କ୍ଷତି ନାହିଁ । ମୁଁ ସବୁଦିନ ପରି ବେଶ୍ୟା ସମ୍ପର୍କ କରି ପାରିବ ।'

କାନ ଡେରିବା ବନ୍ଦ କରି ରବର୍ଟ ଜର୍ଡାନ୍ କହିଲେ 'ବନ୍ଦ କର ।' ଅଗଷ୍ଟିନ୍ ହଠାତ୍ ତାଙ୍କୁ ଚାହିଁ ପଚାରିଲା 'କଥା କଅଣ ?'

ରବର୍ଟ ଜର୍ଡାନ୍ ମୁହଁରେ ହାତ ଦେଇ କାନ ଡେରି ଶୁଣିବାକୁ ଲାଗିଲେ । ଶବ୍ଦଟା ପୁଣି ଅତି କ୍ଷୀଣ ଭାବରେ ଅସ୍ପଷ୍ଟ ଶୁଷ୍କ ଓ ଦୂରରୁ ଆସୁଥିଲା । କିନ୍ତୁ ଏଥର ତାହାର ସ୍ୱରୂପ ଜଣା ପଡ଼ିଲା । ନିଃସନ୍ଦେହରେ ଏହା ଥିଲା ସ୍ୱୟଂକ୍ରିୟ ରାଇଫଲ୍ ଫୁଟିବା ଆବାଜ । ମନେ ହେଲା ବହୁ ଦୂରରେ ଯେପରି ଦଳ ଦଳ ଲୋକ ବାଡ଼ିଆ ଫୋଟକା ଫୁଟାଉ ଅଛନ୍ତି ।

ରବର୍ଟ ଜର୍ଡାନ୍ ଉପରଆଡ଼େ ପ୍ରିମିଟିଭୋ ମୁଣ୍ଡ ଉଠାଇବାରେ ଦେଖିଲେ । ସେ କାନରେ ହାତ ଦେଇ ଏମାନଙ୍କୁ ଚାହିଁଥାଏ । ସେ ରବର୍ଟ ଜର୍ଡାନ୍ଙ୍କୁ ଉପର ମୁଣ୍ଡରେ ପାର୍ବତ୍ୟ ଅଞ୍ଚଳ ପ୍ରତି ହାତ ଇସାରା କଲା ।

ରବର୍ଟ ଜର୍ଡାନ୍ କହିଲେ 'ସେମାନେ ସୋର୍ଡୋଠାରେ ଯୁଦ୍ଧ କରୁଅଛନ୍ତି ।'

ଅଗଷ୍ଟିନ୍ କହିଲା 'ତେବେ ଆମ ଲୋକଙ୍କୁ ରୁଣ୍ଡକରି ତାଙ୍କୁ ସାହାଯ୍ୟ କରିବାକୁ ଚାଲ ।'

ରବର୍ଟ ଜର୍ଡାନ୍ କହିଲେ 'ନା, ଆମେ ଏଇଠାରେ ରହିବା ।'

# ପଞ୍ଚବିଂଶ ପରିଚ୍ଛେଦ

ପ୍ରିମିଟିଭୋ ତାହାର ଜଗିବା ସ୍ଥାନରେ ରାଇଫଲ୍ ଉଠାଇ ଠିଆ ହୋଇଥାଏ । ରବର୍ଟ ଜର୍ଡ୍ଧାନ୍ ତାକୁ ମୁଣ୍ଡ ଝୁଙ୍କାଇଲେ କିନ୍ତୁ ପ୍ରିମିଟିଭୋ ବନ୍ଧୁକ ଲକ୍ଷ୍ୟ କରି ଠିଆ ରହିଥାଏ ଏବଂ କାନରେ ହାତ ଦେଇଥାଏ । ଏହାପରେ ସେ ହାତ ବଢ଼ାଇ ରହିଲା । ବୋଧହୁଏ ଭାବିଲା ଏମାନେ ତାହାର ଇଙ୍ଗିତ ବୁଝିପାରୁ ନାହାନ୍ତି ।

ରବର୍ଟ ଜର୍ଡ୍ଧାନ୍ କହିଲେ 'ବନ୍ଧୁକ ଧରି ଏଇଠି ଥା, ଯଦି ସେମାନେ ଏଆଡ଼େ ଆସିବା ନିଶ୍ଚିତଭାବେ ବୁଝିବୁ ତେବେ ଗୁଳି ଚଳାଇବୁ କିନ୍ତୁ ଯେଉଁ ଯାଏ ନ ଆସିବାଯାଏ ଗୁଳି ଫାଏର୍ କଦାପି କରିବୁ ନାହିଁ । ବୁଝିଲୁ ?'

'ହଁ, କିନ୍ତୁ—'

'କିନ୍ତୁ ଫିନ୍ତୁ ନାହିଁ । ମୁଁ ପରେ ବୁଝାଇ ଦେବି । ମୁଁ ବର୍ତ୍ତମାନ ପ୍ରିମିଟିଭୋ ପାଖକୁ ଯାଉଛି ।' ଆନ୍‌ସେଲ୍‌ମୋ ତାଙ୍କ ପାଖକୁ ଆସିବାରୁ ତାକୁ କହିଲେ 'ତୁ ମଧ୍ୟ ଅଗଷ୍ଟିନ୍ ପାଖରେ ରହ । ଅଶ୍ୱାରୋହୀମାନେ ପ୍ରକୃତରେ ନ ଆସିବା ଯାଏ ସେ ଗୁଳି ଚଳାଇବ ନାହିଁ । ସେମାନେ ଯଦି ଖାଲି ଆସନ୍ତି ତେବେ ତାଙ୍କୁ ଚୁପ୍‌ଚାପ୍ ଗଳିଯିବାକୁ ଦେବ । ଯଦି ନିହାତି ଗୁଳି ଚଳାଇବା ଦରକାର ପଡ଼େ ତେବେ ସେ ପାଦର ଗୋଡ଼ ଧରି ରଖିବୁ ଓ ତାକୁ ଗୁଳି ବଢ଼ାଇ ଦେଉଥିବୁ ।'

ବୁଢ଼ା କହିଲା 'ହଉ ତେବେ । ଲାଗାଞ୍ଜା କଥା—'

'ପରେ ହେବ ।'

ରବର୍ଟ ଜର୍ଡାନ୍ ସେହି ଧୂସର ଢେମା ପଥର ଧରି ଉପରକୁ ଚଢ଼ିଲେ । ଢେମା ଗୁଡ଼ାକ ଓଦା । ସେ ଉପରକୁ ଉଠିଗଲେ । ବରଫ ତରଳି ପଥର ସବୁ ଭିଜାଇ ଦେଇଥାଏ । ପଥରର ଉପର ଅଂଶ ଶୁଖି ଆସୁଥାଏ । ଚଢ଼ୁ ଚଢ଼ୁ ସେ ଘୁରିଆଡ଼ ଅନାଇ ଦେଖିଲେ । ବଣ ଭିତରେ ଓ ଖୋଲା ଜାଗା ଚପି ଗଡ଼ାଣି ଅଂଶକୁ ନଜର ଦେଲେ । ଏହାପରେ ଦୁଇଟା ବଡ଼ ପଥର ଫାଙ୍କ ମଧ୍ୟରେ ସେ ପ୍ରିମିଟିଭୋ ପାଖରେ ଠିଆ ହେବାରୁ ସେ କହିଲେ 'ସେମାନେ ସୋର୍ଡୋକୁ ଆକ୍ରମଣ କଲେଣି । ଆମେ ଏବେ କଅଣ କରିବା ?'

'କିଛି କରିବା ନାହିଁ ।' ରବର୍ଟ ଜର୍ଡାନ୍ ଜବାବ ଦେଲେ ।

ଏଠାରେ ସେ ଗୁଳି ଫୁଟା ଆବାଜ ସ୍ପଷ୍ଟ ଶୁଣି ପାରିଲେ । ସେ ଘୁରିଆଡ଼ ଘୁରି ଦୂର ଉପତ୍ୟକାକୁ ଅନାନ୍ତେ ଦେଖିଲେ ଦଳେ ଅଶ୍ୱାରୋହୀ ବଣ ଭିତରୁ ବାହାରି ବରଫାବୃତ୍ତ ଢାଲୁ ଅଂଶ ଚପି ଉଠାଣି ଉଠୁଅଛନ୍ତି । ଅଶ୍ୱାରୋହୀଙ୍କ ଲମ୍ବା ଧାଡ଼ି ବରଫ ପୃଷ୍ଠଭୂମିରେ କଳା ଦିଶୁଥାଏ । ସେମାନେ କୋଣିଆ ହୋଇ ଉଠାଣି ଉଠୁଥାନ୍ତି । ସେ ଦୁଇ ପଂକ୍ତି ଅଶ୍ୱାରୋହୀଙ୍କୁ ପାହାଡ଼ ଚୂଡ଼ା ଚପି ବଣ ଭିତରେ ପଶିବାର ସେ ଦେଖିଲେ ।

ପ୍ରିମିଟିଭୋ ଶୁଷ୍କ କଣ୍ଠରେ କହିଲା 'ଆମର ତାଙ୍କୁ ସାହାଯ୍ୟ କରିବା ଦରକାର ।

'ଏହା ଅସମ୍ଭବ, ସାରା ସକାଳ ମୁଁ ଏହାହିଁ ଆଶଙ୍କା କରୁଥିଲି ।'

'କିପରି ?'

ସେମାନେ ଘୋଡ଼ା ଚୋରି କରିବାକୁ ଯାଇଥିଲେ । ବରଫ ଯୋଗୁଁ ଅଟକି ଗଲେ ଏବଂ ବର୍ତ୍ତମାନ ସେମାନେ ତାଙ୍କୁ ଧରି ପାରିଛନ୍ତି ।'

ପ୍ରିମିଟିଭୋ କହିଲା 'ସେମାନେ ଆମର ସାଥି, ତାଙ୍କୁ ଏପରି ଛାଡ଼ି ଦେବା ଠିକ୍ ନୁହେଁ, ଆମେ ତାଙ୍କୁ ସାହାଯ୍ୟ କରିବା ଯିବା ।'

ରବର୍ଟ ଜର୍ଡାନ ତା କାନ୍ଧରେ ହାତ ଥୋଇ କହିଲେ 'ଆମେ କିଛି କରି ପାରିବୁ ନାହିଁ, ପାରିଲେ ମୁଁ ନିଶ୍ଚୟ କରନ୍ତି ।'

ଉପରୁ ସେ ସ୍ଥାନକୁ ପହଞ୍ଚିବା ପାଇଁ ଗୋଟିଏ ବାଟ ଅଛି । ଘୋଡ଼ା ଓ ତୋପ ଦୁଇଟା ନେଇ ଆମେ ସେ ବାଟରେ ଯାଇ ପାରିବା । ତଳେ ଥିବା ତୋପ ଆଉ ତୁମ ତୋପ ନେଇ ଆମେ ତାଙ୍କୁ ସାହାଯ୍ୟ କରିପାରୁ ।'

ରବର୍ଟ ଜର୍ଡାନ୍ କହିଲେ 'ଶୁଣ'—

• ପ୍ରିମିଟିଭୋ କହିଲା 'ମୁଁ ତ ସେଇଆ ଶୁଣୁଅଛି ।'

ଗୁଳି ଚାଲ ଶବ୍ଦ ଢେଉ ପରେ ଢେଉ ପରି ଉପରି ଉପରି ଶୁଣାଯାଉଥାଏ । ଏହାପରେ ଶୁଭିଲା ହାତବୋମାର ଭୀଷଣ ଆୱାଜ ଏବଂ ସ୍ୱୟଂକ୍ରିୟ ରାଇଫଲ୍‌ର ଟକ୍ ଟକ୍ ଶବ୍ଦ ।

ରବର୍ଟ ଜର୍ଡାନ୍ କହିଲେ 'ବରଫ ବୃଷ୍ଟି ବନ୍ଦ ହେଲାରୁ ସେମାନେ ହାରିବା କଥା । ହାରି ଗଲେଣି ମଧ୍ୟ । ଆମେ ଯଦି ସେଠାକୁ ଯାଉ ଆମେ ମଧ୍ୟ ହାରିବୁ । ଆମର ଯେତକ ସୈନ୍ୟଦଳ ଅଛି ତାକୁ ଦୁଇ ଭାଗ କରିବା ଅସମ୍ଭବ ।'

ପ୍ରିମିଟିଭୋର ଗାଲ ଓଠ ବେକରେ ଢେର ଢେର ଅଧା ପାଚିଲା ଦାଢ଼ି ମାଡ଼ିଥାଏ । ମୁହଁର ବାକି ଅଂଶ ଚେପଟା ଏବଂ ନାକଟା ଖଣ୍ଡିଆ । ଆଖି ଦୁଇଟା କୋଟରଗତ ।

ରବର୍ଟ ଜର୍ଡାନ ଦେଖିଲେ ଯେ ତାହାର ଦାଢ଼ି ମୁହଁ କୋଣରେ ଓ ବେକ ଉପରେ ଥରୁଅଛି । ସେ କହିଲା 'ଶୁଣ, ଏହା ଧ୍ୱଂସ କାଣ୍ଡର ଚୂଡ଼ାନ୍ତ ।'

ରବର୍ଟ ଜର୍ଡାନ୍ କହିଲେ 'ହଁ ଯଦି ସେହି ଖୋଲ ଘେରି ପକାଇଥିବେ ତେବେ ସମସ୍ତେ ଧ୍ୱଂସ ପାଇବେ । ହୁଏତ କେହି କେହି ପଳାଇ ଯାଇଥିବେ ।'

ପ୍ରିମିଟିଭୋ କହିଲା "ବର୍ତ୍ତମାନ ଆମେ ଯଦି ଯାଉଁ ତେବେ ପଛପଟୁ ଚଢ଼ାଉ କରିପାରୁଁ । ଆମ ଭିତରୁ ୪ ଜଣ ଘୋଡ଼ା ନେଇ ଯାଆନ୍ତୁ ।"

"ତା'ପରେ କଅଣ ହେବ ? ତୁମେ ପଛପଟୁ ଆକ୍ରମଣ କରି କଅଣ କରିବ ?

"ଆମେ ସୋର୍ଡୋର ଲୋକଙ୍କ ସହିତ ମିଶି ପାରିବା ।'

"ଖାଲି ମରିବ । ସୂର୍ଯ୍ୟଙ୍କୁ ଚାହଁ । ଦିନ ବହୁତ ବାକିଅଛି ।"

ଆକାଶ ମେଘ ଶୂନ୍ୟ ଓ ନିର୍ମଳଥିଲା । ବହୁତ ଟାଣ ଖରା ତାଙ୍କ ପିଠିରେ ପଡ଼ୁଥିଲା । ମୁକ୍ତ ଅଧିତ୍ୟକା । ଦକ୍ଷିଣ ଗଡ଼ାଣିରେ ଗୁଡ଼ାଏ ଶୁଷ୍କ ଜାଗା ଦେଖା ଯାଉଥିଲା । ଦେବଦାରୁ ଗଛରୁ ସବୁ ବରଫ ଝଡ଼ିଯାଇଥାଏ । ବଡ଼ ବଡ଼ ଡେମା ଓଦା ପଥରମାନ ବର୍ତ୍ତମାନ ଖରାରେ ତାତି ଉଠିଥାଏ ।

ରବର୍ଟ ଜର୍ଡାନ୍ କହିଲେ 'ଆମକୁ ଏହା ସହ୍ୟ କରିବାକୁ ହେବ । ଯୁଦ୍ଧରେ ଏସବୁ ଘଟିଥାଏ ।"

"ତେବେ କଅଣ ସତକୁ ସତ ଆମେ କିଛି କରି ପାରିବୁ ନାହିଁ ? ମୋ ସଙ୍ଗରେ ଆଉ ଜଣେ ଲୋକ ଦେଇ ଗ୍ରେଟ ମେସିନଗନ୍‌ଟା ପଠାଇ ପାରିବ ନାହିଁ ?' ପ୍ରିମିଟିଭୋର ପ୍ରଶ୍ନ ଶୁଣିରୁ ରବର୍ଟ ଜର୍ଡାନ୍ ଜାଣିଲେ ଯେ ସେ ତାଙ୍କୁ ବିଶ୍ୱାସ କରୁଅଛି । ତେଣୁ କହିଲେ "ତାହା କିଛି କାମରେ ଆସିବ ନାହିଁ । ଆମେ ସମସ୍ତେ ଗଲେ ମଧ୍ୟ କିଛି କରି ପାରିବୁ ନାହିଁ ।" ସେ କଅଣ ଗୋଟାଏ ଦେଖିଲେ ବୋଲି ଭାବିଲେ । ସେ ଜିନିଷଟା ସେ ଅନ୍ୱେଷଣ କରୁଥିଲେ କିନ୍ତୁ ଏହାଥିଲା ଗୋଟିଏ ପବନରେ ବିକ୍ଷିପ୍ତ ହୋଇ ପଡ଼ିବା ଛଞ୍ଚାଣ । ଛଞ୍ଚାଣଟା ବଣ ଭିତରୁ ଉପରକୁ ଉଡ଼ି ଅଦୃଶ୍ୟ ହୋଇଗଲା । ଠିକ୍ ଏତିକିବେଳେ ବନ୍ଧୁକ ଆବାଜ ଦୁଇଗୁଣ ବଢ଼ିଗଲା ଏବଂ ହାତବୋମାର ଘନଘନ ନିନାଦ ଶବ୍ଦ ଆକାଶ ଫଟାଇ ଦେଲା । ପ୍ରିମିଟିଭୋ ଅତି ବ୍ୟାକୁଳରେ ଭଗବାନଙ୍କ କୃପାଭିକ୍ଷା କରି କାନ୍ଦି ଉଠିଲା ଏବଂ ଶତ୍ରୁପକ୍ଷଙ୍କ ୧୪ପୁରୁଷକୁ ଗାଳି, ଅଭିଶାପ ଦେବାକୁ ଲାଗିଲା । ରବର୍ଟ ଜର୍ଡାନ୍ ତାକୁ ସାନ୍ତ୍ୱନା ଦେଇ ବୁଝାଇଲେ ଯେ ଶୀଘ୍ର ତାକୁ ନିଜେ ଯୁଦ୍ଧ କରିବାକୁ ପଡ଼ିବ ଏଣୁ ଅଧୀର ହେଲେ ଚଳିବ ନାହିଁ । ପଥର ଢେମା ଉପରେ ବଡ଼ କଷ୍ଟରେ ପିଲାର୍ ଚଢ଼ି ଚଢ଼ି ତାଙ୍କଆଡ଼କୁ ଆସିବାର ଦେଖାଗଲା । ଅଗଷ୍ଟିନ୍ ମଧ୍ୟ ତୁଆକୁ ତୁଆ ଗୁଳି ଆବାଜ ଶୁଣିଲାକ୍ଷଣି ଭଗବାନଙ୍କୁ ଡାକୁଥାଏ ଏବଂ ଶତ୍ରୁପକ୍ଷକୁ ଅଭିଶାପ ଦେଉଥାଏ । ରବର୍ଟ ଜର୍ଡାନ୍ ପିଲାର୍‌କୁ ସାହାଯ୍ୟ କରିବେ ବୋଲି ତଳକୁ ଖସି ଆସିଲେ । ସେ ପିଲାର୍‌ର ଦୁଇହାତ ଧରି ଶେଷ ପଥର ଉପରୁ ଶୂନ୍ୟେ ଶୂନ୍ୟେ ଟେକି ନେଇ ପଚାରିଲେ "କଥା କଅଣ ?" ପିଲାର୍ ବେକରେ ଝୁଲାଇଥିବା ଦୂରବୀକ୍ଷଣ ବାହାର କରି ତାଙ୍କୁ ଦେଇ କହିଲା "ତୁମ ଯନ୍ତ୍ର ନିଅ । ସେମାନେ ସୋର୍ଡୋକୁ ଆକ୍ରମଣ କଲେ । ବିଚରା ସୋର୍ଡୋ ।" ପାହାଡ଼ ଚଢ଼ିବାଯୋଗୁ ପିଲାର୍ ସଁ ସଁ ନିଶ୍ୱାସ ମାରୁଥାଏ । ସେ ରବର୍ଟ ଜର୍ଡାନ୍‌ଙ୍କ ହାତ ଶକ୍ତ ଭାବରେ ଧରି ତାଆଡ଼କୁ ନିରୀକ୍ଷଣ କଲା । ତା ପରେ ଯୁଦ୍ଧର ଫଳାଫଳ ପଚାରିଲା । ଫଳ ଅତି ଖରାପ ବୋଲି ଶୁଣିପାରି ସେ ପୁଣି ସୋର୍ଡୋ ପାଇଁ ଗଭୀର ସହାନୁଭୂତି ପ୍ରକାଶ କରି କହିଲା ଯେ ପୁରା ଅଶ୍ୱାରୋହୀ ଦଳ ଏଠାକୁ ଆସିବା କଥା ସେ ରାଫେଲ୍‌ଠାରୁ ଶୁଣିଅଛି । ରବର୍ଟ ଜର୍ଡାନ୍ କହିଲେ ଗୋଟିଏ ଅଶ୍ୱାରୋହୀ ଦଳର ସାମାନ୍ୟ ଅଂଶ ଏବଂ ଜଣେ ଟହଲଦାର ଆସିଥିଲେ । ସେମାନେ ଏଠାରେ ମେସିନ୍‌ଗନ୍ ଲୁଚାଇ ରଖିଥିବା ସ୍ଥାନ ପର୍ଯ୍ୟନ୍ତ ଆସିଥିଲେ । ଅଗଷ୍ଟିନ୍‌ର ଗୋଟିଏ ଗୋଡ଼ ବାହାରକୁ ବାହାରି ପଡ଼ିଥିଲା ସେପାଏ ସେମାନେ ଆସିଥିଲେ, ଏପରିକି ତୋପ ନଳୀ ତାଙ୍କ ଘୋଡ଼ା ଖୁରାରେ ଲାଗିଲାଭଳି ଥିଲା । ଯାହାହେଉ ଅତି ଅଳ୍ପକେ ସବୁ ରକ୍ଷା ପାଇଲା

ଏବଂ ସେମାନେ ଫେରିଗଲେ । ସେ ପିଲାର୍‌କୁ ବନ୍ଦୋବସ୍ତ କରି ଯାଇଛି କି ନାହିଁ ପଚାରିବାରୁ ସେ ସବୁ ଠିକ୍ କରାଯାଇଛି ଜବାବ ଦେଇ ପାବ୍‌ଲୋର ଖବର ପଚାରିଲା । ସେ କହିଲେ "ପାବ୍‌ଲୋ ଅଶ୍ୱାରୋହୀଙ୍କ ୪୫ ମିନଟ୍ ଆଗରୁ ଯାଇଥିଲା । ସେମାନେ ତାହାର ଚିହ୍ନ ଅନୁସରି ଯାଇଅଛନ୍ତି ।"

ପିଲାର୍ ତାଙ୍କ ହାତ ଧରି ରହିଥିଲା । ହାତ ଛାଡ଼ିଦେଇ ଟିକିଏ ହସି ଉତ୍ତର ଦେଲା "ପାବ୍‌ଲୋର ପତା ଏମାନେ ପାଇବେ ନାହିଁ । ମୋର ଦୁଃଖ ସୋର୍ଡୋପାଇଁ । ଆମେ କିଛି କରିପାରିବା କି ?" ରବର୍ଟ ଜର୍ଡାନ୍ ନିରୂପାୟ ବୋଲି କହିବାରୁ ପିଲାର୍ କହିଲା "ସୋର୍ଡୋ ମୋର ପ୍ରିୟବ୍ୟକ୍ତି । ଆମେ ଯେ ନିରୂପାୟ ଏଥିରେ ତୁମେ ନିସନ୍ଦେହ ତ ?"

"ହଁ ମୁଁ ଅନେକଗୁଡ଼ିଏ ଅଶ୍ୱାରୋହୀ ସୈନ୍ୟ ଦେଖିଲି ।"

"ଏଠାକୁ ଯେତେଜଣ ଆସିଥିଲେ ତତୋଧିକ ?"

"ହଁ ଆଉ ଏକ ପଲଟନ୍ ସେଆଡ଼େ ଗଲେ ।"

ପୁଣି ବନ୍ଧୁକର ଘନଘନ ଆବାଜ ଶୁଣି ସେମାନେ କାନ ଡେରିଲେ ଏବଂ ସୋର୍ଡୋପାଇଁ ଅତି ମର୍ମବେଦନା ଅନୁଭବ କଲେ । ପ୍ରିମିଟିଭୋ ସୋର୍ଡୋ ପାଖକୁ ଯିବାକୁ ବାହାରିବା କଥା ରବର୍ଟ ଜର୍ଡାନ୍ କହିବାରୁ ପିଲାର୍ କହିଲା "ତୁ କଅଣ ପାଗଳ ହେଲୁ କି ? ଆମର ଏଠାର ସ୍ଥାନଗୁଡ଼ିକମାନେ କି ଦରିଦ୍ର ହେଲେ କି ?" ପ୍ରିମିଟିଭୋ ସାହାଯ୍ୟ କରିବା କଥା ଉଠାଇବାରୁ ପିଲାର୍ କହିଲା "ଆମର ଏଇଠାରେ ମରିବାର କେଉଁ ଉପଲକ୍ଷ ଅଭାବ ଅଛି ଯେ ତୁ ଆଉ ଗୋଟାଏ ଖୋଜି ବାହାରିଛୁ ।"

ରବର୍ଟ ଜର୍ଡାନ୍ ପିଲାର୍ ଆଡ଼କୁ ଅନାଇଲେ । ତାହାର ଚେହେରା, ତାହାର ଚକ୍ଷୁ, ମୁଖ ଏବଂ ହାସ୍ୟଧରଣକୁ ସେ ମୁଗ୍ଧ ଦୃଷ୍ଟିରେ ଦେଖିବାକୁ ଲାଗିଲେ ।

ପିଲାର୍ ପ୍ରିମିଟିଭୋକୁ କହିଲା "ଦେଖୁଛି ବାଳ ପାଚିଲେ ମଧ୍ୟ ତୋ ପିଲାବୁଦ୍ଧି ଯାଇନାହିଁ । ତୋତେ ମଣିଷ ପରି ଦମ୍ଭଧରି କାମ କରିବାକୁ ପଡ଼ିବ ।"

ପ୍ରିମିଟିଭୋ ରାଗରେ ଫୁଲି କହିଲା "ମଣିଷର ଟିକିଏ ସମବେଦନା ଓ ସାହାଯ୍ୟ ପ୍ରବୃତ୍ତି ନିମିତ୍ତ ତାକୁ ବିଦ୍ରୂପ କରିବା ଉଚିତ ନୁହେ ।"

ପିଲାର୍ କହିଲା "ମଣିଷ ନିଜର ହୃଦୟକୁ ସଞ୍ଜତ କରିବା ଉଚିତ । ତୁ ତ ଆମ ସହିତ ଶୀଘ୍ର ମରିବୁ । ତେବେ ଅଚିହ୍ନା ଲୋକ ଗହଣରେ ମୃତ୍ୟୁ ଲୋଡ଼ିବୁ

କାହିଁକି ? ତୋ କଳ୍ପନାଶକ୍ତି ଏଠି ଲୋଡ଼ା ନାହିଁ । ଏକା ଜିପ୍‌ସି ଜଣକ ଆମ ସଭିଙ୍କ ପାଇଁ କଳ୍ପନା କରିବାକୁ ସମର୍ଥ । ସେ ତ ଖଣ୍ଡେ ଉପନ୍ୟାସ ମୋତେ କହିଗଲା ।"

ପ୍ରିମିଁଟିଭୋ କହିଲା "ତୁମେ ଆଖିରେ ଯଦି ଦେଖିଥାନ୍ତ ତେବେ ଉପନ୍ୟାସ ବୋଲି କହନ୍ତ ନାହିଁ । ସମସ୍ତଙ୍କ ଅତ୍ୟନ୍ତ ଗୁରୁଗାମ୍ଭୀର୍ଯ୍ୟ ପୂର୍ଣ୍ଣଥିଲା ।"

ପିଲର୍ କହିଲା "ଜଣ କେତେ ଘୋଡ଼ସବାର ଆସିଥିଲେ ଓ ଚାଲିଗଲେ । ଏତିକରେ ତୁମେ ସବୁ ବୀରତ୍ୱର ଆସ୍ଫାଳନ କରୁଅଛ । ଏଇଥିପାଇଁ ତ ଆମର ଏଠାରେ ଏତେ ବେଶୀ ନିଷ୍କର୍ମା ଦଶା ।"

ପ୍ରିମିଁଟିଭୋ ଅବଜ୍ଞାରେ ଜବାବ ଦେଲା "ସୋର୍ଡ୍ରୋର ଅବସ୍ଥା ସାଙ୍ଘାତିକ ନୁହେଁ କି ? ପବନରେ ଯେତେଥର ଗୁଳି ଫାଏର୍ ଆବାଜ ଶୁଣା ଯାଉଥିଲା ପ୍ରିମିଁଟିଭୋ ସେତେଥର ବେଦନାରେ ବ୍ୟାକୁଳ ହୋଇ ଉଠୁଥିଲା । ତାହାର ଏକାନ୍ତ ଇଚ୍ଛାଥିଲା ହୁଏତ ସେ ନିଜେ ସୋର୍ଡ୍ରୋକୁ ସାହାଯ୍ୟ ଦେବାକୁ ଧାଇଁଯିବ, ନୁହେଁ ତ ପିଲାର୍ ନିଜେ ଯିବ ।"

ପିଲାର୍ କହିଲା "ଯାହା ଘଟିବାର ଘଟିଲା । ଜଣକର ଦୁର୍ଭାଗ୍ୟ ନିମିତ୍ତ ଦମ୍ଭ ହରାଇବା ଉଚିତ ନୁହେଁ ।"

ପ୍ରିମିଁଟିଭୋ କହିଲା "ତୋ କଥା ତୋତେ ଶୋଭାପାଏ । ଗୁଣ୍ଡାଏ ମାଇକିନିଆ ଅଛନ୍ତି ଯେଉଁମାନଙ୍କର ନିର୍ବୋଧତା ଓ ପାଶବିକତା ଅସହ୍ୟ ।"

ପିଲାର୍ କହିଲା "ସେହି କ୍ଲୀବମାନଙ୍କୁ ସମର୍ଥନ ଓ ସାହାଯ୍ୟ କରିବା ବଡ଼ କଥା ନୁହେଁ । ଆଉ ଯଦି କିଛି ଦେଖିବାର ନାହିଁ ତ ମୁଁ ଯାଉଛି ।"

ଠିକ୍ ଏତିକିବେଳେ ମୁଣ୍ଡ ଉପରେ ଉଡ଼ାଜାହାଜ ଯିବାର ଶବ୍ଦ ରବର୍ଟ ଜର୍ଡାନ୍ ଶୁଣି ପାରିଲେ । ସେ ଆକାଶକୁ ଚାହିଁ ଦେଖିଲେ ଯେ ସକାଳର ସେହି ପର୍ଯ୍ୟବେକ୍ଷକ ବିମାନ ଖଣ୍ଡିକ ବହୁଉର୍ଦ୍ଧ୍ୱରେ ଯାଉଅଛି । ବର୍ତ୍ତମାନ ଲାଇନ୍‌ଆଡ଼ୁ ଫେରି ଘାଟିଆଡ଼େ ଯାଉଅଛି ।

ପିଲାର୍ କହିଲା "ଏଟା ବଡ଼ ଦୁର୍ଲକ୍ଷଣର ସଙ୍କେତ । ସେଠାରେ କଅଣ ଘଟୁଅଛି ଇଏତ କଅଣ ଦେଖିପାରିବ ?"

ରବର୍ଟ ଜର୍ଡାନ୍ ଜବାବ ଦେଲେ "ଅନ୍ଧ ନ ହେଲେ ନିଶ୍ଚୟ ଦେଖିପାରିବ ।"

ରୂପାପର ସୂର୍ଯ୍ୟ କିରଣରେ ଚକ୍‌ଚକ୍ କରି ଉଡ଼ାଜାହାଜଟି ଖୁବ୍ ଉଚ୍ଚରେ ଉଡ଼ି ଯାଉଥିବା ସେମାନେ ଲକ୍ଷ୍ୟ କଲେ । ଏହା ବାମପଟରୁ ଆସୁଥିଲା ଏବଂ ତାହାର ଗ୍ଭଳନଚକ୍ର ଦୁଇଟି ଦ୍ୱାରା ସୃଷ୍ଟ ଗୋଲାକାର ଆଲୋକ ଦେଖା ଯାଉଥିଲା ।

ରବର୍ଟ ଜର୍ଡ଼ାନ୍ ଅନ୍ୟମାନଙ୍କୁ ମାଟିରେ ଲେପଟି ଯିବାକୁ କହିଲେ । ଏହା ପରେ ଉଡ଼ାଜାହାଜ ମୁଣ୍ଡ ଉପରେ ପହଞ୍ଚିଗଲା । ତାହାର ଗୁମ୍‌ଗୁମ୍ ଶବ୍ଦ ଅତି ପ୍ରଖର ହୋଇ ଉଠିଲା । ପରେ ଏ ଖଣ୍ଡି ଉପତ୍ୟକାର ଅଗ୍ରଭାଗଆଡ଼େ ଗ୍ଭଲିଗଲା । କ୍ରମେ ଏହା ନିଜ ଗତିପଥରେ ଦୂରକୁ ଯାଇ ଅଦୃଶ୍ୟ ହୋଇଗଲା ଏବଂ କିଛିକ୍ଷଣ ପରେ ପୁଣି ୨ଥର ମଣ୍ଡଳାକାରରେ ବୁଲି ଲେଉଟି ଆସି ସେଗୋଭିଆଆଡ଼େ ଗ୍ଭଲିଗଲା । ରବର୍ଟ ଜର୍ଡ଼ାନ୍ ପିଲାର୍‌କୁ ଗ୍ଭହିଁ ଦେଖନ୍ତି ଯେ ତା' କପାଳ ଘର୍ମସିକ୍ତ ଏବଂ ସେ ମୁଣ୍ଡ ହଲାଉଅଛି । ତଳ ଓଠକୁ ଦାନ୍ତରେ କାମୋଡ଼ି । ରହିଅଛି ପିଲାର୍ କହିଲା "ପ୍ରତ୍ୟେକଙ୍କ ପାଇଁ କିଛି ନା କିଛି ଅଛି । ମୋ ପାଇଁ ସେଗୁଡ଼ିକ ।" ତା କଥା ଶୁଣି ପ୍ରିମିଟିଭୋ ବିଦ୍ରୂପ କରି ପଗ୍ଭରିଲା 'ମୋ ଭୟ ତୋତେ ଗ୍ରାସିଲା କି ?'

ପିଲାର୍ ତା କାନ୍ଧରେ ହାତ ଥୋଇ କହିଲା "ନାହିଁ, ଭୟ ବୋଲି ଜିନିଷ ତୋର ନାହିଁ । ଏକଥା ମୁଁ ଜାଣେ । ତୋ ସହିତ ନିଷ୍ଠୁରଭାବରେ ବିଦ୍ରୂପ କରିଥିବାରୁ ମୁଁ ଦୁଃଖିତ । ଆମେ ସମସ୍ତେ ଏକା ଉଡ଼େଇରେ ଆଉଟା ହେଉଅଛୁଁ ।" ଏହାପରେ ପିଲାର୍ ରବର୍ଟ ଜର୍ଡ଼ାନ୍‌କୁ କହିଲା "ମୁଁ ଯାଉଛି ମଦ ଓ ଖାଦ୍ୟ ପଠାଇ ଦେବ । ଆଉ କିଛି ଲୋଡ଼ାଥିଲେ କୁହ ।"

"ଏଇକ୍ଷଣି କିଛି ଦରକାର ନାହିଁ । ଅନ୍ୟମାନେ କାହାନ୍ତି ?"

ପିଲାର୍ କ୍ଷୀଣ ହସି କହିଲା "ତୁମର ହାତରପାଞ୍ଚ ସୈନ୍ୟ ଆଉ ଘୋଡ଼ାତଳେ ଠିକ୍ ରହିଅଛି । ସମସ୍ତେ ଲୁଚିକରି ଅଛନ୍ତି କିନ୍ତୁ ସବୁପ୍ରକାରେ ପ୍ରସ୍ତୁତ । ତୁମ ଜିନିଷପତ୍ର ମେରିଆ ରଖିଅଛି ।"

"ଯଦି ଦୈବକ୍ରମେ ଏଠି ଉଡ଼ାଜାହାଜ ଆକ୍ରମଣ ଘଟେ ତେବେ ମେରିଆକୁ ଗୁହା ଭିତରେ ରଖିବ ।"

ପିଲାର୍ ଜବାବ ଦେଲା "ଆଜ୍ଞା ମଣିମା । ତୁମ ଜିପ୍‌ସି ଜଣକ ଉପହୃତ । ମୁଁ ତାକୁ ଛତୁ ଗୋଟାଇବାକୁ ପଠାଇଅଛି । ଠେକୁଆ ମାଂସ ସଙ୍ଗେ ଛତୁ ରାନ୍ଧି ଖାଇବା ବଡ଼ ଉପାଦେୟ । ବର୍ତ୍ତମାନ ବହୁତ ଛତୁ ଫୁଟିଅଛି । ମୁଁ ଭାବିଲି ଠେକୁଆ ସହିତ ଛତୁ ଖାଇବା । କିନ୍ତୁ ଦିନେ ଦୁଇଦିନ ପରେ ଖାଇଲେ ତାହାର ସ୍ୱାଦୁ ବଢ଼ି ଉଠନ୍ତା ।"

ରବର୍ଟ ଜର୍ଡାନ୍ କହିଲେ "ଆଜି ଖାଇବା ମୋ ମତରେ ଭଲ ।" ପିଲାର୍ ନିଜର ବିଶାଳ ବାହୁକୁ ତାଙ୍କ କାନ୍ଧରେ ଥୋଇଲା । କାନ୍ଧ ଉପର ଦେଇ ସାନ ମେସିନ୍‌ଗନ୍ ପଡ଼ି ଯାଇଥାଏ । ଏହାପରେ ସେ ତାଙ୍କର ମୁଣ୍ଡ ବାଳରେ ଅଙ୍ଗୁଳି ସଞ୍ଚାଳନ କରି କହିଲା "ରନ୍ଧା ସରିଗଲେ ମୁଁ ମେରିଆ ହାତରେ ଖାଦ୍ୟ ପଠାଇ ଦେବି ।"

ବର୍ତ୍ତମାନ ଦୂରରୁ ଆଉ ଘନଘନ ବନ୍ଧୁକ ଆବାଜ ଆସୁ ନଥାଏ । କ୍ୱଁ୍ୟା ଭ୍ୱଁ୍ୟା ଥରେ ଅଧେ ଶୁଭୁଥାଏ । ପିଲାର୍ ପଚାରିଲା "ଆକ୍ରମଣ ଶେଷ ହୋଇଗଲା କି ?" ରବର୍ଟ ଜର୍ଡାନ୍ କହିଲେ "ନାହିଁ । ଆମେ ଯେଉଁ ଶବ୍ଦ ପାଇଥିଲୁ ସେଥିରୁ ଜଣାପଡ଼େ ଯେ ସେମାନେ ଆକ୍ରମଣ କରି ମରିଯାଇ ହୋଇଥିଲେ । ବର୍ତ୍ତମାନ ବୋଧହୁଏ ଆକ୍ରମଣକାରୀମାନେ ସେମାନଙ୍କୁ ଘେରି ଯାଇଅଛନ୍ତି । ସେମାନେ ଲୁଚି ରହି ଉଡ଼ାଜାହାଜକୁ ଅପେକ୍ଷା କରୁଅଛନ୍ତି ।"

ପିଲାର୍ ପ୍ରିମିଟିଭୋକୁ କହିଲା "ଏଥର ବୁଝିଲୁ ତ ? ତୋତେ ଅପମାନ କରିବା ଉଦ୍ଦେଶ୍ୟରେ ମୁଁ କିଛି କହି ନଥିଲି ।"

ପ୍ରିମିଟିଭୋ ଜବାବ ଦେଲା "ଏହା ଅପେକ୍ଷା ବହୁତ ଖରାପ ବ୍ୟବହାର ତୋଠାରୁ ପାଇ ମୁଁ ହଜମ୍ କରିଅଛି । ତୋ ତୁଣ୍ଡଟା ହିଁ ସେମିତି ଖରାପ କିନ୍ତୁ ମୁହଁ ସମ୍ଭାଳି କଥା କହିବୁ । ମନେ ରଖିବୁ ଯେ ସୋର୍ଡ଼ୋ ମୋର ଅତି ଅନ୍ତରଙ୍ଗ ବନ୍ଧୁ ।"

ପିଲାର୍ କହିଲା "ଖାଲି ତୋର ? ମୋର ନୁହେ ? ମାଙ୍କଡ଼ମୁହାଁ, ଯୁଦ୍ଧବେଳେ ଲୋକ ମନ କଥା କହିପାରନ୍ତି ନାହିଁ ! ଆମର ବିପଦ କିଛି ଊଣା ନୁହେ । ଏହା ସାଙ୍ଗକୁ ସୋର୍ଡ଼ୋର ବିପଦ ମିଶାଇଲେ ହେବ ବୋଝ ଉପରେ ନଳିତାବିଡ଼ା ।" ପ୍ରିମିଟିଭୋ ରାଗରେ ନୀରବ ହୋଇଗଲା ।

ପିଲାର୍ କହିଲା "ତୋ ପକ୍ଷରେ ବ୍ୟାୟାମ ଦରକାର । ବର୍ତ୍ତମାନ ମୁଁ ଖାଦ୍ୟ ପ୍ରସ୍ତୁତ କରିବାକୁ ଯାଉଅଛି ।"

ରବର୍ଟ ଜର୍ଡାନ୍ ତାକୁ ପଚାରିଲେ "ସେ ସବୁ କାଗଜପତ୍ରର ପ୍ରମାଣ ପାଇଲି ତ ?"

ପିଲାର୍ କହିଲା "ଦେଖ ତ କେଡ଼େ ଓଲି ମୁଁ । ସେକଥା ଭୁଲି ଯାଇଥିଲି । ମୁଁ ତାହା ମେରିଆ ହାତରେ ପଠାଇ ଦେଉଅଛି ।"

# ଷଷ୍ଠବିଂଶ ପରିଚ୍ଛେଦ

ଉଡ଼ାଜାହାଜ ପୁଣି ଆସିବାବେଳେ ଦିନ ୩ଟା ବାଜି ଯାଇଥିଲା । ୧୨ଟା ବେଳେ ବରଫ ତରଳିଯାଇ ପଥର ସବୁ ଖରାରେ ତାତି ଉଠିଥାଏ । ଆକାଶ ମେଘ ଶୂନ୍ୟ । ରବର୍ଟ ଜର୍ଡାନ୍ କାମିଜ୍ ଫିଟାଇ ପିଠି ସୂର୍ଯ୍ୟଆଡ଼େ କରି ପଥର ଉପରେ ବସିଥାନ୍ତି ଏବଂ ନିହତ ଅଶ୍ୱାରୋହୀ ପକେଟରୁ ମିଳିଥିବା ଚିଠିପତ୍ର ପଢ଼ୁଥାନ୍ତି । ଥରକୁ ଥର ସେ ପଢ଼ା ବନ୍ଦକରି ବଣର ଗଡ଼ାଣିଆ ଅଂଶକୁ ଏବଂ ମାଳଭୂମିକୁ ଅନାଉଥାନ୍ତି ଏବଂ ପୁଣି ଚିଠି ପଢ଼ିବାରେ ଲାଗିଥାନ୍ତି । ଆଉ କେହି ଅଶ୍ୱାରୋହୀ ଆସି ନଥିଲେ । ମଝିରେ ମଝିରେ ସୋର୍ଡ଼ୋର ଆଡ଼ୁଆଡ଼ୁ ବନ୍ଧୁକ ଆବାଜ ଶୁଣାଯାଉଥିଲା ମାତ୍ର ତାହା କ୍ୱଁ‌ୟା ଭ୍ୱଁୟା ସ୍ୱରରେ ।

କାଗଜପତ୍ର ପଢ଼ି ସେ ଜାଣିପାରିଲେ ଯେ ଯୁବକଟି ନାଭାରାର ଟାଫଲା ଅଞ୍ଚଳର ଅଧିବାସୀ, ବୟସ ୨୧ବର୍ଷ, ଅବିବାହିତ ଏବଂ ଜଣେ କମାରର ପୁଅ । ସେ ଏନ୍ ଅଶ୍ୱାରୋହୀ ପଲଟନ୍‌ଭୁକ୍ତ । ଏ କଥାରେ ରବର୍ଟ ଜର୍ଡାନ୍ ବିସ୍ମିତ ହେଲେ କାରଣ ସେ ଜାଣିଥିଲେ ଯେ ଏହି ପଲଟନ୍‌ଟା ଉତ୍ତର ଦିଗରେ ଅବସ୍ଥାପିତ । ଲୋକଟା କାର୍ଲିଷ୍ଟର ସମର୍ଥକ ଏବଂ ଯୁଦ୍ଧର ପ୍ରାରମ୍ଭରେ ଇରନ୍ ଯୁଦ୍ଧରେ ଆହତ ହୋଇଥିଲା ।

ରବର୍ଟ ଜର୍ଡାନ୍ ଭାବିଲେ ଯେ ଖୁବ୍ ସମ୍ଭବ ସେ ଏହି ଯୁବକକୁ ପାମ୍‌ପ୍ଲୋନାରେ ଫେରିଆ ଷଣ୍ଢ ଲଢ଼େଇ ମଞ୍ଚରେ ଷଣ୍ଢଦଳ ଆଗେ ଆଗେ ଯିବାର ଦେଖିଥିଲେ । ଯାହାର ଲଢ଼େଇରେ ମରିବା କଥା ସେ ଅନ୍ୟତ୍ର ମରି ନପାରେ । ଏହାପରେ ସେ ପଢ଼ିବାକୁ ଲାଗିଲେ ।

ପ୍ରଥମ ଟେଲେଗ୍ରାମ ଚିଠି ଅତି ସାବଧାନରେ ଲିଖିତ, ଅତି ମାମୁଲି ଭାବରେ ସ୍ଥାନୀୟ ଘଟଣାର ବର୍ଣ୍ଣନାରେ ପୂର୍ଣ୍ଣ । ସେ ସବୁ ତା ଭଉଣୀ ଲେଖିଥିଲା । ସେଥିରେ ଟାଫଲାର ଭଲମନ୍ଦ ଖବର ମା'ବାପଙ୍କର ଖବର ଏବଂ ନିଜର ପିଠିବାତ ଖବରଥିଲା । ତାହାର ସାଫଲ୍ୟ କାମନା ସଙ୍ଗେ ସଙ୍ଗେ ସାମ୍ୟବାଦୀ ନିଧନ ବ୍ରତରେ ଆନନ୍ଦ ପ୍ରକାଶ ମଧ୍ୟ କରାଯାଇଥିଲା । ଏହାପରେ ଟାଫଲାର ହତାହତ ଯୁବକମାନଙ୍କର ନାମ ତାଲିକା ଥିଲା । ୧୦ଜଣ ମରିଥିବା କଥା ପ୍ରକାଶ କରାଯାଇଥିଲା । ରବର୍ଟ ଜର୍ଡାନ୍ ଭାବିଲେ ଟାଫଲା ପରି କ୍ଷୁଦ୍ର ସହର ପକ୍ଷରେ ୧୦ ଜଣ ମରିବା ବହୁତ ବଡ଼ କଥା । ଚିଠି ଗୁଡ଼ିକରେ ଧର୍ମ ସମ୍ବନ୍ଧୀୟ ଅନେକ କଥା, ଭଗବାନଙ୍କୁ ପ୍ରାର୍ଥନା, ସାଧୁସନ୍ଥ ଏବଂ ମେରୀ ମାତାଙ୍କର ଆଶୀର୍ବାଦ ନିଜ ଭାଇ ଉପରେ ସର୍ବଦା ରହିବାର କାମନା କରାଯାଇଥିଲା । ଭଉଣୀ ଚେତାଇ ଦେଇଥିଲା ଯେ ଖ୍ରୀଷ୍ଟଙ୍କର ଯେଉଁ କବଚ ତା ପାଖରେ ଅଛି ସେ ସବୁବେଳେ ତାକୁ ବିପଦରୁ ରକ୍ଷା କରୁଅଛି । ସେହି କବଚ ଗୁଳିମାଡ଼ରୁ ମଧ୍ୟ ତାକୁ ରକ୍ଷା କରିବ । ଏ ଚିଠି ଖଣ୍ଡିକର ଧାରରେ ରକ୍ତ ଦାଗ ଲାଗିଥିଲା । ସେ ଏହାକୁ ଯତ୍ନର ସହିତ ଭାଙ୍ଗି କରି ଅନ୍ୟ ସାମରିକ କାଗଜ ସହିତ ରଖିଲେ । ଏହା ପରେ ଯେଉଁ ଚିଠି ଫିଟାଇଲେ ସେ ଖଣ୍ଡି ହେଉଛି ଯୁବକର ବାଗ୍‌ଦତ୍ତା ପତ୍ନୀର ଚିଠି । ସେ ତା'ପାଇଁ ଗଭୀର ଉତ୍କଣ୍ଠା ପ୍ରକାଶ କରି ଏକପ୍ରକାର କ୍ଷିପ୍ତା ହୋଇ ଉଠିଥିଲା । ଏହାପରେ ଅନ୍ୟ ଚିଠିମାନ ନପଢ଼ି ଜର୍ଡାନ୍ ସବୁତକ ନିଜ ପାଇଜାମା ପକେଟରେ ପୂରାଇଲେ । ସେ ଭାବିଲେ ସେ ଦିନମାନ ପାଇଁ ସେ ଉଚିତମତେ କର୍ତ୍ତବ୍ୟ ସମ୍ପନ୍ନ କରି ଅଛନ୍ତି । ପ୍ରିମିଟିଭୋ ସେ କଅଣ ପଢ଼ୁଥିଲେ ବୋଲି ପଚାରିବାରୁ କହିଲେ 'ସେ ଯେଉଁ ଅଶ୍ୱାରୋହୀକୁ ଆମେ ସକାଳେ ମାରି ପକାଇଥିଲୁ, ତାହାର କାଗଜପତ୍ର । ତୁ ପଢ଼ିବାକୁ ଚାହୁଁ ?'

ପ୍ରିମିଟିଭୋ କହିଲା 'ନା, ମୁଁ ପଢ଼ି ଜାଣେନାହିଁ । କିଛି ଚିତ୍ତାକର୍ଷକ ବିଷୟ ଥିଲା କି ?'

'ନା, ସବୁ ବ୍ୟକ୍ତିଗତ ଚିଠି ।'

'ସେ ଯେଉଁଠାର ଲୋକ, ସେଠାର ଅବସ୍ଥା କିପରି ଚିଠି ପଢ଼ି କିଛି ବୁଝିଲ ?'

ରବର୍ଟ ଜର୍ଡାନ୍ କହିଲେ 'ସେଠା ଅବସ୍ଥା ଭଲ ବୋଲି ମନେହୁଏ । ସେ ସହରରେ ବହୁ ବ୍ୟକ୍ତି ହତାହତ ହୋଇ ଅଛନ୍ତି । ସ୍ୱୟଂକ୍ରିୟ ରାଇଫଲ୍‌କୁ ଲୁଚାଇବା ଡାଳପତ୍ର ଖସି ଯାଇଥିବାରୁ ତାକୁ ସଜାଡ଼ ସେ ଦୂରକୁ ଚାହିଁଲେ ।

ପ୍ରିମିଟିଭୋ ପଚାରିଲା । 'ତା ଘର କେଉଁ ସହରରେ ?' ରବର୍ଟ ଜର୍ଡ଼ାନ୍ ତାଙ୍କୁ ଚାହିଁଲା ବୋଲି କହି ଭାବିଲେ ଏତେ କଥା ଜାଣି ତାହାର କି ଲାଭ ହେବ । ହଉ ଜାଣୁ ପଛକେ କିନ୍ତୁ ଅଉ ଏକଥା ଚର୍ଚ୍ଚା ନ କରି ବନ୍ଦ କରିବା ଭଲ କିନ୍ତୁ କଥା ତ ସେତିକିରେ ସରୁନାହିଁ । ତୁମେ କେତେଜଣ ମାରିଲ ? ତମର ମାରିବାର କି ଅଧିକାର ଅଛି ? ସମସ୍ତେ କଅଣ ଫ୍ୟାସିଷ୍ଟ ଥିଲେ ? ସେ ଯିଏ ହେଉନୁ ସମସ୍ତେ ତ ଆମର ଶତ୍ରୁପକ୍ଷୀୟ ଲୋକ । ସମଗ୍ର ସ୍ପେନ ଦେଶରେ ନାଭାର୍ରା ଅଞ୍ଚଳର ଲୋକମାନେ ଭଲ । କାହାକୁ ମାରିବା ଅନ୍ୟାୟ ତଥାପି ମାରିବାକୁ ପଡୁଛି । ତମର ଉଦ୍ଦେଶ୍ୟ ଓ ଆଦର୍ଶ ପ୍ରକୃତ୍ତ ସତ୍ୟ । ଏମିତିକା ନାନାପ୍ରକାର ଦ୍ୱିଧା ରବର୍ଟ ଜର୍ଡ଼ାନ୍ଙ୍କ ମନରେ ଉଠିଲା ।

ସେ ନିଜକୁ ସାନ୍ତ୍ୱନା ଦେବା ଉଦ୍ଦେଶ୍ୟ ନରଖି ମନେ ମନେ ଭାବିନେଲେ ଲୋକେ ନିଜକୁ ନିଜେ ନିଜ ଇଚ୍ଛାମତେ ଶାସନ କରିବେ ଏହା ହେଲା ସବୁଠାରୁ ବଡ଼ କଥା । ହତ୍ୟା କରିବା ନାପସନ୍ଦ କଲେ ମଧ୍ୟ ସ୍ୱାଧୀନତା ପାଇଁ ଦରକାର ପଡ଼ିଲେ ହତ୍ୟା କରିବାକୁ ହେବ । ଗଣତନ୍ତ୍ର ବ୍ୟତୀତ ଅନ୍ୟ ଶାସନ ମନ୍ଦ ବୋଲି ନିଶ୍ଚିତ ବିଶ୍ୱାସ କରନ୍ତୁ ଏଥିପାଇଁ ଲଢ଼ା ।

ଏମିତି ଉଦ୍ଦେଶ୍ୟରେ ସେ ବହୁ ହତ୍ୟା କରିଛନ୍ତି । ତାହାର ସଂଖ୍ୟା ନିର୍ଣ୍ଣୟ ସହଜ ନୁହେଁ । ଟ୍ରେନ୍ ଧ୍ୱଂସ କରିବା ଫଳରେ ଅନେକ ମରିଛନ୍ତି । ତେବେ ୨୦ ଜଣ ତ ସେ ନିଶ୍ଚୟ ମାରିଛନ୍ତି । ଏଥିମଧ୍ୟରୁ ୨ ଜଣ ୧୬ ପରି ଫ୍ୟାସିଷ୍ଟ ଥିଲେ । ଉପେରାଠାରେ ବନ୍ଦୀକରି ସେ ତାଙ୍କୁ ମାରିଥିଲେ । ଏ କାମଟା ସେ ମୋଟେ ପସନ୍ଦ କରି ନଥିଲେ ଏବଂ ଆଉ ମାରିବେ ନାହିଁ ବୋଲି ସ୍ଥିର କରିଥିଲେ । ମାରିବାଟା ମଧ୍ୟ ସେ ଯଥାଶକ୍ତି ଏଡ଼ାଇ ଚାଲିଥିଲେ ଏବଂ ନିରସ୍ତ୍ର କାହାକୁ ମାରୁ ନଥିଲେ । ସେ ପୁଣି ଭାବିଲେ ମଣିଷ ମାରିବା ଅତି ମନ୍ଦ କାମ । ସେ ଯେଉଁ ଗୁରୁଦାୟିତ୍ୱ ଗ୍ରହଣ କରି ଅଛନ୍ତି ସେଥିରେ ମୁଣ୍ଡ ଠିକ୍ ରଖି ନ୍ୟାୟ ପଥରେ ଚାଲିବା ଆବଶ୍ୟକ । ମୁଣ୍ଡ ଠିକ୍ ନଥିଲେ କିମ୍ବା ବିବେକ ଅନାବିଲ ନଥିଲେ ସେ ନିଜର କର୍ତ୍ତବ୍ୟ ପାଳନରେ ସକ୍ଷମ ହେବେ କିପରି ? ହତ୍ୟା କରିବା ପାପ ଏବଂ ଦଣ୍ଡାର୍ହ । କୌଣସି ଲୋକର ଅନ୍ୟ ଜଣକର ଜୀବନ ନେବାର ଅଧିକାର ନାହିଁ ଅବଶ୍ୟ ଅନ୍ୟ ଲୋକଙ୍କୁ ବୃହତ୍ତର ବିପଦରୁ ରକ୍ଷା କରିବା ପାଇଁ ଜଣକୁ ହତ୍ୟା କରାଯାଇପାରେ ।

କିନ୍ତୁ କେତେ ଲୋକ ମାରିଲେ ତାହାର ସଂଖ୍ୟା ମନେ ନରଖି ଭୁଲିଯିବା ଉଚିତ । ଏସବୁ ସେଭଳି ଗୌରବାବହ ଜୟତିଳକ ନୁହେଁ । ପୁଣି ଭାବିଲେ ନିଜ ଭଳି

କାମକୁ ଭୁଲ ହେବ କି ? ବାସ୍ତବ ଘଟଣାକୁ ଉପେକ୍ଷା କରିବା କିମ୍ବା ଆଖି ବୁଜିଦେବା କିମ୍ବା ଭୁଲିଯିବା ଅବା ଲଘୁ ଦୃଷ୍ଟିରେ ଦେଖିବା ଅନ୍ୟାୟ ।

ସେ ନିଜକୁ ବୁଝାଇଲେ ଏପରି ଆତ୍ମ ଆଡ଼ମ୍ବରୀ ହେବା ଭଲ ନୁହେଁ କିମ୍ବା ଆତ୍ମ ପ୍ରତାରଣା କରିବା ଠିକ୍ ନୁହେଁ । ତେବେ କଅଣ ମେରିଆକୁ ଭଲପାଇ ସେ ଅନ୍ୟାୟ କଲେ ? ନା ତାହା କାହିଁକି ହେବ । ପ୍ରେମ ଜନସଂଘ ଜଡ଼ବାଦୀ ସମାଜର ଅଙ୍ଗୀଭୂତ ନହେଲେ ହେଁ ଦୋଷାବହ ନୁହେଁ । ସେ ତ ପ୍ରକୃତରେ ମାର୍କସ୍‌ପନ୍ଥୀ ନୁହନ୍ତି । ସ୍ୱାଧୀନତା, ସାମ୍ୟ ଓ ସହୃଦୟତା ହେଉଛି ତାଙ୍କର ନୀତି । ଜୀବନ ଓ ସ୍ୱାଧୀନତା ଏବଂ ସୁଖାନ୍ୱେଷଣରେ ସେ ବିଶ୍ୱାସୀ । ଅଯଥା ଏସବୁ ବିଷୟରେ ତର୍କ କରିବା ଅନାବଶ୍ୟକ । କେତେକ ଲୋକ ସେ ମାର୍ଗର ହେଲେ ମଧ୍ୟ ସେ ନୁହନ୍ତି । ସେ ପରିଙ୍ଗ ପୁଷ୍ଟ ନୁହନ୍ତି । ଯୁଦ୍ଧ ଜିଣିବା ପାଇଁ ସେ ଅନ୍ୟ ଅନେକ କାମ ପଛକୁ ପକାଇ ଅଛନ୍ତି । ଯଦି ଯୁଦ୍ଧରେ ହାରିବେ ତେବେ ସବୁ ଶେଷ ହୋଇଯିବ । ପଛକୁ ଯେଉଁ ସବୁ ବିଷୟରେ ଆସ୍ଥା ନାହିଁ ତାହା ବର୍ଜନ କରାଯାଇପାରେ । ଆସ୍ଥାଥିବା ଓ ଆସ୍ଥା ନଥିବା ବହୁତ ବିଷୟ ଅଛି ।

ଆଉ ଗୋଟିଏ କଥା । ପ୍ରେମ ସମ୍ବନ୍ଧରେ ମନ ଭୁଲାଣିଆ ବ୍ୟବହାର ନକରିବା ଉଚିତ । ଅନେକ ଲୋକ ପ୍ରେମରେ ପଡ଼ି ସୁଖୀ ହୋଇ ନଥାନ୍ତି । ସେ ତ ନିଜେ ପୂର୍ବେ କାହାକୁ ପ୍ରେମ କରୁ ନଥିଲେ । ମେରିଆ ସହିତ ପ୍ରେମ ଦିନକପାଇଁ କି ଦୁଇଦିନ ପାଇଁ କିମ୍ବା ସାରାଜୀବନ ପାଇଁ ଏହାହିଁ ହେଉଛି ମଣିଷ ଜୀବନରେ ସବୁଠାରୁ ଗୁରୁତର ଘଟନା । ଯିଏ ପ୍ରେମ କେବେ ନକରିଛି ସେ କହିବ ପ୍ରେମ ବୋଲି କିଛି ନାହିଁ କିନ୍ତୁ ସେ ଜାଣନ୍ତି ପ୍ରେମ ବାସ୍ତବ ଏବଂ ପ୍ରେମ କରୁକରୁ ମୃତ୍ୟୁ ଘଟିଲେ ସୁଦ୍ଧା ସୌଭାଗ୍ୟ ବୋଲି ଧରିବାକୁ ହେବ ।

ମୃତ୍ୟୁ ଚିନ୍ତା କରିବା ଭଲନୁହେଁ । ସେ ଚିନ୍ତା କରନ୍ତି ସନ୍ତ୍ରାସବାଦୀମାନେ ଦୁର୍ଯୋଗରେ ପଡ଼ିଲେ ସେମାନେ କାହିଁରେ ହେଲେ ନିଆଁ ଲଗାଇ ମରିବାକୁ ଲୋଡ଼ନ୍ତି । ଏପରି ମତଗତି ବଡ଼ ପୁରୁଣାକାଳିଆ । ତାଙ୍କର ଅବସ୍ଥା ତ ଖରାପ ହୋଇନାହିଁ । ଦିନ ୩ଟା ବାଜିଗଲାଣି । ଶୀଘ୍ର କିଛି ଖାଦ୍ୟ ମଧ୍ୟ ମିଳିଯିବ । ସୋର୍ଡ଼ୋ ଆଡ଼ୁତାରେ ଏବେ ସୁଦ୍ଧା ଗୁଳି ଗୃଳିଅଛି । ସେମାନେ ତାକୁ ଘେରିଯାଇ ଅଧିକ ଲୋକ ଆସିବା ପାଇଁ ଅପେକ୍ଷା କରୁଅଛନ୍ତି । କିନ୍ତୁ ସନ୍ଧ୍ୟା ପୂର୍ବରୁ ସେ କାମ ଶେଷ କରିବା କଥା ।

ସୋର୍ଡୋର ସେଠାରେ କଅଣ ଘଟୁଛି କେଜାଣି । ଅବସ୍ଥା ଯେ ସୁଖକର ନୁହେଁ ଏହା ଅନୁମାନ କରିହୁଏ । ଘୋଡ଼ା ବିଷୟ ଜୁଟାଇ ଆମେ ସୋର୍ଡ଼ୋକୁ ବଡ଼

ଅଡ଼ୁଆରେ ପକାଇଅଛୁ । ସେଠାରେ ପ୍ରବେଶ ପଥଟି ଅଛି ମାତ୍ର ବାହାରିବା ବାଟ ନାହିଁ । ଆମେ ସେଠାକୁ ଯାଇପାରୁ ମାତ୍ର ପରବର୍ତ୍ତୀ ଅବସ୍ଥା ସାଙ୍ଘାତିକ ହେବ । ଶତ୍ରୁପକ୍ଷ ଘେରିଗଲା ପରେ ଆତ୍ମ ସମର୍ପଣ ନକରି ଯୁଦ୍ଧ ଚାଲୁରଖିବା ଏକ ମାରାତ୍ମକ ବିଳାସ । ଆମକୁ ଘେରିଗଲେଣି, ଏହାହିଁ ଭୀତତ୍ରସ୍ତ ବ୍ୟକ୍ତିଙ୍କର କୁହାଟ ବୋଲି ଏହି ଯୁଦ୍ଧରେ ଜଣା ପଡ଼ିଯାଇଛି । ପରବର୍ତ୍ତୀ ଚିନ୍ତଣୀୟ ବିଷୟ ହେଉଛି ଯେ ସେମାନେ ବନ୍ଦୀ ରହିଥିବା ବିଷୟ । ବିଚରା ସୋର୍ଡୋର ଏତିକି ଭାଗ୍ୟ ହୁଏତ ଘଟିଲା ନାହିଁ । ଶତ୍ରୁପକ୍ଷୀୟଙ୍କର ଅବସ୍ଥା ମଧ୍ୟ ଦିନେ ଏମିତି ହେବ ।

ଏହାପରେ ଉଡ଼ାଜାହାଜର ଆବାଜ ଶୁଣିଲେ ଏବଂ ଉଡ଼ାଜାହାଜ ଦେଖିଲେ ।

# ସପ୍ତବିଂଶ ପରିଚ୍ଛେଦ

ଗୋଟିଏ ପାହାଡ଼ ଶିଖରୁ ସୋର୍ଡୋ ଯୁଦ୍ଧ ଚଳାଉଥିଲା । ଏହି ପାହାଡ଼ଟା ସେ ପସନ୍ଦ କରୁ ନଥିଲା କିନ୍ତୁ ଏହାଛଡ଼ା ତାକୁ ଅନ୍ୟ ସୁଯୋଗ ମିଳି ନଥିଲା । ପାହାଡ଼ଟା ବହୁ ଦୂରରୁ ଦେଖି ସେ ଘୋଡ଼ା ଦଉଡ଼ାଇଥିଲା । ପିଠିରେ ସ୍ୱୟଂକ୍ରିୟ ଓଜନଦାର ରାଇଫଲଟା ଝୁଲୁଥାଏ । ହାତବୋମା ବସ୍ତାଟି ଘୋଡ଼ାର ଗୋଟାଏ ପାଖରେ ବାନ୍ଧିଥାଏ । ତାକୁ ସୁଯୋଗ ଦେବାପାଇଁ ଇଗ୍‌ନାସିଓ ଓ ଯୋଆକ୍ୱିନ୍ ମଝିରେ ମଝିରେ ଅଟକିଯାଇ ବନ୍ଧୁକ ଫୁଟାଉ ଥାଆନ୍ତି ।

ବରଫ ତାଙ୍କର ସର୍ବନାଶ ଘଟାଇ ଦେଇଥିଲା । ବରଫ ବର୍ତ୍ତେବେଳଯାଏ ମଧ୍ୟ ଜମିଥିଲା । ଯେତେବେଳେ ତା ଘୋଡ଼ା ଘାଏଲ୍ ହେଲା ସେତେବେଳେ ଟଳମଟଳ ହୋଇ ବହୁ କଷ୍ଟରେ ପାହାଡ଼ ଚୂଡ଼ା ଚଢ଼ିବାକୁ ଲାଗିଲା । ତା ଗୋଡ଼ରେ ବରଫ ସବୁ ବିକ୍ଷିପ୍ତ ହୋଇ ଛିଟିକି ପଡ଼ୁଥାଏ । ସୋର୍ଡୋ ଘୋଡ଼ାର ଲଗାମ ଧରି ଟାଣିଟାଣି ପାହାଡ଼ ଚଢ଼ୁଥାଏ । ପଛରୁ ଧମାଧମ୍ ଗୁଳି ଏଠିସେଠି ବାଜି ବରଫ ଓ ପଥର ଛିଡ଼ରେଇ ପକାଉଥାଏ । ଏହାପରେ ସେ ଗୋଟିଏ ଜାଗା ଠିକ୍ କରି ନିଜ ଘୋଡ଼ାକୁ ଗୁଳିମାରି ଶେଷ କରିଦେଲା । ଘୋଡ଼ାଟା ମୁହଁମାଡ଼ି ଦୁଇଖଣ୍ଡ ପଥର ଫାଙ୍କରେ ପଡ଼ିଗଲା । ମଝିରେ ମଝିରେ ସେ ଗୁଳି ଚଳାଇ ପଛରେ ଧାଉଁଥିବା ଲୋକଙ୍କୁ ଅଟକାଉ ଥାଏ । ତା ପିଠି ବ୍ୟଥା କରି ଉଠିଥାଏ । ଯେତେବେଳେ ୫ ଜଣ ପଶ୍ଚାତ୍ ଧାବନକାରୀ ପାହାଡ଼ ଶିଖରେ ପହଞ୍ଚିଲେ ସେତେବେଳେ ପିଠିର ବେଦନା ଭୁଲିଯାଇ ସେ ବନ୍ଧୁକ ଠିକ୍ କଲା ।

ପାହାଡ଼ ନାସିରେ ୩ଟା ଏବଂ ଚୂଡ଼ାରେ ଦୁଇଟା ଘୋଡ଼ା ମରିଗଲେ । ସେ ୩ଟା ଘୋଡ଼ା ଗ୍ରେସିଭ କରିଥିଲା । ସେଥିରୁ ଗୋଟାଏ ଚଢ଼ିବାକୁ ଚେଷ୍ଟା କଲାବେଳେ ପଳାଇ ଯାଇଥିଲା ।

ପାହାଡ଼ ଚୂଡ଼ାରେ ପହଞ୍ଚିବା ଲୋକ ୫ ଜଣ ମଧ୍ୟରୁ ୩ ଜଣ ଆହତ ହୋଇଥିଲେ । ସୋର୍ଡୋର ନିଜ ଆଣ୍ଠୁ ଖୋପରେ ଏବଂ ବାହୁରେ ଦୁଇଜାଗା ମଧ୍ୟ ଗୁଳି ଚେଟ ଲାଗିଥିଲା । ତାର କ୍ଷତସ୍ଥାନ ଶକ୍ତ ହୋଇ ଉଠିଥାଏ । ଉଡ଼ାଜାହାଜକୁ ଅପେକ୍ଷା କରି ସେ ବସିରହିଲା । ତା ମୁଣ୍ଡ ବଥାଉଥାଏ । ବାହୁର ଜଖମି ସ୍ଥାନଟା ବଡ଼ ଯନ୍ତ୍ରଣା ଦେଉଥାଏ । ସେ ମନେ ମନେ ଥଟ୍ଟାକଲେ "ଆସ୍‌ପିରିନ୍ ଔଷଧ ଖାଇଲା ପରି ମୃତ୍ୟୁକୁ ଅତି ସହଜରେ ଗ୍ରହଣ କରିବାକୁ ହେବ" କିନ୍ତୁ ଏହା ମୁହଁ ଫିଟାଇ କହି ନଥିଲେ । ମୁଣ୍ଡ ଓ ହାତର ଯନ୍ତ୍ରଣା ଏବଂ ବମନ ବେଗପ୍ରତି ଭ୍ରୂକ୍ଷେପ ନକରି ଟିକିଏ ହସି ଦେଲେ । ପଞ୍ଚଶିଖା ନକ୍ଷତ୍ର ପରି ପାଞ୍ଚଆଡ଼କୁ ମୁହଁକରି ଆଣ୍ଠେଇପଡ଼ି ହାତରେ ମାଟି ଖୋଳି ମୁଣ୍ଡେ ଉଚ୍ଚର କୁଦ ମାଟିଗୋଡ଼ରେ କରିଥିଲେ । ଏହି କୁଦ ପଛପଟେ ଲୁଚି ସେମାନେ ଗୁଳିପଟେ ଏକ ହୁଡ଼ ମଧ୍ୟ ପ୍ରସ୍ତୁତ କରିଥିଲେ । ଜୋଆକ୍ୱିନ୍‌ର ଗୋଟିଏ ଲୁହାର ଟୋପିଥିବାରୁ ସେ ତଦ୍ୱାରା ମାଟି ଖୋଳିଥିଲା ।

ଏହି ଲୁହାଟୋପି ସେ ରେଲଗାଡ଼ି ଧ୍ୱଂସ କଲାବେଳେ ମଧ୍ୟ ବ୍ୟବହାର କରିଥିଲା । ଗୁଳିମାଡ଼ରେ ଗୋଟିଏ କଣା ହୋଇ ଯାଇଥାଏ ବୋଲି ସମସ୍ତେ ତାକୁ ଥଟ୍ଟା କରୁଥିଲେ । ସେ କିନ୍ତୁ ପିଟାପିଟି କରି କାଠ ଖିଲ ଦେଇ କଣାଟି ବନ୍ଦ କରି ଦେଇଥିଲା ।

ଗୁଳି ଫଏର୍ ଆରମ୍ଭ ହେଲାରୁ ସେ ଟୋପିଟା ମୁଣ୍ଡରେ ପିନ୍ଧି ନେଇଥିଲା । ଚାରିଆଡ଼େ ଗୁଳି ମାଟି ଗୋଡ଼ରେ ଛୋ ଛା ଫୁଟି ସବୁ ଛନ୍‌ଛତର କରି ପକାଇଥିଲା ଏବଂ ତାହାର ଘୋଡ଼ାଟି ଗୁଳିମାଡ଼ରେ ମଲାବେଳେ ଟୋପିଟା ତାକୁ ଗୋଟାଏ ବୋଝ ପରି ଭାରି ଜଣା ପଡ଼ୁଥିଲା । ସେ ସେହି ଭଙ୍ଗା ଟୋପିରେ ଖୁମ ବିକ୍ରମରେ ମାଟି ଖୋଳିବାକୁ ଲାଗିଲା । ସୋର୍ଡୋ ତାକୁ କହିଲା "ଯାହେଉ ଟୋପିଟା ଗୋଟାଏ କାମରେ ଆସିଲା ।"

ଜୋଆକ୍ୱିନ୍ ଶୁଷ୍କ କଣ୍ଠରେ ସାମ୍ୟବାଦୀଙ୍କ ସିଂହନାଦ ଉଠାଇ କହିଲା "ଦୃଢ଼ରୁହ, ପଛକୁ ହଟନାହିଁ, ନଷ୍ଟସ୍ତ୍ର କଣିବା ।"

ଗଡ଼ାଣିର ଯେଉଁ ପଥର ଉହାଡ଼ରେ ରହି ଅଶ୍ୱାରୋହୀମାନେ ଗୁଳି ଚଳାଉଥିଲେ ସୋର୍ଡୋ ସେହିଆଡ଼କୁ ଚାହିଁଥାଏ । ସୋର୍ଡୋ ଖୁବ୍ ସ୍ନେହକରେ ଏହି ୧୭ ବର୍ଷୀଆ ଜୋଆକ୍ୱିନ୍‌କୁ । ପଚାରିଲି କଅଣ କହିଲୁ କି ?'

ମାଟି ଖୁଦ ବନାଉଥିବା ଲୋକଙ୍କ ମଧ୍ୟରୁ ଜଣେ ମୁହଁମାଡ଼ି ଶୋଇ ଖଣ୍ଡିଏ ବଡ଼ ପଥର ନିଜ ସାମନାରେ ରଖୁଥିଲା । ଜୋଆକ୍ୱିନ୍ ପୁଣି ଥରେ ନିଜର କଥା ଆବୃତ୍ତି କଲା କିନ୍ତୁ ସେ ମାଟି ଖୋଳା କାମ ସମାନ ଭାବରେ ଚଳାଇଥାଏ । ଲୋକ ଜଣକ ପଚାରିଲା "ତୋ ଶେଷ ପଦଟି କଅଣ ?" ବାଳକ "ଜିଣିବ" ବୋଲି କହିବାରୁ ଲୋକଟା କହିଲା "ନା, ଏ କ୍ଷେତ୍ରରେ ଆଉ ଗୋଟାଏ ଶବ୍ଦ ପ୍ରଯୁଜ୍ୟ ହେବ ।" ଜୋଆକ୍ୱିନ୍ କହିଲା "ପାସନାରିଆ କହୁଥିଲେ ଯେ ଠିଆ ହୋଇ ମରିବା ହେଉଛି ଆଣ୍ଠେଇପଡ଼ି ବଞ୍ଚିବା ଅପେକ୍ଷା ଭଲ ।" ଆଉ ଜଣେ କହି ଉଠିଲା "ଆମେ ତ ପେଟେଇଅଛୁ, ଆଣ୍ଠେଇନାହୁଁ । ତୁ ପରା ସାମ୍ୟବାଦୀ, ତୋ ପାସନାରିଆର ଜଣେ ତୋ ବୟସର ପୁଅ ରୁଷିଆରେ ଅଛି ଏକଥା ଜାଣୁ ?" ଜୋଆକ୍ୱିନ୍ ଜବାବ ଦେଲା "ମିଛ କଥା ।" ଅନ୍ୟ ଲୋକଟି କହିଲା "ଏଟା ମିଛ । ଡାଇନାମାଇଟ୍ ଫୁଟାଇଲାବାଲା ସେ ଅଦ୍ଭୁତ ନାମଧାରୀ ଲୋକଟି ମୋତେ ଏହା କହିଅଛି । ସେ ତ ତୋ ଦଳର ଲୋକ । ମିଛ କାହିଁକି କହିବେ ?"

ଜୋଆକ୍ୱିନ୍ କହିଲା "ଏହା କଞ୍ଚା ମିଛ । ଯୁଦ୍ଧରୁ ବଞ୍ଚାଇବା ପାଇଁ ନିଜର ପୁଅକୁ ସେ ରୁଷିଆରେ ଲୁଚାଇବା ଭଳି ମିଛ କାମ କଦାପି କରିବେ ନାହିଁ ।"

ସୋର୍ଡୋ ଦଳର ଆଉ ଜଣେ କହି ଉଠିଲା "ମୁଁ ରୁଷିଆରେ ରହିବାକୁ ପସନ୍ଦ କରେ । ତୋ ପାସନାରିଆ ମୋତେ ରୁଷିଆ ପଠାଇ ପାରିବେ କି ?"

ଜଣକର ଜଙ୍ଘରେ ବାଣ୍ଡେଜ୍ ବନ୍ଧାଥାଏ । ସେ କହିଲା "ତୁ ଯଦି ପାସନାରିଆ କଥାରେ ଏତେ ବିଶ୍ୱାସକରୁ, ତେବେ ତାଙ୍କୁ କହ, ଆମକୁ ଏହି ପାହାଡ଼ରୁ ନେଇଯିବେ ।"

ମାଟିରେ ମୁହଁ ମାଡ଼ିଥିବା ଲୋକଟି କହିଲା "ସେ କାମ ଫ୍ୟାସିଷ୍ଟ୍‌ମାନେ କରିବେ ।"

ଜୋଆକ୍ୱିନ୍ ତାଙ୍କୁ ଏପରି କହିବାକୁ ବାରଣକଲା । ମାଟିରେ ମୁହଁ ମାଡ଼ିଥିବା ଲୋକଟି କହିଲା "ଦୁଧଖିଆ ପିଲପରି କଥା କହୁଛୁ କାହିଁକି ? ଆମ ଭିତରୁ କେହି ହେଲେ ଆଜି ସୂର୍ଯ୍ୟାସ୍ତ ଦେଖିବାକୁ ରହିବେ ନାହିଁ ।"

ସେ ର୍ଡୋ ଭାବୁଥାଏ । ଏ ଜାଗାଟା ତ ଗୋଟାଏ ଘୁଙ୍ଗୁମୁନିଆ ମୁଣ୍ଡିଆ କମ୍ପା ଆଗ୍ନେୟଗିରିର ଚୂଡ଼ା । ଅବଶ୍ୟ ଆଗ୍ନେୟଗିରି ସେ କେବେ ଦେଖିନାହିଁ କମ୍ପା ଦେଖିବ ନାହିଁ । ତେବେ ଗୋଟିଏ ଫୁଲ୍‌ଉଠା ବଥ ପରି । ସୋର୍ଡୋ କହିତ ଅଶ୍ୱର ପଚଶୁଷ୍କ

ପିଣ୍ଡଟାକୁ ଭଲ କରି ନିରୀକ୍ଷଣ କରିବାକୁ ଲାଗିଲା । ଯାଙ୍ଗେ ମାଙ୍ଗେ ଗଡ଼ାଣିଆଡ଼ୁ ଏକ ପଥର ଉହାଡ଼ରୁ ଧମାଧମ୍ ସାନ ମେସିନ୍‌ଗନ୍‌ର ଗୁଳି ବର୍ଷା ହେଲା । ସେ ଘୁସୁରି ଘୁସୁରି ଘୋଡ଼ାର ପଛ ଦୁଇଗୋଡ଼ ପାଖକୁ ଯାଇ ଗୋଡ଼ ସନ୍ଧିବାଟେ ଅନାଇଲା । ସେ ଯେଉଁଠିଥିଲା ତାହାର ଅଦୂରରେ ୩ଜଣଙ୍କ ଶବ ପଡ଼ିଥାଏ । ଫ୍ୟାସିଷ୍ଟ୍‌ମାନେ ପ୍ରଥମ ଦଫା ମେସିନ୍‌ଗନ୍ ଚଳାଇ ହଠାତ୍ ଆକ୍ରମଣ କରିବାରୁ ଏମାନେ ମୃତ୍ୟୁ ଲଭିଥିଲେ । ସୋର୍ଡୋ ଉଚ୍ଚରୁ ହାତବୋମା ଗଡ଼ାଇ ଆକ୍ରମଣକାରୀଙ୍କୁ ପ୍ରତିହତ କରି ଆତ୍ମରକ୍ଷା କରି ପାରିଥିଲା । ପାହାଡ଼ ଚୂଡ଼ାର ଅନ୍ୟ ପାଖରେ ଆଉ କେତେ ଜଣଙ୍କ ଶବ ତାକୁ ଦେଖା ଯାଉ ନଥାଏ । ପାହାଡ଼ ଶିଖକୁ ଉଠିବା ପାଇଁ ଅନ୍ୟ ରାସ୍ତା ନାହିଁ । ସୋର୍ଡୋ ଜାଣିଥିଲା ଯେ ତାହାର ଗୋଳି ବାରୁଦ ଓ ହାତବୋମା ମହଜୁଦ୍ ଥିବାଯାଏ ମାତ୍ର ୪ଜଣ ସଙ୍ଗୀ ନେଇ ସେ ଆକ୍ରମଣକାରୀଙ୍କୁ ଅଟକାଇ ପାରିବ । ଅବଶ୍ୟ ବଡ଼ ତୋପ ଶତ୍ରୁପକ୍ଷ ଆଣିଲେ କଥା ଭିନ୍ନ ହେବ । ଏମିତିକା ବଡ଼ ତୋପ ସେମାନେ ଲାଗାଣ୍ଡାରୁ ମଗାଇ ଅଛନ୍ତି କି ନାହିଁ ସୋର୍ଡୋକୁ ଜଣା ନଥିଲା । ବୋଧହୁଏ ମଗାଇ ନାହାନ୍ତି କାରଣ ଅତି ଶୀଘ୍ର ଉଡ଼ାଜାହାଜମାନ ଆସି ପହଞ୍ଚିବ । ଟହଲଦାରି ବିମାନଖଣ୍ଡି ତାଙ୍କୁ ଦେଖି ଫେରି ଯିବାର ୪ ଘଣ୍ଟା ବିତିଗଲାଣି ।

ଏ ମୁଣ୍ଡିଆଟା ବାସ୍ତବିକ ଏକ ପାଗଳ ବଅପରି ଏବଂ ଆମେ ଯେତେ ଜଣ ହେଲୁ ଏହାର ପୂଜାରୀ । ସୋର୍ଡୋ ମନରେ ଏଭଳି ଚିନ୍ତା ଖେଳିଗଲା । କିନ୍ତୁ ସେମାନଙ୍କ ଭୁଲବେଳେ ଆମେ ତାଙ୍କ ଦଳର ଅନେକ ଲୋକ ମାରି ପକାଇଥିଲୁ । ସେମାନଙ୍କର ଅସ୍ତ୍ରଶସ୍ତ୍ର ଏତେ ଆଧୁନିକ ଯେ ଅତ୍ୟଧିକ ଆତ୍ମ ପ୍ରତ୍ୟୟରେ ସେମାନେ ବେକୁବ୍ ବନି ଯାଇଥାନ୍ତି । ଆକ୍ରମଣକାରୀଙ୍କ ତରୁଣ ଦଳପତି ଉଠାଣି ଉଠୁଥିଲାବେଳେ ସୋର୍ଡୋ ହାତବୋମା ଗଡ଼ାଇ ମାରି ପକାଇଥିଲା । ହଳଦିଆ ଆଲୋକ ଝାସ ଓ ଧୂଆଁ ଭିତରେ ସେ ଦେଖି ପାରିଥିଲା ଯେ ଦଳପତି ଘୋଡ଼ା ଉପରୁ ମୁଣ୍ଡ ତଳକୁ କରି ଗୋଟାଏ ବୋଝ ବଡ଼ାପରି ଖସି ପଡ଼ିଥିଲେ । ଆକ୍ରମଣକାରୀମାନଙ୍କର ତାହାହିଁ ହେଲା ସବୁ ଶେଷ ଅଗ୍ରସର । ସୋର୍ଡୋ ସେ ଯୁବକର ମୃତ ଦେହଆଡ଼େ ଗୃହିଁ ରହି ପରେ ଅନ୍ୟମାନଙ୍କୁ ଅନାଇଲେ ।

ସେ ଭାବିଲା ଏହି ଲୋକଗୁଡ଼ାକ ଖୁବ୍ ସାହସୀ ମାତ୍ର ନିର୍ବୋଧିଆ । ବର୍ତ୍ତମାନ ତାଙ୍କର ଜ୍ଞାନ ହେଲାଣି ଯେ ଉଡ଼ାଜାହାଜ ନ ଆସିବାଯାଏ ଚଢ଼ାଉ କରିବା ଠିକ୍ ନୁହେ । ଅବଶ୍ୟ ବଡ଼ ତୋପ ଆସିଲେ ଭିନ୍ନ କଥା । ତଦ୍ୱାରା କାମ ସହଜ ହୋଇଯିବ । ବଡ଼ ତୋପ ଯୁଦ୍ଧରେ ଏକ ମାମୁଲିବସ୍ତୁ । ସେ ତୋପ ଆସିଲେ ସେମାନେ ସବୁ ମରିବେ ଏହା ଜଣା କଥା । କିନ୍ତୁ ଉଡ଼ାଜାହାଜ ଚିନ୍ତାରେ ସେ ହତାଶ ହୋଇ ପଡ଼ିଲା । ସେଥିରୁ ଆଉ ରକ୍ଷାରକ୍ଷଣ ଅସମ୍ଭବ । ତେବେ ବଡ଼ ତୋପ

ଦ୍ୱାରା ଯେତେବେଳେ ସେମାନେ ଦଖଲ ନେଇ ପାରିବେ ସେତେବେଳେ ଉଡ଼ାଜାହାଜ ଅଣାଇବାର ଯଥାର୍ଥତା କଅଣ ? ଫ୍ୟାସିଷ୍ଟ୍‌ମାନେ ସେମାନଙ୍କର ବିମାନ ବାହିନୀ ପାଇଁ ଗର୍ବ କରିଥାନ୍ତି । ହୁଏତ ସେମାନେ ଉଡ଼ାଜାହାଜ ଅଣାଇବେ । ବିମାନବାହିନୀ ପାଇଁ ଯେଉଁ ଗର୍ବ ବୋଧ କରିଥାନ୍ତି ସ୍ୱୟଂକ୍ରିୟ ତୋପ ପାଇଁ ମଧ୍ୟ ସେପରି କରୁଥିଲେ । ଫଳରେ ଏହି ଗର୍ବରୁ ସେମାନେ ଏତେ ଭୁଲ କଲେ । ତେବେ ବଡ଼ ତୋପ ସେମାନେ ନିଶ୍ଚୟ ମଗାଇଥିବେ । ସୋର୍ଡ଼ୋ ଏମିତି ଚିନ୍ତା କରୁଥିଲା ବେଳେ ତାହାର ଜଣେ ଲୋକ ଉପୁରିଉପୁରି ୨ ଥର ଗୁଳି ଚଳାଇଲା । ସୋର୍ଡୋ ତାକୁ କାର୍‌ତୁସ ବୃଥା ଖର୍ଚ୍ଚ ନ କରିବାକୁ କହିବାରୁ ସେ ଜବାବ ଦେଲା "ସେ ଖାନଗି ପୁଅ ଭିତରୁ ଜଣେ ସେହି ବଡ଼ ପଥର ପାଖକୁ ଯିବାକୁ ଚେଷ୍ଟା କରୁଥିଲା ।" ସୋର୍ଡୋ ଅତି କଷ୍ଟରେ ମୁଣ୍ଡ ବୁଲାଇ ପଚାରିଲା "ଗୁଳି ବାଜିଛି ତ ?" ଲୋକଟା କହିଲା 'ନା ଖାପୁ, ପଛକୁ କୁଦିପଡ଼ିଲା ।'

ଯେଉଁ ଲୋକଟା ମାଟିରେ ମୁହଁମାଡ଼ି ପଡ଼ିଥିଲା ସେ କହିଲା 'ତମ ପିଲାର୍‌ଠାରୁ ବଡ଼ ଖାନଗି କିଏ ? ସେ ଖାନଗି ତ ଜାଣେ ଆମେ ଏଠି ମରୁଅଛୁ ।'

ସୋର୍ଡୋର ଭଲ କାନଟା ପଟେ ଥିବାରୁ ଲୋକଟାର କଥା ସୋର୍ଡୋ ଶୁଣି ପାରି କହିଲା "ସେ ଅବା କଅଣ କରିବ ?"

"କଅଣ କରିବ ? ପଛପଟୁ ଏମାନଙ୍କୁ ଆକ୍ରମଣ କରିପାରିବ ।"

"ଫ୍ୟାସିଷ୍ଟ୍‌ମାନେ ତ ସମଗ୍ର ପାହାଡ଼ିଆ ଅଞ୍ଚଳ ଘେରି ଯାଇଅଛନ୍ତି । ସେ ଆସିବ କେମିତି ? ଦେଢ଼ଶ କମ୍ପାନି ତଦୁର୍ଦ୍ଧ ଫ୍ୟାସିଷ୍ଟ୍ ଘେରି ରହିଅଛନ୍ତି ।"

ଜୋଆକ୍ୱିନ୍ କହିଲା 'ଯଦି ଆମେ ସନ୍ଧ୍ୟାଯାଏ ଠାକିଯାଇ ପାରୁ ତେବେ—'

'ହଁ, ଯଦି ପୂର୍ବ ସୂର୍ଯ୍ୟ ପଶ୍ଚିମରେ ଉଦୟ ହୁଏ ତେବେ ।' ମାଟିରେ ମୁହଁ ମାଡ଼ିଥିବା ଲୋକଟି କହି ଉଠିଲା ।

ଆଉ ଜଣେ କହିଲା 'ଯଦି ତୋ ଖୁଡ଼ୀ ଖୁଡ଼ୁତାରେ ପରିଣତ ହୋଇଯାଏ ତେବେ । ତୋ ପାଦ୍‌ନାରିଆକୁ ଡାକ । ସେ ଏକମାତ୍ର ଆମକୁ ରକ୍ଷା କରିପାରିବ ।'

ଜୋଆକ୍ୱିନ୍ କହିଲା 'ତାଙ୍କ ପୁଅଥିବା କଥା ମୁଁ ବିଶ୍ୱାସ କରେ ନାହିଁ । ଆଉ ଯଦି ଥାଏ ତେବେ ସେ ବିମାନଗୁଡ଼ିକ ହେବାର ଚେଷ୍ଟା ନିଶ୍ଚୟ ପାଉଥିବ ।'

'ନଗ୍ରପତ୍ର ପାଇଁ ସେ ସେଠାରେ ଲୁଚିଅଛି ।' ଲୋକଟା କହିଲା ।'

'ସେ ସେଠାରେ ନ୍ୟାୟଶାସ୍ତ୍ର ପାଠ କରୁଅଛି । ପାସ୍‌ନାରିଆ ସେଠାରେ ଥିଲେ । ଲିଷ୍ଟର୍‌ ମଡେଷ୍ଟୋ ଓ ଅନ୍ୟମାନେ ମଧ୍ୟ ଥିଲେ । ଏକଥା ମୁଁ ରବର୍ଟ ଜର୍ଡ଼ାନ୍‌ଙ୍କଠାରୁ ଶୁଣିଅଛି ।' ଆଉ ଜଣେ କହି ଉଠିଲା ।

ଜୋଆକ୍ୱିନ୍‌ କହିଲା 'ସେଠାରୁ ଶିକ୍ଷାଲାଭ କରି ଆମକୁ ସାହାଯ୍ୟ କରିବେ ।'

'ସେମାନେ ବର୍ତ୍ତମାନ ଆମକୁ ସାହାଯ୍ୟ କରିବା କଥା । ସବୁ ରୁଷୀୟ ଧପାବାଜମାନେ ବର୍ତ୍ତମାନ ଆମକୁ ସାହାଯ୍ୟ କରିବା ଉଚିତ । ଲୋକଟା ପୁଣି ଫଏର୍‌ କରି କହିଲା 'ଏଥର ମଧ୍ୟ ଗୁଳି ବାଜିଲା ନାହିଁ ।'

ସୋର୍ଡ଼ୋ କହିଲା 'ଏତେ କଥା କହନାହିଁ, ତଣ୍ଟି ଶୁଖିଯିବ । ଏ ପାହାଡ଼ରେ ପାଣି ନାହିଁ । ଗୁଳି ବାଜେ ଖରଚ କର ନାହିଁ ।' ଲୋକଟା ବେକରେ ଚମଡ଼ା ଥଳିରେ ମଦ ରଖି ଝୁଲାଇଥିଲା । ସେ ଗଡ଼ିଗଡ଼ି ସୋର୍ଡ଼ୋ ପାଖକୁ ଆସି ତାହା ବଢ଼ାଇ ଦେଇ କହିଲା 'ଟୋକେ ପିଇନଅ । ତୁମ ପାଆର ବ୍ୟଥାଯୋଗୁଁ ତଣ୍ଟି ଶୁଖି ଯାଉଥିବ ।'

ସୋର୍ଡ଼ୋ କହିଲା 'ନା, ସମସ୍ତେ ଟୋକେ ଟୋକେ ପିଇବା ।'

ଥଳିର ଅଧିକାରୀ କହିଲା 'ତେବେ ମୁଁ ପହିଲେ ପିଇବ ।' ଏହା କହି ମୁହଁ ଲଗାଇ ଏକା ନିଶ୍ୱାସରେ ବହୁତ ପିଇ ଚମଡ଼ା ବୋତଲ ସୋର୍ଡ଼ୋକୁ ବଢ଼ାଇ ଦେଲା ।

ମାଟିରେ ମୁହଁ ମାଡିଥିବା ଲୋକ ଜଣକ ପଚାରିଲା 'ସୋର୍ଡ଼ୋ, ଉଡ଼ାଜାହାଜ କେତେବେଳେ ଆସିବ ବୋଲି ତୁମେ ଭାବୁଛ ?'

'ଅନେକ ଆଗରୁ ଆସିବାର ଥିଲା । ଯେ କୌଣସି ମୁହୂର୍ତ୍ତରେ ଆସିପାରେ ସୋର୍ଡ଼ୋ ଜବାବ ଦେଲା ।

'ଆଚ୍ଛା, ଏହି ଖାନଗି ପୁଅମାନେ କଅଣ ଆମକୁ ଶୁଣି ଆକ୍ରମଣ କରିବେ ବୋଲି ତୁମେ ମନେ କରୁଅଛ ?'

'ହଁ, ଯଦି ଉଡ଼ାଜାହାଜ ନଆସେ ।' ସେ ତାଙ୍କୁ ବଡ଼ ତୋପ କଥା କହିଲା ନାହିଁ କାରଣ ତା ବିଷୟ ଏମାନେ ଶୀଘ୍ର ନିଜେ ଜାଣି ପାରିବେ ।

'ଆମେ କାଲି ଯାହା ଦେଖିଛୁ ସେଥିରୁ ଜାଣୁ ଯେ ତାଙ୍କର ବହୁ ଉଡ଼ାଜାହାଜ ଅଛି । କଅଣ ଘଟିବ ଭଗବାନଙ୍କୁ ଜଣା ।' ଯୋର୍ଡ୍ଡୋ ଜବାବ ଦେଲା 'ହଁ ବହୁତ ଅଛି ।'

ଯୋର୍ଡ୍ଡୋର ମୁଣ୍ଡର ଯନ୍ତ୍ରଣା ବେଶୀ ହୋଇଥାଏ । ହାତ ଏପରି ଅଙ୍କୁଡ଼ି ରହିଥାଏ ଯେ ହଲଚଲ କଲେ ଅସହ୍ୟ ବ୍ୟଥା ଜାତହୁଏ । ଭଲ ହାତଟାରେ ଚମଡ଼ା ମଦ ବୋତଲରୁ ମଦ ପିଇବା ପାଇଁ ମୁଣ୍ଡ ଉପରକୁ ଟେକି ସେ ଗ୍ରୀଷ୍ମାରମ୍ଭର ଉଜ୍ଜ୍ୱଳ ନୀଳାକାଶ ପ୍ରତି ଦୃଷ୍ଟି ଦେଲା । ତାଙ୍କୁ ୫୨ବର୍ଷ ବୟସ । ସେ ଭାବିଲା ଆଜି ହୁଏତ ତାହାର ଶେଷଥର ପାଇଁ ଗଗନ ନୀରୀକ୍ଷଣ । ମରିବା ପାଇଁ ତାହାର ତିଳମାତ୍ର ଭୟ ନଥିଲା କିନ୍ତୁ ଏମିତିକା ପାହାଡ଼ିଆ ଯନ୍ତାରେ ପଡ଼ି ବ୍ୟର୍ଥରେ ମରିବ ବୋଲି ତାହାର ମନରେ ନାହିଁ ନଥିବା ରାଗ । ଯଦି ସେଠାରୁ ହଟିଯାଇ ପାରନ୍ତା ଯଦି ଦୀର୍ଘ ଉପତ୍ୟକା ଦେଇ ଫ୍ୟାସିଷ୍ଟ ମାନେ ଆସିଥାନ୍ତେ କିମ୍ବା ଏମାନେ ଘେର ଭାଙ୍ଗି ପଳାଇ ପାରିଥାନ୍ତେ ତେବେ ସବୁଆଡ଼ ରକ୍ଷା ହୋଇଥାନ୍ତା । କିନ୍ତୁ ଏହି ମୁଣ୍ଡିଆଟା ବହୁତ କାମ ଦେଇଅଛି ଏବଂ ପୁଣି ତହିଁର ଯଥା ସମ୍ଭବ ସୁଯୋଗ ଆହରଣ କରିବା ଛଡ଼ା ଉପାୟାନ୍ତର ନାହିଁ।

ଏମିତି ପାହାଡ଼ରେ ରହି ପୃଥିବୀର ଇତିହାସରେ କେତେ ଲୋକ ଯେ ମରିଅଛନ୍ତି ପ୍ରାଣ ଦେଇଅଛନ୍ତି ସେ କଥା ଜାଣିଲେ ମଧ୍ୟ ତା ମନ ଆନନ୍ଦିତ ହୁଅନ୍ତା ନାହିଁ । ନିଜର ମଲା ଗଲାବେଳେ ଅନ୍ୟମାନଙ୍କର ସମ ଅବସ୍ଥା ଚିନ୍ତା କରି କାହାରି ମନୋବଳ ବଢ଼ି ନଥାଏ । ଜଣେ ବିଧବା ଅନ୍ୟ ବିଧବାମାନଙ୍କ କଥା ସ୍ମରଣ କରି ସ୍ୱାମୀ ବିଚ୍ଛେଦ ଦୁଃଖ ପାସୋରି ନପାରେ । ଭୟ ଥାଉକି ନଥାଉ ମୃତ୍ୟୁକୁ ଗ୍ରହଣ କରିବା କଷ୍ଟକର । ଯୋର୍ଡ୍ଡୋ ମୃତ୍ୟୁ ପାଇଁ ପ୍ରସ୍ତୁତ ହେଲେ ମଧ୍ୟ ତାହାକୁ ଗ୍ରହଣ କରିବା ସୁଖପ୍ରଦ ନଥିଲା । ଦେହର ୩ଜାଗା ଆଘାତ ଏବଂ ଚାରିଆଡ଼ୁ ଶତ୍ରୁ ଆକ୍ରାନ୍ତ ଅବସ୍ଥାରେ ୫୨ବର୍ଷ ବୟସରେ ଆନନ୍ଦ ରହିବ କାହୁଁ ।

ଯୋର୍ଡ୍ଡୋ ମନକୁ ମନ ରହସ୍ୟ କଲେ ମଧ୍ୟ ଆକାଶ ଓ ଦୂର ପାହାଡ଼ ଆଡ଼କୁ ଚାହିଁଥି । ମଦ ଢୋକାଲେ ମଧ୍ୟ ସେଥିପାଇଁ ତାହାର ଲାଳସା ନଥିଲା । ଯଦି ମୃତ୍ୟୁ ଅନିବାର୍ଯ୍ୟ ତେବେ ସେ ମରିବା ପାଇଁ ପ୍ରସ୍ତୁତ କିନ୍ତୁ ମୃତ୍ୟୁ କାମ୍ୟ ନୁହେ ।

ମୃତ୍ୟୁର ଚିନ୍ତା କିମ୍ବା ଭୟ ଯୋର୍ଡ୍ଡୋର ମନରେ ନଥାଏ । କିନ୍ତୁ ବଞ୍ଚିବା ଏକ ବିଷମ ସମସ୍ୟା । କ୍ଷେତର ଶସ୍ୟ ପବନରେ ହିଲ୍ଲୋଳିତ ହେଲାପରି ବଞ୍ଚିବାଟା ସଂସାରର ସୁଖ ଦୁଃଖ ଝଡ଼ ଝଞ୍ଜାରେ ଆନ୍ଦୋଳିତ ହୋଇଥାଏ । ମୁକ୍ତାକାଶର ବିହଙ୍ଗ ପରି ଜୀବନ ସବୁବେଳେ ଅସ୍ଥିର, ଜୀବନ ମାଟି ମାଠିଆ କିମ୍ବା ଧାନର ଧୂଳିକଣା, କିମ୍ବା ତୁମ

ଚଢ଼ିଥିବା ଘୋଡ଼ା ଯାହା ଉପରେ ଭର୍ ଦେଇ ବନ୍ଧୁକ ରଖି, ସମ୍ମୁଖରେ ଥାଏ ପାହାଡ଼ ଓ ଉପତ୍ୟକା ଆଉ ନଦୀ ବଣ ପ୍ରାନ୍ତର ଇତ୍ୟାଦି ।

ସୋର୍ଡୋ ଧନ୍ୟବାଦ ଦେଇ ମଦବୋତଲ ଫେରାଇ ଦେଲା । ସେ ଆଗକୁ ନଇଁ ପଡ଼ି ମଲା ଘୋଡ଼ାର ଗୁଳି ବାଜିବା ଜାଗାକୁ ଆଉଁସି ଦେଲା । ବନ୍ଧୁକ ମାଡ଼ରେ ମାଂସ ପୋଡ଼ି ଗନ୍ଧ ବାହାରୁଥାଏ, ସେ ଘୋଡ଼ାଟିକୁ କିପରି ମେଠାରେ ଧରି ନଆଁ ପୁଉଁଥିଲା, ତା ସହିତ କେତେ ସୁଖ ଦୁଃଖ କଥା ହେଉଥିଲା । ଅର୍ଦ୍ଧମୃତ ଘୋଡ଼ାକୁ ସେ କିପରି ବନ୍ଧୁକର ଘୋଡ଼ାଆ ଚୋପି ସବୁ ଯନ୍ତ୍ରଣାରୁ ମୁକ୍ତି ଦେଇଥିଲା ଏବଂ ଶତ୍ରୁପକ୍ଷ ଆସିବାରୁ କିପରି ନିଜେ ଘୋଡ଼ା ମଢ଼ ପଛେ ଲୁଚି ଯାଇଥିଲା, ଇତ୍ୟାଦି କଥା ସୋର୍ଡୋର ମନେ ପଡ଼ିଲା । ସେ ଘୋଡ଼ାକୁ ଲକ୍ଷ୍ୟ କରି କହିଲା ତୁ ଘୋଡ଼ା ଭିତରେ ଚାଳାଟାଏ ଥିଲୁ । ଏହାପରେ ସୋର୍ଡୋ ନିଜର ଅନାହତ ପାର୍ଶ୍ୱଟା ମାଟିରେ ଦେଇ ଶୋଇ ଶୋଇ ଆକାଶକୁ ଚାହିଁଲା । ତା' ମୁଣ୍ଡ ଥାଏ ଜଣ୍ଡିଏ ପଥର ଉହାଡ଼ରେ ଏବଂ ଦେହଟା ଥାଏ ଘୋଡ଼ାର ମଢ଼ ଆଢ଼ୁଆଳରେ, ଖାଲି କାରତୁସ୍ ଖୋଳ ଗଦା କରି ତାହାରି ଉପରେ ସେ କରପଟେଇ ଶୋଇଥାଏ । ତା ଘାଆ ବଡ଼ ଯନ୍ତ୍ରଣା ଦେଉଥାଏ ଏବଂ ସେ ଅତ୍ୟନ୍ତ ପରିଶ୍ରାନ୍ତ ବୋଧ କରୁଥାଏ ।

ନିକଟରେ ଥିବା ଲୋକ ଜଣକ ପଚାରିଲା 'କଅଣ ହୋଇଛି ଓସ୍ତାଦ୍ ?"

'କିଛି ନାହିଁ । ମୁଁ ଟିକିଏ ବିଶ୍ରାମ ନେଉଅଛି ।'

ତେବେ ଶୋଇପଡ଼ । ସେମାନେ ଆସିଲେ ଆମକୁ ଜାଗ୍ରତ କରିବେ । ଠିକ୍ ଏତିକିବେଳେ କିଏ ଜଣେ ତଳଆଡୁ ଚିତ୍କାର କଲା 'ଆରେ ଖଣ୍ଟମାନେ ଆତ୍ମ ସମର୍ପଣ କର, ନଚେତ୍ ଉଡ଼ାଜାହାଜ ତୁମକୁ ଟିକି ଟିକି କରିଦେବ ।' ଯେଉଁ ନିକଟତମ ପାହାଡ଼ରେ ସ୍ୱୟଂକ୍ରିୟ ରାଇଫଲ୍ ଖଞ୍ଜାଥିଲା, ଶବ୍ଦଟା ସେହି ଆଡୁ ଆସୁଥିଲା ।

ସୋର୍ଡୋ ପଚାରିଲା 'ସେ କଅଣ କହୁଛି ?' ଜୋଆକ୍ୱିନ୍ ତାଙ୍କୁ ବୁଝାଇ ଦେବାରୁ ସୋର୍ଡୋ ଗୋଟାଏ ପାଖକୁ ଗଡିଯାଇ ପୁଣି ତୋପ ପାଖରେ ବସି ପଡ଼ି କହିଲା ହୁଏତ ଉଡ଼ାଜାହାଜ ଆସୁନାହିଁ । ତୁ ତାଙ୍କୁ ଜବାବ ଦେନା କିମ୍ବା ଗୁଳି ଫାଏର୍ କରନା । ହୁଏତ ଆମେ ତାଙ୍କୁ ପୁଣି ଆକ୍ରମଣ କରିବାକୁ ଉତ୍ତେଜିତ କରି ପାରିବା ।' ଯେଉଁ ଜଣକ ପାସରନାର ପୁଅ କଥା କହିଥିଲା ସେ କହିଲା 'ସେମାନଙ୍କୁ ଗାଳି ଫଜିତ କଲେ ଆକ୍ରମଣ ଆରମ୍ଭ କରି ପାରନ୍ତି ।'

ସୋର୍ଡୋ ତାହା କରିବାକୁ ବାରଣ କରି ନିଜର ବଡ଼ ପିସ୍ତଲଟା ନେଇ ଆଣ୍ଠେଇ ପଡ଼ି ମଲା ଘୋଡ଼ା କଡ଼ରେ ଗୋଟାଏ ଫାଏର କଲା । ତାପରେ ଆଉ ୪ଥର

ବେ ନିୟମିତ ବ୍ୟବଧାନରେ ଗୁଳି ଫୁଟାଇଲା । ଏହାପରେ କିଛିକ୍ଷଣ ରହି ମଲା ଘୋଡ଼ାକୁ ଗୁଳିମାରି ପିସ୍ତଲ୍ ଫେରାଇ କହିଲା 'ଏଥିରେ ଗୁଳି ଭରିଦେ ଏବଂ ସମସ୍ତେ ମୁହଁ ବନ୍ଦ କରି ରୁହ, କେହି ଗୁଳି ଫୁଟାଅ ନାହିଁ ।'

'ଡାକୁ' ବୋଲି ପୁଣି ଥରେ ପଥର ପଛରୁ ଡାକ ଶୁଭିଲା । କେହି ଜବାବ ଦେଲେ ନାହିଁ । 'ଡାକୁ' ଆତ୍ମ ସମର୍ପଣ କର, ନୋହିଲେ ମଲ !' ସୋର୍ଡୋ ମନ ଖୁସିରେ ଚୁପ୍‌ଚୁପ୍ କହିଲା ସେମାନେ ଔଷଧ ଗରରେ ଡାଟିଆ କାମୋଡ଼ୁ ଅଛନ୍ତି ।'

ସେ ଲକ୍ଷ୍ୟକଲା ଯେ ଜଣେ ଲୋକର ମୁଣ୍ଡ ପଥର ଉପରେ ଦେଖାଯାଉଅଛି । ସୋର୍ଡୋ ସମସ୍ତଙ୍କୁ ଥରମାନ ହଲଚଲ ନ ହେବାକୁ କହିଲା ।

'ଲାଲ ଘୁଷୁରି, ବେଧୁଆ, ମାତୃଦ୍ରୋହୀ' ବୋଲି ପୁଣି ଡାକ ଆସିଲା ।

ସୋର୍ଡୋ ଦାନ୍ତ କାମୁଡ଼ି ଏହି ସବୁ ଗାଳି ଓ ଅପମାନ ଶୁଣିଲା । ସେ ଭାବିଲା ବ୍ୟଥାହାରୀ ଔଷଧ ଅପେକ୍ଷା ଏହା ଭଲ । ଆମେ କେତେଜଣଙ୍କୁ ମାରି ପାରିବୁ । ସେମାନେ କଅଣ ଏଡ଼କ ଓଲୁଗିରି ଦେଖାଇବେ ।

ଶବ୍ଦ ବନ୍ଦ ହୋଇଗଲା ପ୍ରାୟ ୩ମିନିଟ ଯାଏ । କୌଣସି ଚଳପ୍ରଚଳର ଲକ୍ଷଣ ମଧ୍ୟ ଜଣା ପଡ଼ିଲା ନାହିଁ । ଏହାପରେ ଶହେ ଗଜ ଦୂରରୁ ଗଡ଼ାଣିଆରେ ଜଣେ ବନ୍ଧୁକଧାରୀ ବାହାରି ଗୁଳିମାଇଲା । ଗୁଳିଟା ପଥରରେ ବାଜି ଛନାତ୍ କରି ଛୁଟିକି ଗଲା ।

ସୋର୍ଡୋ ଦେଖିଲା ଯେ ସ୍ୱୟଂକ୍ରିୟ ରାଇଫଲ୍ ଲୁଚାଇ ଥିବା ପଥର ଉହାଡ଼ରୁ ଜଣେ ନଇଁ ପଡ଼ି ଖୋଲା ଜାଗା ଟପି ବନ୍ଧୁକଧାରୀ ଲୁହିଁଥିବା ପଥର ଷାଖକୁ ଧାଇଁଗଲା ଏବଂ ପଥର ଉପରେ ପ୍ରାୟ କୁଦା ମାଇଲା । ସୋର୍ଡୋ ଗ୍ରିଆଡ଼ ଗୃହିଁଲା । ସେମାନେ ତାକୁ ଇସାରାକଲେ ଯେ ଗଡ଼ାଣିରେ ଅନ୍ୟ କିଛି ଗତିବିଧି ନାହିଁ । ସୋର୍ଡୋ ହସି ହସି ମୁଣ୍ଡ ହଲାଇଲା । ସେ ଶିକାରୀ ପରି ଅପୂର୍ବ ଆନନ୍ଦରେ ମଗ୍ନ ହୋଇଗଲା । ତଳେ ପଥର ପଛପଟେ ଥିବା ସୈନ୍ୟଙ୍କୁ କିଏ ଜଣେ କଥା କହିବାର ଶୁଣାଗଲା ।

"ତୁ ଏହା ବିଶ୍ୱାସ କରୁ ?"

"ମୁଁ କହିପାରିବି ନାହିଁ ।"

ଯେଉଁ ଜଣକ ତାଙ୍କର ନେତା ସେ କହିଲେ 'ସେମାନେ ଘେରରେ ପଡ଼ିଛନ୍ତି, ବର୍ତ୍ତମାନ ମରିବ । ଛଡ଼ା ତାଙ୍କର ବାଟ ନାହିଁ ।'

ସୈନିକ କିଛି କହିଲା ନାହିଁ । ଅଫିସର୍ ତାହାର ମତାମତ ପଚାରିବାରୁ ସେ କହିଲା ଯେ ସେ କିଛି ଭାବୁ ନାହିଁ ।

"ଗୁଲି ଫଏର୍ ପରେ ଆଉ କିଛି ଚଳପ୍ରଚଳ ଲକ୍ଷ୍ୟ କରିଅଛୁ ?"

"ନା କିଛି ମାତ୍ର ନୁହେ ।"

ସଫିସର ଜଣକ ନଜର ହାତ ଘଡ଼ିକୁ ଗୁହିଁ ଦେଖିଲେ ଦୁଇଟା ବାଜିବାକୁ ୧୦ମିନିଟ ବାକୀ ଅଛି । ସେ କହିଲେ 'ଘଣ୍ଟାକ ଆଗରୁ ଉଡ଼ାଜାହାଜମାନ ଆସିବା କଥାଥିଲା । ଏତିକବେଳେ ଆଉ ଜଣେ ଅଫିସର ପଥର କଡ଼ରେ ଲଥ କରି ବସି ପଡ଼ିଲେ । ସୈନିକ ତାକୁ ସ୍ଥାନ ଦେବାକୁ ହଟିଗଲା ।

ପ୍ରଥମ ଅଫିସର୍ କହିଲେ 'କିଏ ପାକୋ, ତୁମକୁ ଅବସ୍ଥା କିପରି ବୋଧ ହେଉଅଛି ? ୨ୟ ଅଫିସର ଜଣକ ବେଦମ ହୋଇ ପଡ଼ିଥିଲେ । ସେ ସଁ ସଁ ହୋଇ କହିଲେ 'ମୁଁ ଭାବୁଛି ଏହା ଗୋଟାଏ ଫାନ୍ଦ ।'

"ଯଦି ଫାନ୍ଦ ନହୁଏ ତେବେ ମଲା ମୁର୍ଦ୍ଦାର କେତୋଟା କଗି ଆମେ କି ହାସ୍ୟାସ୍ପଦ କାମ ନ କରୁଛୁ ।"

'ଆମେ ତହୁଁ ଅଧିକ ହାସ୍ୟାସ୍ପଦ କାମ କରି ସାରିଲୁଣି । ଗଡ଼ାଣିଆ ଆଡ଼କୁ ଅନାଇଲ ।' ୨ୟ ଅଫିସର୍ ଜଣଙ୍କ କହିଲେ ।

ସେ ଗଡ଼ାଣି ଉପରରୁ ଗୁହିଁ ଦେଖିଲେ ଯେ କେତେଟା ମୁର୍ଦ୍ଦାର ବିକ୍ଷିପ୍ତ ହୋଇ ପଡ଼ିଅଛି । ସେ ଯେଉଁଠାରୁ ଦେଖୁଥିଲେ ସେଠାରୁ ପାହାଡ ଚୂଡ଼ାର ସୀମାରେଖା ଦିଶୁଥାଏ । ସେଠାରେ ବହୁତ ପଥର ବିକ୍ଷିପ୍ତ ପଡ଼ି ରହିଥାଏ । ଘୋଡ଼ାର ପେଟ ଗୋଡ଼ ସବୁ ଆଗକୁ ବଢ଼ି ରହିଥାଏ । ମାଟି ଗୋଡ଼ର ଚିପମାନ ମଧ୍ୟ ଦେଖା ଯାଉଥାଏ ।

୨ୟ ଅଫିସର୍ ଜଣକ ବଡ଼ ତୋପ ଆସିବା କଥା ପଚାରିଲା । 'ତାହା କମରେ କମ୍ ଏକ ଘଣ୍ଟା ମଧ୍ୟରେ ଆସିଯିବ ।' 'ତେବେ ସେଥିପାଇଁ ଅପେକ୍ଷା କର । ବହୁତ ବେକୁବ କରାଯାଇଅଛି ।'

ପ୍ରଥମ ଅଫିସର୍ ଜଣକ ହଠାତ୍ ଚିତ୍କାର କରି ଉଠିଲେ 'ତାକୁମାନେ ଲାଲ୍ ଘୁଷୁରି ପଲ, ଖାରୁ !' ସେ ପଥର ଉପରକୁ ମୁଣ୍ଡ ବାହାର କରି ସଳଖ ଠିଆ ହୋଇ ଏ କଥା କହିଲେ ।

୨ୟ ଅଫିସର ଜଣକ ସୈନିକ ଆଡ଼କୁ ଅନାଇ ମୁଣ୍ଡ ହଲାଇଲେ । ସୈନିକ ଅନ୍ୟଆଡ଼େ ଦୃଷ୍ଟି ଫେରାଇ ଓଠ କାମୋଡ଼ି ରହିଲା ।

ପ୍ରଥମ ଅଫିସର୍ ପରିଷ୍କାର ଠିଆହୋଇ ପିସ୍ତଲ ମୁଠାରେ ହାତ ଦେଇଥାନ୍ତି । ସେ ପାହାଡ଼ ଶିଖକୁ ଗାଳି ଦେଲେ । କିଛି ନ ଘଟିବାରୁ ସେ ପଥର କଡ଼ରୁ ବାହାରି ପଡ଼ି ଉପରକୁ ଚାହିଁ କହିଲେ 'ଖାରୁପଲ, ଯଦି ବଞ୍ଚିଥାଅ, ଗୁଳି ଛାଡ଼ । ଗୁଳିମାରି ଦେଖ ମୋର ତୁମ ପରି ଲାଲ୍‌ଦଳକୁ ଡରିଲେମାତ୍ର ଭୟ ନାହିଁ । ଦେଖିବି ତୁମ ଖାନକିମାଆ ଦୁଧରେ କେତେ ବଳ ।' ଏତେ ବଡ଼ ଲମ୍ବା ବାକ୍ୟଟା ଉଚ୍ଚାରଣ କରିବା ଯୋଗୁଁ ଅଫିସର ଜଣଙ୍କ ମୁହଁ ଲାଲ ପଡ଼ିଗଲା । ୨ୟ ଅଫିସର ଜଣକ ଖରାରେ ତମ୍ବା ରଙ୍ଗ ପାଲଟି ଯାଇଥାନ୍ତି । ସେ ପତଳା, ଲମ୍ବା ଓଠବାଲା ଏବଂ କେରା କେରା ଦାଢ଼ି ତାଙ୍କ ଗାଲ ଓଠରେ । ସେ ପୁଣି ମୁଣ୍ଡ ହଲାଇଲେ । ଯେଉଁ ଲୋକ ଜଣକେ ଚିତ୍କାର କରୁଥିଲା ସେ ଆକ୍ରମଣ ପାଇଁ ଆଦେଶ ଦେଇଥିଲା । ଯେଉଁ ଲୋକ ଜଣକେ ଗଡ଼ାଣିରେ ମରିଥିଲା ସେ ହେଉଛି ଜଣେ ଲେଫ୍‌ଟାଣ୍ଟ୍ ଏବଂ ୨ୟ ଅଫିସର୍ ଜଣକର ଘନିଷ୍ଠ ବନ୍ଧୁ ।

୨ୟ ଅଫିସର ଜଣକର ନାମ ହେଉଛି 'ପାକୋ ବେରେଣ୍ଡୋ । ପ୍ରଥମ ଅଫିସର୍ ଜଣକ ଥିଲେ କାପ୍ତାନ ପଦବୀର ଲୋକ ଏବଂ ଖୁବ୍ ଆନନ୍ଦ ବୋଧ କରୁଥିଲେ କାପ୍ତାନ କହିଲେ ଏହି ଘୁଷୁରି ପଲ ମୋ ମାଆ ଓ ଭଉଣୀକୁ ହତ୍ୟା କରିଥିଲେ । ତାଙ୍କ ମୁହଁ ଲାଲ, ଇଂରେଜ ଧରଣରେ ସେ ନିଶ ରଖିଥିଲେ କିନ୍ତୁ ତାଙ୍କ ଆଖିରେ କିଛି ଦୋଷ ଥିଲା । ଆଖି ଦୁଇଟା ନୀଳାଭ ଏବଂ ଭ୍ରୂଲତା ସୂକ୍ଷ୍ମକୋଣ ସମନ୍ୱିତ । ଲକ୍ଷ୍ୟ ସ୍ଥିର କରୁଥିଲେ ଅତି ଧୀରେ ଧୀରେ ସେ ପୁଣି 'ଲାଲକ୍ରାନ୍ତି' ଖାରୁ ପ୍ରଭୃତି କହି ଗାଳି ଆରମ୍ଭ କଲେ ।

ସେ ବର୍ତ୍ତମାନ ପରିଷ୍କାର ଖୋଲା ଜାଗାରେ ଠିଆହୋଇ ଗୁଣ ଆଡ଼କୁ ଭଲ କରି ଦେଖିବାକୁ ଲାଗିଲେ । ସେ ପାହାଡ଼କୁ ଲକ୍ଷ୍ୟ କରି ପିସ୍ତଲ ଫୁଟାଇଲେ । ସୋର୍ଡୋର ମଲା ଘୋଡ଼ାର ୧୫ ଫୁଟ ତଳକୁ ଗୁଳି ପଡ଼ିଲା । ସେ ପୁଣି ଫାୟାର୍ କଲେ । ଗୁଳି ପଥରରେ ବାଜି ଛିଟିକି ଗଲା ।

କାପ୍ତାନ ପାହାଡ଼ ଶିଖକୁ ଦୃଷ୍ଟିଦେଇ ଠିଆ ରହିଥାନ୍ତି । ଲେଫ୍‌ଟାଣ୍ଟ୍ ବେରେଣ୍ଡୋ ଅନ୍ୟ ଲେଫ୍‌ଟାଣ୍ଟ ଜଣକ ଶବ ପ୍ରତି ଚାହିଁଥାନ୍ତି । ସୈନିକ ତଳ ଆଡ଼କୁ ଅନାଇ ଥାଏ । ପରେ ଲେଫ୍‌ଟାଣ୍ଟ୍ କାପ୍ତାନକୁ ଚାହିଁବାରୁ ସେ କହିଲେ 'ଆଉ

ସେଠାରେ କେହି ଜୀବିତ ଲୋକ ନାହାନ୍ତି । ସୈନିକ, ତୁ ଯାଇ ଦେଖିଆ ।' ସୈନିକ ଆଗ ପରି ତଳକୁ ଚାହିଁ ରହିଲା, କିଛି ଜବାବ ଦେଲା ନାହିଁ ।

କାପ୍ତାନ ଚଢ଼ିଯାଇ କହିଲେ 'ତୁ କଅଣ କାଲ ମୋ କଥା ଶୁଣି ପାରୁନାହୁଁ ?

ତାଙ୍କ ଆଡ଼କୁ ନ ଚାହିଁ ସୈନିକ କହିଲା 'ହଁ କାପ୍ତାନ ।'

"ତେବେ ଉଠିଯାଇ ଦେଖିଆ ।" ତାଙ୍କ ହାତରେ ପିସ୍ତଲ ଥାଏ । 'ଶୁଣିଲୁ ?'

"ହଁ କାପ୍ତାନ୍ ।"

"ଯାଉନାହୁଁ କାହିଁକି ?"

"ମୁଁ ଯିବାକୁ ଚାହେଁ ନାହିଁ କାପ୍ତାନ୍ ।"

"କଅଣ କହିଲୁ, ତୁ ଯିବାକୁ ଚାହୁଁ ନାହୁଁ" କାପ୍ତାନ ଖତେଇ ହୋଇ କହିଲେ, ସେ ପିସ୍ତଲ ନଳୀ ତା ପିଠିରେ ଲଗାଇଲେ ।

ଗାମ୍ଭୀର୍ଯ୍ୟର ସହିତ ସୈନିକ କହିଲା "ମୋତେ ଡର ମାଡୁଛି ।"

କାପ୍ତାନ୍‌ର ଆଖିର ଢଙ୍ଗ ଦେଖି ଲେଫ୍‌ଟେନାଣ୍ଟ୍ ବେରେଣ୍ଡୋ ଭାବିଲେ ଯେ କାପ୍ତାନ୍ ସୈନିକକୁ ଗୁଳି ଭରିଦେବେ ।

ସେ କହିଲେ "କାପ୍ତାନ୍ ମୋରି ।"

"ହଁ, ଲେଫଟେନାଣ୍ଟ ବେରେଣ୍ଡୋ ?"

"ହୁଏତ ସୈନିକର କଥାହିଁ ଠିକ୍ ।"

"ତାକୁ ଡର ମାଡୁଛି ଏହି କଥା ଠିକ୍, ସେ ଯିବାକୁ ଚାହୁଁନାହିଁ ଏହି କଥା ଠିକ୍ ।"

"ନା, ତା ନୁହେ । ଏଟା ଗୋଟାଏ ଫାନ୍ଦ ବୋଲି ଯାହା ସେ କହୁଛି ତାହା ଠିକ୍ ।"

କାପ୍ତାନ୍ କହିଲେ 'ସେମାନେ ସମସ୍ତେ ମୃତ । ମୁଁ କହୁଛି ସମସ୍ତେ ମରି ଯାଇଛନ୍ତି ।"

"ଯଦି ଗଡ଼ାଣିରେ ଆମ ସାଥୀଙ୍କ କଥା କହୁଥାନ୍ତି ତେବେ ମୁଁ ଏକମତ" ବେରେଣ୍ଡୋ କହିଲେ । କାପ୍ତାନ୍ କହିଲେ "ପାକୋ । ଏଭଳି ଓଲୁଗିରି କରନାହିଁ ।

ତୁମେ କଅଣ ଭାବିଛ ଯେ ଜୁଲିଆନ୍‌କୁ ତୁମେ ଏକମାତ୍ର ଯତ୍ନ କରୁଥିଲ ? ମୁଁ କହୁଛି ଲାଲଗୋଷ୍ଠୀ ସମ୍ମୂଳେ ନିପାତ । ଦେଖ ।"

ସେ ଠିଆ ହୋଇ ଦୁଇ ହାତ ପଥର ଉପରେ ରଖି ନିଜେ ଉଠିଗଲେ । ତା ପରେ ଠିଆ ହୋଇ କହିଲେ "ପାରିଲେ ମୋତେ ମାର ।"

ପାହାଡ଼ ଚୂଡ଼ାରେ ନିଜ ମଲା ଘୋଡ଼ା ପଛରେ ସୋର୍ଡୋ ଶୋଇ ଶୋଇ ହସୁଥାଏ । ସେ ହସି ହସି ଭାବୁଥାଏ ଏ ଲୋକଟା କି ଧରଣର ।" କାପ୍ତାନ୍ ପୁଣି ହାଙ୍କିଦେଲେ "ଆରେ ଲାଲ କୁତାଦଳ, କାହାପ୍ରାଣ ଥିଲେ ମୋତେ ମାର ।"

ସୋର୍ଡୋ ଅତି ଅଳ୍ପ ମାତ୍ର ମୁଣ୍ଡ ଉଠାଇ କାପ୍ତାନ୍ ପଥର ଉପରେ ଠିଆହୋଇ ହାତ ହଲାଇବାର ଦେଖିଲା । ଆଉ ଜଣେ ଅଫିସର୍ ମଧ୍ୟ ଠିଆହୋଇଥାନ୍ତି । ସୈନିକ ଟିକିଏ ଦୂରରେ ଥାଏ । ତାଙ୍କ ମାନଙ୍କୁ ଗୁହିଁ ଗୁହିଁ ସୋର୍ଡୋ ମନେ ମନେ ଖୁସି ହେଲା । ସେ ମନ ଖୁସିରେ କହିଲା 'ମୋତେ ମାର, ଗୁଲି ଛାଡ଼ ।' ସେ ଖୁସିରେ କାନ୍ଧ ହଲାଇବାରୁ ଅତ୍ୟନ୍ତ ବେଦନା ଅନୁଭବ କଲା, କାପ୍ତାନ୍ ମୋଟା ପଥର ଉପରୁ ଓହ୍ଲାଇ ଆସିଲେ । ସେ ଲେଫ୍‌ଟେନାଣ୍ଟ ବେରେଣ୍ଡୋକୁ ପଚାରିଲେ 'ଏଥର ମୋ କଥାରେ ବିଶ୍ୱାସ ହେଲା ?'

ଲେଫ୍‌ଟାଣ୍ଟ୍ ବେରେଣ୍ଡୋ ଜବାବ ଦେଲେ 'ନା ।'

କପ୍ତାନ୍ କହିଲେ "ଏଠି ଦେଖୁଛି ସବୁଗୁଡ଼ାକ ଅପଦାର୍ଥ ଓ କାପୁରୁଷ ।'

ସୈନିକ ସାବଧାନ ସହିତ ପଥର ଉହାଡ଼କୁ ଗୁଲିଗଲା ଏବଂ ଲେଫ୍‌ଟେନାଣ୍ଟ୍ ବେରେଣ୍ଡୋ ତା' ପାଖରେ ବସି ପଡ଼ିଲେ ।

କାପ୍ତାନ ପଥର ପାଖରେ ଠିଆ ହୋଇ ପାହାଡ଼ ଚୂଡ଼ା ଆଡ଼କୁ ଗୁହିଁ ପୁଣି ତାନେ ଅସଭ୍ୟ ଗାଳି ଆରମ୍ଭ କଲେ । ସ୍ପେନିସ୍ ଭାଷା ଭଳି ଗାଳି ଫଜିତ ଦେବାର ଅନ୍ୟ ଭାଷା ନାହିଁ । ଇଂରେଜି ଭାଷାର ସବୁତକ ଗାଳି ଛଡ଼ା ଅନ୍ୟ ଗାଁ ଗଣ୍ଡାର ନିଶ୍ୱରତା ଏବଂ ଈଶ୍ୱର ବିଶ୍ୱାସ ସହିତ ସବୁ ପ୍ରକାର ଅସଭ୍ୟ ଗାଳି ସ୍ପେନିସ୍ ଭାଷାରେ ଅଛି । ଲେଫ୍‌ଟେନାଣ୍ଟ ବେରେଣ୍ଡୋ ଜଣେ ଭକ୍ତପ୍ରାଣ କାଥଲିକ୍ । ସୈନିକ ମଧ୍ୟ ସେହି ମତର ଲୋକ । ଦୁହେଁଯାକ ନାଭାରାର ଅଧିବାସୀ ଏବଂ କାର୍ଲିଙ୍କ ସମର୍ଥକ । ସେମାନେ ରାଗିଗଲେ । ଗାଳି ଦେଉଥିଲେ ମଧ୍ୟ ତାହା ପାପ ବୋଲି ବିଶ୍ୱାସ କରି ପାଦ୍ରୀଙ୍କ ପାଖରେ ବରାବର ପାପ ସ୍ୱୀକାର କରୁଥିଲେ ।

ସେମାନେ ଦୁହେଁ ପଥର ଉହାଡ଼ରେ ବସି କାପ୍ତାନଙ୍କର ଗାଳି ଶୁଣି ନିଜକୁ ସେଥିରୁ ଅନାସକ୍ତ ରଖିଥିଲେ । ନିଜର ବିବେକକୁ ଏପରି କଳୁଷିତ କରିବା ସେମାନେ ପସନ୍ଦ କରୁନଥିଲେ । ଏମିତି ଗାଳି ଦ୍ୱାରା ଭାଗ୍ୟ ପ୍ରସନ୍ନ ହେବ ନାହିଁ । ମେରିମାତାଙ୍କ ନିନ୍ଦା କଲେ ମନ୍ଦ ଦଶାହିଁ ଘଟିବ । ଏ ଲୋକଟା ଲାଲ୍ ଫୌଜଠାରୁ ବେଶୀ ଖରାପ କଥା କହୁଅଛି ।

ଲେଫ୍‌ଟେନାଣ୍ଟ୍ ବେରେଣ୍ଡୋ ଭାବୁଥାନ୍ତି ଜୁଲିଆନ୍ ମରିଯାଇଛି । ଏମିତିକା ଗୋଟାଏ ଦିନରେ ସେ ଗଡ଼ାଣିରେ ମରିଗଲା ଅଥଚ ଏହି ଲୋକଟାର ମୁହଁ ଖରାପ ଯୋଗୁ କିଏ ଜାଣେ କି ଦୁର୍ଗତି ଭୋଗିବାକୁ ପଡ଼ିବ ।

ଗାଳି ଦେବା ବନ୍ଦକରି କାପ୍ତାନ ଲେଫ୍‌ଟେନାଣ୍ଟ୍ ଆଡ଼କୁ ଚାହିଁଲେ । ତାଙ୍କର ଆଖି ଅଦ୍ଭୁତ ଦେଖା ଯାଉଥିଲା ।

ସେ ଖୁସି ଭାବରେ କହିଲେ 'ପାକୋ, ତୁମେ ମୋ ସହିତ ସେଠାକୁ ଚାଲ ।'

'ନା ମୁଁ ଯିବ ନାହିଁ ।'

କାପ୍ତାନ ରାଗରେ ପିସ୍ତଲ ଉଠାଇ କହିଲେ 'କଅଣ କହିଲ ?'

ବେରେଣ୍ଡୋ ଭାବୁଥାନ୍ତି ଯେ ପଦପଦକେ ପିସ୍ତଲ ଧମକ ଦେବା ଲୋକଙ୍କୁ ସେ ନାପସନ୍ଦ କରନ୍ତି। ପିସ୍ତଲ ନ ଉଠାଇ ସେମାନେ ହୁକୁମ ଦେଇ ପାରନ୍ତି ନାହିଁ । ଖୁବ୍ ସମ୍ଭବ ଗାଧୋଇବାବେଳେ ଏମାନେ ପିସ୍ତଲ ଧରିଥାଆନ୍ତି ।

ସେ କହିଲେ 'ଆପଣ ଆଦେଶ ଦେଲେ ମୁଁ ଯିବ କିନ୍ତୁ ପ୍ରତିବାଦର ସହିତ ।'

କାପ୍ତାନ୍ କହିଲେ 'ତେବେ ମୁଁ ଏକୁଟିଆ ଯିବ । ଏଠାରେ ଦେଖୁଛି କାପୁରୁଷତାର ଗନ୍ଧ ଭରପୁର ।'

ଡାହାଣ ହାତରେ ପିସ୍ତଲ ଧରି ସେ ଦୃଢ଼ ପଦରେ ଉଠାଣି ଉଠିଲେ । ସୈନିକ ଓ ବେରେଣ୍ଡୋ ତାଙ୍କୁ ଲକ୍ଷ୍ୟ କରି ରହିଥାନ୍ତି । ସେ ଲୁଚି ଛପି ଯିବାର କୌଣସି ଚେଷ୍ଟା କଲେ ନାହିଁ । ସିଧା ସଳଖ ସମ୍ମୁଖସ୍ଥ ପାହାଡ଼କୁ ମଲା ଘୋଡ଼ାକୁ ଏବଂ ମାଟି ହୁଡ଼କୁ ଚାହିଁଥାନ୍ତି । ସୋର୍ଡ୍ରୋ ମଲା ଘୋଡ଼ା ପଛପଟେ ଥାଇ କାପ୍ତାନର ଉପରକୁ ଉଠିବା ଦେଖୁଥିଲା । ଭାବିଲା ଏ ଗୋଟାକୁ ତ ଆମେ ପାଇବା ମାତ୍ର କେବଳ ଜଣେ । ତେବେ ଏହାର ଧରଣରୁ ମନେ ହେଉଛି ଇଏ ଜଣେ ବଡ଼ ପାହ୍ୟାର ଲୋକ । ଦେଖ କପରି ପଶୁପରି ଆସୁଅଛି । ଏଟା ରହିଲା

ମୋ ଆଗରେ । ମୋର ତାହାର ଏକା ଯାତ୍ରା । ଆସ ବନ୍ଧୁ ସହଯାତ୍ରୀ, ଚାଲିଆସ । ଅଟକ ନାହିଁ । ସାହେବଙ୍କର ପୁଣି ନିଶ ଅଛି । ଆଖି ନୀଳ, ମୁଣ୍ଡରେ ଟୋପି ନାହିଁ, ମୁହଁ ଲାଲ, ତାଙ୍କ ଅସ୍ତିନରୁ ଜଣା ପଡୁଛି ସେ ଜଣେ କପ୍ତାନ୍ । ହଁ, ଆସ ସହଯାତ୍ରୀ—ଏଇ ନିଅ ।'

ଏହା କହି ସୋର୍ଜୋ ସ୍ୱୟଂକ୍ରିୟ ରାଇଫଲ୍ ଘୋଡ଼ାଆ ଟାଣିଲା । ବନ୍ଧୁକଟା ପଛକୁ ହଟି ସୋର୍ଜୋର କାନ୍ଧରେ ଆଘାତ କଲା । କାପ୍ତାନ୍ ପାହାଡ଼ ଆଡ଼େ ମୁହଁ କରି ଟଳି ପଡ଼ିଲେ, ବାମ ହାତ ତାଙ୍କ କରପଟେ ରହିଗଲା । ପିସ୍ତଲ ଧରିଥିବା ଡାହାଣ ହାତ ମୁଣ୍ଡ ଉପରକୁ ରହିଲା । ଗଡ଼ାଣିଆଡ଼ୁ ତେଣେ ଗୁଳି ବୃଷ୍ଟି ଆରମ୍ଭ ହୋଇଗଲା ।

ପଥର ପଛପଟେ ବସିପଡ଼ି ଲେଫ୍ଟାଣ୍ଟ୍ ବେରେଣ୍ଡୋ ଭାବିଲେ ଏଥର ସେ ଲୁଚିବା ଜାଗାରୁ ବାହାରି ଗୁଳି ଚାଲିଥିବା ପଡ଼ିଆ ଅତିକ୍ରମ କରିବେ । ଏତିକିବେଳେ ସୋର୍ଜୋର କର୍କଶ ସ୍ୱର ଶୁଣି ପାରିଲେ ।

'ଡାକୁ ମୋତେ ମାର । ମୋତେ ଗୁଳି କର ।'

ପାହାଡ଼ ଚୂଡ଼ାରେ ସୋର୍ଜୋ ସ୍ୱୟଂକ୍ରିୟ ରାଇଫଲ୍ ପାଖରେ ଶୋଇ ହସି ଉଠିଲା । ସେଥିରେ ତା' ଛାତିରେ କଷ୍ଟ ହେଲା, ତା ମୁଣ୍ଡ ଫାଟି ପଡ଼ିଲା ପରି ବୋଧ ହେଲା । ସେ ପୁଣି ଖୁସିରେ କହିଲା 'ଡାକୁ ମୋତେ ମାର । ବହୁତ ଲୋକ ସହଯାତ୍ରୀ ହେବାକୁ ମୋତେ ଦେଖୁଛି ମିଳିବ ବୋଲି ସୋର୍ଜୋ ଭାବିଲା । ପଥର ଢିହାଡ଼ରୁ ବାହାରିଲେ ସେ ଅନ୍ୟ ଅଫିସର୍ ଜଣକୁ ମାରିବା ପାଇଁ ପ୍ରସ୍ତୁତ ହେଉଥିଲା । ସେ ଲୋକ ଶୀଘ୍ର ହେଉ ବିଳମ୍ବରେ ହେଉ ନିଶ୍ଚୟ ବାହାରିବ । ସେଠାରୁ ତ ଆଉ ସୈନ୍ୟ ଚାଳନା କରି ପାରିବ ନାହିଁ । ତାକୁ ମାରିବାକୁ ଭଲ ସୁଯୋଗ ମିଳିବ ।

ଠିକ ଏତିକିବେଳେ ପାହାଡ଼ରେ ଅନ୍ୟମାନେ ଉଡ଼ାଜାହାଜ ଆସିବା ଆବାଜ ପାଇଲେ । ସୋର୍ଜୋ କୌଣସି ଆବାଜ ପାଇ ନଥିଲା । ସେ ସ୍ୱୟଂକ୍ରିୟ ରାଇଫଲ୍ ଧରି ତଳ ଆଡ଼କୁ ଲକ୍ଷ୍ୟ କରିଥାଏ । ସେ ଭାବୁଥାଏ 'ମୁଁ ତାକୁ ଦେଖିଲାବେଳେ ସେ ଧାଉଁଥିବ ଏଣୁ ଖୁବ୍ ସାବଧାନ ନହେଲେ ଲକ୍ଷ୍ୟଭ୍ରଷ୍ଟ ହେବ । ସେହି ଖୋଲା ଜାଗା ଟପିଲା ବେଳେ ମୁଁ ତାକୁ ପଛରୁ ଗୁଳିମାରି ପାରିବି । ମୁଁ ରାଇଫଲ୍ ବୁଲାଇ ଠିକ୍ ଆଗକୁ ଲକ୍ଷ୍ୟ କରିବି କିମ୍ବା ସେହି ପଥର କଡ଼ରେ ତାକୁ ମାରି ପକାଇବି । ହଠାତ୍ କାନ୍ଧରେ କାହାର ସ୍ପର୍ଶ ଅନୁଭବ କରି ଚାହିଁ ଦେଖିଲା କୋଆକ୍ୱିନ୍ ଭୟଭୀତ ମୁଖରେ ଅଙ୍ଗୁଳି ଦେଖାଉ ଅଛି । ସୋର୍ଜୋ ଦେଖିଲେ ୩ଖଣ୍ଡି ଉଡ଼ାଜାହାଜ ।

ଏହି ମୁହୂର୍ତ୍ତିରେ ଲେଫ୍‌ଟନାଣ୍ଟ୍ ବେରେଣ୍ଡୋ ସ୍ୱୟଂକ୍ରିୟ ରାଇଫଲ୍ ଥିବା ଜାଗାକୁ ଉଦ୍ଦେଶ୍ୟ କରି ନଇଁ ନଇଁ ଧାଇଁ ପଡ଼ିଲେ । ସୋର୍ଡୋ ଉଡ଼ାଜାହାଜ ଆଡ଼େ ଅନାଇ ଥିଲା ବୋଲି ତାଙ୍କୁ ଦେଖି ପାରିଲା ନାହିଁ । ସେ ଜୋଆକ୍ୱିନ୍‌କୁ କହିଲା ରାଇଫଲ୍‌ଟା ଟାଣି ଘୋଡ଼ା ଗୋଡ ସନ୍ଧିରୁ ବାହାର କରି ପକା । ଉଡ଼ାଜାହାଜ ତ୍ରିଭୁଜ ଆକାରରେ ଆସୁଥାଏ ଏବଂ କ୍ରମେ ବଡ଼ ଦେଖା ଯାଉଥାଏ । ସୋର୍ଡୋ କହିଲା ମାଟିରେ ଶୋଇ ପଡ଼ି ଉଡ଼ାଜାହାଜର ଆଗକୁ ଲକ୍ଷ୍ୟ କରି ଗୁଳି ଚଳାଇବୁ । ଇଗନାସିଓକୁ କହିଲା ରାଇଫଲ୍‌ଟା ଜୋଆକ୍ୱିନ୍ କାନ୍ଧରେ ଥୋଇ ଦେ । ଆଉ ଜୋଆକ୍ୱିନ୍ ସେଇଠାରେ ନିଶ୍ଚଳ ହୋଇ ବସିରହୁ । ଏହା କହି ସେ ଉଡ଼ାଜାହାଜ ଆଡ଼େ ସ୍ଥିର ଦୃଷ୍ଟି କରି ରହିଲା ।

ଇଗ୍‌ନାସିଓ ରାଇଫଲ୍‌ର ଗୋଡ ୩ଟା ଧରି ରଖେ । ତା ଓଜନର ପିଲଟା ଥରୁଛି ଏବଂ ବନ୍ଧୁକ ନଳୀ ହଲି ଯାଉଅଛି । ମାଟିରେ ପେଟେଇ ପଡ଼ି ଇଗ୍‌ନାସିଓ ତ୍ରିପଦୀର ଗୋଡ ମଜବୁତ୍ କରି ଧରି ରଖିଲା । ସୋର୍ଡୋ ଜୋଆକ୍ୱିନ୍‌କୁ ମୁଣ୍ଡ ତଳକୁ କରିବାକୁ କହିଲା ।

ଉଡ଼ାଜାହାଜ ଆବାଜ ନିକଟବର୍ତ୍ତୀ ହେବାରୁ ଜୋଆକ୍ୱିନ୍ କହି ଉଠିଲା ପାସିନାରି କହୁଥିଲେ—ଏହାପରେ ହଠାତ୍ ସେ ଭଗବାନ ଓ ମେମୋତାଙ୍କ ସ୍ତବଗାନ କରି ତାଙ୍କର କୃପାଭିକ୍ଷା କଲା ।

ତା କାନପାଖି ଦେଇ ବନ୍ଧୁକ ଗୁଳି ଠୋ ଠା ହୋଇ ଫୁଟିବାକୁ ଲାଗିଲା । ବନ୍ଧୁକ ନଳୀ ତାତିଯାଇ ତା କାନ୍ଧ ତତଲା ହୋଇ ଉଠିଲା । ଅନବରତ ଗୁଳି ଆବାଜରେ ତାହାର ନିଜ ଯନ୍ତ୍ରଣା ସେ ଭୁଲିଗଲା । ତା ମନେପଡ଼ିଲା ମୃତ୍ୟୁ ଆସନ୍ନ । ମୃତ୍ୟୁଛଡ଼ା ଆଉ କିଛି ନାହିଁ । ସେ ପ୍ରଭୁଙ୍କର ଶରଣ ପଶିଲା । ଏହାମଧ୍ୟରେ ବୋମା ଆବାଜ ରାଇଫଲ୍ ଗୁଳି କାନଫଟାଇ ଦେଲା । ଇଗ୍‌ନାସିଓ ତା ପାଖରେ ଲେଉଟି ପଡ଼ିଲା, ରାଇଫଲ ତାଙ୍କ ଉପରେ ଚାପିଦେଲା । ମାଟି ଗୋଡ଼ି ଚେଲପଥର ସବୁ ଉପରେ ଗଦା ହୋଇଗଲା । ଉଡ଼ାଜାହାଜ ୩ ଥର ଆସି ପାହାଡ଼ ଚୂଡ଼ାରେ ବୋମା ବର୍ଷଣ କଲେ ମାତ୍ର ସେଠାର କେହି ଲୋକ ଜାଣିପାରିଲେ ନାହିଁ । ଏହାପରେ ଉଡ଼ାଜାହାଜରୁ ମେସିନ୍‌ଗନ୍ ଫାଏର୍ ଚାଲିଲା । ଉଡ଼ାଜାହାଜମାନ ପାହାଡ଼ ଚୂଡ଼ା ଉପରେ ଝମ୍ପଦେଇ ମେସିନ୍‌ଗନ୍ ଚଳାଇ ସେଗୋଭିଆକୁ ଫେରିଗଲେ ।

ପାହାଡ଼ ଚୂଡ଼ା ଉପରେ ଗୁଳିବର୍ଷଣ କରୁ କରୁ ଲେଫ୍‌ଟନାଣ୍ଟ୍ ବେରେଣ୍ଡୋ ଜଣେ ସୈନିକକୁ ବୋମାମାଡ଼ରେ ହୋଇଥିବା ଗାତ ପାଖକୁ ପଠାଇଲେ । ସେଠାରୁ

ସେମାନେ ଚୂଡ଼ାକୁ ହାତବୋମା ଫିଙ୍ଗିବେ । ସେ ଗୁଟଗୋଟି ହାତବୋମା ଫିଙ୍ଗିଲେ କିନ୍ତୁ ପାହାଡ଼ ଉପରେ ଜୋଆକ୍ୱିନ୍ ଛଡ଼ା ଆଉ କେହି ଜୀବିତ ନଥିଲେ । ସେ ମଧ୍ୟ ଇଗ୍‌ନାସିଓ ମୃତ୍ଦେହର ତଳେ ବେହୋସ ପଡ଼ିଥାଏ । ଲେଫ୍‌ଟନାଣ୍ଟ ବେରେଣ୍ଡୋ ଖ୍ରୀଷ୍ଟ ସ୍ମରଣ କରି ତା ମୁଣ୍ଡରେ ଗୁଳିମାରି ସବୁ ଯନ୍ତ୍ରଣାରୁ ଅବ୍ୟାହତି ଦେଲେ । ସେ ପାହାଡ଼ ଚୂଡ଼ାରେ ଠିଆ ହୋଇ ତଳଆଡ଼କୁ ନିଜର ମୃତ ଲୋକଙ୍କୁ ଦେଖିଲେ । ସେ ନିଜ ସୈନ୍ୟମାନଙ୍କ ଅବସ୍ଥାନ ଦେଖିସାରି ସବୁ ମୃତବ୍ୟକ୍ତିଙ୍କୁ ଘୋଡ଼ାରେ ବାନ୍ଧି ଲଗାଇଥା ପଠାଇବାର ବ୍ୟବସ୍ଥା କଲେ ।

ହ୍ୟୁଂକ୍ ସିସ୍ତୁ ରାଇଫଲ୍ ମୁଠା ଯାହା ହାତରେ ଅଛି ସେଇଟାକୁ ମଧ୍ୟ ନିଅ । ସେ ବୋଧହୁଏ ସୋର୍ଡୋ । ସେ ସବୁଠାରୁ ବୟସ୍କ । ନା, ଖାଲି ମୁଣ୍ଡଟା କାଟି ନେଇଗଲେ ହେବ । ବେଶ୍ ସମସ୍ତଙ୍କର ଖାଲି ମୁଣ୍ଡ କାଟି ନେଇଚାଲ । ବନ୍ଧୁକ ଓ ପିସ୍ତଲ ସବୁ ଏକାଠି କରି ଏବଂ ରାଇଫଲ୍‌ଟା ଘୋଡ଼ାରେ ଲଦିଦିଅ ।

ଏହାପରେ ପ୍ରଥମ ଲେଫ୍‌ଟନାଣ୍ଟ ମରି ପଡ଼ିଥିବା ଜାଗାକୁ ସେ ଗଲେ ମାତ୍ର ତାକୁ ସ୍ପର୍ଶ କଲେ ନାହିଁ । କହିଲେ "ଯୁଦ୍ଧଟା କେଡ଼େ ଖରାପ କାମ ।" ସେ ପୁଣି ଖ୍ରୀଷ୍ଟଙ୍କୁ ସ୍ମରଣ କରି ତଳକୁ ଓହ୍ଲାଇଲେ ଏବଂ ସେତେବେଳେ ୫ ଥର ଈଶ୍ୱରଙ୍କର ଓ ୫ଥର ମେରୀ ମାତାଙ୍କର ଜୟଧ୍ୱନି କଲେ । ଏହା କଲେ ନିଜ ମୃତ ସାଥୀଙ୍କର ଆତ୍ମାର ସଦ୍‌ଗତି ପାଇଁ । ତାଙ୍କର ଆଦେଶ ପ୍ରତିପାଳିତ ହେଲା କି ନାହିଁ ତାହା ଦେଖିବାକୁ ଆଉ ସେଠାରେ ରହି ନଥିଲେ ।

## ଅଷ୍ଟତ୍ରିଂଶ ପରିଚ୍ଛେଦ

ଉଡ଼ାଜାହାଜ ସବୁ ଫେରିଗଲା ପରେ ରବର୍ଟ କର୍ଡାନ୍ ଓ ପ୍ରିମିଟିଭ୍ ପୁଣି ଗୋଳାବୃଷ୍ଟି ଶବ୍ଦ ଶୁଣିବାକୁ ପାଇଲେ । ଶବ୍ଦ ସଙ୍ଗେ ସଙ୍ଗେ ତାଙ୍କ ଗ୍ରୁପ ଧଡ଼ଧଡ଼ କରି ଉଠିଲା । ପାହାଡ଼ ଉପରୁ ମେଘ ଆକାରରେ ଧୂଆଁ ମାଡ଼ିଆସିଲା । ସେମାନେ ଦେଖିଲେ ଯେ ଅଧିତ୍ୟକା ଉପରୁ କ୍ରମେ ଉଡ଼ାଜାହାଜ ସବୁ ଆକାଶରେ କ୍ଷୁଦ୍ରରୁ କ୍ଷୁଦ୍ରତର ହୋଇ ଅଦୃଶ୍ୟ ହେଲେ ।

•

ରବର୍ଟ କର୍ଡାନ୍ ମନେ ମନେ ଭାବିଲେ ଯେ ସେମାନେ ବୋଧହୁଏ ନିଜ ଘୋଡ଼ସବାରଙ୍କ ଉପରେ ବୋମା ବର୍ଷା କରି ସୋର୍ଡୋର ଦଳର କିଛି କ୍ଷତି କରିପାରି ନାହାନ୍ତି । ଏହି ଉଡ଼ାଜାହାଜଗୁଡ଼ାକ ବଡ଼ ଗ୍ରୁନିଆ କରିପକାନ୍ତି କିନ୍ତୁ କାହାକୁ ମାରି ପାରନ୍ତି ନାହିଁ । ଗୋଳାବୃଷ୍ଟିର ଭାରି ଆବାଜ ଶୁଣି ଶୁଣି ପ୍ରିମିଟିଭ୍ କହିଲା "ଲଢ଼େଇ ବର୍ତ୍ତମାନ ଚାଲିଅଛି । ପ୍ରଥମଥର ବୋମା ଆବାଜ ଶୁଣି ସେ ଆଖି ବୁଜି ପକାଉଥିଲା ଏବଂ ନିଜର ଶୁଷ୍କ ଓଠକୁ ଜିଭରେ ଚାଟୁଥିଲା ।" ରବର୍ଟ କର୍ଡାନ୍ କହିଲେ "ହଁ ତାହାହିଁ ହେବ, ଏମିତିକା ବୋମାବୃଷ୍ଟିରେ କେହି ମରେ ନାହିଁ ।" ଏହାପରେ ଗୁଳି ଫାଏର୍ ପୂରାପୂରି ଥମିଗଲା । ଲେଫ୍‌ଟେନାଣ୍ଟ ବେରେଣ୍ଡୋର ପିସ୍ତଲ ଆବାଜ ଏତେ ଦୂରକୁ ଆସିବା କଥା ନୁହେ । ଆବାଜ ପ୍ରଥମେ ଥମିଯିବାରୁ ସେ କିଛି ଭାବି ନଥିଲେ । କିଛିକ୍ଷଣ ଗଲାପରେ ତାଙ୍କ ମନ ଉଦାସ ହୋଇ ଉଠିଲା । ହଠାତ୍ ସେ ହାତବୋମା ବିସ୍ଫୋରଣ ଶବ୍ଦ ଶୁଣି ପୁଣି ଟିକିଏ ଉତ୍କଣ୍ଠିତ ହୋଇ ପଡ଼ିଲେ । ଏହାପରେ ସବୁ ନୀରବ ହୋଇ ଗଲାରୁ ସେ ବୁଝିପାରିଲେ ଯେ ସବୁ ଶେଷ ।

ମେରିଆ ଶିବିରରୁ ବାଲତିଭର୍ତ୍ତି ଠେକୁଆ ମାଂସ ଓ ଝୋଲରେ ଛତୁ ପକାଇ ଓ ବସ୍ତାଏ ରୁଟି ଧରି ଆସି ପହଞ୍ଚିଲା । ଚମଡ଼ା ବୋତଲରେ ମଦ, ୪ଟା ଚାମୁଚ, ୪ଟା ଟିଣଥାଳା ଓ ଦୁଇଟା ପିଆଲା ମଧ୍ୟ ଆଣିଥିଲା । ସେ ତୋପ ପାଖରେ ଠିଆ ହୋଇ ଅଗଷ୍ଟିନ୍ ଓ ଇଲାଡ଼ିଓ ପାଇଁ ଦୁଇଥାଳା ଖାଦ୍ୟ ଓ ଦୁଇ ପିଆଲା ମଦ ଢାଳିଦେଲା । ଏ ଦୁଇଜଣ ତୋପ ଚଳାଇବା କାମରେ ଆନ୍ସେଲ୍ମୋ ଜାଗା ଦଖଲ କରିଥିଲେ । ରବର୍ଟ ଜର୍ଡାନ୍ ଦେଖିଲେ ଯେ ମେରିଆ ତାଙ୍କ ନିଜ ଜଗିଥିବା ସ୍ଥାନକୁ ଖୁବ୍ ସନ୍ତର୍ପଣରେ ଚଢ଼ିଗଲା । ତା କାନ୍ଧରେ ରୁଟି ଥଳିଆ, ହାତରେ ବାଲତି ଗୋଟାଏ । ଖରାରେ ତା ଲଣ୍ଡାମୁଣ୍ଡ ଉଜ୍ଜ୍ୱଳ ଦିଶୁଥାଏ । ରବର୍ଟ ଜର୍ଡାନ୍ କିଛି ତଳକୁ ଓହ୍ଲାଇ ଆସି ମେରିଆକୁ ହାତଧରି ଉଠାଇ ନେଲେ । ସେ ଭୀତତ୍ରସ୍ତ ଦୃଷ୍ଟିରେ ପଚାରିଲା "ଉଡ଼ାଜାହାଜ କଅଣ କରିଗଲେ ?"

"ସେମାନେ ସୋର୍ଡୋ ଉପରେ ବୋମା ବର୍ଷଣ କଲେ ।" ସେ ବାଲତିରୁ ମାଂସ ଝୋଲ ଥାଳାରେ କାଢ଼ିଲେ ।

"ସେଠାରେ କଅଣ ବର୍ତ୍ତମାନ ସୁଦ୍ଧା ଲଢ଼େଇ ଚାଲିଛି ?"

"ନା ଶେଷ ହୋଇଗଲାଣି ।"

ଓଃ ବୋଲି କହି ଓଠ କାମୋଡ଼ି ମେରିଆ ସେହି ଅଞ୍ଚଳ ପ୍ରତି ଦୃଷ୍ଟି ଦେଲା । ପ୍ରିମିଟିଭୋ କହିଲା ଯେ ତାକୁ ଭୋକ ନାହିଁ । ରବର୍ଟ ଜର୍ଡାନ୍ ତଥାପି ତାକୁ କିଛି ଖାଇବାକୁ କହିଲେ ।

"ଖାଦ୍ୟ ମୋ ତଣ୍ଟିରେ ଯିବନାହିଁ ।"

ରବର୍ଟ ଜର୍ଡାନ୍ ତାକୁ ମଦ ବଢ଼ାଇ ଦେଇ କହିଲେ "ପ୍ରଥମେ କିଛି ପିଇ ନେଇ ପରେ ଖା ।"

ପ୍ରିମିଟିଭୋ ଜବାବ ଦେଲା "ସୋର୍ଡୋର ଦୁର୍ଦ୍ଦଶା ମୋ ଭୋକଶୋଷ ମାରି ଦେଇଛି । ତୁମେ ଖାଅ । ମୋର ଖାଇବା ଇଚ୍ଛା ନାହିଁ ।" ମେରିଆ ତା ପାଖକୁ ଯାଇ ତା ବେକରେ ଦୁଇବାହୁ ରଖି ଚୁମାଖାଇ କହିଲା "ବୁଢ଼ା ଖାଇପକା । ପ୍ରତ୍ୟେକେ ନିଜର ଦେହର ବଳ ଅତୁଟ ରଖିବା ଦରକାର ।" ପ୍ରିମିଟିଭୋ ତା ଆଡ଼ୁ ବୁଲିପଡ଼ି ମଦ ବୋତଲ ଚିପି ଫିଟାଇ କିଛି ପିଇନେଲା । ତା ପରେ ଥାଳାରେ ମାଂସ ତରକାରି ଓ ରୁଟି ନେଇ ଖାଇଲା । ରବର୍ଟ ଜର୍ଡାନ୍ ମେରିଆ ଆଡ଼କୁ ଅନାଇ ମୁଣ୍ଡ ହଲାଉଥାନ୍ତି । ସେ ତାଙ୍କ ପାଖରେ ବସିପଡ଼ି ତାଙ୍କ କାନ୍ଧରେ ହାତ ଥୋଇଲା । ଦୁହେଁ ପରସ୍ପରର ମନୋଭାବ ବୁଝିପାରିଲେ । ରବର୍ଟ ଜର୍ଡାନ୍ ମାଂସ ଓ ଛତୁ ତରକାରି ଗୁଣ୍ଡିଚୁଟି ଖାଇ

ସାର ମଦ ପିଇଲେ । ଖାଇ ସାର ସେ କହିଲେ "ଇଚ୍ଛା କଲେ ତୁ ବର୍ତ୍ତମାନ ଏଠାରେ ରହିପାରିବୁ ।" ମେରିଆ ଜବାବ ଦେଲା ଯେ ସେ ପିଲାଙ୍କ ପାଖକୁ ଫେରିଯିବ । ରବର୍ଟ କର୍ଡାନ୍ କହିଲେ "ସେଠାରେ ରହିଲେ କିଛି କ୍ଷତି ନାହିଁ । ଆଉ କିଛି ଘଟିବ ନାହିଁ । ମେରିଆ କହିଲା ଯେ ସେ ପିଲାଙ୍କ ପାଖକୁ ଯିବ କାରଣ ପିଲାଙ୍କ ତାକୁ ଶିକ୍ଷା ଦେଉଅଛି ।"

"କଅଣ ଶିଖାଉଅଛି ?"

ମେରିଆ ହସି ପକାଇ ତାଙ୍କୁ ଚମକାଇ କହିଲା "ଶିକ୍ଷା, ଧର୍ମଶିକ୍ଷା କିନ୍ତୁ ଭିନ୍ନ ରକମର ।" କହିଲାବେଳେ ଲଜ୍ଜାରେ ସେ ଆରକ୍ତିମ ହୋଇ ଉଠିଲା । ସେ ତାହାର ମୁଣ୍ଡ ଆଉଁସି କହିଲେ । "ହଉ ତେବେ, ଶିଖିବୁ ଯା ।" ଏହାପରେ ମେରିଆ ପ୍ରିମିଟିଭୋକୁ ଚାହିଁ ମୃଦୁ ହାସ୍ୟକରି ପଚାରିଲା "ତୋ ପାଇଁ ଆଉ କିଛି ଆଣିବ କି ?"

"ନାହିଁ ଲୋ ଝିଅ ।" ପ୍ରିମିଟିଭୋ ଯେତେବେଳଯାଏ ସ୍ୱାଭାବିକ ଅବସ୍ଥାକୁ ଫେରି ନଥିଲା ।

"ତେବେ ନମସ୍କାର ।" ମେରିଆ କହିଲା ।

ପ୍ରିମିଟିଭୋ କହିଲା "ଶୁଣ, ମୁଁ ମରିବାକୁ ଡରେନାହିଁ କିନ୍ତୁ ସେମାନଙ୍କୁ ଏପରି ଭାବରେ ଛାଡ଼ିଦେବା"—ସେ କହି କହି ହୋଇ ଉଠିଲା ।

ରବର୍ଟ ଜର୍ଡାନ୍ କହିଲେ "କରିବାର ତ କିଛି ନଥିଲା ।"

"ହଁ ସେକଥା ମୁଁ ଜାଣେ ତଥାପି—"

"କିଛି ଉପାୟ ନଥିଲା । ଆଉ ସେ କଥା ଉଠାଇ ଲାଭ ନାହିଁ ।" ଜର୍ଡାନ୍ କହିଲେ ।

"ହଁ, କିନ୍ତୁ ସେମାନେ ଏକୁଟିଆ, ଆମଠାରୁ କୌଣସି ସାହାଯ୍ୟ ନପାଇ—"

ରବର୍ଟ ଜର୍ଡାନ୍ କହିଲେ "ସେ ପ୍ରସଙ୍ଗ ନଉଠାଇବା ଭଲ । ମେରିଆ, ତୁ ତୋ ଶିକ୍ଷାପାଇଁ ଫେରିଯା ।" ମେରିଆ ପଥର ଉପରୁ ତଳକୁ ଓହ୍ଲାଇବା ସେ ଦେଖିଲେ । ଏହାପରେ ବହୁତକାଳ ସେଇଠାରେ ବସି ଅଧିତ୍ୟକାକୁ ଚାହିଁ କଅଣ କେତେ ଭାବିଲେ ।

ପ୍ରିମିଟିଭୋ ତାଙ୍କୁ କଥା କହିଲାରୁ ସେ କୌଣସି ଉତ୍ତର ଦେଲେ ନାହିଁ । ଖରା ବହୁତ ତୀକ୍ଷ୍ଣ ହୋଇଥିଲେ ମଧ୍ୟ ସେଥିକୁ ତାଙ୍କର ଭ୍ରୁକ୍ଷେପ ନଥାଏ । ସେ

ବସିରହୁ ପାହାଡ଼ର ନାସି ଓ ଦେବଦାରୁ ବଣକୁ ଦେଖୁଥାନ୍ତି । ଏମିତ ଘଣ୍ଟାଏ ବିତଗଲା ସୂର୍ଯ୍ୟ ବାମପଟକୁ ଢଳିଗଲେ । ସେ ଦେଖିଲେ ଯେ ଶତ୍ରୁ ଲୋକ ଆସୁଛନ୍ତି । ସେ ନଜର ଦୂରବୀକ୍ଷଣ ଉଠାଇନେଲେ ।

ପାହାଡ଼ର ନାସିରୁ ଓହ୍ଲାଇ ଆସୁଥିବା ପ୍ରଥମ ଦୁଇ ଅଶ୍ୱାରୋହୀ ଖୁବ୍ ଶ୍ରେଷ୍ଠ ଦେଖା ଯାଉଥାନ୍ତି । ତାଙ୍କ ପଛକୁ ଆଉ ୪ଜଣ ଅଶ୍ୱାରୋହୀ ଆସୁଥିଲେ । ଏହାପରେ ଦେଖିଲେ ଦୁଇଟି ପଂକ୍ତିରେ ଅନେକଗୁଡ଼ିଏ ଘୋଡ଼ସବାର ସୈନ୍ୟ ଆସୁଛନ୍ତି । ଦେଖୁ ଦେଖୁ ତାଙ୍କ ଦେହରୁ ଝାଳ ବହିପଡ଼ିଲା । ଜଣେ ଲୋକ ସବାଗ୍ରେ ଘୋଡ଼ାଚଢ଼ି ଆସୁଥାଏ, ତା ପଛକୁ ଅନ୍ୟ ଅନେକ ଅଶ୍ୱାରୋହୀ । ତାଙ୍କ ପଛକୁ ଆରୋହୀବିହୀନ ଘୋଡ଼ା ସବୁ ପିଠିରେ କଅଣ ବାନ୍ଧି ବନ୍ଧି ଆସୁଛନ୍ତି । ଏହା ପଛକୁ ଦୁଇଜଣ ଘୋଡ଼ସବାର । ଏହାଙ୍କ ପଛକୁ ଆହତ ଲୋକ ଏବଂ ଶେଷକୁ ପୁଣି ଅନେକ ଅଶ୍ୱାରୋହୀ ଫୌଜ ।

ଗଡ଼ାଣିରୁ ଏମାନେ ତଳକୁ ଖସି ବଣରେ ଅଦୃଶ୍ୟ ହୋଇଯିବା ରବର୍ଟ ଜର୍ଡାନ୍ ଦେଖି ପାରିଲେ । ଏତେ ଦୂରରୁ ଘୋଡ଼ା ପିଠିରେ ବାଉଁଶ ରଖି ଦୁଇ ମୁଣ୍ଡରେ କ ବୋଝ ବନ୍ଧା ହୋଇଅଛି ତାହା ସେ ବୁଝିପାରି ନଥିଲେ । ଘୋଡ଼ାର ପଦକ୍ଷେପରେ ଏହି ବୋଝ ଉଠୁଥାଏ ଓ ପଡ଼ୁଥାଏ । ଘୋଡା ଜିନ୍ ଉପରେ ଏହା ଆଡ଼ଭାବରେ ଥୁଆ ହୋଇ ରେକାବରେ ଦୁଇଆଡେ ବନ୍ଧା ରହିଥାଏ । ଜିନ୍ ଉପରେ ଘୋଡ଼ାର ସ୍ୱୟଂକ୍ରିୟ ରାଇଫଲ୍‌ଟି ଥୁଆ ।

ଲେଫ୍‌ଟେନାଣ୍ଟ ବେରେଣ୍ଡୋ ଏହି ଦଳର ନେତାଥିଲେ । ତାଙ୍କ ଦୁଇ କଡରେ ଅନ୍ୟମାନେ ଖେଳାଇ ହୋଇ ଚାଲୁଥାନ୍ତି । କିନ୍ତୁ ବେରେଣ୍ଡୋ କୌଣସି ଉଦ୍ଧତ ପଣ ଦେଖାଉ ନଥିଲେ । ଯୁଦ୍ଧ ପରେ ଯେଉଁ ଉଦାସ ଭାବ ଜନ୍ମିଥାଏ ତାଙ୍କ ମନରେ ସେଇଆ ଉପୁଜିଥିଲା । ସେ ଭାବୁଥାନ୍ତି ମଣିଷର ମୁଣ୍ଡ କାଟିଦେବା ବର୍ବରତା ତଥାପି ପରିଚୟର ପ୍ରମାଣ ଆବଶ୍ୟକ । ଯାହା କରିଅଛି ସେଥିପାଇଁ ମୋତେ ବହୁତ ଅଡୁଆରେ ପଡ଼ିବାକୁ ହେବ । ଏହି ମୁଣ୍ଡ କେତେଟା ତାଙ୍କମାନଙ୍କ ମନକୁ ଘେନିବ । ସେମାନଙ୍କ ଭିତରୁ କେତେଜଣ ଏମିତିକା ଜିନିଷ ପସନ୍ଦ କରିଥାନ୍ତି । ଖୁବ୍ ସମ୍ଭବ ସେମାନେ ଏଗୁଡ଼ିକ ବର୍ଗସ୍‌କୁ ପଠାଇ ଦେବେ । ଏହା ବର୍ବର କାମ । ଉଡାଜାହାଜ ବହୁତ ଆସିଥିଲେ । କିନ୍ତୁ ନଜର କୌଣସି ଲୋକସାନ ନକରି ଆମେ କେବଳ ବଡ ତୋପଟିଏ ପାଇଥିଲେ ବିନା ଉଡାଜାହାଜରେ ଏହାକରି ପାରିଥାଆନ୍ତୁ । ଦୁଇଟା ଖଚର, ଗୋଲା ବହି ଆଣିଥାନ୍ତେ ଆଉ ଗୋଟାଏ ଖଚର ଜିନ୍‌ର ଦୁଇ ପାଖରେ ତୋପ ଆଣିଥାନ୍ତେ । ଏତିକ ହୋଇଥିଲେ ଆମର ସୈନ୍ୟବାହିନୀ ଯଥେଷ୍ଟ ହୋଇଥାନ୍ତା ।

ଛାଡ଼ ସେ କଥା । ଭାବିଲେ କିଛି ଲାଭ ନାହିଁ । ବର୍ତ୍ତମାନ ଶ୍ୱାରୋହୀଙ୍କୁ ଆବଶ୍ୟକ ନାହିଁ । ଆମେ ସେନାବାହିନୀ ଗଢ଼ୁଅଛୁ । ଗୋଟାଏ ପାର୍ବତ୍ୟ ତୋପ ଦରକାର ହୋଇପାରେ ।

ପାହାଡ଼ ଉପରେ ଜୁଲିଆନ୍‌ର ମରିବା କଥା ସେ ଭାବିଲେ । ତାଙ୍କର ଶବ ପହିଲ ଘୋଡ଼ାରେ ବନ୍ଧା ହୋଇଅଛି । ଖରା ଛାଡ଼ି ସେ ବଣ ଛାଇ ଭିତରେ ପଶିଲେ । ସେଇଠାରେ ସେ ଜୁଲିଆନ୍ ଆତ୍ମା ପାଇଁ ପ୍ରାର୍ଥନା ମଧ୍ୟ କଲେ । ସେ କହିଲେ 'ହେ ସ୍ୱର୍ଗସ୍ଥ କରୁଣାମୟୀ ଜନନୀ । ତୁମେ ଏକମାତ୍ର ଆମର ଜୀବନ, ସୁଖ ଓ ଆଶାର ସ୍ଥଳ । ତୁମେ ଧନ୍ୟ । ଆମର ସୁଖ ଦୁଃଖ ଆଲାପ ବିଲାପ ଏହି ଅଶ୍ରୁ ଉପତ୍ୟକାରେ ତୁମଠାରେ ସମର୍ପଣ କରୁଅଛୁ ।' ସେ ମନେ ମନେ ପ୍ରାର୍ଥନା କରୁଥାନ୍ତି । ଘୋଡ଼ାଟାପୁ ଦେବଦାରୁ ପତ୍ର ଉପରେ କୋମଳ ଶବ୍ଦ କରୁଥାଏ । ବୃକ୍ଷର ଅନ୍ତରାଳରେ ଫାଙ୍କା ଜାଗା ଭିତର ଦେଇ ଝଲକା ଝଲକା ସୂର୍ଯ୍ୟ କିରଣ ଗୀର୍ଜାର ସ୍ତମ୍ଭ ଦେଇ ପଡ଼ିଲା ପରି ତାଙ୍କ ଉପରେ ପଡ଼ୁଥାଏ । ସେ ଆଗକୁ ଚାହିଁ ଦେଖିଲେ ଯେ ତାଙ୍କର ଅନୁଚରମାନେ ବଣ ଭିତରେ ଘୋଡ଼ା ଚଢ଼ି ଅଗ୍ରସର ହେଉଅଛନ୍ତି ।

ବଣରୁ ବାହାରି ସେ ଲଗ୍ରାଞ୍ଜାକୁ ଯାଇଥିବା ହଳଦିଆ ରାସ୍ତାରେ ପହଞ୍ଚିଲେ । ଘୋଡ଼ାଟାପୁର ଧୂଳି ଉଡ଼ି ଚାରିଆଡ଼େ ଘୋଟି ଯାଉଥାଏ । ମଣି ଲୋକଙ୍କ ମୁହଁରେ ଏହି ଧୂଳି ସବୁ ଜମି ଯାଇଥାଏ । ଆହତ ଏବଂ ପଦଗୃହୀଙ୍କ ସର୍ବାଙ୍ଗରେ ବହଳିଆ ଧୂଳି ଜମି ଉଠିଥାଏ । •

ଏହି ଜାଗାରେ ଆନ୍‌ସେଲ୍‌ମୋ ସେମାନେ ଘୋଡ଼ା ଚଢ଼ି ଯାଇଥିବାର ଦେଖିଲା । ସେ ମୃତାହତ ସଂଖ୍ୟା ଗଣିନେଲା ଏବଂ ସୋର୍ଡ଼ୋର ସ୍ୱୟଂକ୍ରିୟ ରାଇଫଲ୍ ଖଣ୍ଡିକ ଚିହ୍ନିଲା । କନା ପୁଟୁଳାରେ କଅଣ ଅଛି ସେ ବୁଝି ପାରିଲା ନାହିଁ । ତାହା ଘୋଡ଼ା ରେକାବ ଚମଡ଼ା ସଙ୍ଗେ ସଙ୍ଗେ ଝୁଲି ଘୋଡ଼ା ପେଟରେ ଠୋକର୍ ଖାଉଥାଏ । ଅନ୍ଧାର ହେଲାରୁ ସେ ଘରକୁ ଫେରିଲାବେଳେ ସୋର୍ଡ଼ୋର ଆଡ଼ୁଡ଼ା ଦେଇ ଆସିଲା ।

ସେ ତତ୍‌କ୍ଷଣାତ୍ ପୁଟୁଳାରେ କଅଣ ଥିଲା ବୁଝି ନେଲା । ଅନ୍ଧାରରେ ସେ ଜାଣି ପାରିଲା ନାହିଁ ପାହାଡ଼ରେ କେତେମାନେ ଥିଲେ କିନ୍ତୁ ମୁର୍ଦାର ସବୁ ଗଣି ନେଇ ପାବ୍‌ଲୋର ଶିବିର ଆଡ଼କୁ ଗତି କଲା ।

ଅନ୍ଧାରରେ ଏକାକୀ ମହାଭୟରେ ସେ ଚାଲୁଥାଏ । ବୋମା ପଡ଼ିଥିବା ଜାଗାର ଘାତ ଏବଂ ପାହାଡ଼ରେ ଯାହା ଦେଖିଲା ତହିଁରୁ ତାହାର ହୃଦୟର ସ୍ପନ୍ଦନ ବନ୍ଦହୋଇ

ଅତିତ ଏବଂ ଆଗାମୀ କାଲର ଚିନ୍ତା ମନରୁ ଉଭେଇ ଗଲା । କେବଳ ମାତ୍ର ଖବର ପହଞ୍ଚାଇବା ପାଇଁ ସେ ଦ୍ରୁତ ଗ୍ଲଲା । ଗ୍ଲୁଥିଲାବେଳେ ସେ ସୋର୍ଡ଼ୋର ଓ ତା ଦଳର ସମସ୍ତଙ୍କ ପାଇଁ ପ୍ରାର୍ଥନା କରୁଥାଏ । ଆନ୍ଦୋଳନ ଆରମ୍ଭ ହେଲା ଦିନଠାରୁ ଏହି ହେଲା ତାହାର ପ୍ରଥମ ପ୍ରାର୍ଥନା 'ହେ ଦୟାମୟୀ, ହେ ଚିର ମଧୁର, ହେ ମଙ୍ଗଳମୟୀ ମା, ତୁମେହିଁ ସାହା ଭରସା' ସେ ପ୍ରାର୍ଥନା କଲା । କିନ୍ତୁ ପରଦିନ ଚିନ୍ତା ସେ ଏକବାରକେ ଗ୍ଛଡ଼ିପାରି ନଥିଲା । ମୁଁ ଇଂରେଜ କହିଲା ପରି କରିବି । 'ହେ ପ୍ରଭୁ ମୋତେ ତାଙ୍କ ନିକଟରେ ରହିବାକୁ ଦିଅ । ତାଙ୍କର ଶିକ୍ଷା ମୁଁ ଯଥାର୍ଥ ଭାବେ ଯେପରି ଗ୍ରହଣ କରିପାରେ । ଉଡ଼ାଜାହାଜରୁ ବୋମା ବର୍ଷଣବେଳେ ମୁଁ ଧୈର୍ଯ୍ୟ ଧରି ରହି ପାରିବି ନାହିଁ । ପ୍ରଭୁ ମୁଁ ଯେପରି କାଲି ବିପଦରେ ମଣିଷର ଶେଷ ମୂହୁର୍ତ୍ତ ଭଲ ସାହାସ ଧରିପାରେ ଏତିକ କର । ଦିନମାନର ଅଭାବ ମୁଁ ଯେପରି ହୃଦୟଙ୍ଗମ କରି ପାରେ, ମୋ ହସ୍ତପଦକୁ ନିଜ ଆୟତ୍ତରେ ରଖିପାରେ । ଯୁଦ୍ଧରେ ମୋ ମନରେ ଦମ୍ଭ ଦିଅ, ହୃଦୟରେ ବିଶ୍ୱାସ ଦିଅ, ଦୁଃଖ ବିପଦରେ ଧୈର୍ଯ୍ୟ ଦିଅ । ମୁଁ ଆଉ କିଛି ଲୋଡ଼ୁ ନାହିଁ, କିମ୍ବା କେବେ ଲୋଡ଼ିବି ନାହିଁ ।

ଏପରି ପ୍ରାର୍ଥନା କରି ସାରି ସେ ଅନ୍ଧାରରେ ଯାଉଥିଲା ବେଳେ ମନର ବୋଝ ଊଣା ବୋଧ କଲା । ତାହାର ବିଶ୍ୱାସ ଜନ୍ମିଲା ଯେ ସେ ନିର୍ଭୟରେ ଯୁଦ୍ଧ କରିବ । ସେ ଯାଉଁ ଯାଉଁ ସୋର୍ଡୋର ଲୋକବାକଙ୍କ ପାଇଁ ମଧ୍ୟ ପ୍ରାର୍ଥନା କରିବାକୁ ଲାଗିଲା । ଏମିତି ଅବସ୍ଥାରେ ସେ ଫର୍ଣ୍ଣାଣ୍ଡୋ ପହରା ଦେଉଥିବା ଘାଟିରେ ପହଞ୍ଚିବାରୁ ସେ ତାକୁ ପରିଚୟ ମାଗିଲା ।

ଆନ୍‌ସେଲ୍‌ମୋ କହିଲା—'ମୁଁ ! ମୋତେ ଚିହ୍ନି ପାରୁନାହୁଁ ?'

ଫର୍ଣ୍ଣାଣ୍ଡୋ କହିଲା 'ହଁ ।'

ଆନ୍‌ସେଲ୍‌ମୋ ତାକୁ ପଗ୍ଚରିଲା 'ସୋର୍ଡୋ ଓ ତା ଦଳବଳର ଖବର ଜାଣୁ ?

ଫର୍ଣ୍ଣାଣ୍ଡୋ କହିଲା 'ହଁ ଜାଣେ । ପାବ୍‌ଲୋ କହିଅଛି ।'

"ସେ ଏଠାକୁ ଆସିଥିଲା ?"

ଫର୍ଣ୍ଣାଣ୍ଡୋ ଉଦାସ ସ୍ୱରରେ କହିଲା 'ହଁ, ଅଶ୍ୱାରୋହୀ ଗ୍ଲଲଗଲା ପରେ ସେ ଆସିଥିଲା ।'

"ସେ ତୋତେ କହିଲା ?"

ଫର୍ଣ୍ଣାଣ୍ଡୋ ଜବାବ ଦେଲା 'ସେ ଆମ ସଭିଙ୍କୁ କହିଲା । ଫ୍ୟାସିଷ୍ଟ୍ ଗୁଡାକ କ ବର୍ବର । ସ୍ପେନ୍‌ଦେଶରୁ ଆମକୁ ଏହି ବର୍ବରତା ଲୋପ କରିବାକୁ ପଡ଼ିବ ।' ଏହା

ପରେ ଅତି ତିକ୍ତ କଣ୍ଠରେ କହିଲା 'ସେମାନଙ୍କର କାହାର କୌଣସି ମର୍ଯ୍ୟାଦା ବୋଧ ନାହିଁ ।'

ଅନ୍ଧାରରେ ଆନ୍‌ସେଲ୍‌ମୋ ମୁହଁରେ ହାସ୍ୟ ଦେଖାଦେଲା ଅଥଚ ଘଣ୍ଟାକ ପୂର୍ବରୁ ସେ ଯେ ଜୀବନରେ ଆଉ କେବେ ହସିବ କଳ୍ପନା କରି ନଥିଲା । ଫର୍ଣ୍ଣାଣ୍ଡୋ ଟାବ ଅଦ୍ଭୁତ ଲୋକ । ସେ କହିବାକୁ ଲାଗିଲା ସେମାନଙ୍କୁ ଆମେ ସମୁଚିତ ଶିକ୍ଷା ଦେବୁ । ତାଙ୍କର ଉଡ଼ାଜାହାଜ, ତାଙ୍କର ସ୍ୱୟଂକ୍ରିୟ ବନ୍ଧୁକ, ଟ୍ୟାଙ୍କ୍, ଗୋଲା ବାରୁଦ ସବୁ ଛଡ଼ାଇ ନେଇ ଭଦ୍ରତା ଶିଖାଇବୁ ।'

ଫର୍ଣ୍ଣାଣ୍ଡୋ କହିଲା 'ଯଥାର୍ଥ କହୁଛ । ତୁମେ ମୋ ସହିତ ଏକମତ ଜାଣି ମୁଁ ସନ୍ତୁଷ୍ଟ ।' ତାକୁ ସେହିଠାରେ ଏକୁଟିଆ ଛାଡ଼ି ଆନ୍‌ସେଲ୍‌ମୋ ତଳକୁ ଓହ୍ଲାଇ ଗୁହାକୁ ଚାଲିଗଲା ।

# ଊନବିଂଶ ପରିଚ୍ଛେଦ

ଆନ୍‌ସେଲ୍‌ମୋ ଆସି ଦେଖିଲା ଯେ ରବର୍ଟ ଜର୍ଡାନ୍ ପଟା ଟେବୁଲ ପାଖରେ ବସି ଅଛନ୍ତି । ତାଙ୍କ ସମୁଖରେ ପାବ୍‌ଲୋ । ସେମାନେ ବୋଲଏ ମଦ ଢାଳି ରଖିଥିଲେ ଏବଂ ଦୁହେଁ ଦୁଇ ପିଆଲା ନେଇ ବସିଥିଲେ । ରବର୍ଟ ଜର୍ଡାନ୍ ନଜର ଟିପା ଖାତା ମେଲାଇ ପେନସିଲ୍ ହାତରେ ଧରିଥିଲେ । ପିଲାର୍ ଓ ମେରିଆ ଦୁହେଁ ଗୁହା ଭିତର ଅଡ଼କୁ ଥିବାରୁ ଦେଖାଯାଉ ନଥିଲେ । ମେରିଆକୁ କୌଣସି କଥାବାର୍ତ୍ତା ଶୁଣାଇ ନଦେବ ବୋଲି ପିଲାର ତାକୁ ଅଟକାଇ ଅଛି ଏକଥା ଆନ୍‌ସେଲମୋ ଜାଣି ନ ଥିବାରୁ ପିଲାର୍ ଅନୁପସ୍ଥିତିରେ ସେ ଜିଜ୍ଞାସୁ ହୋଇ ଉଠିଲା ।

ଆନ୍‌ସେଲ୍‌ମୋ ଗୁହା ମୁହଁର କମ୍ବଳ ପର୍ଦ୍ଦା ହଟାଇ ଭିତରକୁ ପଶିଲା ବେଳେ ରବର୍ଟ ଜର୍ଡାନ୍ ମୁହଁ ଟେକି ଗୃହିଁଲେ । ପାବ୍‌ଲୋ ଟେବୁଲ୍ ଉପରେ ମଦ ବୋଲା ପ୍ରତି ଦୃଷ୍ଟି ଦେଇଥିଲେ ମଧ୍ୟ କିଛି ଦେଖୁ ନଥିଲା ।

ଆନ୍‌ସେଲ୍‌ମୋ ରବର୍ଟ ଜର୍ଡାନଙ୍କୁ କହିଲା 'ମୁଁ ଉପର ଆଡ଼ୁ ଆସିଲି ।'

"ପାବ୍‌ଲୋ ସେକଥା କହିଅଛି" ରବର୍ଟ ଜର୍ଡାନ ଜବାବ ଦେଲେ ।

ଆନ୍‌ସେଲ୍‌ମୋ କହିଲା "ପାହାଡ଼ ଉପରେ ୬ ଜଣ ମରି ପଡ଼ିଛନ୍ତି । ସେମାନେ ମୁଣ୍ଡ ସବୁ କାଟି ନେଇ ଯାଇଅଛନ୍ତି । ଅନ୍ଧାରରେ ମୁଁ ସେଠାକୁ ଯାଇଥିଲି ।"

ରବର୍ଟ ଜର୍ଡାନ୍ ମୁଣ୍ଡ ହଲାଇଲେ । ପାବ୍ଲୋ ମୁହଁ ନ ଫେରାଇ ମଦବୋଲାକୁ ଚାହିଁ ବସି ରହିଲା । ତା' ମୁଖ ନିର୍ବିକାର, ସେ ଅନିମେଷ ଦୃଷ୍ଟିରେ କେବେ ନ ଦେଖିଲା ଭଳି ମଦବୋଲାକୁ ଚାହିଁଥିଲା ।

ରବର୍ଟ ଜର୍ଡାନ୍, ଆନ୍‌ସେଲ୍‌ମୋକୁ ବସିବା ପାଇଁ କହିଲେ । ବୁଢ଼ା ଟେବୁଲ ପାଖରେ ଚମଡ଼ା ଟୁଲ୍ ଉପରେ ବସି ପଡ଼ିଲା । ରବର୍ଟ ଜର୍ଡାନ୍ ଟେବୁଲ୍ ତଳେ ହାତ ବଢ଼ାଇ ଗୋଲ୍ଜୋ ଉପହାର ଦେଇଥିବା ଯାନ ହୁଇସ୍କି ବୋତଲ କାଢ଼ି ଆଣିଲେ । ବୋତଲଟା ଅଧାପୂର୍ଣ୍ଣ । ସେ ପୁଣି ଥରେ ଟେବୁଲ ତଳୁ ପିଆଲା କାଢି ସେଥିରେ ମଦ ଢ଼ାଳି ଆନ୍‌ସେଲ୍‌ମୋକୁ ବଢ଼ାଇ ଦେଇ କହିଲେ "ପିଇପକା ।"

ହୁଇସ୍କି ପିଉଥିଲାବେଳେ ପାବ୍‌ଲୋ ତା' ଆଡ଼କୁ ଚାହିଁ ପୁଣି ମଦବୋଲାକୁ ଦୃଷ୍ଟି ଫେରାଇ ନେଲା । ହୁଇସ୍କି ପିଇଲାରୁ ଆନ୍‌ସେଲ୍‌ମୋର ନାକ, ଆଖି, ମୁହଁ ପୋଡ଼ି ଉଠିଲା । ପରେ ପେଟ ଭିତର ଗରମ ହୋଇ ଉଠିବାରୁ ସେ ଆରାମ ବୋଧ କରି ହାତ ପଛରେ ମୁହଁ ପୋଛି ନେଲା ।

ଏହାପରେ ସେ ରବର୍ଟ ଜର୍ଡାନ୍‌ଙ୍କୁ ଆଉ ପିଆଲାଏ ମାଗିଲା । ସେ ତାକୁ ଆଉ ଏକ ପିଆଲା ହୁଇସ୍କି ଦେଲେ । ଏଥର ଆଉ ନାକ ଆଖି ପୋଡ଼ିଲା ନାହିଁ । ରକ୍ତସ୍ରାବ ଭୋଗୁଥିବା ଲୋକକୁ ଲୁଣପାଣି ପିଚକାରୀ ଦେବା ଯେପରି ଆରାମପ୍ରଦ, ଆନ୍‌ସେଲ୍‌ମୋ ସେହିପରି ଆରାମ ଉପଭୋଗ କଲା । ବୁଢ଼ା ପୁଣି ସନ୍ତୁଷ୍ଟ ଭାବରେ ବୋତଲକୁ ଅନାଇବାରୁ ରବର୍ଟ ଜର୍ଡାନ୍ କହିଲେ ବାକିତକ କାଲିପାଇଁ ରହିଲା । ସେ ତାକୁ ରାସ୍ତାର ଖବର ପଚାରିଲେ । ଆନ୍‌ସେଲ୍‌ମୋ କହିଲା 'ସବୁ କଥା ତୁମ କହିବା ମତେ ମୁଁ କାଗଜରେ ଟିପି ଦେଇଛି । ବହୁତ ଚଳପ୍ରଚଳ ଦେଖିଥିଲି । ବର୍ତ୍ତମାନ ମୋ ଜାଗାରେ ଆଉ ଜଣେ ରହି ଲେଖାଲେଖି କରୁଅଛି । ପରେ ମୁଁ ଯାଇ ତାହା ପାଖରୁ ଖବର ଆଣିବି ।'

"ତୁମେ ଟ୍ୟାଙ୍କ୍ ଧ୍ୱଂସକାରୀ ତୋପ ଦେଖିଛ ? ସେ ସବୁର ନଳୀ ଖୁବ୍ ଲମ୍ବା ଏବଂ ରବର ଚକରେ ଚାଲେ ।'

ଆନ୍‌ସେଲ୍‌ମୋ କହିଲା 'ହଁ ଦେଖିଛି । ୪ଗୋଟି ରାସ୍ତାରେ ଯାଇଥିଲେ । ପ୍ରତ୍ୟେକଟିର ନଳୀ ଡାଳପତ୍ର ଦ୍ୱାରା ଢଙ୍କା ହୋଇଥିଲା । ପ୍ରତ୍ୟେକ ତୋପ ପାଇଁ ୬ଜଣ ଲେଖା ଲୋକ ଟ୍ରକରେ ଯାଇ ଅଛନ୍ତି ।'

"୪ଟି ତୋପ ଦେଖିଛ ?"

କାଗଜ ନପଢ଼ି ଆନ୍‌ସେଲ୍‌ମୋ ସଂଖ୍ୟା କଥା କହିଲାରୁ ପୁଣି ପଚାରିଲେ "ଆଉ କଅଣ ରାସ୍ତାରେ ଯାଇଅଛି ?"

ରାସ୍ତାରେ ଆଉ ଯାହା ଯାହା ଯାଇଥିଲା ସେକଥା ଆନ୍‌ସେଲ୍‌ମୋ ତାଙ୍କୁ କହିବାରୁ ଟିପି ନେଲେ । ସେ ଆମୁଳଚୂଳ ସବୁ କଥା କହିଲା । ଲେଖି ପଢ଼ି ଜାଣି ନ ଥିବାରୁ ତାହାର ସ୍ମୃତିଶକ୍ତି ଖୁବ୍ ପ୍ରବଳ ଥିଲା ବୋଲି ସେ ସବୁକଥା ସହଜରେ ଗାଇଗଲା । ତାହାର ଏତିକି କଥାବାର୍ତ୍ତାବେଳେ ପାବ୍‌ଲୋ ଦୁଇ ଥର ମଦ ପିଇ ନେଲା । ଏହାପରେ କେତେଜଣ ଆହତ ଓ କେତେଜଣ ମଲେ ସେ ସଂଖ୍ୟା ମଧ୍ୟ କହିଲା । ମାଳଭୂମିରୁ ଯେଉଁ ଅଶ୍ୱାରୋହୀ ଆସିଥିଲେ ଓ ସୋର୍ଡ଼ୋ ସଙ୍ଗେ ଲଢ଼ିଥିଲେ ତାଙ୍କ କଥା ମଧ୍ୟ କହିଲା । "ଘୋଡ଼ା ଜିନ ସହିତ କେତେ ଗୁଡ଼ା ପୁଟୁଳା ଦେଖିଥିଲି । ସେ ଗୁଡ଼ା କଅଣ ବୋଲି ଜାଣି ନଥିଲି ବର୍ତ୍ତମାନ ବୁଝୁଛି ସେ ସବୁ ୬ଟା ମୁଣ୍ଡ । ତାଙ୍କର କେବଳ ଜଣେ ଅଫିସର ନାହିଁ । ଦଳେ ଅଶ୍ୱାରୋହୀ ଆକ୍ରମଣ କରିବାକୁ ଆସିଥିଲେ । ସେ ଅଫିସର ଜଣକ ସକାଳେ ଏଠାକୁ ଆସିଥିବା ଲୋକ ନୁହେଁ । ସେ ମଲାଲୋକ ଦଳର ହୋଇଥିବ । ଦୁଇଜଣଙ୍କ ହାତ ପଟିରୁ ଜାଣିଲି ଯେ ସେ ଦୁହେଁ ମଧ୍ୟ ଅଫିସର ଶ୍ରେଣୀର ଲୋକ । ତାଙ୍କ ମୁହଁ ତଳକୁ କରି ଘୋଡ଼ା ଜିନରେ ବନ୍ଧା ହୋଇଥିଲା । ହାତ ଦୁଇଟା ଝୁଲୁଥାଏ । ସୋର୍ଡ଼ୋର ମୁଣ୍ଡଟା ମଧ୍ୟ ଜିନ୍ ସଙ୍ଗେ ବନ୍ଧା ହୋଇଥିଲା । ବନ୍ଧୁକ ନଳୀ ବଙ୍କା ଥିଲା ।'

ରବର୍ଟ ଜର୍ଡାନ୍ ପିଆଲଟା ମଦ ବେଲାରେ ବୁଡ଼ାଇ କହିଲେ 'ଆଉ ଏତିକି ଯଥେଷ୍ଟ । ତୋ ଛଡ଼ା ଆଉ କିଏ ଲାଇନ ଟପି ସେ ପଟକୁ ଯାଇଥିଲା ?'

"ଆଣ୍ଡ୍ରିସ୍ ଓ ଏଲାଡ଼ିଓ ।"

"ଦୁହିଁଙ୍କ ଭିତରୁ ଭଲ କିଏ ?"

"ଆଣ୍ଡ୍ରିସ୍ ।"

"ଅଚ୍ଛା ଏଠାରୁ ନାଭସେରଡ଼ା ଯିବାକୁ ତାକୁ ସମୟ ଲାଗିବ ?"

"କିଛି ବୋଝ ନଥିଲେ, ଆଉ ଭାଗ୍ୟ ପ୍ରସନ୍ନ ଥିଲେ ସତର୍କତା ସହିତ ୩ଘଣ୍ଟା ଲାଗିପାରେ । ମାଲ ସଙ୍ଗରେ ଥିବାରୁ ଆମ୍ଭେମାନେ ନିରାପଦ ହେବା ପାଇଁ ବହୁତ ବୁଲିବୁଲି ଆସିଥିଲୁ ।"

"ସେ ନିଶ୍ଚୟ ପହଞ୍ଚି ପାରିବ ?"

"ନା, ଏ ଅବସ୍ଥାରେ ନିଶ୍ଚିତ କିଛି ରହିନାହିଁ ।"

"ବୁ ହେଲେ ମଧ୍ଧ ?"

"ସେହି ଏକା କଥା ।"

ରବର୍ଟ ଜର୍ଡାନ୍ ଭାବିଲେ ଯେ ଆଉ ସେ କଥାରେ ବଢ଼ିବା ଅନାବଶ୍ୟକ । ସେ ଯଦି ନିଶ୍ଚୟ ବୋଲି କହିଥାନ୍ତି । ତେବେ ମୁଁ ନିଶ୍ଚୟ ତାକୁ ପଠାଇଥାନ୍ତି ।

"ତୋ ଭଳି ଆଣ୍ଡ୍ରିସ୍ ମଧ୍ଧ ଯାଇପାରେ ?"

"ମୋ ଭଳି, ବରଂ ମୋଠାରୁ ଭଲ, କାରଣ ସେ ଯୁବକ ।"

"କିନ୍ତୁ ଯେ କୌଣସି ମତେ ପହଞ୍ଚିବା ଦରକାର ।"

"ଯଦି କିଛି ନ ଘଟେ ତେବେ ନିଶ୍ଚୟ ପହଞ୍ଚିବ, ଆଉ କିଛି ଘଟିବା ତ ସମସ୍ତଙ୍କ ପକ୍ଷରେ ସମ୍ଭବ ।"

ରବର୍ଟ ଜର୍ଡାନ୍ କହିଲେ 'ମୁଁ ଗୋଟିଏ ଖବର ଲେଖି ପଠାଇବାକୁ ଚାହେଁ । ସେନାପତିଙ୍କୁ କେଉଁଠାରେ ପାଇବ ମୁଁ ମୁହଁରେ ତାକୁ ବୁଝାଇ ଦେବି । ସେ ଡିଭିଜନ୍‌ର ମେଯୁରଙ୍କ ଅଫିସକୁ ଯିବ ।'

ଆନ୍‌ସେଲ୍‌ମୋ କହିଲା 'ସେ ଡିଭିଜନ୍ ଫିଭିଜନ୍ କିଛି ବୁଝିବ ନାହିଁ । ଏଟା ତ ମୋ ମୁଣ୍ଡରେ ପଶୁ ନାହିଁ । ତାକୁ ସେନାପତିଙ୍କ ନାମ ଏବଂ ସେ କେଉଁଠାରେ ମିଳିବେ କହିବାକୁ ହେବ ।' କିନ୍ତୁ ସେନାପତିଙ୍କୁ ତ ସେ ଡିଭିଜନ୍‌ର ମେଯୁର ଅଫିସରେ ପାଇବ ।'

"ଆଚ୍ଛା ସେଟା କଅଣ ଗୋଟାଏ ଜାଗା ନୁହେଁ ?"

ନିଶ୍ଚୟ ଗୋଟିଏ ଜାଗା । ସେ ଜାଗାଟି ସେନାପତି ଏହି ଯୁଦ୍ଧ ପାଇଁ ନିଜର ପ୍ରଧାନ କେନ୍ଦ୍ର ବୋଲି ଠିକ୍ କରିଥିବେ ।'

ଆନ୍‌ସେଲ୍‌ମୋ ଅତ୍ୟନ୍ତ ପରିଶ୍ରାନ୍ତ ହୋଇଥିବାରୁ ବୁଝି ନପାରି କହିଲା 'ସେ ଜାଗାଟା କେଉଁଠାରେ ? ବ୍ରିଗେଡ୍, ଡିଭିଜନ୍ ସେନାବାହିନୀ ପ୍ରଭୃତି ଶବ୍ଦ ସେ ଧାରଣା କରି ପାରୁ ନଥିଲା । ପ୍ରଥମେ ସୈନ୍ୟ ଦଳମାନ୍, ତାପରେ ରେଜିମେଣ୍ଟ, ରେଜିମେଣ୍ଟ ଉପରକୁ ବ୍ରିଗେଡ଼ ପ୍ରଭୃତି ସେ ଶୁଣିଥିଲା । ବର୍ତ୍ତମାନ ବ୍ରିଗେଡ଼ ଓ ଡିଭିଜନ୍ ଦୁଇଟା କଥା ଶୁଣିଲା । ସେ କିଛି ବୁଝିଲା ନାହିଁ । ସ୍ଥାନଟା କଅଣ, ସେତିକି ସେ ଜାଣିବାକୁ ଚାହେଁ ।

ରବର୍ଟ ଜର୍ଡାନ୍ କହିଲେ 'ବୁଢ଼ା, ଧୀରେ ସ୍ଥିରେ ବୁଝିବାକୁ ଚେଷ୍ଟାକର ।' ସେ ଜାଣିଥିଲେ ଯେ ଆନ୍‌ସେଲ୍‌ମୋ କୁ ଭଲ କରି ବୁଝାଇ ନ ପାରିଲେ ଆଣ୍ଡ୍ରିସ୍

ମଧ୍ୟ ବୁଝିବ ନାହିଁ । ସେ ବୁଝାଇଲେ ଦୁଇଟି ବ୍ରିଗେଡ୍ ମିଶିଲେ ଗୋଟିଏ ଡ଼ିଭିଜନ୍ ହୁଏ । ଡ଼ିଭିଜନ୍‌ର ସେନାପତି ନିଜେ ତାଙ୍କର ପ୍ରଧାନ କର୍ମକେନ୍ଦ୍ର ବାଛି ଥାଆନ୍ତି । ତାହାକୁହିଁ ମେସ୍ସର ଅଫିସ କହନ୍ତି । ସେ ଅଫିସଟା ବର୍ତ୍ତମାନ କେଉଁଠାରେ ମୁଁ ନିଜେ ଜାଣେ ନାହିଁ କାରଣ ସ୍ଥାନ ବାଛିଲାବେଳେ ମୁଁ ସେଠାରେ ନଥିଲି । ହୁଏତ ଏହା ଗୋଟିଏ ଗୁହା, କିମ୍ବା ଗାତ କିମ୍ବା ଅଗ୍ରସ୍ଥଳ ହୋଇଥିବ । ସେଠାରୁ ତାର ସବୁ ଗୃହଆଡ଼େ ଯାଇଥିବ । ଆଣ୍ଡ୍ରିସ୍ ସେନାପତିଙ୍କ ଖୋଜ୍ ନେବ ଏବଂ ମେସ୍ସର ଅଫିସ ଠିକଣା ପଗ୍ଚରି ବୁଝିବ । ମୋର ଚିଠି ସେ ସେନାପତିଙ୍କୁ କିମ୍ବା ତାଙ୍କ ଅଫିସ୍‌ର ବଡ଼ବାବୁଙ୍କୁ କିମ୍ବା ମୁଁ ଆଉ ଯାହାଙ୍କ ନାମ ଲେଖିଦେବି ତାଙ୍କୁ ଦେବ । ୩ଜଣ ମଧ୍ୟରୁ ଜଣେ କେହି ନିଶ୍ଚୟ ସେଠାରେ ଥିବେ । ବର୍ତ୍ତମାନ ବୁଝିଲୁ ?'

"ହଁ ବୁଝିଲି ।"

"ତେବେ ଅଣ୍ଡ୍ରିସ୍‌କୁ ଡାକି ଅଣ । ମୁଁ ଖବର ଲେଖି ଏହି ମୋହର ଦ୍ୱାରା ମୁଦ୍ରିତ କରି ଦେବି । ଏହା କହି ସେ ତାକୁ ଖଣ୍ଡିଏ ଗ୍ରେଟ କାଠରେ ଲଗିଥିବା ରବର ଷ୍ଟାମ୍ପ ଦେଖାଇଲେ । ସେଥିରେ ଏସ୍ ଅଇ.ଏମ୍ ତିନୋଟି ଅକ୍ଷର ଲେଖାଥିଲା । ଗୋଟିଏ ସାନ ଟିଣ ଡ଼ବାରେ ମୋହର ମାରିବା କାଳି ମଧ୍ୟ ଥାଏ । ମୋହରଟି ଗୋଟିଏ ଅଧଲି ପରି ସାନ । ସେ ତାହା ପକେଟରେ ରଖିଥାନ୍ତି । 'ଏହି ମୋହରକୁ ସେମାନେ ଖାତିର କରିବେ । ବର୍ତ୍ତମାନ ଆଣ୍ଡ୍ରିସ୍‌କୁ ଡାକି ଅଣ । ମୁଁ ତାକୁ ବୁଝାଇ ଦେବି । ତାକୁ ଦ୍ରୁତ ଯିବାକୁ ପଡ଼ିବ ମାତ୍ର ଯିବା ପୂର୍ବରୁ ସବୁ ବୁଝିନେବା ଉଚିତ ।'

ମୁଁ ବୁଝିଲେ ସେ ମଧ୍ୟ ବୁଝିବ ମାତ୍ର ଆପଣ ସବୁ ପରିଷ୍କାର କରି କହିବା ଉଚିତ । ଏହି ସବୁ ଷ୍ଟାଫ୍ ଡ଼ିଭିଜନ ମୋ ପକ୍ଷରେ ଏକ ରହସ୍ୟ । ମୁଁ ସବୁବେଳେ କୌଣସି ନିର୍ଦ୍ଦିଷ୍ଟ ଘରକୁ ବା ସ୍ଥାନକୁ ଖବର ନେଇ ଯାଇଥାଏ । ନାଭିସେବ୍ଡାଠାରେ ଗୋଟାଏ ପୁରୁଣା ହୋଟେଲରେ ସେନାପତିଙ୍କ କର୍ମକେନ୍ଦ୍ର । ଗୁଅଡାରାମାଠାରେ ଗୋଟିଏ ବଗିଚ୍ଚା ଭିତର କୋଠି ।'

ରବର୍ଟ ଜର୍ଡାନ୍ କହିଲେ 'ଏ ସେନାପତି ଲଢ଼େଇ ସ୍ଥାନର ନିକଟରେ ରହୁଥିବେ । ଉଡ଼ାଜାହାଜରୁ ରକ୍ଷା ପାଇବା ପାଇଁ ସେ ମାଟି ଭିତରେ ଅଶ୍ରୟ କରିଥିବେ । ତାହାକୁ ପଗ୍ଚରିଲେ ଆଣ୍ଡ୍ରିସ୍ ସହଜରେ ସେହି ଠିକଣା ପାଇ ପାରିବ ? ତାକୁ କେବଳ ମୋ ଲେଖା ଦେଖାଇଲେ ହେଲା । ଏବେ ଯାଇ ତାକୁ ଡାକିଅଣ । କାରଣ ଖବରଟା ସେଠାରେ ଶୀଘ୍ର ପହଞ୍ଚିବା ଦରକାର ।'

କମ୍ବଳ ପର୍ଦ୍ଦା ତଳେ ନଇଁ ପଡ଼ି ଆନ୍‌ସେଲ୍‌ମୋ ବାହାରିଗଲା । ରବର୍ଟ ଜର୍ଡାନ୍ ଲେଖିବା ଆରମ୍ଭ କଲେ । ମଦବେଲକୁ ଗୁହାଁ ପାବ୍‌ଲୋ କହିଲା 'ଇଂରେଜ,

ମୋ କଥା ଶୁଣ ।' ରବର୍ଟ ଜର୍ଡ଼ାନ୍ ମୁଣ୍ଡ ନଡ଼ଠାଇ କହିଲେ ଯେ ସେ ଲେଖୁଛନ୍ତି । "ହଉ, ତଥାପି ଶୁଣ । ହତାଶ ହେବାର କିଛି ନାହିଁ । ଗୋର୍ଜୋ ନଥିଲେ ମଧ୍ୟ ଆମ ହାତରେ ବହୁତ ଲୋକ ଅଛନ୍ତି ଯିଏକି ଜଗିବେ ଓ ପୋଲ ଉଡ଼ାଇ ଦେଇ ପାରିବେ ।'

ଲେଖା ବନ୍ଦ ନକରି ରବର୍ଟ ଜର୍ଡ଼ାନ୍ କହିଲେ 'ଭଲ କଥା ।'

ପାବ୍ଲୋ କହିଲା 'ଇଂରେଜ, ଆଜି ତୁମର ବଗୁର ବୁଦ୍ଧିର ମୁଁ ବହୁତ ତାରିଫ୍ କରୁଅଛି । ତୁମର ଧୈର୍ଯ୍ୟ ବହୁତ ବେଶୀ । ତୁମେ ମୋ ଅପେକ୍ଷା ବେଶୀ ଚାଲାଖ । ମୋର ତୁମ ଉପରେ ପୂର୍ଣ୍ଣ ବିଶ୍ୱାସ ରହିଛି ।'

ରବର୍ଟ ଜର୍ଡ଼ାନ୍ ଖବର ଲେଖିବାରେ ମନୋନିବେଶ କଲେ । ଅତି ସଂକ୍ଷେପ ଅଥଚ ଭଲଭାବେ ବୋଧଗମ୍ୟ ହେଲାଭଳି ଭାଷା ସେ ବ୍ୟବହାର କଲେ । ସେ ଗୋଲ୍ଜଙ୍କୁ ବୁଝାଇବାକୁ ଚେଷ୍ଟାକଲେ ଯେ ଉପସ୍ଥିତ ପରିସ୍ଥିତିରେ ଆକ୍ରମଣ କରିବା ତାଙ୍କ ଆଡ଼ୁ ଖାରଜ କରାଯାଉ । କିନ୍ତୁ କେହି ଯେପରି ନ ବୁଝନ୍ତି ଯେ ଭୟ କରି କିମ୍ବା ନିଜ କର୍ତ୍ତବ୍ୟ ପାଳନରେ ବିମୁଖ ହୋଇ ସେ ଏପରି ଜଣାଉଅଛନ୍ତି । ସେ କେବଳ ଅବସ୍ଥା ବୁଝାଇବାକୁ ଏତିକି ଲେଖୁଅଛନ୍ତି ।

ପାବ୍ଲୋ ଡାକିଲା 'ଇଂରେଜ ।'

ଲେଖା ବନ୍ଦ ନକରି ସେ କହିଲେ 'ମୁଁ ଲେଖାରେ ବ୍ୟସ୍ତ ।' ସେ ଭାବିଲେ ଦୁଇକପି ଖବର ପଠାଇବା ଉଚିତ ହେବ । କିନ୍ତୁ ତା ହେଲେ ଯଦି କିଛି ପୋଲ ଉଡ଼ାଇବାକୁ ପଡ଼େ ତେବେ ମୋ ହାତରେ ପର୍ଯ୍ୟାପ୍ତ ଲୋକ ରହିବେ ନାହିଁ । ଏହି ଆକ୍ରମଣର ହେତୁ କଅଣ ? ଏହା ହୁଏତ ସାମୟିକ, ହୁଏତ ଗୋଟାଏ ଚାଲ ଯଦ୍ୱାରା କି ଉଡ଼ାଜାହାଜମାନ ଏଠାରୁ ଉତ୍ତରକୁ ଚାଲିଯିବ । ହୁଏତ ଏମିତି କିଛି ଲକ୍ଷ୍ୟ ରହିଛି । ହୁଏତ ଏହି ଆକ୍ରମଣ ସଫଳ ନ ହେବ ବୋଲି ଜଣା । ମୁଁ ତ ଏସବୁ ଜାଣେ ନାହିଁ । ଏହାହିଁ ମୋର ଗୋଲଜଙ୍କ ପାଖକୁ ଖବର । ଆକ୍ରମଣ ଆରମ୍ଭ ନ ହେବା ପର୍ଯ୍ୟନ୍ତ ମୁଁ ପୋଲ ଧ୍ୱଂସ କରୁନାହିଁ । କିନ୍ତୁ ହୁକୁମ ପାଳିବା ପାଇଁ ମୋତେ ଏଠାରେ ସର୍ବନିମ୍ନ ସଂଖ୍ୟକ ଦରକାରୀ ଲୋକ ହାତରେ ରଖିବାକୁ ପଡ଼ିବ । ସେ ପାବ୍ଲୋକୁ ପଚାରିଲେ 'କଅଣ କହୁଛ ?'

ପାବ୍ଲୋ ମଦବୋଲାକୁ ଚାହିଁ ଚାହିଁ କହିଲା 'ମୋର ତୁମ ଉପରେ ବିଶ୍ୱାସ ଅଛି ।'

ରବର୍ଟ ଜର୍ଡ଼ାନ୍ ଭାବିଲେ ଏ କଥା ସତ ବୋଲି ସେ ଗ୍ରହଣ କରି ପାରନ୍ତେ କି ? ସେ ଲେଖିବାକୁ ଲାଗିଲେ ।

# ତ୍ରିଂଶ ପରିଚ୍ଛେଦ

ସେହି ରାତିରେ ଯାହା କରିବା କଥା ସବୁ କରାଗଲା । ଯାହାକୁ ଯାହା ହୁକୁମ ଦେବା କଥା ତାହା ମଧ୍ୟ ଦିଆଗଲା । ସକାଳେ କାହାକୁ କଅଣ କରିବାକୁ ହେବ ପ୍ରତ୍ୟେକେ ଜାଣିଗଲେ । ଆଣ୍ଡ୍ରିସ୍ ଯିବାର ୩ଘଣ୍ଟା ବିତି ଯାଇଥାଏ । ହୁଏତ ସକାଳ ହେଲା ବେଳକୁ ସେ ଫେରିବ ନୁହେତ ନଫେରିବ । ଫେରିବ ବୋଲି ସେ ଆଶା କରୁଥିଲେ । ଉପର ମୁଣ୍ଡରେ ପ୍ରିମିଟିଭ୍ସେ ପାଖରୁ ଫେରିଲାବେଳେ ରବର୍ଟ ଜର୍ଡାନ୍ ଏହାହିଁ ଭାବୁଥିଲେ ।

ଗୋଲ୍ଜ ଆକ୍ରମଣ କରିପାରିବେ ମାତ୍ର ତାହା ଖାରଜ କରିବା କ୍ଷମତା ତାଙ୍କର ନଥିଲା । ସେ ହୁକୁମ ମାଦ୍ରିଦ୍‌ଠାରୁ ଆସିବା କଥା । ମାଦ୍ରିଦ୍‌ଠାରେ ଏତେ ରାତିରେ କାହାକୁ ନିଦରୁ ଉଠାଇ ହୁକୁମ ଅଣାଇବା ସମ୍ଭବ ନୁହେଁ, ଯଦି କେହି ଉଠେ ତେବେ ନିଦ ବାଉଳାରେ କିଛି ଠିକ୍ କରିପାରିବ ନାହିଁ । ଶତ୍ରୁପକ୍ଷ ଆମ ଆକ୍ରମଣ ପାଇଁ କିପରି ପ୍ରସ୍ତୁତ ସେକଥା ମୋତେ ଆଗରୁ ଜଣାଇବା ଉଚିତଥିଲା ମାତ୍ର ଆକ୍ରମଣ ନ ହେବାଯାଏ ମୁଁ ବା କିପରି ଜାଣନ୍ତି । ସନ୍ଧ୍ୟା ନ ହେବାଯାଏ ସେମାନେ ତ କୌଣସି ବସ୍ତୁ ଆଣି ନଥିଲେ । ସେମାନେ ରାସ୍ତାରେ କୌଣସି ଚଳପ୍ରଚଳ କରାଇ ନଥିଲେ କିନ୍ତୁ ଫ୍ୟାସିଷ୍ଟ୍‌ମାନଙ୍କ ଉଡ଼ାଜାହାଜ ସବୁ ଗଲା କୁଆଡ଼େ ?

ଆମ ଲୋକେ ନିଶ୍ଚୟ ପୂର୍ବରୁ ସତର୍କ ହୋଇଥିବେ । ହୁଏତ ଫ୍ୟାସିଷ୍ଟମାନେ ଗୁଆଡାଲାଠାରେ ଅଉ ଗୋଟାଏ ନକଲି ଆକ୍ରମଣ ଆରମ୍ଭ କରି ଆମକୁ ଧପେଇବାପାଇଁ ଭାବିଥିବେ । ଉତ୍ତର ଅଞ୍ଚଳର ସୈନ୍ୟ ସମାବେଶ ଛଡ଼ା ସୋରିଆଠାରେ ଏବଂ

ସିଗୁଏଞ୍ଜାଠାରେ ଇଟାଲୀୟ ସୈନ୍ୟ ସମବେତ ହେବା କଥା ରହିଛି । କିନ୍ତୁ ଦୁଇଟା ବଡ଼ ଯୁଦ୍ଧ ଏକା ସାଙ୍ଗରେ ଚଳାଇବାପାଇଁ ଯେତେ ସଂଖ୍ୟକ ଫୌଜ ଦରକାର ତାହା ତାଙ୍କର ନାହିଁ । ଅତଏବ ଏହା ମଧ୍ୟ ଗୋଟାଏ ଫାଙ୍କା ଆବାଜ ।

କିନ୍ତୁ ଗତ ମାସରେ ଏବଂ ତାହାର ପୂର୍ବ ମାସରେ ଯେଉଁ ସଂଖ୍ୟକ ଇଟାଲୀୟ ସୈନ୍ୟ କାଡିଜ୍‌ଠାରେ ଜାହାଜରୁ ଓହ୍ଲାଇଲେ ସେକଥା ଆମକୁ ଜଣା ।

ଗୁଆଡାଲଜାରାଠାରେ ସେମାନେ ପୁଣିଥରେ ଆକ୍ରମଣ କରିବା ସମ୍ପୂର୍ଣ୍ଣ ସମ୍ଭବ। ଏଥର ଆଗଭଳି ଭୁଲ୍ କରିବେ ନାହିଁ । ଏଥର ତିନି ଶାଖାରେ ଆକ୍ରମଣ ଚଳାଇ ରେଲ୍‌ଲାଇନ୍ କଡ଼େ କଡ଼େ ପଶ୍ଚିମ ମାଳଭୂମିକୁ ମାଡ଼ିଯିବେ । ସେମାନେ ଏପରି କରିବା ମଧ୍ୟ ସମ୍ଭବପର । ମୋତେ ହାନ୍‌ସ ଏହା ବୁଝାଇ ଅଛନ୍ତି । ପ୍ରଥମଥର ସେମାନେ ଅନେକ ଭୁଲ କରିଥିଲେ । ସେ ପରିକଳ୍ପନା ଦୁର୍ବଳ ଥିଲା । ଗୁଆଡାଲ-ଜାରାଠାରେ ଯେଉଁ ସୈନ୍ୟ ବ୍ୟବହାର କରିଥିଲେ ସେହି ସୈନ୍ୟଙ୍କୁ ନେଇ ମାଡ୍ରିଦ୍-ଭାଲେନ୍‌ସିଆ ରାସ୍ତା ବିରୁଦ୍ଧରେ ଆର୍ଗଣ୍ଡା ଅଭିଯାନ କରି ନଥିଲେ । ସେମାନେ ଯୁଗପତ୍ ଆକ୍ରମଣ କାହିଁକି କଲେ ନାହିଁ । ଏହି 'କାହିଁକି'ର ଉତ୍ତର କିଏ ଦେବ ?

ଅଥଚ ସେହି ଏକ ସୈନ୍ୟଦଳ ନେଇ ଆମେ ଦୁଇବାର ତାଙ୍କୁ ପ୍ରତିହତ କରିଅଛୁ । ଏକାବେଳକେ ଦୁଇ ଜାଗାରୁ ଆକ୍ରମଣ କରିଥିଲେ ଆମ୍ଭେମାନେ ତାଙ୍କୁ ଅଟକାଇ ପାରି ନଥାନ୍ତୁ । ଆଉ ଏକଥା ଭାବିଚନ୍ତା କରିବା ଭାବ ନୁହେ । ଏହା ପୂର୍ବରୁ ଯେଉଁ ଅଲୌକିକ କାଣ୍ଡ ଘଟିଲା ସେକଥା ମନେ ପକାଇବା ଭଲ । କାଲି ସକାଳେ ହୁଏତ ପୋଲଟା ଧ୍ୱଂସ କରିବାକୁ ପଡ଼ିବ, ନପଡ଼ିବା ନୁହେ । କିନ୍ତୁ ପୋଲ ଉଡ଼ାଇବା ଦରକାର ନାହିଁ ବୋଲି ନିଜକୁ ସାନ୍ତ୍ୱନା ଦେବା ଠିକ୍ ହେବନାହିଁ । ଯଦି ଏହି ପୋଲ କଥା ନହୁଏ ତେବେ ଅନ୍ୟ କୌଣସି ପୋଲ୍ ଧ୍ୱଂସ କରିବାକୁ ହେବ । ମୁଁ ତ ହୁକୁମ ପାଳିବା ଲୋକ କଅଣ କରିବ ନକରିବ ସେ କଥାର ଦାୟିତ୍ୱ ମୋ ହାତରେ ନାହିଁ । ଯାହା ହୁକୁମ ମିଳିଛି ତହୁଁ ଅଧିକ ଭାବିବା ଦରକାର ନାହିଁ ।

ଏ ସମ୍ବନ୍ଧରେ ହୁକୁମନାମା ଅତି ପ୍ରାଞ୍ଜଳ । ଏଥିପାଇଁ ଦୁଶ୍ଚିନ୍ତା କିମ୍ବା ଭୟର କାରଣ ନାହିଁ । ମୁଁ ଯଦି ଭୀତ ହୋଇ ଉଠେ ତେବେ ମୋର ଭୟ, ମୋ ଅଧୀନ ଲୋକଙ୍କ ଉପରେ ସଂକ୍ରମିତ ହୋଇପାରେ ।

କିନ୍ତୁ ଏହି ମୁଣ୍ଡ କାଟିନେବା କଥା ଏକ ବଡ଼ ବିଷୟ । ବୁଢ଼ା ଏକୁଟିଆ ପାହାଡ଼ ଉପରକୁ ଯାଇ ସବୁ ଦେଖିଅଛି । ମୁଁ ଯାଇ ଏହା କରିପାରନ୍ତି କି ? ମୁଣ୍ଡକଟା

କଥା ମୋତେ ଅଭିଭୂତ କରି ଦେଇଅଛି । ଆଜି ଅଭିଭୂତ ହେବାର ଏକାଧିକ ଉପଲକ୍ଷ ଜୁଟିଅଛି । ତେବେ ମୁଁ ଏ ପର୍ଯ୍ୟନ୍ତ ଠିକ୍ ଅଛି । ମଣ୍ଟାନା ବିଶ୍ୱବିଦ୍ୟାଳୟରେ ସ୍ପେନିସ୍ ଭାଷାର ଅଧ୍ୟାପକ କାମ ଭଲଭାବରେ କରିଥିଲି ବୋଲି ମୋର ଯେଉଁକିଛି ବିଶେଷତ୍ୱ ଅଛି ଏପରି ଭାବିବା ଉଚିତ ନୁହେଁ । ଏ କାମରେ ମୁଁ ବେଶୀ କିଛି କୃତିତ୍ୱ ଦେଖାଇ ନାହିଁ । ଡୁରାନ୍ କଥା ଦେଖିଲି । ସେ ସହରିଆ ଟୋକାଟିଏ ଏବଂ ଆନ୍ଦୋଳନ ଆରମ୍ଭ ପୂର୍ବରୁ କବିତା ଲେଖୁଥିଲା । ତାହାର ସାମରିକ ଶିକ୍ଷା କିଛି ନଥିଲା ଅଥଚ ବର୍ତ୍ତମାନ ଏକ ବ୍ରିଗେଡ଼ ସୈନ୍ୟର ସେନାପତି ହୋଇ ପାରିଅଛି । ପିଲାଦିନୁ ସତରଞ୍ଜ ଖେଳରେ କଠିଣ କଠିଣ ଅସାଧାରଣତ୍ୱ ଅର୍ଜନ କଲା ପରି ଡୁରାନ୍ ଅତି ସହଜରେ ସାମରିକ କୌଶଳମାନ ହାସଲ କରି ନେଇଅଛି । ମୁଁ ପିଲାଦିନୁ ଯୁଦ୍ଧ ସମ୍ବନ୍ଧୀୟ ଗ୍ରନ୍ଥପାଠ ଓ ଆଲୋଚନା କରିଅଛି । ମୋ ଅଜା ଆମେରିକାର ଗୃହଯୁଦ୍ଧରେ ଅଂଶ ଗ୍ରହଣ କରିଥିଲେ । ଅଜା ସବୁବେଳେ ତାହାକୁ ଯୁଦ୍ଧ ନକହି ବିଦ୍ରୋହ ବୋଲି ଅଭିହିତ କରୁଥିଲେ । କିନ୍ତୁ ଡୁରାନ୍‌ଙ୍କ ତୁଳନାରେ ମୁଁ କିଛି ନୁହେଁ । ଡୁରାନ୍‌ଙ୍କ ସଙ୍ଗେ ପୁଣିଥରେ ସାକ୍ଷାତ କରିବି । ଯୁଦ୍ଧ ପରେ ଗେଲର୍ଡଠାରେ ତାଙ୍କୁ ଦେଖା କରିବି । କିନ୍ତୁ ଦେଖାକଲେ କି ଲାଭଟା ହେବ ? ଯାହା କାମ ସେତିକି ଭଲେ ହେଲା । କର୍ମଛଡ଼ା କର୍ତ୍ତାଠାରେ ମୋର କିଛି ଦରକାର ନାହିଁ ।

ବୀରପରି ଆତ୍ମବଳି ଦେବା ମଧ୍ୟ ଅନାବଶ୍ୟକ । ଏଠା ପାହାଡ଼ରେ କୌଣସି ନାଗରିକ ବୀରତ୍ୱପୂର୍ଣ୍ଣ ଆତ୍ମୋତ୍ସର୍ଗ କରୁ ଏହା ଆମେ ଚାହୁଁନା । ମୋ ଅଜା ଗୃହଯୁଦ୍ଧରେ ୪ ବର୍ଷ ଲଢ଼ିଥିଲେ । ଉପସ୍ଥିତ ଯୁଦ୍ଧରେ ମୋର ବର୍ଷଟିଏ ପୂରିଲା । ବହୁତ କାମ ବାକିଅଛି, ବହୁତ ଦିନ ଲଢ଼ିବାକୁ ହେବ । ବର୍ତ୍ତମାନ ମେରିଆ ମୋତେ ମିଳିଛି । ଧରି ବସିଲେ ମୋତେ ସବୁ ମିଳିଅଛି । ଚିନ୍ତା କରିବା ଅନୁଚିତ । ଗରିଲା ଦଳର ନେତା କିମ୍ବା ଘୋଡ଼ସବାର ଦଳର ନେତା ଭିତରେ ତଫାତ୍ ଅବା କେତେ ? ସେମାନେ ମୁଣ୍ଡ କାଟି ନେଇଗଲେ ତ ଯାଏଆସେ କେତେ ?

ଆମେରିକାର ଗୃହଯୁଦ୍ଧ ଅବସାନ ପରେ ମୋ ଅଜା କିଅର୍ଣ୍ଣି ଦୁର୍ଗରେ ରହୁଥିଲେ । ଆମ ଘରେ ଗୋଟିଏ ଆଲମାରିରେ ଗୁଡ଼ିଏ ଧନୁଶର ଥିଲା । ତୀରରେ ଇଗଲ୍ ପକ୍ଷ ଲାଗିଥିଲା । କିଅର୍ଣ୍ଣିର ଇଣ୍ଡିଆନ୍ ଜାତିର ଲୋକେ ସବୁବେଳେ ଯୁଦ୍ଧରେ ଶତ୍ରୁର ମୁଣ୍ଡକାଟି ଘର ସଜାଇବାକୁ ନେଇ ଯାଉଥିଲେ । ସେହି ତୀର ଓ ଚମଡ଼ା ଗୁଣଦିଆ ଧନୁ ତ ପୁଣି ମୁଁ ଅଜାଙ୍କର ଦେଖିଅଛି ଏବଂ ପିଲାଦିନେ ନେଇ ଖେଳିଅଛି । ଏମିତି ସବୁ ବାସ୍ତବ କଥା ମନେ ପକାଇଲେ ବହୁତ ସାନ୍ତ୍ୱନା ମିଳେ । ଅଜାଙ୍କର ଧନୁଶର, ତରବାରି, ନୂଆ ବନ୍ଧୁକ ସବୁ ତ ମୁଁ ଆମ ଘରେ ଦେଖିଅଛି । ବନ୍ଧୁକ ପରିଷ୍କୃତ ଏବଂ ସୁରକ୍ଷିତ ଥିଲା । ୧୦୦ ଗୋଟି ଗୁଳି ମଧ୍ୟ ଥିଲା । ଅଜା କହୁଥିଲେ

ଦରାଜରୁ ପିସ୍ତଲ କାଢ଼ି ମନଇଚ୍ଛା ହାତରେ ଧରାଧରି କରିବୁ କିନ୍ତୁ କାରତୁସ ପକାଇ ଖେଳିବୁ ନାହିଁ । ବଡ଼ ବିପଦ ଘଟିବା ସମ୍ଭବ । ଥରେ ମୁଁ ଅଜାଙ୍କୁ ପଚାରିଥିଲି ସେ କେବେ ମଣିଷ ମାରିଥିଲେ କି ? ସେ କହିଥିଲେ ବିଦ୍ରୋହବେଳେ ଓ ବିଦ୍ରୋହ ପରେ ଅନେକ ମାରିଥିଲେ । କିନ୍ତୁ ସେ ସମ୍ବନ୍ଧରେ ଅଧିକ କଥା କହିବାକୁ ପ୍ରସ୍ତୁତ ନଥିଲେ ।

ଦିନେ ମୁଁ ସ୍କୁଲରୁ ଫେରିଲାବେଳକୁ ଦେଖିଲି ମୋ ବାବା ପିସ୍ତଲରେ ଆତ୍ମହତ୍ୟା କରି ଅଛନ୍ତି । ଶବ ମାଇନା ଓ ସମାଧିପରେ ମୋତେ କରୋନାର ସାହେବ ଡାକି କହିଲେ "ତୋ ପିସ୍ତଲ ଫେରାଇନେ । ତୋ ବାବା ଏହା ତୋ ଅଜାଠାରୁ ପାଇଥିଲେ । ଆଇନ ଅନୁସାରେ ଏହା ମୁଁ ରଖିବା କଥା କିନ୍ତୁ ଗୃହଯୁଦ୍ଧରେ ତୋ ଅଜା ଯେଉଁ କାମ କରିଥିଲେ ସେଥିପାଇଁ ଏହି ପିସ୍ତଲଟି ତାଙ୍କର ଅତି ପ୍ରିୟ ଥିଲା । ସେ ଏହାକୁ ଅତି ଯତ୍ନରେ ରଖିଥିଲେ ଏବଂ ପୁରୁଣା ହେଲେ ମଧ୍ୟ ଏବେ ବି କି ଖୁବ୍ ଭଲ ଅବସ୍ଥାରେ ଅଛି ।"

ମୁଁ ବନ୍ଧୁକଟି ସେଦିନ ଦରାଜରେ ରଖି ଦେଇଥିଲି କିନ୍ତୁ ପରଦିନ ତାକୁ ନେଇ ଘୋଡ଼ାରେ ବସି ଜଣେ ବନ୍ଧୁଙ୍କୁ ସଙ୍ଗରେ ନେଇ ରେଡ୍‌ଲଜ୍ ନାମକ ପାହାଡ଼ିଆ ଜାଗାକୁ ଯାଇଥିଲି । ସେଠାକୁ ରାସ୍ତା ତିଆରି ହୋଇ ସାରିଥିଲା । ଖରାଦିନେ ମଧ୍ୟ ସେଠା ପାହାଡ଼ରେ ବରଫ ଜମିଥାଏ । ସେହି ପାହାଡ଼ ତଳେ ୮୦୦ ଫୁଟ ଗଭୀର ଏକ ସ୍ୱଚ୍ଛ ହ୍ରଦ ଥିଲା । ମୁଁ ଘୋଡ଼ାରୁ ଓହ୍ଲାଇ ପାହାଡ଼ ଚଢ଼ି ମୁହଁମାଡ଼ ପାଣି ଭିତରକୁ ଉକ୍ତ ବନ୍ଧୁକ ଫିଙ୍ଗି ଦେଇଥିଲି । ମୋ ସାଙ୍ଗ କହିଲା ଯେ ମୁଁ କାହିଁକି ବନ୍ଧୁକ ଫିଙ୍ଗିଦେଲି ସେ ଜାଣେ । ଏହାପରେ ସେହି ବନ୍ଧୁକ କଥା ଆମେ କେହି କେବେ ଉଠାଇ ନାହୁଁ ।

ଅଜାଙ୍କ ସମ୍ବନ୍ଧରେ ବିବିଧ ସ୍ମୃତି ରବର୍ଟ ଜର୍ଡାନଙ୍କ ମନରେ ଉଠିଲା । ଅଜାଥିଲେ କଅଣ କରନ୍ତେ, କି ପରାମର୍ଶ ଦିଅନ୍ତେ, ଅଜା ଭଲ ଯୋଦ୍ଧା ଥିଲେବୋଲି ସମସ୍ତେ କହୁଥିଲେ । ସେ ଯଦି କଷ୍ଟରଙ୍କ ସାଙ୍ଗରେ ଥାଆନ୍ତେ ତେବେ କଷ୍ଟରଙ୍କ ଏପରି ମୃତ୍ୟୁ ଘଟି ନଥାନ୍ତା । ଗ୍ରାମଗୁଡ଼ିକର ଧୂଳି ଧୂଆଁ ସେ ଅବା କପରି ଦେଖିପାରି ନଥାନ୍ତେ ଯଦି କୁହୁଡ଼ି ଘୋଟି ନଥାନ୍ତା ।

ଆଜି ମୋ ବଦଳରେ ଅଜା ଏଠାରେ ଥାଆନ୍ତେ କି । ହୁଏତ କାଲିକି ସମସ୍ତଙ୍କର ପରପାରରେ ଭେଟ ହୋଇପାରେ । କିନ୍ତୁ ପରପାର ନାହିଁ । ମୋର ଅଜାଙ୍କୁ ଅନେକ କଥା ପଚାରିବାର ଅଛି । ମୁଁ ତ ବର୍ତ୍ତମାନ ତାଙ୍କର ପରି କାମ କରୁଛି । କିନ୍ତୁ ଅଜାଙ୍କୁ ଭେଟିଲେ ତ ବାପାଙ୍କୁ ମଧ୍ୟ ଭେଟିବି । ଆଜି ଅଜା ଏଠାରେ

ଥାଆନ୍ତେ କି, ଅନ୍ତତଃ ଘଣ୍ଟାଟିଏ ପାଇଁ । ସମ୍ଭବତଃ ଯେଉଁ ଜଣକ ବନ୍ଧୁକ ଖଣ୍ଡିର ଅପବ୍ୟବହାର କରିଥିଲି ତାହାରି ମାଧ୍ୟମରେ ସେ ମୋପାଇଁ କିଛି ସଙ୍କେତ ପଠାଇ ଥିଲେ । ହୁଏତ ତାହାହିଁ ଏକମାତ୍ର ସଙ୍କେତ । ଯେତେ ଏତେ କଥା କାହିଁକି ଭାବିବି ? ସମୟର ବ୍ୟବଧାନ ଏ ତେ ବେଶୀ ନ ହୋଇଥାନ୍ତା କି ମୁଁ ତାଙ୍କଠାରୁ କିଛି ଶିଖି ପାରିଥାନ୍ତି । କିନ୍ତୁ ଗୃହବର୍ଷ ଧରି ସେ ମନରେ ଭୟଭାବ ପୋଷଣ କରି ଶେଷକୁ ଇଣ୍ଡିଅନ୍ ଯୁଦ୍ଧରେ ସେହି ଭାବ ଛାଡ଼ିଥିଲେ । ଭୟରେ ଲୋକ ଭୀରୁ ପାଲଟିଥାଏ । ଷଣ୍ଢ ଲଢୁଆଳଙ୍କ ପୁତ୍ରମାନେ ଯେପରି ଡରକୁରା ହୋଇ ଉଠିଥାନ୍ତି । କିନ୍ତୁ ଭୟ ଭିତର ଦେଇ କ୍ରମେ ଲୋକ ନିର୍ଭୀକ ହୋଇପାରେ ।

ସେ କାପୁରୁଷ ଥିଲେ ବୋଲି ପ୍ରଥମେ ଶୁଣିଲାବେଳେ ମୋ ମନ ବଡ଼ ଖରାପ ହୋଇ ଯାଇଥିଲା । କାପୁରୁଷ ବୋଲି କହିଦେବା ସହଜ କଥା । କୌଣସି ବିଦେଶୀ ଲୋକ ଦ୍ୱାରା ଏକଥା ପ୍ରକାଶ କରିବା ଅ.ବଶ୍ୟକ ନାହିଁ । ମୋ ବାପାଙ୍କର ଜନ୍ମରେ କୌଣସି ଦୋଷ ନଥିଲା । ସେ ଭୀରୁଥିଲେ ଏହାହିଁ ତାଙ୍କର ସବୁଠାରୁ ବଡ଼ ଦୁର୍ଭାଗ୍ୟ । ସେ ଭୀରୁ ନଥିଲେ ସେହି ସ୍ତ୍ରୀଲୋକଟା ତାଙ୍କୁ ଡରେଇ ରଖି ନଥାନ୍ତା । ସେ ଅନ୍ୟ କାହାକୁ ବାହା ହୋଇଥିଲେ ମୁଁ କଅଣ ହୋଇଥାନ୍ତି ଭାବିପାରୁ ନାହିଁ । ଏକଥା ମୁଁ ଜାଣି ପାରିବି ନାହିଁ । ସ୍ତ୍ରୀଲୋକର ଧମକାଣି ଦ୍ୱାରା ହୁଏତ ତାଙ୍କର ଅନ୍ୟ କୌଣସି ଦୁର୍ଗୁଣ ଦବି ଯାଇଥିଲା । ନା, ଆଉ ଏସବୁ ଚିନ୍ତା କରିବା ଅନାବଶ୍ୟକ । କାଲିକି ବଞ୍ଚିଗଲେ ଅନ୍ୟ ଭଲକଥା ଭାବିବି । ଏତେ ଖୁଁଣ୍ଟି ଖୁଁଣ୍ଟି ହେବା ଉଚିତନୁହେଁ । କାଲି କଅଣ ଘଟିବ ଦେଖାଯାଉ ।

ସେ ପୁଣି ଅଜାଙ୍କ କଥା ଭାବିବାକୁ ଲାଗିଲେ ।

ତାଙ୍କ ଅଜା କହୁଥିଲେ "ରବର୍ଟ, ଜର୍ଜ କଷ୍ଟର, ଅଶ୍ୱାରୋହୀ ଫୌଜର ସେପରି ବୁଦ୍ଧିଆ ନେତା ନଥିଲେ । ସେ ବୁଦ୍ଧିଆ ଲୋକ ମଧ୍ୟ ନଥିଲେ ।" ଅଜା ଏପରି କହିଲା ବେଳେ ସେ ନାପସନ୍ଦ କରିଥିଲେ । କାରଣ ହରିଣଚମ କୁରୁତା ପିନ୍ଧି ହଳଦିଆ ଧୂଳି ଉଡ଼ାଇ ପିସ୍ତଲ ହାତରେ ପାହାଡ଼ରେ ଠିଆ ହେବା କୌଣସି ଲୋକକୁ ଏପରି କହିବା ସେ ପସନ୍ଦ କରୁ ନଥିଲେ । ସେ ସିଓକ୍ସଙ୍କ ଘେରାଉକୁ ପରବା କରି ନଥିଲେ ଏବଂ ବହୁ ବିପଦରୁ ଉଦ୍ଧାର ପାଇଥିଲେ । ସବୁଠାରୁ ଉଦ୍ଧାରପାଇ "ବିଗ୍‌ହର୍ଣ୍ଣ"ଠାରେ ଆଉ ପାରିଲେ ନାହିଁ ବୋଲି ଅଜା କହୁଥିଲେ ।

ଫିଲ୍ ସେରିଡାନ୍, ଜେବ୍ ଷ୍ଟୁଆର୍ଟ ଏବଂ ଜନ୍ ମସ୍‌ବି ଚମତ୍କାର ଅଶ୍ୱାରୋହୀ ସେନାନାୟକ ଥିଲେ । ସେନାପତି ସେରିଡାନଙ୍କ ଖଣ୍ଡେ ଚିଠି ମୋ ପାଖରେ ଅଛି ।

ଚଠି ଖଣ୍ଡିକରେ ଅଜାଙ୍କର ବହୁତ ପ୍ରଶଂସା କଥା ଲେଖାଅଛୁ । ଅଜା ସାମରିକ ଅଶ୍ବାରୋହୀ ଦଳର ଭଲ ନେତାଥିଲେ ।

ଅଜାଙ୍କ କଥା ମୁଁ ଗୋଲ୍‌ଜଙ୍କୁ କହିବି । ସେ ତାଙ୍କ କଥା ଶୁଣି ନଥିବେ । ସେ ମସଗ୍ରାଙ୍କ କଥା ମଧ୍ୟ ଜାଣି ନଥିଲେ । ବ୍ରିଟିଶମାନେ ସବୁ ଜାଣିଥିଲେ କାରଣ ଆମର ଗୃହଯୁଦ୍ଧ କଥା ସେମାନେ ବହୁତ ଚର୍ଚ୍ଚା କରିଥିଲେ । କାର୍‌କୋଭ୍‌ କହୁଛନ୍ତି ଯେ ଯୁଦ୍ଧ ଶେଷହେଲେ ମୁଁ ଇଚ୍ଛାକଲେ ମସ୍କୋର ଲେନିନ୍ ଅନୁଷ୍ଠାନକୁ ଯାଇପାରେ । ମୁଁ ଲାଲ୍‌ଫୌଜର ସାମରିକ ଶିକ୍ଷାଳୟକୁ ମଧ୍ୟ ଯାଇପାରେ । ଏକଥା ଶୁଣିଲେ ଅଜା କଅଣ କହିବେ ? ସେ ତ କେବେ ହେଲେ ଗଣତନ୍ତ୍ର ପନ୍ଥୀ କୌଣସି ବ୍ୟକ୍ତି ସହିତ ବାକ୍ୟାଳାପ କରୁ ନଥିଲେ ।

ଏ ଯୁଦ୍ଧଟା ଜିଣିଲେ ମୋ କାମ ସରିଲା । ମୁଁ ସୈନ୍ୟ ହେବାକୁ ପସନ୍ଦ କରେ ନାହିଁ । ଭଲ ସୈନିକ ସବୁ ବିଷୟରେ ଭଲ ହୁଅନ୍ତି । ନେପୋଲିୟନ୍ ଓ ଉଏଲିଙ୍ଗ୍‌ଟନ୍ ଏହାର ଉଦାହରଣ ।

ସାଧାରଣତଃ ମୋ ମନଟା ଭଲଥାଏ । ଆଜି ମଧ୍ୟ ଅଜାଙ୍କ କଥା ଭାବି ଭଲ ଅଛୁ । ଖାଲି ବାବାଙ୍କ କଥା ଭାବି ମୁଁ ଲଜ୍ଜିତ । ବାବାଙ୍କ ଦୋଷତ୍ରୁଟି ମୁଁ ଧରୁନାହିଁ ଏହା ଅବଶ୍ୟ ସତ୍ୟ ।

ଆଜି ଚିନ୍ତା କରିବା ଭଲ ହେବ ନାହିଁ । ଶୀଘ୍ର ମେରିଆ ଆସିଗଲେ ଚିନ୍ତା କରିବାକୁ ବେଳ ମିଳିବ ନାହିଁ । ସବୁକଥା ଯେପରି ଘଟୁଅଛୁ ତାହା ଖୁବ୍ ଭଲ । ଗୋଟାଏ ବିଷୟରେ ତୀବ୍ରଭାବରେ ମନୋନିବେଶ କଲେ ମସ୍ତିଷ୍କ ଭାରାକ୍ରାନ୍ତ ହେବା ସ୍ୱାଭାବିକ । ସେତେବେଳେ ଭାରସାମ୍ୟହୀନ ଚକ୍ରପରି ମୁଣ୍ଡରେ ସହସ୍ର ଚିନ୍ତା ଖେଳି ଉଠିବ । ଏଣୁ ଆଉ ଭାବିବା ଉଚିତ ନୁହେ ।

କିନ୍ତୁ ଧର, ଯଦି ଉଡ଼ାଜାହାଜଗୁଡ଼ିକ ଟ୍ୟାଙ୍କ୍ ବିଧ୍ୱଂସି ତୋପ ଏବଂ ସୈନ୍ୟ ଗ୍ରୁପଗୁଡ଼ିକୁ ନିଶ୍ଚିହ୍ନ କରି ପକାଏ ଏବଂ ସବୁ ସାଞ୍ଜୁଆଗାଡ଼ି ନଷ୍ଟ ହୋଇଯାଏ ତେବେ ଗୋଲ୍‌ଜଙ୍କର 'କ୍ୱାଟରଟାଇମ୍ ବ୍ରିଗେଡ୍'ର କଅଣ ରହିବ ? ଗୋଲ୍‌ଜଙ୍କର ଯେଉଁ ବ୍ରିଗେଡ୍ ଡୁରାନ୍‌ଙ୍କ ଅଧୀନରେ ଅଛି ତାହା ବେଶ୍ ଭଲ ବୋଲି ମୁଁ ଜାଣେ ଏବଂ ଆମ୍ଭେମାନେ ଆଗାମୀ କାଲି ରାତିରେ ସେଗୋଭିଆରେ ଅଛୁ ।

ଧର, ମୁଁ ଲଗ୍ରାଞ୍ଜାରେ ରହିବି ବୋଲି ଯାହା ଭାବିଥିଲି ତାହା କଲି । କିନ୍ତୁ ମୋତେ ତ ପୋଲଟା ନିଶ୍ଚିତ ଭାବରେ ଧ୍ୱଂସ କରିବାକୁ ପଡ଼ିବ । ଏ କାମ ବନ୍ଦ

ହୋଇ ପାରିବାର ସମ୍ଭାବନା ନାହିଁ । ଯିଏ ପୋଲ୍ ଧ୍ୱଂସ କରିବା ଆଦେଶ ଦେଇଥିଲେ ସେମାନେ ଆକ୍ରମଣର ସମ୍ଭାବନା କଥା ଭାବି ନଥିଲେ ବୋଲି ଏଇମାତ୍ର ମୁଁ ଚିନ୍ତା କରିଥିଲି । ଆନ୍ସେଲ୍ମୋଙ୍କର ଯାହା ହେଉନା କାହିଁକି ପୋଲଟା ମୋତେ ଧ୍ୱଂସ କରିବାକୁ ପଡ଼ିବ ଏହା ସୁନିଶ୍ଚିତ ।

ଅନ୍ଧାରରେ ଚିହ୍ନ ଅନୁସରି ଆସୁ ଆସୁ ସେ ଭଲ ମନରେ ଭାବିଲେ ଯେ ଆଗାମୀ ୪ଘଣ୍ଟା ପାଇଁ ଯାହା ଯାହା କରିବା କଥା ତାହା ହୋଇ ସାରିଅଛି । ଗୋଟି ଗୋଟି ବିଷୟରେ ଚିନ୍ତା କରିବାରୁ ରବର୍ଟ ଜର୍ଡାନ୍‌ଙ୍କ ମନରେ ଯେଉଁ ଆତ୍ମପ୍ରତ୍ୟୟ ଜନ୍ମିଲା ସେଥିରୁ ସେ ପୋଲ ଧ୍ୱଂସ କରିବା କାମରେ ସ୍ଥିର ସଂକଳ୍ପ କରି ପକାଇ ସ୍ୱାଚ୍ଛନ୍ଦ୍ୟ ଅନୁଭବ କଲେ ।

ଆନ୍ସେଲ୍ମୋଙ୍କୁ ଗୋଲ୍ଜଙ୍କ ପାଖକୁ ପଠାଇବା ପରେ ସେ ମନେ ମନେ ଏକ ଦ୍ୱିଧାରେ ପଡ଼ି ଯାଇଥିଲେ । ପୋଲ ଧ୍ୱଂସ କରିବା ସମ୍ବନ୍ଧରେ ନିଶ୍ଚିତ ହୋଇ ନପାରି ସେ ଘୋର ସନ୍ଦେହରେ ବୁଡିଗଲେ ଯେମିତି ସଂନ୍ଦେହ ଦାନକ୍ଷଣ ନ ଜଣାଇବାକୁ ଭୁଲିଯାଇ କାହାକୁ ଭୋଜି ପାଇଁ ନିମନ୍ତ୍ରଣ କଲେ ଘଟିଥାଏ । ବର୍ତ୍ତମାନ ତାଙ୍କର ସେହି ଅନୁଭୂତି ମନରୁ ଚାଲିଗଲା କାରଣ ସେ ଜାଣିଲେ ଯେ ପୋଲ୍ ଧ୍ୱଂସ କାମ ଖାରଜ ହୋଇ ପାରିବ ନାହିଁ । କୌଣସି ବିଷୟରେ ଦ୍ୱିଧାରେ ପଡ଼ିବା ଅପେକ୍ଷା ଭଲ ହେଉ ମନ୍ଦ ହେଉ ସେ ବିଷୟରେ ସ୍ଥିର ସିଦ୍ଧାନ୍ତ କରିବା ଭଲ କଥା ।

# ଏକତ୍ରିଂଶ ପରିଚ୍ଛେଦ

ରବର୍ଟ ଜର୍ଡାନ୍ ଓ ମେରିଆ ଦୁହେଁ ଶଯ୍ୟା ଖୋଲ ଭିତରେ ପଶି ଲଗାଲଗି ହୋଇ ଶୋଇଥିଲେ । ଏହା ଏକତ୍ର ଶୋଇବାର ଶେଷ ରାତ୍ରୀ । ବହୁତ ଡେରିରେ ସେମାନେ ଶୋଇବାକୁ ଗଲେ । ପରସ୍ପର ଜଙ୍ଘ ଲଗାଲଗି ହୋଇଥାଏ ଏବଂ ମେରିଆର ବର୍ତ୍ତୁଳାକାର ସ୍ତନ ଦୁଇଟି ରବର୍ଟ ଜର୍ଡ଼ାନଙ୍କ ବକ୍ଷରେ ଚପି ହୋଇଥାଏ । ସ୍ତନ୍ୟ ଦୁଇଟି ଗିରିଶୃଙ୍ଗ ପରି ଏବଂ ତା ଉର୍ଦ୍ଧକୁ ଥାଏ ଗଳା ପର୍ଯ୍ୟନ୍ତ ସମତଳକ୍ଷେତ୍ର । ରବର୍ଟ ଜର୍ଡାନ୍ ଚୁପ୍‌ଚାପ ଶୋଇଥାନ୍ତି ଏବଂ ମେରିଆ ନିଜ ହାତରେ ତାଙ୍କ ମୁଣ୍ଡ ଆଉଁସୁଥାଏ ।

ମେରିଆ ତାଙ୍କୁ ଚୁମା ଖାଇ କୋମଳ କଣ୍ଠରେ କହିଲେ 'ରବର୍ଟ, ମୁଁ ଲଜ୍ଜିତା । ତୁମକୁ ହତାଶ କରିବାକୁ ମୋର ଇଚ୍ଛା ନାହିଁ କିନ୍ତୁ ବହୁ ଯନ୍ତ୍ରଣାପ୍ରଦ ଜ୍ୱାଳା ମୁଁ ଭୋଗୁଛି, ତୁମର କୌଣସି କାମରେ ଆସିବି ବୋଲି ଭରସା ନାହିଁ ।

ସେ କହିଲେ 'ନାହିଁଲୋ କୁନି, ସବୁବେଳେ ଜ୍ୱାଳା ଯନ୍ତ୍ରଣା ରହୁଛି । ତାହା କିଛି ନୁହେଁ । ଯନ୍ତ୍ରଣା ବଢାଇବା ଭଳି ଆମେ କିଛି କରିବା ନାହିଁ ।"

"ତା ନୁହେଁ । ମୁଁ ଯେମିତି ଚାହୁଁଥିଲି, ତୁମକୁ ସେମିତି ଗ୍ରହଣ କରି ନ ପାରିବାରୁ କଷ୍ଟବୋଧ କରୁଛି ମାତ୍ର ।'

"ନିହାତି ବାଜେ କଥା । ଏହା କ୍ଷଣିକ । ଏକାଠି ଶୋଇଲେ ଆମେ ଏକାଠି ରହିଲୁଁ ।"

"ହଁ, ମୁଁ ପ୍ରକୃତରେ ଲଜ୍ଜିତା । ତୁମ ଯୋଗୁ ନୁହେ, ମୋତେ ସେମାନେ ଯାହା କରିଥିଲେ ତାହାର ଫଳ ତୁମର ବା ମୋର କିଛୁ ହାତ ନାହିଁ ।"

"ସେ କଥା ଆଉ କହ ନାହିଁ ।"

ମୁଁ ମଧ୍ୟ ତାହା ଇଚ୍ଛା କରୁ ନାହିଁ । ଆଜି ରାତରେ ତୁମକୁ ବିମୁଖ କରିବି ନାହିଁ ବୋଲି ମୁଁ ନିଜର କୈଫିୟତ ଦେଉଅଛି ।"

ସେ କହିଲେ 'ଶୁଣ କ୍ଳିନ । ଏସବୁ କଥା ରହିବ ନାହିଁ, ଏଣୁ ଭାବନାର ବିଷୟ ନୁହେ, କିନ୍ତୁ ସେ ମନେ ମନେ ଭାବିଲେ ଶେଷ ରାତ ପାଇଁ ଏହା ଭଲ ସଙ୍କେତ ନୁହେ । ଏହାପରେ ଲଜ୍ଜିତ ହୋଇ କହିଲେ 'ମୋତେ ଯାକିଯୁକ୍ତ ହୋଇ ଶୁଅ ଯେମିତିକି ଆମର ପ୍ରେମ କରିବା ସାର୍ଥକ ହେବ ।'

'ସୋର୍ଡୋ ପାଖରୁ ଫେରିଲବେଳେ ସେଠାରେ ଯେପରି ଘଟିଥିଲା ଆଜି ପୁଣି ସେପରି ଘଟିବ ବୋଲି ଭାବି ନେଇ ମୁଁ ଅତ୍ୟନ୍ତ ଲଜ୍ଜିତା ହୋଇଅଛି । ଏମିତି କଥାତ ପ୍ରାତ୍ୟହିକ ନୁହେ । ଏପରି ଘଟିବାଟା ମୁଁ ଅନ୍ୟମାନଙ୍କ ପରି ସମାନ ପସନ୍ଦ କରୁଅଛି ।' ଅବଶ୍ୟ ସେ ନୈରାଶ୍ୟକୁ ଏଡ଼ା ଦେଇ ଏତିକି ମିଛ କହିଲେ । "ଆସ ଆମେ ଚୁପ୍‌ଚାପ ଶୋଇ ରହିବା । ନିଜ ମଧ୍ୟରେ କଥା ହେବା । ମୁଁ ତୋ କଥା ଅତି ଅଳ୍ପହିଁ ଶୁଣିଅଛି ।"

"ଆମେ କଅଣ କାଲି ତୁମର ଯେଉଁ କାମ ସେ କଥାବାର୍ତ୍ତା ହେବା ? ତୁମ କାମକୁ ମୁଁ ଭଲ କରି ବୁଝିବାକୁ ଇଚ୍ଛା କରେ ।"

ରବର୍ଟ ଜର୍ଡାନ୍ ଗୋଡ଼ ଲମ୍ବାଇ ମେରିଆ କାନ୍ଧ ପାଖରେ ଗାଲ ରଖି ସମ୍ପୂର୍ଣ୍ଣ ଭାବରେ ନିଜର ଅଙ୍ଗପ୍ରତ୍ୟଙ୍ଗ ଶିଥିଲ କରି ବିଛଣା ଖୋଳ ଭିତରେ ଶୋଇ ରହିଲେ । ତାଙ୍କ ବାମ ବାହୁ ମେରିଆର ମୁଣ୍ଡତଳେ ଥିଲା । 'ଆଜି ଯାହା ଘଟିଲା କିମ୍ବା କାଲି ଯାହା ଘଟିବ ସେକଥା ଚର୍ଚ୍ଚା କରିବା ବୁଦ୍ଧିମାନର ଲକ୍ଷଣ ନୁହେ । କାଲି ଯାହା କରିବା କଥା ଆମେ କରିବୁ । ଆଜି ଯେଉଁ କ୍ଷୟକ୍ଷତି ଘଟିଲା ସେକଥା ଆଲୋଚନା କରିବା ଅନୁଚିତ । ତୁ ତ ଡରୁନାହୁଁ ?'

"ମୋର ତ ସବୁବେଳେ ଡର । କିନ୍ତୁ ବର୍ତ୍ତମାନ ତୁମ ପାଇଁ ଏତେ ଡର ଯେ ମୁଁ ମୋ କଥା ଆଉ ଭାବୁ ନାହିଁ ।"

ରବର୍ଟ ଜର୍ଡାନ୍ ମିଛରେ କହିଲେ 'ତୋର ଡରିବାର କାରଣ ନାହିଁ । ଏହା ଅପେକ୍ଷା ଖରାପ ଅବସ୍ଥା ମୁଁ ବିତାଇ ଅଛି ।' ଏହାପରେ ସେ ହଠାତ୍ କିଛୁ ଗୋଟାଏ

କଥା ମନେ ପକାଇ ଅବାସ୍ତବ କଳ୍ପନା କରି କହିଲେ 'ଆମେ ମାଡ୍ରିଡ୍ ଯିବା । ବର୍ତ୍ତମାନ ସେହି କଥାବାର୍ତ୍ତା ହେବା ।'

ମେରିଆ କହିଲା "ଭଲ କଥା । ମୁଁ ତ ରବର୍ଟୋ, ତୁମ ମନ ଲକ୍ଷି ହୋଇ ପାରିଲି ନାହିଁ । ଆଉ ଆଜି ଯଦି କିଛି କଥା ମୋ ଦ୍ୱାରା ହୋଇପାରିବ ତେବେ ମୋତେ କୁହ ।"

ସେ ତାକୁ ଚୁମ୍ବା ଖାଇ ମୁଣ୍ଡରେ ହାତ ବୁଲାଇଲେ ଏବଂ ଦେହ ଘଷା ହୋଇ ଚୁପ୍‌ଚାପ ଶୋଇ ରହିଲେ ।

ସେ କହିଲେ "ତୁ ମୋ ସଙ୍ଗେ ମାଡ୍ରିଡ୍ କଥା ଚର୍ଚ୍ଚା କରି ପାରିବୁ ନାହିଁ ।" ଏହାପରେ ମନେ ମନେ ଚିନ୍ତା କଲେ, ସେ ପ୍ରସଙ୍ଗକୁ କାଲି ପାଇଁ ମୁଲତବି ରଖିବା ଭଲ । ସେ ସବୁ କଥା କାଲିକୁ ଦରକାର ପଡ଼ିବ । ଦେବଦାରୁ ପତ୍ର ବଛଣା କାଲିକି ବେଶୀ ଦରକାର ହେବ । କିଏ ଜମିରେ ଘାସ ବୁଣିଥିଲା ବୋଲି ବାଇବେଲ୍‌ରେ ଲେଖା ଅଛି ଓକାନ୍ ଶୁଣିଥିଲା । କାହିଁ ଓନାନ୍‌ର କଥାତ ମୁଁ ଅଧିକ ଶୁଣିଥିବା ମନେ ପଡ଼ୁନାହିଁ ।" ଏହାପରେ ଯୌନଲାଳସା ପାଖରେ ଆତ୍ମସମର୍ପଣ କରିଦେଲେ । ଦେଶକାଳ ପାତ୍ର ଯୋଗୁଁ ଏପରି ଗୋଟାଏ ଅବସ୍ଥା ଜାତ ହେବା ସ୍ୱାଭାବିକ । ଏହାର ଅସ୍ତିତ୍ୱ ଅବାସ୍ତବ । ସେଥିରେ ବୁଝିବା ଭଳି କିଛି ବସ୍ତୁ ନଥିଲା, କେବଳ ଥିଲା ଗ୍ରହଣ କରିବାର ଆନନ୍ଦ ।

ସେ ମେରିଆକୁ ଚୁମ୍ବା ଖାଇ ଗଭୀର ପ୍ରେମରେ କହିଲେ 'ପ୍ରିୟେ ଶୁଣ । ଗତ ରାତିରେ ମୁଁ ମାଡ୍ରିଡ୍ କଥା ଭାବୁଥିଲି । ସେଠାକୁ କିପରି ଯିବି, ତୋତେ ସେଠା ହୋଟେଲରେ ରଖାଇ ମୁଁ ରୁଷୀୟମାନେ ରହୁଥିବା କୋଠିକୁ ଯିବି । କିନ୍ତୁ ଏହା ମିଛ । ମୁଁ ତୋତେ କୌଣସି ହୋଟେଲରେ ଛାଡ଼ି ଯିବି ନାହିଁ ।'

"କାହିଁକି ନୁହେଁ ?"

"କାରଣ ମୁଁ ତୋର ଯତ୍ନ ନେବି, ତୋତେ କେଭେ ପାଖରୁ ଅନ୍ତର କରିବି ନାହିଁ । ମୁଁ ତୋତେ ସଙ୍ଗରେ ନେଇ ସେଗୁରିଡାଡ୍‌କୁ କାଗଜପତ୍ର ପାଇଁ ଯିବି । ତାପରେ ଦୋକାନକୁ ଯାଇ ଦରକାରୀ ଲୁଗାପଟା କିଣିବି ।"

"ସେ ଆଉ କେତେ ଖଣ୍ଡ଼ଯେ ମୁଁ ଏକା କିଣିପାରିବି ନାହିଁ ?"

"ନା, ଅନେକ ଲୁଗାପଟା କିଣିବାକୁ ହେବ ! ଦୁହେଁ ଏକାଠି ଯାଇ ଭଲଭଲ ପୋଷାକ କିଣିବା । ତାକୁ ପିନ୍ଧିଲେ ତୁ ସୁନ୍ଦର ଦିଶିବୁ ।"

'ମୋର ଇଚ୍ଛା ଆମେ ଦୁହେଁ ହୋଟଲରେ ରହି ପୋଷାକ ମଗାଇପଠାଇବା । ହୋଟଲଟା କେଉଁଠାରେ ?'

"ହୋଟଲଟା ହେଉଛି କାଲଓ ବଜାରରେ । ଆମେ ହୋଟେଲ କକ୍ଷରେ ବେଶୀ କାଲ ରହିବା । ସେଠାରେ ଏକ ପ୍ରଶସ୍ତ ପଲଙ୍କରେ ପରିଷ୍କାର ବିଛଣା ସୁନ୍ଦର ପଡ଼ିଥିବ । ଗାଧୋଇବା ପାଇଁ ପାଣିକଲ ଏବଂ ଜିନିଷ ପତ୍ର ରଖିବା ପାଇଁ ଦୁଇଟି ସିନ୍ଦୁକ ମଧ୍ୟ ଥିବ । ଆମେ ସେଥିରେ ଲୁଗାପଟା ରଖିବା । ଘରମାନଙ୍କରେ ଖୁବ୍ ବଡ଼ ଲମ୍ବା ଚଉଡ଼ା ଝରକା ଥିବ ଏବଂ ରାସ୍ତାରେ ପାଣିର କୃତ୍ରିମ ଉତ୍ସ ମଧ୍ୟ ଦିଶୁଥିବ । ଭଲ ଖାଦ୍ୟ ମିଳିବା ପାଇଁ ଅନେକ ଭଲ ଭଲ ସ୍ଥାନ ମଧ୍ୟ ମୁଁ ଜାଣେ । ବେଆଇନ ହେଲେ ମଧ୍ୟ ଭଲ ଖାଦ୍ୟ ସେଠାରେ ମିଳେ । କେତେ ଗୁଡ଼ିଏ ଦୋକାନରେ ମଦ ଓ ହୁଇସ୍କି ମଧ୍ୟ ମିଳେ । ହୋଟଲରେ ଆମର ରହିବା ଘରେ କିଛି ଖାଦ୍ୟ ଓ ମଦ ଆମ ଦରକାର ପାଇଁ ଆଗରୁ ସାଇତି ରଖିବା । ମୁଁ ତୋତେ ଗୋଟିଏ କୋମଲ ପାନୀୟ ମଧ୍ୟ କିଣି ଦେବି ।"

"ମୁଁ ହୁଇସ୍କି ପିଇବାକୁ ଚେଷ୍ଟା କରିବି ।"

"କିନ୍ତୁ ହୁଇସ୍କି ପାଇବା କଷ୍ଟସାଧ୍ୟ । ତୁ କୋମଲ ମଦ୍ୟ ପସନ୍ଦ କଲେ ଭଲ ହେବ ।" ମେରିଆ ଜବାବ୍ ଦେଲି" ରବର୍ଟୋ, ତୁମ ହୁଇସ୍କି ତୁମ ପାଇଁ ରଖିବ । ତୁମେଇ ମୋର ସବୁ । ଏତିକି ବୁଝିପାରୁନାହଁ ? ତୁମ ମୁଣ୍ଡରେ କଅଣ ଅଛି ?"

"ନା, ତୁ ଥରେ ଚାଖି ଦେଖିବୁ ତେବେ ସ୍ତ୍ରୀଲୋକଙ୍କ ପକ୍ଷରେ ହୁଇସ୍କି ଭଲ ନୁହେଁ ।"

"ହଉ ତେବେ ସ୍ତ୍ରୀଲୋକ ପକ୍ଷେ ଯେଉଁ ଦ୍ରବ୍ୟ ଭଲ ମୁଁ ତାହାହିଁ ନେବି । କିନ୍ତୁ ବିଛଣାରେ ଶୋଇଲାବେଳେ ମୁଁ ମୋ ବାହା ପୋଷାକ ପିନ୍ଧିବି କି ?"

"ନା, ମୁଁ ତୋତେ ନାନା ପ୍ରକାର ରାତି ପିନ୍ଧା ଘାଘରା ଓ ପାଇଜାମା ତୋ ପସନ୍ଦ ଅନୁସାରେ କିଣି ଦେବି ।"

ମେରିଆ କହିଲା 'ମୋତେ ୭ଟା ବାହା କାମିଜ ଦରକାର । ପ୍ରତିଦିନ ଗୋଟାଏ ପିନ୍ଧିବି । ତୁମ ପାଇଁ ମଧ୍ୟ ପରିଷ୍କାର ବାହା କାମିଜ କିଣାଇବି । ତୁମେ କେବେ କାମିଜ ଧୋଇଥାଅ ?'

"କେବେ କେବେ"

"ମୁଁ ସବୁ ଚଳ ପରିଷ୍କାର ପରିଛନ୍ନ ରଖିବ । ସୋର୍ଡୋ କଲାପରି ତୁମ ହୁଇସ୍କି ରେ ମୁଁ ପାଣି ମିଶାଇ ଦେବ । ଅଲଭ୍ କୋଲି ଏବଂ କଡ଼୍‌ମାଛ ଶୁଖୁଆ, ଏବଂ ବାଦାମ ତୁମ ଖାଇବାପାଇଁ ସଂଗ୍ରହ କରିବ । ମାସେ କାଳ ବାହାରକୁ ନବାହାରି ଆମେ ହୋଟେଲ ଘରେ ରହିବା । ଅବଶ୍ୟ ଏସବୁ କରିବାକୁ ମୁଁ ଯୋଗ୍ୟ ଯଦି ହୋଇଥାଏ ।"

ମେରିଆ ମନରେ ହଠାତ୍ ଦୁଃଖଜାତ ହେବା ଦେଖି ରବର୍ଟ ଜର୍ଡାନ୍ କହିଲେ 'ଦୁଃଖ କରିବାର କିଛି କାରଣ ନାହିଁ । ପ୍ରକୃତରେ ସେଟା ବଡ଼କଥା ନୁହେ । ସମ୍ଭବତଃ ତୁ ସେତେବେଳେ ଆଘାତ ପାଇଥିଲୁ । ସେ କ୍ଷତର ଦାଗ ଏବେଯାଏ ରହିଅଛି ଏବଂ ବେଳେବେଳେ କଷ୍ଟ ଦେଉଛି । ଏସବୁ କଥା ଚିରକାଳ ରହିବ ନାହିଁ । ମାଦ୍ରିଦ୍‌ଠାରେ ଖୁବ୍ ଭଲ ଡାକ୍ତର ଅଛନ୍ତି । ଦରକାର ପଡ଼ିଲେ ତାଙ୍କୁ ଦେଖାଇବା ।'

ମେରିଆ ଅନୁଯୋଗ କଲା 'କିନ୍ତୁ ପୂର୍ବରୁ ସବୁ ଭଲଥିଲା ।'

"ସେଇଥିରୁ ପ୍ରମାଣ ମିଳେ ଯେ ଏହା ଭଲ ହୋଇଯିବ ।"

ମେରିଆ ତାଙ୍କ ଗୋଡ଼ ସନ୍ଧିରେ ନିଜ ଗୋଡ଼ ପୂରାଇ ନିଜ ମୁଣ୍ଡକୁ ତାଙ୍କ କାନ୍ଧଚିପରେ ଘସି କହିଲା 'ହଉ ତେବେ ମାଦ୍ରିଦ୍ କଥା କୁହ । କିନ୍ତୁ ମୋର ଏହି ଲଣ୍ଡି ମୁଣ୍ଡ ନେଇ ମୁଁ ସେଠାରେ କୁତ୍ସିତ ଦେଖାଯିବି ନାହିଁକି ? ତୁମେ ମୋ ପାଇଁ ଲଜ ପାଇବ ନାହିଁ ତ ?'

"ନା, ତୁଂ ଖୁବ୍ ସୁନ୍ଦରୀ । ତୋ ମୁହଁ ଓ ଶରୀର ପ୍ରକୃତରେ ସୁନ୍ଦର । ଶରୀରର ଗଠନ ଲମ୍ବ ଓ ହାଲୁକା । ତୋ ଦେହର ଚର୍ମ ମସୃଣ ଏବଂ ସ୍ୱର୍ଣ୍ଣାଭ । ସେଠାରେ ସମସ୍ତେ ତୋତେ ମୋଠାରୁ ଫସୁଲେଇ ନେବାକୁ ଚେଷ୍ଟା କରିବେ ।'

"ମୋତେ ତୁମଠାରୁ ନେଇଯିବେ ? ମୁଁ ମରିବା ଯାଏ ଅନ୍ୟ କୌଣସି ପୁରୁଷକୁ ମୋ ଅଙ୍ଗ ସ୍ପର୍ଶ କରିବାକୁ ଦେବି ନାହିଁ । ମୋତେ ପୁଣି ନେବ କିଏ ?"

"କିନ୍ତୁ, ଦେଖିବୁ, କେତେ ଲୋକ ସେ ଚେଷ୍ଟା କରିବେ ।"

ସେମାନେ ଦେଖିବେ ଯେ ମୁଁ ତୁମକୁ ଭଲ ପାଏ । ଏଣୁ ବୁଝିବେ ମୋତେ ସ୍ପର୍ଶ କରିବା ନିରାପଦ ନୁହେ । ଗଳିତ ସୀସା କଡ଼େଇରେ ହାତ ଦେବା ସଙ୍ଗେ ସମାନ । କିନ୍ତୁ ତୁମ କଥା କଅଣ ? ତୁମେ ନିଜ ଜାତିର ସୁନ୍ଦରୀ ତରୁଣୀ ଦେଖିଲେ ମୋତେ ପରିତ୍ୟାଗ କରିବ ତ ? ଲଜ୍ଜାବୋଧ କରିବ ନାହିଁତ ?'

"କେବେ ନୁହେ । ମୁଁ ତୋତେ ବାହା ହେବ ।"

ସେଟା ତୁମର ଇଚ୍ଛା, କିନ୍ତୁ ଆମେ ତ ଆଉ କୌଣସି ଗୀର୍ଜାର ଅନ୍ତର୍ଭୁକ୍ତ ନୋହୁ । ଏଣୁ ବାହା ହେବା କଥାରେ ଗୁରୁତ୍ୱ ମୁଁ ବୁଝୁ ନାହିଁ ।'

'କିନ୍ତୁ ବାହା ହେବାକୁ ମୁଁ ପସନ୍ଦ କରେ ।'

'ଯାହା ତୁମର ଇଚ୍ଛା । କିନ୍ତୁ ଶୁଣ, ଯଦି ଆମେ କେବେ ଅନ୍ୟ କୌଣସି ଦେଶକୁ ଯିବା ଯେଉଁଠାରେ କି ଗୀର୍ଜା ଥିବ ତେବେ ସେଠାରେ ବାହାହୋଇ ମଡ଼ିବା ।'

ସେ କହିଲେ "ମୋ ଦେଶରେ ଗୀର୍ଜାମାନ ଅଛି । ତୁ ଯଦି ଇଚ୍ଛାକରୁ ତେବେ ଆମେ ସେଠାରେ ବାହାହୋଇ ପାରିବୁଁ । ମୁଁ ତ ଆଗରୁ ବାହା ହୋଇନାହିଁ, ଏଣୁ କୌଣସି ସମସ୍ୟା ଜାତ ହେବ ନାହିଁ ।"

ମେରିଆ କହିଲା 'ତୁମେ ବାହା ହୋଇନାହିଁ ଶୁଣି ମୁଁ ଖୁସି । ଅଧିକ ଖୁସି ଯେ ତୁମେ ଦାମ୍ପତ୍ୟ ଜୀବନର ସବୁ କଥା ଜାଣିଅଛ । ସେ କଥା ମୋତେ କହିଅଛ । ସେଥିରୁ ମୁଁ ବୁଝୁଛି ଯେ ବାହା ନହେଲେ ମଧ୍ୟ ତୁମେ ବହୁ ନାରୀ ସଂଭୋଗ କରିଅଛ । ପିଲାର୍ ମୋତେ କହିଅଛି ଯେ ଏପରି ପୁରୁଷହିଁ ସ୍ୱାମୀ ହେବାକୁ ଯୋଗ୍ୟ । କିନ୍ତୁ ତୁମେ ଅନ୍ୟ ସ୍ତ୍ରୀଲୋକ ନେଇ ପଳାଇବ ନାହିଁ ତ ? ମୁଁ ଯେ ମରିଯିବି ।'

ରବର୍ଟ ଜର୍ଡ଼ାନ୍ କହିଲେ 'ସତେରେ ମୁଁ ବେଶୀ ସ୍ତ୍ରୀଲୋକଙ୍କ ସହିତ ସହବାସ କରିନାହିଁ । ତୋତେ ନ ପାଇବାଯାଏ ମୁଁ କାହାକୁ ପ୍ରଗାଢ଼ ଭାବେ ପ୍ରେମ କରି ପାରିବି ବୋଲି ଜାଣି ନଥିଲି ।' ମେରିଆ ତାଙ୍କ ଗାଲ ଆଉଁସି ଦେଲା ଏବଂ ନିଜର ଦୁଇ ହାତ ତାଙ୍କ ମୁଣ୍ଡ ପଛରେ ଗୁଡ଼ି ଧରି ପଚାରିଲା "ତୁମେ ବହୁତ ଯୁବତୀ ଭୋଗ କରିଥିବ ?"

"କିନ୍ତୁ ପ୍ରେମ କରି ନଥିଲି ।"

'ଶୁଣ, ପିଲାର୍ ମୋତେ ଯାହା କହିଅଛି ।'

"କୁହ !"

"ନା, ସେକଥା ନ କହିବା ଭଲ । ତୁମେ ମାଦ୍ରିଦ୍ କଥା କୁହ ।"

"ତୁ କଅଣ କହିବାକୁ ଇଚ୍ଛା କରିଥିଲୁ ?"

"କହିବାକୁ ଆଉ ଇଚ୍ଛା ନାହିଁ ।"

"ଯଦି ଜରୁରୀ ହୋଇଥାଏ ତେବେ କହିବା ଭଲ ।"

"ଜରୁଗ୍ ବୋଲି ତୁମେ ଭାବୁଛ ?"

"ହଁ ।"

"କେମିତି ଜାଣିଲ, ତୁମେ ତ କଥାଟା ଶୁଣି ନାହିଁ ?"

"ତୋ ଧରଣରୁ ?"

"ମୁଁ ତୁମଠାରେ ସେ କଥା ଲୁଗ୍ରଇବ ନାହିଁ । ପିଲାର୍ କହୁଅଛି ଯେ ଆମେ ସମସ୍ତେ କାଲି ମରବୁ । ତୁମକୁ ଏହା ଭଲକର ଜଣା, ଅଥଚ ତୁମେ ଏଥିପ୍ରତି ଭ୍ରୂକ୍ଷେପ କରୁନାହଁ । ଏ କଥା ସମାଲୋଚନା ଭାବରେ ନ କରି ପ୍ରଶଂସା କରିବା ଉଦ୍ଦେଶ୍ୟରେ କହୁଥିଲି ।"

"ସେ ଏକଥା କହିଲା ?" ଏଟା ତା ଗିପ୍‌ସି ରକ୍ତର ଲକ୍ଷଣ । ଏମିତି ଭାବରେ ବାରବୁଲୀ ସ୍ତ୍ରୀଲୋକ ଓ ହୋଟଲର କାପୁରୁଷମାନେ କହୁଥାନ୍ତି । ତା ଜନ୍ମ ସେମିତି ଇତର ।" ତାଙ୍କ କାଖତଳୁ ଝାଳ ବହିଲା । ସେ ମନେ ମନେ ଭାବିଲେ ଯେ ସେ ଭୀତ ହୋଇ ଉଠିଛନ୍ତି । ତାପରେ ବଡ଼ ପାଟିରେ କହିଲେ "ପିଲାର୍ ହେଉଛି କୁସଂସ୍କାର ବିଶ୍ୱାସୀକୁତ୍ତି । ଆମେ ମାଦ୍ରିଦ୍ କଥା ହେବା ।

"ତେବେ ତୁମେ ଏପରି କଥା ଜାଣ ନାହିଁ ?"

"ନିଶ୍ଚୟ ନୁହେ । ଏଭଳି କୁତ୍ସିତ କଥା କୁହନାହିଁ ।"

କିନ୍ତୁ ଏଥରୁ ମାଦ୍ରିଦ୍ କଥାବାର୍ତ୍ତାରେ ଆଉ ମନଭୁଲାଣିଆ ଢଙ୍ଗ ଦେଖାଇଲେ ନାହିଁ । ଯୁଦ୍ଧର ପୂର୍ବ ରାତିଟା କଟାଇବା ପାଇଁ ମେରିଆକୁ ମିଛ କଥା କହିଲେ । କିନ୍ତୁ ତାଙ୍କ କଥା ମାନନେବା ପାଇଁ ନିର୍ଭରତା ସେ ଦେଇ ପାରିଲେ ନାହିଁ । ତଥାପି କହିଲେ "ତୋ ବାଳକଥା ମୁଁ ଭାବି ଦେଖିଅଛି । ସେ ସମ୍ବନ୍ଧରେ କଅଣ କରାଯାଇ ପାରେ । ବର୍ତ୍ତମାନ ତୋ ମୁଣ୍ଡତମାମ ପଶୁ ଦେହର ଲୋମ ପରି ବାଳ କ୍ରମେ ବଢୁଅଛି । ଏହା ଯେପରି କୋମଳ ସେହିପରି ସୁନ୍ଦର ଏବଂ ଗହମ ବିଲରେ ପବନ ବହିଲେ ଯେପରି ଢେଉ ଖେଳେ ମୁଁ ହାତଦେଲେ ସେହିପରି ବୋଧ କରୁଅଛି ।"

"ତେବେ ମୋ ମୁଣ୍ଡରେ ହାତ ବୁଲାଅ ।"

ସେ ତା ମୁଣ୍ଡରେ ହାତ ରଖିଲେ ଏବଂ ଗଳାଖଙ୍କାରି କଥା କହିବାକୁ ଲାଗିଲେ। "ମାଦ୍ରିଦ୍ ଗଲେ ତୋତେ ନେଇ ମୁଁ ବାରିକ ଦୋକାନକୁ ଯିବି । ସେମାନେ ଦୁଇ କଡ଼ରୁ ଓ ପଛପଟୁ ତୋ ବାଳ ମୋ ବାଳପରି ସାନ କରି କାଟିଦେବେ । ସେତେବେଳେ ବାଳ ବଢ଼ିବାକୁ ଆରମ୍ଭ କଲେ ଖୁବ୍ ସୁନ୍ଦର ଦେଖାଯିବ ।"

ମେରିଆ କହିଲି "ମୁଁ ତୁମ ପରି ଦିଶିବ । ଆଉ ତାହା ବଦଳାଇବ ନାହିଁ ।" ଏହା କହି ସେ ତାଙ୍କୁ କୁଣ୍ଢାଇ ଧରିଲି ।

"ନା ସେକଥା ନୁହେଁ । ବାଳ ବରାବର ବଢ଼ିବ । ତୁ ଖାଲି ତାକୁ ପ୍ରଥମ ପ୍ରଥମ ସୁନ୍ଦର ଭାବରେ ଲମ୍ବ ହେବାଯାଏ ରଖି ପାରିଲେ ହେଲା ।"

"ବାଳ ଲମ୍ବ ହେବାକୁ କେତେକାଳ ଲାଗିବ ? ପ୍ରକୃତରେ କେତେ ଲମ୍ବ ?"

"ସେପରି ଲମ୍ବ ନୁହେଁ । ତୋ କାନଯାଏ ଲମ୍ବ ହେବାକୁ ମୁଁ ଚାହେଁ ।"

"ସିନେମା ଗାର୍ବୋ ପରି ?"

"ହଁ । ବର୍ତ୍ତମାନ ମେରିଆକୁ ଭୁଲାଇବା ଚିନ୍ତା ତାଙ୍କ ମନରେ ପ୍ରବଳ ହୋଇ ଉଠିଲା । ସେ କହିଲେ ତୋ ବାଳ ସଳଖ ବାନ୍ଧ ତଳକୁ କୁଞ୍ଚିତ ହୋଇ ଲମ୍ବିବ । ସମୁଦ୍ର ଲହରୀ ପରି କୁଞ୍ଚିକୁଞ୍ଚିଆ ହୋଇ ବଢ଼ିବ । ଠିକ୍ ପାଚିଲା ଗହମ ପରି ତା ରଙ୍ଗ ଦିଶିବ । ତା ସାଙ୍ଗକୁ ତୋ ମୁହଁର ରଙ୍ଗ ହେବ ପୋଡ଼ା ସୁନା ରଙ୍ଗପରି । ତୋ ଆଖି ହେବ ବାଳ ରଙ୍ଗପରି । ମୁଁ ତୋ ମୁଣ୍ଡକୁ ପଛକୁ ବଙ୍କାଇ କୁଣ୍ଢାଇ ଧରି ତୋ ଆଖିକୁ ଦେଖିବ ।"

"କେଉଁଠି ?"

"ଘରଆଡ଼େ । ଆମେ ଯେଉଁଠି ରହିବା ସେଇଠାରେ । ତୋ ବାଳ ବଢ଼ିବାକୁ କେତେ କାଳ ଲାଗିବ ?"

"ମୁଁ କହିପାରିବ ନାହିଁ, କାରଣ ଆଗରୁ ତ କେବେ ବାଳକଟା ହୋଇ ନଥିଲି । ତେବେ ୬ମାସ ମଧ୍ୟରେ ମୋ କାନ ଢାଙ୍କିବାଭଳି ଲମ୍ବ ହୋଇଯିବ, ଆଉ ବର୍ଷକ ପରେ ତୁମେ ଯେତେ ଲମ୍ବା ଚାହିଁବ ସେତେ ହେବ । କିନ୍ତୁ ପହିଲେ କଅଣ ହେବ ଜାଣ ?"

"କହିଲୁ ଶୁଣେ ?"

"ଆମେ ଆମର ସେହି ପ୍ରସିଦ୍ଧ ହୋଟେଲର ବଡ଼ ଘରର ବଡ଼ ପଲଙ୍କରେ ଏକାଠି ବସି କାନ୍ଥରେଥିବା ବଡ଼ ଦର୍ପଣଆଡ଼କୁ ଚାହିଁବା । ଦର୍ପଣରେ ତୁମର ଓ ମୋର ପ୍ରତିବିମ୍ବ ଦେଖାଯିବ । ମୁଁ ଏମିତି ଭାବରେ ତୁମଆଡ଼କୁ ବୁଲିପଡ଼ି ମୋ ବାହୁରେ ତୁମକୁ ଗୁଡ଼ାଇ ଧରି ଚୁମା ଖାଇବ ।"

ଏହାପରେ ଦୁହେଁ ଲଗାଲଗି ହୋଇ ଘଡରେ ଏକାଠି ଚୁପ୍‌ଚାପ ରହିଲେ । ରବର୍ଟ ଜର୍ଡାନ୍ ମେରିଆକୁ ଧରିଥାନ୍ତି । ସେ ଜାଣନ୍ତି ଏପରି କଥା ଘଟିବା ସମ୍ଭବ ନୁହେଁ ତଥାପି ମେରିଆକୁ ଖୁସି କରିବାକୁ କହୁଥାନ୍ତି ଯେ ସେମାନେ ହୋଟେଲରେ ସବୁଦିନେ ରହିବେ ନାହିଁ ।

"କାହିଁକି ନୁହେଁ ?"

ବୁଏନ୍ ରିଟିରୋ ଆଡ଼େ ଯେଉଁ ରାସ୍ତାଟି ଯାଇଅଛି ମାଦ୍ରିଦ୍‌ର ସେହି ରାସ୍ତାରେ ଆମେ ଗୋଟାଏ ଘର ଭଡ଼ାନେବା । ଆନ୍ଦୋଳନ ପୂର୍ବରୁ ଜଣେ ମାର୍କିନ ମହିଳା ଏମିତି ସଜ୍ଜିତ ଘରଭଡ଼ା ଦେଉଥିବା କଥା ମୁଁ ଜାଣେ । ଏମିତିକା ଘରଟାଏ ସାଧାରଣ ଭଡ଼ାରେ ମିଳିବା ଉପାୟ ମୋତେ ଜଣା । କେତେ ଭଡ଼ାଘରର ମୁହଁ ବଗିଚାଆଡ଼େ ଏବଂ ସେ ଘରେ ରହିଲେ ଝିର୍କାବାଟେ ବଗିଚାର ଗୋଡ଼ିରାସ୍ତା, ସବୁଜ କ୍ଷେତ, ବୃକ୍ଷ, ଝରଣା, ଫୁଲଗଛ ସବୁ କିଛି ଦେଖି ପାରିବା । ମାଦ୍ରିଦ୍‌ଠାରେ ଆମେ ବଗିଚାରେ ବୁଲି ପାରିବା ଏବଂ ହ୍ରଦରେ ନୌକାବିହାର କରିପାରିବା । ଅବଶ୍ୟ ଯଦି ହ୍ରଦରେ ପାଣିଥାଏ ।"

"ପାଣି କାହିଁକି ନଥିବ ?"

"ପାଣି ନଭେମ୍ବର ମାସରେ ଶୁଖାଇ ଦିଆଯାଇ ଥିଲା ଯେହେତୁ ପାଣିଯୋଗୁଁ ଉଡ଼ାଜାହାଜରୁ ସ୍ଥାନଟା ଚିହ୍ନିପାରି ବୋମା ବୃଷ୍ଟି ହେବାର ସମ୍ଭାବନା ଥିଲା । ତଥାପି ମୋର ବିଶ୍ୱାସ ବର୍ତ୍ତମାନ ପୁଣି ପାଣିଭରି ଦିଆଯାଇ ଥିବଣି । ତେବେ ନିଶ୍ଚିତ ଭାବରେ କହି ହେବନାହିଁ । ଯଦି ପାଣି ନଥିବ ତେବେ ଆମେ ପାର୍କରେ ଘୁରିଆଡ଼େ ବୁଲିବୁ । ପାର୍କର ଗୋଟାଏ ଅଂଶ ବଣ ପରି ବିବିଧ ବୃକ୍ଷରେ ପୂର୍ଣ୍ଣ । ପୃଥିବୀର ସବୁ ଦେଶର ଗଛ ସେଠାରେ ଅଛି । ଗଛର ନାମ ଓ ସ୍ଥାନ ଖଣ୍ଡିଏ ଖଣ୍ଡିଏ କାର୍ଡରେ ଲେଖା ହୋଇ ଗଛରେ ଲଟକା ଯାଇଅଛି ।"

ମେରିଆ କହିଲା "ମୁଁ କିନ୍ତୁ ପହିଲ୍ଲଲକ୍ଷଣି ସିନେମାକୁ ଯିବି । କିନ୍ତୁ ଗଛ କଥା ବଡ଼ ଚିତ୍ତାକର୍ଷକ । ମୁଁ ଗଛର ନାମ ତୁମଠାରୁ ଶୁଣି ମନେ ରଖିବାକୁ ଚେଷ୍ଟା କରିବି ।"

ରବର୍ଟ ଜର୍ଡାନ୍ କହିଲେ "ସେ ସବୁ ଗଛ ତ ଯାଦୁଘର ପଦାର୍ଥପରି ନୁହେଁ । ସେ ସବୁ ସ୍ୱାଭାବିକ ଅବସ୍ଥାରେ ବଢ଼ିଛନ୍ତି । ପାର୍କ ଭିତରେ ଛୋଟ ଛୋଟ ପାହାଡ଼ ଅଛି । ପାର୍କର ଗୋଟିଏ ଅଂଶ ଜଙ୍ଗଲ ପରି । ଜଙ୍ଗଲ ତଳକୁ ଏକ ପୁସ୍ତକ ପ୍ରଦର୍ଶନୀ । ସେଠାରେ ପୁରୁଣା ବହିର ଅନେକଗୁଡ଼ିଏ ଦୋକାନ । ଆନ୍ଦୋଳନ ପରଠାରୁ ବହିଭ

ବହି ଚୋରି ହୋଇଯାଇଅଛି । ବୋମା ବିଧ୍ୱସ୍ତ ଘରୁ ଲୁଟିକରି ବହୁତ ବହି ଅଣାଯାଇଛି ଏବଂ ଫ୍ୟାସିଷ୍ଟଙ୍କ ଘରୁ ମଧ୍ୟ ବହୁତ ବହି ଏହି ପୁସ୍ତକ ପ୍ରଦର୍ଶନୀକୁ ଅଣାଯାଇଅଛି । ପ୍ରଦର୍ଶନୀରେ ମୁଁ ପ୍ରତ୍ୟହ ଦିନମାନ କଟାଇବାକୁ ଚାହେଁ । ଆନ୍ଦୋଳନ ପୂର୍ବରୁ ସମୟ ପାଉଥିଲେ ମୁଁ ମାଦ୍ରିଦ୍‌ରେ ଏପରି କରୁଥିଲି ।”

“ତୁମେ ପୁସ୍ତକ ପ୍ରଦର୍ଶନୀ ଦେଖୁଥିଲାବେଳେ ମୁଁ ଘର ସଜାଇବାରେ ଲାଗିଯିବି । ଆଚ୍ଛା ଜଣେ ଚାକର ରଖିବା ପାଇଁ ଆମର ପଇସା ହେବ ତ ?”

“ନିଶ୍ଚୟ । ହୋଟେଲରେ ପେଟ୍ରା ନାମକ ଜଣେ ଅଛି । ସେ ଭଲ ରାନ୍ଧେ ଓ ଖୁବ୍ ପରିଷ୍କାର ରହେ । ତୋ ପସନ୍ଦ ହେଲେ ମୁଁ ତାକୁ ଆଣିବି । ସେ ସେଠାରେ ସାମ୍ବାଦିକମାନଙ୍କ ପାଇଁ ରାନ୍ଧିଥାଏ । ମୁଁ ତା’ ରାନ୍ଧଣା ଖାଇଅଛି । ସେମାନଙ୍କ ଘରେ ଘରେ ବିଜୁଳି ଚୁଲି ଅଛି ।”

ମେରିଆ କହିଲା “ତୁମେ ଇଚ୍ଛାକଲେ ତାକୁ ଆଣିବ ନଚେତ୍ ମୁଁ ଜଣେ ଖୋଜି ଆଣିବି । କିନ୍ତୁ ତୁମେ ତୁମ କାମରେ ବେଶୀ ସମୟ କଟାଇବ ନାହିଁ ତ ? ସେମାନେ ତୁମର ଏମିତିକା କାମରେ ମୋତେ ତୁମ ସଙ୍ଗେ ଯିବାକୁ ଛାଡ଼ିବେ ନାହିଁ ।”

“ହୁଏତ ମୁଁ ମାଦ୍ରିଦ୍‌ଠାରେ କାମଟାଏ ଯୋଗାଡ଼ କରିପାରେ । ଏ କାମ ମୁଁ ଅନେକ ଦିନ ହେଲା କଲିଣି ଏବଂ ଆନ୍ଦୋଳନ ଆରମ୍ଭରୁ ମୁଁ ଯୁଦ୍ଧ କରୁଅଛି । ମୋତେ ଏଣିକି ସେମାନେ ମାଦ୍ରିଦ୍‌ଠାରେ କାମ ଦେଇପାରନ୍ତି । ମୁଁ କେବେ ଏଥିପାଇଁ ତାଙ୍କୁ ଅନୁରୋଧ କରିନାହିଁ । ମୁଁ ସବୁବେଳେ ରଣକ୍ଷେତ୍ରରେ କିମ୍ବା ଏମିତିକା କାମରେ ରହିଥିଲି ।”

“ତୋତେ ଦେଖିବା ପୂର୍ବରୁ ମୁଁ କାହାକୁ କିଛି ମାଗିନାହିଁ ଏକଥା ଜାଣୁ କି ? କେବେ କିଛି ଦରକାର ବୋଧ କରି ନଥିଲି ? ଆନ୍ଦୋଳନ ଛଡ଼ା କିମ୍ବା ଯୁଦ୍ଧ ଜିଣିବା ଛଡ଼ା ଅନ୍ୟ ବିଷୟ ମଧ୍ୟ ଭାବି ନଥିଲି । ବାସ୍ତବରେ ମୋର ଆକାଙ୍‌କ୍ଷା ଅତି ନିର୍ମଳ ଥିଲା । ମୁଁ ବହୁତ ଖଟିଅଛି ଏବଂ ବର୍ତ୍ତମାନ ତୋତେ ପ୍ରେମ କରୁଅଛି ।” ଏହାପରେ ସେ ପରିପୂର୍ଣ୍ଣ ଭାବାବେଗରେ କହିଲେ “ଆମେ ଯେଉଁଥିପାଇଁ ଯୁଦ୍ଧ କରୁଅଛୁ ସେହି ସବୁ ବିଷୟ ମୋର ଯେତିକି ପ୍ରିୟ ତୁ ମଧ୍ୟ ସେତିକି । ମୁଁ ସ୍ୱାଧୀନତା, ମହତ୍ତ୍ୱ ଏବଂ ମାନବର କାମ ପାଇବା ଓ କ୍ଷୁଧା ନିବାରଣ ଅଧିକାରକୁ ଯେତିକି ଭଲପାଏ ତୋତେ ସେତିକି ଭଲପାଏ । ଯେଉଁ ମାଦ୍ରିଦ୍‌ର ରକ୍ଷାପାଇଁ ଆମେ ଯୁଦ୍ଧ କରିଅଛୁ, ସେଥିରେ ମୋର ଯେଉଁ ସାଥୀମାନେ ମରିଛନ୍ତି ସେମାନଙ୍କୁ ଯେମିତି ଭଲ ପାଉଥିଲି ତୋତେ

ମଧ୍ୟ ସେମିତି ଭଲପାଏ । ଅନେକ ବ୍ୟକ୍ତି ମରିଛନ୍ତି । ତୁ ସେକଥା ଭାବି ପାରିବୁ ନାହିଁ । ପୃଥିବୀରେ ମୁଁ ଯାହାକୁଛି ସର୍ବାଧିକ ଭଲପାଏ ତୋତେ ମଧ୍ୟ ସେପରି ଭଲପାଏ । ସେ ଭଲ ପାଇବାର ପରିମାଣ କଥାରେ ପ୍ରକାଶ କରିପାରିବି ନାହିଁ । ସଂକ୍ଷେପରେ ତୋତେ କହିବାକୁ ଯାଇ ଏତେ କଥା କହିଲି । ମୋର ସ୍ତ୍ରୀ କେଭେ ନଥିଲା କିନ୍ତୁ ବର୍ତ୍ତମାନ ତୁ ହେଉଛୁ ମୋର ସ୍ତ୍ରୀ ଏବଂ ତୋତେ ପାଇ ମୁଁ ଖୁସି ।"

ମେରିଆ କହିଲା "ମୁଁ ତୁମର ଭଲ ସ୍ତ୍ରୀ ହେବାକୁ ଚେଷ୍ଟା କରିବି । ଏକଥା ସତ ଯେ ମୁଁ ସବୁ କାମଦାମ ଭଲଭାବରେ ଶିଖି ନାହିଁ କିନ୍ତୁ ତାହା ଶିଖିବାକୁ ଚେଷ୍ଟା କରିବି । ଆମେ ମାଦ୍ରିଦ୍‌ଠାରେ ରହୁ କିମ୍ବା ଅନ୍ୟ ଯେଉଁଠି ରହୁ ସବୁ ମୋ ପକ୍ଷରେ ସମାନ । ତୁମେ ଯେଉଁଠାକୁ ଯିବ ମୁଁ ସେଇଠି ରହିବି । ତୁମେ ଯଦି ତୁମ ଦେଶକୁ ଯିବ ତେବେ ମୁଁ ଅନ୍ୟମାନଙ୍କ ପରି ଇଂରେଜୀ ଭାଷା, ତୁମ ଦେଶର ମହିଳାଙ୍କର ରୀତିନୀତି ଶିକ୍ଷା କରିନେବି ।"

"ତୁ ତେବେ ବଡ଼ ହାସ୍ୟକର ହୋଇ ଉଠିବୁ ।"

"ହଁ । ମୁଁ ପ୍ରଥମେ ଭୁଲ କରିବି କିନ୍ତୁ ତୁମେ ବତାଇ ଦେଲେ ୨ୟ ଥର ସେ ଭୁଲ କରିବି ନାହିଁ । ଦରକାର ପଡ଼ିଲେ ତୁମ ଦେଶରେ ମୁଁ ତୁମପାଇଁ ରନ୍ଧାବଢ଼ା କରିବି ଏବଂ ସ୍ତ୍ରୀର କର୍ତ୍ତବ୍ୟ ଶିକ୍ଷା ଦେବାପାଇଁ ସ୍କୁଲ୍‌ଥିଲେ ମୁଁ ସେଥିରେ ନାମ ଲେଖାଇବି ।"

"ହଁ, ସେମିତିକା ସ୍କୁଲ୍ ଅଛି ମାତ୍ର ତୋର ସେଠାରେ ଶିକ୍ଷା କରିବା ଦରକାର ପଡ଼ିବ ନାହିଁ ।"

"ପିଲାର୍ କହିଛି ଯେ ତୁମ ଦେଶରେ ସେପରି ସ୍କୁଲ୍‌ମାନ ଅଛି । ଏହା ସେ କୌଣସି ମାସିକ ପତ୍ରିକାରୁ ପଢ଼ିଥିଲା । ଏହାଛଡ଼ା ସେ ମୋତେ ତୁମ ଭାଷାରେ କଥାବାର୍ତ୍ତା କରିବା ପାଇଁ ଇଂରେଜୀ ଶିକ୍ଷା କରିବାକୁ କହିଅଛି । ତାହାହେଲେ ମୋ ପାଇଁ ତୁମକୁ ଲଜ୍ଜିତ ହେବାକୁ ପଡ଼ିବ ନାହିଁ ।"

"ତୋତେ ଏସବୁ କଥା ସେ କେତେବେଳେ କହିଥିଲା ?"

"ଆଜି ଆମେ ଗଣ୍ଠିରି ବାନ୍ଧିଲାବେଳେ । ତୁମର ସ୍ତ୍ରୀ ହେଲେ ମୋତେ କଅଣ କଅଣ କରିବାକୁ ପଡ଼ିବ ସେକଥା ସେ ବରାବର କହୁଥିଲା ।"

ରବର୍ଟ ଜର୍ଡାନ୍ ଭାବିଲେ ପିଲାର୍ ବୋଧହୁଏ ମାଦ୍ରିଦ୍ ଯିବ । ପଚାରିଲେ "ଆଉ କଅଣ କହୁଥିଲା ?"

"ସେ ମୋତେ ମୋ ଦେହର ଗଠନ ଓ ରୂପ ସମ୍ବନ୍ଧରେ ସାବଧାନ କରି ଦେଇଅଛି । ଏହା କୁଆଡ଼େ ଖୁବ୍ ଗୁରୁତ୍ୱପୂର୍ଣ୍ଣ କଥା ।"

ରବର୍ଟ ଜର୍ଡାନ୍ କହିଲେ "ହଁ, ସେକଥା ସତ ତେବେ ଆଗାମୀ କେତେବର୍ଷ ପାଇଁ ତୋର ଚିନ୍ତା କରିବାର କାରଣ ନାହିଁ ।"

"ହଉ ତେବେ । ପିଲାର୍ ଆହୁରି କହୁଥିଲା ଯେ ଆମ ଜାତି ଲୋକଙ୍କର ହଠାତ୍ ସ୍ୱାସ୍ଥ୍ୟହାନୀ ଘଟି ଲୋକଙ୍କୁ କ୍ଷୀଣ ଦୁର୍ବଳ କରିଥାଏ । ପିଲାର୍ ନିଜେ ଦିନେ ଖୁବ୍ କ୍ଷୀଣଥିଲା । ତା ଅମଳରେ ସ୍ତ୍ରୀଲୋକମାନେ ଖେଳ କସରତ କରୁ ନଥିଲେ । ମୁଁ କି କି ବ୍ୟାୟାମ କରିବି ସେକଥା ମଧ୍ୟ ପିଲାର୍ ମୋତେ କହି ଦେଇଅଛି । କଅଣ କଅଣ ନଖାଇବି ତାହା ଏବଂ ବେଶୀ ନଖାଇବା ପାଇଁ ସେ ମୋତେ କହିଅଛି । ମୁଁ ସେହି ଖାଦ୍ୟର ତାଲିକା ପାଶୋରି ଦେଲିଣି । ପୁଣିଥରେ ପଚାରି ନେବି ।"

"ଆଳୁ କି ?"

"ହଁ, ହଁ । ଆଳୁ ଓ ଅନ୍ୟ ଭଜା ଖାଇବା ଦ୍ରବ୍ୟମାନ । ମୋର ଏଇ ବେମାରି କଥା ମୁଁ ତାକୁ କହିବାରୁ ସେ ତୁମକୁ ସେକଥା ନକହି ନୀରବରେ କଷ୍ଟ ସହ୍ୟ କରିବାକୁ ପରାମର୍ଶ ଦେଇଥିଲା । କିନ୍ତୁ ତୁମ ପାଖରେ ମିଛ କହିବି ନାହିଁ କି କିଛି ଲୁଚାଇବି ନାହିଁ ବୋଲି ମୁଁ କହି ପକାଇଲି । ମୋର ଭୟ ହେଲା ଯେ କାଳେ ତୁମେ ଭାବିବ ଅନ୍ୟମାନଙ୍କ ପରି ଦୀର୍ଘ ସମୟ ଧରି ଆମେ ଦୁହେଁ ସୁଖ ଉପଭୋଗ କରିପାରୁ ନାହୁଁ ।"

"ମୋତେ କହିଦେବା ଠିକ୍ ହୋଇଅଛି ।"

"ସତେ ? ମୁଁ ଲଜ୍ଜିତା, ଏଣୁ ତୁମେ ଯାହା କହିବ ମୁଁ କରିବି । ସ୍ୱାମୀପାଇଁ କଅଣ କଅଣ କରିବା ତାହା ସବୁ ପିଲାର୍ ମୋତେ ବୁଝାଇ ଦେଇଅଛି ।"

"କିଛି କରିବା ଦରକାର ନାହିଁ । ଆମର ଯାହା ଅଛି ତାହା ଆମ ଦୁହିଁଙ୍କର । ଆମେ ତାକୁଇ ଜଗିରଖିବା । ତୋ ପାଖରେ ଏପରି ଭାବେ ଶୋଇ ତୋତେ ସ୍ପର୍ଶ କରିବାକୁ ମୁଁ ଭଲପାଏ । ତୁ ମୋ ପାଖରେ ଅଛୁ ଏବଂ ପ୍ରସ୍ତୁତ ହେଲେ ଆମେ ସବୁ କରିବା ।"

"କିନ୍ତୁ ତୁମର ଯତ୍ନ ନେବାର କଅଣ କିଛି ନାହିଁ ? ପିଲାର୍ ତ ମୋତେ କହୁଥିଲା ।"

"ନା, ନାହିଁ । ଆମର ଯାହା ଦରକାର ତାହା ଦୁହିଁଙ୍କର । ତୋତେ ବାଦ ଦେଇ ମୋର ଏକୁଟିଆ କୌଣସି ଦରକାରୀ ବସ୍ତୁ ନାହିଁ ।"

'ଏହା ଖୁବ୍ ଭଲକଥା କିନ୍ତୁ ମନେରଖ ତୁମେ ଯାହା ଚାହିଁବ ମୁଁ ତାହା କରିବାକୁ ପ୍ରସ୍ତୁତ ଅଛି । ହେଲେ ମୁଁ ବହୁତ କଥା ଜାଣେ ନାହିଁ । ତୁମେ ମୋତେ ବୁଝାଇ ଦେବାକୁ ପଡ଼ିବ । ପିଲାର୍ ମୋତେ ଯେତେ କଥା କହିଥିଲା ସେଥିରୁ ବହୁତ ବିଷୟ ମୁଁ ବୁଝିପାରି ନାହିଁ । ତାକୁ ପଚାରିବାକୁ ମୋତେ ଲାଜମାଡ଼ିଲା । ସେ ବହୁତ ବିଷୟରେ ବିଶେଷ ଅଭିଜ୍ଞା ।'

ରବର୍ଟ ଜର୍ଡାନ୍ କହିଲେ 'ମନ ମ, ତୁ ଅତି ଚମତ୍କାର ।'

ମେରିଆ ଜବାବ ଦେଲା 'ସ୍ତ୍ରୀର କର୍ତ୍ତବ୍ୟଗୁଡ଼ିକ ଏକା ଦିନକରେ ଶିଖି ନେବାର ଚେଷ୍ଟା ସହଜ କଥା ନୁହେଁ । ଏଣେ ପୁଣି ଏଠାରୁ ଶିବିର ଉଠାଇବା ପାଇଁ ସବୁ ବାନ୍ଧଛନ୍ଦ କରିବାକୁ ପଡ଼ୁଅଛି । ଯୁଦ୍ଧଟାଏ ମୁଣ୍ଡ ଉପରେ, ତେଣେ ଉପର ମୁଣ୍ଡରେ ଯୁଦ୍ଧ ଚାଲିଅଛି । ଏହା ଏକ ଅସାଧାରଣ ପରିସ୍ଥିତି । ଏ ଅବସ୍ଥାରେ ମୁଁ ଯଦି ବଡ଼ରକମ ଭୁଲ କରି ପକାଏ କେବେ ତୁମେ ମୋତେ ତାହା କହିଦେବ କାରଣ ମୁଁ ତୁମକୁ ଭଲପାଏ । ଅନେକ କଥା ଭଲଭାବରେ ମନେ ରଖିବା ମୋ ପକ୍ଷରେ ସମ୍ପୂର୍ଣ୍ଣ ସମ୍ଭବ । ପିଲାର୍ ଯେତେ ଯେତେ କଥା କହିଅଛି ତହିଁର ବେଶୀ ଭାଗ ବଡ଼ କଠିନ ।'

'ସେ ତୋତେ ଆଉ କଅଣ କହିଥିଲା ?'

'ଏତେ କଥା କହିଥିଲା ଯେ ମୁଁ ମନେ ରଖି ପାରିଲି ନାହିଁ । ସେମାନେ ମୋ ସହିତ ଯାହା ଯାହା କରିଥିଲେ ଦରକାର ପଡ଼ିଲେ ତୁମକୁ ସେକଥା ଫିଟାଇ କହିବାକୁ ପିଲାର୍ ମୋତେ କହିଥିଲା କାରଣ ତୁମପରି ସମଜଦାର ଭଲ ଲୋକ ପାଖରେ କିଛି ଲୁଚାଇବା ଉଚିତ ନୁହେଁ । କିନ୍ତୁ ମୋ ମନରେ କୌଣସି କାଳିମା ଜାତ ନହେବାଯାଏ ତୁମକୁ କହିବାକୁ ବାରଣ କରିଥିଲା । ମନରେ କୌଣସି ସନ୍ଦେହ ହେଲେ ତୁମକୁ କହିବାକୁ ପରାମର୍ଶ ଦେଇଥିଲା ।'

'ଆଚ୍ଛା, ବର୍ତ୍ତମାନ କଣ ତୋ ମନରେ ପାପ ଛୁଉଁଛି ?'

'ନା । ତୁମ ସଙ୍ଗେ ପହିଲେ ଦେଖା ହେଲା ଦିନଠାରୁ ସେକଥା ଯେପରି ନଘଟିବ ଏହାହିଁ ମୋ ମନେ ହେଉଛି । ଅବଶ୍ୟ ମୋ ବାପ ମାଆଙ୍କ କଥା ଭାବିଲେ ମୋ ମନ ବିକଳ ହୋଇଉଠେ । କିନ୍ତୁ ତାହା ତ ସବୁବେଳେ ରହିବ । କିନ୍ତୁ ତୁମର ସ୍ତ୍ରୀ

ହେଲାରୁ ତୁମକୁ ଯାହା ଯାହା କହିବା କଥା ମୁଁ କହିବ । ସେଥିରେ ମୋର ଗର୍ବ । ମୁଁ ଆଉ କାହାର ବଶ୍ୟତା ସ୍ୱୀକାର କରିନାହିଁ । ମୁଁ ସବୁବେଳେ ବାଧା ଦେଇଅଛି ଏବଂ ସବୁବେଳେ ଦୁଇଜଣରୁ ଅଧିକ ଲୋକ ମୋ ଉପରେ ବଳପ୍ରୟୋଗ କରୁଥିଲେ । ଜଣେ ମୋ ମୁଣ୍ଡ ମାଡ଼ି ବସୁଥିଲା । ତୁମେ ଗର୍ବ କରିବ ବୋଲି ତୁମକୁ ଏ କଥା କହୁଅଛି ।'

'ତୁ ମୋର ଗର୍ବର ସାମଗ୍ରୀ । କିଛି କହିବା ଦରକାର ନାହିଁ ।'

'ନା, ମୁଁ ମୋ ନିଜର ଗର୍ବ ପାଇଁ କହିବି । ତୁମର ସ୍ତ୍ରୀ ହେବାଟା ମୋର ଗର୍ବର ବିଷୟ । ଆଉ ଗୋଟିଏ କଥା । ମୋ ବାପା ଆମ ଗ୍ରାମର ମେୟର୍ ଥିଲେ । ସେ ଜଣେ ସମ୍ମାନାର୍ହ ବ୍ୟକ୍ତି । ମୋ ମାଆ ମଧ୍ୟ ଖୁବ୍ ସୁଚରିତା ଏବଂ କାଥଲିକ୍ ସମ୍ପ୍ରଦାୟ ଭୁକ୍ତ ଥିଲେ । ମୋ ବାପାଙ୍କ ଗଣତାନ୍ତ୍ରିକ ମତ ନିମିତ୍ତ ସେମାନେ ମୋ ମାଆଙ୍କୁ ତାଙ୍କ ସହିତ ଗୁଳିକରି ମାରି ଦେଇଥିଲେ । ଦୁହେଁ ଗୁଳିରେ ମରିବା ମୁଁ ଦେଖିଛି । ବାପା ଗଣତନ୍ତ୍ରର ଜୟଧ୍ୱନି କରି ଢଳି ପଡ଼ିଥିଲେ । ସେମାନେ ଗ୍ରାମର କଲ୍‌ଖାନା କାନ୍ଥ ପାଖରେ ବାପାଙ୍କୁ ଠିଆ କରି ଗୁଳି ମାରିଥିଲେ ।'

ମୋ ମାଆ ମଧ୍ୟ ସେହି କାନ୍ଥପାଖରେ ନିଜ ସ୍ୱାମୀର ଜୟଗାନ କରି ପ୍ରାଣ ଦେଇଥିଲେ । ମୁଁ ଭାବିଥିଲି ସେମାନେ ମୋତେ ମଧ୍ୟ ମାରି ପକାଇବେ । ମୁଁ ମଧ୍ୟ ଗଣତନ୍ତ୍ରର ଜୟଧ୍ୱନି କରିବାକୁ ଯାଉଥିଲି କିନ୍ତୁ ସେମାନେ ମୋତେ ଗୁଳି ନ କରି ଏହିପରି ବଳାତ୍କାରେ ଧର୍ଷଣ କରିଥିଲେ ।

ଆମ ଦୁହିଙ୍କୁ ପ୍ରଭାବିତ କରିପାରିବା ଭଳି ମୁଁ ଆଉ ଗୋଟିଏ କଥା କହିବ । ଗୁଳି କରିସାରି ସେମାନେ ଆମକୁ ଓ ଅନ୍ୟ ଦେଖଣାହାରି ଆତ୍ମୀୟଙ୍କୁ ରଙ୍ଗାଳୟରୁ ଉଚ୍ଚ ପାହାଡ଼ ଚଢ଼ାଇ ସହରର ପ୍ରଧାନ ଛକକୁ ନେଇ ଯାଇଥିଲେ । ପ୍ରାୟ ସମସ୍ତେ କାନ୍ଦୁଥାନ୍ତି କିନ୍ତୁ ନିର୍ମମ ଦୃଶ୍ୟରେ କେତେଜଣ ନିସ୍ପନ୍ଦ ମଧ୍ୟ ହୋଇ ପଡ଼ିଥିଲେ । ମୁଁ ନିଜେ କାନ୍ଦି ପାରୁ ନଥିଲି, କଅଣ ଘଟୁଛି ତାହା ମଧ୍ୟ ଦେଖୁ ନଥିଲି । ମୋ ଆଖିରେ ମୋ ବାପ ମାଆଙ୍କ ମୃତ୍ୟୁ ଦୃଶ୍ୟ ଦେଖା ଯାଉଥିଲା ! ମୋ ମଗଜରେ ଏକ ବ୍ୟାକୁଳ କ୍ରନ୍ଦନର କୋହ ପୂରି ରହିଥିଲା । ମୋ ମାଆ ଗଣତନ୍ତ୍ରଦଳର ନଥିବାରୁ ଗଣତନ୍ତ୍ରର ଜୟଧ୍ୱନି ନକରି ନିଜ ସ୍ୱାମୀର ଜୟଧ୍ୱନି କରୁ କରୁ ପ୍ରାଣ ଦେଇଥିଲେ ଏବଂ ବାପାଙ୍କ ପାଦତଳେ ଢଳି ପଡ଼ିଥିଲେ ।'

'ମାଆ ଖୁବ୍ ବଡ଼ପାଟିରେ ଚିତ୍କାର କରି ନିଜ କଥା ପଦକ କହିଥିଲେ ଏବଂ ସେମାନେ ତାଙ୍କୁ ମାରି ପକାଇଲେ । ମୁଁ ମାଆ ପାଖକୁ ଧାଇଁବାକୁ ବାହାରନ୍ତେ

ସେମାନେ ଆମ ସମସ୍ତଙ୍କୁ ବାନ୍ଧି ପକାଇଲେ । ସିଭିଲ୍‌ଗାର୍ଡ଼ମାନେ ଏହି ଗୁଳି ଚଳାଉଥିଲେ । ସେମାନେ ଆହୁରି ଲୋକ ମାରିବାକୁ ପ୍ରସ୍ତୁତ ହୋଇ ରହିଥିଲେ କିନ୍ତୁ ଫାଲାଞ୍ଜିଷ୍ଟମାନେ ଆମକୁ ସେଠାରୁ ଛେଲପଲ ପରି ଅଡ଼ାଇ ପାହାଡ଼ ଆଡ଼େ ନେଇ-ଗଲେ ଏବଂ ସିଭିଲ୍‌ଗାର୍ଡମାନେ ରାଇଫଲ୍ ଉପରେ ଭରା ଦେଇ ଠିଆ ହୋଇ ରହିଥିଲେ । ମୁର୍ଦାର ସବୁ ସେଠାରେ ପଡ଼ି ରହିଲା । ସେମାନେ ବହୁତ ବାଳିକା ଓ ସ୍ତ୍ରୀଲୋକଙ୍କୁ ଏକାଠି ହାତ କବଜାରେ ବାନ୍ଧି ଦେଇଥିଲେ । ରାସ୍ତାରେ ଭଣ୍ଡାରି ଦୋକାନ ପାଖରେ ଅଟକି ଦୁଇଜଣ ଲୋକ ମୋତେ ଗୃହି କହିଲେ ଇଏ୍ତ ହେଉଛି ମେୟରର ଝିଅ, ଏହାରି ଉପରୁ ଆରମ୍ଭ କରାଯାଉ । ଜଣେ ମୋ ହାତରୁ ଦଉଡ଼ି କାଟି ଦେଇ ଭଣ୍ଡାରି ଦୋକାନକୁ ନେଇ ଚଉକିରେ ବସାଇଲା । ସମ୍ମୁଖସ୍ଥ ଦର୍ପଣରେ ମୋ ମୁହଁ ଏବଂ ମୋତେ ଧରିଥିବା ଲୋକଙ୍କ ମୁହଁ ମୁଁ ଦେଖିଲି । ଆଉ ତିନି ଜଣ ମୋ ପଛରେ ନଇଁ ପଡ଼ୁଥିଲେ । ତାଙ୍କ ପ୍ରତିବିମ୍ବ ମଧ୍ୟ ଦେଖିଲି । ସମସ୍ତେ ମୋର ଅଚିହ୍ନା ଲୋକ । ଦାନ୍ତ ଡାକ୍ତରଙ୍କ ଚଉକିରେ ବସିଲେ ଯେପରି ହୁଏ ମୋ ଦଶା ସେପରି ହୋଇଥିଲା । ସେମାନେ ସମସ୍ତେ ମଧ୍ୟ ପାଗଲ ପରି ହୋଇଥିଲେ । ଦୁଃଖରେ ମୋ ଚେହେରା ଏପରି ବଦଳି ଯାଇଥିଲା ଯେ ମୁଁ ନିଜକୁ ନିଜେ ଚିହ୍ନି ପାରୁ ନଥିଲି । କିନ୍ତୁ ଗଭୀର ଦୁଃଖରେ ମୋର ବୋଧଶକ୍ତି ଲୋପ ପାଇ ଯାଇଥିଲା ।

ସେତେବେଳେ ମୁଁ ମୁଣ୍ଡରେ ଦୁଇଟା ବେଣୀ ପକାଉଥିଲି । ଜଣେ ମୋ ବେଣୀକି ଧରି କାନ ମୂଳରୁ ପୋଛି ଖୁରରେ କାଟି ଦେଲା । ମୋ କାନ ମୁଣ୍ଡା ମଧ୍ୟ ଖୁରରେ କଟିଗଲା । ତୁମେ ହାତ ଦେଇ ସେହି କଟା ଘା'ର ଦାଗ ଜାଣି ଏବେ ମଧ୍ୟ ବୁଝି ପାରିବ ।'

'ହଁ, କିନ୍ତୁ ସେ କଥା ନ କହିଲେ ଭଲ ହେବ ।'

ଏଟା ତ ସାମାନ୍ୟ କଥା । ମୁଁ ଖରାପ କଥା ଗୁଡ଼ା କହିବି ନାହିଁ । ମୋ ବେଣୀ ଦୁଇଟା କାଟି ଦେଲାରୁ ସମସ୍ତେ ହସିଲେ । ମୋ କାନ କଟିବା ଜାଗା ମଧ୍ୟ ଜ୍ୱାଳା କରିବା ମୁଁ ବୁଝି ପାରିଲି ନାହିଁ । ଜଣେ ମୋ ବେଣୀକୁ ଗୁଡ଼ୁକ କରି ମୋ ମୁହଁରେ ପିଟିଲା । ଆଉ ଦୁଇଜଣ ମୋତେ ଧରି କହିଲେ ଆମେ ଏମିତି ଭାବେ ସାମ୍ୟବାଦୀ ଝିଅମାନଙ୍କୁ ଲଣ୍ଡି କରି ସନ୍ୟାସିନୀ କରିଥାଉଁ । ଏମିତି ବେଶରେ ତୁ ତୋ ସାମ୍ୟବାଦୀ ଖ୍ରୀଷ୍ଟଙ୍କ ବୋହୂ ହେବାକୁ ଯିବୁ । ଏହା କହି ସେ ମୋତେ ବାରମ୍ବାର ପିଟିଲେ ଏବଂ ତା ପରେ ସେହି ବେଣୀ ମୋ ମୁହଁରେ ପୂରାଇ ବାନ୍ଧିଦେଲେ । ମୋତେ ଧରିଥିବା ଲୋକ ଦୁଇଟା ଠୋ ଠୋ କରି ହସି ଉଠିଲେ । ମୁଁ ମୋ ମୁହଁ ଅଇନାରେ ଦେଖି କାନ୍ଦିବାକୁ ଲାଗିଲି ।'

ଏହାପରେ ଜଣେ ବାଲକଟା କଳରେ ମୋ କପାଳରୁ ପଛପଟ ବେକ ମୁଣ୍ଡାଯାଏ ବାଲ କାଟି ଲଣ୍ଡି କରିଦେଲା । ବାଲକାଟି ସାରି ସେ ଆଇଓଡ଼ିନ୍ ବୋତଲ ନେଇ ମୋ ମୁଣ୍ଡରେ ବୋଳିଲା । ମୋ କାନ ପାଖ ଜାଗାଟା ଖୁବ ଜ୍ୱାଳା କଲା । ଭଣ୍ଡାରିଟାକୁ ଆଗରୁ ସେମାନେ ମାରି ଦେଇଥିଲେ । ତା ମୁର୍ଦାର ଦୁଆର ମୁହଁରେ ପଡ଼ିଥାଏ । ଦୁଃଖରେ ଯନ୍ତ୍ରଣାରେ ବିଶ୍ୱାସିକାରେ ମୁଁ ଅତି କାତର ହୋଇ ପଡ଼ିଲି । ସେମାନେ ଆଇଓଡ଼ିନ୍ ଦ୍ୱାରା ମୋ କପାଳରେ ଇଉ. ଏଚ୍. ପି. ଏହି ତିନୋଟି ଅକ୍ଷର ଲେଖିଦେଲେ । ଏସବୁ ଦୃଶ୍ୟ ମୁଁ ଅଇନାରେ ଦେଖୁଥାଏ । ମୋ ବାପ ମାଆ କଥା ମନେ ପକାଇ ମୋ ଛାତି ପଥର ପାଲଟି ଯାଇଥାଏ । ସେମାନେ ମୋତେ ଟାଣି ଟାଣି ଭଣ୍ଡାରି ମୁର୍ଦାର ମାଡ଼ି ଚକଟି ମୋ ବାପାଙ୍କ ଅଫିସ ଘରକୁ ନେଇଗଲେ । ସେଠାରେ ଗୋଟାଏ ବେଞ୍ଚ ଉପରେ ମୋତେ ଶୁଆଇ ମାଡ଼ି ବସି ମୋ ଉପରେ ପାଶବିକ ଅତ୍ୟାଚାର କଲେ ।'

ରବର୍ଟ ଜର୍ଡାନ୍ ମେରିଆକୁ କୋମଳ ଭାବରେ ପାଖକୁ ଟାଣିନେଲେ । ସର୍ବାଙ୍ଗ ତାଙ୍କର ଘୃଣାରେ କଣ୍ଟକିତ ହୋଇ ଉଠିଲା । ସେ କହିଲେ 'ଆଉ, ଆଉ, ଆଉ କହନା । ମୁଁ ଆଉ ସହ୍ୟ କରିପାରିବ ନାହିଁ ।'

ମେରିଆ ତାଙ୍କର ବାହୁ ପାଶରେ ଅତି କଠିନ ଏବଂ ଶୀତଳ ହୋଇ କହିଲା 'ନା, ଆଉ କେବେ ଏକଥା କହିବ ନାହିଁ । ସେ ଲୋକ ଗୁଡ଼ାକ ବଡ଼ ମନ୍ଦ ଏବଂ ପାରିଲେ ତୁମ ସଙ୍ଗରେ ରହି ମୁଁ ତାଙ୍କ ଭିତରୁ କେତେ ଜଣଙ୍କୁ ମାରିବାକୁ ବ୍ୟାକୁଳ । ମୁଁ ତୁମର ସ୍ତ୍ରୀ ଭାବରେ ଏସବୁ କଥା ତୁମର ଗର୍ବ ହେବ ବୋଲି କହିଲି । ତୁମେ ତାହାହେଲେ ବୁଝିଲ ତ ?'

ସେ କହିଲେ 'ମୋତେ କହିଲୁ ବୋଲି ମୁଁ ସନ୍ତୁଷ୍ଟ । ଭାଗ୍ୟ ପ୍ରସନ୍ନ ଥିଲେ କାଲି ଆମେ ତାଙ୍କ ଦଳର ବହୁତ ଲୋକ ମାରି ପାରିବା ।'

'କିନ୍ତୁ ଆମେ 'ଫାଲଞ୍ଜିଷ୍ଟଙ୍କୁ' ମାରିବା ତ ? ସେହିମାନେ ତ ଏହା କରିଥିଲେ ।

"ସେ ଗୁଡ଼ାକ ଯୁଦ୍ଧ କରନ୍ତି ନାହିଁ । ପଛରୁ ଗୁପ୍ତ ହତ୍ୟା କରିଥାନ୍ତି । ଯୁଦ୍ଧରେ ସେମାନେ ଆମ ଆଗକୁ ଆସିବେ ନାହିଁ ।' ସେ ଗମ୍ଭୀର ହୋଇ କହିଲେ ।

"କିନ୍ତୁ କୌଣସି ମତେ କେତେଜଣଙ୍କୁ ଆମେ ମାରି ପାରିବା ନାହିଁକି ? ତାଙ୍କ ଭିତରୁ ଗୁଡ଼ିଏ ଲୋକଙ୍କୁ ମୁଁ ମାରିବାକୁ ପ୍ରସ୍ତୁତ ।'

"ମୁଁ ତାଙ୍କ ଦଳର ବହୁତଙ୍କୁ ମାରିଅଛି, ପୁଣି ମଧ୍ୟ ମାରିବି । ରେଳଗାଡ଼ୀ ଧ୍ୱଂସ କରି ମୁଁ ସେ ଦଳର ବହୁତ ଲୋକ ମାରିଥିଲି ।"

ମେରିଆ କହିଲା 'ପୁଣି ରେଳଗାଡ଼ୀ ଧ୍ୱଂସ କରିବା କାମରେ ମୁଁ ତୁମ ସଙ୍ଗେ ରହିବାକୁ ଚାହେଁ । ଟ୍ରେନ ଧ୍ୱଂସବେଳେ ପିଲାର ମୋତେ ଆଣିଥିଲା । ସେତେବେଳେ ମୋ ମୁଣ୍ଡ ଠିକ୍ ନଥିଲା । ମୋ ଅବସ୍ଥା ପିଲାର୍ ତୁମକୁ କହିଥିଲା କି ?"

"ହଁ । ତୁ ଆଉ ଅଧିକ କହି ନାହିଁ ।"

ମୋ ମୁଣ୍ଡର ଆଘାତରେ ମୁଁ ଡ ମଲାପରି ହୋଇ ଯାଇଥିଲି । ଖାଲି କାନ୍ଦୁଥିଲି । କିନ୍ତୁ ଆଉ ଗୋଟିଏ କଥା ତୁମକୁ କହିବି । ସେ କଥା ଶୁଣି ହୁଏତ ତୁମେ ମୋତେ ବାହାହେବ ନାହିଁ । ଯଦି ବାହା ନ ହୁଅ ତେବେ ଆମେ ଏମିତି ଏକାଠି ରହିପାରିବା କି ନାହିଁ କହିଲ ?"

"ମୁଁ ନିଶ୍ଚୟ ବାହା ହେବି ।"

"ନା । ମୁଁ ଗୋଟାଏ କଥା ତୁମକୁ କହିବାକୁ ଭୁଲି ଯାଇଅଛି । ପିଲାର୍ କହୁଥିଲା ଯେ ମୋର ପିଲାପିଲି ହେବ ନାହିଁ । ହେବାର ଥିଲେ ସେମାନେ ଯାହା ମୋତେ କଲେ ସେଥିକରେ ମୋର ଗର୍ଭ ହୋଇ ଯାଇଥାନ୍ତା । ତୁମକୁ ବାହାହେଲେ ତ ମୋ ଆଡ଼ୁ ତୁମର କୌଣସି ପୁଅ ଝିଅ ଜନ୍ମିବ ନାହିଁ ।"

ରବର୍ଟ ଜର୍ଡାନ୍ ଜବାବ ଦେଲେ 'ଏହା ସେପରି ଗୁରୁତ୍ୱପୂର୍ଣ୍ଣ କଥା ନୁହେଁ । ହୁଏତ ଏ କଥା ମିଛ । ଏ କଥା ଡାକ୍ତରମାନେହିଁ କହି ପାରିବେ । ତାଦୁପରି ଏହି ସଂସାରଟା ଯାହା ହେଲାଣି ସେଥିରେ ମୋର କୌଣସି ପୁଅ କିମ୍ବା ଝିଅ ହେବା ମୁଁ ମୋଟେ ଚାହୁଁନାହିଁ । ଶେଷକୁ ମୁଁ ଏକମାତ୍ର ତୋତେ ପରିପୂର୍ଣ୍ଣ ପ୍ରେମ କରିବାକୁ ଚାହେଁ । ତାହାଁର ଅଂଶ ଅନ୍ୟକୁ ଦେବାକୁ ପ୍ରସ୍ତୁତ ନୁହେଁ ।"

ମେରିଆ କହିଲା 'ମୁଁ ତୁମର ପୁଅଝିଅର ଜନନୀ ହେବାକୁ ଲାଳାୟିତା । ପୁଅ ଝିଅ ନ ରହିଲେ ଫ୍ୟାସିଷ୍ଟଙ୍କ ବିରୁଦ୍ଧରେ ଲଢ଼େଇ କରିବ କିଏ ? ସଂସାରକୁ ଅନାବିଲ କରିବ କିଏ ?'

ସେ କହିଲେ 'ମୋ କଥା ଶୁଣ । ବର୍ତ୍ତମାନ ଶୋଇ ପଡ଼ିବା ବେଳ । ସକାଳ ହେବାର ବହୁ ପୂର୍ବରୁ ମୋତେ ଉଠିବାକୁ ହେବ । ଏ ମାସରେ ରାତିଟା ଅତି ଶୀଘ୍ର ପାହି ଯାଇଥାଏ ।'

ତେବେ ମୁଁ ଯେଉଁ ମୋକ୍ଷ ଘାତ କଥା କହୁଥିଲି ତାହା ଠିକ୍ ? ଆମେ ଏହା ସତ୍ତ୍ୱେପି ବାହା ହୋଇ ପାରିବୁ ?'

"ମୁଁ ତୋତେ ବର୍ତ୍ତମାନ ବାହା ହୋଇଅଛି । ତୁ ମୋର ସ୍ତ୍ରୀ । ତେବେ ଏଥର ଶୋଇପଡ଼ । ଆଉ ବେଶୀ ବେଳ ନାହିଁ ।"

"ଆମେ ସତ ସତକୁ ବାହା ହେବା ?"

"ହଁ ।"

"ହଉ ତେବେ, ମୁଁ ଶୋଇ ପଡୁଛି । ଜାଗିଲେ ପୁଣି ଭାବିବି ।"

"ମୁଁ ମଧ୍ୟ ।"

"ନମସ୍କାର ସ୍ୱାମୀ ।"

"ନମସ୍କାର ସ୍ତ୍ରୀ, ନମସ୍କାର ।"

ମେରିଆ ନିୟମିତ ନିଶ୍ୱାସ ପ୍ରଶ୍ୱାସ ମାରି ଗାଢ଼ ନିଦରେ ଶୋଇ ପଡ଼ିଲା ।

ଏକଥା ରବର୍ଟ ଜର୍ଡାନ୍ ଜାଣି ପାରିଲେ । ସେ ଚେଇଁ ଶୋଇଥାନ୍ତି । ହଲଚଲ ହୋଇ ମେରିଆ ନିଦ ଭାଙ୍ଗି ଦେବାଟା ସେ ନାପସନ୍ଦ କଲେ । ସେ ତାଙ୍କୁ ଯେଉଁ ଅଂଶତକ କହି ନଥିଲି ତାହା ଭାବିଲେ । ତାଙ୍କର ଘୃଣା ଫ୍ୟାସିଷ୍ଟଙ୍କ ପ୍ରତି ତୀବ୍ର ହୋଇ ଉଠିଲା । ମନେ ମନେ ଖୁସି ହେଲେ ଏହାହିଁ ଭାବିଯେ କାଲି ଯୁଦ୍ଧ ଲାଗିବ । ବହୁ ଲୋକ ମରିବେ କିନ୍ତୁ ସେ ନିଜ ହାତରେ କାହାକୁ ମାରିବାକୁ ଇଚ୍ଛା କରି ନଥିଲେ ।

କିନ୍ତୁ ନମାରି ଅବା ରହିବେ କପରି ? ଆମ୍ଭେମାନେ ତ ତାଙ୍କ ପ୍ରତି ଭୀଷଣ ବ୍ୟବହାର କରିଅଛୁ । ତେବେ ଆମର ଲୋକେ ଅଶିକ୍ଷିତ ଏବଂ କିଛି ଭଲ ଘାତ ଜାଣି ନଥିଲେ । କିନ୍ତୁ ସେମାନେ ଜାଣିଶୁଣି ଉଦ୍ଦେଶ୍ୟ ରଖି ଏପରି ଜଘନ୍ୟତା ଆଚରି ଅଛନ୍ତି । ସେମାନେ ଉଚ୍ଚ ଶିକ୍ଷିତ । ସେମାନେ ସ୍ପେନ୍‌ଦେଶର ଶିକ୍ଷା ସଭ୍ୟତା ଓ ସଂସ୍କୃତିର ଶ୍ରେଷ୍ଠତମ ପ୍ରସୂନ । ଖାଉନ୍ଦର ପରମ ନିଦର୍ଶନ । ଅଥଚ ଦେଶଟା ବର୍ତ୍ତମାନ କି ନରକରେ ପତିତ ହୋଇଅଛି । କର୍ଟେଜ, ପିଜାରୋ, ମେନେନ୍‌ଡ଼େଜ୍‌ଠାରୁ ଆରମ୍ଭ କରିଏନଟିକେ ଲିଷ୍ଟର ଓ ପାବ୍‌ଲୋ ପର୍ଯ୍ୟନ୍ତ ସମସ୍ତେ ନରପିଶାଚ । ଅଥଚ ସ୍ପେନ୍ ଲୋକଙ୍କ ଅପେକ୍ଷା ଅଦ୍ଭୁତ ଲୋକ ପୃଥିବୀରେ ନାହିଁ । ଦୟାରେ ଯେପରି ନୃଶଂସତାରେ ମଧ୍ୟ ସେହିପରି । କିନ୍ତୁ କିଏ ତାଙ୍କୁ ବୁଝୁଛି ? ମୁଁ ବୁଝିବି ନାହିଁ, ତାହେଲେ ତ ମୁଁ ତାଙ୍କୁ କ୍ଷମା କରି ପକାଇବି । ବୁଝିବା ଅର୍ଥ ହେଉଛି କ୍ଷମା । ଏହା ଠିକ୍ ନୁହେ । କ୍ଷମା ଗୁଣ

ଅତରଞ୍ଜିତ ଭାବରେ ଚନ୍ଦଣ କରାଯାଇଅଛି । କ୍ଷମା କରିବା ହେଉଛି ଖ୍ରୀଷ୍ଟଧର୍ମର ବିଶ୍ୱାସ ଅଥଚ ସ୍ପେନ୍ କେବେହେଲେ ଖ୍ରୀଷ୍ଟାନୀ ରାଜ୍ୟ ନଥିଲା । ଏଠାରେ ସବୁବେଳେ ଗୀର୍ଜା ଭିତରେ ନିଜସ୍ୱ ମୂର୍ତ୍ତି ପୂଜା ଚାଲିଅଛି । ମେରୀ ମାତାଙ୍କୁ ସେମାନେ ମାନନ୍ତି । ନାହିଁ ଖୁବ ସମ୍ଭବ ଏଇଥି ପାଇଁ ଶତ୍ରୁ ପକ୍ଷର ସବୁ କୁମାରୀଙ୍କୁ ଧର୍ଷଣ କରିଥାଆନ୍ତି । ଏ ଧାରଣା ତାଙ୍କ ମନରେ ସୁଗଭୀର । ସେମାନେ ଧର୍ମ ବିଶ୍ୱାସରେ ଅନ୍ଧ । ଦେଶର ଶାସନ କଳ ଗୀର୍ଜା ହାତରେ ଥିବାରୁ ଗୀର୍ଜା ପ୍ରତି ଓ ଧର୍ମ ପ୍ରତି ବିମୁଖ । ଏକମାତ୍ର ଏହି ଦେଶଟାରେ ଧର୍ମସଂସ୍କାର ପଶି ପାରି ନଥିଲା । ବର୍ତ୍ତମାନ ସୁଦ୍ଧା ବିଧର୍ମୀଙ୍କୁ ପୋଡ଼ି ମାରିବାର ପ୍ରତିଫଳ ସ୍ପେନ୍ ଭୋଗୁଅଛି ।'

ଏହା ଅବଶ୍ୟ ଚିନ୍ତା କରିବାର ବିଷୟ । ନିଜ କାମରେ ବିବ୍ରତ ନହେବା ପାଇଁ ଏଭଳି ଚିନ୍ତା କାମ୍ୟ । ଛଳନା କରିବା ଅପେକ୍ଷା ଏପରି ଭାବିବା ବରଂ ଭଲ । ବାପରେ ବାପ । ଆଜି ସେ ବହୁତ ଛଳନା କରି ସାରିଲେଣି । ପିଲାର୍ ତ ସାରାଦିନ ଏହାହିଁ କରିଅଛି । କାଲି ଯଦି ଆମେ ମରିଯାଉ କ୍ଷତି ନାହିଁ । ପୋଲ ଧ୍ୱଂସ ଯଥାଯଥ ଭାବେ କଲେ ଭାବିବାର କିଛି ନଥିବ । କାଲି ପାଇଁ କାମ ଏତିକି ।

ନା, ଏପରି କାମ ଅନିର୍ଦ୍ଦିଷ୍ଟ କାଳ ପାଇଁ କରିହେବ ନାହିଁ । କେହି ଅମର ନୁହେ । ମୋର ସମଗ୍ର ଜୀବନ ତିନିଟି ଦିନରେ ପର୍ଯ୍ୟବସିତ ହୋଇଅଛି । ଏହା ସତ୍ୟ ହେଲେ ଗତ ରାତିଟା ଭିନ୍ନ ଭାବରେ ଉଦ୍‌ଯାପନ କରିବା ଉଚିତ ଥିଲା । କିନ୍ତୁ ଶେଷ ରାତି କେବେ ଭଲ ହୁଏ ନାହିଁ । ତେବେ ଶେଷରେ କଅଣ ଭଲ ? ହଁ ଶେଷ ବେଳର କଥା ଗୁଡ଼ାକ ବେଳେ ବେଳେ ଭଲ ହୋଇଥାଏ । 'ମୋ ସ୍ୱାମୀ ମେୟରଙ୍କ ଜୟ ହେଉ', ଏହି ଶେଷ କଥାଟି ଖୁବ ଭଲ ।

ଏ କଥାଟି କହିଲାବେଳେ ତାଙ୍କ ଦେହରେ ଶିହରଣ ଖେଳିଗଲା । ସେ ବୁଲି ପଡ଼ି ମେରିଆକୁ ଚୁମା ଖାଇଲେ । ମେରିଆ ଗାଢ଼ ନିଦରେ ଶୋଇଥିଲା । ସେ ଇଂରେଜୀରେ ମୃଦୁ ସ୍ୱରରେ କହିଲେ 'ମୁଁ ତୋତେ ବାହା ହେବାକୁ ଚାହେଁ । ମୁଁ ତୋ ପରିବାର ପାଇଁ ଗର୍ବବୋଧ କରେ ।'

# ବତ୍ରିଂଶ ପରିଚ୍ଛଦ

ସେହିଦିନ ରାତିରେ ମାଡ୍ରିଡ୍‌ର ଗେଲର୍ଡ଼ ହୋଟେଲରେ ବହୁବ୍ୟକ୍ତି ସମବେତ ହୋଇଥିଲେ । ହୋଟେଲ୍‌ର ଗାଡ଼ି ବରଣ୍ଡା ତଳେ ଖଣ୍ଡିଏ ମୋଟର ଗାଡ଼ି ଆସି ଠିଆ ହେଲା । ମୋଟରର ବଡ଼ ଆଲୁଅ ଦୁଇଟା ନୀଳ ରଙ୍ଗରେ ରଞ୍ଜିତ । ଜଣେ ଖର୍ବକାୟ ବ୍ୟକ୍ତି କଳାରଙ୍ଗର ଘୋଡ଼ା ଚଢ଼ା ବୁଟ୍, ଧୂସରିଆ ପାଇଜାମା ଏବଂ ଗୋଟିଏ ସାନ ଧୂସର ରଙ୍ଗର ପୂରା ବୋତାମ ବାଲା କୋଟ୍ ପିନ୍ଧି ଗାଡ଼ୀରୁ ଓହ୍ଲାଇ ଦୁଇଜଣ ମନ୍ତ୍ରୀଙ୍କର ସଲାମି ଗ୍ରହଣ କଲେ । ତା ପରେ ଯେଉଁ ଗୋଇନ୍ଦା ପୋଲିସ ଜଣକ ଟେବୁଲ ପାଖରେ ବସିଥିଲା ତା ଆଡ଼କୁ ମୁଣ୍ଡ ହଲାଇ ଉପରକୁ ଉଠିବା ପାଇଁ କଳ ସିଡ଼ିରେ ଚଢ଼ିଗଲେ । ଘର ଭିତରେ ଦୁଇଜଣ ସନ୍ତ୍ରୀ ଚଉକିରେ ବସିଥିଲେ । ମାର୍ବଲ ପ୍ରବେଶ ହଲର ଦୁଆର ଦୁଇପଟେ ସେ ଦୁଇଜଣ ଥିଲେ । ସେମାନେ ସେହି ଖର୍ବକାୟ ଲୋକଟିକୁ କଳ ସିଡ଼ି ଭିତରେ ପଶିଲାବେଳେ ଅନାଇ ଦେଲେ । ସେ ଦୁହିଁଙ୍କର କାମ ହେଲା ଅଜଣା ଲୋକ କେହି ଆସିଲେ ତାଙ୍କ କାଖତଳ, ପାଇଜାମା ପକେଟ ଆଦି ଖାନତଲାସ କରିବା । ଯଦି ପିସ୍ତଲ ଆଦି ଥାଏ ତେବେ ତାହା କାଢ଼ି ନେଇ ରଖିବା । କିନ୍ତୁ ଏହି ଖର୍ବାକାର ଲୋକଟିକୁ ସେମାନେ ଭଲରକମ ଜାଣିଥିଲେ ବୋଲି ତାଙ୍କଆଡ଼କୁ ଚାହିଁଲେ ନାହିଁ କହିଲେ ଚଳେ ।

ଗେଲର୍ଡ଼ର ଯେଉଁ ପ୍ରକୋଷ୍ଠରେ ସେ ରହୁଥିଲେ ତାହା ଜନଗହଳି ପୂର୍ଣ୍ଣ ଥିଲା । ଲୋକେ ବସି ଏବଂ ଠିଆ ହୋଇ ବୈଠକଖାନାରେ ଗପ କଲ୍ପର ଗଳ୍ପ କରୁଥିଲେ ଏବଂ ସ୍ତ୍ରୀ ପୁରୁଷ ସମସ୍ତେ ବଡ଼ ବଡ଼ ମାଠିଆରୁ ହୁଇସ୍କି, ବିଅର ଓ ଭଡ଼କା ମଦ ସୋଡ଼ା ମିଶାଇ ସାନ ସାନ ଗିଲାସରେ ଢାଳି ପିଉଥିଲେ । ସେ ଲୋକ ମଧ୍ୟରୁ

ଗୃହଜଣ ସରକାରୀ ପୋଷାକ ପିନ୍ଧିଥିଲେ । ଅନ୍ୟମାନେ ଚମଡ଼ା କୋଟ୍ କମ୍ବା ସାଧାରଣ ପୋଷାକ ପିନ୍ଧିଥିଲେ । ୩୪ ଜଣ ସ୍ତ୍ରୀଲୋକ ବୁଲଯିବା ପୋଷାକରେ ଥିଲେ ଓ ଜଣେ ମହିଳା ସାମରିକ ବାହିନୀର ପୋଷାକ ପିନ୍ଧିଥିଲା । ତା ଚେହେରାଟା ଅପରିଚ୍ଛନ୍ନ ଏବଂ ଦେହ କ୍ଷୀଣ ଓ ମଳିନ ଦିଶୁଥିଲା । ସେ ବୁଟ୍‌ଜୋତା ପିନ୍ଧିଥିଲା ।

ସେ ଘର ଭିତରେ ପଶିଲାମାତ୍ରେ ସାମରିକ ପୋଷାକ ପରିହିତା ସ୍ତ୍ରୀଲୋକ ପାଖକୁ ଯାଇ ମୁଣ୍ଡ ନୁଆଁଇ କରମର୍ଦ୍ଦନ କଲା । ମହିଳା ଜଣକ ତାଙ୍କର ସ୍ତ୍ରୀ । ସେ ତାକୁ ରୁଷ ଭାଷାରେ କଅଣ କହିଲେ । ତାହା ଅନ୍ୟମାନେ ଶୁଣି ପାରିଲେ ନାହିଁ । ମୁହୂର୍ତ୍ତିକ ମଧ୍ୟରେ ତାଙ୍କର ଉଜ୍ଜ୍ୱଳ ଦୃଷ୍ଟି ଉଭେଇଗଲା । ଏହାପରେ ସେ ତାଙ୍କର ରକ୍ଷିତାର ଘନ କୃଷ୍ଣ ମସ୍ତକ ଏବଂ ପ୍ରେମାଳସ୍ୟ ଲାସ୍ୟ ଦେଖିଲାମାତ୍ରେ ପୁଣି ଉଜ୍ଜ୍ୱଳ ହୋଇ ଉଠିଲେ । ସେ କ୍ଷୁଦ୍ର ପଦକ୍ଷେପରେ ତା ପାଖକୁ ଯାଇ ମୁଣ୍ଡ ନୁଆଁଇ ଏପରି ଢଙ୍ଗରେ କରମର୍ଦ୍ଦନ କଲେ ଯେ ଲୋକେ ଭାବିଲେ ସେ ତାକୁ ବନ୍ଦନା କରୁଅଛନ୍ତି । ପ୍ରକୋଷ୍ଠର ସେ ମୁଣ୍ଡକୁ ଗଲାବେଳେ ତାଙ୍କ ସ୍ତ୍ରୀ ତାଙ୍କଆଡ଼କୁ ଚାହିଁ ନଥିଲା । ସେ ଜଣେ ସୁନ୍ଦର ସ୍ପେନ ଦେଶୀ ଅଫିସରଙ୍କ ସହିତ ରୁଷ ଭାଷାରେ କଥାବାର୍ତ୍ତା ହେଉଥିଲେ ।

କାରକୋଭ୍ ଉକ୍ତ ସ୍ତ୍ରୀଲୋକକୁ କହୁଥିଲା ଯେ ତା ସ୍ୱାମୀ ଟିକିଏ ମୋଟା ହୋଇ ଯାଉଛି । ଯୁଦ୍ଧର ୨ୟ ବର୍ଷ ନିକଟ ହେବାରୁ ଆମର ବୀରମାନେ ମୋଟା ହୋଇ ଯାଉଅଛନ୍ତି । ଯାହା ସମ୍ବନ୍ଧରେ ସେ କଥା କହୁଥିଲେ ତା ଆଡ଼କୁ ମୋଟେ ଚାହୁଁ ନଥିଲେ ।

ବାଳିକା ଜଣକ ପ୍ରଫୁଲ୍ଲ ଚିତ୍ତରେ ତାଙ୍କୁ କହିଲା "ତୁମେ ଏଡ଼େ କୁତ୍ସିତ ଯେ ବେଙ୍ଗ ସୁଦ୍ଧା ତୁମକୁ ଈର୍ଷା କରିବ । ସେ ଜର୍ମାନ ଭାଷାରେ କଥା କହୁଥିଲା । ପଗ୍ନରିଲା କାଲିକା ଅଭିଯାନରେ ମୋତେ ସାଙ୍ଗରେ ନେବ ?"

"ନାହିଁ । କାଲି କୌଣସି ଆକ୍ରମଣ କରାଯିବ ନାହିଁ ।"

ବାଳିକାଟି କହିଲା "ଏମିତ ରହସ୍ୟମୟ ହୁଅନାହିଁ । ସମସ୍ତେ ଏକଥା ଜାଣନ୍ତି । ଡୋଲର୍ସ ଯାଉଅଛି । ମୁଁ ତା ସଙ୍ଗେ କମ୍ବା କାର୍ମେନ ସଙ୍ଗେ ଯିବି । ଅନେକ ଲୋକ ଯାଉଛନ୍ତି ।"

କାର୍‌କୋଭ୍ କହିଲେ "ଯିଏ ତୋତେ ସଙ୍ଗରେ ନେବ ତା ସଙ୍ଗରେ ଯା, ମୁଁ କିନ୍ତୁ ତୋତେ ସଙ୍ଗରେ ନେବନାହିଁ ।" ଏହାପରେ ଗମ୍ଭୀର ଭାବରେ ବାଳିକାକୁ

ପଚାରିଲେ "ସତ କହିଲୁ କିଏ ତୋତେ ଏକଥା କହିଅଛି ?" ବାଳକା ରିଚାର୍ଡ଼ ନାମ କହିବାରୁ କାର୍‌କୋଭ୍‌ ମନେ ମନେ ରାଗି ଚାଲିଗଲେ ।

ଜଣେ ମଧ୍ୟମ ଉଚ୍ଚର ଦରବୁଢ଼ା ମୋଟା ବାତାଜୀର୍ଣ୍ଣ ରୋଗୀ ତାଙ୍କୁ ଡାକିଲା "କାର୍‌କୋଭ୍‌ ଭଲ ଖବରଟା ଶୁଣିଲଣି ?"

କାର୍‌କୋଭ୍‌ ତା ପାଖକୁ ଯାଆନ୍ତେ ସେ କହିଲା "ଏଇ ୧୦ ମିନିଟ ହେଲା ମୁଁ ଖବର ପାଇଅଛି । ଏହା ଅଦ୍ଭୁତ କଥା । ସାରାଦିନ ଫ୍ୟାସିଷ୍ଟମାନେ ନିଜ ଭିତରେ ସେଗୋଭିଆଠାରେ ଯୁଦ୍ଧ କରିଥିଲେ । ନିଜ ଦଳର ବିଦ୍ରୋହ ସେମାନେ ସ୍ୱୟଂକ୍ରିୟ ରାଇଫଲ୍ ଓ ମେସିନଗନ୍ ଚଳାଇ ବନ୍ଦ କରିଥିଲେ । ଦ୍ୱିପ୍ରହରକୁ ନିଜ ସୈନ୍ୟଙ୍କ ଉପରେ ସେମାନେ ଉଡ଼ାଜାହାଜରୁ ବୋମାବର୍ଷଣ କରିଥିଲେ ।"

"ସତେ ?" କାର୍‌କୋଭ୍‌ ପଚାରିଲେ ।

ମୋଟା ମଣିଷଟା କହିଲା "ହଁ ସତ କଥା । ଡୋଲୋରେସ୍ ନିଜେ ଖବରଟା ଆଣିଅଛି । ସେ ଏହି ଖବର ଦେଇ ନାହିଁ ନଥିବା ଆନନ୍ଦ ଉତ୍ଫୁଲ୍ଲ ହୋଇ ଉଠିଲା । ସୁ-ଖବରଟିର ସତ୍ୟତା ତା ମୁଖଜ୍ୟୋତିରୁ ଫୁଟି ଦିଶୁଥିଲା । ସେହି ମହାନ ମୁଖ—

କାର୍‌କୋଭ୍‌ ଶୁଷ୍କ କଣ୍ଠରେ କହିଲେ "ହଁ ସେହି ମହାନ୍ ମୁଖ—"

ମୋଟା ମଣିଷଟା କହିଲା "ତୁମେ ଯଦି ତା କଥା ଶୁଣିଥାନ୍ତ; ସମ୍ବାଦଟା ସ୍ୱତଃ ଏକ ଅପାର୍ଥିବ ଦ୍ୟୁତିରେ ତା ମୁହଁରୁ ବିଚ୍ଛୁରିତ ହେଉଥିଲା । ତାହାର କଣ୍ଠସ୍ୱରରୁ ସମ୍ବାଦର ସତ୍ୟତା ପ୍ରକାଶ ପାଉଥିଲା । ଏକଥା ମୁଁ "ଇଜ୍‌ଭେଷ୍ଟିଆ"ରେ ଗୋଟିଏ ପ୍ରବନ୍ଧରେ ପ୍ରକାଶ କରିବାକୁ ଯାଉଅଛି । ମୋ ପକ୍ଷରେ ଏହା ହେଉଛି ଯୁଦ୍ଧ ସମ୍ପର୍କୀୟ ସର୍ବପ୍ରଧାନ ଘଟଣା ମଧ୍ୟରୁ ଅନ୍ୟତମ । ସାଧୁସନ୍ଥଙ୍କ ମୁଖ ନିଃସୃତ ସତ୍ୟ ପରି ଏହି ସମ୍ବାଦ ତା ମୁହଁରୁ ଉଚ୍ଚାରିତ ହୋଇଥିଲା ।"

କାର୍‌କୋଭ୍‌ ମନକୁମନ କହିଲେ "ଏ ବିଷୟଟା ଇଜ୍‌ଭେଷ୍ଟିଆରେ ପ୍ରକାଶ କରିବାର ସାର୍ଥକତା ରହିଅଛି । ନେତୃତ୍ୱର ମହାନ୍ ଆଦର୍ଶ ଏଥିରେ ନିହିତ ।"

ମୋଟା ଲୋକଟା କହିଲା "ହଁ, ସେ ଯେ ଜଣେ ମହିଳା ଏହା ଶତ୍ରୁ ସୁଦ୍ଧା ଅସ୍ୱୀକାର କରିବେ ନାହିଁ । ତୁମେ ସେଠି ଥାଇ ତା ଚେହେରା ଦେଖିଥାନ୍ତ ଆଉ ତା ମୁହଁ କଥା ଶୁଣିଥାନ୍ତ କି ବୁଝିପାରନ୍ତ ।"

କାର୍‌କୋଭ୍‌ କହିଲେ "ତୁମେ ନିଜେ ଏ ବିଷୟ ଲେଖି ପକାଅ । ମୋ ସମ୍ବନ୍ଧରେ କିଛି ଲେଖିବ ନାହିଁ । ଯାଅ ବର୍ତ୍ତମାନ ଲେଖିପକାଅ ।"

"ନା ବର୍ତ୍ତମାନ ନୁହେଁ ।"

କାର୍‌କୋଭ୍‌ ତାଙ୍କୁ ଚାହିଁ କହିଲେ "ବର୍ତ୍ତମାନ ଲେଖିବା ଭଲ ।" ମୋଟା ମଣିଷ ଜଣକ ୨/୪ ମିନିଟ୍‌ ହାତରେ ମଦ ଗିଲାସ ଧରି ସମ୍ବାଦର ମହତ୍ତ୍ୱ ଏବଂ ଗୁରୁତ୍ୱ ଉପଲବ୍ଧି କରିବାକୁ ଲାଗିଲେ ଏବଂ ତତ୍ପରେ ଲେଖିବା ପାଇଁ ଚାଲିଗଲେ ।

କାର୍‌କୋଭ୍‌ ଆଉ ଜଣେ ଲୋକ ପାଖକୁ ଗଲେ । ସେ ଲୋକର ବୟସ ପ୍ରାୟ ୪୮ ବର୍ଷ, ଆକାର ଖର୍ବ, ଦେହ ଥଲଥଲିଆ, ଆଖି ମଳିନ ନୀଳ ଅଥଚ ହାସ୍ୟ-ମଧୁର । ମୁଣ୍ଡରେ ପତଳା କଳାବାଳ, ପ୍ରଫୁଲ୍ଲ ବଦନ ଏବଂ କହିବା ନିମ୍ନ । ସେ ସାମରିକ ପୋଷାକ ପିନ୍ଧିଥିଲେ । ସେ ହଙ୍ଗେରୀ ଦେଶର ଲୋକ ଏବଂ ଏକ ଇଣ୍ଟରନ୍ୟାସନାଲ୍‌ ସୈନ୍ୟ ଦଳର ସେନାପତି । କାର୍‌କୋଭ୍‌ ପଚାରିଲେ "ଇଣ୍ଟୋଲେରେସ୍‌ ଏଠାକୁ ଆସିଥିବାବେଳେ ତୁମେ ଏଠାରେ ଥିଲ କି ?"

'ହଁ ।'

"ଖବର କଅଣ ଆସିଥିଲା ?"

"ଫ୍ୟାସିଷ୍ଟ୍‌ମାନେ ନିଜ ଭିତରେ ଲଢୁଛନ୍ତି । ସତ୍ୟ ହେଲେ ଖୁବ୍‌ ଚମତ୍କାର ।"

"କାଲିକା କଥା ବେଶୀ ଶୁଣିଛ ?

"ଅତି ନିନ୍ଦନୀୟ କଥା । ସବୁ ସାମ୍ବାଦିକଙ୍କୁ ଗୁଳି କରିଦେବା ଉଚିତ । ତାଙ୍କ ସହିତ ଏହି ପ୍ରକୋଷ୍ଠରେ ଥିବା ଅଧିକାଂଶ ଲୋକଙ୍କୁ ମଧ୍ୟ ଏବଂ ନିଶ୍ଚିତ ଭାବରେ ଗର୍ଗୁଡ ନାମକ ସେହି ଜର୍ମାନଟାକୁ । ଯିଏ ସେହି ରବିବାରିଆ କାଗଜର ସମ୍ବାଦଦାତାକୁ ଏକ ବ୍ରିଗେଡ୍‌ର ସେନାପତି ପଦ ଦେଇଥିଲା ତାକୁ ମଧ୍ୟ ମାରିଦେବା ଉଚିତ । ଆମ ଦୁହିଙ୍କୁ ମଧ୍ୟ ମାରିଦେବା ଉଚିତ ।" ସେନାପତି ହସି ପକାଇ କହିଲେ "ହଁ, ଏହା ସମ୍ଭବ କିନ୍ତୁ ଏକଥା ସୂଚନା ଦେବା ଠିକ୍‌ ନୁହେଁ ।"

କାର୍‌କୋଭ୍‌ କହିଲେ "ଏ ବିଷୟ ମୁଁ ଆଦୌ ଚର୍ଚ୍ଚା କରିବାକୁ ଇଚ୍ଛୁକ ନୁହେଁ । ସେ ଯେଉଁ ମାର୍କିନ ଲୋକ ଜଣକ ବେଳେବେଳେ ଆସିଥାଏ ସେ ସେଠାରେ ଅଛି । ତା ନାମ ହେଉଛି ଜର୍ଡାନ୍‌ । ସେ ଆମ ପକ୍ଷପାତୀ ଦଳ ମେଳରେ ଅଛି । ଏଠି ଯେଉଁ ବିଷୟ ଏମାନେ କହୁଛନ୍ତି ସେହି ସ୍ଥାନରେ ସେ ଲୋକଜଣକ ଅଛି ।"

ସେନାପତି କହିଲେ "ତେବେ ତ ସେ ଆଜି ରାତିଭିତରେ ସେ ସମ୍ବନ୍ଧରେ ନିଶ୍ଚୟ ଖବର ପଠାଇବ । ସେଠାର ଲୋକେ ମୋତେ ଭଲ ପାଆନ୍ତି ନାହିଁ ନଚେତ୍ ମୁଁ ନିଜେ ସେଠାକୁ ଯାଇ ଖବରଟାର ସତ୍ୟାସତ୍ୟ ବୁଝି ନଅନ୍ତି । ସେ ଗୋଲ୍ଜିଙ୍କ ଅଧୀନରେ କାମ କରୁଅଛୁ । ନୁହେଁ କି ? ତୁମେ କାଲି ଗୋଲ୍ଜି ସଙ୍ଗେ ଦେଖା କରିବ ।"

'କାଲି ବଡ଼ିସକାଳୁ ।'

ସେନାପତି କହିଲେ 'ଅବସ୍ଥା ଭଲଭାବରେ ନ ବୁଝିବାଯାଏ ତୁମେ ତାଙ୍କ ଆଗକୁ ଯିବନାହିଁ । ସେ ତୁମ୍ଭମାନଙ୍କୁ ମୋଠାରେ ଘୃଣା କରନ୍ତି । ଅବଶ୍ୟ ତାଙ୍କର ପ୍ରକୃତି ମୋପରି ଚଡ଼ାଲ୍ ନୁହେଁ ।'

'କିନ୍ତୁ ଏ ସମ୍ବନ୍ଧରେ—'

ସେନାପତି କହିଲେ 'ଏଟା ଖୁବ୍ ସମ୍ଭବ ଫ୍ୟାସିଷ୍ଟ୍‌ମାନଙ୍କର ଗୋଟାଏ କୌଶଳ । ହିଉ ଆମେ ଦେଖିବା ଗୋଲ୍ଜିକ୍ ତାଙ୍କୁ କିଛି ପାଲଟା ଫାନ୍ଦରେ ପକାଉଛନ୍ତି କି ନାହିଁ । ଗୋଲ୍‌ଜିଙ୍କର ସେପରି ଚେଷ୍ଟା କରିବା ଉଚିତ । ଆମେ ତ ପୁଣି ଗୁଆଡାଲଜାରାଠାରେ ଏମିତି କରିଥିଲୁ ।'

କାର୍‌କୋଭ୍ କହିଲେ 'ମୁଁ ଶୁଣିଲି ତୁମେ ମଧ୍ୟ କୁଆଡ଼େ ଯିବାକୁ ବାହାରିଛ ?' ହଠାତ୍ ସେନାପତି ରାଗିଗଲେ ।

'ମୋ କଥା ଉଠିଲାଣି । ଆମର ଅନ୍ୟଙ୍କ ସମ୍ବନ୍ଧରେ ମଧ୍ୟ ସେହି କଥା । ଏହି ସବୁ କୁତ୍ସିତ ଗୁଜବ ହେଉଛି ବହୁ ଅନର୍ଥର ମୂଳ । ଜଣେ ଲୋକ ଯଦି ନିଜ ମୁହଁ ବନ୍ଦକରି ରଖିବ ତେବେ ଦେଶର ବହୁ କଲ୍ୟାଣ ଘଟାଇବ ।'

'ତୁମ ବନ୍ଧୁ ପ୍ରିଟୋ ନିଜ ମୁହଁ ବନ୍ଦ ରଖିପାରେ ।'

"କିନ୍ତୁ ଯୁଦ୍ଧ ଜିଣିବ ବୋଲି ତାହାର ବିଶ୍ୱାସ ନାହିଁ । ଲୋକଙ୍କ ଉପରେ ବିଶ୍ୱାସ ନରଖିଲେ ଯୁଦ୍ଧ ଜିଣିବ କିପରି ?'

କାର୍‌କୋଭ୍ କହିଲେ "ମୁଁ ଶୋଇବାକୁ ଯାଉଅଛି । ସେକଥା ତୁମେ ଫଏସଲା କର ।"

ସେ ସେହି ଧୂଆଁ ଭରା, ଗୁଜବ ମୁଖରିତ ପ୍ରକୋଷ୍ଠରୁ ପଛପଟ ଶୋଇବାକକ୍ଷକୁ ଯାଇ ବିଛଣାରେ ବସି ବୁଟ୍ କୁତା ଫିଟାଇ ଦେଲେ । ଏମାନଙ୍କର କଥାବାର୍ତ୍ତା ଶୁଭୁଥିବାରୁ ସେ କବାଟ ବନ୍ଦ କରି ଝିଡ଼କି ଫିଟାଇଲେ । ସେ ପୋଷାକ ଫିଟାଇଲେ ନାହିଁ କାରଣ ରାତି ଦୁଇଟାବେଳେ ତାଙ୍କୁ କୋଲମିନାର, ସର୍‌ସେଡା, ନାଭସେରାଡା ଦେଇ ଗୋଲ୍ଜି ଆକ୍ରମଣ ପାଇଁ ପ୍ରସ୍ତୁତ କରିଥିବା ରଣକ୍ଷେତ୍ରଯାଏ ଯିବାକୁ ପଡ଼ିବ ।

## ତ୍ରୟୋତ୍ରିଂଶ ପରିଚ୍ଛେଦ

ରାତି ଦୁଇଟାବେଳେ ପିଲାର୍ ତାଙ୍କୁ ଜଗାଇଲା । ପିଲାର୍ ହାତ ତାଙ୍କ ଦେହରେ ବାଜିବାରୁ ସେ ପ୍ରଥମେ ମନେକଲେ ମେରିଆ ହାତ ଏଣୁକରି ସେ ତା ଆଡ଼କୁ ଗଡ଼ିଯାଇ ଆଦର କରିବାକୁ ଲାଗିଲେ । ଏହାପରେ ବଡ଼ ବଡ଼ ହାତ ତାଙ୍କୁ ହଲାଇବାରୁ ହଠାତ୍ ତାଙ୍କର ନିଦ ସମ୍ପୂର୍ଣ୍ଣରୂପେ ଛାଡ଼ିଗଲା । ସେ ତାଙ୍କର ଡାହାଣ ଗୋଡ଼ପାଖରେ ଥିବା ପିସ୍ତଲର ମୁଠା ଧରିନେଲେ ।

ଅନ୍ଧାରରେ ସେ ପିଲାର୍‌କୁ ଦେଖିପାରି ନିଜ ହାତଘଣ୍ଟାର କଣ୍ଟା ଆଡ଼କୁ ଚାହିଁଲେ । ବୁଝିପାରିଲେ ଯେ ରାତି ଦୁଇଟା । ତହୁଁ କହିଲେ "କଣ୍ଣେ, କଥା କଅଣ ?"

ପିଲାର୍ ଜବାବ ଦେଲା "ପାବ୍‌ଲୋ ଚାଲିଯାଇଛି ।"

ରବର୍ଟ ଜର୍ଡାନ୍ ନିଜର ପାଇଜାମା ଓ ଜୋତା ପିନ୍ଧିନେଲେ । ମେରିଆର ନିଦ ଭାଙ୍ଗି ନଥାଏ । ପଚାରିଲେ "କେତେବେଳେ ଗଲା ?"

"ପ୍ରାୟ ଘଣ୍ଟାଏ ହେବ । ସେ ତୁମର କିଛି ଜିନିଷ ମଧ୍ୟ ନେଇ ଯାଇଅଛି ।"

"କଅଣ ?"

"ମୁଁ କହି ପାରିବି ନାହିଁ । ଚାଲ ଦେଖିବ ।"

ଅନ୍ଧାରରେ ସେମାନେ ଗୁହା ମୁହଁକୁ ଗଲେ ଏବଂ କମ୍ବଳ ଟେକି ଭିତରେ ପଶିଲେ । ନିଜର ଟିପା ବତି ଜଳାଇ ରବର୍ଟ ଜର୍ଡାନ୍ ଶୋଇବା ଲୋକଙ୍କୁ ଡେଇଁ

ଗଲେ । ଗୁହା ଭିତରଟା ପାଉଁଶ, ପ୍ରଶ୍ୱାସପବନ ଏବଂ ଲୋକମାନଙ୍କର ଦେହ ଗନ୍ଧରେ ଭରି ଯାଇଥାଏ । ଅନ୍‌ସେଲ୍‌ମୋ ଜାଗ୍ରତ ହୋଇ ପଚାରିଲେ 'ସମସ୍ତ ହେଲାଣି କି ?'

ରବର୍ଟ ଜର୍ଡାନ୍ ଫୁସ୍‌ଫୁସ୍ କରି ଜବାବ ଦେଲେ 'ଶୋଇରହ ବୁଢ଼ା ।'

ବସ୍ତା ଦୁଇଟା ପିଲାର୍ ବିଛଣାର ମୁଣ୍ଡପାଖରେ ଥିଲା । ଖଣ୍ଡିଏ ପରଦା ଟଙ୍ଗାଇ ତାହାକୁ ଗୁହାଠାରୁ ପୃଥକ କରାଯାଇଥିଲା । ବିଛଣାଟା ଝାଳ ଗନ୍ଧରେ ପୂର୍ଣ୍ଣ । ରବର୍ଟ ଜର୍ଡାନ୍ ଆଣ୍ଠେଇପଡ଼ି ଟିପାବତୀ ସାହାଯ୍ୟରେ ଦୁଇଟି ବସ୍ତାକୁ ଦେଖିଲେ । ଦୁଇଟିଯାକ ଏ ମୁଣ୍ଡରୁ ସେମୁଣ୍ଡଯାଏ କଟା ହୋଇଅଛି । ବାମ ହସ୍ତରେ ଟିପାବତୀ ଧରି ସେ ଡାହାଣ ହାତରେ ବସ୍ତା ଭିତର ଅଣ୍ଡାଳିଲେ । ଏହି ବସ୍ତାଟାରେ ସେ ଲୁଗାପଟା ରଖନ୍ତି ବୋଲି ଏହା ପୂର୍ଣ୍ଣ ହୋଇ ନଥାଏ । ବସ୍ତାରେ ମେଞ୍ଚାଏ ତାର ଥିବା ସେ ବୁଝିଲେ କିନ୍ତୁ ବିସ୍ଫୋରକର କାଠ ଡବାଟି ସେଥିରୁ ହରଣଚୋରି ହୋଇ ଯାଇଥାଏ । ଯେଉଁ ସିଗାର୍ ବାକ୍‌ରେ ଉତ୍ତେଜକ ଆଦି ରଖିଥିଲେ ସେଟି ମଧ୍ୟ ଗାଏବ୍ । ଏହାଛଡ଼ା କାରତୋସ୍ ଟୋପି ଏବଂ ପେଚଠିପି ମଧ୍ୟ ଅନ୍ତର୍ହିତ ।

ରବର୍ଟ ଜର୍ଡାନ୍ ଅନ୍ୟ ବସ୍ତାଟି ଦେଖି ବୁଝିଲେ ଯେ ସେଥିରେ ବିସ୍ଫୋରକ ପୂରି ରହିଛି । ହୁଏତ ଗୋଟାଏ ବାକ୍‌ସ ଊଣା ପଡ଼ିବ । ସେ ଠିଆ ହୋଇ ପିଲାର୍‌କୁ ଚାହିଁଲେ । ହଠାତ୍ ବଡ ଅଧରେ ନିଦ ଭାଙ୍ଗିଗଲେ ମଣିଷ ମନରେ ଗୋଟାଏ ପ୍ରକାର ଉଦାସଭାବ ଜାଗ୍ରତ ହୋଇଥାଏ । ସେ ଭାବଟା ଏକପ୍ରକାର ବିପଦର ଅନୁଭୂତ ପରି ।

ରବର୍ଟ ଜର୍ଡାନ୍‌ଙ୍କ ମନରେ ଏହି ଦୁଶ୍ଚିନ୍ତା ସହସ୍ରଗୁଣ ବେଶୀ ପରିମାଣରେ ଦେଖାଗଲା । ସେ କହିଲେ 'ଏହି ହେଲା ତୋର ଜିନିସ ଜାଗ୍ରତରେ ରଖିବା କାମ ?'

'ମୁଁ ତ ମୋ ମୁଣ୍ଡ ବସ୍ତା ଦେହରେ ଲଗାଇ ଶୋଇଥିଲି ଏବଂ ଗୋଟାଏ ହାତ ବସ୍ତା ଉପରେ ରଖିଥିଲି ।' ପିଲାର୍ କହିଲା ।

'ତୁ କଅଣ ଏତେ ଗାଢ଼ ନିଦରେ ଶୋଇଥିଲୁ ?'

ପିଲାର୍ କହିଲା 'ଆଗେ ମୋ କଥା ଶୁଣିସାର । ସେ ରାତିରେ ଉଠିବାରୁ ମୁଁ ପଚାରିଲେ କୁଆଡ଼େ ଯାଉଛୁ ପାବ୍‌ଲୋ ? ମୁତିବାକୁ ଯାଉଛି କହିବାରୁ ମୁଁ ଶୋଇ ପଡ଼ିଲି । ପୁଣି ଯେତେବେଳେ ମୋ ନିଦ ଭାଙ୍ଗିଲା ଦେଖିଲି ସେ ନାହିଁ । ମୁଁ ଭାବିଲି ହୁଏତ ସେ ଘୋଡ଼ାକୁ ଦେଖିବାକୁ ଯାଇଅଛି କାରଣ ଏହାହିଁ ଥିଲା ତାହାର ଅଭ୍ୟାସ । ଏହାପରେ ସେ ଯେତେ ନଫେରିଲା ମୁଁ ବିବ୍ରତବୋଧ କରି ବସ୍ତା ଠିକ୍ ଅଛି କି ନାହିଁ

ଦେଖିବାକୁ ଅଣ୍ଡାଳିଲି । ଦେଖିଲି ବସ୍ତା ଦୁଇଟା ଚାଲିଯାଇଛି । ତେଣୁ ତୁମ ପାଖକୁ ଆସିଲି । ପ୍ରକୃତରେ ସେ କେତେବେଳେ ଗଲା ମୁଁ କହିପାରିବ ନାହିଁ ।’

ରବର୍ଟ ଜର୍ଡ଼ାନ୍ କହିଲେ ‘ହଉ ଚାଲ ।’ ଦୁହେଁ ବାହାରକୁ ଆସିଲେ । ରାତି ପାହିବାକୁ ବହୁତ ଡେରିଥାଏ । ପଚାରିଲେ ‘ସନ୍ତ୍ରୀଙ୍କ ଆଗ ଦେଇ ନଯାଇ ଘୋଡ଼ା ନେଇ ଯିବାକୁ ଅନ୍ୟ ବାଟ ଅଛି କି ?’

‘ଦୁଇଟା ବାଟ ଅଛି ।’

‘ଉପର ମୁଣ୍ଡରେ କିଏ ପହରା ଦେଉଛି ?’

‘ଏଲାଡ଼ିଓ ।’

ରବର୍ଟ ଜର୍ଡ଼ାନ୍ ଆଉ କିଛି ନକହି ଘୋଡ଼ାଙ୍କ ଦାନା ଖାଇବା ପଡ଼ିଆକୁ ଗଲେ । ତିନିଟା ଘୋଡ଼ା ପଡ଼ିଆରେ ଖାଉଥିଲେ । ବଡ଼ କସରା ଘୋଡ଼ା ଏବଂ ଧୂସରିଆ ଘୋଡ଼ା ଦୁଇଟାଯାକ ନାହାନ୍ତି ।

‘ତୋ ପାଖରୁ ଯିବାର କେତେ ସମୟ ହେବ ?’

‘ପ୍ରାୟ ଏକଘଣ୍ଟା ।’

ରବର୍ଟ ଜର୍ଡ଼ାନ୍ କହିଲେ ‘ତେବେ ଯାହା ଭାବିଥିଲି ସେଇଆ । ବସ୍ତାରେ ଆଉ ଅଛି, ମୁଁ ତାକୁ ନେଇଆସେ । ତା ପରେ ଶୋଇବି ।’

‘ମୁଁ ତାକୁ ଜଗିବି ।’

‘ତୁ ଖୁବ୍ ଭଲ ଜଗିଥିଲୁ । ଆଉ କଅଣ ଜଗିବୁ ?’

ପିଲାର୍ କହିଲା ‘ଇଂରେଜ, ମୋ ମନୋଭାବ ଅବିକଳ ତୁମ ପରି ହେଉ ଅଛି । ତୁମ ପଦାର୍ଥ ତୁମକୁ ଫେରାଇ ଦେବାପାଇଁ ମୁଁ ସବୁକିଛି କରିବାକୁ ପ୍ରସ୍ତୁତ । ମୋତେ ଦୋଷ ଦେଇ ଲାଭ ନାହିଁ । ପାବ୍ଲୋ ଆମ ଦୁହିଙ୍କ ସଙ୍ଗେ ବିଶ୍ୱାସଘାତକତା କରିଅଛି ।’

ପିଲାର୍ ମୁହଁରୁ ଏକଥା ଶୁଣି ରବର୍ଟ ଜର୍ଡ଼ାନ୍ ବୁଝିପାରିଲେ ଯେ ପିଲାର୍ ଉପରେ ରାଗିବାଟା ଠିକ୍ ହେବ ନାହିଁ । ତାଙ୍କୁ ତାହା ସହିତ ମିଶି ବହୁତ କାମ

କରିବାକୁ ଅଛି । ଆଜି ମଧ୍ୟ ଅନେକ କାମ କରିବାକୁ ହେବ । ସେ ପିଲାର୍‌ କାନ୍ଧରେ ହାତ ଦେଇ କହିଲେ 'ହଉ କିଛି ପରବା ନାହିଁ । ଯାହା ଯାଇଛି ତାହା ସେପରି ବଡ଼ ଚିଜ ନୁହେ । ଆମେ ନିଜେ ସେତିକ ହାତେ ହାତେ ତିଆରି କରି କାମ ଚୁଲାଇ ନେବୁ ।'

'କିନ୍ତୁ ସେ କଅଣ ନେଇ ଯାଇଅଛି ?'

'ସେଟା କିଛି ନୁହେ । ସେ ଯାହା ନେଇଛି ସେତିକ ନଥିଲେ ମଧ୍ୟ କାମ ଅଟକିବ ନାହିଁ ।'

'ବିସ୍ଫୋରଣ ଘଟାଇବାର କୌଣସି କଲ କବ୍‌ଜା ନେଇଅଛି କି ?'

'ହଁ । କିନ୍ତୁ ବିସ୍ଫୋରଣ କରିବା ପାଇଁ ଅନ୍ୟ ଉପାୟ ମଧ୍ୟ ଅଛି । ଆଚ୍ଛା କହିଲୁ ଦେଖି, ପାବ୍‌ଲୋ ପାଖରେ ରକ୍ଷକ ଓ ଟୋପି ଥିଲା କି ନାହିଁ । ସେମାନେ ତ ତାକୁ ସେ ଜିନିଷ ନିଶ୍ଚୟ ଯୋଗାଇଥିବେ ?'

ପିଲାର୍‌ ଅତି ବିକଳଭାବରେ କହିଲା 'ତାହା ମଧ୍ୟ ସେ ନେଇ ଯାଇଅଛି । ମୁଁ ଯାଙ୍କେ ଯାଙ୍କେ ସେ ଜିନିଷ ସନ୍ଧାନ ନେଇଥିଲି । ତାହା ନାହିଁ ।'

ବଣଭିତରେ ଦେଇ ସେମାନେ ଗୁହା ମୁହଁକୁ ଫେରି ଆସିଲେ ।

ରବର୍ଟ ଜର୍ଡାନ୍‌ କହିଲେ 'ଯା ଶୋଇବୁ । ପାବ୍‌ଲୋ ଯିବାଦ୍ୱାରା ଆମର ଭଲ ହେଲା ।'

'ମୁଁ ଯାଉଛି ଏଲାଡ଼ିଓଙ୍କୁ ଦେଖି ଆସିବ ।'

"ସେ ଅନ୍ୟ ବାଟ ଦେଇ ଯାଇଥିବ ।'

"ସେ ଯାହାହେଉ ମୁଁ ଯିବ । ମୁଁ ତୁମ ବିଶ୍ୱାସ ଭଙ୍ଗ କରିଅଛି । ନିଜେ ଅସତର୍କ ହୋଇ ଏହା କଲିସିନା ।"

ସେ କହିଲେ "ନା, ଯିବାର ଦରକାର ନାହିଁ । ଯା, ଶୋଇବୁ । ରାତି ୪ଟା ବେଳେ ଆମକୁ ବାହାରିବାକୁ ହେବ । ସେ ପିଲର୍‌ ସହିତ ଗୁହା ଭିତରକୁ ଯାଇ ବସ୍ତା ଦୁଇଟା ନେଇ ଆସିଲେ । ଦୁଇଟାଯାକ ଏକାଠି ଧରି ଆଣିଲେ ଯେପରି କିଛି ବସ୍ତୁ ଝସି ନପଡ଼େ ।"

ପିଲାର୍ କହିଲା "ମୁଁ କଣ୍ଟା ଜାଗା ସିଲାଇ କରି ଦେଉଛି ।"

ସେ କହିଲେ "ତୋତେ ସନ୍ଦେହ କରି ମୁଁ ତାକୁ ନେଇ ଯାଉନାହିଁ । କିନ୍ତୁ ନେଉଛି ମୁଁ ବିଷ୍ଟ୍ରିରେ ଶୋଇ ପାରିବ ବୋଲି । ତୁ ଯିବା ପୂର୍ବରୁ ସିଲାଇ କରିଦେବୁ ।"

"ସିଲାଇ କରିବାକୁ ହେଲେ ବଡ଼ିସକାଳୁ ମୋତେ ଦେବ ।"

"ହଁ ବଡ଼ିସକାଳୁ ଦେବ । ଯା ଶୋଇପଡ଼ ।"

"ପିଲାର୍ କହିଲା "ନା, ମୁଁ ତୁମ ପାଖରେ ଓ ଗଣତନ୍ତ୍ର ପାଖରେ ଦ୍ରୋହ କରିଅଛି ।"

ରବର୍ଟ ଜର୍ଡାନ୍ କୋମଳ ଭାବରେ କହିଲେ "ହଉ ଯା, ଶୋଇପଡ଼ ।"

# ଚତୁର୍ତ୍ରିଂଶ ପରିଚ୍ଛେଦ

ଏଠା ପାହାଡ଼ ଚୂଡ଼ାଟା ଫ୍ୟାସିଷ୍ଟ୍‌ଙ୍କ ଦଖଲରେ । ପାହାଡ଼ତଳ ଉପତ୍ୟକାଟା କେଉଁ ପକ୍ଷର ଅଧୀନରେ ନଥାଏ । କେବଳ ଗୋଟାଏ ଗୋଲାଘର ଓ ଅମଳ ସ୍ଥାନରେ ଫ୍ୟାସିଷ୍ଟ୍‌ମାନେ ଜଗୁଆଳୀ ଘାଟି ସ୍ଥାପନ କରିଥାଆନ୍ତି । ରବର୍ଟ ଜର୍ଡ଼ାନଠାରୁ ସମ୍ବାଦ ନେଇ ଆଣ୍ଡ୍ରିସ୍ ଗୋଲ୍‌ଜଙ୍କ ପାଖକୁ ଗଲାବେଳେ ଏହି ଘାଟିଘର ଏଡ଼ିବା ପାଇଁ ବହୁତ ବୁଲି କରି ଯାଇଥିଲା । ଷ୍ଟେନ୍‌ଗନ୍ ଫୁଟାଇବା ପାଇଁ କେଉଁ ଜାଗାରେ ତାରଁ ବନ୍ଧାଥାଏ ସେ ଜାଗା କଥା ଆଣ୍ଡ୍ରିସ୍ ଅନ୍ଧାରରେ ଜାଣିପାରି ତାକୁ ଡେଇଁଗଲା । ସେ ପାର୍ବତ୍ୟ ନଦୀ କଡ଼େ କଡ଼େ ବଣଭିତରେ ଲୁଚି ଲୁଚି ଗଲା । ଗଛର ପତ୍ର ସବୁ ପବନରେ ମର୍ମର ଶବ୍ଦ କରୁଥାଏ । ଫ୍ୟାସିଷ୍ଟ୍‌ମାନଙ୍କ ଘାଟିଘରୁ କୁକୁଡ଼ାଟାଏ ଥରେ ବୋବାଇଲା । ଯାଉଁ ଯାଉଁ ବୃକ୍ଷପତ୍ର ସେ ଗଛ ଫାଙ୍କରେ ଖୋଲା ଘରଭିତରୁ ଗୋଟିଏ ଆଲୁଅ ଦେଖିପାରିଲା । ରାତିଟା ଥିଲା ନିର୍ମଳ ଓ ନିଥର । ଆଣ୍ଡ୍ରିସ୍ ନଦୀକୂଳ ଛାଡ଼ି ପଡ଼ିଆ ମଝିକୁ ଚାଲିଗଲା ।

ଗତ ବର୍ଷ ଜୁଲାଇ ମାସରେ ଲଢ଼େଇ ଆରମ୍ଭ ହେଲା ଦିନଠାରୁ ୪ ଗୋଟି ନଡ଼ାଗଦା ସେ ପଡ଼ିଆରେ ରହିଥିଲା । କେହି ସେଠାରୁ ନଡ଼ା କାଢ଼ି ନେଇ ନାହାନ୍ତି । ଯେଉଁ ୪ ଗୋଟି ଋତୁ ବିତିଯାଇଛି ସେଥିରେ ନଡ଼ା ସବୁ ମଡ଼ିଯାଇ ଥାଏ । ଅବ୍ୟବହାର୍ଯ୍ୟ ଦୁଇଟା ଗଦା ଭିତରେ ଲମ୍ବି ଥିବା ଖଣ୍ଡିଏ ତାର ଟପିଲି ଆଣ୍ଡ୍ରିସ୍ ଏପରି ନଡ଼ା ନଷ୍ଟ ହେବା କଥାରେ ଦୁଃଖିତ ହେଲା । ଗଣତନ୍ତ୍ରବାଦୀମାନଙ୍କୁ ଏହି ନଡ଼ା ଶୀଘ୍ର ଗୁଆଡାରାମା ଉପର ଦେଇ ବହି ନେବାକୁ ପଡ଼ିବ । ଏହା ପଡ଼ିଆର ଶେଷରୁ ଆରମ୍ଭ । ସେ ଭାବିଲା ଯେ ଫ୍ୟାସିଷ୍ଟ୍‌ମାନଙ୍କର ବୋଧହୁଏ ନଡ଼ା ଦରକାର ନାହିଁ ।

ସେମାନଙ୍କର ଯେତେ ନଡ଼ା ଓ ଶସ୍ୟ ପର୍ଯ୍ୟନ୍ତ ଅଛି । କିନ୍ତୁ କାଲି ଆମେ ତାଙ୍କୁ ବଡ଼ରକମ ଆଘାତ ଦେବା । କାଲି ସକାଳେ ଆମେ ତାଙ୍କଠାରୁ ସୋର୍ଡ୍ରୋର ପ୍ରତିଶୋଧ ନେବା । କି ବର୍ବର ସେମାନେ । କିନ୍ତୁ କାଲି ସକାଳେ ରାସ୍ତାରେ ରହିବ ଧୂଳି ।

ସେ ଏହି ସମ୍ବାଦଟା କପର ଶୀଘ୍ର ପହଞ୍ଚାଇ ବେଳ ଥାଉଁ ଫେରି ସକାଳର ଆକ୍ରମଣରେ ଯୋଗ ଦେଇପାରିବ ସେଥିପାଇଁ ବଡ଼ ଉଦ୍‌ଗ୍ରୀବ । ସେ କଅଣ ସତକୁ ସତ ଶୀଘ୍ର ଫେରିବାକୁ ବ୍ୟଗ୍ର କିମ୍ବା ଏଟା ତାହାର ଉମର ଠାଉରିଆ କଥା ? ଇଂରେଜ ଯେତେବେଳେ ତାକୁ ସମ୍ବାଦ ନେଇ ଯିବାକୁ କହିଲେ ସେତେବେଳେ ତା ମନରେ ଯେଉଁ ସ୍ଫୂର୍ତ୍ତି ଜାତ ହୋଇଥିଲା ସେ କଥା ମନେ କଲା । ସେ ସକାଳ ଅବସ୍ଥାର ସମ୍ମୁଖୀନ ହେବାକୁ ପ୍ରଶାନ୍ତ ଚିତ୍ତରେ ଗ୍ରହଣ କରିଥିଲା । ତାହାହିଁ ଏକମାତ୍ର କର୍ତ୍ତବ୍ୟ କର୍ମ । ଏ କାମ ସପକ୍ଷରେ ସେ ମତ ଦେଇଥିଲା ଏବଂ ତାହା କରିବାକୁ ପ୍ରସ୍ତୁତ । ସୋର୍ଡ୍ରୋକୁ ନଷ୍ଟ ଭ୍ରଷ୍ଟ କରିବା ଘଟଣା ତା ମନରେ ଗଭୀର ରେଖାପାତ କରିଥାଏ । ମୋଟ ଉପରେ ଯାହା ଘଟିଛି ତାହା ସୋର୍ଡ୍ରୋ ଉପରେ ଘଟିଛି, ତାଙ୍କ ଉପରେ ନୁହେଁ । ତାଙ୍କର ଯାହା କରିବା କଥା ସେମାନେ କରିବେ ।

ପିଲାଦିନେ ମେଳାରେ ଷଣ୍ଢ ଲଢ଼େଇ ଦେଖିବାକୁ ସକ୍‌ସକ୍ ହେଉଥିଲାବେଳେ କେହି ଯେବେ କହି ଉଠେ ଯେ ବର୍ଷାଯୋଗୁଁ ଷଣ୍ଢ ଲଢ଼େଇ ଆଉ ହୋଇ ପାରିବ ନାହିଁ ସେତେବେଳେ ତା ମନଟା ବଡ଼ ଖରାପ ହୋଇ ଯାଉଥିଲା । ଇଂରେଜ, ଆଜି ତାକୁ ଖବର ନେଇଯିବାକୁ କହନ୍ତେ ତା ମନ ଠିକ୍ ସେପରି ହୋଇଗଲା ।

ପିଲାଦିନେ ଷଣ୍ଢ ଲଢ଼େଇ ଦେଖିବାକୁ ସେ ଖୁବ୍ ଭଲ ପାଉଥିଲା ଏବଂ ସେହି ଦିନକୁ ଚାହିଁ ରହୁଥିଲା । କେତେବେଳେ ଲଢ଼େଇ ଜାଗାରେ ପହଞ୍ଚିବ ସେହି ଭାବନାରେ ବିଭୋର ହୋଇ ଉଠୁଥିଲା । ଟାଣୁଆ ଖରାରେ ରାସ୍ତା ଧୂଳିରେ ଭରିଯିବ । ଗାଈଗୋରୁ ଶଗଡ଼ଗାଡ଼ି ସବୁ ଲଢ଼େଇ ପଡ଼ିଆର ଚାରିଆଡ଼େ ଘେରି ରହିବେ । ସେହି ଘେର ଜାଗାକୁ ଯନ୍ତ୍ରା କବାଟ ଖସାଇ ଦେଲେ ଷଣ୍ଢ ପଶିବ । ଆନନ୍ଦ, ଉତ୍ସାହ ଉତ୍ତେଜନା ଏବଂ ଭୟରେ ଘର୍ମାକ୍ତ ହୋଇ ସେ ସେହି ମୁହୂର୍ତ୍ତକୁ ଅପେକ୍ଷା କରିଥାଏ । ତା କାନରେ ଶୁଭୁଥାଏ ସତେ ଯେମିତି ଷଣ୍ଢର ସିଙ୍ଗ ଯନ୍ତ୍ରାର ପଟାରେ ଠକ୍ ଠକ୍ ପିଟି ହେଉଛି । ଏହାପରେ ଚାରିଗୋଡ଼ ଗୁଡ଼ି ଲଢ଼େଇ ପଡ଼ିଆରେ ପଶି ନାକ ଫୁଲାଇବା, କାନ ହଲାଇବା, ଖୁରାରେ ମାଟି ତାଡ଼ିବା ଓ ନିଜ ଦେହରେ ଧୂଳି ବୋଳିହେବା, ଆଖି ତରାଟି ଚାହିଁବା ଇତ୍ୟାଦି ଦୃଶ୍ୟ ସେ ମନେ ମନେ କଳ୍ପନା କରୁଥିଲା । ବାଲିରେ ଘସି ଘସି ଷଣ୍ଢର ସିଙ୍ଗ ଚକ୍‌ଚକ୍ ଓ ମୁନିଆ ହୋଇ ଯାଇଥିବ ।

ବର୍ଷର ଏହି ଦିନଟି ସେ ଅତି ଆଗ୍ରହରେ ଅପେକ୍ଷା କରିଥାଏ । ଷଣ୍ଢ ଲଢ଼େଇ ପଡ଼ିଆକୁ ଆସି ଗୁରିଆଡ଼େ ଗୁହିଁ ମୁଣ୍ଡ ତଳକୁ ପୋତି କାହାକୁ ସେ ପ୍ରଥମ ଆକ୍ରମଣ କରିବା ପାଇଁ ଧାଇଁବ ଏବଂ ଏ ଦୃଶ୍ୟରେ ଗ୍ରୁନିଆରେ ଛାତି ଦୁକୁଦୁକୁ ଥମି ଯାଉଥିଲା । ପିଲାଦିନେ ସାରା ବର୍ଷ ସେ ଏହି ଗୋଟିଏ ଦିନକୁ ଗୁହିଁ ବସୁଥିଲା । କିନ୍ତୁ ଏତେ ହେଲେ ମଧ୍ୟ ହଠାତ୍ ପାଣି କାଦୁଅ ପାଇଁ ଷଣ୍ଢ ଲଢ଼େଇ ବନ୍ଦ ହେବା ସମ୍ବାଦରେ ତା ମନ ଯେପରି ହେଉଥିଲା ଆଜି ଇଂରେଜ ତାକୁ ସମ୍ବାଦ ଦେଇ ପଠାଇବାରୁ ସେହିପରି ହତାଶ ହୋଇ ଉଠିଥିଲା ।

ସେ ନିଜ ଗ୍ରାମରେ ଏବଂ ପାଖ ଗ୍ରାମରେ ଷଣ୍ଢ ଆଗରେ ଖୁବ ସାହସ ଦେଖାଉଥିଲା ଏବଂ କୌଣସି କାରଣରୁ ଷଣ୍ଢ ଲଢ଼େଇ ଦେଖିବାରୁ କ୍ଷାନ୍ତ ହେଉ ନଥିଲା । ସେ ଚୁପ୍‌ଚାପ ଅପେକ୍ଷା କରି ବସି ରହୁଥିଲା ଏବଂ ଷଣ୍ଢ ଯେତେବେଳେ ଆକ୍ରମଣ କରିବାକୁ ଧାଉଁଥିଲା ସେତେବେଳେ ଗୋଟାଏ ପାଖକୁ କୁଦି ଯାଉଥିଲା । ଷଣ୍ଢ କାହାକୁ ତଳେ ପକାଇ ଦେଲେ ସେ ଖଣ୍ଡେ ଅଖା ତା ମୁହଁ ପାଖରେ ହଲାଇ ଅନ୍ୟ ଆଡ଼କୁ ଟାଣି ନେଉଥିଲା । ବହୁବାର ଷଣ୍ଢ କାହାକୁ ତଳେ ଗଡ଼ାଇ ଦେଲେ ସେ ତାହାର ସିଙ୍ଗ ଧରି ଟାଣି ନେଉଥିଲା ଏବଂ ବଧା ଗୋଇଠା ଗୁପୁଡ଼ା ମାରି ଷଣ୍ଢକୁ ସେ ଲୋକ ପାଖରୁ ଅଡ଼ାଇ ଆଣୁଥିଲା ।

ସେ ଷଣ୍ଢ ଲାଙ୍ଗୁଡ଼ ଟାଣି ଭିଡ଼ିମୋଡ଼ି ତଳେ ପଡ଼ି ଯାଇଥିବା ଲୋକକୁ ରକ୍ଷା କରୁଥିଲା । ଥରେ ସେ ଷଣ୍ଢ ଲାଙ୍ଗୁଡ଼କୁ ଗୋଟାଏ ହାତରେ ଆଉ ସିଙ୍ଗକୁ ଅନ୍ୟ ହାତରେ ଧରି ଷଣ୍ଢକୁ ବୁଲାଇଥିଲା । ଷଣ୍ଢ କ୍ଷିପ୍ର ହୋଇ ତାକୁ ଆକ୍ରମଣ କରିବାକୁ ଯାଆନ୍ତେ ସେ ପଛକୁ ପଳାଇ ଯାଇଥିଲା କିନ୍ତୁ ଲାଙ୍ଗୁଡ଼ ଓ ସିଙ୍ଗ ଧରି ରଖିଥିଲା । ଶେଷକୁ ଲୋକେ ଛୁରୀ ନେଇ ଧାଇଁପଡ଼ି ଷଣ୍ଢକୁ ଭୁସିଥିଲେ । ହଟ୍ଟଗୋଳ, ଚିତ୍କାର କୁହାଟ, ଧୂଳି ମଦ ଗନ୍ଧ ସବୁ ଏକାକାର ହୋଇ ଉଠିଥିଲା । ଷଣ୍ଢଟା ତା ଉପରେ ମାଡ଼ିକରି ପଡ଼ିଗଲା ଏବଂ ତା ହାତ ଷଣ୍ଢ ବେକତଳେ ରହିଗଲା । ସେଠାରୁ ହାତଟା ଟାଣି କାଢ଼ିବାବେଳେ ମନେ ହେଲା ସତେ ଯେମିତି ହାତଟା କାଖତଳୁ ଛିଡ଼ିଯିବ । ଏମିତି ଅବସ୍ଥାରେ ମଧ୍ୟ ସେ ରୁଆକୁ ରୁଆ ଛୁରୀ ଷଣ୍ଢ ବେକରେ ଭୁସି ଦେଇଥିଲା ଏବଂ ଷଣ୍ଢର କାନକୁ ଦାନ୍ତରେ କାମୋଡ଼ି ରହିଥିଲା ।

ପ୍ରଥମଥର ଷଣ୍ଢ କାନ କାମୋଡ଼ିଲାବେଳେ ତା ଗ୍ରୀବା ଓ ଦାନ୍ତପାଟି ବିଧଡ଼ା ପଡ଼ି ଯାଇଥିଲା । ଦର୍ଶକମାନେ ତାକୁ ଏଥିପାଇଁ ବିଦ୍ରୁପ କଲେ ମଧ୍ୟ ବିଶେଷ ' ସମ୍ମାନ ଦେଖାଇଥିଲେ । ସେହି ଦିନଠାରୁ ପ୍ରତି ବର୍ଷ ସେ ଏପରି କାମ କରିଥାଏ । ଲୋକେ ତାକୁ ଭିଲାକୋନ୍‌ଜୋର ବାଘା କୁକୁର ଏବଂ କଞ୍ଚାମାଉଁସ ଗିଳା ବୋଲି ଅଛା

କରିଥିଲେ । କିନ୍ତୁ ଗ୍ରାମର ସମସ୍ତେ ଆଶା କରିଥିଲେ ଯେ ପ୍ରତିବର୍ଷ ପ୍ରଥମ ଘଣ୍ଟା ସନ୍ଧ୍ୟାରୁ ବାହାରିଲେ ସେ ତାହା ସଙ୍ଗେ ଲଢ଼ିବ ଏବଂ ପୂର୍ବପୂର୍ବ ବର୍ଷର ଅଭିନୟ ପୁନର୍ବୃତ୍ତି କରିବ । ଲୋକମାନେ ମଧ୍ୟ ଶିକାରୀର ଛରି ଷଣ୍ଢକୁ ପେଲିଯିବେ । ଏହାପରେ ଚାଲିବ ଛୁରୀ ଭୂଷା ଏବଂ ଷଣ୍ଢର ମୃତ୍ୟୁ । ସେ ମନରେ ଗର୍ବକରି ବାହାରି ଆସିବ । ସେ ଗାଡ଼ିର ବ୍ୟୂହଭେଦ କରି ପଥର ବନ୍ଧା କୃତ୍ରିମ ଉତ୍ସ ପାଖରେ ରକ୍ତ ଧୂଆଧୋଇ କରିବାକୁ ଧାଉଁଥିଲା । ଲୋକେ ତାକୁ ପିଠି ଆପୁଡ଼େଇ ବାହାବା ଦେଉଥିଲେ । କିମ୍ବା କହୁଥିଲେ ଏମିତିକା ଦୁଇଜଣ ଲଢ଼ୁଆ ରହିବା ଗ୍ରାମର ଗୌରବ ।

ଆଣ୍ଡ୍ରିସ୍ ମନ ଗର୍ବରେ କ୍ରମେ ମୋଟ ହୋଇ ଯାଉଥିଲା ଏବଂ ଖୁସି ମନରେ ସମସ୍ତଙ୍କ ସଙ୍ଗେ କରମର୍ଦ୍ଦନ କରି ଝରପାଣିରେ ହାତ ମୁହଁ ଧୋଇ ଲୋକଙ୍କ ହାତରୁ ଚମଡ଼ା ମଦ ଥଳି ନେଇ ମଦ ପିଉଥିଲା !

ପ୍ରକୃତରେ ସେ ଭିଲଭୋନ୍‌କୋର ବାଘା କୁକୁର ଏବଂ ପ୍ରତି ବର୍ଷ ଏହି ମେଳାରେ ଅନ୍ୟ ସବୁ ତୁଚ୍ଛ କରି ଯୋଗଦେଇ ଆସୁଥିଲା । କିନ୍ତୁ ବର୍ଷାଯୋଗୁ ମେଳା ବନ୍ଦ ହୋଇଗଲା ଶୁଣିଲାକ୍ଷଣି ତା ମନର ଭାବ ଖୁବ୍ ହାଲୁକା ହୋଇ ଉଠୁଥିଲା ।

ସେ ଭାବିଲା ଯେ ସେ ଯେମିତି ହେଉ ଫେରିବ । ସେହି ଘାଟି ଓ ପୋଲ ଧ୍ୱଂସ କରିବା କାମଟାରେ ସେ ଯୋଗ ଦେବାଇ ଦେବ । ତା ଭାଇ ଏଲାଡ଼ିଓ ସେଠାରେ ରହିଅଛୁ । ସେ ମୋର ସହୋଦର ଭାଇ । ଏହାଛଡ଼ା, ପ୍ରିମିଟିଭୋ, ଆନ୍‌ସେଲମୋ, ଫର୍ଣ୍ଣାଣ୍ଡୋ, ଅଗଷ୍ଟିନ୍, ରାଫେଲ୍ ପ୍ରଭୃତି ଅଛନ୍ତି । ତଦୁପରି ଅଛନ୍ତି ଦୁଇଜଣ ସ୍ତ୍ରୀଲୋକ ଓ ପାବ୍‌ଲୋ । ଇଂରେଜ କଥା ଗଣନାକୁ ନଆଣିବା ଭଲ ଯେହେତୁ ସେ ବିଦେଶୀ ଏବଂ ଉପରବାଲାଙ୍କ ହୁକୁମ ମତେ ଆସିଛନ୍ତି । ସମସ୍ତେ ଏହି କାମରେ ଲିପ୍ତ । ଖବର ନେଇ ଆସିଛି ବୋଲି ଯେ କାମ ଫାଙ୍କିଦେବା ଠିକ୍ ନୁହେଁ । ସୁତରାଂ ଖବରଟା ମୋତେ ଶୀଘ୍ର ପହଞ୍ଚାଇ ଫେରିବାକୁ ହେବ । ଘାଟି ଆକ୍ରମଣରେ ଯୋଗ ନଦେବା ମୋ ପକ୍ଷରେ ନିନ୍ଦାର କଥା ହେବ । ହଠାତ୍ ତା ମନରେ ପଡ଼ିଗଲା ଯେ ଆକ୍ରମଣରେ ଯୋଗଦେଇ ଯେ ଆନନ୍ଦ ପାଇବ । କେତେକ ଫ୍ୟାସିଷ୍ଟଙ୍କୁ ମାରିବାରେ ସେ ଆନନ୍ଦ ପାଇପାରିବ । ଅନେକ ଦିନ ହେଲା ଆମେ ଫ୍ୟାସିଷ୍ଟ ହତ୍ୟା କରିନାହୁଁ । ଭାଲି କିନ୍ତୁ ପ୍ରକୃତ କାମ ବହୁତ କରିବାକୁ ପଡ଼ିବ । କାଲି ହେଉଛି ଏକ ବିଶିଷ୍ଟ ଦିନ । କାଲି ମୋତେ ସେଠାରେ ରହିବାକୁ ପଡ଼ିବ ।

ଠିକ୍ ଏତିକିବେଳେ ସେ ଆଣ୍ଡ୍ରେ ଉଚ୍ଚ କଣ୍ଟାବୁଦା ଭିତର ଦେଇ ଉଠାଣି ଉଠୁଥିଲା । ସେହିବାଟେ ଗଣତନ୍ତ୍ରଦଳର ଘାଟିରେ ପହଞ୍ଚିବା କଥା । ହଠାତ୍ ଗୋଟିଏ

ସ୍ତ୍ରୋଟ ପକ୍ଷୀ ତା ଗୋଡ଼ ପାଖରୁ ଫୁର୍‌କରି ଉଡ଼ିଗଲା । ସେ ଚମକପଡ଼ି ନିଶ୍ୱାସ ବନ୍ଦ କରି ଠିଆ ହୋଇଗଲା । ଭାବିଲା ହୁଏତ ସେ ଚଢ଼େଇ ଅଣ୍ଡା ଗୋଡ଼ରେ ମାଡ଼ି ପକାଇ ଅଛି । ଲଢ଼େଇ ଲାଗି ନଥିଲେ ସେ ରୁମାଲ ବାନ୍ଧି ଚିହ୍ନଟ ରଖିଯାଆନ୍ତା ଓ ଦିନବେଳେ ଆସି ଚଢ଼େଇ ବସା ଖୋଜନ୍ତା । ଅଣ୍ଡା ନେଇ କୁକୁଡ଼ା ଭିତରେ ଛୁଆ ଫୁଟିବାକୁ ରଖନ୍ତା । କାଳକ୍ରମେ କୁକୁଡ଼ା ପଲରେ ଏହି ଚଢ଼େଇଛୁଆ ବଡ଼ ହୁଅନ୍ତେ ଏବଂ ରାତିରେ ବୋବାନ୍ତେ । ସେମାନେ ପୋଷାମାନନ୍ତେ । ସେମାନେ ଉଡ଼ି ପଳାଇବା ପାଇଁ ଚେଷ୍ଟା କଲେ ତାଙ୍କୁ ଅନ୍ଧ କରିଦିଅନ୍ତା ।

ମାତ୍ର ପାଳିଥିବା ପକ୍ଷୀକୁ ଏପରି କରିବା ଠିକ୍ ନୁହେଁ । ବରଂ ତାଙ୍କ ଘର କାଟିଦେବା କିମ୍ବା ଗୋଟାଏ ଗୋଡ଼ ବାନ୍ଧିଦେବା ଭଲ । ଯୁଦ୍ଧ ଲାଗି ନଥିଲେ ମୁଁ ଏଲାଡ଼ିଓକୁ ସଙ୍ଗରେ ନେଇ ଫ୍ୟାସିଷ୍ଟଙ୍କ ଘାଟିପାଖ ନଦୀରୁ ମାଛ ଧରିବାକୁ ଯାଇଥାନ୍ତି । ଥରେ ନଦୀରୁ ୪ ଡଜନ ମାଛ ଧରିଥିଲି । ପୋଲ ଉଡ଼ାଇ ଦେଇ ସାରି 'ସୀରାଗ୍ରୀଡୋସ'କୁ ଖସି ଯିବା ତେବେ ସେଠାରେ ଅନେକ ଭଲ ନଦୀ ପାଇବା । ସେ ନଦୀମାନଙ୍କରେ ବହୁତ ଚିଙ୍ଗୁଡ଼ିମାଛ ଅଛି । ଗ୍ରୀଡୋସକୁ ଯିବା ବୋଲି ମୁଁ ଆଶା ରଖିଅଛି । ଗ୍ରୀଷ୍ମକାଳରେ ଗ୍ରୀଡୋସରେ ରହିବା ଭଲ କିନ୍ତୁ ଶୀତଦିନେ ସେଠାରେ ଭୟଙ୍କର ଥଣ୍ଡା ପଡ଼ିଥାଏ । ହୁଏତ ଶୀତଦିନକୁ ଆମ୍ଭେମାନେ ଯୁଦ୍ଧ ଜିଣି ସାରିଥିବା ।

ବାବା ଯଦି ଗଣତନ୍ତ୍ରଦଳ ଭୁକ୍ତ ହୋଇ ନଥାନ୍ତେ ତେବେ ମୁଁ ଏବଂ ଏଲାଡ଼ିଓ ବର୍ତ୍ତମାନ ଫ୍ୟାସିଷ୍ଟ ଦଳର ସୈନିକ ହୋଇଥାନ୍ତୁ ଏବଂ ସେ ଦଳର ସୈନିକ ହୋଇଥିଲେ ଆମର କୌଣସି ସମସ୍ୟା ରହି ନଥାନ୍ତା । ସେତେବେଳେ ହୁକୁମ ଅନୁସାରେ କାମ କରିଥାନ୍ତୁ ଏବଂ ସେଥିରେ ହୁଏତ ବଞ୍ଚିଥାନ୍ତୁ କିମ୍ବା ମରିଥାନ୍ତୁ । କିଏ ଅବା ନମରିବ । କୌଣସି ଶାସନ ଅଧୀନରେ ରହିବାଟା ଯେତେ ସହଜ, ସେହି ଶାସନ ପାଇଁ ଲଢ଼ିବା ସେତେ ନୁହେଁ ।

କିନ୍ତୁ ଏମିତିକା ଲୁଚୁଛପା ଯୁଦ୍ଧର ଦାୟିତ୍ୱ ବହୁତ ବେଶୀ । ଭାବୁକ ଲୋକ ପକ୍ଷରେ ଏଥିପାଇଁ ଚିନ୍ତାଦିକର ସୀମା ରହି ନଥାଏ । ଏଲାଡ଼ିଓ ମୋ ଅପେକ୍ଷା ବେଶୀ ଭାବନା କରିଥାଏ । ତାହାର ଚିନ୍ତା ମଧ୍ୟ ବହୁତ ବେଶୀ । ମୁଁ ଆମର ଆଦର୍ଶ ଉପରେ ପୂର୍ଣ୍ଣବିଶ୍ୱାସୀ ବୋଲି ଚିନ୍ତା କରେନାହିଁ । ତଥାପି ଏଭଳି ଜୀବନ ଅତି ମାତ୍ରାରେ ଦାୟିତ୍ୱପୂର୍ଣ୍ଣ ।

ମୁଁ ଭାବୁଛି ଆମ୍ଭେମାନେ ଏକ କଷ୍ଟକର ସମୟରେ ଜନ୍ମ ହୋଇଅଛୁଁ । ବୋଧହୁଏ ଅନ୍ୟ ଯେ କୌଣସି ସମୟ ଏହା ଅପେକ୍ଷା ସହଜ । ଆମ୍ଭେମାନେ ସମସ୍ତେ

କଷ୍ଟ ସହ୍ୟ କରି କରି ଆଉ କଷ୍ଟ ପ୍ରତି ଭ୍ରୂକ୍ଷେପ କରୁନାହାଁନ୍ତି । ଯେଉଁମାନଙ୍କୁ କଷ୍ଟ ବାଧୁଅଛି ସେମାନେ ଏପରି ଜୀବନଧାରା ପାଇଁ ଅନୁପଯୁକ୍ତ । କିନ୍ତୁ କଷ୍ଟସାଧ୍ୟ ସିଦ୍ଧାନ୍ତ ଗ୍ରହଣରେ ଏହାହିଁ ହେଉଛି ବେଳ । ଫ୍ୟାସିଷ୍ଟମାନେ ଆକ୍ରମଣ କରିବା ଦ୍ୱାରା ଆମର ନିଜ କର୍ତ୍ତବ୍ୟରେ ପ୍ରବର୍ତ୍ତାଇ ଅଛନ୍ତି । ଜୀଇ ରହିବାପାଇଁ ଆମ୍ଭେମାନେ ଲଢୁଅଛୁ । କିନ୍ତୁ ମୋ ଇଚ୍ଛା ମୁଁ ସେହି କଣ୍ଟାବୁଦାରେ ରୁମାଲ ବାନ୍ଧି ଦିଅନ୍ତି ଏବଂ ଦିନବେଳେ ଆସି ଅଣ୍ଡାତକ ନେଇ କୁକୁଡ଼ା ଭିଡ଼ରେ ଉଷୁମାଇବାକୁ ରଖନ୍ତି । ଅଣ୍ଡା ଫୁଟିଲେ ଚଢେଇ ଛୁଆଗୁଡ଼ିକୁ ମୋ ଅଗଣାରେ ବୁଲନ୍ତେ । ଏମିତିକା କାମ ମୋର ବଡ଼ ପ୍ରିୟ ।

କିନ୍ତୁ ମୋର ଘର କିମ୍ବା ଘରପାଖ ଅଗଣା ନାହିଁ । ମୋର ଭାଇଟିଏ ଛଡ଼ା ଆଉ କେହି ନାହିଁ । ଭାଇଟି ମଧ୍ୟ କାଲି ଯୁଦ୍ଧକୁ ଯିବ । ପାଣି ପବନ ଖରା ଓ ପେଟ ଖଣ୍ଡିକ ଛଡ଼ା ମୋର ଆଉ ନିଜର କିଛି ନାହିଁ । ପବନ ଅଳ୍ପ ବହୁଛି, ସୂର୍ଯ୍ୟ ଉଠିନାହିଁ, ପାଖରେ ଅଛି ୪ ଗୋଟି ହାତବୋମା । ସେଗୁଡ଼ିକ ଏକମାତ୍ର ଫିଙ୍ଗିବା ବସ୍ତୁ । ପିଠିରେ ଟଙ୍ଗାଇଛି ବନ୍ଧୁକ ଖଣ୍ଡିଏ । ତାହା ଗୁଳି ମାରିବାର ଉପକରଣ । ମୋ ପାଖରେ ଖଣ୍ଡେ ଛଟି ଅଛି । ସେଖଣ୍ଡି ପିହାଇବା କଥା । ବାକି ଯାହା ଅଛି ତାହା ହେଉଛି ବିପଦରାଶି ! ଏ ବିପଦ ଉପରେ ମୁଁ ପରସ୍ତ୍ରା କରିଦେବି । ଏତିକି ମାତ୍ର ମୋର ସମ୍ବଳ । ମୁଁ ଅଭାଗା ଏବଂ ଦର୍ଶନ ଶାସ୍ତ୍ରର ଏକ ସମସ୍ୟା ।

ଏହା ସବୁ ମହତ୍ ଚିନ୍ତା ସତ୍ତ୍ୱେପି ଅଳ୍ପକ୍ଷଣ ପୂର୍ବେ ତା' ମନରେ ବର୍ଷାଯୋଗୁଁ ଖଣ୍ଡ ଲଢ଼େଇ ବନ୍ଦ ହେବାର ଯେଉଁ ନୈରାଶ୍ୟଜନକ ଚିନ୍ତା ଜାଗ୍ରତ ହୋଇଥିଲା ତାହା ଫେରି ଆସିଲା ଯେହେତୁ ସେ ଭାବିଲା ଯେ ହୁଏତ ସେ ଆଣିଥିବା ସମ୍ବାଦ ଯୋଗୁଁ କାଲିକା ପୋଲ ଧ୍ୱଂସ କରିବା କାମ ବନ୍ଦ ହୋଇ ଯାଇପାରେ । ସେ ଆଗରେ ମୁଣ୍ଡିଆ ଉପରେ ସରକାରୀ ଫୌଜ ଜଗି ଅଛନ୍ତି । ସେମାନେ ନିଶ୍ଚୟ ତାକୁ ଅଟକାଇବେ ।

# ପଞ୍ଚତ୍ରିଂଶ ପରିଚ୍ଛେଦ

ରବର୍ଟ ଜର୍ଡାନ୍ ବିଛଣା ଖୋଳ ଭିତରେ ମେରିଆ ଆଡ଼କୁ ପିଠିକରି ଶୋଇଥିଲେ । ମେରିଆର ନିଦ ଭାଙ୍ଗି ନଥିଲା । ମେରିଆର ଅଙ୍ଗ ସ୍ପର୍ଶ ତାଙ୍କୁ ଏକ ଦୁର୍ଭାଗ୍ୟ ଭଳି ବୋଧ ହେଲା । ସେ ଭାବିଲେ ସବୁ ତାଙ୍କର ଦୋଷ । ତାକୁ ପହିଲୁ ଦେଖିଲା ଦିନରୁ ସେ ଯେ ବିଶ୍ୱାସଘାତକ ଏହା ସେ ଠଉରେଇଥିଲେ ଅଥଚ ସେ କେଡ଼େ ବେକୁବ । ସେ ରାଗରେ ଗର୍ ଗର୍ ହୋଇ ଉଠିଲେ । କିନ୍ତୁ ଆଉ ସେକଥା ଭାବି ଲାଭ କଅଣ । କାଲି କଅଣ କରିବାକୁ ହେବ ସେକଥା ବିଚାରିବା ଉଚିତ ।

ସେ ସବୁ ନେଇ ସେ ଫିଙ୍ଗି ଦେଇଅଛି କିମ୍ବା କାହିଁ ଲୁଚାଇ ଅଛି କିଏ କହିବ ? ଅନ୍ଧାରରେ ଅବା କେଉଁଠି ଖୋଜି ହେବ । ପାଜି, ବଦମାସ, ବିଶ୍ୱାସଘାତକଟା ଡାଇନାମାଇଟ୍ ଗୁଡ଼ାଏ ନେଇ ଯାଇଅଛି । ତା'ର ଯଦି ପଳାଇବାର ଥିଲା ଏଗୁଡ଼ାକ ନେଇ ପଳାଇଲା କାହିଁକି । ମୁଁ ନିଜେ କେଡ଼େ ବେକୁବ୍ ଯେ ସେହି ବଜାତ୍ ରାଣ୍ଡୀ ଜିମା ସେ ସବୁ ରଖାଇଥିଲି । ବଦମାସ ଘୁରୁ, ବାଳୁଙ୍ଗା ।

ହଉ ଯାହା ହେବାର ତ ହୋଇଯାଇଛି । ବର୍ତ୍ତମାନ ଯାହା ଅଛି ସେତକରେ କାମ ଚଳାଇବାକୁ ପଡ଼ିବ । ଯେମିତି ହେଉ ପୋଲଟା ଧ୍ୱଂସ କରିବାକୁ ହେବ । ବର୍ତ୍ତମାନ ନିଜ ଉପରେ ରାଗି ରାମ୍ପି କାମ୍ପି ହେଲେ କି ଲାଭ । ଏମିତିକା ଅନୁଶୋଚନା ରାଣ୍ଡ ମାଇପିଙ୍କୁ ସାଜେ । ଜିନିଷ ତ ଚାଲିଯାଇଛି । ଥଣ୍ଡା ମଗଜରେ ଏଣିକି ରାଗ ଛାଡ଼ି କର୍ତ୍ତବ୍ୟ ଠିକ୍ କରିବା ଉଚିତ । ସେ ସ୍ପେନ୍ ଦେଶର ସମସ୍ତଙ୍କୁ ପକ୍ଷ ନିର୍ବିଶେଷରେ ଗାଳିଦେବାକୁ ଲାଗିଲେ । ସବୁଗୁଡ଼ାକ ଅପଦାର୍ଥ, ସବୁଗୁଡ଼ାକ ଦଗାବାଜ, ସମସ୍ତେ

ନୀଚ ସ୍ୱାର୍ଥପର, ସମସ୍ତେ ଅହଂକାରୀ, ସମସ୍ତଙ୍କର ଜନ୍ମ, ଜୀବନ ଓ ମରଣ କୁତ୍ସିତ କଳଙ୍କିତ ଓ ମନୁଷ୍ୟତ୍ୱ ବର୍ଜିତ । ଭଗବାନ ଏ ଜାତିଟାକୁ ଦୟାକର । ଯେ କେହି ଭଲ ନେତା ଏ ଜାତିକୁ ନିନ୍ଦା କରିବ । ଗତ ୨ ହଜାର ବର୍ଷ ଭିତରେ ପାବ୍‌ଲୋ ଇଗ୍‌ଲେସିଆସ୍ ବୋଲି ଜଣେ ମାତ୍ର ଭଲ ଲୋକ ଏ ଦେଶରେ ଜନ୍ମଗ୍ରହଣ କରିଥିଲେ । ତେବେ ଉପସ୍ଥିତ ଯୁଦ୍ଧରେ ସେ ଯେ କଅଣ କରିଥାନ୍ତେ କିଏ କହିବ ? ମୁଁ ତ ପୁଣି ଲାର୍ଗୋ ଓ ଡୁରୁଟିଙ୍କୁ ଭଲ ବୋଲି ଭାବିଥିଲି ଅଥଚ ତାଙ୍କର ଲୋକେ ତାହାଙ୍କୁ ଗୁଳି କରି ପୁଏର୍ଣ୍ଣ ଫ୍ରାନ୍‌ସେସ୍‌ଠାରେ ମାରି ପକାଇଥିଲେ । ସେ ଆକ୍ରମଣ କରିବାକୁ କହିବାରୁ ମାରି ପକାଇଥିଲେ । ଶୃଙ୍ଖଳା ଲଙ୍ଘନର ଚରମ ଆଦର୍ଶ ଦେଖାଇ ମାରିଥିଲେ । ସବୁଯାକ ଘୃଣ୍ୟ କୁତ୍ତା; ସେମାନେ ଅଧୋପାତକୁ ଯାଆନ୍ତୁ । ପାବ୍‌ଲୋର ମଧ୍ୟ ସର୍ବନାଶ ହେଉ । ସେ ମୋତେ ଚିଡାକାଟି ମୋର ବନ୍ଧୋରକ ଓ ରକ୍ଷକ ନେଇ ପଳାଇଗଲା । କୋର୍ଟେଜ୍, ମେନେନ୍‌ଡେଜ୍‌ଠାରୁ ମିଆଜା ପର୍ଯ୍ୟନ୍ତ ସମସ୍ତେ ଆମ ଗାଲରେ ଚୂନକାଳି ଲଗାଇ ଅଛନ୍ତି । ମିଆଜୋ କ୍ଲେବର୍‌ଙ୍କ ସର୍ବନାଶ କଲା । ଏହି ଅହଂକାରୀ କୁକୁର ପଲ ସବୁବେଳେ ସ୍ପେନ୍ ଦେଶ ଶାସନ ଏବଂ ସ୍ପେନ ସେନାବାହିନୀ ପରିଚାଳନା କରି ଆସି ଅଛନ୍ତି । ଦେଶର ଜନସାଧାରଣ ଯେତେବେଳେ ହାତରେ କ୍ଷମତା ପାଇବେ, ଭଗବାନ କରନ୍ତୁ ଏହି ସବୁ ନରପିଶାଚଙ୍କୁ ସମୁଚିତ ଶିକ୍ଷା ଦିଅନ୍ତୁ ।

ଏମିତି ଭାବରେ ବହୁତ ମାତ୍ରାରେ ଗାଳିଫଜିତ ଓ ଅଭିସମ୍ପାତ କଲାପରେ ତାଙ୍କର ଘୃଣା ଓ ବିଦ୍ୱେଷ ଶିଥିଳ ହୋଇଗଲା । ସେ ପୁଣି ଓଲଟା ଭାବିବାକୁ ଲାଗିଲେ । ଯଦି ସମସ୍ତେ ଏତେ ଖରାପ ତେବେ ମୋର ଏଠିକି ଆସିବାର ଯଥାର୍ଥତା କଅଣ ଥିଲା । ନା ଏହା ଯେ ସତ୍ୟ ନୁହେଁ ମୁଁ ଜାଣେ । ଭଲ ଲୋକ ମଧ୍ୟ ଅଛନ୍ତି । ଅନ୍ୟାୟରେ କାହାକୁ ଦୋଷ ଦେବା ଉଚିତ ନୁହେଁ । ଅନ୍ୟାୟ ଏବଂ ହିଂସାକୁ ସେ ସମାନ ଭାବରେ ଘୃଣା କରୁଥିଲେ । ଯେଉଁ ରାଗରେ ସେ ଅନ୍ଧ ହୋଇ ଯାଇଥିଲେ ତାହା ଚାଲିଗଲାରୁ ସେ ଧୀର ପ୍ରଶାନ୍ତଭାବ ଧାରଣ କଲେ । ପ୍ରେମ କରୁ ନଥିବା କୌଣସି ସ୍ତ୍ରୀ ସହିତ ସଂସର୍ଗ କରି ସାରିଲେ ଲୋକର ମନ ଯେପରି ଶୂନ୍ୟ ହୋଇ ଉଠେ ତାଙ୍କ ମନ ସେପରି ଶୂନ୍ୟ ହୋଇ ଉଠିଲା ।

ମେରିଆ ନିଦରେ ଶୋଇ ହସି ପକାଉଥିଲା । ସେ ତା ଉପରେ ନଇଁପଡ଼ି କହିଲେ "ମୋ କୁନି, ତୁ ଯଦି କଥା କହୁଥାନ୍ତୁ ତେବେ ମୁଁ ତୋତେ ମାରିଥାନ୍ତି । ରାଗରେ ମଣିଷ କିଭଳି ପଶୁ ପାଲଟି ନଯାଏ । ମୁଁ ହିତାହିତ ଜ୍ଞାନ ଭୁଲି ଯାଇଥିଲି ।"

ସେ ମେରିଆକୁ କୁଣ୍ଢାଇ ଧରି ତା' କାନ୍ଧରେ ଚିବୁକ ରଖି ଭାବିବାକୁ ଲାଗିଲେ ଏଣିକି କଅଣ କରିବେ ଏବଂ କିଭଳି କରିବେ ।

ନା, ପ୍ରକୃତରେ ଅବସ୍ଥା ଏତେ ଖରାପ ନୁହେ ବୋଲି ସେ ଭାବିଲେ । ଅବଶ୍ୟ ଆଉ କେହି କେବେ ଏପରି କରିଥିଲି କି ନାହିଁ ମୁଁ ଜାଣେ ନାହିଁ । ତେବେ କରିବା ଲୋକ ନିଶ୍ଚୟ ବହୁତ ବାହାରିବେ । ଆମେ ଯଦି ଏତିକି କରିପାରୁଁ ଏବଂ ସେମାନେ ତାହା ଶୁଣନ୍ତି ଏବଂ କେମିତି କଲୁ ବୋଲି ବିସ୍ମିତ ନହୁଅନ୍ତି । ଆମ ହାତରେ ଅତି ଅଳ୍ପ ଲୋକ ଅଛନ୍ତି ତେବେ ଈଶ୍ୱରଙ୍କ ଦୟାରୁ ଯେତିକି ଅଛନ୍ତି ସେତିକି ନେଇ ମୁଁ ପୋଲ ଧ୍ୱଂସ କରିବି । ଈଶ୍ୱରଙ୍କୁ ଧନ୍ୟବାଦ ଯେ ମୋ ରାଗ ଚାଲିଯାଇ ଅଛି । ମୁଁ ରାଗରେ ବେଦମ ହୋଇ ପଡ଼ିଥିଲି । ଏମିତି ରାଗିବା ଭଲ ନୁହେ ।

ମେରିଆ କାନ୍ଧରେ ମୁହଁ ରଖି ସେ ଚୁପ୍‌ଚୁପ କହିଲେ "ସବୁ ଠିକ୍ କରିନେଲି, ସୁନା ! ତୁ କିଛି ଶୁଣିନାହୁଁ ବା ଜାଣିନାହୁଁ । ଆମ୍ଭେମାନେ ସମସ୍ତେ ମଲେ ମରିବୁ କିନ୍ତୁ ପୋଲ ଧ୍ୱଂସ କରିବୁ । ତୋତେ ଚିନ୍ତା କରିବାକୁ ହେବନାହିଁ । ଏଟା ଅବଶ୍ୟ ବିବାହ ଉପହାର ହିସାବରେ ବଡ଼ ଜିନିଷ ନୁହେ । କିନ୍ତୁ ରାତିଟାଏ ସୁନିଦ୍ରା ଉପଭୋଗ କରିବା ଅମୂଲ୍ୟ ବସ୍ତୁ । ତୁ ଖୁବ୍ ଭଲ ଶୋଇଅଛୁ । ଏହାକୁ ବାହା ମୁଦିଭଳି ଭାବିନେବୁ । ବର୍ତ୍ତମାନ ପ୍ରିୟେ ଶୋଇରହ । ମୁଁ ତୋତେ ଉଠାଇବି ନାହିଁ ।"

ସେ ତାକୁ କୋମଳ ଭାବରେ କୁଣ୍ଢାଇଧରି ଶୋଇ ରହିଲେ । ତାହାର ନିଶ୍ୱାସ ଏବଂ ବକ୍ଷର ସ୍ପନ୍ଦନ ସମାନ ଚାଲିଥାଏ ଏବଂ ଘଣ୍ଟାପରି ଟିକ୍‌ଟିକ୍ ହେଉଥାଏ ।

# ଷଷ୍ଠତ୍ରିଂଶ ପରିଚ୍ଛେଦ

ଆଣ୍ଡ୍ରିକ୍ ସରକାରୀ ଫୌଜର ସୀମାରେ ପହଞ୍ଚି ତାଲୁ ଜମିରେ ଶୋଇପଡ଼ି ଡାକ ଦେଲା । ସମ୍ମୁଖରେ ତାହାର ଅପ୍ରଶସ୍ତ ତାରବାଡ଼ । ଅବଶ୍ୟ ଏପରି ଭାବରେ ବାଡ଼ ଗୁଣ୍ଡଆଡ଼କୁ ବ୍ୟାପି ନଥିଲା । ସେ ସହଜରେ ଅନ୍ଧାରରେ ବହୁତ ଭିତରକୁ ପଶିଯାଇ ପାରିଥାନ୍ତା ଏବଂ କୌଣସି ପ୍ରହରୀ ହାବୁଡ଼ରେ ନ ପଡ଼ିବାଯାଏ ଆଗେଇ ପାରିଥାନ୍ତା କିନ୍ତୁ ଏହି ସୀମା ଆରମ୍ଭରେ ହାଙ୍କ ଦେବା ସେ ଭଲ ମନେକଲା ।

ସେ ପାଟିକରି କହିଲା "ନମସ୍କାର । କେଗୁଆଲୀଭାଇ ନମସ୍କାର ।"

ଗୋଟାଏ କଳଣି ଖଟ୍ କରିବା ଫିଟିବା ଆବାଜ ସେ ଶୁଣିଲା । ସ୍ତୂପ ଉପର କାନ୍ଥବାଡ଼ରୁ ଗୋଟାଏ ରାଇଫଲ୍ ଫୁଟିଲା । ଅନ୍ଧାରରେ ରାଇଫଲ୍ ଗୁଳି ମାଟିରେ ଭୀଷଣ ଶବ୍ଦ କରି ଉଠିଲା । ଆଣ୍ଡ୍ରିସ୍ ମାଟିସଙ୍ଗେ ମିଶି ଚେପ୍ଟେଇ ଶୋଇ ଯାଇଥାଏ । ସେ ବଡ଼ପାଟିରେ କହିଲା "ସାଥୀ, ଗୁଳି କରନାହିଁ । ମୁଁ ଭିତରକୁ ଯିବାକୁ ଚାହେଁ ।"

ସ୍ତୂପ ଉପରୁ କେହି ଜଣେ ପଚାରିଲା "ତୁମେ କେତେଜଣ ଅଛ ?"

"ମୁଁ ଏକା ।"

"ତୁ କିଏ ?"

"ମୁଁ ଭିଲାନୋଭାଡେଲାଜାରାର ଆଣ୍ଡ୍ରିସ୍ ଲୋପେଜ୍ । ପାବ୍ଲୋ ଦଳର ଲୋକ । ସମ୍ବାଦ ନେଇ ଆସିଛି ।"

"ତୋର ରାଇଫଲ୍ ଓ ଗୁଳିବାରୁଦ ଅଛି ତ ?"

"ହଁ ଅଛୁ ।"

"ବେଗର ରାଇଫଲ୍‌ରେ ଆମେ କାହାକୁ ନେଉନା, ଆଉ ୩ ଜଣରୁ ବେଶୀ ନେଉନା ।"

"ମୁଁ ଜଣେ । ମୋ ସମ୍ବାଦ ବଡ଼ ଜରୁରୀ । ମୋତେ ଭିତରକୁ ଛାଡ଼ ।"

ଛାତ ଉପରେ ସେମାନେ ନିଜଭିତରେ କଅଣ ପରାମର୍ଶ କଲେ । ତାପରେ ଜଣେ ପଚାରିଲା "ତୁମେ କେତେଜଣ ?"

"ଈଶ୍ୱରଙ୍କ ରାଣ, ମୁଁ ଜଣେ ମାତ୍ର ।" ଏହାପରେ ଛାତ ଉପରେ ପୁଣି କଅଣ ପରାମର୍ଶ ଚାଲିଲା । ତାପରେ ଜଣେ କହି ଉଠିଲା "ଶୁଣ ଫ୍ୟାସିଷ୍ଟ୍ ।"

ଆଣ୍ଡ୍ରିସ୍ କହିଲା "ନା ମୁଁ ଫ୍ୟାସିଷ୍ଟ୍ ନୁହେଁ । ମୁଁ ପାବ୍‌ଲୋ ଦଳଭୁକ୍ତ ଜଣେ ଗରିଲା ସୈନିକ । ମୁଁ ସେନାପତିଙ୍କ ପାଇଁ ସମ୍ବାଦ ନେଇ ଆସିଅଛୁ ।"

ଜଣେ କେହି କହି ଉଠିଲା "ଲୋକଟା ପାଗଳ । ଗୋଟାଏ ବୋମା ଫିଙ୍ଗ ।"

ଆଣ୍ଡ୍ରିସ୍ କହିଲା "ଶୁଣ, ମୁଁ ଏକୁଟିଆ । ମୁଁ ହଲପ୍‌କରି କହୁଛି ମୋ ସଙ୍ଗରେ ଆଉ କେହି ନାହିଁ । ମୋତେ ଭିତରକୁ ଯିବାକୁ ଦିଅ ।"

ଆଉ ଜଣେ କହିଲା "ଇଏ ତ ଖ୍ରୀଷ୍ଟାନଙ୍କପରି କଥା କହୁଛି ।" ଆଉ ଜଣେ କହିଲା "ଗୋଟାଏ ବୋମା ଫିଙ୍ଗ ନା ।"

ଆଣ୍ଡ୍ରିସ୍ କହିଲା "ନା ନା, ସେଟା ମସ୍ତବଡ଼ ଭୁଲ୍ ହେବ । ମୋ ଖବର ଖୁବ ଜରୁରି । ମୋତେ ଭିତରକୁ ଛାଡ଼ ।" ଏହି କାରଣରୁ କୌଣସି ଖବର ନେଇ ଏପାଖରୁ ସେପାଖରେ ପହଞ୍ଚାଇବାକୁ ସେ ପସନ୍ଦ କରୁ ନଥିଲା । ବେଳେ ବେଳେ ଭଲ ଯୋଗ ପଡ଼ୁଥିଲେ ମଧ୍ୟ ଏ କାମଟା ଖରାପ । ଛାତ ଉପରୁ ପୁଣି ଶୁଣାଗଲା "ତୁ ଏକା ?"

ଆଣ୍ଡ୍ରିସ୍ କହିଲା "ହଁ ମୁଁ ଏକା । ଏହି ଗୋଟାଏ କଥା କେତେଥର କହିବ ।"

"ଯଦି ତୁ ଏକା ତେବେ ଠିଆ ହୋଇ ରାଇଫଲ୍‌କୁ ମୁଣ୍ଡ ଉପରକୁ ଉଠା ।" ଆଣ୍ଡ୍ରିସ୍ ଦୁଇହାତରେ ରାଇଫଲ୍ ଧରି ଉପରକୁ ଟେକିଲା ।

ଉପରୁ ଶବ୍ଦ ଶୁଭିଲା "ବର୍ତ୍ତମାନ ବାଡ଼ ଡେଇଁଆ । ଆମ ବନ୍ଧୁକ ତୋ ଆଡ଼େ ଲକ୍ଷ୍ୟ କରାଯାଇଛି ।"

ଆଣ୍ଡ୍ରେସ୍ ତାରବାଡ଼ର ପନ୍ଧିଲ ଅଙ୍କାବଙ୍କା ଭିତରେ ପଶି କହିଲା "ଏଠାରୁ ବାହାରିବା ପାଇଁ ମୋର ଦୁଇହାତ ବ୍ୟବହାର କରିବାକୁ ପଡ଼ିବ ।"

ଉପରୁ ହୁକୁମ ହେଲା "ହାତ ବରାବର ମୁଣ୍ଡ ଉପରେ ଟେକି ରହିଥା ।"

ଆଣ୍ଡ୍ରେସ୍ କହିଲା "ମୁଁ ତାରବାଡ଼ରେ ଛନ୍ଦି ହୋଇଗଲିଣି ।"

ଆଉ ଜଣେ କହିଲା "କି ମୁସ୍କିଲ । ମୁଁ ତ କହୁଥିଲି ବୋମାଟାଏ ଫିଙ୍ଗ ।" ଅନ୍ୟ ଜଣେ କହିଲା "ନା ସେ ରାଇଫଲ୍ ଝୁଲାଇ ଦେଉ । ମୁଣ୍ଡ ଉପରେ ହାତଟେକି ସେ ତାରବାଡ଼ ଲଙ୍ଘନ କରି କିପରି ଆସିବ, ଏକଥା ଭାବୁନାହଁ କାହିଁକି ?"

ଅନ୍ୟ ଜଣକ କହିଲା "ଫ୍ୟାସିଷ୍ଟଗୁଡ଼ାଙ୍କୁ ବିଶ୍ୱାସ ନାହିଁ । ସେମାନେ ଗୋଟାକ ପରେ ଗୋଟାଏ ସର୍ତ୍ତ ବାଢ଼ିଆଆନ୍ତି ।"

ଆଣ୍ଡ୍ରେସ୍ ଚିତ୍କାର କରି କହିଲା "ମୋ କଥା ଶୁଣ । ମୁଁ ଫ୍ୟାସିଷ୍ଟ୍ ନୁହେ । ମୁଁ ପାବ୍ଲୋ ଦଳର ଜଣେ ଗରିଲା । ଆମେ ସେଠାରେ ବହୁସଂଖ୍ୟକ ଫ୍ୟାସିଷ୍ଟ୍ ମାରିଅଛୁ ।"

ସେ ଘାଟିର ଅଧିନାୟକ କହିଲେ । "ପାବ୍ଲୋ ଦଳ କଥା ମୁଁ ଶୁଣିନାହିଁ । ଏମିତି ରାମହରି ସାଧୁସନ୍ଥଙ୍କ ଦଳ ମୋତେ ଅଜଣା । ଆଗେ ତୋ ରାଇଫଲ୍ କାନ୍ଧରେ ଝୁଲା ଏବଂ ହାତରେ ତାରବାଡ଼ ଟେକି ଭିତରକୁ ଆ ।"

ଆଉ ଜଣେ କହିଲା "ଏଇ ଆମେ ଗୁଳି ଛାଡ଼ିଲୁ ।"

ଆଣ୍ଡ୍ରେସ୍ ଜବାବ ଦେଲା "ଦେଖୁଛି ତୁମେ ସବୁ ମିଶୁକ ନୁହ ।"

"ଆରେ, ଯୁଦ୍ଧ ପରା ଲାଗିଛି ।"

"ହଁ ସେକଥା ବୁଝୁଛି ।"

"ସେ କଅଣ କହୁଛି ?"

କଳଣୀ ଖଟକରି ହେବା ଆବାଜ ଆଣ୍ଡ୍ରେସ୍ ପୁଣି ଶୁଣିଲା । ସେ ବଡ଼ପାଟିରେ କହିଲା "ମୁଁ କିଛି କହୁନାହିଁ, ଗୁଳି ମାରନାହିଁ । ମୁଁ ଏହି ତଳ୍ପି ପାଉଁଶ ତାରବେଢ଼ା ଟପି ଭିତରକୁ ନଯିବାଯାଏ ଅପେକ୍ଷା କର ।"

"ଆମ ଭାରତକୁ ଗାଳି ଦେଇନାହିଁ ନରୁବା ବୋମା ଫିଙ୍ଗିବ ।" ଆଉ ଜଣେ କହିଲା ।

ଅଣ୍ଡ୍ରିସ୍ ଜବାବ ଦେଲା, କି ସୁନ୍ଦର ଭାର ଠିକ୍ ଲଙ୍କାରେ ରାମନାମ ପରି ! ଭାଇମାନେ ମୁଁ ଶୀଘ୍ର ତୁମ ସଙ୍ଗେ ମିଶିବ ।"

ଜଣେ କିଏ କହିଲା "ଏତେ ବଚନବାଜୀ କି କାମ । ବୋମାଟାଏ ଫିଙ୍ଗ ସବୁ ନଷ୍ଟ ହୋଇଯିବ ।"

ଅଣ୍ଡ୍ରିସର ଦେହ ଝାଳରେ ଓଦା ହୋଇ ଯାଇଥାଏ । ସେ ବୁଝି ପାରିଥିଲା ଯେ ବୋମା ଫିଙ୍ଗିବା ପାଇଁ ଯେଉଁ ଲୋକଟି କହୁଛି ସେ ସେହିକାମ କରିବାକୁ ତତ୍ପର । ଏଣୁ ସେ କହି ଉଠିଲା "ମୁଁ ଜଣେ ସାମାନ୍ୟ ଲୋକ ଭାଇ ।"

ବୋମାବାଲା କହିଲା "ମୁଁ ସେକଥା ବିଶ୍ୱାସ କରେ ।"

ଅଣ୍ଡ୍ରିସ୍ କହିଲା "ହଁ ତୁମେ ଠିକ୍ କରୁଛ ।" ଇଭ ମଧ୍ୟରେ ସେ ବହୁକଷ୍ଟରେ ଦୁଇ ଭାରବେଢ଼ା ଟପି କୋଠି କାନ୍ଥ ନିକଟ ଭିଡ଼ରୁ ଘେର ଫିଟାଇବାକୁ ଚେଷ୍ଟା କରୁଥାଏ । ସେ ପୁଣି କହିଲା "ମୁଁ କିବା ଲୋକ, ହେଲେ ମୁଁ ବଡ଼ ଜରୁରୀ ସମ୍ବାଦ ଆଣିଅଛି ।"

ବୋମାବାଲା କହିଲା "ସ୍ୱାଧୀନତା ଅପେକ୍ଷା ଆଉ କିଛି ଜରୁରୀ ବସ୍ତୁ ନାହିଁ । ତୁ କଅଣ ମନେକରୁଛୁ ସ୍ୱାଧୀନତାଠାରୁ ବଳି ଆଉ କିଛି ବଡ଼ କଥା ଅଛି ?"

ଅଣ୍ଡ୍ରିସ୍ ଶ୍ରଦ୍ଧା ବୋଧକରି ଜବାବ ଦେଲା 'ନା' । ସେ ବୁଝିପାରିଲା, ସେ ଦଳେ ଅଧା ପାଗଳାଙ୍କ ହାବୁଡ଼ରେ ପଡ଼ିଯାଇଛି । ଖାସକରି ସେହି କଳାଲାଲି ରୁଦର ପକାଇଥିବା କେତେଜଣ । ସେମାନେ ସମସ୍ୱରେ ସ୍ୱାଧୀନତାର ଓ ଗଣତନ୍ତ୍ରର ଜୟଧ୍ୱନି କଲେ । ଅଣ୍ଡ୍ରିସ୍ ମଧ୍ୟ ତାଙ୍କମାନଙ୍କର ଦୀର୍ଘ ଜୀବନ କାମନା କଲା । ବୋମାବାଲା କହି ଉଠିଲା 'ଜଣା ପଡ଼ୁଛି ସେ ଆମର ଜାତଭାଇ ଅଥଚ ଆଉ ଟିକକରେ ମୁଁ ତାକୁ ବୋମାରେ ମାରି ପକାଇଥାନ୍ତି ।" ସେ ଲୋକଟା ନିଜ ହାତରେ ଧରିଥିବା ବୋମା ଆଡ଼କୁ ଚାହିଁ ରହିଲା ।

ଅଣ୍ଡ୍ରିସ୍ କାନ୍ଥ ଚଢ଼ିଗଲା । ବୋମାବାଲା ତାକୁ କୁଣ୍ଢାଇପକାଇ ଦୁଇ ଗାଲରେ ଚୁମା ଖାଇଲା । ବୋମାଟା ତା ହାତରେ ଥାଏ । ସେ କହିଲା "ଭାଇ ସୁଖର କଥା ତୋର କିଛି ଦୁର୍ଘଟଣା ଘଟିନାହିଁ ।"

ଆଣ୍ଡ୍ରିସ୍ ତାଙ୍କୁ ତାଙ୍କ ଅଫିସର୍ କାହାନ୍ତି ବୋଲି ପଚାରିବାରୁ ସେ କହିଲା ଯେ ସେ ହେଉଛି ସେଠାର ଅଧିନାୟକ । ପ୍ରଥମେ ତାଙ୍କୁ କାଗଜପତ୍ର ଦେଖାଇବାକୁ ହେବ । ଏହାପରେ ପରିଚୟ ପତ୍ର ତା' ହାତରୁ ନେଇ ଗାତ ଭିତରେ ପଶି ଦୀପ ସାହାଯ୍ୟରେ ତାହା ଦେଖିଲେ । ଖଣ୍ଡିଏ ଚୂଡ଼କୋଣିଆ ରେଶମ କନାରେ ଗଣତନ୍ତ୍ରର ପତାକା ଏବଂ ଏସ୍. ଆଇ. ଏମ୍ ମୋହର ଚିହ୍ନ ମଟରେଥିଲା । ସେ ଗୁଡ଼ପତ୍ରରେ ତାହାର ନାମ, ଉଚ୍ଚତା, ଜନ୍ମସ୍ଥାନ ଏବଂ ଆସିବା ଉଦ୍ଦେଶ୍ୟ ରବର୍ଟ ଜର୍ଡ଼ାନ୍ ଲେଖି ଦେଇଥିଲେ । ଏହାପରେ ଗୋଲ୍‌ଜ୍‌ଙ୍କ ପାଇଁ ୪ ଫର୍ଦ୍ଦର ଏକ ବିବରଣୀ ଲେଖି ଦଉଡ଼ି ବାନ୍ଧି ସିଲ ମୋହର କରିଥିଲେ ।

ଲୋକ ଜଣକ କହିଲ "ହଁ ଏସବୁ ପରିଚୟ ପତ୍ର ଓ ସିଲ୍ ମୋହର ମୁଁ ଜାଣେ । ଏହା ଆମ ସଭ୍ୟଙ୍କ ପାଖରେ ଅଛି କିନ୍ତୁ ଏଖଣ୍ଡି ପାଖରେ ରହିବା ଦ୍ୱାରା କିଛି ପ୍ରମାଣିତ ହୁଏନାହିଁ । ଆଚ୍ଛା ତୁମର ଜନ୍ମସ୍ଥାନ କେଉଁଠି ?"

"ଆଣ୍ଡ୍ରିସ୍ କହିଲ "ଭିଲାକୋନକୋସ୍ ।"

"ସେଠାରେ କି ଫସଲ ହୁଏ ?"

"ତରଭୁଜ । ତାହା ସାରା ଦୁନିଆକୁ ଜଣା ।"

"ସେଠାରେ ତୁମେ କାହାକୁ ଚିହ୍ନ ?"

"କାହିଁକି ? ତୁମେ କଅଣ ସେଠାର ଲୋକ ?"

"ନା, କିନ୍ତୁ ମୁଁ ସେଠାରେଥିଲି । ମୁଁ ଅରାନ୍‌ଜୁଏଜ୍‌ର ଲୋକ ।"

"ହଉ ତେବେ କାହା କଥା ପଚାରିବ ପଚାର ?"

"ଜୋସ୍ ରନ୍‌କନ୍ ତେହେରା କହିଲ ।"

"ଯିଏ ମେସଠା ଭଡ଼ାଘରର ମାଲିକ ?"

"ହଁ ।"

"ତାଙ୍କ ମୁଣ୍ଡ ଲଣ୍ଡା, ପେଟ ବଡ଼ ଏବଂ ଗୋଟିଏ ଆଖି ଟେରା ।",

ଲୋକଟା କହିଲା ହଉ ତେବେ ତୁମ ଗୁଡ଼ପତ୍ର ନିଅ । ଏହା ନକଲି ବା ଜାଲ୍ ନୁହେଁ । "ଆଚ୍ଛା ତୁମେ ସେଠାରେ କଅଣ କରୁଥିଲ ।"

"ଆନ୍ଦୋଳନ ପୂର୍ବରୁ ମୋ ବାବା ଭିଲାକାଷ୍ଟିନ୍‌ରେ 'ବାସ କରୁଥିଲେ । ପାହାଡ଼ର ଅପର ପାର୍ଶ୍ୱସ୍ଥ ସମତଳ ଭୂମିରେ ସେ କାମ ଚଳାଇଥିଲେ । ସେହିଠାରେ

ଆମ୍ଭେମାନେ ଆନ୍ଦୋଳନରେ ମିଶିଗଲୁ । ମୁଁ ବରାବର ପାବ୍‌ଲୋ ଦଳରେ ଥାଇ ଯୁଦ୍ଧ କରିଅଛୁ କିନ୍ତୁ ମୋ କାମ ବଡ଼ ଜରୁରି ମୋତେ ଏହି ବିବରଣ ପହଞ୍ଚାଇବାକୁ ହେବ ।”

ଲୋକଟା କିନ୍ତୁ ବିନା ତନାଘନାରେ ପଚାରିଲା “ଫ୍ୟାସିଷ୍ଟ୍ ଅଧିକୃତ ଇଲାକାର ଖବର କଅଣ ?”

ଆଣ୍ଡ୍ରିସ୍ କହିଲା “ଆଜି ଆମର ଘମାଘୋଟ ଲଢ଼େଇ ହୋଇଥିଲା । ଆଜି ଫ୍ୟାସିଷ୍ଟ୍‌ମାନେ ସୋର୍ଡୋ ଦଳକୁ ନିଶ୍ଚିହ୍ନ କରି ଅଛନ୍ତି ।”

ତାଚ୍ଛଲ୍ୟ ଭଙ୍ଗୀରେ ଲୋକଟା ପଚାରିଲା “ସୋର୍ଡୋ କିଏ ?”

“ପାର୍ବତ୍ୟ ଦଳ ମଧ୍ୟରେ ସବୁଠାରୁ ଶ୍ରେଷ୍ଠ କର୍ମୀ ।”

ଅଧିନାୟକ କହିଲେ “ତୁମେ ସବୁ ଆସି ଗଣତନ୍ତ୍ର ସୈନ୍ୟବାହିନୀରେ ଯୋଗଦିଅ । ଗରିଲା ଯୁଦ୍ଧରୁ ବିଶେଷ କିଛି ଲାଭ ନାହିଁ । ତୁମେ ସମସ୍ତେ ଆସି ନିୟମିତ ସୈନ୍ୟବାହିନୀ ଶୃଙ୍ଖଳାରେ ଆବଦ୍ଧ ହେବା ଭଲ । ଏହାପରେ ଗରିଲା ଦଳ ପଠାଇବାର ଆବଶ୍ୟକ ପଡ଼ିଲେ ଆମେ ତାଙ୍କୁ ପଠାଇବୁ ।”

ଆଣ୍ଡ୍ରିସ୍‌ର ଧୈର୍ଯ୍ୟ ଅପରିସୀମ ଥିଲା । ସେ ତାରବେଡ଼ା ଟପି ଆସିବା କଷ୍ଟ ଧୀର ଭାବରେ ସହ୍ୟ କରିଥିଲା । ତାକୁ ଯେତେପ୍ରକାର ଜେରା କରାଗଲା ସେ କେଉଁଥିରେ ହଟି ନଥିଲା । ଏହି ଲୋକଟା ଯେ ତାଙ୍କ କଥା ବୁଝିପାରୁ ନାହିଁ କିମ୍ବା ତାଙ୍କ କାମ ଉପରେ ଗୁରୁତ୍ୱ ଦେଉନାହିଁ ଏହା ସ୍ୱାଭାବିକ । ସେ ଧୀରେ ସ୍ଥିରେ ପଚାରୁଅଛି ଏହା ମଧ୍ୟ ଦୋଷାବହ ନୁହେ । ତେବେ ବର୍ତ୍ତମାନ ସେ ଯିବାକୁ ଅଧୀର । ତେଣୁ ସେ କହିଲା “ଶୁଣନ୍ତୁ ଅଧିନାୟକ, ଆପଣଙ୍କ କଥା ଯଥାର୍ଥ ହୋଇପାରେ । କିନ୍ତୁ ୩୫ ନମ୍ବର ଡିଭିଜନ୍‌ର ସେନାପତିଙ୍କୁ ଏହି ବିବରଣୀ ଦେବାପାଇଁ ମୁଁ ଆଦିଷ୍ଟ । ସକାଳ ହେଲାମାତ୍ରେ ପାହାଡ଼ରେ ଆକ୍ରମଣ ଆରମ୍ଭ ହେବ । ବର୍ତ୍ତମାନ ରାତି ବହୁତ ହେଲାଣି । ମୁଁ ଶୀଘ୍ର ଫେରିବାକୁ ଚାହେ ।”

“ଆକ୍ରମଣ ? ଆକ୍ରମଣ କଥା ତୁମେ କଅଣ ଜାଣ ?”

“ନା, କିଛି ନୁହେ, କିନ୍ତୁ ମୋତେ ବର୍ତ୍ତମାନ ନାଭାସେରାଡ଼ା ଦେଇ ଯିବାକୁ ପଡ଼ିବ । ମୋତେ ଦୟାକରି ଆପଣଙ୍କ ସେନାପତି ପାଖକୁ ନେଇ ଯାଆନ୍ତୁ । ସେ ମୋତେ ନାଭାସେରାଡ଼ାଠାରୁ ଫେରିବାର ବ୍ୟବସ୍ଥା କରିଦେବେ । ମୋ ସଙ୍ଗେ କାହାକୁ ଦେଇ ପଠାଅ ଯେପରି ଅଧିକ ବିଳମ୍ବ ନଘଟିବ ।”

'ମୁଁ ଏସବୁକୁ ବଡ଼ ଅବିଶ୍ୱାସ କରେ । ତାରବେଡ଼ା ଆଡ଼କୁ ଆସୁଥିଲାବେଳେ ତୋତେ ଗୁଳି କରଦେବା ଉଚିତ ଥିଲା ।'

ଆଣ୍ଡ୍ରିସ୍ ଧୀରଭାବରେ କହିଲା 'ଆପଣ ତ ମୋ ପରିଚୟ ପତ୍ର ଦେଖିଲେ । ମୋ ଆସିବା ଉଦ୍ଦେଶ୍ୟ ମଧ୍ୟ ବୁଝାଇ ଦେଇଅଛୁ ।'

କାଗଜପତ୍ର ଜାଲ୍ ହୋଇପାରେ । ଯେ କେହି ଫ୍ୟାସିଷ୍ଟ୍ ଏଭଳି ଏକ ଉଦ୍ଦେଶ୍ୟ ମନରୁ ଫାନ୍ଦି କହିପାରେ । ତୁ ଯେମିତି ତୋ କର୍ତ୍ତବ୍ୟ ଜାଣୁ, ମୁଁ ସେମିତି ମୋ କର୍ତ୍ତବ୍ୟ ଜାଣେ । ଏହି ତଥାକଥିତ ସାଥୀକୁ ମୁଁ ସେନାପତିଙ୍କ ପାଖକୁ ନେଇଯିବ ।'

ପାହାଡ଼ ଚୂଡ଼ାରେ ଅଗଭୀର ଖାତ ଭିତର ଦେଇ ସେମାନେ ଅନ୍ଧକାରରେ ଚାଲିଲେ । ସେଠାରେ ଥିବା ରକ୍ଷୀ ବାହିନୀର ମଳମୂତ୍ରରେ ସ୍ଥାନଟା ଦୁର୍ଗନ୍ଧମୟ । ଆଣ୍ଡ୍ରିସ୍ ଏପରି ମଇଳା, ଶୃଙ୍ଖଳାବିହୀନ ଦୁର୍ଗନ୍ଧମୟ ଏବଂ ପିଲାଙ୍କ ପରି ବିପଦଜନକ ଲୋକଗୁଡ଼ାକୁ ପ୍ରସନ୍ନ ପ୍ରାଣରେ ଗ୍ରହଣ କରିପାରିଲା ନାହିଁ । ସେମାନେ ସଶସ୍ତ୍ର ଥିବାରୁ ବିପଦଜନକ ମଧ୍ୟ ଥିଲେ । କେବଳ ଗଣତନ୍ତ୍ରର ପକ୍ଷପାତୀ ହେବା ଛଡ଼ା ଆଣ୍ଡ୍ରିସ୍‌ର ଅନ୍ୟ ରାଜନୀତି ନଥିଲା । ସେ ଏମାନଙ୍କ କଥାବାର୍ତ୍ତା ବହୁବାର ଶୁଣିଥିଲା । ତାଙ୍କ କଥା ଖୁବ୍ ଭଲ ହେଲେ ମଧ୍ୟ ସେ ଏମାନଙ୍କୁ ଶ୍ରଦ୍ଧା କରୁ ନଥିଲା । ନିଜର ମଳମୂତ୍ରକୁ ନ ପୋତିବା ସ୍ୱାଧୀନତା ନୁହେ । ବିଲେଇ ଅପେକ୍ଷା କୌଣସି ଜନ୍ତୁ ଅଧିକ ସ୍ୱାଧୀନ ନୁହେ କିନ୍ତୁ ବିଲେଇ ନିଜ ମଳ ମାଟିରେ ପୋତିଥାଏ । ସେମାନେ ଏତିକ ଶିକ୍ଷା ଗ୍ରହଣ ନକରିବା ଯାଏ ତାଙ୍କୁ ଶ୍ରଦ୍ଧା କରିବା ସମ୍ଭବ ନୁହେ ।

ଆଗେ ଆଗେ ଯାଉ ଯାଉ ଅଧିନାୟକ ହଠାତ୍ ଅଟକିଯାଇ କହିଲେ 'ତୋ ପାଖରେ ଏବେ ମଧ୍ୟ ବନ୍ଧୁକ ଅଛି । ସେଟା ମୋତେ ଦେ, ନପୁଣ ତୁ ଅନ୍ଧାରୁ ମୋ ପିଠିରେ ଗୁଳି ଫୁଟାଇବୁ ।'

'ମୁଁ ତୁମକୁ କାହିଁକି ମାରିବ ?'

'ମୋର କାହାକୁ ବିଶ୍ୱାସ ନାହିଁ । ବନ୍ଧୁକଟା ମୋତେ ଦେ ।' ଆଣ୍ଡ୍ରିସ୍ କହିଲା 'ଯଦି ସେଥିରେ ତୁମେ ସନ୍ତୁଷ୍ଟ ହେବ ତେବେ ନିଅ ।'

ଅଧିନାୟକ ବନ୍ଧୁକ ନେଇ ତା ସାଙ୍ଗରେ ପାହାଡ଼ରୁ ତଳ ଆଡ଼କୁ ଅନ୍ଧାରରେ ଚାଲିଲେ ।'

# ସପ୍ତତ୍ରିଂଶ ପରିଚ୍ଛେଦ

ମେରିଆ ପାଖରେ ରବର୍ଟ ଜର୍ଡାନ୍ ଶୋଇଥାନ୍ତି । ତାଙ୍କ ସାନ ହାତଘଣ୍ଟାଟି କ୍ଷୀଣ ଟିକ୍‌ଟିକ୍ ଶବ୍ଦ କରି ଚାଲିଥାଏ । ମିନିଟ୍ କଣ୍ଟା ସେ ଦେଖୁଥାନ୍ତି । ସେ ଏକାଗ୍ର ମନରେ ଭାବୁଥାନ୍ତି । ମେରିଆର ମୁଣ୍ଡ ତାଙ୍କ ଚିବୁକ ସ୍ପର୍ଶ କରି ରହିଥିଲା ଏବଂ ଘଣ୍ଟା ଦେଖିବା ପାଇଁ ସେ ମୁଣ୍ଡ ବୁଲାଇବାରୁ ମେରିଆର ଲମ୍ବା ମୁଣ୍ଡ ତାଙ୍କ ଗାଲରେ ବାଜିଲା । ତାହାର ସାନ ସାନ ମୁଣ୍ଡ ବାଳଗୁଡ଼ିକ ରେଶମ ପରି ଚିକ୍‌କଣ ଓ ନେଉଳ ଲୋମ ପରି କୋମଳ ଥିଲା । ସେ ତାହାର ମୁଣ୍ଡକୁ ଦୁଇ ହାତରେ ଗଭୀର ପ୍ରେମଭରରେ ଧରି ଘଣ୍ଟା କଣ୍ଟାଆଡ଼କୁ ଅନାଇ ରହିଲେ । ସେ ତାକୁ ଜାଗ୍ରତ କରିବାକୁ ଚାହୁଁ ନଥିଲେ କିନ୍ତୁ ଏପରି ଅବସ୍ଥାରେ ଶେଷ ବିଦାୟ ଦେବାକୁ ମଧ୍ୟ ପ୍ରସ୍ତୁତ ନଥିଲେ । ତାଙ୍କର କଣ୍ଠ ରୁନ୍ଧ ହୋଇ ଆସିଲା । ତାହାର ସେହି ନିଦ୍ରାବସ୍ଥାରେ ସେ ତା ଅଧର ଚୁମ୍ବନ କଲେ । କିଛିକ୍ଷଣ ଓଠକୁ ଓଠ ଲଗାଇ ରହିଲେ । ମେରିଆ ଦୀର୍ଘନିଶ୍ୱାସ ନେଇ ଶୋଇ ରହିଥାଏ । ରବର୍ଟ ଜର୍ଡାନ୍ ସେହି ଅବସ୍ଥାରେ ତା' ସର୍ବାଙ୍ଗରେ ହାତ ବୁଲାଇ ମନେ ମନେ କହି ଉଠିଲେ 'ବିଦାୟର କି ଯନ୍ତ୍ରଣା ।'

ମେରିଆ କହିଲା 'ନା, ଯନ୍ତ୍ରଣା ଆଉ ନାହିଁ ।' ରବର୍ଟ ଜର୍ଡାନ୍ ତାକୁ ସ୍ନେହରେ ଡାକିବାରୁ ସେ ଉତ୍ତର ଦେଲା କିଛି କଥା କୁହନାହିଁ । ଏହାପରେ ଦୁହେଁ ଯୁଗଳ ମୂର୍ତ୍ତିପରି ରହିଗଲେ । ଦୁହେଁ ଜାଣିଲେ ଯାହା ଘଟିବାର ଥିବ କେବଳ ଜଣକୁ ଘଟିବ ନାହିଁ । ଏହାହିଁ ଆରମ୍ଭ ଓ ଏହାହିଁ ଶେଷ । ଯାହା ପାଇବାର ନୁହେଁ ତାହା ସେମାନେ ପାଇଛନ୍ତି । ଅତୀତ କିମ୍ବା ଭବିଷ୍ୟତ ତାଙ୍କ ପାଇଁ ନାହିଁ । କେବଳ ସେମାନେ ବର୍ତ୍ତମାନ ସ୍ତରରେ ବନ୍ଦୀ । ଆଉ କିଛି ନାହିଁ ବା ଥାଇ ନପାରେ ।

କୌଣସି କାର୍ଯ୍ୟକାରଣ କମ୍ବା ପ୍ରଶ୍ନର ସ୍ଥାନ ନାହିଁ । ଅଛି କେବଳ ବର୍ତ୍ତମାନର ପୁଲକ, ବର୍ତ୍ତମାନ ସୁଖ ସମ୍ଭୋଗ ଓ ଆଶା ଆକାଙ୍‌କ୍ଷା । ଏହି ଆନନ୍ଦ, ଏହି ସୁଖ, ଏହି ବ୍ୟାକୁଳତା ଏହି ଇଚ୍ଛା, ଅଫୁରନ୍ତ, ଅବସ୍ମରଣୀୟ, ଅକ୍ଷୟ ଆଉ ଅବ୍ୟୟ । ସକାଳ ହେଲା ସଙ୍ଗେ ସଙ୍ଗେ ତାଙ୍କୁ ମାଟିର ବାସ୍ତବତାକୁ ଓ ସ୍ୱ-କର୍ତ୍ତବ୍ୟ ସାଧନ ବ୍ରତକୁ ଫେରବାକୁ ପଡ଼ିବ । ବର୍ତ୍ତମାନ ସେ କହିଲେ "ମେରିଆ, ମୁଁ ତୋତେ ଭଲପାଏ ଏବଂ ଏଥିପାଇଁ ତୋତେ ଧନ୍ୟବାଦ ଦିଏ ।"

ମେରିଆ ଜବାବ ଦେଲା "କଥା କୁହନାହିଁ । ନୀରବ ରହିବା ଭଲ ।"

"ନା, ମୋତେ କହିବାକୁ ପଡ଼ିବ । ମୋ କଥା ଅତି ମହାନ୍—"

"ନା କୁହନାହିଁ ।"

"ପ୍ରିୟେ—"

ମେରିଆ ତାଙ୍କୁ କହିବାକୁ ନଦେବ ବୋଲି ନିଜ ମୁହଁ ବୁଲାଇ ନେଲା । ସେ କୋମଳ କଣ୍ଠରେ ପଗ୍ଭରିଲେ "କଷ୍ଟ ହେଉଛି କି ?"

ମେରିଆ କହିଲା "ନାହିଁ । ମୁଁ ମଧ୍ୟ ତୁମକୁ ଧନ୍ୟବାଦ ଦିଏଁ ।"

ଏହାପରେ ଦୁହେଁ ପାଖାପାଖି ଚୁପ୍‌ଚାପ ଶୋଇ ରହିଲେ । ତାଙ୍କର ସର୍ବାଙ୍ଗିକ ସ୍ପର୍ଶ ହୋଇଥାଏ ।

ରବର୍ଟ ଜର୍ଡାନ୍ ପୁଣି ଘଣ୍ଟା ଦେଖିବାକୁ ଲାଗନ୍ତେ ମେରିଆ କହିଲା "ଆମେ ଅତି ସୁଖ ଉପଭୋଗ କରିଅଛୁ ।"

ରବର୍ଟ ଜର୍ଡାନ୍ କହିଲେ "ହଁ, ଆମ ଦୁହିଙ୍କ ଭାଗ୍ୟ ଭଲ ।"

"ଆଉ ଶୋଇବାକୁ ସମୟ ନାହିଁ ।"

"ନା । ବର୍ତ୍ତମାନ ଶୀଘ୍ର କାମ ଆରମ୍ଭ କରିବାକୁ ହେବ ।"

"ମୁଁ ତେବେ ଯାଉଛି କିଛି ଖାଦ୍ୟ ଆଣିବି ।"

"ହଉ ଯା ।"

"ତୁମେ ତ କୌଣସି ଚିନ୍ତାରେ ବିବ୍ରତ ନୁହଁ ?"

"ନା, ପ୍ରକୃତରେ କିଛି ଚିତ୍ତାଦାୟକ ବର୍ତ୍ତମାନ ମୋହର ନାହିଁ ।"

'କିନ୍ତୁ ପୂର୍ବରୁ ବିବ୍ରତଥିଲ ?'

'ହଁ କିଛିକ୍ଷଣ ପାଇଁ ଥିଲି ।'

'ମୁଁ କିଛି ସାହାଯ୍ୟ କରିପାରେ ?'

'ନା, ତୁ ଯଥେଷ୍ଟ ସାହାଯ୍ୟ କଲୁଣି ।'

'ସେଟା ତ ମୋ ନିଜ ପାଇଁ ।'

'ନା, ବୁଦ୍ଧିଙ୍କ ପାଇଁ । ସେଠାରେ ଅନେକ ଲୋକ । ବର୍ତ୍ତମାନ ଲୁଗାପଟା ପିନ୍ଧିନେବା ଭଲ । ମୁହଁରେ ଏ କଥା କହିଲେ ମଧ୍ୟ ରବର୍ଟ ଜର୍ଡ୍ଡାନ୍‌ଙ୍କ ମନ ଲାଗିଥିଲା ଲାଗ୍ରୋଣିଆଠାରେ ।'

ଫାସିସ୍ଟମାନଙ୍କର କହିଲା ଭଳି ଲାଗ୍ରୋଣିଆରେ କିଛି ନାହିଁ । ପ୍ରକୃତ କଥା ହେଉଛି କାଷ୍ଟେହନ୍ତ୍ରୁ ଏବଂ ସାଟେସ୍‌ଠାରେ । ଗ୍ରୀକୋ ଏବଂ ସାନ ଜୁଆନ୍ ନିକଟରେ ଓ ଅନ୍ୟ ସ୍ଥାନରେ ।

'ମୁଁ ଯୋଗୀପୁରୁଷ ନୁହେ କିନ୍ତୁ ସେ ସବୁ କଥା ଅସ୍ୱୀକାର କରିବା ଇଚ୍ଛା ମୂର୍ଖତା । ପୃଥିବୀର ଗତି କିମ୍ବା ଚନ୍ଦ୍ର, ସୂର୍ଯ୍ୟଙ୍କୁ ଆକର୍ଷଣକୁ ଅସ୍ୱୀକାର କରିବା ସଙ୍ଗେ ସମାନ । ଯେତେ କଥା ଜାଣିବାର ଅଛି ତହିଁରୁ ଅତି ଅଳ୍ପ ହିଁ ଆମକୁ ଜଣା—ଆଜି ମରିବା କଥା ବଦଳରେ ମୁଁ ଯଦି ଜାଣନ୍ତି ଯେ ମୁଁ ଦୀର୍ଘକାଳ ବଞ୍ଚିବି । ଗତ ୪ଦିନ ମଧ୍ୟରେ ଜୀବନ ସମ୍ବନ୍ଧରେ ମୁଁ ବହୁତ ବିଷୟ ଜାଣିପାରି ଅଛି । ସାରାଜୀବନରେ ଯାହା ଜାଣିଥିଲି ତହୁଁ ବେଶୀ ଜାଣିପାରି ଅଛି । ଏମିତି ଜାଣିବା ଗ୍ଲିଥିଲେ କଅଣ ଯେ ହେବ ? ହୁଏତ ମଣିଷର ବଞ୍ଚିବାର ଗୋଟାଏ ସୀମା ନିର୍ଦ୍ଦିଷ୍ଟ ଅଛି । ମୁଁ ଭାବିଥିଲି ବହୁତ ବିଷୟ ଅଛି ଯାହା ମୁଁ ଜାଣେନାହିଁ । ଆଉ ଅବସର ଆଆଲା କି ?'

'ସେ ଇଂରେଜୀରେ କହିଲେ 'ପ୍ରିୟେ, ମୁଁ ତୋ ପାଖରୁ ବହୁତ ଶିଖିଲି ।'

'କଅଣ କହିଲ ?'

'ମୁଁ ତୋ ପାଖରୁ ବହୁତ ଶିଖିଲି ।'

'ତୁମେ ବରଂ ମୋତେ ଶିଖାଇ ଅଛ ।'

ସେ ଭାବିଲେ କି ଶିକ୍ଷା ମୋର । ଶିକ୍ଷା ସମ୍ବନ୍ଧରେ ମୁଁ ଶିକ୍ଷାନବିସ୍ ମାତ୍ର । ଅତି ଅଳ୍ପ ହିଁ ଜାଣିଛି । ଆଜି ଯଦି ମରିଯାଏ ମନରେ ଅବଶୋଷ ରହିବ ଯେ ମୁଁ

ଅଳ୍ପ ହିଁ ଜାଣିଅଛୁ । ସମସ୍ତ ଅତି ଅଳ୍ପ ବାକୀ । ମୁଁ ଭାବପ୍ରବଣ ଲୋକ । ବର୍ତ୍ତମାନ ଶିଖିବା ଆରମ୍ଭ କଲେ ପାରିବ କି ? ସମୟର ବେଶୀ କମ୍‌ରୁ କିଛି ଯାଏଆସେ ନାହିଁ । ଏତିକ ବୁଝିବା ଭଳି ବୁଦ୍ଧି ମୋହର ଅଛି । ଏଠାକୁ ଆସିଲାଦିନୁ ଭାବୁଛି ସାରାଜୀବନ ଏହି ବଣ ପାହାଡ଼ରେ କଟାଇ ଦେଇଅଛି । ମୁଁ ଗୁଲସ୍‌ ଚବ୍‌ ଗୁଏ, ମାଇକ୍‌ ପ୍ରଭୃତିଙ୍କୁ ଖୁବ୍‌ ଭଲଭାବରେ ଜାଣେ, କିନ୍ତୁ ଆନ୍‌ସେଲ୍‌ମୋ ମୋର ସବୁଠାରୁ ବଡ଼ ବନ୍ଧୁ । ମୁହଁରେ ବାଡ଼ବଜା ନଥିଲେ ମଧ୍ୟ ଆଗଷ୍ଟିନ୍‌ ମୋ ଭାଇ । ମୋର ନିଜ ଭାଇ ନଥିଲା । ମେରିଆ ମୋର ପ୍ରକୃତ ପ୍ରେମିକା ଓ ସ୍ତ୍ରୀ । ପ୍ରକୃତ ପ୍ରେମ ମୁଁ ପୂର୍ବରୁ ପାଇ ନଥିଲି । ମୋର କେବେ ସ୍ତ୍ରୀ ନଥିଲା । ସେ ମୋର ସ୍ତ୍ରୀ, ଭଉଣୀ, କନ୍ୟା । ଏମିତିକା ଭଲ ବସ୍ତୁକୁ ଛାଡ଼ିଯିବାକୁ କଷ୍ଟ ହେଉଅଛି । ସେ ଇତ୍ୟବସରେ ଦଉଡ଼ିତଳା ଜୋତା ପିନ୍ଧି ସାରିଥିଲେ ।

ସେ ମେରିଆକୁ କହିଲେ 'ଦେଖୁଛି ଜୀବନ ଖୁବ୍‌ ମନୋହର । ମେରିଆ ତାଙ୍କ ପାଖରେ ବିଛଣାରେ ବସିଥିଲା । ସେ ନିଜର ବଳାଗଣ୍ଠି ମୁଠେଇ ଥାଏ । କିଏ ଜଣେ ଗୁହା ମୁହଁରୁ ପର୍ଦ୍ଦା ହଟାଇ ଦେଲା । ଦୁହେଁ ଗୁହାଭିତର ଆଲୁଅ ଦେଖିଲେ । ରାତି ସେତେବେଳେ ମଧ୍ୟ ପାହି ନଥିଲା । କେତେବେଳେ ସକାଳ ହେବ ଠିକଣା ନଥାଏ । 'ବଣଭିତରେ ନକ୍ଷତ୍ରମାନେ ଖୁବ୍‌ ତଳକୁ ଆସିଥିବା ଦେଖି ଭାବିଲେ ଶୀଘ୍ର ରାତି ପାହିଯିବ ।

ମେରିଆ ତାଙ୍କୁ ଡାକି ପଚାରିଲା 'ଆଜି ଆମେ ଏକାଠି ରହିବା ନା ?'

'ହଁ, କାମଟା ଆରମ୍ଭ କରିସାରି ।'

'ଆରମ୍ଭରୁ ନୁହେ ?'

'ନା, ତୁ ଘୋଡ଼ାମାନଙ୍କୁ ଦେଖିବୁ ।'

'ମୁଁ ତୁମ ସଙ୍ଗରେ ରହି ପାରିବ ନାହିଁ ।'

'ନା, ମୋ କାମ ମୁଁ ଏକାକୀ କରିବି । ତୁ ରହିଲେ ମୋତେ ତୋ ପାଇଁ ବିବ୍ରତ ହେବାକୁ ପଡ଼ିବ ।'

'କିନ୍ତୁ କାମ ଶେଷ କଲାକ୍ଷଣି ତୁମେ ଫେରି ଆସିବ ?'

ସେ ହସି ଦେଇ କହିଲେ 'ହଁ, ଖୁବ୍‌ ଶୀଘ୍ର ଫେରି ଆସିବି । ଚାଲ, ବର୍ତ୍ତମାନ ଖାଇବାକୁ ଯିବା ।'

'ତୁମର ଏହି ବିଛଣା ?'

'ଏହାକୁ ଗୁଡ଼ାଇ ତୋ ପାଖରେ ରଖିଥା । ମୁଁ ଗୁଡ଼ାଇବା ଶିଖାଇ ଦେବି ।'

'ନା ମୁଁ ନିଜେ କରିବି ।'

ସେ ଆଣ୍ଠୁଇପଡ଼ି ବିଛଣାକୁ ଲମ୍ବାଇ ଗୁଡ଼ାଇବାକୁ ଗଲେ । ତାପରେ କଅଣ ଭାବି ଠିଆ ହୋଇ ବିଛଣାକୁ ଝାଡ଼ିଦେଲେ । ଏହାପରେ ପୁଣି ଆଣ୍ଠୁଇପଡ଼ି ଗୁଡ଼ାଇବାରେ ଲାଗିଲେ । ରବର୍ଟ କର୍ଡ଼ାନ୍ ବସ୍ତା ଦୁଇଟା ଉଠାଇ ନେଲେ । ସେଥିରୁ କିଛି ଖସି ନପଡ଼ିବା ଭଳି ତାକୁ ଖୁବ୍ ଯତ୍ନରେ ଧରି ବଣଭିତରୁ ବାହାରି ଗୁହା ମୁହଁକୁ ଗଲେ । ଘଡ଼ିରୁ ବୁଝିପାରିଲେ ଯେ ରାତି ୩ଟା ୧୦ ମିନିଟ୍ । ସେ କହୁଣୀରେ କମ୍ବଳ ପର୍ଦ୍ଦା ଖଣ୍ଡିକ ହଟାଇ ଗୁହା ଭିତରେ ପ୍ରବେଶ କଲେ ।

## ଅଷ୍ଟତ୍ରିଂଶ ପରିଚ୍ଛେଦ

ଗୁହାଭିତରେ ସମସ୍ତେ ଥିଲେ । ମେଗ୍‌ଆ ପଙ୍ଖା କରି ନିଆଁ ତେଜୁଥିଲା । ପିଲାର୍ ଗୋଟିଏ ପାତ୍ରରେ କାଫି ପ୍ରସ୍ତୁତ ରଖିଥିଲା । ରବର୍ଟ ଜର୍ଡାନ୍‌କୁ ନିଦରୁ ଉଠାଇ ସେ ଆଉ ଶୋଇ ନଥିଲା । ବର୍ତ୍ତମାନ ଧୂଆଁ ଭରା ଗୁହାଭିତରେ ଖଣ୍ଡିଏ ଷ୍ଟୁଲ୍ ଉପରେ ବସି ସେ ତାଙ୍କର ଚିରି ହୋଇଥିବା ବସ୍ତା ସିଲାଇ କରୁଥିଲା । ଆଉ ବସ୍ତା ସେ ସିଲାଇ କରି ସାରିଥିଲା । ଚୁଲ୍ଲୀ ଆଲୁଅ ତା ମୁହଁରେ ପଡ଼ୁଥାଏ ।

ସେ ଫର୍ଣ୍ଣାଣ୍ଡୋକୁ କହିଲା 'ଆଉ କିଛି ମାଂସ ଖାଇନେ । ପେଟ ଭରିଗଲେ କିଛି କ୍ଷତି ନାହିଁ । ଏଠି ତ ଆଉ ଡାକ୍ତର ନାହାନ୍ତି ଯେ ପେଟ ଚିରିବେ ?'

ଅଗଷ୍ଟିନ୍ କହିଲା 'ସେମିତି ଭାବରେ କଥା କହନା । ତୋ କଥାଗୁଡ଼ାକ ପକା ଛିଣ୍ଡାଳୀ କଥାପରି !'

ସେ ସ୍ୱୟଂକ୍ରିୟ ରାଇଫଲ୍ ଉପରେ ଭରାଦେଇ ଠିଆ ହୋଇଥାଏ । ରାଇଫଲ୍‌ର ଗୋଡ଼କୁ ଭାଙ୍ଗି ନଳୀଯାଏ ଲମ୍ବାଇ ଦିଆଯାଇଥାଏ, ପକେଟ୍‌ରେ ଭରିଥାଏ ହାତବୋମା, କାନ୍ଧରେ ଝୁଲୁଥାଏ ଥଳିଏ ଗୁଳି ଏବଂ ଅନ୍ୟ କାନ୍ଧରେ ଝୁଲୁଥାଏ କାରତୁସ୍‌ଭରା ଖୋପଯୁକ୍ତ ପଟି । ମୁହଁରେ ଖଣ୍ଡିଏ ସିଗ୍ରେଟରୁ ଧୂଆଁ ଛାଡ଼ି ଅନ୍ୟ ହାତରେ କାଫି ପିଆଲା ଧରି ଟିକେ ଟିକେ ପିଉଥାଏ ।

ପିଲାର୍ କହିଲା 'ତୁ ଦେଖୁଛୁ ଗୋଟାଏ ଚଳନ୍ତା କଳକବଜା ଭଣ୍ଡାର । ଏତେ ବୋଝ ବହି ତୁ ତ ଶହେଗଜ ମଧ୍ୟ ଚାଲିପାରିବୁ ନାହିଁ ?'

ଅଗଷ୍ଟିନ୍ କହିଲ 'ଆଲୋ ମାଇକନଆ, ଆମେପର ଗଡ଼ାଣିରେ ଯିବୁ ।'

ଫର୍ଣ୍ଣାଣ୍ଡୋ କହିଲ 'ଗଡ଼ାଣି ଆରମ୍ଭ ହେବା ପୂର୍ବରୁ ଘାଟିଯାଏ ଖଣ୍ଡେ ବାଟ ଉଠାଣି ପଡ଼ିବ ଯେ !'

ଅଗଷ୍ଟିନ୍ କହିଲ 'ପଡ଼ୁ । ମୁଁ ଛେଳପର ଚଢ଼ିଯିବ ।'

ଏଲାଡ଼ିଓ ପଚାରିଲା 'ତୋ ବିଖ୍ୟାତ ଭାଇ କଥା କଅଣ ? ସେ ତ ମଇଲା ହୋଇଅଛି ।'

ଏଲାଡ଼ିଓ କାହାକୁ ଆଉଜି ଠିଆ ହୋଇଥିଲା । ସେ ତାକୁ ଚୁପ୍ ହେବାକୁ ଧମକ ଦେଲା ।

ତା ମନ ଟିକିଏ ଦୁର୍ବଳ ବୋଲି ସମସ୍ତେ ଜାଣିଥିଲେ । ସେ ସବୁବେଳେ କାମ ଆରମ୍ଭ ପୂର୍ବରୁ ଭୁଲନଆ ଏବଂ ଚଢ଼ଚଢ଼ିଆ ହୋଇ ଉଠୁଥିଲା । ସେ କାନ୍ଥପାଖରୁ ଟେବୁଲ ପାଖକୁ ଯାଇ ନିଜ ପକେଟରେ ହାତବୋମା ଭର୍ତ୍ତିକଲା । ଏ ସବୁ ବୋମା ଗୋଟିଏ ଥଳିରେ ଟେବୁଲ ଗୋଡ଼କୁ ଆଉଜାଇ ଖୋଲି ରଖାଯାଇଥିଲା ।

ରବର୍ଟ ଜର୍ଡାନ୍ ସେହି ବୋମା ଥଳି ପାଖରେ ବସି ପଡ଼ିଲେ । ସେ ଥଳିରେ ହାତପୂରାଇ ୪ ଗୋଟି ହାତବୋମା କାଢ଼ିଲେ । ୩ ଗୋଟି ମିଲ୍ସ ବୋମା ଆକାରର ବାଦାମି ଦନ୍ତୁରିତ । ଖଣ୍ଡିଏ ସ୍ପ୍ରିଙ୍ଗ୍ ଭାରସାମ୍ୟ ବହିବା ଲୁହାରେ ଅଣ୍ଟା ହୋଇ ବୋମାଟି ଯଥା ସ୍ଥାନରେ ରକ୍ଷିତ । ଗୋଟିଏ କଳା ଆଉ ଗୋଟିଏ ଟାଣିବା ମୁହଁଆ ତା ସହିତ ସଂଯୁକ୍ତ । ସେ ଏଲାଡ଼ିଓକୁ ପଚାରିଲେ 'ଏସବୁ କେଉଁଠାରୁ ଆସିଅଛି ?'

"ସେ ସବୁ ? ସେ ସବୁ ଗଭର୍ଣ୍ଣମେଣ୍ଟ ପଠାଇ ଅଛନ୍ତି । ବୁଢ଼ା ତାକୁ ପହଞ୍ଚାଇ ଦେଇଅଛି ।"

"ସେ ସବୁ କିପରି ?"

ଏଲାଡ଼ିଓ କହିଲା "ଏଥିରୁ ଗୋଟିଏ ଗୋଟିଏ କିଣିବାକୁ ହଜାର ହଜାର ଟଙ୍କା ମୂଲ୍ୟ ଦେବାକୁ ପଡ଼ିଛି ।"

ଅନ୍‌ସେଲ୍‌ମୋ କହିଲ "ମୁଁ ତାହା ଆଣିଛି । ମୋଟରେ ୬୦ ଗୋଟି ଏବଂ ଓଜନ ୯୦ ପାଉଣ୍ଡ ।"

ରବର୍ଟ ଜର୍ଡାନ୍ ପିଲର୍‌କୁ ପଚାରିଲେ "ତୁ କେବେ ଏହା ବ୍ୟବହାର କରିଅଛୁ ?"

"ଆମେ ପୁଣି ବ୍ୟବହାର କରନାହୁଁ ? ଏହାରଦ୍ୱାରା ପରା ପାବ୍‌ଲେ ଓଟେରୋଠାରେ ସମସ୍ତଙ୍କୁ ହତ୍ୟା କରିଥିଲା ।' ପିଲାର୍ ଉତ୍ତର ଦେଲା । ପାବ୍‌ଲେ ନାମ ଉଲ୍ଲେଖ କରିବାରୁ ଅଗଷ୍ଟିନ୍ ତାକୁ ଗାଳିଦେବା ଆରମ୍ଭ କଲା । ରବର୍ଟ ଜର୍ଡାନ୍ ଚୁଲି ଆଲୁଅରେ ପିଲାର୍‌ ମୁହଁକୁ ନିରୀକ୍ଷଣ କଲେ । ପିଲାର୍ ରାଗରେ କହିଲା "ଏମିତି କହି କିଛି ଲାଭ ନାହିଁ । ତୁ ଚୁପ୍‌କର ।"

ରବର୍ଟ ଜର୍ଡାନ୍ ଧୂସର ରଙ୍ଗର ହାତବୋମା ହାତରେ ଧରି କ୍ଳିପ୍‌ଟାକୁ ନିଜ ବୁଢ଼ାଆଙ୍ଗୁଳି ଉପରେ ବଙ୍କାଇବାକୁ ଚେଷ୍ଟାକରି ପଚାରିଲେ "ଏ ସବୁ କଅଣ ସବୁବେଳେ ବିସ୍ଫୋରିତ ହୋଇଥିଲା ?"

ଏଲାଡ଼ିଓ କହିଲା "ସବୁତକ ଠିକ୍ ଅଛି । ଆମେ ଯେତେ ଫୁଟାଇଥିଲୁ କେହି ଫୁଟୁସା ପଡ଼ି ନଥିଲା ।"

"କେତେ କାଳରୁ ?"

'ଯେତେ ଦୂରକୁ ଆମେ ଫିଙ୍ଗିଥିଲୁ ସବୁ ସାଙ୍ଗେ ସଙ୍ଗେ ଫୁଟିଥିଲା ।'

ସେ ଗୋଟିଏ ଝୋଲଥାଳି ଆକାରର ବୋମା ଉଠାଇଲେ । ତାହାର ଗୋଟିଏ ଫାଶ ଚାରିପଟେ ଖଣ୍ଡେ ଫିତା, ତା ଚାରିପଟେ ଗୁଡ଼ା ଯାଇଥାଏ । ତାକୁ ଦେଖାଇ ପଚାରିଲେ 'ଏଗୁଡ଼ା ?'

ଏଲାଡ଼ିଓ କହିଲା 'ସେଗୁଡ଼ା ନିହାତ ବାଜେ । ତାହା ଅବଶ୍ୟ ଫୁଟେ କିନ୍ତୁ ସେଥିରୁ ଚକ୍‌କରି ନିଆଁ ବାହାରେ ଆଉ କିଛି କାମ ଦିଏନାହିଁ ।'

'ସବୁବେଳେ ଫୁଟେ କି ?'

ପିଲାର୍ କହିଲା 'ଆମର କମ୍ପା ତାଙ୍କର କାହାରି ଗୋଲାବାରୁଦ ସବୁବେଳେ ଫୁଟିବ ବୋଲି କହି ହେବ ନାହିଁ ।'

'କିନ୍ତୁ ତୁ ତ କହିଲୁ ଯେ ଅନ୍ୟଗୁଡ଼ା ପ୍ରତିଥର ଫୁଟିଥିଲା ?'

ପିଲାର୍ ଜବାବ ଦେଲା 'ମୁଁ କହିନାହିଁ । ତୁମେ ଅନ୍ୟ ଲୋକକୁ ପ୍ରଶ୍ନ କରିଥିଲ—ମୋତେ ପଚାରି ନଥିଲ । ମୁଁ ସବୁବେଳେ ଫୁଟିବା ଗୁଣ ଏ ଦ୍ରବ୍ୟରେ ଦେଖିନାହିଁ ।'

ଏଲାଡ୍ରିଓ କ୍ରିଦ୍ କଲା 'ସତ କହୁନାହୁଁ କାହିଁକି ? ସବୁଯାକ ବିସ୍ଫୋରଣ ହୋଇଥିଲା ?'

ପିଲାର୍ ପଚାରିଲା 'ସବୁବେଳେ ଫୁଟିବ ବୋଲି ତୁ କେମିତି ଜାଣିଲୁ ? ପାବ୍ଲୋ ଏହା ପ୍ରୟୋଗ କରିଥିଲା । ତୁ ତ ଆଉ ଓ୍ୱେଗୋଠାରେ କାହାକୁ ମାରିନାହୁଁ ?'

ଅଗଷ୍ଟିନ୍ କହିଲା 'ରଖିଦେ ତୋର ସେ ଖାନଗୀ ପୁଅ କଥା ।'

ପିଲାର୍ ଧମକ ଦେଇ କହିଲା 'ତା କଥା ଛାଡ଼ । ବୁଝିଲ ନା ଇଂରେଜ, ସେ ସବୁ ଏକାଭଳି । କିନ୍ତୁ ଲିହଗ୍ରିଆଗୁଡ଼ିକ ଅଧିକ ସରଳ ।'

ରବର୍ଟ ଜର୍ଡାନ୍ ଭାବିଲେ ପ୍ରତ୍ୟେକ ପ୍ରକାରରୁ ଗୋଟାଏ ଲେଖା ସେ ପରୀକ୍ଷା କରି ଦେଖିବେ । କିନ୍ତୁ ଦନ୍ତୁରିତ ବୋମା ଅଧିକ ସହଜରେ ଏବଂ ନିଶ୍ଚିତ ଭାବରେ ଆଘାତ କରିବ ।

ଅଗଷ୍ଟିନ୍ ପଚାରିଲା 'ଇଂରେଜ, ତୁମେ କଅଣ ବୋମା ନିକ୍ଷେପ କରିବାକୁ ଯାଉଛ ?'

ରବର୍ଟ ଜର୍ଡାନ୍ କହିଲେ 'କାହିଁ ନୁହେଁ କଅଣ ?' କିନ୍ତୁ ସେଠାରେ ବସିପଡ଼ି ଭିନ୍ନ ଭିନ୍ନ ବୋମା ପୃଥକ୍ କରୁଁ କରୁଁ ସେ ଭାବିବାକୁ ଲାଗିଲେ ଏହା ଅସମ୍ଭବ । ମୁଁ ବୁଝିପାରୁ ନାହିଁ ମୁଁ କିପରି ଏ ବିଷୟରେ ନିଜକୁ ଠକିଲି । ସେମାନେ ସୋର୍ଡୋକୁ ଆକ୍ରମଣ କଲାବେଳେ ଆମ୍ଭେମାନେ ଯେପରି ହତାଶ ହୋଇଥିଲୁ ସୋର୍ଡୋ ମଧ୍ୟ ତୁଷାରପାତ ବନ୍ଦ ହେଲାରୁ ସେପରି ହୋଇଥିଲା । କେବଳ ଆମେ ସେ ଅବସ୍ଥା ଗ୍ରହଣ କରିନାହୁଁ । ଆମର ପରିକଳ୍ପନା ଅସମ୍ଭବ ହେଲେ ମଧ୍ୟ ଆମକୁ ଆଗେଇବାକୁ ପଡ଼ିବ । ଆମେ ଯେଉଁ ଖସଡ଼ା କରିଅଛୁ ତାହା ଭଲ ନୁହେ ଏହା ଜଣାକଥା । ଆଜି ସକାଳେ ମଧ୍ୟ ତାହା କାମ ଦେବନାହିଁ । ଆମର ଏଠାରେ ଯାହା ଅଛି ତଦ୍ୱାରା ଦୁଇଟା ଘାଟିରୁ ଗୋଟାଏ ଘାଟି ନିଶ୍ଚୟ ଦଖଲ କରିପାରିବୁ କିନ୍ତୁ ଦୁଇଟାଯାକ ପାରିବୁ ନାହିଁ । ସେଥିରେ ନିଶ୍ଚୟତା ନାହିଁ । ଆଉ ନିଜକୁ ଠକିବା ଉଚିତ ନୁହେ । ସକାଳ ହେଲେ ନିଜକୁ ଠକିବୁ ନାହିଁ ।

ଦୁଇଟା ଘାଟି ଦଖଲ କରିବା ଚେଷ୍ଟା କଦାପି ସମ୍ଭବ ନୁହେ । ପାବ୍ଲୋ ସବୁବେଳେ ଏହା ଜାଣିଥିଲା । ମୁଁ ଭାବୁଛି ପାବ୍ଲୋ ସବୁବେଳେ ଖସିଯିବାକୁ ଲକ୍ଷ୍ୟ ରଖିଥିଲା କିନ୍ତୁ ସେ ଜାଣିଥିଲା ଯେ ସୋର୍ଡୋ ଆକ୍ରାନ୍ତ ହେଲେ ଆମ ଦଶା ଦାରୁଣ

ଧକଡ଼ା ହେବ । ଅଲୌକିକ କିଛି ଘଟିବ ଏପରି ଅନୁମାନ ଉପରେ କୌଣସି ଅଭିଯାନ ଆରମ୍ଭ କରାଯାଇ ନପାରେ । ଆମେ ହୁଏତ ସମସ୍ତଙ୍କୁ ମାରି ପାରିବୁ କିନ୍ତୁ ପୋଲ ଧ୍ୱଂସ କରିପାରିବୁ ନାହିଁ । ଯାହା ଆମର ଅଛି ସେତକ ସମ୍ବଳ କରି ଆମେ କର୍ମରେ ଝାମ୍ପ ଦେବୁ । ଆମେ ପିଲାର୍, ଆନ୍‌ସେଲ୍‌ମୋ, ଅଗଷ୍ଟିନ୍, ପ୍ରିମିଟିଭୋ, ଅଲ୍‌ଅଲଆ ଏଲାଡ଼ିଓ ଆଉ ଅପଦାର୍ଥ ଗିପ୍‌ସିକୁ ମରାଇଲେ ସୁଦ୍ଧା ପୋଲ୍‌ଟା ଧ୍ୱଂସ କରି ପାରିବୁ ନାହିଁ ।

କୌଣସି ଅଲୌକିକ ଶକ୍ତିବଳରେ ଅଣ୍ଡ୍ରେସ ମୋ ଖବର ଗୋଲ୍‌ଜଙ୍କ ପାଖରେ ପହଞ୍ଚାଇ ଦେବ ଏବଂ ସେ ପୋଲ ଧ୍ୱଂସ କାମ ବନ୍ଦ କରିବା ହୁକୁମ ଦେବେ ଏଭଳି ସମ୍ଭାବନା ନାହିଁ । ଯଦି ତାହା ନହୁଏ ତେବେ ସାବକ ହୁକୁମ ଅନୁସାରେ କାମ କରି ଏ ସମସ୍ତଙ୍କୁ ମୃତ୍ୟୁମୁଖକୁ ପେଲି ଦେବାକୁ ପଡ଼ିବ । ଅନ୍ୟମାନଙ୍କ ସହିତ ମେରିଆ ମଧ୍ୟ ମରିବ । ମେରିଆକୁ ତ ମୁଁ ରକ୍ଷା କରିପାରିବ ନାହିଁ । ବଦମାସ ପାବ୍‌ଲୋ ପାଇଁ ଏତେ କଥା । ରବର୍ଟ ଜର୍ଡାନ୍ ଏହିପରି ଚିନ୍ତା କଲେ । ସେ ପୁଣି ଭାବିଲେ ରାଗିଗଲେ ଲାଭ ନାହିଁ । ତାହାର ଫଳ ମନ୍ଦ ହେବ ଏବଂ ଅଯଥା ଭୟ ବୃଦ୍ଧି ପାଇବ । ସ୍ତ୍ରୀ ସହିତ ନଶୋଇ ପିଲାର୍‌କୁ ନେଇ ରାତିସାରା ଧାଁ ଧାପଡ଼ କରି ଏହି ବଣଜଙ୍ଗଲରୁ କାମ ତୁଲାଇବା ଭଳି ବହୁସଂଖ୍ୟକ ଲୋକ ଯୋଗାଡ଼ କରି ହୋଇଥାନ୍ତା । ହଁ, ଯଦି ମୋର କିଛି ଘଟେ ତେବେ ତ ପୋଲ ଧ୍ୱଂସ କରିବାକୁ ମୁଁ ଏଠାରେ ରହି ନଥାନ୍ତି । ଏଇଥିପାଇଁ ତ ମୁଁ ଗଲିନାହିଁ । କୌଣସି ଲୋକକୁ ମଧ୍ୟ ପଠାଇ ପାରିଲି ନାହିଁ କାରଣ ତାହାର ଜୀବନ ନେଇ ଫେରିବାର ସମ୍ଭାବନା ନଥିଲା । ଲୋକବାକର ସଂଖ୍ୟା ଏତେ ଊଣା ଯେ ଏଥିରୁ ଜଣେ ସୁଦ୍ଧା ଊଣା ହେଲେ କାମ ଚଳିବ ନାହିଁ ।

କିନ୍ତୁ ପରିକଳ୍ପନାଟା ମୂଳରୁ ଭ୍ରମାତ୍ମକ । ରାତିର ଯେଉଁ ପରିକଳ୍ପନା ତାହା ସକାଳବେଳେ ନିଦାରଦ । କାରଣ ରାତିର କଳ୍ପନାକଳ୍ପନା ଦିନବେଳେ ଅକାମି । ସୁତରାଂ ତାହା ଫଳପ୍ରଦ ହେବ ନାହିଁ ବୋଲି ଜଣା ।

ଆଚ୍ଛା ଜନ୍ ମସ୍‌ବାଇ ଏହିଭଳି ଅସମ୍ଭବ ପରିସ୍ଥିତିରେ କାମ ତୁଲାଇ ପାରିଥିଲେ । ତାଙ୍କର ଅବସ୍ଥା ଆହୁରି ବେଶୀ କଷ୍ଟସାଧ୍ୟ ଥିଲା । ମନେ ରଖିବାକୁ ହେବ ଯେ ହଠାତ୍ ଆକ୍ରମଣ ଯୋଗୁଁ ଯେଉଁ ବିପ୍ଳବଭାବ ସୃଷ୍ଟି ହୁଏ ତାହାର ମୂଲ୍ୟ ଊଣା ନୁହେଁ । ନେଇଆଣି ଥୋଇ ଜାଣିଲେ ଏହା ବାଜେକଥା ନୁହେଁ । କିନ୍ତୁ ମୋ ପକ୍ଷରେ ତ ଏପରି କରିବାର ସ୍ୱାଧୀନତା ନାହିଁ । ମୋତେ ସମ୍ଭବ ଅସମ୍ଭବ କଥା ନଭାବି ନିର୍ଦ୍ଦିଷ୍ଟ ଫଳ ପ୍ରତି ଦୃଷ୍ଟି ଦେବାକୁ ପଡ଼ିବ । କିନ୍ତୁ ଅବସ୍ଥା ତ ସମ୍ପୂର୍ଣ୍ଣ ଭିନ୍ନ

ହୋଇଗଲାଣି । ପ୍ରଥମତଃ ଏହା ଭୁଲ କଥା । ଏପରି ଭୁଲ ବିପଦର ମାତ୍ରା ବଢ଼ାଇଥାଏ ।

ଟେବୁଲ ପାଖରେ ବସି ସେ ମେରିଆଆଡ଼କୁ ଚାହିଁଲେ । ମେରିଆ ହସିଦେଲା । ସେ ମେରିଆ ମୁହଁକୁ ଚାହିଁ ହସିପକାଇ ଆଉ ୪ ଗୋଟି ହାତବୋମା ପକେଟରେ ପୂରାଇଲେ । ସେ ରକ୍ତଲାଲ ଡିବାର ପେଚଦିଆ ଠିପି ଫିଟାଇ ବ୍ୟବହାର ପାଇଁ ପ୍ରସ୍ତୁତ ରଖିବେ ବୋଲି ଚିନ୍ତାକଲେ । ଠିକ ଠିକ ହୋଇ ବିବିଧ ବସ୍ତୁ ବୋମାରୁ ଛୁଟିକି ପଡ଼ିଲେ ଫଳ ଖରାପ ହେବନାହିଁ ବୋଲି ସେ ବିଚାର କଲେ । ବିସ୍ଫୋରଣ ସଙ୍ଗେ ସଙ୍ଗେ ଏସବୁ ବାହାରିବ ଏବଂ କିଛି ବିକ୍ଷିପ୍ତ ହେବ ନାହିଁ । ଏ ସମ୍ବନ୍ଧରେ ସେ ସ୍ଥିର ନିଶ୍ଚିନ୍ତ । ଟିକିଏ ଆତ୍ମବିଶ୍ୱାସ ଲୋଡ଼ା । ଭାବିଲେ ଯେ କାଲି ରାତିରେ ସେ ନିଜର ଅଜାଙ୍କର ବୀରତ୍ୱ ଓ ଦୁଃସାହସ ଏବଂ ବାପାଙ୍କର ଭୀରୁତା କଥା ସ୍ମରଣ କରୁଥିଲେ । ଆଜି ଟିକିଏ ଆତ୍ମବିଶ୍ୱାସ ଦେଖାଇଲେ ମନ୍ଦ କଅଣ ହେବ ? ସେ ମେରିଆଆଡ଼କୁ ଚାହିଁ ପୁଣି ଥରେ ଶୁଷ୍କଭାବରେ ଉପର ମନରେ ହସି ଦେଲେ । ମେରିଆ ମୋତେ ଅଦ୍ଭୁତ ଲୋକ ମନେ କରିଛି । ସେହି ଗ୍ଲୋରିଆ ସହିତ ଘଟଣା ସବୁ ବାଜେ । ମୋର ସେ ସବୁ ଅଦ୍ଭୁତ ଧାରଣା କଥା ଏବଂ ବିଶ୍ୱ ବ୍ରହ୍ମାଣ୍ଡ ସମ୍ବନ୍ଧରେ ଜ୍ଞାନ ନଖଦର୍ପଣରେ ଥିବାର ବଡ଼ିମା ସବୁ ମିଛ ।

ସେ ପୁଣି ଭାବିଲେ ଅଧୀର ହୋଇ ଲାଭ ନାହିଁ । ସବୁକଥା ସହଜ ବୁଦ୍ଧିରେ ଗ୍ରହଣ କରିବା ଉଚିତ । ତଦ୍ଦ୍ୱାରା କୌଣସି ବାଟ ବାହାରିପାରେ । ହାରିଯିବା ସ୍ୱତଃସିଦ୍ଧ ବୋଲି ସବୁକଥା ଅସ୍ୱୀକାର କରିବାର କାରଣ ନାହିଁ । ଅଣ୍ଡା ଭାଙ୍ଗି ସାପପରି ନିଜକୁ ନିଜେ ଦଂଶନ କଲେ ଫଳ କିଛି ହେବ ନାହିଁ ଆଉ ଅଣ୍ଡା ତ ଏତେବେଳ ଯାଏ ଭାଙ୍ଗି ନାହିଁ । ଆଗେ ଅଣ୍ଡା ଭାଙ୍ଗୁ ତେବେ ଯାଇ କାନ୍ଦିବ । ବର୍ତ୍ତମାନ ଯୁଦ୍ଧ ଲାଗିବା ଯାଏ ବିନାରାଗରେ ଅପେକ୍ଷା କରିବା ଉଚିତ । ଯୁଦ୍ଧବେଳେ ରାଗିବାକୁ ବହୁତ ସମୟ ମିଳିବ । ଏହା ଯୁଦ୍ଧରେ ମଧ୍ୟ କିଛି କାମଦେବ ।

ପିଲାର୍ ତାଙ୍କ ପାଖକୁ ବେଗ୍‌ଟା ଧରି ଆସି କହିଲା "ବର୍ତ୍ତମାନ ଏହା ମଜବୁତ ହୋଇଗଲା । ସେ ହାତବୋମାଗୁଡ଼ିକ ଖୁବ୍ ଭଲ । ଇଂରେଜ, ତୁମେ ତାହା ଉପରେ ନିର୍ଭର କରିପାର ।"

"ତୁ କେମିତି ବୋଧ କରୁଛୁ ନାରୀ ?"

ପିଲାର୍ ତାଙ୍କ ଆଡ଼କୁ ଅନାଇ ମୁଣ୍ଡ ହଲାଇ ହସିଦେଲା । ସେ ହସଟା ଉପର ମନରେ କମ୍ପା ପ୍ରାଣର ଗଭୀର ସ୍ତରରୁ ଏହା ସନ୍ଧାନ କରି ସେ ବୁଝିଲେ ତାହା ଏକାନ୍ତ

ଆନ୍ତରିକ । ସେ କହିଲା ଯେ ସେ ଖୁବ୍ ଭଲ୍ ବୋଧ କରୁଅଛି । ଏହାପରେ ତାଙ୍କ ପାଖରେ ବସିପଡ଼ି ପିଲାର୍ ପଚାରିଲା "ବର୍ତ୍ତମାନ ଯେତେବେଳେ ପ୍ରକୃତରେ ଆରମ୍ଭ କରିବାକୁ ଯାଉଛ ତୁମେ କଅଣ ମନେ କରୁଛ ଇଂରେଜ !"

ରବର୍ଟ ଜର୍ଡ୍ଡାନ୍ ଶୀଘ୍ର ଜବାବ ଦେଲେ "ଆମର ସଂଖ୍ୟା ବହୁତ ଅଳ୍ପ ।"

"ମୋର ମଧ୍ୟ ସେହି ଧାରଣା ।" ଏହାପରେ ସେ ତାଙ୍କୁ ହିଁ ଲକ୍ଷ୍ୟ କରି କହିଲା "ମେରିଆ ଏକୁଟିଆ ଘୋଡ଼ାକୁ ରଖିପାରିବ । ସେଥିପାଇଁ ମୋ ସାହାଯ୍ୟ ଲୋଡ଼ା ନାହିଁ । ଆମେ ତାଙ୍କର ଗୋଡ଼କୁ ଗୋଡ଼ ଛନ୍ଦିଦେବା । ସେମାନେ ଅଶ୍ୱାରୋହୀ ବାହିନୀର ଘୋଡ଼ା ଏଣୁ ବନ୍ଧୁକ ଆବାଜରେ ଚମକିବେ ନାହିଁ । ମୁଁ ଉଲମୁଣ୍ଡ ଘାଟିକୁ ଯାଇ ପାବ୍ଲୋ ଯେଉଁ କାମ କରିଆନ୍ତା ତାହା କରିବି । ଏମିତି କଲେ ଆମର ଜଣେ ଲୋକ ଅଧିକ ହେବ ।"

ସେ କହିଲେ "ବଢ଼ିଆ କଥା । ତୁ ଯେ ଏପରି ଇଚ୍ଛା କରିବୁ ମୁଁ ଆଗରୁ ଭାବିଥିଲି ।"

ପିଲାର୍ ତାଙ୍କୁ ଭଲକରି ନିରୀକ୍ଷଣ କରି କହିଲା "ନା ଇଂରେଜ, ତୁମେ ଚିନ୍ତା କରନାହିଁ । ସବୁ ଠିକ୍ ହୋଇଯିବ । ମନେରଖ ଶତ୍ରୁପକ୍ଷ ଏପରି ଘଟିବ ବୋଲି ଆଶା କରିନାହାନ୍ତି ।"

ରବର୍ଟ ଜର୍ଡ୍ଡାନ୍ କହିଲେ "ହଁ ।"

ପିଲାର୍ ନିଜର ସ୍ୱାଭାବିକ କର୍କଶସ୍ୱରକୁ ଯଥାସମ୍ଭବ କୋମଳ କରି କହିଲା "ଆଉ ଗୋଟାଏ କଥା ଇଂରେଜ ! ସେହି ହସ୍ତରେଖା କଥା—"

ରବର୍ଟ ଜର୍ଡ୍ଡାନ୍ ରାଗିଯାଇ କହିଲେ "କୋଉ ହାତରେଖା ।"

"ନା, ଶୁଣ, ତୁମେ ରାଗନାହିଁ । ମୁଁ କହୁଛି ଯେ ହାତରେଖା କଥା ହେଉଛି ଜିପ୍‌ସିଙ୍କର ଅନ୍ଧ ବିଶ୍ୱାସ । ନିଜର ଗରିମା ବଢ଼ାଇବା ପାଇଁ ମୁଁ ସେକଥା ଉପରେ ଜୋର୍ ଦେଇଥାଏ ମାତ୍ର ତାହା ଅତି ନିରର୍ଥକ ।"

"ଛାଡ଼ ସେକଥା ।"

ପିଲାର୍ କର୍କଶ ଅଥଚ ସ୍ନେହଭରା ସ୍ୱରରେ କହିଲା "ନାହିଁ ଛାଡ଼ିଲେ ହେବ ନାହିଁ । ମୁଁ ଏମିତିକା ନିର୍ବୋଧ ମିଛ କହିଥାଏ । ସେଥିଯୋଗୁଁ ଯୁଦ୍ଧ ଦିନ ତୁମେ ଚିନ୍ତିତ ହେବାକୁ ମୁଁ ଚାହେଁନାହିଁ ।"

ରବର୍ଟ ଜର୍ଡାନ କହିଲେ "ମୁଁ ତ ଚିନ୍ତିତ ନୁହେ ।"

ସେ କହିଲା "ହଁ ଇଂରେଜ, ମୋତେ ଲୁଗୁଅ ନାହିଁ । ତୁମେ ଉଚିତ କାରଣରୁ ଚିନ୍ତାନ୍ୱିତ ହୋଇ ପଡ଼ିଛ । କିନ୍ତୁ ସବୁ ଭଲ ହୋଇଯିବ । ଆମର ଜନ୍ମ ତ ଏଇଥିପାଇଁ ।"

ରବର୍ଟ ଜର୍ଡାନ୍ ଉତ୍ତର ଦେଲେ 'ମୋତେ କୌଣସି ରାଜନୀତିକ ପରାମର୍ଶଦାତା ଲୋଡ଼ା ନାହିଁ ।'

ପିଲାର୍ ତାଙ୍କ ଆଡ଼କୁ ଗୃହିଁ ପୁଣି ହସି ପକାଇଲା । ସେ ହାସ୍ୟ—ଆକଣ୍ଠ ବିସ୍ତାର ହାସ୍ୟ । କହିଲ "ପ୍ରକୃତରେ ତୁମ ପାଇଁ ମୋର ବହୁତ ବେଶୀ ଭାବନା ଇଂରେଜ !"

ସେ କହିଲେ 'ମୁଁ ବର୍ତ୍ତମାନ ତୁମର ଯତ୍ନର ପ୍ରତ୍ୟାଶୀ ନୁହେ ।'

ପିଲାର୍ କହିଲା 'ହଁ, ସେକଥା ମୁଁ ଜାଣେ । ତେବେ ତୁମକୁ ଜଣାଇବା ପାଇଁ ତାହା କହିଲି । କିଛି ଚିନ୍ତା କରନାହିଁ । ଆମେ ସମସ୍ତେ ଖୁବ୍ ଭଲ କାମ କରି ପାରିବା ।'

ରବର୍ଟ ଜର୍ଡାନ୍ ଅତି କ୍ଷୀଣ ସ୍ମିତହାସ୍ୟ କରି କହିଲେ 'କାହିଁକି ନ ପାରିବା ? ନିଶ୍ଚୟ ପାରିବା, ସବୁ ଠିକ୍ ହୋଇଯିବ ।'

'ଆମେ କେତେବେଳେ ଯିବା ?' ପିଲାର୍ ପଚାରିଲା । ନିଜର ଘଡ଼ିକୁ ଅନାଇଦେଇ ରବର୍ଟ ଜର୍ଡାନ୍ କହିଲେ 'ଯେ କୌଣସି ମୁହୂର୍ତ୍ତରେ ।' ସେ ଗୋଟାଏ ଏକ ଆନ୍‌ସେଲ୍‌ମୋ ହାତରେ ଦେଇ ପଚାରିଲେ 'ବୁଢ଼ା କେମିତି ଅଛୁ ?'

ରବର୍ଟ ଜର୍ଡାନ୍ ତାକୁ ଯେଉଁ ନମୁନା ଦେଇଥିଲେ, ସେହି ଅନୁସାରେ ସେ ଗୁଡ଼ାଏ କାଠି ତାଛୁଥିଲା । ଏଗୁଡ଼ିକ ଅଧିକା କାଠି ହାତରପାଞ୍ଚ ସ୍ୱରୂପ । ଦରକାର ପଡ଼ିଲେ କାମରେ ଲାଗିବ । ବୁଢ଼ା କହିଲା 'ଏ ପର୍ଯ୍ୟନ୍ତ ସବୁ ଖୁବ୍ ଭଲ ।' ସେ ହାତ ବଢ଼ାଇ ଦେଇ କହିଲା 'ଦେଖ ମୋ ହାତ ସମ୍ପୂର୍ଣ୍ଣ ଦୃଢ଼ ରହିଅଛି ।'

ରବର୍ଟ ଜର୍ଡାନ୍ କହିଲେ ମୁଁ ସବୁବେଳେ ପୂରା ହାତଟା ଦୃଢ଼ ରଖିପାରେ । ଗୋଟିଏ ଅଙ୍ଗୁଳି ବଢ଼ାଇଲୁ ।' ଆନ୍‌ସେଲ୍‌ମୋ ଗୋଟିଏ ଆଙ୍ଗୁଳି ବଢ଼ାଇଲା । ଆଙ୍ଗୁଳିଟା ଥରୁଥାଏ । ବୁଢ଼ା ଜର୍ଡାନ୍‌ଙ୍କୁ ଗୃହିଁ ମୁଣ୍ଡ ହଲାଇଲା ।

ରବର୍ଟ ଜର୍ଡାନ୍ କହିଲେ 'ମୋର ମଧ୍ୟ ଥରେ । ଏହା ସ୍ୱାଭାବିକ ।'

ଫର୍ଣ୍ଣାଣ୍ଡୋ କହି ଉଠିଲା ଯେ ତାହାର ଆଙ୍ଗୁଳି ଥରେ ନାହିଁ । ଏହାକହି ସେ ଡାହାଣ ହାତ ବଢାଆଙ୍ଗୁଳି ଓ ପରେ ବାମହାତ ବଢାଆଙ୍ଗୁଳି ବଢ଼ାଇଦେଲା ।

ଅଗଷ୍ଟିନ୍ ରବର୍ଟ ଜର୍ଡାନ୍ଙ୍କୁ ଆଖିଠାର ଫର୍ଣ୍ଣାଣ୍ଡୋକୁ ପଚାରିଲା 'ତୁ ଛେପ ପକାଇପାରୁ ।'

ଫର୍ଣ୍ଣାଣ୍ଡୋ ଲେଣ୍ଡାଏ ଛେପ ଗୁହା ଭିତରେ ମାଟିରେ ପକାଇ ପୁଣି ତାକୁ ଗୋଡ଼ରେ ଦଳିଦେଲା ।

ପିଲାର କହିଲା 'ଆରେ ମଇଳାଖୋର୍ ଖାସୁ, ଦମ୍ଭ ଦେଖାଇବା ପାଇଁ ଛେପ ପକାଇବା ଦରକାର କଲେ ଚୁଲ୍ଲୀ ଭିତରକୁ ପକା ।'

ଫର୍ଣ୍ଣାଣ୍ଡୋ ଲଜ୍ଜିତ ହୋଇ କହିଲା 'ଆମେ ଏ ସ୍ଥାନ ଛାଡ଼ି ଚାଲିଯାଉଛୁ ନଚେତ୍ ମୁଁ ଘର ଭିତରେ ଛେପ ପକାଇ ନଥାନ୍ତି ।'

ପିଲାର୍ କହିଲା 'ଛେପ ପକାଇବାରେ ସାବଧାନ ହୋ । ହୁଏ ତ ଆମେ ଏ ଜାଗା ଛାଡ଼ିଯିବୁ ନାହିଁ ।'

ଅଗଷ୍ଟିନ୍ କହିଲା 'ସେ କଳା ବିଲେଇଭଳି କଥା କହୁଅଛୁ । ଉପସ୍ଥିତ ପରିସ୍ଥିତିରେ ଏମିତିକା ପଦେ ଅଛା କଥା ଶୁଣିବା ସମସ୍ତଙ୍କର ଦରକାର ଥିଲା ।'

'ମୁଁ ଥଛା କରୁଥିଲି' ପିଲାର କହିଲା ।

'ମୁଁ ମଧ୍ୟ । କିନ୍ତୁ ଆରମ୍ଭ ହୋଇଗଲେ ମୁଁ ସନ୍ତୁଷ୍ଟ ହେବି ।' ଅଗଷ୍ଟିନ୍ କହିଲା ।

ରବର୍ଟ ଜର୍ଡାନ୍ ଏଲାଡ଼ିଓକୁ ପଚାରିଲେ 'ଗିପ୍‌ସି କାହିଁ ?'

ଏଲାଡ଼ିଓ ଜବାବ ଦେଲା 'ଘୋଡ଼ାଙ୍କ ପାଖରେ । ତୁମେ ତାକୁ ଗୁହା ମୁହଁରୁ ଦେଖିପାରିବ ।'

'ସେ କେମିତି ଅଛି ?'

ଏଲାଡିଓ ହସି ହସି କହିଲା 'ଡରରେ ଛନିଆ ।' ଅନ୍ୟର ଭୟର କଥା କହିବା ଦ୍ୱାରା ଏଲାଡ଼ିଓ ଟିକିଏ ଭରସା ପାଇଲା ।

ପିଲର୍‌ ଆରମ୍ଭ କଲ 'ଶୁଣ ଇଂରେଜ'—ରବର୍ଟ ଜର୍ଡାନ୍‌ ତା ଆଡ଼କୁ ଅନାଇଲେ । ସେ ଦେଖିଲେ ପିଲର୍‌ ଅବିଶ୍ୱାସ୍ୟ ଗୁହାଣିରେ ଗୁହା ମୁହଁଙ୍କୁ ବିସ୍ମୟରେ ଅନାଇ ଅଛି । ସେ ନଜେ ସେଆଡ଼କୁ ବୁଲିପଡ଼ି ପିସ୍ତଲ ହାତରେ ଉଠାଇ ନେଇଲେ । ଦେଖିଲେ ଗୁହା ମୁହଁ କମ୍ବଳ ପର୍ଦା ଗୋଟିଏ ହାତରେ ହଟାଇ କାନ୍ଧ ଉପରେ ସ୍ୱୟଂକ୍ରିୟ ରାଇଫଲ୍‌ ଆଉଜାଇ ପାବ୍‌ଲୋ ଠିଆ ହୋଇଅଛି । ଖର୍ବାକାର, ସ୍ଥୂଳକାୟ, ରକ୍ତଚକ୍ଷୁ ଏବଂ ଲମ୍ବ ଥୋଡ଼ି ନେଇ ଜଳ ଜଳ ଅନାଇ ରହିଛି ।'

ଅବିଶ୍ୱାସ କଣ୍ଠରେ ପିଲର୍‌ କହିଲ 'ତୁ—'

'ହଁ ମୁଁ'—ପାବ୍‌ଲୋ ଧୀର ପଦକ୍ଷେପରେ ଗୁହା ଭିତରକୁ ଆସିଲ । ସେ ରବର୍ଟ ଜର୍ଡାନ୍‌ଙ୍କୁ ସମ୍ବୋଧନ କରି କହିଲ 'ଶୁଣୁଛ ଇଂରେଜ, ମୁଁ ଇଲିୟାସ ଓ ଆଲେଜାଣ୍ଡ୍ରୋଙ୍କ ଦଳରୁ ୫ ଜଣ ଘୋଡ଼ସବାର ନେଇ ଆସିଛି । ସେମାନେ ବାହାରେ ଅଛନ୍ତି ।'

ରବର୍ଟ ଜର୍ଡାନ୍‌ ପଚାରିଲେ 'ବିସ୍ଫୋରକ ଓ ରଞ୍ଜକ କଥଣ କଲୁ ?'

'ତାହା ମୁଁ ନଦୀ ଗହ୍ୱରକୁ ଫିଙ୍ଗିଦେଲି । କିନ୍ତୁ ଗୋଟିଏ ହାତବୋମା ଦ୍ୱାରା ଏହି ବିସ୍ଫୋରଣ ଘଟାଇବା ଉପାୟ ମୁଁ ସ୍ଥିର କରିଅଛି ।' କାହା ଆଡ଼କୁ ନ ଚାହିଁ ପାବ୍‌ଲୋ ଏକଥା କହିଲ ।

ରବର୍ଟ ଜର୍ଡାନ୍‌ କହିଲେ 'ମୁଁ ମଧ୍ୟ ତାହା ସ୍ଥିର କରିଅଛି ।'

ଅତି କ୍ଳାନ୍ତିରେ ପାବ୍‌ଲୋ ମଦ ଅଛି କି ନାହିଁ ପଚାରିବାରୁ, ରବର୍ଟ ଜର୍ଡାନ୍‌ ତାକୁ ମଦବୋତଲ ବଢ଼ାଇ ଦେଲେ । ସେ ଚକ୍‌ଚକ୍‌ କରି ମଦ ପିଇ ହାତ ପଛରେ ମୁହଁ ପୋଛିଲ ।

ପିଲର୍‌ ପଚାରିଲ 'ତୋର କ'ଣ ହୋଇଅଛି ?'

ପାବ୍‌ଲୋ ପୁଣି ଥରେ ମୁହଁ ପୋଛି କହିଲ 'କିଛି ନାହିଁ । ମୁଁ ଫେରିଆସିଲି ।'

'କିନ୍ତୁ କାହିଁକି ?'

'କିଛି କାରଣ ନାହିଁ । ଦୁର୍ବଳ ମୁହୂର୍ତ୍ତରେ ମୁଁ ଚାଲି ଯାଇଥିଲି କିନ୍ତୁ ଫେରି ଆସିଲି ।' ଏହାପରେ ସେ ରବର୍ଟ ଜର୍ଡାନ୍‌ ଆଡ଼କୁ ବୁଲିପଡ଼ି କହିଲ 'କିନ୍ତୁ ପ୍ରକୃତରେ ମୁଁ କାପୁରୁଷ ନୁହେଁ ।'

'ତା ନୁହେଁ, କିନ୍ତୁ ତୁ ଆହୁରି ଅନେକ କରୁ । ତୋତେ ଦେଖି ମୁଁ ଖୁସି । ତୁ ଗୋଟାଏ ବାଳୁଙ୍ଗା । ରବର୍ଟ କର୍ଡ୍ଡାନ୍ ଏହିକଥା ମନେ ମନେ ଭାବିବାକୁ ଲାଗିଲେ ।'

'

ପାବ୍ଲୋ କହିଲା 'ଇଲସ୍ଥାସ୍ ଓ ଆଲେକାଣ୍ଡ୍ରୋଠାରୁ ମୁଁ ମାତ୍ର ୫ ଜଣ ଲୋକ ପାଇପାରିଲି । ଏଠାରୁ ଯିବାବେଳକୁ ମୁଁ କେବଳ ଘୋଡ଼ାରେ ବସି ଧାଇଁଛି । ତୁମେ ୯ ଜଣ ଲୋକ କେଭେ ଏ କାମ କରିପାରି ନଥାନ୍ତ । ଇଂରେଜ ଗତ ରାତିରେ ବୁଝାଇ ଦେଲାରୁ ମୁଁ ତାହା ଜାଣି ପାରିଲି । ତଳ ଘାଟିରେ ୭ ଜଣ ଲୋକ ଓ ଜଣେ ଜମାଦାର ଅଛନ୍ତି । ଧରି କଥାଟା ଯଦି ଜଣା ପଡ଼ିଗଲା କିମ୍ବା ସେମାନେ ଯୁଦ୍ଧ କଲେ ।' ସେ ରବର୍ଟ ଜର୍ଡ୍ଡାନ୍ଙ୍କ ଆଡ଼କୁ ଚାହିଁ କହିଲା 'ମୁଁ ଚାଲିଗଲାବେଳେ ଭାବିଥିଲି ଯେ ତୁମେ ଏପରି କାମ ଅସମ୍ଭବ ମନେକରି ଛାଡ଼ିଦେବ । ଏହାପରେ ତୁମର ମାଲ୍ ଫିଙ୍ଗିସାରି ମୁଁ ଭିନ୍ନ ଦୃଷ୍ଟିରେ ଦେଖିପାରିଲି ।'

ରବର୍ଟ ଜର୍ଡ୍ଡାନ୍ ତା ପାଖକୁ ଯାଇ କହିଲେ 'ତୋତେ ଦେଖି ମୁଁ ଖୁସି ହେଲି । ହାତବୋମା ଥିବାରୁ ଆମେ ଠିକ୍ ଅଛୁ । ସେଥିକରେ କାମ ଚଳିବ । ଅନ୍ୟ କଥା ଗୌଣ ।'

ପାବ୍ଲୋ କହିଲା 'ନା, ମୁଁ ତୁମପାଇଁ କିଛି କରୁନାହିଁ । ତୁମେ ଏକ ଦୁର୍ଗ୍ରହ । ତୁମରଯୋଗୁଁ ଆମର ସବୁ ଦୁର୍ଦ୍ଦଶା । ସୋର୍ଡୋର ମଧ୍ୟ । କିନ୍ତୁ ତୁମର ବିସ୍ଫୋରକ ଫିଙ୍ଗିଦେଲା ପରେ ମୁଁ ନିଜକୁ ନିତାନ୍ତ ନିସଙ୍ଗ ବୋଧ କଲି ।'

ପିଲାର୍ କହିଲା 'ତୋ ମାଆ—'

'ସୁତରାଂ ମୁଁ ଘୋଡ଼ା ଛୁଟାଇ ଅନ୍ୟମାନଙ୍କ ପାଖକୁ ଗଲି ଯେପରି କି ତୁମ କାମ ସଫଳ ହେବ । ମୁଁ ଯଥାସମ୍ଭବ ଶ୍ରେଷ୍ଠ ଲୋକ ଆଣିଅଛି । ମୁଁ ତାଙ୍କୁ ପାହାଡ଼ ଚୂଡ଼ାରେ ଛାଡ଼ି ତୁମ ସଙ୍ଗେ କଥାବାର୍ତ୍ତା ହେବାକୁ ଆସିଅଛି । ସେମାନେ ମନେ କରିଛନ୍ତି ଦଳପତି ହେଉଛି ମୁଁ ।'

ପିଲାର୍ କହିଲା 'ତୁ ଚାହିଁଲେ ଦଳପତି ହୋଇପାରୁ ।' ପାବ୍ଲୋ ତା ଆଡ଼କୁ ଅନାଇଲା ମାତ୍ର ମୁହଁ ଫିଟାଇଲା ନାହିଁ । କିଛିକ୍ଷଣ ପରେ ଶାନ୍ତ ଭାବରେ କହିଲା 'ସୋର୍ଡୋ ଘଟଣା ପରେ ଏ ବିଷୟଟା ମୁଁ ବହୁତ ଭାବିଅଛି । ମୋର ବିଶ୍ୱାସ, ଯଦି ମରିବାକୁ ହୁଏ ତେବେ ସମସ୍ତେ ଏକାଠି ମରିବା । କିନ୍ତୁ ଇଂରେଜ, ଆମର ଏହି ଦୁର୍ଗତିର କାରଣ ବୋଲି ମୁଁ ତୁମକୁ ଘୃଣା କରେ ।'

ଫର୍ଣ୍ଣାଣ୍ଡୋ ପକେଟରେ ହାତବୋମା ଭରିଥାଏ, କାରତୁସ୍ ପଟି କାନ୍ଧରେ ଝୁଲାଇଥାଏ, ଖଣ୍ଡିଏ ରୋଟିରେ ମାଂସ ଝୋଲ ପାତ୍ରରୁ ପୋଛି ଖାଇବାକୁ ଉଦ୍ୟତ ହେଲାବେଳେ କହି ଉଠିଲା 'ଏହି କାର୍ଯ୍ୟ ଯେ ସଫଳ ହେବ, ଏକଥା କଅଣ ତୋର ବିଶ୍ୱାସ ହେଉ ନାହିଁ ? ଗତ ରାତିର ପୂର୍ବ ରାତିରେ ତୁ କହୁଥିଲୁ ଯେ ଏହା ସଫଳ ହେବ ବୋଲି ତୋର ଦୃଢ଼ ବିଶ୍ୱାସଥିଲା ।'

ପିଲାର୍ ମେରିଆକୁ ସ୍ୱଗତଃ କହିଲା 'ତାକୁ କିଛି ମାଂସ ଦେ ।' ତାପରେ ପାବ୍ଲୋକୁ କୋମଳ ଦୃଷ୍ଟିରେ ଚାହିଁ ପଚାରିଲା 'ତେବେ ତୁ ଫେରି ଆସିଲୁ ?'

ପାବ୍ଲୋ କହିଲା 'ହଁ ଲୋ, ଫେରି ଆସିଲି ।'

'ତେବେ ମୁଁ ତୋତେ ସ୍ୱାଗତ କରେ । ମୁଁ ଭାବି ନଥିଲି ଯେ ତୁ ଯେଉଁ ଧ୍ୱଂସ କରିବାକୁ ବାହାରିଥିଲୁ ତାହା କେଭେ କରିବୁ ବୋଲି ।'

ପାବ୍ଲୋ ଜବାବ ଦେଲା 'ଏମିତିକା କାମ କଲା ପରେ ନିଃସଙ୍ଗତ୍ୱ ଅସହ୍ୟ ହୁଅନ୍ତା ।'

ପିଲାର୍ ବିଦ୍ରୂପ କରି କହିଲା 'ଅସହ୍ୟ ହେବ, ୧୫ ମିନିଟ ସୁଦ୍ଧା ତୁ ସହି ପାରି ନଥାନ୍ତୁ ।'

'ମୋତେ ଆଉ ବିଦ୍ରୂପ କରନାହିଁ । ମୁଁ ଫେରି ଆସିଛି ।'

'ତୁମକୁ ଆମେ ଗ୍ରହଣକଲୁ—ଏକଥା କହି ସାରିଛି । କାଫି ପିଇନିଅ । ଚାଲ ଯିବା । ଏମିତିକା ଅଭିନୟ କ୍ଲାନ୍ତିଦାୟକ ।'

ପାବ୍ଲୋ ପଚାରିଲା 'ସେ କଅଣ କାଫି ?'
ଫର୍ଣ୍ଣାଣ୍ଡୋ କହିଲା 'ନିଶ୍ଚୟ ।'

'ମୋତେ କିଛି ଦେ ମେରିଆ । କେମିତି ଅଛୁ ?' ସେ ତା ଆଡ଼କୁ ଅନାଇ ନଥିଲା । ମେରିଆ ଭଲ ଅଛି କହି କାଫି ବେଲାଏ ଆଣିଦେଇ ପଚାରିଲା ମାଂସ ଦେବ କି ନାହିଁ ।

ଅନ୍ୟମାନଙ୍କ ଉପସ୍ଥିତି ପ୍ରତି ଭ୍ରୂକ୍ଷେପ ନକରି ପାବ୍ଲୋ ପିଲାର୍‌କୁ ବୁଝାଇଲା 'ମୁଁ ଏକାକୀ ରହିବା ପସନ୍ଦ କରେ ନାହିଁ । ଗତକାଲି ସମସ୍ତଙ୍କ ମଙ୍ଗଳପାଇଁ ଦିନମାନ କାମ କରି ମୁଁ ନିସଙ୍ଗ ବୋଧ କରି ନଥିଲି । କିନ୍ତୁ ଗତ ରାତିରେ—

ପିଲାର୍ କହିଲା 'ତୋ ପୂର୍ବପୁରୁଷ ଯୁଦାସ୍ ଏସ୍କାରଅଟ୍ ବିଶ୍ୱାସଘାତକତା କରି ନିଜ ବେକରେ ଫାଶି ଲଗାଇଥିଲା ।'

'ମୋତେ ସେପରି ଭାବରେ କଥା କହନା । ତୁ ତ ଦେଖୁଛୁ ମୁଁ ଫେରି ଆସିଲି । ଯୁଦାସ ସଙ୍ଗେ ମୋତେ କାହିଁକି ତୁଳନା କରୁଅଛୁ ? ମୁଁ ଫେରିଅଛି ।'

ପିଲାର୍ ପଚାରିଲା 'ଯେଉଁ ଲୋକଙ୍କୁ ଆଣିଅଛୁ ସେମାନେ କିପରି ? ସେମାନେ ସେପରି କିଛି ଦରକାରୀ ବସ୍ତୁ ଆଣିଛନ୍ତି କି ?'

ପାବ୍ଲୋ କିଛିକ୍ଷଣ ପିଲାର୍ ପ୍ରତି ଚାହିଁ ତପୂରେ କହିଲା 'ସେମାନେ ଭଲ ଲୋକ ଓ ନିର୍ବୋଧ । ମରିବା ପାଇଁ ପ୍ରସ୍ତୁତ । ଏହାହିଁ ତ ତୁ ଖୋଜୁଥାଉ ।' ଏତିକି କହି ପାବ୍ଲୋ ପୁଣି ପିଲାର୍ ଆଖିକୁ କିଛିକ୍ଷଣ ଚାହିଁ ରହିଲା ।

ପିଲାର୍ କହିଲା 'ତୁ ଯଦି ମଣିଷ ହୋଇଥାଉ ତେବେ ସେହି ମଣିଷ ପଣିଆର କିଛି ଅଂଶ ନିଶ୍ଚୟ ତୋଠାରେ ଚିରକାଳ ରହିବ ।'

ପାବ୍ଲୋ କହିଲା 'ହଉ ତେବେ ଶୁଣିଥା । ଦିନରେ କାଲି ଯାହା ଘଟିବ ମୁଁ ସବୁ ପାଇଁ ପ୍ରସ୍ତୁତ ।'

ପିଲାର୍ କହିଲା 'ତୁ ଫେରିଛୁ ଏକଥା ମୁଁ ବିଶ୍ୱାସ କରୁଅଛି । କିନ୍ତୁ ତୁ ଆମଠାରୁ ବହୁତ ଦୂରକୁ ହଟି ଯାଇଅଛୁ ।'

ପାବ୍ଲୋ ରବର୍ଟ ଜର୍ଡାନ୍‌ଙ୍କୁ ଆଉ ଢୋକେ ପିଇବ ବୋଲି ମଦବୋତଲ ମାଗିଲା । କହିଲା ପିଇ ସାରିଲେ ଯିବା ।

# ଊନବିଂଶ ପରିଚ୍ଛେଦ

ଅନ୍ଧକାରରେ ସେମାନେ ବଣଭିତରେ ପାହାଡ଼ ପାଖକୁ ଯାଇ ଉଠାଣି ଉଠିଲେ ଏବଂ ପାହାଡ଼ ଶିଖରସ୍ଥ ଫକାଶ୍ଚୀ ବର୍ମରେ ପହଞ୍ଚିଲେ । ସମସ୍ତଙ୍କ ପାଖରେ ଭାର ବୋଝ ଓ ସମସ୍ତେ ବଡ଼ କଷ୍ଟରେ ଉଠାଣି ଉଠୁଥିଲେ । ଘୋଡ଼ାମାନଙ୍କ ଜିନ୍‌ରେ ମଧ୍ୟ ବହୁତ ମାଲ ଲଦା ହୋଇଥିଲା ।

ପିଲର୍ କହିଥିଲା ଦରକାର ପଡ଼ିଲେ ଘୋଡ଼ାଙ୍କୁ ଫିଟାଇ ଦେବା କିନ୍ତୁ ରଖି ପାରିଲେ ଅନ୍ୟତ୍ର ଶିବିର ସ୍ଥାପନ କରିପାରିବା । ଘୋଡ଼ାଙ୍କୁ ଅଡ଼ାଉ ଅଡ଼ାଉ ରବର୍ଟ ଜର୍ଡ଼ାନ୍ 'କହିଥିଲେ ବାକୀ ଗୋଲାବାରୁଦ କାହିଁ ?'

'ଜିନ୍ ଉପରେ ବ୍ୟାଗ୍‌ରେଅଛି ।'

ରବର୍ଟ ଜର୍ଡ଼ାନ୍ ଭାର ବୋଝ ବହି ବଡ଼ କ୍ଳାନ୍ତ ହୋଇ ଉଠୁଥିଲେ । ଏକେ ତାଙ୍କ ପକେଟ୍‌ରେ ଗୁଡ଼ାଏ ହାତବୋମା ଥିବାରୁ କୁରୁତାଟା ବେକ ପାଖରେ ଟାଣି ହେଉଥାଏ । ପିସ୍ତଲର ଓଜନ ପଡ଼ୁଥାଏ ଜଙ୍ଘ ଉପରେ । ପାଇଜାମା ପକେଟରେ ସାନ ମେସିନଗନ୍‌ର ଗୁଳି ପୂର୍ଣ୍ଣଥିବାରୁ ପକେଟ ଦୁଇଟା ଫାମ୍ପି ଉଠିଥାଏ । ଡାହାଣ ହାତରେ ସେ ସାନ ମେସିନଗନ୍ ଧରିଥାନ୍ତି, ବାମ ହାତରେ କୋଟ୍‌ର କଲାର ଧରି ଟାଣି ରଖିଥାନ୍ତି । ମୁହଁରୁ ବାହାରୁଥାଏ କାଫିର ହାକୁଟି ।

ଅନ୍ଧକାରରେ ତାଙ୍କ ପଛକୁ ଲାଗି ପାବ୍‌ଲୋ ଚାଲୁଥାଏ । ସେ କହିଲା

'ଇଂରେଜ, ଆମେ ସଫଳ ହେବା ଆଶା ଦେଖାଇ ମୁଁ ଏମାନଙ୍କୁ ଆଣିଛି । ତାଙ୍କୁ ହତାଶ କଲା ଭଳି କିଛି କହିବ ନାହିଁଟି ?'

ରବର୍ଟ ଜର୍ଡ୍ଡାନ୍ କହିଲେ 'ଭଲ କଥା । ସମସ୍ତେ ମିଶି କାମ ହାସଲ କର ।'

ପାବ୍‌ଲୋ ସନ୍ତର୍ପଣରେ କହିଲା 'ତାଙ୍କର ୬ଟା ଘୋଡ଼ା ମଧ୍ୟ ଅଛି ।'

ରବର୍ଟ ଜର୍ଡ୍ଡାନ୍ କହିଲେ 'ବେଶ୍ କଥା । ଆମେ ସବୁ ଘୋଡ଼ା ଏକାଠି ରଖିବା ।'

ପାବ୍‌ଲୋ କହିଲା 'ହଉ ତେବେ ।'

ରବର୍ଟ ଜର୍ଡ୍ଡାନ୍ ଭାବିଲେ 'ବୋଧହୁଏ ହ୍ୱାର୍‌ସସ୍ ଅଭିମୁଖେ ଗଲାବେଳେ ପାବ୍‌ଲୋ ବୁଢ଼ାର ମତ ପୂରା ବଦଳି ନାହିଁ । କିନ୍ତୁ ତାହାର ଫେରି ଆସିବା ଏକ ଅଦ୍ଭୁତ ଘଟଣା । ତାକୁ ବଡ଼ପଣ ଦେବାପାଇଁ କୌଣସି ସମସ୍ୟା ଜାତ ହେବ ନାହିଁ ।'

ପାବ୍‌ଲୋ କହିଲା 'ସେ ପାଞ୍ଚଜଣଙ୍କୁ ନେଇ ମୁଁ ତଳମୁଣ୍ଡ ଘାଟି କଥା ବୁଝିବି ଯାହା ସୋର୍ଡୋ କରିଥାନ୍ତା । ମୁଁ ତାର କାଟିଦେଇ ପୂର୍ବ କଥା ଅନୁସାରେ ପୋଲ ଉପରକୁ ଯିବି ।'

ଏସବୁ କଥା ତ ୧୦ ମିନିଟ ପୂର୍ବରୁ ଠିକ୍ କରିଅଛୁ । ପୁଣି ସେକଥା ଉଠାଇବା ଦେଖି ରବର୍ଟ ଜର୍ଡ୍ଡାନ୍ ବିସ୍ମିତ ହେଲେ ।

ପାବ୍‌ଲୋ କହିଲା "ସେଠାରୁ ଆମର ଗ୍ରିଡୋସ୍ ଯିବାର ସମ୍ଭାବନା ଅଛି । ପ୍ରକୃତରେ ଏହି ବିଷୟରେ ମୁଁ ବହୁତ ଚିନ୍ତା କରିଅଛି ।"

ରବର୍ଟ ଜର୍ଡ୍ଡାନ୍ ମନେ ମନେ କହିଲେ "ହଁ, ତୁ ଗତ କେତେ ମିନିଟ ମଧ୍ୟରେ ଏକ ପ୍ରେରଣା ପାଇଅଛୁ । ତୁ ଆଉ ଏକ ଅଜଣା ଦୃଶ୍ୟ ଦେଖି ପାରିଛୁ । କିନ୍ତୁ ମୋତେ ତୁ ସେକଥାରେ ପ୍ରତାରଣା ଦେଇ ପାରିବୁ ନାହିଁ । ମୋତେ ଏସବୁ ବିଶ୍ୱାସ କରିବାକୁ କହିବୁ ନାହିଁ ।"

ପାବ୍‌ଲୋ ଗୁହାକୁ ଫେରି ୫ ଜଣ ଲୋକ ଆଣିଛି ବୋଲି କହିବା କ୍ଷଣଠାରୁ ରବର୍ଟ ଜର୍ଡ୍ଡାନ୍ ତା ପ୍ରତି ପ୍ରସନ୍ନ ହୋଇ ଉଠିଥିଲେ । ସମଗ୍ର ଉଦ୍ୟମଟି ଯେଉଁ ଶୋଚନୀୟ ପରିସ୍ଥିତି ଆଡ଼କୁ ଗତି କରୁଥିଲା ପାବ୍‌ଲୋ ତାହା ବଦଳାଇ ଦେବାରୁ ଏବଂ ପାବ୍‌ଲୋ ନିଜେ ଫେରି ଆସିବାରୁ ସେ ଭାବିଲେ ଯେ ତାଙ୍କର ଭାଗ୍ୟ ସୁପ୍ରସନ୍ନ ହୋଇ ଉଠିଛି । ଅଥଚ ସେ ଭାଗ୍ୟ ଉପରେ ଆଦୌ ଅନ୍ଧାବାନ୍ ନଥିଲେ । କିନ୍ତୁ ସବୁ କଥା ବର୍ତ୍ତମାନ ଭଲ ଆଡ଼କୁ ଗତି କଲାଣି ଏବଂ କାର୍ଯ୍ୟ ହାସଲ ହେବା ସମ୍ଭବ । ନିଶ୍ଚିତ ଅସାଫଲ୍ୟ ବଦଳରେ ତାଙ୍କ ମନ ଉତ୍ସାହରେ ଫୁଲି ଉଠିଲା ଯେମିତି ରବର ଚକ

ପମ୍ପ୍ ଦ୍ୱାରା ପବନ ପାଇ ଧୀରେ ଧୀରେ ଫୁଲଉଠିଥାଏ । ପ୍ରଥମେ କିଛି ବାରି ହୁଏନାହିଁ କିନ୍ତୁ ପବନ ଭରିବା ଆରମ୍ଭ ହେଲେ ରବର ଟିଉବ୍ ଟିକିଏ ହଲଚଲ ହୋଇ ଧୀରେ ଧୀରେ ଫୁଲିଉଠେ ଯେମିତି ଦୃଢ଼ଭାବରେ ଗଛର କୁଆଁ ଗଜରିଥାଏ । ରବର୍ଟ କଲିନ୍ ପ୍ରଥମେ ହତାଶ ହୋଇ ଉଠିଥିଲେ, ଆଶଙ୍କା ମଧ୍ୟ କରିଥିଲେ କିନ୍ତୁ ଶେଷକୁ କାର୍ଯ୍ୟାରମ୍ଭ ପୂର୍ବରୁ ଆଶା ସୁଖରେ ବିଭୋର ହୋଇଗଲେ ।

ଏହାହିଁ ହେଉଛି ତାଙ୍କର ସବୁଠାରୁ ବଡ଼ ବୈଶିଷ୍ଟ୍ୟତା, ଏହି ଶକ୍ତି ତାଙ୍କୁ ଯୁଦ୍ଧ ପାଇଁ ଯୋଗ୍ୟ କରିଅଛି । ପରିଣାମ ଯେତେ ଖରାପ ହେଲେ ମଧ୍ୟ ତାକୁ ଉପେକ୍ଷା ନକରି ଘୃଣା କରିବା ହେଉଛି ସେହି ଶକ୍ତିର ନିଦର୍ଶନ । ଅଧିକ ଗୁଡ଼ାଏ ଦାୟିତ୍ୱ ଅନ୍ୟ ପାଇଁ ଲଦି ଦେଲେ କିମ୍ବା ଉଚିତମତେ ପରିକଳ୍ପନା ନକରି କାମ କରାଇଲେ କିମ୍ବା ଖରାପ ଧରଣରେ ଯୋଜନା ପ୍ରସ୍ତୁତ କଲେ ଏହି ଶକ୍ତି ନଷ୍ଟ ହୋଇଯାଏ । କାରଣ ଏପରି ବିଷୟମାନଙ୍କରେ ମନ୍ଦ ପରିଣାମ ଓ ଅସାଫଲ୍ୟକୁ ଉପେକ୍ଷା କରି ହେବ ନାହିଁ । ବ୍ୟକ୍ତିଗତ କ୍ଷତିର ସମ୍ଭାବନା ଏକମାତ୍ର ବସ୍ତୁ ନୁହେ ଯାହାକି ଉପେକ୍ଷା କରିହେବ । ସେ ଜାଣିଥିଲେ ଯେ ସେ ନିଜେ କିଛି ନୁହନ୍ତି । ମୃତ୍ୟୁ ମଧ୍ୟ କିଛି ନୁହେ । ଅନ୍ୟ ବିଷୟ ପରି ଏକଥା ମଧ୍ୟ ସେ ପ୍ରକୃତରେ ଜାଣି ପାରିଥିଲେ । ଗତ କେତେଦିନ ଭିତରେ ସେ ଜାଣି ପାରିଥିଲେ ଯେ ଆଉ ଜଣକ ସହିତ ମିଶିଲେ ସବୁକିଛି ହୋଇ ପାରିବେ । କିନ୍ତୁ ମନେ ମନେ ବୁଝିଥିଲେ ଏହା ଏକ ବ୍ୟତିରେକ । ଏହାହିଁ ତାଙ୍କର ଅଛି ବୋଲି ସେ ଭାବିଲେ । ସେ ବିଷୟରେ ସେ ମହା ଭାଗ୍ୟବାନ୍ । ସେ କେବେ ଲୋଡ଼ି ନଥିବାରୁ ଏପରି ଭାଗ୍ୟ ଲାଭ କରି ଅଛନ୍ତି । ତାହା ହଜିବ ନାହିଁ କି କେହି ଛଡ଼ାଇ ନେଇ ପାରିବ ନାହିଁ । କିନ୍ତୁ ଆଜି ସକାଳେ ସବୁ ଶେଷ ହୋଇଯାଇଛି ବାକି ରହିଛି କର୍ତ୍ତବ୍ୟ ପାଳନ ।

ସେ ପୁଣି ନିଜକୁ ସମ୍ବୋଧନ କରି କହିଲେ ତୋର ଯାହା ଅତି ଜରୁରୀ ଆବଶ୍ୟକ ଥିଲା ତାହା ଫେରି ପାଉଅଛୁ ଦେଖି ତୁ ଆନନ୍ଦିତ । ତୋର ପ୍ରକୃତରେ ବଡ଼ ଖରାପ ଦଶା ଘଟିଥିଲା । କିଛି ସମୟ ଲଜ୍ଜା ବୋଧ କରିଥିଲୁ । ସବୁ ତ ତୋ ନିଜ କଥା । ତୁ ନିଜକୁ ବା ବିଗୃର କରନ୍ତୁ କପରି ? ଏଠି ସମସ୍ତେ ଦୁର୍ଯୋଗରେ ପଡ଼ିଥିଲେ । ଅଭ ଯେ ମନ୍ଦ କଥା । ପାଗଳପରି ଆଉ ଅଫଳପ୍ରଦ ଚିନ୍ତା କରିବ ନାହିଁ । ଗୋଟି ଗୋଟି କରି ମନ୍ଦ ଭାବିବ । ବର୍ତ୍ତମାନ ସବୁ ଠିକ୍ ହୋଇ ଯାଇଅଛି । ଆଉ ମେରିଆ କଥା ଉନ୍ନତମାମ ଭାବିବ ନାହିଁ । ତାକୁ ଏଥିରୁ ପୃଥକ ରଖିବା ଛଡ଼ା ତାହାର ରକ୍ଷା ପାଇଁ ଅନ୍ୟ କିଛି କରି ହେବନାହିଁ । ସେଇଆ ତ କରୁଅଛୁ । ଲକ୍ଷଣରୁ ବାରିପାରିଲେ ଯେ ବହୁତ ଘୋଡ଼ା ଆସୁଅଛି ବୁଝିବ । ତା ପାଇଁ ସବୁଠାରୁ ଭଲ କାମ

ହେବ ତୁମ କାମ ଖୁବ୍ ଦ୍ରୁତ ସମାଧାନ କରି ଫେରି ଆସିବା । ତା କଥା ଚିନ୍ତା କଲେ ତୁମ କାମ ବାଧା ପାଇବ । ଏଣୁ ତା କଥା ଭାବନାହିଁ ।

ଏହି ସବୁ ଚିନ୍ତା କରିସାରି ସେ ମେରିଆ, ପିଲାର୍ ଏବଂ ରାଫେଲ୍ ଘୋଡ଼ାମାନଙ୍କୁ ନେଇ ଚାଲି ଚାଲି ଆସି ମହଞ୍ଚିବା ପର୍ଯ୍ୟନ୍ତ ଅପେକ୍ଷା କଲେ । ଅନ୍ଧାରରେ ମେରିଆକୁ ଡାକି କହିଲେ "ପ୍ରିୟେ, କିପରି ଅଛ ?"

ମେରିଆ କହିଲା "ରବର୍ଟୋ, ମୁଁ ଭଲ ଅଛି ।"

"କୌଣସି ବିଷୟରେ ଚିନ୍ତା କରିବୁ ନାହିଁ ।" ଏତିକି କହି ସେ ବାମହାତରେ ବନ୍ଧୁକଟା ଧରି ତା କାନ୍ଧରେ ହାତ ଥୋଇଲେ । ମେରିଆ ଚିନ୍ତା କରୁନାହିଁ ବୋଲି କହିଲା ।

"ଆମର ସବୁ ଉଚିତମତେ ସଙ୍ଗଠିତ ହୋଇଅଛି । ରାଫେଲ୍ ତୋ ପାଖରେ ଘୋଡ଼ା ଜଗିବାକୁ ରହିବ ।"

"ମୁଁ କିନ୍ତୁ ତୁମ ସାଙ୍ଗରେ ରହିବାକୁ ଚାହେଁ ।"

"ନା, ଘୋଡ଼ା ପାଖରେ ରହିବା ତୋର ସବୁଠାରୁ ଦରକାରି କାମ ।"

"ହଉ ତେବେ ମୁଁ ରହିବି ।"

ପାହାଡ଼ ଖୋଲ ଭିତରୁ ଏତିକିବେଳେ ଗୋଟାଏ ଘୋଡ଼ା ହ୍ରେଷାଧ୍ୱନି କରି ଉଠିଲା । ଆଉ ଗୋଟାଏ ଘୋଡ଼ା ତହିଁର ପ୍ରତ୍ୟୁତ୍ତର ଦେଲା । ସେ ଧ୍ୱନି ଖୁବ୍ ତୀକ୍ଷ୍ଣ ଏବଂ ରହିରହି ହେଲା । ରବର୍ଟ ଜର୍ଡାନ୍ ଅନ୍ଧାରରେ ଅଧିକାଂଶ ଘୋଡ଼ାକୁ ସମ୍ମୁଖରେ ଦେଖି ପାରିଲେ । ସେ ପାବ୍ଲୋ ସହିତ ଆଗବଢ଼ି ଘୋଡ଼ାଙ୍କ ନିକଟକୁ ଗଲେ । ଲୋକମାନେ ନିଜ ନିଜ ଘୋଡ଼ା ପାଖରେ ଠିଆ ହୋଇଥାନ୍ତି ।

ରବର୍ଟ ଜର୍ଡାନ୍ ତାଙ୍କୁ ନମସ୍କାର କଲେ । ସେମାନେ ମଧ୍ୟ ଅନ୍ଧାରରେ ପ୍ରତିନମସ୍କାର ଜଣାଇଲେ । ତାଙ୍କର ମୁହଁ ସେ ଦେଖି ପାରିଲେ ନାହିଁ । ପାବ୍ଲୋ କହିଲା "ଇଏ ହେଉଛନ୍ତି ଆମ ସଙ୍ଗରେ କାମ କଲାବାଲା ଇଂରେଜ । ଇଏ ଡାଇନାମାଇଟ୍ ଫୁଟାଇବେ ।" କେହି ମୁହଁ ଫିଟାଇ କିଛି କହିଲେ ନାହିଁ । ହୁଏ ତ ଅନ୍ଧାରରେ ମୁଣ୍ଡ ହଲାଇଲେ ।

ଜଣେ ଲୋକ କହିଲା "ପାବ୍ଲୋ, ଚାଲ ଯାତ୍ରା କରିବା । ଶୀଘ୍ର ସକାଳ ହୋଇଯିବ ।"

ଆଉ ଜଣେ ପଚାରିଲା "କିଛି ଅଧିକ ହାତବୋମା ଆଣିଛ ତ ?"

ପାବ୍‌ଲୋ କହିଲା "ଯଥେଷ୍ଟ । ଆମେ ଘୋଡ଼ାଙ୍କୁ ଛାଡ଼ିଲାବେଳେ ତୁମ୍ଭେମାନେ ନିଜ ନିଜର ଭାଗ ନେଇନିଅ ।"

ଆଉ ଜଣେ କହିଲା "ଚାଲ ତେବେ ଯିବା । ଅଧାରାତି ତ ଏଇଠି ଆପେକ୍ଷା କରି ବସିଲି ।" ପିଲାର ଆସିବାରୁ ଆଉ ଜଣେ ତାକୁ ସ୍ୱାଗତ ଜଣାଇଲା ।

ପିଲାର୍ ଘାଘଡ଼ା ସ୍ୱରରେ କହିଲା "କଏ ପେପିକରେ ? କେମିତି ଅଛୁ ?"

'ଭଲ' ଲୋକଟା ଜବାବ ଦେଲା ।

ପିଲାର କହିଲା "ତୁ କୋଉ ଘୋଡ଼ା ଚଢ଼ିବୁ ?"

ସେ ଉତ୍ତର କଲା "ପାବ୍‌ଲୋର ଧୂସରଆ ଘୋଡ଼ାଟା ଖୁବ୍ ବଢ଼ିଆ ।"

ଆଉଜଣେ କହିଲା "ଚାଲ ଯିବା, ଏଠି ରହି ବାଜେ ଗପ କରିବା ଲାଭ ନାହିଁ ।" ସେ ଘୋଡ଼ା ଚଢ଼ିଲାବେଳେ ପିଲାର୍ ତାକୁ ପଚାରିଲା "ତୁ କେମିତି ଅଛୁ ଏଲସିଓ ?"

ସେ ରୁକ୍ଷଭାବରେ ଜବାବ ଦେଲା "କେମିତି କଅଣ ? ଚାଲ୍‌ଲୋ ମାଇକିନିଆଁ, ଆମର ବହୁତ କାମ ଅଛି ।"

ପାବ୍‌ଲୋ ତାହାର କସଧା ବଡ଼ ଘୋଡ଼ାରେ ଚଢ଼ିଲା "କହିଲା ସମସ୍ତେ ମୁହଁ ବନ୍ଦକରି ମୋ ପଛେ ପଛେ ଆସ । ଯେଉଁଠାରେ ଘୋଡ଼ାକୁ ଛାଡ଼ିବା ମୁଁ ସେ ସ୍ଥାନ ଦେଖାଇ ଦେବ ।"

# ଚାଳିଶ ପରିଚ୍ଛେଦ

ରବର୍ଟ ଜର୍ଡ୍ଡାନ୍ ଯେତେବେଳେ ଯାଏ ଶୋଇଥିଲେ, ପୋଲ୍ ଧ୍ୱଂସ କରିବା ଯୋଜନା ଯେତେ ସମୟ ପାଞ୍ଚୁଥିଲେ ଏବଂ ଯେତେ ସମୟ ସେ ମେରିଆ ସଙ୍ଗରେ ଥିଲେ ଆଣ୍ଡ୍ରିସ୍ ଧୀରେ ଧୀରେ ଅଗ୍ରସର ହୋଇଥିଲା । ଗଣତନ୍ତ୍ରଦଳର ସୀମାରେ ପହଞ୍ଚିବା ଯାଏ ସେ ଖୋଲା ସ୍ଥାନ ଦେଇ ଏବଂ ଫ୍ୟାସିଷ୍ଟଙ୍କ ସୀମା ଭିତରେ ବାଟଘାଟ ଜାଣିଥିବା ଗାଉଁଲି ସ୍ୱାସ୍ଥ୍ୟବାନ ଲୋକ ଭଳି ଖୁବ୍ ଦ୍ରୁତଭାବରେ ଯାଇଥିଲା କିନ୍ତୁ ଗଣତନ୍ତ୍ର ସୀମା ଭିତରେ ପହଞ୍ଚିଲାପରେ ସେ ଅତି ଧୀରେ ଧୀରେ ଚାଲିଲା ।

ରବର୍ଟ ଜର୍ଡ୍ଡାନ୍ ଏସ. ଆଇ. ଏମ୍. ମୋହର ଯୁକ୍ତ ଯେଉଁ ଗୁଡ଼ପତ୍ର ଦେଇଥିଲେ ଏବଂ ସେହି ମୋହର ମାରି ଯେଉଁ ଚଠି ଦେଇଥିଲେ ତାହା ଦେଖାଇଲା ମାନେ ତାକୁ ଅତି ଦ୍ରୁତ ନେଇ ଗନ୍ତବ୍ୟ ସ୍ଥାନରେ ପହଞ୍ଚାଇବା ହେଉଛି କାଗଜପତ୍ରରେ ଲିଖିତ ନିୟମ । କିନ୍ତୁ ପ୍ରଥମ ଦଫାରେ ସେ ପଡ଼ିଗଲା ଗୋଟିଏ ଦଳ ସୈନିକର ନାୟକ ହାତୁଡ଼ରେ । ଲୋକଟା ଅତି ସାଙ୍ଘାତିକ ଭାବରେ ତାକୁ ସନ୍ଦେହ କରିବାକୁ ଲାଗିଲା ।

ସେ ଏହି ଦଳପତି ସାଙ୍ଗରେ 'ବାଟାଲିୟନ୍' କାର୍ଯ୍ୟାଳୟରେ ପହଞ୍ଚିଲା । ସେ ଦଳର ଅଧିନାୟକ ଥିଲେ ଯେଉଁ ବ୍ୟକ୍ତି ସେ ଆନ୍ଦୋଳନ ପୂର୍ବରୁ ଭଣ୍ଡାରି କାମ କରୁଥିଲେ । ଆଣ୍ଡ୍ରିସର ଉଦ୍ଦେଶ୍ୟ ବୁଝିପାରି ସେ ଖୁବ୍ ଉତ୍ସାହୀ ହୋଇ ଉଠିଲେ । ଏହାଙ୍କର ନାମ ହେଉଛି ଗୋମେଜ୍ । ଗୋମେଜ୍ ଜମାଦାର ନାୟକଙ୍କୁ ତାଙ୍କ ଓଲୁପଣିଆ ପାଇଁ ବହୁତ ଗାଳିଦେଲେ । ଆଣ୍ଡ୍ରିସ୍ ପିଠି ଥାପୁଡ଼େଇ ତାକୁ ଅପକୃଷ୍ଟ ବ୍ରାଣ୍ଡି ପିଆଇଲେ ଏବଂ ନିଜେ ପୂର୍ବେ ଭଣ୍ଡାରି ଥିଲାବେଳେ ମଧ୍ୟ ଗରିଲା ବାହିନୀରେ ମିଶିବାକୁ

ଇଚ୍ଛୁକ ଥିଲେ ବୋଲି କହିଲେ । ଏହାପରେ ସେ ତାଙ୍କର ହୁକୁମ ନେବା ଆଣିବା କରୁଥିବା ସନ୍ଧିକାରୀ ହାତରେ ସୈନ୍ୟଦଳର ଦାୟିତ୍ୱ ଦେଇ ଚପରାସିକୁ ଉଠାଇ ମୋଟରସାଇକଲ୍ ଚଢ଼ାଳିକୁ ଡକାଇ ପଠାଇଲେ । ମୋଟର ଚଢ଼ାଳି ସାଙ୍ଗରେ ଆଣ୍ଡ୍ରିସ୍‌କୁ ବ୍ରିଗେଡ଼ କେନ୍ଦ୍ରକୁ ନପଠାଇ ସେ ତାକୁ ନିଜେ ନେଇ ସେଠାକୁ ବାହାରିଲେ । ଏହାଦ୍ୱାରା ଶୀଘ୍ର କାମ ହେବ ବୋଲି ସେ ଭାବିଲେ । ମୋଟର ସାଇକଲ୍ ପଛ ଆସନରେ ଆଣ୍ଡ୍ରିସ୍ ଶକ୍ତ ହୋଇ ବସିଲା । ମୋଟର ସାଇକଲ୍ ଖାଲଢିପ ପୂର୍ଣ୍ଣ ପାର୍ବତ୍ୟ ରାସ୍ତାରେ ଧଡ଼ଧାଡ଼ ହୋଇ ଦୁଇ ଧାଡ଼ି ଗଛ ଭିତରେ ଧାଇଁଲା । ଗୋଲି ବାଜି ଗଛମାନଙ୍କରୁ ଛେଲି ଛାଡ଼ି ଯାଇଥାଏ । ଏହା ଘଟିଥିଲା ଆନ୍ଦୋଳନ ଆରମ୍ଭବେଳେ ପ୍ରଥମ ଯୁଦ୍ଧରେ । ଯେଉଁ ଗ୍ରେଟ ସହରରେ ବ୍ରିଗେଡ଼ କେନ୍ଦ୍ର ସ୍ଥାପିତ ହୋଇଥିଲା ସେଠାରେ ପହଞ୍ଚି ସେ ଅଫିସ ଘର କାଛରେ ମୋଟର ସାଇକଲ ଡେରି ଦେଇ ଭିତରକୁ ଗଲେ । ନିଦରେ ଆଖି ଢୁଲୁ ଢୁଲୁ କରି ଜଣେ ପ୍ରହରୀ ତାଙ୍କୁ ଠିଆ ହୋଇ ଅଭିବାଦନ କଲା । ବଡ଼ ପ୍ରକୋଷ୍ଠ କାଛରେ ଅନେକ ମାନଚିତ୍ର ଟଙ୍ଗା ହୋଇଥାଏ । ଜଣେ ଅଫିସର୍ ଅଧାନିଦରେ ଗୋଟିଏ ଗ୍ରେଟ ବତି ଜଳାଇ ଟେବୁଲ୍ ପାଖରେ ବସିଥାନ୍ତି । ତାଙ୍କ ପାଖରେ ୨ଟା ଟେଲିଫୋନ୍ ଏବଂ 'ମୁଣ୍ଡ ଓବ୍ରେରୋ' ବନ୍ଧୁଖଣ୍ଡିକ ଥୁଆ ।

ଅଫିସର୍ ଗୋମେଜ୍‌ଙ୍କୁ ଦେଖି ପଚାରିଲା "ତୁମେ ନିଜେ କାହିଁକି ଆସିଲ ?, ଟେଲିଫୋନ୍ କଥା କଅଣ ତୁମକୁ ଜଣାନାହିଁ ?"

ଗୋମେଜ୍ କହିଲେ "ମୁଁ ଲେଫ୍‌ଟେନାଣ୍ଟ୍ କର୍ଣ୍ଣେଲଙ୍କୁ ଦେଖା କରିବାକୁ ଚାହେଁ ।"

ଅଫିସର୍ ଜବାବ ଦେଲେ "ସେ ଶୋଇଛନ୍ତି । ତୁମ ସାଇକଲ୍‌ର ଆଲୁଅ ମୁଁ ମାଇଲିଏ ଦୂରରୁ ଦେଖି ପାରିଥିଲି । ତୁମେ କଅଣ ଏଠାରେ ଗୋଳିବୃଷ୍ଟି କରାଇବାକୁ ଚାହ ?"

ଗୋମେଜ୍ କହିଲେ "ଲେଫ୍‌ଟେନାଣ୍ଟ୍ କର୍ଣ୍ଣେଲଙ୍କୁ ଖବର ଦିଅ । ଖୁବ ଜରୁରୀ ସମ୍ବାଦ ଅଛି ।"

"କହିଲି ତ ସେ ଶୋଇଛନ୍ତି । ଏହି ଡାକୁ ଜଣକ ତୁମ ସାଙ୍ଗରେ କିଏ ?"

"ସେ ଆମ ଲାଇନ୍‌ର ଅପରପାଖର ଜଣେ ଗରିଲା । ସେ ସେନାପତି ଗୋଲ୍‌ଜଙ୍କ ପାଇଁ ବିଶେଷ ଜରୁରୀ ସମ୍ବାଦ ଆଣିଅଛି । ସକାଳେ ନାସ୍ତସେରାଡା

ଆକ୍ରମଣ ହେବା କଥା । ସେନାପତି ଗୋଲ୍‌ଜ ତାହାର ଅଧିନାୟକ । ସେହି ସମ୍ବନ୍ଧରେ ସମ୍ବାଦ । ଭଗବାନଙ୍କ ଦୋହାଇ, ତାଙ୍କୁ ଉଠାଅ ।" ଗୋମେଜ୍ ଉତ୍ତେଜିତ ଓ ଆଗ୍ରହରେ ଏତିକି କହିଲେ ।

ଅଫିସର୍ ଜଣକ ଚଷମାପିନ୍ଧା । ଆଖି ଅଧାବନ୍ଦ କରି କହିଲେ "ତୁମେ ସବୁ ପାଗଳ । ମୁଁ ଗୋଲ୍‌ଜ ବୋଲି କୌଣସି ସେନାପତି କିମ୍ବା କୌଣସି ଆକ୍ରମଣ କଥା ଜାଣେ ନାହିଁ । ଏହି ଖେଳବାଡ଼କୁ ନେଇ ତୁମ ବାଟାଲିୟନ୍‌କୁ ଫେରିଯାଅ ।"

ଗୋମେଜ୍ ଦାନ୍ତ କାମୁଡ଼ି କହିଲେ "ମୁଁ କହୁଛି, ଯାଅ, ଲେଫ୍‌ଟେନାଣ୍ଟ୍ କର୍ଣ୍ଣେଲଙ୍କୁ ଉଠାଅ ।"

"ତୁ ଗାତକୁ ଯା" ବୋଲି ଗାଳିଦେଇ ଅଫିସର୍ ଜଣକ ମୁହଁ ଫେରାଇଲା ।

ଗୋମେଜ୍ ନିଜର ଭାରି ପିସ୍ତଲ୍ ଖୋପରୁ ବାହାର କରି ଅଫିସର୍ କାନ୍ଧକୁ ଲକ୍ଷ୍ୟ କରି କହିଲେ "ବଦମାସ ଫ୍ୟାସିଷ୍ଟ୍, ଯା' ତାଙ୍କୁ ଉଠାଇଦେ ନଚେତ୍ ତୋତେ ଗୁଳି କରିବି ।"

ଅଫିସର୍ କହିଲେ "ହଉ ଧୈର୍ଯ୍ୟଧର । ତୁମ ଭଣ୍ଡାରି ଜାତିଟା ଅତି ଭାବପ୍ରବଣ ।"

ଆଣ୍ଡ୍ରେସ୍ ଦେଖିଲା ଯେ ଗୋମେଜ୍‌ଙ୍କ ମୁହଁ ଘୃଣାରେ କଣ୍ଟକିତ ହୋଇ ଉଠିଲା କିନ୍ତୁ "ତାଙ୍କୁ ଜାଗ୍ରତକର" ଛଡ଼ା ସେ ଆଉ କିଛି କହି ନଥିଲେ ।

ଅତି ଅବଜ୍ଞାରେ ଅଫିସର୍ ଚପରାସୀକୁ ଡାକିଲେ । ଜଣେ ସୈନିକ ଆସି ଦୁଆରେ ଠିଆ ହୋଇ ସଲାମ୍ କଲା ଏବଂ ଚାଲିଗଲା । ଅଫିସର କହିଲେ "ସେ ତାଙ୍କର ବାଗଦତ୍ତା ସ୍ତ୍ରୀଙ୍କ ପାଖରେ ଅଛନ୍ତି । ସେ ନିଶ୍ଚୟ ତୁମକୁ ଦେଖି ଖୁସି ହେବେ ।" ଏତିକି କହି ସେ ପଢ଼ିବାରେ ମନଦେଲା । ଗୋମେଜ୍ କହିଲେ ତୋ ପରି ଲୋକ ଯୁଦ୍ଧ ଜିଣିବାରେ ଅନ୍ତରାୟ ।" ଅଫିସର୍ ସେ କଥାରେ କର୍ଣ୍ଣପାତ କଲେ ନାହିଁ । ପଢ଼ୁ ପଢ଼ୁ ସ୍ୱଗତଃ ଉକ୍ତି କଲେ "ଏ ଖଣ୍ଡିକ କୌତୁକପୂର୍ଣ୍ଣ ମାସିକ ପତ୍ରିକା ।"

ଗୋମେଜ୍ କହିଲେ "ତେବେ ତୁ 'ଡ଼ିବେଟ୍' ନାମକ ପତ୍ରିକା ପଢ଼ୁନାହୁଁ ? ତାହାହିଁ ତୋର ମନମାଫିକ୍ କାଗଜ ।' ସେଇଟି ଆନ୍ଦୋଳନ ପୂର୍ବରୁ ମାଦ୍ରିଦ୍‌ଠାରୁ

ପ୍ରକାଶିତ ହେଉଥିଲା ଏବଂ କାଥଲିକ୍ ରକ୍ଷଣଶୀଳ ଦଳର ସବୁଠାରୁ ବଡ଼ ପତ୍ରିକାଥିଲା ।

ଅଫିସର୍ କହିଲେ "ମନେରଖ ଯେ ମୁଁ ତୋ ଉପରସ୍ଥ ହାକିମ । ତୋ ନାମରେ ଅଭିଯୋଗ କଲେ ତାହାର ଫଳ ଖରାପ ହେବ । ମୋତେ ଅପବାଦ ଦେ ନାହିଁ । ମୁଁ କେବେ 'ଉବେଟ୍' ପତ୍ରିକା ପଢ଼େନାହିଁ ।"

ଗୋମେଜ୍ କହିଲେ "ନା । ତୁ ଏ. ବ. ସି ପଢ଼ିଥାଉ ! ତୋ ଭଳି ଲୋକ ଥିବାରୁ ଆମର ସୈନ୍ୟବାହିନୀ ଅତି ନିକମା ହୋଇ ରହିଅଛି । ତୁମେ ସବୁ ପେଶାଦାର ସୈନ୍ୟ । କିନ୍ତୁ ଏ ଅବସ୍ଥା ସବୁଦିନେ ରହିବ ନାହିଁ । ଆମେ ଏକଆଡ଼େ ମୂର୍ଖ ଅନ୍ୟ ଆଡ଼େ ଅବିଶ୍ୱାସୀ, ଏମିତି ଘେରରେ ପଡ଼ି ଯାଇଅଛୁ । କିନ୍ତୁ ଆମେ ମୂର୍ଖଙ୍କୁ ଶିକ୍ଷା ଦେବୁ ଏବଂ ଅନ୍ୟ ଦଳର ମୂଳୋତ୍ପାଟନ କରିବୁ ।"

ଅଫିସର୍ ଜଣକ ତାଙ୍କ ଆଡ଼କୁ ନଚାହିଁ କହିଲେ "ବିଶୁଦ୍ଧିକରଣ ଶବ୍ଦଟା ଯଥାର୍ଥରେ ତୁମେ କହିବାକୁ ଚାହ । ଏଥିରେ ତୁମର ପ୍ରସିଦ୍ଧ ରୁଷୀୟମାନଙ୍କର ଅଧିକ ବିଶୁଦ୍ଧିକରଣ ଖବର ବାହାରି ଅଛି । ଇପସମ୍ ଲବଣ ଅପେକ୍ଷା ସେମାନେ ଅଧିକ ପ୍ରବଳ ଜୁଲାପ ପ୍ରୟୋଗ କରୁଅଛନ୍ତି ।"

ଗୋମେଜ୍ କହିଲେ "ଯେଉଁ ଶବ୍ଦ ପ୍ରୟୋଗ କର କ୍ଷତି ନାହିଁ । ଖାଲି ତୁମ ଭଳି ଅପଦାର୍ଥ ନିଶ୍ଚିହ୍ନ ହେଲେ ହେଲା ।"

ନିଜକୁ କହିଲା ଭଳି ଢଙ୍ଗରେ ଅଫିସର୍ ଜଣକ କହିଲେ "ନିଶ୍ଚିହ୍ନ । ଇଏତ ଗୋଟାଏ ନୂଆ ଶବ୍ଦ । ଏଥିରେ ତ କାଷ୍ଟିଲିଆନ୍‌ର କିଛି ଗନ୍ଧ ନାହିଁ ।"

ଗୋମେଜ୍ କହିଲେ "ତେବେ ଭୁଲ କରିଦିଅ ଏପରି ପ୍ରୟୋଗ କାଷ୍ଟିଲିଆନ୍ ଗନ୍ଧଯୁକ୍ତ ହେବା ବୁଝିପାରୁଛ ତ ?"

"ହଁ । କିନ୍ତୁ ଏତେ ବଡ଼ପାଟିରେ କଥା କୁହନାହିଁ । ଲେଫ୍‌ଟେନାଣ୍ଟ୍ କର୍ଣ୍ଣେଲ ଛଡ଼ା ଏହି ବ୍ରିଗେଡ଼ କେନ୍ଦ୍ରରେ ଅନ୍ୟମାନେ ମଧ୍ୟ ଅଛନ୍ତି । ତୁମର ଭାବପ୍ରବଣତା ମୋତେ ବାଧୁଚି । ଏହି କାରଣରୁ ମୁଁ ନିଜେ ହାତରେ କ୍ଷୌର ହେଉଥିଲି । ମୁଁ କଥାବାର୍ତ୍ତା କରିବା ପସନ୍ଦ କରୁ ନଥିଲି ।"

ଗୋମେଜ୍ ଆଣ୍ଡ୍ରିସଆଡ଼କୁ ଅନାଇ ମୁଣ୍ଡ ହଲାଇଲେ । ରାଗ ଓ ଘୃଣାରେ ତାଙ୍କ ଆଖି ଦାଉ ଦାଉ କରି ଉଠିଲା । ଭବିଷ୍ୟତ୍‌ରେ କିଛି କରିବେ ବୋଲି ଭାବି ସେ ଆଉ

ମୁହଁ ଫିଟାଇଲେ ନାହିଁ । ଗତ ଦେଢ଼ବର୍ଷ ମଧ୍ୟରେ ସେ ସିଭିଲ୍ ଯୁଦ୍ଧରେ ବାଟାଲିୟନ୍ ନାୟକ ପଦକୁ ଉତ୍ତୀର୍ଣ୍ଣ ହୋଇ ଏଭଳି ବହୁତ କଥା ମନେ ରଖିଛନ୍ତି, ଅଉ ବର୍ତ୍ତମାନ କଥା—ଏତିକିବେଳେ ଲେଫ୍‌ଟନାଣ୍ଟ୍ କର୍ଣ୍ଣେଲ ପହଞ୍ଚିଯିବାରୁ ସେ ସଳଖେ ଠିଆ ହୋଇ ତାଙ୍କୁ ଅଭିବାଦନ ଜଣାଇଲେ ।

ଲେଫ୍‌ଟନାଣ୍ଟ କର୍ଣ୍ଣେଲଙ୍କ ନାମ ହେଉଛି ମିରାଣ୍ଡା । ସେ ଆକାରରେ ଛୋଟ ଏବଂ ଅଧାବୟସୀ ମୁହଁଣ୍ଡା । ସାରାଜୀବନ ସେ ସୈନ୍ୟ ବିଭାଗରେ କଟାଇ ଅଛନ୍ତି । ମରୋକୋରେ ଯୁଦ୍ଧ କରୁଥିଲାବେଳେ ଅଜୀର୍ଣ୍ଣ ରୋଗରେ ପଡ଼ିଥିଲେ । ତାଙ୍କ ସ୍ତ୍ରୀ ମାଦ୍ରିଦ୍‌ଠାରେ ରହି ତାଙ୍କୁ ସାଶୋର ଦେଇଥିଲେ । ସ୍ତ୍ରୀକୁ ଛାଡ଼ପତ୍ର ଦେଇ ପାରିବେ ନାହିଁ ଦେଖି ସେ ଗଣତନ୍ତ୍ର ଦଳରେ ଯୋଗ ଦେଲେ । ତାଙ୍କର ଅଜୀର୍ଣ୍ଣ ରୋଗ ଭଲ ହେବାର ନୁହେ । ସେ ଗୃହଯୁଦ୍ଧରେ ଜଣେ ଲେଫ୍‌ଟନାଣ୍ଟ୍ କର୍ଣ୍ଣେଲ୍ ହୋଇ ଯୋଗ ଦେଲେ । ତାଙ୍କର ଏକମାତ୍ର ଆକାଙ୍‌କ୍ଷା ଏହି ପଦରେ ରହି ସେ ଯୁଦ୍ଧ ଶେଷ କରିବେ । ସେ ସିଟ୍‌କୁ ଭଲଭାବରେ ପ୍ରତିରକ୍ଷା କରିବାକୁ ସ୍ଥିର କରିଥିଲେ ଏବଂ ପୁଣି ଆକ୍ରାନ୍ତ ହେଲେ ସେହିଠାରେ ରହି ପ୍ରତିରକ୍ଷା କରିବାକୁ ସ୍ଥିର କରିଥିଲେ । ମାଂସ ଭୋଜନ ବାଧ୍ୟତାମୂଳକ ଭାବରେ ଊଣା କରି ଦିଆ ହେବାଯୋଗୁଁ ଯୁଦ୍ଧବେଳେ ତାଙ୍କର ସ୍ୱାସ୍ଥ୍ୟ ଅଧିକ ଭଲ ରହୁଥାଏ । ବହୁବେଶୀ ପରିମାଣରେ ବାଇସୋଡ଼ା ସେ ସବୁବେଳେ ପାଖରେ ରଖିଥାନ୍ତି । ସେ ସନ୍ଧ୍ୟାକୁ ହୁଇସ୍କି ପିଇଥିଲେ । ତାଙ୍କର ୨୩ ବର୍ଷୀୟା ରକ୍ଷିତାର ପିଲା ଜନ୍ମିବା କଥା । ଗତବର୍ଷ ଜୁଲାଇରେ ସେ ଭେଗୁଡ଼ିଏ ଝିଅ ନାରୀ ବାହିନୀରେ ଯୋଗ ଦେଇଥିଲେ ପ୍ରାୟ ସମସ୍ତେ ଗର୍ଭବତୀ । ବର୍ତ୍ତମାନ ସେ ଘରକୁ ଆସି ଗୋମେଜଙ୍କର ଅଭିବାଦନ ଗ୍ରହଣ କରି ହାତ ବଢାଇଲେ ।

ସେ ପଚାରିଲେ "ଗୋମେଜ କଅଣ ପାଇଁ ଆସିଲ ?" ଏହାପରେ ଟେବୁଲ ପାଖରେ ବସିଥିବା ନିଜର ସହକାରୀ ସେହି ଅଫିସର୍‌ଙ୍କୁ କହିଲେ "ପେପି, ଖଣ୍ଡିଏ ସିଗ୍ରେଟ୍ ଦେଲ ।"

ଗୋମେଜ୍ ତାଙ୍କୁ ଆଣ୍ଡ୍ରେସ୍ ଆଣିଥିବା ଚିଠି ଓ ଅନ୍ୟ କାଗଜପତ୍ର ଦେଖାଇଲେ ।

ଲେଫ୍‌ଟନାଣ୍ଟ କର୍ଣ୍ଣେଲ ସବୁ କାଗଜପତ୍ରରେ ଶୀଘ୍ର ଆଖି ବୁଲାଇ ଆଣ୍ଡ୍ରେସ୍ ଆଡ଼କୁ ଚାହିଁ ହସି ଦେଲେ । ଏହାପରେ ଚିଠିର ମୋହର ଆଙ୍ଗୁଳି ବୁଲାଇ ପରୀକ୍ଷା କଲେ ଏବଂ ଏହାପରେ ସବୁ କାଗଜ ଆଣ୍ଡ୍ରେସ୍‌କୁ ଫେରାଇ ଦେଇ ପଚାରିଲେ "ସେଠା ପାହାଡ଼ରେ ଚଳିବା କଅଣ ଅତି କଷ୍ଟସାଧ୍ୟ ?"

ଆଣ୍ଡ୍ରି ସ କହିଲା "ନା, ଲେଫ୍‌ଟନାଣ୍ଟ୍ କର୍ଣ୍ଣେଲ ମହାଶୟ ।"

"ଆଚ୍ଛା ସେମାନେ କଅଣ ତୋତେ କହିଥିଲେ କି ଯେ ସେନାପତି ଗୋଲ୍‌ଜଙ୍କ କର୍ମକେନ୍ଦ୍ର କେଉଁଠାରୁ ନିକଟତମ ହେବ ?"

ଆଣ୍ଡ୍ରି ସ୍ କହିଲା 'ନାଭସେରାଡ଼ାଠାରୁ, ଲେଫ୍‌ଟନାଣ୍ଟ୍ କର୍ଣ୍ଣେଲ । ଇଂରେଜ ଜଣକ ମୋତେ କହିଥିଲେ ନାଭସେରାଡ଼ାକୁ ଏହା ପାଖ ଏବଂ ସୀମା ରେଖା ଭିତରକୁ ଡାହାଣ ଆଡ଼େ ।"

"କେଉଁ ଇଂରେଜ ?" ଲେଫ୍‌ଟନାଣ୍ଟ୍ କର୍ଣ୍ଣେଲ୍ ଶାନ୍ତଭାବରେ ପଚାରିଲେ ।

"ଯେଉଁ ଇଂରେଜ ଡାଇନାମାଇଟ୍ ମାରିବାକୁ ଯାଇଅଛନ୍ତି ।"

ଲେଫ୍‌ଟନାଣ୍ଟ୍ କର୍ଣ୍ଣେଲ୍ ମୁଣ୍ଡ ହଲାଇଲେ । ଏହା ଏହି ଯୁଦ୍ଧର ଏକ ଆକସ୍ମିକ ଦୁର୍ଲ୍ଲଭ ବସ୍ତୁ । "ଯେଉଁ ଇଂରେଜ ଆମ ଦଳରେ ଡାଇନାମାଇଟ୍ ବିସ୍ଫୋରଣ କରିବାକୁ ଅଛି ।" ସେ ଗୋମେଜ୍‌ଙ୍କୁ କହିଲେ "ତୁମେ ଏହାଙ୍କୁ ତୁମ ମୋଟରରେ ନେଇଯାଅ । ଖଣ୍ଡିଏ ଛାଣୁଆ ଛାଡ଼ପତ୍ର ସେନାପତି ଗୋଲଜଙ୍କ ପାଖକୁ ଲେଖି ମୋଠାରୁ ଦସ୍ତଖତ କରାଇ ନେବ । ପେପି, ଏହା ଟାଇପ୍ କରିନିଅ । ଏହିସବୁ କଥା ଲେଖିବ ।" ଏହାକହି ସେ ଆଣ୍ଡ୍ରି ସ୍ ହାତରୁ ଛାଡ଼ପତ୍ର ମାଗିନେଲେ । ପୁଣି କହିଲେ ଦୁଇଟା ମୋହର ବସାଇବ । ସେ ଗୋମେଜ୍‌କୁ କହିଲେ "ଆଜି ରାତି ପାଇଁ ତୁମକୁ କିଛି କଡ଼ା ଦ୍ରବ୍ୟ ଲୋଡ଼ା । ଏହା ଦରକାର । ଯେତେବେଳେ କୌଣସି ଅଭିଯାନ ହେବାକୁ ଯାଉଅଛି ସେତେବେଳେ ଲୋକେ ସତର୍କ ରହିବା ଉଚିତ । ମୁଁ ତୁମକୁ ଖୁବ୍ କଡ଼ା ଜିନିଷ କିଛି ଦେବି ।" ଏହାପରେ ସେ ଆଣ୍ଡ୍ରି ସ୍ ପ୍ରତି ସହୃଦୟ ଭାବରେ କହିଲେ "ତୁ କଣ କିଛି ଖାଇବା ପିଇବାକୁ ଚାହୁଁ ?"

ଆଣ୍ଡ୍ରି ସ ଜବାବ ଦେଲା "ନାହିଁ, ଲେଫ୍‌ଟନାଣ୍ଟ୍ କର୍ଣ୍ଣେଲ୍ । ମୋର କ୍ଷୁଧା ନାହିଁ । ଶେଷ ଘାଟିଠାରେ ସେମାନେ ମୋତେ ଖୁବ୍ ଉତ୍କୃଷ୍ଟ ଫରାସୀ ବ୍ରାଣ୍ଡି ଦେଇଥିଲେ । ଆଉ ଅଧିକ ପିଇଲେ ବାନ୍ତି ହୋଇଯିବ ।

"ଆସିଲାବେଳେ ମୋର ଏହି ରଣକ୍ଷେତ୍ର ବିରୁଦ୍ଧରେ ଶତ୍ରୁପକ୍ଷର କୌଣସି ସୈନ୍ୟ ସମାବେଶ କିମ୍ବା ଚଳାଚଳ ଲକ୍ଷ୍ୟ କରିଥିଲୁ କି ?" ଲେଫ୍‌ଟନାଣ୍ଟ୍ କର୍ଣ୍ଣେଲ୍ ଭଦ୍ରଭାବରେ ଆଣ୍ଡ୍ରି ସ୍‌କୁ ପଚାରିଲେ ।

"ସାଧାରଣ ପରି ଚାରିଆଡ଼େ ଶୁନ୍‌ଶାନ୍ ଦେଖିଲି, ଲେଫ୍‌ଟନାଣ୍ଟ୍ କର୍ଣ୍ଣେଲ ।"

"ଆଚ୍ଛା ଡନମାସ ତଳେ ସର୍ଫିଭ୍ଲାଠାରେ ମୁଁ ତୋତେ ଦେଖିଥିଲି କି ?"

"ହଁ, ଲେଫ୍‌ଟନାଣ୍ଟ କର୍ଣ୍ଣେଲ ।"

ଲେଫ୍‌ଟନାଣ୍ଟ କର୍ଣ୍ଣେଲ ତା କାନ୍ଧ ଥାପୁଡ଼େଇ କହିଲେ "ମୁଁ ସେଇଆ ଭାବିଥିଲି । ତୁ ସେ ବୁଢ଼ା ଆନ୍‌ସେଲ୍‌ମୋ ସହିତ ଥିଲୁ । ସେ କେମିତି ଅଛି ?"

ଆଣ୍ଡ୍ରିସ୍‌ କହିଲା "ସେ ଭଲଅଛି ଲେଫ୍‌ଟନାଣ୍ଟ କର୍ଣ୍ଣେଲ ।"

ଏହାଶୁଣି ସେ ଆନନ୍ଦିତ ହେଲେ । ଯାହା ଟାଇପ କରିଥିଲା ତାହା ଅଫିସର ଆଣି ଦେଖାଇଲା । ସେ ତାହା ପଢ଼ିସାରି ଦସ୍ତଖତ କରିଦେଲେ । ସେ ଗୋମେଜ୍‌କୁ କହିଲେ "ତୁମକୁ ଖୁବ ଶୀଘ୍ର ଫେରିବାକୁ ହେବ । ଖୁବ ହୁସିଆର ହୋଇ ମୋଟର ଚଳାଇବ । ଆଲୁଅ ଜଳାଇ ଯିବ । ଗୋଟାଏ ମୋଟର ଆଲୁଅ ଯୋଗୁଁ କିଛି ଘଟିବ ନାହିଁ । କିନ୍ତୁ ସାବଧାନରେ ଯିବ । ସାଥୀ ସେନାପତି ଗୋଲ୍‌ଜଙ୍କୁ ମୋର ଶୁଭେଚ୍ଛା ଜଣାଇବ । ପେଗୁଏରିନୋଠାରେ ଆମର ଭେଟ ହୋଇଥିଲା । ସେ ଦୁହିଙ୍କ ସହିତ କରମର୍ଦ୍ଦନ କରି କହିଲେ ମୋଟରରେ ଗଲେ ଜୋର ପବନ ଲାଗିବ । କାମିଜ ପକେଟରେ କାଗଜପତ୍ର ରଖି ବୋତାମ ଲଗାଇ ଦିଅ ।"

ସେ ଦୁହେଁ ବାହାରିଗଲା ପରେ ସେ ଗୋଟିଏ ଦରାଜ ଫିଟାଇ ବୋତଲ ଓ ଗିଲାସ ବାହାର କରି ହୁଇସ୍କି ଢାଳିଲେ । ତାହା ସହିତ ମାଟି କଳସରୁ ଥଣ୍ଡା ପାଣି ମିଶାଇ ଅଳ୍ପ ଅଳ୍ପ କରି ପିଇଲେ । ପିଇଲାବେଳେ କାନ୍ଥରେ ଟଙ୍ଗାଥିବା ଖଣ୍ଡେ ମାନଚିତ୍ର ଦେଖୁଥାନ୍ତି ଆ ସେ ନାଭାସେରାଡାଠାରେ ଅଭିଯାନ ଆରମ୍ଭ କରିବାର ସମ୍ଭାବନା ବିଚାର କରୁଥାନ୍ତି ।

ଶେଷକୁ ଟେବୁଲ ପାଖରେ ବସିଥିବା ଅଫିସରଙ୍କୁ କହିଲେ "ସୁଖର କଥା । ଏ କାମ ମୋ ଉପରେ ନପଡ଼ି ଗୋଲ୍‌ଜଙ୍କ ଉପରେ ନ୍ୟସ୍ତ ।" ଅଫିସର ଜଣକ କିଛି ଜବାବ ନଦେବାରୁ ସେ ଚାହିଁ ଦେଖିଲେ ଯେ ସେ ହାତରେ ମୁଣ୍ଡ ରଖି ଶୋଇଯାଇ ଅଛନ୍ତି । ସେ ଟେବୁଲ ପାଖକୁ ଯାଇ ଫୋନ୍‌ ଦୁଇଟି ତାଙ୍କ ମୁଣ୍ଡର ଦୁଇ ପାଖରେ ଲଗାଇ ଥୋଇ ଦେଲେ । ଏହାପରେ ଦରାଜ ପାଖକୁ ଯାଇ ଆଉ ମଦ ଢାଳି ପିଇ ପୁଣି ମାନଚିତ୍ର ଦେଖିବାକୁ ଲାଗିଲେ ।

ଗୋମେଜ୍ ମୋଟର ସାଇକଲ ଚଳାଇଲାବେଳେ ଆଣ୍ଡ୍ରିସ୍‌ ମଜବୁତ ହୋଇ ପଛ ଆସନରେ ବସିଥିଲା । ପବନରୁ ରକ୍ଷା ପାଇବାକୁ ସେ ମୁଣ୍ଡ ନୁଆଁଇ ରଖିଥିଲା । ନୈଶ ନିସ୍ତବ୍‌ଧତା ଭଙ୍ଗ କରି ଗର୍ଜନ ସହ ମୋଟର ସାଇକଲ ନିଜ ଆଲୁଅରେ ଧାଇଁଲା । ଖାଲଢିପ ଟପି କୁହୁଡ଼ି ଭେଦି ମୋଟର ସାଇକଲ ଗୁଡ଼ୁଥାଏ । ଚଉମୁହାଣି ପାଖରେ ଗୁଡ଼ାଏ ଖାଲି ମୋଟର ଟ୍ରକ ପାହାଡ଼ରୁ ଓହ୍ଲାଇବାର ଦେଖାଗଲା ।

# ଏକଚାଳିଶ ପରିଚ୍ଛେଦ

ଅନ୍ଧାରରେ ଘୋଡ଼ା ଅଟକାଇ ପାବ୍‌ଲୋ ଓହ୍ଲାଇ ପଡ଼ିଲା । ରବର୍ଟ ଜର୍ଡ଼ାନ୍ ଜୋର ନିଶ୍ୱାସ ଏବଂ ଅନ୍ୟ ସମସ୍ତେ ଘୋଡ଼ାରୁ ଓହ୍ଲାଇବା ଯୋଗୁଁ ମଟମଟ ଶବ୍ଦ ଶୁଣି ପାରିଲେ । ଗୋଟାଏ ଘୋଡ଼ ମୁଣ୍ଡ ହଲଇବାରୁ ଲଗାମର ଝିଣିଝିଣି ଆବାଜ ମଧ୍ୟ ସେ ଶୁଣିଲେ । ସେ ଘୋଡ଼ାଙ୍କ ଗନ୍ଧ ଏବଂ ନୂଆ ଲୋକମାନଙ୍କର ଅଧୁଆ ଲୁଗାପଟାର ଗନ୍ଧ ମଧ୍ୟ ପାଇଲେ । ଗୁହାରେ ଥିବା ଲୋକଙ୍କ ଦେହରୁ ଧୂଆଁ ଗନ୍ଧ ବାହାରୁଥାଏ । ପାବ୍‌ଲୋ ତାଙ୍କ ପାଖରେ ଠିଆ ହୋଇଥାଏ । ତା ମୁହଁରୁ ମଦଗନ୍ଧ ବାହାରୁଥାଏ । ଆଲୁଅ ଲୁଚାଇବା ପାଇଁ ସେ ହାତକୁ ଖୋପଭଳି କରି ଦିଆସିଲି ଜଳାଇ ସିଗ୍ରେଟ ଲଗାଇଲେ । ପାବ୍‌ଲୋ କହିଲା "ପିଲାର ବୋମା ବସ୍ତାଟା ଆଣ । ଆମେ ଅନ୍ୟ ସବୁ ଠିକ କରୁଅଛୁ ।"

ରବର୍ଟ ଜର୍ଡ଼ାନ୍ ଅତି ମୃଦୁ ସ୍ୱରରେ କହିଲେ "ଅଗଷ୍ଟିନ୍, ତୁ ଏବଂ ଆନ୍‌ସେଲ୍‌ମୋ ମୋ ସହିତ ପୋଲ ପାଖକୁ ଚାଲ । ତୋ ପାଖରେ ସେହି ଗୁଳିଭର୍ତ୍ତି ପଟିଟା ଅଛି ତ ?"

ଅଗଷ୍ଟିନ୍ କହିଲା "ହଁ ଅଛି ।"

ରବର୍ଟ ଜର୍ଡ଼ାନ୍ ଯେଉଁଠାରେ ପିଲାର୍ ପ୍ରିମିଟିଭୋ ସାହାଯ୍ୟରେ ଘୋଡ଼ା ଉପରୁ ବସ୍ତା ଓହ୍ଲାଉଥିଲେ ସେଠାକୁ ଯାଇ କହିଲେ "ଶୁଣିଲୁ ।"

ପିଲାର୍ ଘୋଡ଼ା ପେଟତଳୁ ଗୋଟାଏ ବସ୍ତାରୁ ପଟି ଫିଟାଉ ଫିଟାଉ ପଚାରିଲା "କଅଣ କହ ।",

"ତୁ ତ ଜାଣୁ ଯେ ବୋମାପଡ଼ିବା ଆବାଜ ନମିଳିବା ଯାଏ ଆମେ ଘାଟି ଆକ୍ରମଣ କରିବା ନାହିଁ ।"

ପିଲାର୍ ଜବାବ ଦେଲା "ଏକଥା କେତେଥର କହିବ ? ଦେଖୁଛି ତୁମେ ବୁଢ଼ୀ ମାଇକିନିଆ ହୋଇ ଉଠିଲଣି ଇଂରେଜ !"

ରବର୍ଟ ଜର୍ଡାନ୍ କହିଲେ "ଅରେ ମିଳାଇ ନେଉଥିଲି ମାତ୍ର । ଘାଟି ଧ୍ୱଂସ ହେଲା ପରେ ତୁ ପୋଲ ପାଖକୁ ଫେରି ଉପରୁ ରାସ୍ତା ଓ ମୋ ବାଁ ପାଖ ଜଗିବୁ ।"

"ତୁମେ ପହିଲଥର ବୁଝାଇଲାବେଳେ ମୁଁ ଯେତିକ ବୁଝିବା କଥା, ବୁଝି ନେଇଛି । ବର୍ତ୍ତମାନ ନିଜର କାମରେ ଲାଗ" ପିଲାର୍ ତାଙ୍କୁ ଫୁସ୍‌ଫୁସ୍ ହୋଇ କହିଲା ।"

ରବର୍ଟ ଜର୍ଡାନ୍ କହିଲେ "କିନ୍ତୁ ମନେରଖ, ବୋମା ନପଡ଼ିବା ଯାଏ କେହି ଗୁଳି ମାରିବ ନାହିଁ କିମ୍ବା ବୋମା ପକାଇବ ନାହିଁ କି କୌଣସି ଗଡବଧି କରିବ ନାହିଁ ।"

ପିଲାର୍ ରାଗିଯାଇ କହିଲା "କେତେ ଫଟେଇ ହେଉଛ ? ସୋର୍ଡୋ ପାଖରେ ଥିଲାବେଳେ ମୁଁ ଏହା ଖୁବ୍ ଭଲ କରି ବୁଝି ନେଇଅଛି । ମୋତେ ଆଉ ଛୁଡ଼ାଅ ନାହିଁ ।"

ପାବ୍‌ଲୋ ଘୋଡ଼ା ବାନ୍ଧିଥିବା ଜାଗାକୁ ଜର୍ଡାନ ଗଲେରୁ ସେ କହିଲା "ଯେଉଁ ଘୋଡ଼ାଗୁଡ଼ାକ ଚମକିବେ ମୁଁ କେବଳ ସେହିମାନଙ୍କ ଗୋଡ଼ ଛନ୍ଦ ଦେଉଅଛି । ଅନ୍ୟମାନଙ୍କୁ ଏପରି ବାନ୍ଧିଛି ଯେ ଗୋଟାଏ ଝଟକାରେ ଫାଶ ଫିଟିଯିବ ।"

"ଭଲ କଥା ।"

ପାବ୍‌ଲୋ କହିଲା "ମୁଁ ବର୍ତ୍ତମାନ ମେରିଆ ଆଉ ଜିପସିକୁ ଏମାନଙ୍କୁ କିପରି ଚଲାଇବାକୁ ହେବ ବୁଝାଇ ଦେବି ।" ତାହାର ନୂଆ ଲୋକ ୫ ଜଣ ବନ୍ଧୁକ ଡିରି ଦେଇ ଏକ ସ୍ୱତନ୍ତ୍ରଦଳରେ ଠିଆ ହୋଇଥିଲେ ।

ରବର୍ଟ ଜର୍ଡାନ୍ ପଚାରିଲେ "ସବୁ ବୁଝିଲ ତ ?"

କାହିଁକି ନବୁଝିବି ? ଘାଟି ଧ୍ୱଂସ କରିବା, ତାର କାଟିଦେବା ତାପରେ ପୋଲ ପାଖକୁ ଆସି ତୁମେ ତାହା ଧ୍ୱଂସ ନକରିବା ଯାଏ ତୁମ ପଛପଟ ଜଗିବା ।"

"ଏବଂ ବୋମାବର୍ଷଣ ଆରମ୍ଭ ନ ହେବାଯାଏ କେହି କିଛି କରିବ ନାହିଁ ।"

"ହିଁ ।"

"ହଉ ତେବେ ତୁମକୁ ଭାଗ୍ୟପ୍ରସନ୍ନ ହେଉ ।"

ପାବ୍‌ଲୋ ମୃଦୁ ପ୍ରତିବାଦ କରି କହିଲା "ତୁମ ସାନ ମେସିନଗନ୍ ଦ୍ୱାରା ତୁମେ ଆମକୁ ଫେରିଲାବେଳେ ରକ୍ଷା କରିବ ନୁହେଁ କି ଇଂରେଜ ?"

ରବର୍ଟ ଜର୍ଡାନ୍ କହିଲେ "ହଉ ଥୋକେଇ ଡାକୁଣି ଖୋଲ ।"

ପାବ୍‌ଲୋ କହିଲା 'ମୋର ଆଉ କିଛି କହିବାର ନାହିଁ । କିନ୍ତୁ ସେ ମୁହୂର୍ତ୍ତିରେ ତୁମେ ଖୁବ୍ ସାବଧାନ ରହିବ । ସାବଧାନ ନହେଲେ ଇଂରେଜ, ତୁମେ ସେ କାମ କରିପାରିବ ନାହିଁ ।'

ରବର୍ଟ ଜର୍ଡାନ୍ କହିଲେ 'ମୁଁ ନିଜେ ସାନ ମେସିନଗନ୍ ଚଲାଇବି ।'

'ସେ ବିଷୟରେ ତୁମର ଭଲ ଅଭିଜ୍ଞତା ଅଛି ତ ? କାରଣ ପେଟଭର୍ତ୍ତି ଭଲ ଉଦ୍ଦେଶ୍ୟ ନେଇ ଅଗଷ୍ଟିନ ମୋତେ ଗୁଳିକରିବ ଏହା ମୁଁ ପସନ୍ଦ କରେନାହିଁ ।'

'ପ୍ରକୃତରେ ମୋର ଅଭିଜ୍ଞତା ଖୁବ୍ ବେଶୀ । ଯଦି ଅଗଷ୍ଟିନ ମେସିନଗନ୍ ବ୍ୟବହାର କରେ ତେବେ ସେ ଯେପରି ତୁମଆଡ଼େ ଲକ୍ଷ୍ୟ ନକରେ ତାହା ମୁଁ ଦେଖିବି ।'

ପାବ୍‌ଲୋ କୋମଳ କଣ୍ଠରେ ବିଶ୍ୱାସଭରେ କହିଲା 'ତା ହେଲେ ଆଉ କିଛି କହିବାର ନାହିଁ । କେବଳ ଅମର ଘୋଡ଼ା ସଂଖ୍ୟା ଜଣା ।'

ରବର୍ଟ ଜର୍ଡାନ୍ ଭାବିଲେ ଲୋକଟା କି ବାଳୁଙ୍ଗା । ଭାବୁଛି ଯେ ମୁଁ ପହିଲି ଥରକରେ ତା କଥା ବୁଝିପାରି ନାହିଁ । କହିଲେ 'ମୁଁ ଗୋଡ଼ରେ ଚାଲିଯାଉଛି । ଘୋଡ଼ା କଥା ତୋ ତକ ।'

'ନା, ଇଂରେଜ, ତୁମପାଇଁ ମଧ୍ୟ ଘୋଡ଼ାଟାଏ ଅଛି । ଆମ ସମସ୍ତଙ୍କ ପାଇଁ ଘୋଡ଼ା ଅଛି' ପାବ୍‌ଲୋ କୋମଳଭାବରେ କହିଲା ।

ରବର୍ଟ ଜର୍ଡାନ୍ କହିଲେ 'ତାହା ତୋ କାମ । ମୋପାଇଁ ଫିକର କରନାହିଁ । ତୋ ନୂଆ ବନ୍ଧୁକ ପାଇଁ ଯଥେଷ୍ଟ ଗୁଳି ଅଛି ତ ?'

ପାବ୍‌ଲ କହିଲା 'ହଁ, ସେ ଅଶ୍ୱାରୋହୀ ଜଣକ ପାଖରେ ଯେତେଥିଲା । ମୁଁ ସବୁ ନେଇଅଛି । ପଙ୍କଷା ଉଦ୍ଦେଶ୍ୟରେ ଗତକାଲି ଉଚ୍ଚ ପାହାଡ଼ରେ ୪ଟା ଫାଏର କରିଥିଲି ମାତ୍ର ।'

ରବର୍ଟ ଜର୍ଡାନ୍ କହିଲେ 'ବର୍ତ୍ତମାନ ଯିବାବେଳ । ଆମେ ଆଗରୁ ଯାଇ ସେଠାରେ ଲୁଚିବା ।'

ପାବ୍‌ଲୋ ଜବାବ ଦେଲା 'ନିଶ୍ଚୟ, ଆମେ ସମସ୍ତେ ବର୍ତ୍ତମାନ ଯିବା ଇଂରେଜ ।'

ରବର୍ଟ ଜର୍ଡାନ୍ ଭାବିବାକୁ ଲାଗିଲେ ବାଳୁଙ୍ଗାଟା ବର୍ତ୍ତମାନ କଅଣ ମସୁଧା କରିଛି କେଜାଣି । କିନ୍ତୁ ତାହା ଜାଣେ ବୋଲି ମୋର ବିଶ୍ୱାସ ! ହଉ, ତା' କାମ ତାହାର । ଈଶ୍ୱରଙ୍କୁ ଧନ୍ୟବାଦ ଯେ ମୁଁ ଏହି ଲୋକଙ୍କୁ ଚିହ୍ନେ ନାହିଁ ।'

ରବର୍ଟ ଜର୍ଡାନ୍ କରମର୍ଦ୍ଦନ ପାଇଁ ହାତ ବଢ଼ାଇଲାବେଳେ କୌଣସି ସର୍ପ କିମ୍ବା କୁଷ୍ଠିକୁ ସ୍ପର୍ଶ କରୁଥିବା ପରି ଶିହରି ଉଠିଲେ । ପାବ୍‌ଲୋର ହସ୍ତ ସ୍ପର୍ଶ କିପରି ସେ ପୂର୍ବରୁ ଜାଣି ନଥିଲେ । ଅନ୍ଧକାରରେ ପାବ୍‌ଲୋ ତାଙ୍କ ହାତକୁ ଶକ୍ତଭାବେ ଧରି ଖୋଲା ପ୍ରାଣରେ ମୁଠାଇଲା । ସେ ମଧ୍ୟ ସେହିପରି କରି ଦେଲେ । ପାବ୍‌ଲୋ ହାତ ଖୁବ୍ ଭଲ । ଏହି ଚିନ୍ତା ତାଙ୍କ ମନରେ ଏକ ଅଦ୍ଭୁତ ଧାରଣା ଜନ୍ମାଇଲା । ଆମେ ବର୍ତ୍ତମାନ ମିତ୍ର ହେଲେ ବୋଲି ସେ ଭାବିନେଲେ । ମିତ୍ରଙ୍କ ସାଙ୍ଗରେ ସବୁବେଳେ ବହୁତ ହାତ ମିଶା ଘଟିଥାଏ । ଦୁଇଗାଲରେ ଚୁମାଖାଇବା କିମ୍ବା ସଜାଇ ଦେବା କଥା ନ କହିଲେ ଚଳେ । ସୁଖର କଥା ଯେ ସେମାନେ ପରସ୍ପରକୁ ଚୁମା ଖାଇ ନଥିଲେ । ସେ ଭାବିଲେ ସବୁ ମିତ୍ର ଏହିପରି ହୋଇଥାନ୍ତି । ସେମାନେ ସବୁବେଳେ ପରସ୍ପରକୁ ଘୃଣା କରନ୍ତି । କିନ୍ତୁ ପାବ୍‌ଲୋ ଲୋକଟା ଅଦ୍ଭୁତ । ସେ ତା ହାତକୁ ମୁଠାଇ ଧରି କହିଲେ 'କିଛି ଭାବିବୁ ନାହିଁ । ମୁଁ ତୋତେ ଭଲ କରି ଜଗିବି ।'

ପାବ୍‌ଲୋ କହିଲା 'ତୁମ ଜିନିଷ ନେଇ ଯାଇଥିବା ଯୋଗୁଁ ମୁଁ ଅନୁତପ୍ତ । ଏହାକୁ ଅଣ୍ଟା ବୋଲି ଭାବନିଅ ।'

'କିନ୍ତୁ ଆମର ଯାହା ଦରକାର ଥିଲା ତୁମେ ଆଣିଅଛ ।'

'ପୋଲ କଥା ନେଇ ଇଂରେଜ, ତୁମ ବିପକ୍ଷରେ ମୋର କିଛି ଅଭିଯୋଗ ନାହିଁ । ମୁଁ ତୁମ କାମର ସାଫଲ୍ୟ ଦେଖି ପାରୁଅଛି ।'

ଅନ୍ଧାରରୁ ପିଲାର୍ କହି ଉଠିଲ 'ତୁମେ ଦୁଇଜଣ କଅଣ କରୁଅଛ ? ବନ୍ଧୁତା ସ୍ଥାପନ କରୁଛ କି ?' ପାବ୍‌ଲୋକୁ କହିଲା 'ତୋର ଏତକ ଅଭାବଥିଲା । ଆଉ ତୁମେ ଇଂରେଜ, ତୁମ ବିଦାୟପର୍ବ ସଂକ୍ଷେପ କରି ପକାଅ । ଏହି ଲୋକଟା ଯେପରି ଅଧିକ ଗୋଲାବାରୁଦ ଆଉ ଚୋରି କରି ନପାରେ ।'

ପାବ୍‌ଲୋ କହିଲା ତୁ ସ୍ତ୍ରୀଲୋକ, ତୁ ଆମ ଦୁହିଙ୍କ କଥା ବୁଝିପାରିବୁ ନାହିଁ । ମୁଁ ଆଉ ଇଂରେଜ, ପରସ୍ପରକୁ ବୁଝୁ ।'

ପିଲାର କହିଲା 'ତୋତେ ତ ତୋ ମାଆ କିମ୍ବା ଭଗବାନ ବୁଝିପାରିବେ ନାହିଁ ଅନ୍ୟ କଥା କିଏ ପଚାରେ । ମୁଁ ମଧ୍ୟ ବୁଝେନାହିଁ । ଯାଅ ଇଂରେଜ, ସେ ଲାଣ୍ଡିଠାରୁ ମଧ୍ୟ ସଂକ୍ଷେପରେ ବିଦାୟ ନେଇ ଆସ । ମୋର ଦୁର୍ଭାବନା ଯେ ଷଣ୍ଢ ବାହାରି ଆସିବ ବୋଲି ତୁମେ ଡରୁଅଛ ।'

ରବର୍ଟ ଜର୍ଡାନ୍ କହିଲେ 'ତୋ ମାଆ ମରୁ ।'

ପିଲାର୍ ହସି ହସି କହିଲା 'ତୁମର ତ ମାଆ ନଥିଲା । ବର୍ତ୍ତମାନ ଯାଅ । ଏହା ଆରମ୍ଭ କରି ଶୀଘ୍ର ଶେଷ କରିବାକୁ ମୁଁ ଉଦ୍‌ଗ୍ରୀବ । ପାବ୍‌ଲୋ, ତୋ ଲୋକ ନେଇ ତୁ ଯା । କିଏ କହିବ କେତେବେଳ ଯାଏ ସେମାନେ ନିଜ ସଂକଳ୍ପରେ ଦୃଢ଼ ରହିବେ । ତୋ ଲୋକ ଭିତରେ ଦୁଇଜଣଙ୍କ ଉପରେ ମୋର ଆସ୍ଥା ନାହିଁ । ତାଙ୍କୁ ନେଇ ଯା ।'

ରବର୍ଟ ଜର୍ଡାନ୍ ନିଜର ବସ୍ତା ପିଠିରେ ପକାଇ ମେରିଆକୁ ଖୋଜିବାକୁ ଘୋଡ଼ାଙ୍କ ପାଖକୁ ଗଲେ । ମେରିଆକୁ କହିଲେ 'ବିଦାୟ ପ୍ରିୟେ । ପୁଣି ଶୀଘ୍ର ଦେଖା ହେବ ।'

ଏହି ସବୁ ବିଷୟରେ ତାଙ୍କ ମନରେ ଏକ ଅବାସ୍ତବ ଭାବ ଖେଳିଗଲା । ଏସବୁ କଥା ଯେପରି ସେ ଆଗରୁ କହିଛନ୍ତି । ତାଙ୍କ ଯାଆଟା ଯେପରି ରେଲଗାଡ଼ିରେ ଯିବା କଥା । ସେ ପ୍ଲାଟଫର୍ମରେ ଥିଲେ, ଗାଡ଼ି ମହଣିଲା ସେଥିରେ ଚଢ଼ିଗଲେ ।

ମେରିଆ ତାଙ୍କୁ ବିଦାୟ ଦେଇ ସାବଧାନରେ ରହିବାକୁ କହିଲା । ରବର୍ଟ ଜର୍ଡାନ୍ ତା କଥା ସମର୍ଥନ କରି ତାକୁ ଚୁମା ଖାଇବାକୁ ନଇଁପଡ଼ନ୍ତେ ପିଠିର ବୋଝ ମାଡ଼ିପଡ଼ିଲା ଏବଂ ତାଙ୍କର କପାଳ ମେରିଆ କପାଳରେ ଠୋକର ଖାଇଲା । ଏମିତ ପୂର୍ବେ ମଧ୍ୟ ଘଟିଥିଲା । ବୋଝଯୋଗୁଁ ଅଡୁଆ ବୋଧ କରି ସେ ମେରିଆକୁ ନକାନ୍ଦିବାକୁ କହିଲେ ।

ମେରିଆ ଜବାବ ଦେଲା "ନା, ମୁଁ କାନ୍ଦୁନାହିଁ । ତୁମେ ଶୀଘ୍ର ଫେରିଆସ ।"

"ଆଜି ବହୁତ ଗୁଳି ଫୁଟିବ । ସେହି ଆବାଜ ଶୁଣି ବିଚଳିତ ହେବୁନାହିଁ ।"

"ନାହିଁ, କାନ୍ଦିବି ନାହିଁ । ତୁମେ ଜଲ୍‌ଦି ଫେରି ଆସିବ ।"

'ବିଦାୟ ପ୍ରିୟେ ।'

'ନମସ୍କାର ରବର୍ଟୋ ।'

ପ୍ରଥମଥର ପାଇଁ ରେଲଗାଡ଼ିରେ ବସି ରେଡଲକ୍ ଏବଂ ସେଠାରୁ ବିଲିଂ ଯାଇ ସ୍କୁଲରେ ନାମ ଲେଖାଇଲାବେଳେ ରବର୍ଟ ଜର୍ଡାନ୍ ଯେପରି ତାରୁଣ୍ୟ ବୋଧ କରି ନଥିଲେ ଆଜି ତାହା ବୋଧ କଲେ । ସ୍କୁଲରେ ନାମ ଲେଖାଇବା ପାଇଁ ରେଲ ଷ୍ଟେସନକୁ ଗଲାବେଳେ ସେ ଭୀତ ହୋଇ ପଡ଼ିଥିଲେ । କେହି ଏକଥା ଜାଣନ୍ତୁ ବୋଲି ସେ ଇଚ୍ଛା କରି ନଥିଲେ ଏବଂ ଷ୍ଟେସନରେ ଯାନ ଗାଡ଼ିରେ ଚଢ଼ିବା ପୂର୍ବରୁ ତାଙ୍କ ପିତା ତାଙ୍କୁ ଚୁମା ଖାଇ କହିଥିଲେ 'ପୁଅ, ତୋର ଓ ମୋର ବିଚ୍ଛେଦ ଅବସ୍ଥାରେ ଈଶ୍ୱର ଆମ୍ଭମାନଙ୍କୁ ରକ୍ଷା କରନ୍ତୁ ।' ତାଙ୍କ ବାପା ବଡ଼ ଧର୍ମଭୀରୁ ଲୋକ ଥିଲେ ଏବଂ ଏକଥା ଅନ୍ତରର ସହିତ ସରଳଭାବରେ ବ୍ୟକ୍ତ କରିଥିଲେ । ପୁତ୍ରର ବିଚ୍ଛେଦ ଦୁଃଖରେ ସେ କାନ୍ଦି ପକାଇଥିଲେ । ରବର୍ଟ ଜର୍ଡାନ୍ ବାପାଙ୍କର ପ୍ରାର୍ଥନା ଶୁଣି ଓ ବିଦାୟ ଚୁମ୍ବନ ପାଇ ସେ ନିଜକୁ ବାପାଙ୍କଠାରୁ ବେଶୀ ବୟସର ମନେ କରି ଅସହ୍ୟ ବ୍ୟଥା ଅନୁଭବ କରିଥିଲେ ।

ଗାଡ଼ି ଚାଲିବାକୁ ଆରମ୍ଭ କଲାରୁ ସେ ପଛପଟେ ରହି ଷ୍ଟେସନ ଆଡ଼କୁ ଅନାଇଥିଲେ । କ୍ରମେ ଷ୍ଟେସନଘର, ପାଣିଭଣ୍ଡାର ପ୍ରଭୃତି କ୍ଷୁଦ୍ରରୁ କ୍ଷୁଦ୍ରତର ହୋଇ ଅଦୃଶ୍ୟ ହୋଇଗଲା । ଗାଡ଼ି ଖଟ୍ ଖଟ୍ କରି ଧାଇଁବାକୁ ଲାଗିଲା ଏବଂ ସେ ଦୂରରୁ ଦୂରତର ହୋଇ ଉଠିଥିଲେ ।

ବ୍ରେକ୍‌ମାନ କହିଥିଲା 'ତୁମ ବାବା ତୁମର ଯିବାଯୋଗୁଁ ବଡ଼ ଦୁଃଖ ବୋଧ କରୁଛନ୍ତି ।'

ରବର୍ଟ ଜର୍ଡାନ୍ ଟେଲିଗ୍ରାଫ ଖୁଣ୍ଟି ଓ ରାସ୍ତାକଡ଼ ବାଡ଼ ଆଡ଼କୁ ଗୁହିଁ କୁକୁଡ଼ା ଚରିବା ଦେଖୁଥିଲେ । ଜବାବ ଦେଲେ 'ହଁ ।'

'ତୁମେ ସ୍କୁଲରୁ ଯିବାଯୋଗୁଁ ଦୁଃଖ କରୁଛ କି ?'

'ନା ।' ଏହା ଅବଶ୍ୟ ସତ୍ୟ ।

ପୂର୍ବେ ହୁଏ ତ ଏହା ସତ୍ୟ ନଥିଲ କିନ୍ତୁ ବିଦାୟବେଳେ ଏକଥା ସତ ହୋଇଥିଲା । ଏବଂ ବର୍ତ୍ତମାନର ଏହି ବିଦାୟ ତାଙ୍କ ମନରେ ସେଦିନର ସ୍ମୃତି ଜଗାଇ ଦେଲା ଏବଂ ସେ ତରୁଣ ମନୋବୃତ୍ତିଯୋଗୁଁ ଅଡୁଆ ବୋଧ କଲେ । ସ୍କୁଲରେ ପଢୁଥିଲାବେଳେ କୌଣସି ସହପାଠିନୀ ପାଖରୁ ବିଦାୟ ନେଲେ ଏପରି ଦୁଃଖ ଜାତ ହୋଇଥାଏ । ସେତେବେଳେ ସହପାଠିନୀଙ୍କୁ ଚୁମ୍ବନ ଦେବା ଉଚିତ କି ନୁହେଁ ଠିକ୍ କରି ହୁଏ ନାହିଁ । ଏହାପରେ ସେ ଭାବିଲେ ଯେ ବିଦାୟ ନେଉଛନ୍ତି ବୋଲି ସେ ବିବ୍ରତ ନୁହନ୍ତି । ସାକ୍ଷାତ କରିବା ଚିନ୍ତା ହିଁ ତାଙ୍କୁ ଦୁଃଖ ଦେଉଅଛି । ବିଦାୟଟା ପୁନର୍ମିଳନର ଏକ ଅଂଶ ନୁହେଁକି ? ସେ ମନେ ମନେ କହିଲେ ମୁଁ ତ ଏମାନଙ୍କୁ ପୁଣି ପାଇବି କିନ୍ତୁ କେହି ଜଣେ ହେଲେ ତାଙ୍କୁ ତରୁଣ ବୋଲି ସେଠାରେ ବିଶ୍ବାସ ନାହାନ୍ତି । ଏହି ଅବସ୍ଥାକୁ କି ନାମ ଦେବେ ଯେ ଭାବି ପାରିଲେ ନାହିଁ । ହଉ, ଯାହା ଘଟିବାର ଘଟୁ, ଏଟା ମୋର ଦ୍ବିତୀୟ ବାଲ୍ୟାବସ୍ଥା । ସେ କହିଲେ 'ବିଦାୟ ପ୍ରିୟେ, ବିଦାୟ ମୋ କୁନା ।'

ମେରିଅ କହି ଉଠିଲ 'ବିଦାୟ ମୋ ରବର୍ଟୋ ।' ସେ ଆନ୍‌ସେଲ୍‌ମୋ ଓ ଅଗଷ୍ଟିନ୍ ଥିବା ସ୍ଥାନକୁ ଯାଇ କହିଲେ 'ଗ୍ଭଲ ।'

ଆନ୍‌ସେଲ୍‌ମୋ ଭାରି ବସ୍ତାଟା ପିଠିରେ ବାନ୍ଧିଲା । ଅଗଷ୍ଟିନ୍ ତ ଗୁହା ଭିତରୁ ପୂରା ବୋଝ ବହିଥିଲା । ସେ ଗୋଟିଏ ଗଛକୁ ଆଉଜି ଠିଆ ହୋଇଥିଲା। ସ୍ୱୟଂକ୍ରିୟ ରାଇଫଲ ନଳୀ ତା ମୁଣ୍ଡ ଉପରକୁ ଉଠିଥାଏ ।

ରବର୍ଟ ଜର୍ଡାନ କହିଲେ 'ଭଲ କଥା, ଗ୍ଭଲଯିବା ।' ତିନିଜଣଯାକ ଗଡ଼ାଣିରେ ତଳକୁ ଓହ୍ଲାଇଲେ । ଏମାନେ ଫର୍ଣ୍ଣାଣ୍ଡୋ ଥିବା ସ୍ଥାନକୁ ଆସିବାରୁ ସେ କହିଲା 'ଜନ୍ ରବର୍ଟୋ, ନିରାପଦରେ ରୁହ ।' ଏମାନେ ଜଣକ ପଛେ ଜଣେ ହୋଇ ଗ୍ଭଲିଲେ । ଫର୍ଣ୍ଣାଣ୍ଡୋ ଅଳ୍ପ ଦୂରରେ ଚିରୁମାଡ଼ି ମାଟିରେ ବସିଥିଲା ।

ରବର୍ଟ ଜର୍ଡାନ୍ କହିଲେ 'ତୁ ମଧ୍ୟ ନିରାପଦରେ ରହ ।'

ଅଗଷ୍ଟିନ୍ କହିଲ 'ତୁ ସବୁ କାମରେ ନିରାପଦ ରହ ।'

ଅଗଷ୍ଟିନ୍ କଥାକୁ ଭ୍ରୂକ୍ଷେପ ନକରି ସେ କହିଲ 'ଧନ୍ୟବାଦ ଡନ୍ ରବର୍ଟୋ ।'

ଅଗଷ୍ଟିନ୍ କହିଲା 'ସେ ଲୋକଟା ଅଦ୍ଭୁତ ।'

ରବର୍ଟ ଜର୍ଡାନ୍ କହିଲେ 'ମୁଁ ତୋ କଥା ବିଶ୍ୱାସ କରେ । ତୋ ଉପରେ ତ ଗୋଟାଏ ଘୋଡ଼ାର ବୋଝ ଲଦା ହୋଇଛି । ତେ ମୁଁ କଟୁ ନାଏ ।'

ଅଗଷ୍ଟିନ୍ କହିଲା 'ନା, ମୁଁ ଠିକ୍‌ଅଛି ବାବୁ, ଆମେ ଯେ ଯାତ୍ରା ଆରମ୍ଭକଲୁ ଏଥକରେ ମୁଁ ସନ୍ତୁଷ୍ଟ ।'

ଆନ୍‌ସେଲ୍‌ମୋ କହିଲା 'ଆସ୍ତେ କଥା କହ । ବର୍ତ୍ତିମାନଠାରୁ ହୁଏ କଥା କହନାହିଁ ନୁହେ ତ ଖୁବ୍ ଆସ୍ତେ କହ ।'

ସେମାନେ ଅତି ସନ୍ତର୍ପଣରେ ପାହାଡ଼ରୁ ଓହ୍ଲାଇଲେ । ଆଗେ ଆଗେ ଥାଏ ଆନ୍‌ସେଲ୍‌ମୋ, ତା ପଛକୁ ଅଗଷ୍ଟିନ୍ ଏବଂ ଶେଷକୁ ରବର୍ଟ ଜର୍ଡାନ । ସେ ତାଙ୍କର ଦଉଡ଼ିତଳା ଜୋତାରେ ପାଦ ଚପି ଚପି, ଏଗଛ ସେଗଛ ଖୁଣ୍ଟ ଧରି, ଖାଲଢିପରେ ଏବଂ ବୁଦା ଗଛ ଉପରେ ଗୋଡ଼ ଜମାଇ ଚାଲୁଥାନ୍ତି । ବେଳେବେଳେ ଗଛର ଅଠା ତାଙ୍କ ହାତରେ ଲାଗି ଯାଉଥିଲା । ବେଳେ ବେଳେ ଗୋଡ଼ ଖସି ମଧ୍ୟ ଯାଉଥିବାରୁ ସେ ଗୋଟିଏ ହାତରେ ଗଛ ଧରି ପକାଉଥିଲେ । ତାଙ୍କର ସ୍ୱୟଂକ୍ରିୟ ରାଇଫଲ୍ ନଳୀ ଭାଙ୍ଗ ହୋଇଥିବା ତ୍ରିପଦ ତାଙ୍କ ଦେହରେ ବାଜି ଯାଉଥିଲା । ଏମିତି ଭାବରେ ସେମାନେ ଅସି ପୋଲର ଗୋଟିଏ ମୁଣ୍ଡରେ ପହଞ୍ଚିଲେ । ଏଇଠାରେ ରବର୍ଟ ଜର୍ଡାନ ଓ ଆନ୍‌ସେଲ୍‌ମୋ ପ୍ରଥମ ଦିନ ପହରା ଦେଇଥିଲେ ।

ଆନ୍‌ସେଲ୍‌ମୋ ଜର୍ଡାନଙ୍କ କବଜା ଧରି ଗୋଟିଏ ଗଛ ଉହାଡ଼ରେ ରହି ଅତି କ୍ଷୀଣ ସ୍ୱରରେ କହିଲା 'ଦେଖ, ତା ଉଠାଚୁଲିରେ ନିଆଁ ଜଳୁଛି । ରାସ୍ତାରେ ଯେଉଁଠାରୁ ପୋଲଟା ଆରମ୍ଭ ସେହିଠାରେ ଏହି ନିଆଁ ଦିଶୁଥିଲା ।

ଆନ୍‌ସେଲ୍‌ମୋ କହିଲା 'ଆମେ ଏଇଠି ପହରା ଦେଇଥିଲୁ ।' ସେ ତାଙ୍କ ହାତଟାଣି ନେଇ ଗୋଟିଏ ଗଛର ମୂଳଆଡ଼କୁ ଏକ ସଦ୍ୟ କଟା ଦାଗ ଦେଖାଇଲା । 'ତୁମେ ପହରା ଦେଉଥିଲାବେଳେ ମୁଁ ଏହି ଚିହ୍ନ କରିଥିଲି । ଏହାର ଡାହାଣକୁ ତୁମେ ବନ୍ଧୁକ ରଖିବାକୁ ଚାହୁଥିଲ ।'

'ଆମେ ସେଇଠାରେ ରଖିବା ।'

'ଭଲ କଥା ।'

ସେମାନେ ଦେବଦାରୁ ଗଛମୂଳେ ତାଙ୍କର ବସ୍ତା ଥୋଇଦେଲେ । ଏହାପରେ ଦୁହେଁ ଆନ୍‌ସେଲ୍‌ମୋ ପଛରେ ଗଲା ,ଦେବଦାରୁ ଗଛ ଉଠିଥିବା ସମତଳ ଜାଗାକୁ ଗଲେ । ଆନ୍‌ସେଲ୍‌ମୋ କହିଲା 'ହଁ ଠିକ୍ ଏହି ସ୍ଥାନ ।'

ରବର୍ଟ ଜର୍ଡାନ୍ ସାନ ଗଛ ଭିତରେ ବସିପଡ଼ି ଅଗଷ୍ଟିନ୍‌କୁ ଫୁସ୍‌ଫୁସ୍ ହୋଇ କହିଲେ ସକାଳ ହେଲେ ଏହି ଜାଗାରୁ ରାସ୍ତାର ଅଳ୍ପ ଅଂଶ ଓ ପୋଲର ମୁହଁ ମଧ୍ୟ ଦେଖି ପାରିବୁ । ପୋଲର ଲମ୍ବ ଏବଂ ଆରପାଖର ରାସ୍ତା ମଧ୍ୟ କିଛି ଦେଖିବୁ । ତାପରେ ରାସ୍ତାଟା ବଙ୍କାଇ ଯାଇଛି ।' ଅଗଷ୍ଟିନ୍ କିଛି କହି ନଥିଲା ।

'ତୁ ଏଇଠାରେ ଶୋଇରହ । ଆମେ ଯାଉଛୁ ବିସ୍ଫୋରକ ଖଞ୍ଜିବାକୁ । ତଳକୁ କି ଉପର ମୁଣ୍ଡରୁ କେହି ଆସିଲେ ଗୁଳି ଚଳାଇବୁ ।'

ଅଗଷ୍ଟିନ୍ ପଚାରିଲା 'ଆଲୁଅଟା କେଉଁଠାରୁ ଦିଶୁଛି ?'

ରବର୍ଟ ଜର୍ଡାନ୍ ଜବାବ ଦେଲେ 'ପୋଲ ମୁଣ୍ଡ ପ୍ରହରୀ ଘରୁ ।'

'ପ୍ରହରୀ କାହା ଭାଗରେ ?'

'ବୁଢ଼ା ଆଉ ମୋ ଭାଗରେ । ମୁଁ ତ ଏକଥା ତୋତେ କହିଅଛି । ଆମେ ଯଦି ନପାରିବୁ ତେବେ ତୁ ପ୍ରହରୀ ଘର ଉପରେ ଏବଂ ପ୍ରହରୀଙ୍କୁ ଦେଖିଲେ ତାଙ୍କ ଉପରେ ଗୁଳି ଚଳାଇବୁ ।'

"ହଁ, ଏକଥା ତୁମେ ମୋତେ କହିଅଛ ।'

"ବିସ୍ଫୋରଣ ଘଟିଲା ପରେ, ପାବ୍‌ଲୋର ଲୋକେ ସେହି ବାଙ୍କରୁ ଆସିଲେ ଯଦି ତାଙ୍କ ପଛରେ ଆଉ କେହି ଆସିବାର ଦେଖୁ ତେବେ ପାବ୍‌ଲୋଦଳର ମୁଣ୍ଡଉପର ଦେଇ ଗୁଳି ଚଳାଇବୁ ଖୁବ ଉପରକୁ କରି ଗୁଳି ମାରିବୁ ଯେପରି କି ଅନ୍ୟ କେହି ଆସି ନପାରିବେ । ବୁଝିଲୁ ?"

"ହଁ, ବୁଝିଲି । ଏକଥା ତ କାଲି ରାତିରେ କହିଅଛ ।'

"ଆଉ କିଛି ପଚାରିବୁ ?"

"ନା । ମୋର ଦୁଇଟା ବସ୍ତା ଅଛି । ମୁଁ ବନ୍ଧୁକ ଉପରଆଡ଼ୁ ଗୁଳି ଭରିବି । କେହି ଦେଖିପାରିବ ନାହିଁ । ତାପରେ ଏଠାକୁ ଆଣିବି ।"

"କିନ୍ତୁ ଖୋଳାଖୋଳି ଆଦୌ କରିବୁ ନାହିଁ । ଆମେ ଉପରଆଡ଼େ ଯେପରି ଲୁଚି ରହିବୁ ତୁ ମଧ୍ୟ ଏଠାରେ ଭଲଭାବରେ ଛପି ରହିବୁ ।"

"ନା । ମୁଁ ଅନ୍ଧାରରେ ଗୁଳି ଭରି ଆଣିବି । କେହି ଜାଣି ପାରିବେ ନାହିଁ ।"

"ତୁ ବଡ଼ ନିକଟରେ ଅଛୁ । ଏହି ବୁଦାଟା ଦିନବେଳେ ତଳଆଡ଼ୁ ସ୍ପଷ୍ଟ ଦେଖାଯାଏ ।"

"କିଛି ଚିନ୍ତା କରନାହିଁ ଇଂରେଜ ! ତୁମେ କୁଆଡ଼େ ଯିବ ?"

"ମୋ ସାନ ବନ୍ଧୁକ ନେଇ ମୁଁ ତଳକୁ ଯାଉଅଛି । ବୁଢ଼ା, ବର୍ତ୍ତମାନ ଖାଡଟପି ଆଉ ମୁଣ୍ଡ ପ୍ରହରୀ ଘର ଉଦ୍ଦେଶ୍ୟରେ ଯିବ । ସେ ଘରର ମୁହଁ ସେହି ଆଡ଼କୁ ।"

"ତେବେ ଆଉ କିଛି କହିବାର ନାହିଁ । ନମସ୍କାର ଇଂରେଜ ! ତମ ପାଖରେ ତମାଖୁ ଅଛି ?"

"ତୁ ତ ସିଗ୍ରେଟ ଟାଣିପାରିବୁ ନାହିଁ । ଜାଗାଟା ବଡ଼ ନିକଟ ଧୂଆଁ ଦେଖାଯିବ ।"

'ନା, ମୁଁ ସିଗ୍ରେଟ ପିଇବି ନାହିଁ । ତମାଖୁ ଖାଲି ମୁହଁରେ ରଖିବି । ପରେ ନିଆଁ ଲଗାଇ ଟାଣିବି ।'

ରବର୍ଟ ଜର୍ଡ଼ାନ୍ ତାଙ୍କ ନିଜର ସିଗ୍ରେଟ ବାକ୍ସ ଦେଲେ । ସେ ତିନୋଟି ସିଗ୍ରେଟ ନେଇ ନିଜର ଟୋପି ଭିତରେ ପୂରାଇଲା । ସେ ନିଜର ନିପଦର ଗୋଡ଼ଟାଣି ଲମ୍ବାଇଲା । ବନ୍ଧୁକ ନଳୀ ବୁଦା ଭିତରେ ରଖିଲା । ଅଣ୍ଟାଳି ଅଣ୍ଟାଳି ନିଜ ବସ୍ତାରୁ ଜିନିଷମାନ କାଢ଼ି ଦରକାରି ଜାଗାରେ ଥୋଇଲା । ତା ପରେ କହିଲା 'ଆଉ କିଛି ଦରକାର ନାହିଁ ।'

ଆନ୍‌ସେଲ୍‌ମୋ ଏବଂ ରବର୍ଟ ଜର୍ଡ଼ାନ୍ ତାଙ୍କୁ ଛାଡ଼ି ନିଜ ବସ୍ତା ରଖିଥିବା ସ୍ଥାନକୁ ଫେରିଗଲେ । ରବର୍ଟ ଜର୍ଡ଼ାନ୍ ଅତି ମୃଦୁସ୍ୱରରେ ପଚାରିଲେ 'କେଉଁଠି ରଖିଲେ ଭଲ ହେବ ?'

ଆନ୍‌ସେଲ୍‌ମୋ କହିଲା 'ଏଇଠି, କିନ୍ତୁ ଏ ସ୍ଥାନରୁ ତୁମ ସାନ ବନ୍ଧୁକରେ ପ୍ରହରୀଘରକୁ ଠିକ୍ ଲକ୍ଷ୍ୟ କରିପାରିବ ତ ?'

'ଏଟା କଅଣ ଯଥାର୍ଥ ସେହି ସ୍ଥାନ ଯେଉଁଠାରେ କି ଆମେ ସେଦିନ ଥିଲୁ ?'

ଏତେ ଆସ୍ତେ ଆନ୍‌ସେଲ୍‌ମୋ ଜବାବ ଦେଲା ଯେ ଜର୍ଡ଼ାନ ତାହା ଶୁଣି ପାରିଲେ ନାହିଁ । ସେ ଓଠ ନ ହଲାଇ କଥା କହିଲା ଯେମିତିଭାବରେ ପହିଲି ଦିନ କହିଥିଲା । କହିଲା ହଁ ଠିକ୍ ସେହି ଜାଗା । ମୁଁ ପରା ଢ଼ୁଙ୍କିରେ ଗଛକାଟି ଚିହ୍ନ ରଖିଛି ।'

ରବର୍ଟ ଜର୍ଡାନ୍ ମନରେ ହେଲା ଏକଥା ପୂର୍ବରେ ଘଟିଥିଲା । କିନ୍ତୁ ବର୍ତ୍ତମାନ ତାଙ୍କ ନିଜ ପ୍ରଶ୍ନଯୋଗୁଁ ଆନ୍‌ସେଲ୍‌ମୋ ଏପରି ଉତ୍ତର ଦେଲା । ଅଗଷ୍ଟିନ୍ ସମ୍ବନ୍ଧରେ ମଧ୍ୟ ସେହି କଥା । ସେ ଉତ୍ତର ଜାଣି ମଧ୍ୟ ପ୍ରଶ୍ନ ପଚାରିଥିଲା ।

ସେ ଫୁସ୍‌ଫୁସ୍ କରି କହିଲେ 'ଏ ଜାଗାଟା ଅତି ନିକଟ । ଅଲୁଅ ଆମ ପଛପଟେ ରହିଅଛୁ । ଏଇଠି ଆମେ ଠିକ୍ ଅଛୁ ।'

ଆନ୍‌ସେଲ୍‌ମୋ କହିଲା 'ତେବେ ମୁଁ ଝାଡ଼ ପାରି ହୋଇ ଆରପଟକୁ ଯାଉଅଛୁ । ମୋ ଜାଗାରେ ରହିବ । ମୁଁ ଯଦି କିଛି ଭୁଲ୍ କରିଥାଏ ତେବେ ଇଂରେଜ ମୋତେ କ୍ଷମା କରିବ ।'

'କଅଣ ?'

'ମୁଁ ଯାହା କରିବା କଥା ତାହା କରିବି !'

'ମୁଁ ଯେତେବେଳେ ଫାଏର କରିବି, ତୁ ମଧ୍ୟ କରିବୁ । ତୋ ଲୋକକୁ ଶେଷ କରି ପୋଲ ପାରି ହୋଇ ମୋ ପାଖକୁ ଆସିବୁ । ମୁଁ ସେଠାରେ ବସ୍ତା ରଖିଥିବି । କେଉଁଠି ବିସ୍ଫୋରକ ଥୋଇବା କଥା ମୁଁ ତୋତେ କହିଦେବି । ମୁଁ ସବୁକଥା ତୋତେ ବୁଝାଇ ଦେବି । ଯଦି ମୋର କିଛି ଘଟେ ତେବେ ତୁ ଏକାକୀ ମୋ କହିଲା ମତେ କରିବୁ । ଧୀରେ ସୁସ୍ଥିରେ ତୋ ସୁବିଧାମତେ କାମଟା ଭଲଭାବରେ କରିବୁ । କାଠ କିଲା ସବୁ ମଜବୁତ୍ କରି ପୋତିଦେବୁ ଏବଂ ହାତବୋମାକୁ ଖୁବ୍ ଜୋରରେ ଫୁଟାଇବୁ ।'

ଆନ୍‌ସେଲ୍‌ମୋ କହିଲା 'ମୁଁ ସବୁକଥା ପରିଷ୍କାରଭାବେ ବୁଝିପାରିଛୁ । ସବୁ ମୋ ମନେଅଛି । ମୁଁ ବର୍ତ୍ତମାନ ଯାଉଛି । ଇଂରେଜ, ସକାଳ ହେଲେ ତୁମେ ଭଲଭାବରେ ଲୁଚି ରହି କାମ କରିବ ।'

ରବର୍ଟ ଜର୍ଡାନ୍ କହିଲେ ତୁ ଯେତେବେଳେ ଗୁଳି କରିବୁ ଟିକିଏ ବିଶ୍ରାମ ନେବୁ ଏବଂ ଠିକ୍ ରଖିବୁ । ତାକୁ ମଣିଷ ବୋଲି ନଭାବି ଲକ୍ଷ୍ୟ ବସ୍ତୁ ବୋଲି ଭାବିବୁ । ପୁରା ଲୋକଟାକୁ ଲକ୍ଷ୍ୟ ନକରି ତା ଦେହର ଗୋଟିଏ ଜାଗାକୁ ଲକ୍ଷ୍ୟ କରିବୁ । ସେ ତୋ ଆଡ଼କୁ ମୁହଁ କରିଥିଲେ ତା ପେଟ ମଝିକୁ ଲକ୍ଷ୍ୟ କରିବୁ । ଅନ୍ୟ ଆଡ଼କୁ ମୁହାଁଇଥିଲେ ପିଠି ମଝିକୁ ଲକ୍ଷ୍ୟ କରିବୁ । ମୁଁ ଫାଏର କଲେ ଯଦି ଲୋକଟା ବସିଥାଏ, ଉଠି ଠିଆ ହୋଇ ଦୌଡ଼ିବ କିମ୍ବା କାଙ୍କୁଡ଼ିକୁଙ୍କୁଡ଼ି ହୋଇ ବସି ରହିବ ।

ସେତେବେଳେ ତୁ ଗୁଳି ଚଳାଇବୁ । ସେ ଯଦି ତଥାପି ବସିଥାଏ ତେବେ ଗୁଳି ମାରିବୁ ଆଉ ଅପେକ୍ଷା କରିବୁ ନାହିଁ । ୫୦ ଗଜ ନିକଟରୁ ଗୁଳି ମାରିବୁ । ତୁ ଶିକାରୀ ଏଣୁ ଭାବିବାର କିଛି ନାହିଁ ।'

ଆନ୍‌ସେଲ୍‌ମୋ କହିଲା 'ତୁମ ହୁକୁମ ମୁତାବକ ମୁଁ ସବୁ କରିବି ।'

'ହଁ, ଏହାହିଁ ମୋର ଆଦେଶ ।'

ସେ ଭାବିଲେ ଏହାକୁ ଆଦେଶରେ ପରିଣତ କରି ମୁଁ ଭଲ କରିଅଛି । ତଦ୍ଵାରା ସେ ସାହାଯ୍ୟ ପାଇବ । ଏଥିପାଇଁ କିଛି ଦୁର୍ଭାବନା ମଧ୍ୟ ମୋର ଗଲା । ସେ ପ୍ରଥମଦିନ ମାରିବା ସମ୍ବନ୍ଧରେ କଅଣ ସବୁ କହିଥିଲା ମୁଁ ଭୁଲି ଯାଇଥିଲି ।

'ଏହାହିଁ ମୋର ଆଦେଶ ରହିଲା । ଏବେ ଯା ।'

ହଁ ଯାଉଛି । ସବୁ ଶୁଭ ହେଉ । ମୁଁ ଶୀଘ୍ର ଫେରିବି ଇଂରେଜ ।'

'ହଁ ଶୀଘ୍ର ଫେରିବୁ ବୁଢ଼ା' ଜର୍ଡ଼ାନ୍ କହିଲେ ।

ସେ ସେହି ରେଲ୍ ଷ୍ଟେସନରେ ତାଙ୍କ ପିତା ସଜଳ ଚକ୍ଷୁରେ ବିଦାୟ ନେବା କଥା ମନେ ପକାଇଲେ । ସେ ନମସ୍କାର, ବିଦାୟ କିମ୍ବା ସୌଭାଗ୍ୟ କିଛି କାମନା କରି ପାରି ନଥିଲେ । 'ବୁଢ଼ା, ତୋ ବନ୍ଧୁକ ନଳୀରୁ ତେଲ ପୋଛି ପକାଇ ଅଛୁ ତ ? ନଚେତ୍ ଲକ୍ଷ୍ୟ ଭ୍ରଷ୍ଟ ହେବ ।'

ଆନ୍‌ସେଲ୍‌ମୋ କହିଲା 'ଗୁହା ଭିତରେ ମୁଁ ସବୁ ଭଲରକମ ସଫା କରିଅଛି ।'

ରବର୍ଟ ଜର୍ଡ଼ାନ୍ କହିଲେ 'ତେବେ ଦ୍ଵିପ୍ରହର ପର୍ଯ୍ୟନ୍ତ ବିଦାୟ ।' ନିଶବ୍ଦ ପଦ ସଞ୍ଚାରରେ ବୁଢ଼ା ଚାଲିଗଲା ।

ରବର୍ଟ ଜର୍ଡ଼ାନ୍ ଗଛ ଦେବଦାରୁ ଗଛ ବୁଦାରେ ଶୋଇ ରହି ସକାଳ ବେଳେ ଗଛର ଡାଳପତ୍ର ହଲିବା ଶବ୍ଦକୁ କାନ ଡେରିଲେ । ସେ ସାନ ମେସିନଗନ୍‌ର ଗୁଳି ଥଳିଆ କାଢ଼ି ନେଲେ । ଘୋଡ଼ିଆ ଠେକ ସେ ନଳୀକୁ ମୁହଁ ପାଖକୁ ନେଇ ଫୁଙ୍କିଲେ । ବନ୍ଧୁକ ନଳୀ ତାଙ୍କ ଜିଭରେ ଲାଗିବାରୁ ସେ ତେଲିଆ ଚର୍ବିର ଆସ୍ଵାଦ

ପାଇଲେ । ସେ ବନ୍ଧୁକକୁ ନିଜର ହାତରେ ଥୋଇଲେ ଯେପରି କି ଗଛର ପତ୍ର ଭିତରେ ପଶିବ ନାହିଁ । ସେ ସବୁତକ କାର୍ତ୍ତୁଜ ନିଜ ରୁମାଲ ଉପରେ ଅଜାଡ଼ି ପକାଇଲେ । ତାହାପରେ ଅନ୍ଧାରରେ ଆଙ୍ଗୁଳିରେ ଚିପି ସବୁତକ ଗୋଟି ଗୋଟି କରି ଥଳିଆରେ ପୂରାଇଲେ । ବର୍ତ୍ତମାନ ଥଳିଆଟା ଭାରି ହୋଇ ଉଠିଲା । ଦେବଦାରୁ ଗଛ ଗଣ୍ଡି ଅଡ଼ୁଆଳରେ ସେ ପେଟେଇ ଶୋଇଲେ । ବନ୍ଧୁକଟା ଥାଏ ବାମ ହାତ କବଜା ଉପରେ । ସେ ତଳପଟରୁ ଆସୁଥିବା ଆଲୁଅକୁ ଦେଖିବାକୁ ଲାଗିଲେ । ବେଳେ ବେଳେ ଆଲୁଅଟା ନ ଦେଖାଯିବାରୁ ସେ ବୁଝି ପାରୁଥିଲେ ଯେ ଜଗୁଆଳୀ ଆଲୁଅ ସାମନାରେ ଠିଆ ହୋଇଅଛି । ଏମିତି ଭାବରେ ଶୋଇ ସେ ସକାଳ ପ୍ରତୀକ୍ଷାରେ ରହିଲେ ।

# ବୟାଳିଶ ପରିଚ୍ଛେଦ

ଯେଉଁ ସମୟ ମଧ୍ୟରେ ପାବ୍‌ଲୋ ପାହାଡ଼ରୁ ଗୁହାକୁ ଫେରିଲା ଏବଂ ଗୁହାରୁ ସମସ୍ତେ ଘୋଡ଼ା ପାଖକୁ ଗଲେ ସେହି ସମୟ ମଧ୍ୟରେ ଆଣ୍ଡ୍ରିସ୍ ଗୋଲ୍‌ଜ୍‌ଙ୍କ କାର୍ଯ୍ୟାଳୟକୁ ଯିବା ପଥରେ ଅନେକ ଦୂର ଅଗ୍ରସର ହୋଇ ଯାଇଥିଲା । ନାଭା ସେର୍‌ରାଡ଼ାକୁ ଯିବା ବଡ଼ ରାସ୍ତାରେ ଅନେକ ଟ୍ରକ ଗାଡ଼ୀ ପାହାଡ଼ ଆଡ଼ୁ ଆସୁଥିଲା । ସେଠାରେ ଗୋଟିଏ ଯାନବାହନ ନିୟନ୍ତ୍ରଣ ଚୌକିଥିଲା । ସେଠାର ସନ୍ତ୍ରୀକୁ ଗୋମେଜ୍ ଲେଫଟେନାଣ୍ଟ୍ କର୍ଣ୍ଣେଲ୍ ମିରାଣ୍ଡାଙ୍କର ଗୁଡ଼ପତ୍ର ଦେଖାଇଲେ । ସନ୍ତ୍ରୀ ନିଜର ଟିପା ବତିରେ ତାହା ପରୀକ୍ଷା କରି ନିଜର ସହକର୍ମୀଙ୍କୁ ଦେଖାଇ ଫେରାଇ ଦେଇ ସଲାମ କଲା । କହିଲା "ଆଜ୍ଞା, ଗାଡ଼ୀର ବଡ଼ ଆଲୁଅ ଲିଭାଇ ଦେଇ ଯାଆନ୍ତୁ ।"

ମୋଟର ସାଇକଲ ଗର୍ଜନ କରି ରାସ୍ତାରେ ଦ୍ରୁତ ଚାଲିଗଲା । ଆଣ୍ଡ୍ରିସ୍ ପଛ ଆସନରେ ବସି ଶକ୍ତ ଭାବରେ ସାମନା ଆସନକୁ ଧରିଥାଏ । ଗୋମେଜ୍ ରାସ୍ତାର ଯାନ-ବାହନ ଓ ଜନଗହଳି ଭିତରେ ସାବଧାନରେ ଗାଡ଼ୀ ଚଲାଇଲେ । କୌଣସି ଟ୍ରକରେ ଆଲୁଅ ନଥିଲା ଏବଂ ସବୁଯାକ ଗୋଟିକ ପଛେ ଗୋଟିଏ କରି ଏକ ଧାଡ଼ିରେ ଯାଉଥିଲେ । ଟ୍ରକ ଯୋଗୁଁ ରାସ୍ତାର ଧୂଳିରେ ଆଣ୍ଡ୍ରିସ୍ ଅଳବନ୍ଧ ହୋଇ କିଛି ଦେଖି ପାରୁ ନଥାଏ । ସେମାନେ ଗୋଟିଏ ଟ୍ରକର ପଛେ ପଛେ ଯାଉଥିଲେ । ପରେ ଗୋମେଜ୍ ଗାଡ଼ୀର ଗତିବେଗ ବଢାଇ ସେ ଗାଡ଼ୀ ଓ ଆହୁରି ଅନେକ ଗାଡ଼ୀ ଟପିଗଲା । ବେଳେ ବେଳେ ପଛପଟୁ ଟ୍ରକ୍ ଗାଡ଼ୀ ତାଙ୍କୁ ବାଁ ପଟରୁ ଟପି ଯାଉଥିଲେ । ପଛରେ ଖଣ୍ଡେ ମୋଟର ଗାଡ଼ୀ ବାରମ୍ବାର ଶିଙ୍ଗା ବଜାଇ ବଡ଼ ଆଲୁଅ ଜଳାଇ ଦେଲା । ସେହି ଆଲୁଅରେ ଜମାଟ ହଳଦିଆ ଧୂଳିର ମେଘ ଚାରିଆଡ଼େ ଘୋଟି ଥିବାର ଦେଖାଗଲା ।

ଏହାପରେ ଆଗରେ ଗୋଟିକ ପରେ ଗୋଟିଏ ହୋଇ ସବୁ ଗାଡ଼ି, ଟ୍ରକ ଇତ୍ୟାଦି ଅଟକି ଗଲେ । ଏହା ଆଉ ଗୋଟିଏ ନିୟନ୍ତ୍ରଣ ଚୌକି । ଗୋଟିଏ ଅଟକି ଥିବା ଟ୍ରକକୁ ପଛରୁ ଆଉ ଖଣ୍ଡେ ଗାଡ଼ି ଆସି ଅନ୍ଧାରରେ ଦେଖି ନପାରି ଧକାଦେଲା । ଫଳରେ ସାନ ସାନ ଗୋଲା ବାରୁଦ ରାସ୍ତା ତମାମ ଛିଟିକି ପଡ଼ିଲା । ଧକା ବାଜି ଆଗ ଗାଡ଼ୀର ପଛ ମଟ ଭାଙ୍ଗିଗଲା । ଗୋମେଜ ମୋଟର ସାଇକଲ ଅଟକାଇ ଗାଡ଼ୀକୁ ଠେଲି ଠେଲି ନିୟନ୍ତ୍ରଣ ସନ୍ତ୍ରୀକୁ ନିଜର ଛାଡ଼ପତ୍ର ଦେଖାଇଲେ । ଆଣ୍ଡ୍ରିସ ଛିଟିକି ପଡ଼ିଥିବା ଗୋଲା ବାରୁଦ ଦଳି ଚକଟି ଅଗେଇ ଗଲା । ପଛ ଗାଡ଼ୀଟାରେ 'ରେଡ଼ିଓଟର ସମ୍ପୂର୍ଣ୍ଣ ନଷ୍ଟ ହୋଇ ଯାଇଥାଏ । ଏହା ପଛକୁ ଶହ ଶହ ଗାଡ଼ୀ ଅଟକି ଯାଇଥାଏ । ଲମ୍ବା ବୁଟ୍ ପିନ୍ଧା ଜଣେ ଅଫିସର ରାସ୍ତା ତମାମ ଧାଇଁ ଧାଇଁ ଚାଳକମାନଙ୍କୁ ଗାଡ଼ୀ ଧକା ଏବଂ ଗୋଲା ବାରୁଦ ବିଞ୍ଚି ହୋଇଥିବା କଥା ଚିତ୍କାର କରି କହୁଥାନ୍ତି ।

ରାସ୍ତାରେ ଏତେ ବେଶୀ ଗାଡ଼ୀ ଅଟକି ଥାଏ ଯେ ପଛ ଆଉ ଶେଷ ମୁଣ୍ଡକୁ ଯାଇ ଅନ୍ୟ ଗାଡ଼ୀ ଆସିବା ବନ୍ଦ ନକଲେ ଗୋମେଜ୍ ଆଉ ପଛକୁ ଫେରି ବାଟ ଭାଙ୍ଗି ଯିବାର ସୁବିଧା ପାଇବେ ନାହିଁ । ଅଫିସର ଜଣକ ଟିପାବତି ଜଳାଇ ଧାଇଁ ଧାଇଁ ଗାଳି ଫଜିତ କରି ବନ୍ଦ ଚେଷ୍ଟା କରୁଥାନ୍ତି କିନ୍ତୁ ପଛରୁ ଟ୍ରକମାନ ସୁଅପରି ମାଡ଼ି ଆସୁଥାଏ ।

ନିୟନ୍ତ୍ରଣ ପାଇଁ ସନ୍ତ୍ରୀ ଦୁଇ ଜଣ ଥିଲେ । ସେମାନେ ପିଠିରେ ବନ୍ଧୁକ ଝୁଲାଇ ହାତରେ ଟିପାବତି ଧରି ପାଟି କରୁଥାନ୍ତି କିନ୍ତୁ ଏମାନଙ୍କ ଛାଡ଼ପତ୍ର ଫେରାଇ ନଥିଲେ । ଜଣେ ଛାଡ଼ପତ୍ର ଖଣ୍ଡିକ ଧରି ରାସ୍ତା ସେ ପାଖକୁ ଯାଇ ତଳଆଡ଼େ ଯାଉଥିବା ଗୋଟିଏ ଟ୍ରକଚାଳକକୁ କହିଲା ଯେ ତଳ ଚୌକିରେ ଆଉ ଗାଡ଼ି ଛାଡ଼ିବାକୁ ମନା କରିଦେବ । ଏଠା ଭିଡ଼ ଭାଙ୍ଗିଗଲେ ସେ ଛାଡ଼ିବ । ଏହାପରେ ଛାଡ଼ପତ୍ର ଧରି ସେହି ସନ୍ତ୍ରୀ ଫେରିଆସି ଯାହାର ମାଲ ବିଞ୍ଚି ହୋଇ ଯାଇଥିଲା ତାକୁ କହିଲା "ଏହାକୁ ଛାଡ଼ି ଆଗକୁ ବଢ଼ । ଆମେ ଏହା ସଫା କରିବୁ ।" ଗାଡ଼ିଚାଳକ ନିଜଗାଡ଼ୀର ପଛପଟେ ନଇଁପଡ଼ି କଅଣ ଦେଖୁଥିଲା । ସେ କହିଲା "ମୋର ତେଲ ଯୋଗାଣ ପାଇପ ନଷ୍ଟ ହୋଇଯାଇଛି ମୁଁ ଗାଡ଼ି ନେବି କେମିତି ?" ସନ୍ତ୍ରୀ କହିଲା "ତୋ ପାଇପ୍ ଚୁଲିକୁ ଯାଉ, ମୁଁ ଯାହା କହୁଛି ପାଳନ କର । ଗାଡ଼ୀର 'ଡିଫରେନ୍‌ସିଆଲ' ଭାଙ୍ଗିଗଲେ ଗାଡ଼ୀ ଚାଲିବ କିପରି ? ଡ୍ରାଇଭର କହିଲା । ତେବେ ଗାଡ଼ୀକୁ ଟାଣି ଟାଣି ନେଇଯା—ଆମେ ଆଉ ଗାଡ଼ିଟା ରାସ୍ତାରୁ ହଟାଇବୁ ।'

ଡ୍ରାଇଭର ରାଗିଯାଇ ଖାଲି ଚାହିଁ ରହିଲା । ସନ୍ତ୍ରୀ ବାରମ୍ବାର ଧମକ ଦେବାକୁ ଲାଗିଲା ।

ଗୋମେଜ୍ କହିଲେ "ମୋ ଛାଡ଼ପତ୍ର ଦିଅ । ମୋର ଜରୁରୀ କାମ ।"

"ହଉ ନିଅ ତମ ଛାଡ଼ପତ୍ର ।" ଏହା କହି ସନ୍ତ୍ରୀ ତାଙ୍କୁ ଛାଡ଼ପତ୍ର ଫେରାଇ ଦେଇ ରାସ୍ତା ଆର ପଟକୁ ଅନ୍ୟ ଗାଡ଼ି ସବୁ ରୋକିବାକୁ ଧାଇଁଲା । ସେ ଡ୍ରାଇଭରକୁ ପାଟି କରି କହିଲା ଛକ ପାଖକୁ ଯାଇ ବୁଲିଯିବୁ ।"

"ମତେ ହୁକୁମ ଅଛି—"

"ତୋ ହୁକୁମ ତୋ ପାଖରେ ଥାଉ ମୁଁ ଯାହା କହୁଛି କର ।"

ଡ୍ରାଇଭର ଗାଡ଼ି ଚଳାଇ ସିଧା ଆଗକୁ ଯାଇ ଧୂଳିରେ ଅଦୃଶ୍ୟ ହୋଇଗଲା ।

ଏହାପରେ ଗୋମେଜ୍ ମଟର ସାଇକେଲ ରାସ୍ତାର ଡାହାଣ ପଟେ ଚଳାଇ ଭଙ୍ଗା ଗାଡ଼ିକୁ ଟପି ବାହାରିଗଲେ । ସେତେବେଳେ ସନ୍ତ୍ରୀ ଆଉ ଗୋଟିଏ ଟ୍ରକ ଅଟକାଇ ତା ଡ୍ରାଇଭର ସଙ୍ଗେ କଥା ହେଉଥାଏ ।

ବର୍ତ୍ତମାନ ସେମାନେ ଅତି ଦ୍ରୁତ ଗତିରେ ପାହାଡ଼ିଆ ରାସ୍ତାରେ ଉଠାଣି ଉଠିଲେ । ନିୟନ୍ତ୍ରଣ ଚୌକିଠାରେ ସବୁ ଗାଡ଼ୀ ବନ୍ଦ କରାଯାଉ ଥିବାରୁ କେବଳ ତଳ ଆଡ଼କୁ ଆସୁଥିବା ଗାଡ଼ୀମାନ ସେ ଟପି ଟପି ଗଲେ ଆଲୁଅ ନ ଜଳାଇ ସେମାନେ ଆଉ ଚାରୋଟି ସାଞ୍ଜୁଆ ଗାଡ଼ି ଟପି ଗଲେ । ତା ପରେ ଧାଡ଼ି ବାନ୍ଧି ଅନେକ ଗୁଡ଼ିଏ ସୈନ୍ୟବାହୀ ଟ୍ରକ ଭେଟିଲେ । ସୈନ୍ୟମାନେ ଅନ୍ଧାରରେ ଚୁପଚାପ ବନ୍ଧୁକ ଧରି ଠିଆ ହୋଇଥାନ୍ତି । ଏହାପରେ ଆଉ ଖଣ୍ଡିଏ ଅଫିସରଙ୍କ ଗାଡ଼ି ପଛପଟୁ ପୁଙ୍ଗା ବଜାଇ ଏବଂ ଆଲୁଅ ଜଳାଇ ଓ ନଭାଇ ଆସିଲା । ତାହାରି ଆଲୁଅରେ ଆଣ୍ଡ୍ରିସ୍ ଦେଖିପାରିଲା ସୈନ୍ୟମାନଙ୍କ ମୁଣ୍ଡ ଉପରେ ଇସ୍ପାତ ଶିରସ୍ତ୍ରାଣ, ସେମାନଙ୍କର ବନ୍ଧୁକ ସିଧାସଳଖେ ଉପର ମୁହାଁ । ସେମାନଙ୍କର ମେସିନଗନ୍ ସବୁ ଆକାଶ ପ୍ରତି ମୁହାଁ କରିଛି । ଖଣ୍ଡେ ଗାଡ଼ିରେ ଦଳେ ସୈନ୍ୟ ଅଧା ବିମର୍ଷଭାବରେ ବସିଥିଲେ । ସେ ମୁଖରୁ ଆସନ୍ନ ଆକ୍ରମଣର ଲକ୍ଷଣ ପ୍ରମାଣ ପାଉଥାଏ । ସତେ ଯେପରି ସେମାନେ ପରସ୍ପରକୁ ମୁହଁ ଦେଖାଇବାକୁ ଲଜ୍ଜାବୋଧ କରୁଥାନ୍ତି । ଅବଶ୍ୟ ଥରେ ବୋମା ବୃଷ୍ଟି ଆରମ୍ଭ ହୋଇଗଲେ ଆଉ କାହାର କିଛି ଭାବିବାକୁ ନଥିବ ।

ଆଣ୍ଡ୍ରିସ୍ ଏହିପରି ଟ୍ରକ୍ ପରେ ଟ୍ରକ୍ ଗାଡ଼ୀ ଦେଖି ଦେଖି ଗଲା । ଗୋମେଜ୍ ତାଙ୍କର ମଟର ସାଇକେଲକୁ ଅଫିସର ଗାଡ଼ି ଆଗେ ଆଗେ ନେଉଥାନ୍ତି । ସେ ଭାବୁଥାନ୍ତି ଏହି ହେଉଛି ଆମର ସୈନ୍ୟବାହିନୀ, ଏହାହିଁ ହେଉଛି ଆମର ସାଜସରଞ୍ଜାମ ଓ ଯାନବାହନ, ସମସ୍ତେ ଗଣତନ୍ତ୍ରର ସୈନିକ । ଦଳକୁ ଦଳ ଏହା ରକମର

ପୋଷାକ, ଏକା ପ୍ରକାର ଶିରସ୍ତ୍ରାଣ ଓ ଏକ ପ୍ରକାର ବନ୍ଧୁକ । ଆମର ଏହିପରି ସୈନ୍ୟ ବାହିନୀ ଗଢ଼ା ଯାଇଅଛି ।

ଏହିପରି କଥାରେ ଅଟମ୍ୟ ସୈନ୍ୟ ପୂର୍ଣ୍ଣ ଟ୍ରକଗାଡ଼ି ସେମାନେ ଟପି ପାହାଡ଼ିଆ ରାସ୍ତାର ଅଗକୁ ଗଲେ । ଏଣିକି ରାସ୍ତା ଜାଗାକୁ ଜାଗା ବାଙ୍କ ଏବଂ ଗାଡ଼ିର ପଛ ଆଲୁଅ ଦ୍ୱାରା ଅନ୍ୟ ଗାଡ଼ିର ଅବସ୍ଥା ସବୁ ଭଲ ରକମ ଦେଖା ଯାଉଥାଏ । ପବନ ଶୀତଳ ହୋଇ ଉଠୁଥାଏ ଏବଂ ଉଠାଣି ଉଠୁଥିବା ଗାଡ଼ି ଅତି କଷ୍ଟରେ ଉଠୁଥାନ୍ତି । ଆଣ୍ଡ୍ରିସ୍ କେବେ ମଟର ସାଇକଲ୍ ପଛରେ ବସି ନଥିଲା । ବର୍ତ୍ତମାନ ସେ ଶକ୍ତ ହୋଇ ବସି ବୁଝି ପାରିଲା, ଏତେ ଯାନବାହନର ଚଳାଚଳ ଯୁଦ୍ଧରେ ଶେଷ ହେବ । ସେ ସେ ତା ଜାଗାକୁ ନିର୍ଦ୍ଦିଷ୍ଟ ସମୟରେ ପହଞ୍ଚି ପାରିବ ଏପରି କିଛି ଠିକଣା ନାହିଁ । ଯଦି ଆଗାମୀ କାଲି ରାତିକୁ ପହଞ୍ଚିପାରେ ତେବେ ଭାଗ୍ୟର କଥା ବୋଲି ଭାବିବାକୁ ହେବ । ସେ କେବେ କୌଣସି ଆକ୍ରମଣ କିମ୍ବା ସେଥି ନିମିତ୍ତ ଉଦ୍ୟୋଗ ଆୟୋଜନ ଦେଖି ନ ଥିଲା, ଏଣୁ ଜଣେ ସେ ଗଣତନ୍ତ୍ର ସୈନ୍ୟବାହିନୀର ବିରାଟ ଆକାର ଦେଖି ବିସ୍ମିତ ହୋଇଗଲା ।

ବର୍ତ୍ତମାନ ସେମାନେ ଗୋଟିଏ ତୀକ୍ଷ୍ଣ ଏବଂ ଦୀର୍ଘ ଉଠାଣି ଚଢ଼ିବାକୁ ଲାଗିଲେ । ଶେଷ ଆଡ଼କୁ ଉଠାଣିଟା ଏତେ ବେଶୀ ଯେ ଦୁହେଁ ମଟରସାଇକଲରୁ ଓହ୍ଲାଇ ପଡ଼ି ଠେଲି ଠେଲି ମଟର ସାଇକଲକୁ ଉପରକୁ ନେଲେ । ଉଠାଣି ମୁଣ୍ଡରେ ରାସ୍ତା ଗୋଟାଏ ଫାଙ୍କ ପରି ହୋଇଥାଏ ଯେଉଁଠି କି ଅନ୍ୟ ଗାଡ଼ି କଟାଇବାର ସୁବିଧା ଅଛି । ସେଠାରେ ଗୋଟାଏ ବଡ଼ ପଥର କୋଠା ଭିତରେ ଅନେକ ଗୁଡ଼ିଏ ଆଲୁଅ ଦେଖା ଯାଉଥିଲା ।

ଗୋମେଜ ଆଣ୍ଡ୍ରିସ୍‌କୁ କହିଲେ, "ଚାଲ ପ୍ରଧାନ କାର୍ଯ୍ୟାଳୟ କେଉଁଠି ପଗ୍ଭରି ବୁଝିବା ।" ଏହା କହି ମଟର ସାଇକଲ୍‌କୁ ପେଲି ପେଲି ନେଇ ବଡ଼ କୋଠା କାନ୍ଥରେ ଆଉଜାଇ ଦେଲେ । ଠିକ୍ ସେତିକିବେଳେ ଦୁଆର ଫିଟାଇ ଆଉ ଜଣେ କିଏ ମଟର ସାଇକଲ ଚାଳକର ଚମଡ଼ା ପୋଷାକ ପିନ୍ଧି ବାହାରକୁ ଆସିଲା । ତାହାର ହାତ ଖୋପରେ ପିସ୍ତଲ ଝୁଲୁଥାଏ ଏବଂ କାନ୍ଧରେ ଝୁଲୁଥାଏ ସରକାରୀ ଖବରାଖବର ବାକସ । ସେ ନିଜର ମଟର ସାଇକଲ ପାଖକୁ ଯାଇ ଇଞ୍ଜିନ ଚାଲୁ କରି ରାସ୍ତାରେ ବାହାରିଗଲା । ଦୁଆର ମୁହଁରେ ଥିବା ସାନ୍ତ୍ରୀକୁ ଗୋମେଜ କହିଲେ, "ମୁଁ ହେଉଛି ୬୫ ନମ୍ବର ବ୍ରିଗେଡ଼ର କାପ୍ତାନ ଗୋମେଜ୍ । ୩୫ ଡିଭିଜନ୍ ସେନାପତି ଜେନେରାଲ୍ ଗୋଲଜ୍‌ଙ୍କର କାର୍ଯ୍ୟାଳୟ କେଉଁଠି କହି ପାରିବ ?"

ସନ୍ତ୍ରୀ କହିଲା "ଏଠି ନୁହେଁ ।"

"ଏଟା ତେବେ କି ଅଫିସ ?"

"ଏଟା କମାଣ୍ଡାନ୍ସିଆ ।"

"ସେ କଅଣ ? କାହାର କମାଣ୍ଡାନ୍ସିଆ ?"

ସନ୍ତ୍ରୀ ଅନ୍ଧାରରେ ଗୋମେଜଙ୍କୁ ଜବାବ ଦେଲା, "ତମେ କିଏ ଏତେ କଥା ପଚାରିବାକୁ ?" ପାହାଡ଼ର ଏହି ଜାଗାରେ ଆକାଶ ଅତି ନିର୍ମଳ ଓ ନକ୍ଷତ୍ର ପୂର୍ଣ୍ଣଥିଲା । ଏଠି ଧୂଳି କିଛି ନ ଥିଲା ବୋଲି ଅନ୍ଧାରରେ ମଧ୍ୟ ଦେଖା ଯାଉଥିଲା । ଭଲଆଡ଼େ ଯେଉଁଠାରେ ରାସ୍ତା ଡାହାଣ ଆଡ଼କୁ ବଙ୍କାଇ ଅଛି ସେଠାରେ ଅନେକ ଗୁଡ଼ିଏ ଟ୍ରକ୍ ଏବଂ ମଟର ଗାଡ଼ି ଆଣ୍ଡ୍ରି୍ସ୍ ଦେଖି ପାରିଲା ।

ଗୋମେଜ୍ କହିଲେ, "ମୁଁ ହେଉଛି ପ୍ରଥମ ବାଟାଲିଅନ୍‌ର ୬୫ନମ୍ବର ବ୍ରିଗେଡ୍ ଅଧିନାୟକ କ୍ୟାପ୍‌ଟେନ୍ ରୋଜେଲିଓ ଗୋମେଜ୍ । ମୁଁ ତୁମକୁ ପଚାରୁଛି ସେନାପତି ଗୋଲଜଙ୍କର କାର୍ଯ୍ୟାଳୟ କେଉଁଠି କୁହ ।" ସନ୍ତ୍ରୀ କବାଟ ଅଳ୍ପ ଫାଙ୍କ କରି ଭିତର ଆଡ଼କୁ ଚିତ୍କାର କଲା—'କମାଦାରକୁ ଡାକି ଦିଅ ।' ଠିକ ଏତିକିବେଳେ ଗୋଟାଏ ବଡ ଅଫିସରଙ୍କର ଗାଡ଼ି ରାସ୍ତାର ମୋଡ଼ ଘୂରି ଏହି ବଡ଼ କୋଠା ପାଖକୁ ଆସିଲା ଏବଂ ଅଣ୍ଡ୍ରିକ୍ ଓ ଗୋମେଜ୍ ଯେଉଁଠି ଅପେକ୍ଷା କରିଥିଲେ ସେଇଠି ଦୁଆର ମୁହଁରେ ଅଟକିଲା । ଜଣେ ବୃହଦାକାର ବୁଢ଼ା ମୋଟା ଲୋକ ଖଣ୍ଡେ ବଡ଼ ସାଇଜ୍‌ର ଖାକି ପୋଷାକ ପିନ୍ଧି ତା ଉପରେ ଓଭରକୋଟ ଲଗାଇ ମାନଚିତ୍ର ବାକ୍ସ ଧରି ଓଭରକୋଟ୍ ଉପରେ ପିସ୍ତଲ ଝୁଲାଇ ଗାଡ଼ିର ପଛ ଆସନରୁ ଓହ୍ଲାଇ ଆସିଲେ । ତାଙ୍କ ସାଙ୍ଗରେ ଆଉ ଦୁଇଜଣ ଆନ୍ତର୍ଜାତିକ ବ୍ରିଗେଡ଼ର ପୋଷାକ ପିନ୍ଧି ମଧ୍ୟ ଗାଡ଼ିରୁ ଓହ୍ଲାଇଲେ । ମୋଟା ଲୋକଟି ଗାଡ଼ି ଡ୍ରାଇଭରକୁ ଗାଡ଼ି ଖଣ୍ଡ ଦୁଆର ମୁହଁରୁ ଟାଣି ଘରକୁ ନେଇ ଯିବାକୁ ଫରାସୀ ଭାଷାରେ ଆଦେଶ ଦେଲେ । ଏ ଭାଷା ଆଣ୍ଡ୍ରିସ୍‌କୁ ଜଣା ନଥିଲା, ଏବଂ ଗୋମେଜ୍‌କୁ ପଦେ ଅଧେ ଜଣା ଥିଲା । ଅନ୍ୟ ଦୁଇଜଣଙ୍କ ସହିତ ମୋଟା ଲୋକଟି ଦୁଆର ମୁହଁକୁ ଆସନ୍ତେ ତାଙ୍କ ମୁହଁଟା ଆଲୁଅରେ ଦେଖି ଗୋମେଜ୍ ଚିହ୍ନି ପାରିଲେ । ସେ ତାଙ୍କୁ ରାଜନୀତିକ ସଭା ସମିତିରେ ଦେଖିଥିଲେ ଏବଂ ତାଙ୍କର ବହୁ ପ୍ରବନ୍ଧ "ମୁଣ୍ଡୋଓବ୍ରେର୍" ପତ୍ରିକାରେ ପଢ଼ିଥିଲେ । ତାଙ୍କର କେଶ ବହୁଳ ଭ୍ରୂଲତା, ଜଳଧୂସର ଚକ୍ଷୁ ଏବଂ ଦୁଇ ଭାଙ୍ଗିଆ ଚିବୁକ ଦେଖିପାରି ଗୋମେଜ୍ ବୁଝିଲେ ଯେ ସେ ହେଉଛନ୍ତି ଫ୍ରାନ୍ସର ଜଣେ ପ୍ରସିଦ୍ଧ ବିପ୍ଳବବାଦୀ, ସେ କୃଷ୍ଣସାଗରରେ ଫରାସୀ ନୌବାହିନୀର ବିଦ୍ରୋହ ପରିଚାଳନା କରିଥିଲେ । ତାଙ୍କର ଆନ୍ତର୍ଜାତିକ ବ୍ରିଗେଡ଼ରେ ଯେଉଁ ଉଚ୍ଚ ସ୍ଥାନ ତାହା ଗୋମଜଙ୍କୁ ଜଣାଥିଲା । ସେ ଭାବିଲେ, ଏହି ଲୋକ ତାଙ୍କୁ

ଗୋଲଜଙ୍କ କାର୍ଯ୍ୟାଳୟ କେଉଁଠି କହିଦେଇ ପାରିବ । ସମସ୍ତ ଜମେ ହତାଶା, ରାଜନୈତିକ ଏବଂ ବ୍ୟକ୍ତିଗତ ତିକ୍ତତା ତଥା ବିଫଳ ପ୍ରୟତ୍ନ ଯୋଗୁ ସେ ବର୍ତ୍ତମାନ କ'ଣ ହୋଇଥିଲେ ଗୋମେଜ୍ ଜାଣି ନଥିଲେ । ତାଙ୍କୁ ପଚାରି ଏ କଥା ବୁଝିବା ମଧ୍ୟ ଅତି ବିପଦଜନକ । ସୁତରାଂ କିଛି ନ ଜାଣି ସେ ଆଗ ବଢ଼ି ତାଙ୍କ ସାମନାରେ ଛିଡ଼ା ହୋଇ ସାମରିକ କାଇଦାରେ ଅଭିବାଦନ କରି କହିଲେ, "ସାଥୀ ମହାଶୟ, ଆମ୍ଭେମାନେ ଜେନେରାଲ ଗୋଲଜଙ୍କ ପାଖକୁ ଏକ ବାର୍ତ୍ତା ନେଇ ଆସିଛୁ ଏହା ଜରୁରୀ । ଆପଣ ଆମଙ୍କୁ ତାଙ୍କର କାର୍ଯ୍ୟାଳୟ ଦେଖାଇ ଦେଇ ପାରିବେ କି ?"

ସେହି ଡେଙ୍ଗା ମୁଣ୍ଡଗୋଟିଆ ଲୋକ ଝୁଙ୍କିପଡ଼ି ଗୋମେଜଙ୍କୁ ଅନାଇଲେ, ଏବଂ କିଛିକ୍ଷଣ ଖୁବ ସାବଧାନ ହୋଇ ତାଙ୍କ କଥା ଭାବିଲେ । ଏଠି ଏତେ ଅଳ୍ପ ଆଲୁଅରେ ମଧ୍ୟ ତାଙ୍କର ମୁଖରେ ବାର୍ଦ୍ଧକ୍ୟର ଚିହ୍ନ ସ୍ପଷ୍ଟ ଦେଖା ଯାଉଥିଲା । ସେ ସ୍ପେନ୍ ଭାଷାରେ ଗୋମେଜଙ୍କୁ ପଚାରିଲେ, "ତମେ କଅଣ ଆଣିଛ ସାଥି ?" ତାଙ୍କର ଉଚ୍ଚାରଣ ଭଙ୍ଗୀରେ କାଟାଲିଙ୍ଗ ପ୍ରଦେଶର ଛାପ ଥିଲା । ସେ ଆଡ଼ ଚକ୍ଷୁରେ ଆଣ୍ଡ୍ରିସ୍ ଏବଂ ଗୋମେଜ୍ ଦୁହିଁଙ୍କୁ ବାରମ୍ବାର ଦେଖିନେଲେ ।

ଗୋମେଜ୍ କହିଲେ, "ଜେନେରାଲ ଗୋଲଜଙ୍କୁ ତାଙ୍କ କାର୍ଯ୍ୟାଳୟରେ ଦେବା ପାଇଁ ଆମେ ଗୋଟାଏ ଖବର ଆଣିଛୁ ?"

"କେଉଁଠୁ ଆଣିଛ ?"

"ଫ୍ୟାସିଷ୍ଟ ସୀମାର ପଛପଟୁ ।" ଗୋମେଜ୍ କହିଲେ ।

ସେ ହାତ ବଢ଼ାଇ ତାଙ୍କ ପାଖରୁ ସବୁ କାଗଜ ପତ୍ର ନେଇ ତହିଁରେ ଆଖି ବୁଲାଇ ସବୁ କାଗଜ ପକେଟରେ ରଖିଦେଲେ । ତା ପରେ ଦୁଇଜଣ ଜମାଦାରଙ୍କୁ ଡାକି କହିଲେ ଏ ଦୁହିଁଙ୍କୁ ଗ୍ରେପ୍ତାର କରି ଖାନତଲାସ କର । ଏହାପରେ ମୁଁ ଡକାଇ ପଠାଇଲେ ମୋ ପାଖରେ ହାଜର କରାଇବ । ଏହାକହି ଘର ଭିତରକୁ ଚାଲିଗଲେ ।

ବାହାର ପଟେ ପ୍ରହରୀ ପ୍ରକୋଷ୍ଠରେ ଗୋମେଜ୍ ଓ ଆଣ୍ଡ୍ରିଜଙ୍କୁ ପ୍ରହରୀ ଖାନତଲାସ କଲେ । ଗୋମେଜ୍ ଜଣେ ପ୍ରହରୀକୁ ପଚାରିଲେ ଲୋକଟାର ଅବସ୍ଥା କ'ଣ ?

"ପ୍ରହରୀ କହିଲା, ସେ ପାଗଳ ।"

ଗୋମେଜ୍ କହିଲେ, "ନା-ନା, ସେ ଜଣେ ପ୍ରଧାନ ରାଜନୈତିକ ପୁରୁଷ । ସେ ଆନ୍ତର୍ଜାତିକ ବ୍ରିଗେଡ୍‌ର ପ୍ରଧାନ ସେନାପତି ।"

ପ୍ରହରୀଙ୍କ ଜମାଦାର କହିଲା, "ସେ ଯାହାହେଉ, ସେ ପାଗଳ । ଅଚ୍ଛା ତୁମେ ଫ୍ୟାସିଷ୍ଟ ମାନଙ୍କ ପଛପଟେ କ'ଣ କର ।"

ଗୋମେଜ୍ ତାଙ୍କୁ କହିଲେ, "ମୋ ସାଥି ଜଣକ ସେଠାରେ ଜଣେ ଗରିଲା ସୈନ୍ୟ । ସେ ଜେନେରାଲ ଗୋଲଜ୍‌ଙ୍କ ପାଇଁ ଚିଠି ଆଣିଛୁ । ତମେ ମୋ କାଗଜ ପତ୍ର ସାବଧାନରେ ରଖ । ଟଙ୍କା ପଇସା ଆଉ କାରତୋସ ପଟି ସମ୍ବନ୍ଧରେ ସାବଧାନ ରହିବ । ଏହା ମୋର ଗୋଆଡ଼ାମା ଯୁଦ୍ଧରେ ପ୍ରଥମ ଆହତ ହେବାର ନିଦର୍ଶନ ।"
ଜମାଦାର କହିଲା, "ସେଥିପାଇଁ ବ୍ୟସ୍ତ ହୁଅନା । ତମର ସବୁ ଜିନିଷ ଏହି ଦରାଜରେ ରହିଲା । ଆଚ୍ଛା ତମେ ମତେ କାହିଁକି ଗୋଲଜଙ୍କ କଥା ପଚାରିଲ ନାହିଁ ?

"ମୁଁ ତ ସନ୍ତ୍ରୀଙ୍କୁ ପଚାରିଥିଲି ଏବଂ ସେ ତମକୁ ଡାକିଲେ ।"

"କିନ୍ତୁ ତା ପରେ ଏହି ପଗଲା ଲୋକ ଅସିବାରୁ ତମେ ତାଙ୍କୁ ପଚାରିଲ । ତାଙ୍କୁ କିଛି ପଚାରିବାର ନୁହଁ । ସେ ପାଗଳ । ତମ ଗୋଲ୍‌ଜ ଏଠାରୁ ୩ ମିଟର ଦୂରରେ ପାହାଡ଼ ପାଖ ବଣରେ ଡାହାଣରେ ଅଛନ୍ତି ।"

"ଆଚ୍ଛା ତମେ ଆମକୁ ତାଙ୍କ ପାଖକୁ ଯିବାକୁ ଦେବ କି ?"

"ଇରେ ବାପରେ ଆଉ ମୋ ମୁଣ୍ଡ ରହିବ ।" ମୁଁ ତମକୁ ସେ ପାଗଲା ପାଖକୁ ନେବାକୁ ବାଧ । ଏହା ଛଡ଼ା ତାଙ୍କ ପାଖରେ ତ ତମ କାଗଜପତ୍ର ରହିଲା ।"

"ତୁମେ ଆଉ କାହାକୁ କହିପାରିବ ନାହିଁ ?"

ଜମାଦାର କହିଲା "ହଁ କହିବ । ପହିଲ ଦାୟିତ୍ୱ ସମ୍ପନ୍ନ ଲୋକକୁ ଦେଖିଲା କ୍ଷଣି କହିବ । ସମସ୍ତେ ଜାଣନ୍ତି ସେ ପାଗଳ ।'

ଗୋମେଜ୍ କହିଲେ "ମୁଁ ତାଙ୍କୁ ସବୁବେଳେ ମହାନ ପୁରୁଷ ଏବଂ ଫାନ୍ସର ଗୌରବ ବୋଲି ଜାଣିଥିଲି ।"

ଜମାଦାର ଆଣ୍ଡ୍ରିସ୍ କାନ୍ଧରେ ହାତ ଥୋଇ ଜବାବ ଦେଲା, "ସେ ଗୌରବ କି ଅନ୍ୟ କିଛି ହୋଇ ପାରନ୍ତି । କିନ୍ତୁ ଗୁବୁରପୋକା ବଳି ତାଙ୍କର ବୁଦ୍ଧି । ଲୋକଙ୍କୁ ଗୋଲି କରି ମାରିବାକୁ ସେ ଭାରି ଉତ୍ସାହୀ ।

"ସତକୁ ସତ କ'ଣ ଗୋଲି ମାରନ୍ତି ?''

ଜମାଦାର କହିଲା, "ସେ ଯେତେ ଲୋକ ମାରିଛନ୍ତି, ପ୍ଲେଗ ରୋଗରେ ଯେତେ ଲୋକ ମରି ନଥିବେ । କିନ୍ତୁ ଆମ ଭଳି ଫ୍ୟାସିଷ୍ଟ୍ ସେ ମାରନ୍ତି ନାହିଁ । ସେ ଦୁର୍ଲଭ ବସ୍ତୁଙ୍କୁ ମାରିଥାନ୍ତି ।

ଟ୍ରଟ୍‌ସ୍କାଇଟ୍ ଗୋଷ୍ଠୀଭୁକ୍ତ କମ୍ବା ସେହିପରି ଅଦ୍ଭୁତ ଦଳର ଲୋକମାନଙ୍କୁ ମାରନ୍ତି । ଆନ୍ଦ୍ରେସ୍ ଏପରି କଥାରୁ କିଛି ବୁଝିଲା ନାହିଁ ।

ଜମାଦାର କହିଲା, "ଆମେ ଯେତେବେଳେ ଏସ୍କୋରିଆଲ୍‌ଠାରେ ଥିଲୁ ତାଙ୍କ ହୁକୁମରେ କେତେ ଯେ ମାରିଛୁ ତାର ସଂଖ୍ୟା ନାହିଁ । ଆମକୁ ସବୁବେଳେ ଗୋଲି ମାରିବା ଦଳରେ ସେ ନେଉଥିଲେ । ବ୍ରିଗେଡ଼୍‌ର ଲୋକମାନେ ନିଜ ଦଳ ଲୋକଙ୍କୁ ଖାସ୍ କରି ଫରାସୀମାନଙ୍କୁ ଗୁଳି କରିବାକୁ ରାଜି ନଥିଲେ । ସେଥିପାଇଁ ସେ କାମ ଆମ ଉପରେ ନ୍ୟସ୍ତ ଥିଲା । ଆମେ ଫରାସୀ, ବେଲ୍‌ଜିଅମ ଏବଂ ଅନ୍ୟ ବହୁ ଜାତି ବହୁ ପ୍ରକାର ଲୋକଙ୍କୁ ରାଜନୀତିକ କାରଣ ଯୋଗୁ ମାରିଅଛୁ । ସେ ପାଗଳ ଏବଂ ଅତି ମାତ୍ରାରେ ଦଳର ବିଶୁଦ୍ଧତା ରକ୍ଷା କରିବାକୁ ବ୍ୟଗ୍ର ।"

"ତମେ ତେବେ କାହାକୁ ଆମ ଏଠି କଥା କହିବ କି ?"

"ନିଶ୍ଚୟ କହିବ । ମୁଁ ଏହି ଦୁଇ ବ୍ରିଗେଡ଼୍‌ର ପ୍ରତ୍ୟେକ ଲୋକଙ୍କୁ ଚିହ୍ନେ । ସମସ୍ତେ ଏହି ବାଟ ଦେଇ ଆସନ୍ତି । ଏମିତି କି ମୁଁ ରୁଷୀୟମାନଙ୍କୁ ମଧ୍ୟ ଜାଣେ । ସେମାନଙ୍କ ଭିତରେ ଅତି ଅଳ୍ପଲୋକହିଁ ସ୍ପେନ୍ ଭାଷା କହିଥାନ୍ତି । ଏହି ପାଗଳଟାକୁ ସ୍ପେନ୍ ଲୋକଙ୍କୁ ଗୁଳି କରି ମାରିବାକୁ ଆମେ ଦେବୁ ନାହିଁ ।"

"ମୋ କାଗଜ ପତ୍ର ।"

"ହଁ—ତମ କାଗଜ ପତ୍ର ପାଇଁ ଚିନ୍ତିତ ହୁଅନାହିଁ । ଆମେ ପାଗଳଟା ସଙ୍ଗେ କିପରି ବ୍ୟବହାର କରିବାକୁ ହେବ ଜାଣୁ । ସେ କେବଳ ନିଜ ଜାତି ଉପରେ ଝଡ଼୍‌ହେସ୍ତ । ଆମେ ବର୍ତ୍ତମାନ ତାକୁ ବୁଝି ଜାଣିଗଲୁଣି ।"

ଭିତର ପଟୁ ଆବାଜ ଆସିଲା, "ବନ୍ଦୀ ଦୁହିଁଙ୍କୁ ନେଇ ଆସ ।"

ଜମାଦାର ଦରାଜ ଫିଟାଇ ମଦ ବୋତଲ କାଢ଼ି ନିଜେ ପିଇଲା ଏବଂ ଏ ଦୁହିଁଙ୍କୁ ମଧ୍ୟ ପିଇବାକୁ ଦେଲା । ତା ପରେ ମୁହଁ ପୋଛି ଛିଡ଼ାହେଲା ଗୁଳି । ସେମାନେ ମଦର ଉଷ୍ମତା ମୁହଁରେ ଅନୁଭବ କରି କରି ସତେଜ ହୃଦୟରେ ହଲ ଘର ଭିତର ଦେଇ ତାଙ୍କ ପାଖରେ ପହଞ୍ଚିଲେ । ସେ ଗୋଟିଏ ଲମ୍ବା ଟେବୁଲ ପାଖରେ ବସିଥାନ୍ତି ?

ହାତରେ ଧରିଥାନ୍ତି ନାଲି ନେଳି ପେନସିଲ୍ । ଟେବୁଲ ଉପରେ ଖଣ୍ଡେ ମାନଚିତ୍ର । ଆଣ୍ଡ୍ରି ଆଜି ରାତିରେ ଅନେକ ଅବସ୍ଥାରେ ପଡ଼ିଥିଲା । ଏହା ମଧ୍ୟ ସେହିପରି ଗୋଟିଏ ଅବସ୍ଥା, ସବୁଠାରୁ ସେ ଗୁଡ଼ପରି ଦେଖାଇ ମୁକ୍ତ ପାଇଅଛି । ଏଥର ମଧ୍ୟ ସେହିପରି ହେବ, କିନ୍ତୁ ଅଯଥା ବିଳମ୍ବ ହେଉଛି, ରବର୍ଟ ଜର୍ଡାନ୍ ତାଙ୍କୁ ଜଲଦି ଫେରିବାକୁ କହିଥିଲେ । କିନ୍ତୁ ସେ ବୁଝିଲା ସେ ପୋଲ ଧ୍ୱଂସ କଲାବେଳକୁ ପହଞ୍ଚି ପାରିବ ନାହିଁ । ବର୍ତ୍ତମାନ ସୁଦ୍ଧା ଚିଠିପତ୍ର ଏହି ବୁଢ଼ା ପକେଟରେ ନେଇ ବସିଛି । ବୁଢ଼ାର ନାମ ମାସାର୍ଟ । ସେ ଏ ଦୁହିଁଙ୍କୁ ଠିଆ ହେବାକୁ ହୁକୁମ ଦେଲା । ମଦ ପିଇଥିବାରୁ ଟିକେ ଦମ୍ଭ ଧରି ଗୋମେଜ୍ କହିଲେ, ଶୁଣନ୍ତୁ ସାଥୀ ମାସାର୍ଟ୍ । ଆଜି ରାତିରେ ସନ୍ତ୍ରାସବାଦୀଙ୍କର ଅଜ୍ଞତା ଯୋଗୁ, ଫ୍ୟାସିଷ୍ଟ ଅମଲତନ୍ତ୍ର ଅଲସୁଆ ପଣରୁ ଦୁଇଥର ବାଧା ପାଇଲୁଣି । ବର୍ତ୍ତମାନ ସାମ୍ୟବାଦୀଙ୍କର ମାତ୍ରାଧିକ୍ୟ ସନ୍ଦେହ, ତୁମ୍ଭର ଦଫା ବିଳମ୍ବ ଘଟାଉଅଛି ।" ମାସାର୍ଟ ମୁହଁ ନ ଉଠାଇ କହିଲେ "ଚୁପ୍ କର" ଏଟା ସଭା ନୁହେଁ ।"

ଗୋମେଜ୍ କହିଲା, "ସାଥୀ ମାସାର୍ଟ୍, ଆମର କାମ ନ ହେଲେ ନ ଥିବା ଜରୁରୀ ଅଟେ ।"

ଜମାଦାର ଏବଂ ସୈନ୍ୟଜଣକ ଏହି କଥାବାର୍ତ୍ତାକୁ ପୂର୍ଣ୍ଣ ମନୋଯୋଗରେ ଶୁଣୁଥାନ୍ତି । ତାଙ୍କୁ ଏହା ଗୋଟାଏ ତମସା ପରି ବୋଧ ହେଉଥାଏ । ମାସାର୍ଟ କହି ଉଠିଲେ, ପ୍ରତ୍ୟେକ କଥା ଜରୁରୀ । ସବୁ ବିଷୟ ଗୁରୁତ୍ୱପୂର୍ଣ୍ଣ । ଏହା କହି ସେ ପେନ୍‌ସିଲ୍ ଧରି ତାଙ୍କୁ ଅନାଇ ପଚାରିଲେ "ଗୋଲଜ୍ ଏଠି ଅଛନ୍ତି ବୋଲି ତମେ କିପରି ଜାଣିଲ ? ଜଣେ ସେନାପତିଙ୍କୁ ଆକ୍ରମଣ ପୂର୍ବରୁ ଆସି ଖୋଜିବା କିପରି ସାଙ୍ଘାତିକ ଏକଥା କ'ଣ ତୁମକୁ ଜଣା ନାହିଁ ? ତୁମେ କେମିତି ଜାଣିଲ ଯେ, ସେ ଏଇଠି ଥିବେ ।'' ଗୋମେଜ ଆଣ୍ଡ୍ରିଙ୍କୁ ଜବାବ ଦେବାକୁ କହିବାରୁ, ଆଣ୍ଡ୍ରି ଆରମ୍ଭ କଲା, କିନ୍ତୁ ସେ ଆଣ୍ଡ୍ରି ମାସାର୍ଟଙ୍କର ପଦମର୍ଯ୍ୟାଦା ଜାଣି ନଥିଲା । ସେଇଥିପାଇଁ କହିଲା, "ସାଥୀ ସେନାପତି—ମତେ ଏହି କାଗଜ ପତ୍ର ଫାସିଷ୍ଟମାନଙ୍କ ପଛପଟୁ ଦିଆ ଯାଇଛି ।"

ମାସାର୍ଟ୍ କହିଲେ, "ହୁଁ-ହୁଁ—ମୁଁ ଶୁଣିଛି ତମେ ଫାସିଷ୍ଟ ପଛଆଡ଼ୁ ଆସିଛ ।"

ଆଣ୍ଡ୍ରି କହିଲା, "ସାଥୀ-ସେନାପତି, ରବର୍ଟୋ ନାମକ ଯେଉଁ ଇଂରେଜ ଡାଇନାମାଇଟ୍ ନେଇ ପୋଲ ଉଡ଼ାଇବାକୁ ଆମ ପାଖକୁ ଆସିଅଛି ସେ ମତେ ଏହା ଦେଇଛନ୍ତି ।"

ମାସାର୍ଟ ଅଣ୍ଡ୍ରିଜକୁ କହିଲେ, "ହଉ—ତୋ କାହାଣୀ କହିଯା । କାହାଣୀ ଶବ୍ଦଟା ମିଛ, ଗାଲୁ ଗପ କିମ୍ବା କପୋଳ କଳ୍ପିତ ଅର୍ଥରେ ସେ ବ୍ୟବହାର କରିଥିଲେ ।

ଅଣ୍ଡ୍ରିଜ୍ କହିଲା, "ହଁ—ସାଥୀ ସେନାପତି, ସେହି ଇଂରେଜ ମତେ ଏହା ଦେଇ କହିଥିଲେ ଅତି ଶୀଘ୍ର ସେନାପତି ଗୋଲଜ୍‌ଙ୍କୁ ଏହା ଦେବା ପାଇଁ । ସେ ଅଞ୍ଚଳ ସେଠା ପାହାଡ଼ ଉପରେ ଆକ୍ରମଣ କରିବା କଥା । ସୁତରାଂ ଆପଣ ଅନୁଗ୍ରହ କରି ସେନାପତି ଗୋଲଜ୍‌ଙ୍କ ପାଖକୁ ଏହାକୁ ପଠାଇ ଦିଅନ୍ତୁ ଏତିକି ମୋର ପ୍ରାର୍ଥନା ।" ମାର୍ଟ ମୁଣ୍ଡ ହଲାଇ ଅଣ୍ଡ୍ରିଜ୍ ଆଡ଼କୁ ଚାହିଁଲେ । କିନ୍ତୁ ତାକୁ ନ ଦେଖିଲା ପରି ରହିଲେ । ଗୋଲଜ୍‌ଙ୍କ ସମ୍ବନ୍ଧରେ ତାଙ୍କ ମନରେ ଭୟମିଶା ଉତ୍ଫୁଲ୍ଲତା ଜାଗ୍ରତ ହେଲା । ସତେ ଯେମିତି ଜଣେ ଘୃଣାର ପାତ୍ର ବ୍ୟବସାୟୀ ପ୍ରତିଯୋଗୀ, ଯିଏ କି ଟଙ୍କା ପଇସା ତୋଷରପାତ୍ର କରିଥିବା ତୁମେ ଜାଣ । ତାହାର କୌଣସି ମୋଟର୍ ଦୁର୍ଘଟଣାରେ ମରିବା ଖବର ପାଇଲେ ଯେମିତି ଆନନ୍ଦ ପାଇବା କଥା, ମାସାର୍ଟଙ୍କ ମନରେ ସେହିପରି ଭାବ ଜାତ ହେଲା । ସେ ଗୋଲଜ୍‌ଙ୍କୁ ୨୦ ବର୍ଷ ହେଲା ଜାଣି ଅଛନ୍ତି । ଗୋଲଜ୍ ସାଇବେରିଆରେ ଲୁକାସଙ୍କ ସହିତ ଶୀତ କାଳରେ ସୁନା ନେଉଥିବା ରେଲଗାଡ଼ି ଧରିଥିଲେ । ଗୋଲଜ୍ ପୋଲଣ୍ଡରେ କୋଲ୍‌ଚକ୍ ବିରୁଦ୍ଧରେ ଯୁଦ୍ଧ କରିଥିଲେ । ଏହାଛଡ଼ା ଗୋଲଜ୍ କକେସସ୍ ଓ ଚୀନାରେ ଯୁଦ୍ଧ କରିଥିଲେ ଏବଂ ଅକ୍ଟୋବର ମାସ ଠାରୁ ଏଠାରେ ଅଛନ୍ତି । ସେ ତୁକା ଚେଭସ୍କି ଏବଂ ଭରସିଲଭ୍‌ଙ୍କ ଅତି ଘନିଷ୍ଠ ବନ୍ଧୁ । ଏହାଛଡ଼ା ଏଠାରେ ର୍‌କୋଭ୍, କ୍ଲୁକାସ୍ ମଧ୍ୟ ତାଙ୍କର ପରିଚିତ । ସେ ଯେମିତି ଗଲ୍‌ଙ୍କୁ ଘୃଣା କରନ୍ତି, ଗୋଲଜ୍ ମଧ୍ୟ ସେହିପରି ଘୃଣା କରନ୍ତି । ପୁତ୍ରିକ ତାଙ୍କର ପ୍ରିୟ ପାତ୍ର । ଡୁଭାଲ୍ ତାଙ୍କର ପ୍ରଧାନ ସହକର୍ମୀ । ଗୋଲଜ୍ କ'ଣ ଫାସିଷ୍ଟମାନଙ୍କ ସହିତ ଚିଠିପତ୍ର ସମ୍ପର୍କ ରଖିଲେଣି କି ? ଏମିତିକା ସଢ଼ା ପତ୍ର ଡାଳକୁ ଗଛରୁ ନ କାଟି ଦେଲେ, ଗଛ କେବେ ଭଲ ଭାବରେ ବଢ଼ିବ ନାହିଁ । ସେ ଜାଣିଥିଲେ, ଭାଇ, ବନ୍ଧୁ, ସ୍ତ୍ରୀ, କାହାକୁ ବିଶ୍ୱାସ କରିବା ଉଚିତ ନୁହେଁ । ଗୋଲଜ ବିଶ୍ୱାସଘାତକ ପାଲଟିବା ବିଶ୍ୱାସ କରି ସେ କ୍ଷୁବ୍ଧ ହେଲେ । ପ୍ରହରୀମାନଙ୍କୁ କହିଲେ—ଏହି ଦୁଇଜଣଙ୍କୁ ନେଇ ସାବଧାନରେ ଜଗି ରଖ । ଜମାଦାର ସୈନିକ ଆଡ଼କୁ ଅନାଇଲା । ତାଙ୍କ ଦୃଷ୍ଟିରେ ମାସାର୍ଟଙ୍କର ଆଜିକା କାମ ଅତି ଶାନ୍ତ ।

ଗୋମେଜ୍ କହିଲେ, "ସାଥୀ-ମାସାର୍ଟ, ଏପରି ପାଗଳ ପଣ କରନ୍ତୁ ନାହିଁ । ମୁଁ ଜଣେ ବିଶ୍ୱସ୍ତ ଅଫିସର୍ ଏବଂ ସାଥୀ । ମୋ କଥା ଶୁଣନ୍ତୁ । ଏହି ଚିଠି ଯେ କୌଣସି ମତେ ପହଞ୍ଚାଇବାକୁ ହେବ । ମୋ ସଙ୍ଗୀ ଏହାକୁ ଫାସିଷ୍ଟ ଲାଇନ୍‌ର

ପଛପଟୁ ସେନାପତ ଗୋଲ୍‌ଜ୍‌ଙ୍କୁ ଦେବା ପାଇଁ ଆଣିଅଛୁ । ସେ ସଦୟ ଭାବରେ ପ୍ରହରୀକୁ କହିଲେ ଏହାଙ୍କୁ ନେଇଯାଅ ।

ଏହାଙ୍କୁ ମାରିବା ଦରକାର ହେଲେ, ସେ ଦୁଃଖ ବୋଧ କରିବେ । କିନ୍ତୁ ଗୋଲ୍‌ଜଙ୍କର କଥା ତାଙ୍କ ମନକୁ ଭାରାକ୍ରାନ୍ତ କଲା । ସେ ଭାବିଲେ—ଫାସିଷ୍ଟମାନଙ୍କର ଏହି ଖବର ସେ ଯାଙ୍ଗେ ଯାଙ୍ଗେ ଭାରଲେଙ୍କ୍ ପାଖକୁ ନେଇଯିବେ । ନା—ନିଜେ ନେଇ ଗୋଲ୍‌ଜଙ୍କୁ ଦେଇ ଦେଖିବେ ତାଙ୍କର ମନୋଭାବ କିପରି ହେଉଛି । କିନ୍ତୁ ଗୋଲ୍‌ଜ୍ ଯେତେବେଳେ ବିଶ୍ୱାସଘାତକ ସେତେବେଳେ ଭାର୍‌ଲେଙ୍କଙ୍କୁ ବିଶ୍ୱାସ କରିବେ କିପରି ? ଆଣ୍ଡ୍ରିଜ୍ ଗୋମେଜ୍‌ଙ୍କୁ କହିଲା, "ଆପଣ କଣ ଭାବୁଛନ୍ତି ସେ ଏ ଚିଠି ପଠାଇବେ ?"

ଗୋମେଜ୍ କହିଲେ, "ତୁ ଦେଖି ପାରୁ ନାହୁଁ । ସେ ପାଗଳ ।" ଏହାପରେ ଗୋମେଜ୍ ବଡ଼ ପାଟିରେ ମାର୍ସାଟଙ୍କୁ କହିଲା, "ଅରେ ପଗଳା, ହତ୍ୟାକାରୀ, ମୋ କଥା ଶୁଣ । ମାର୍ସାଟ ଯେତେବେଳେ ନାଲି, ନେଲି ପେନ୍‌ସିଲ୍ ଥିବା ମାନଚିତ୍ର ଉପରେ ଝୁଙ୍କି ପଡ଼ିଥାନ୍ତି । ସେ ପ୍ରହରୀକୁ କହିଲେ, "ଏମାନଙ୍କ ଦୋଷ ଧରା ପଡ଼ିବାରୁ ମୁଣ୍ଡ ବିଗିଡ଼ି ଗଲାଣି । ଏହାଙ୍କୁ ନେଇ ଯାଅ ।" ଏ କଥାର ତାତ୍ପର୍ଯ୍ୟ ଜମାଦାରଙ୍କୁ ଜଣା । ସେ ବହୁବାର ଏକଥା ଶୁଣିଛି ।

ଗୋମେଜ୍ ଚିତ୍କାର କଲା, 'ତୁ ଗୋଟାଏ ମଣିଷମାରୁ ପାଗଳ ।'

ଆଣ୍ଡ୍ରିଜ୍ ତାଙ୍କୁ କହିଲା, 'ଏ ପାଗଳକୁ ନେଇ କ'ଣ କରିବା । ଲୋକଟାର ଅଦ୍ଭୁତ୍‌ଆମଣା ଦେଖି ଅଣ୍ଡ୍ରିଜ ଚିଗିଗଲା । ଭାବିଲା ସେ ଯଦି ପାଗଳ, ତେବେ ପାଗଳ ସହିତ ପାଗଳ ପରି ବ୍ୟବହାର କରିବା ଉଚିତ । ତା ପକେଟରୁ ଆମ ଚିଠି କାଢ଼ି ଆଣିବା ଦରକାର । ସେ ଧ୍ୱଂସ ହେଉ ! ଅଣ୍ଡ୍ରିଜ ମନରେ ସ୍ୱଦେଶ ସୁଲଭ ରାଗ କ୍ରମେ ବଢ଼ିବାକୁ ଲାଗିଲା । ଅଳ୍ପ ପରେ ସେ ଅନ୍ଧ ପାଲଟି ଯିବ । ପ୍ରହରୀମାନେ ଗୋମେଜ ଆଉ ଆଣ୍ଡ୍ରିଜଙ୍କୁ ନେଇ ଗଲାବେଳେ ମାର୍ସାଟ ମାନଚିତ୍ରକୁ ଅନାଇ ଦୁଃଖରେ ମୁଣ୍ଡ ହଲାଇବାକୁ ଲାଗିଲେ । ପ୍ରହରୀମାନେ ମାର୍ସାଟଙ୍କର ଗାଳି ଶୁଣିବାରେ ଅଭ୍ୟସ୍ତ ଥିଲେ କିନ୍ତୁ ଆଜିକାର ଘଟଣାରେ ସେମାନେ ହତାଶ ହେଲେ । ଏହାଠାରୁ ବହୁତ ଭଲ ଦୃଶ୍ୟ ସେମାନେ ଦେଖିଥିଲେ । ଗାଳି ଶୁଣିବା ଆଣ୍ଡ୍ରିଜ, ମାର୍ସାଟଙ୍କର ଅଭ୍ୟାସରେ ପରିଣତ ହୋଇଥିଲା । ମଣିଷ ହିସାବରେ ସେ ଅନ୍ୟମାନଙ୍କର ପ୍ରତି ଅନ୍ତରୀଙ୍କ ଦୁଃଖ ଅନୁଭବ କରିଥାନ୍ତି । କିନ୍ତୁ ଆଦର୍ଶ ହେଉଛି ତାଙ୍କ ପାଖରେ ସବୁଠାରୁ ବଡ଼ । ସେ ସେଇଠି ବସି ନିଜ ମୋଡ଼ ମାନଚିତ୍ର ଦେଖୁଥାନ୍ତି । ବୁଢ଼ୀଆଣି ଜାଲ ପରି ଅସଂଖ୍ୟ ରେଖାଯୁକ୍ତ ମାନଚିତ୍ରରୁ ସେ ପ୍ରକୃତରେ କିଛି ବୁଝି ନଥିଲେ ।

ପାହାଡ଼, ପର୍ବତର ଉଚ୍ଚତା, ଉପତ୍ୟକା, ଉଚ୍ଚନୀଚ ଭୂମି ଏ ସବୁ ସେ ମାନଚିତ୍ରରୁ ଜାଣି ପାରୁଥିଲେ କିନ୍ତୁ ଏହି ପାହାଡ଼ ଉପତ୍ୟକା ପାଇଁ କାହିଁକି ଯୁଦ୍ଧ ହେଉଛି ଏ କଥା ସେ ଜାଣି ପାରୁ ନଥିଲେ । ପ୍ରଧାନ ସାମରିକ କାର୍ଯ୍ୟାଳୟରେ ରାଜନୀତିକ ସମ୍ପାଦକଙ୍କ ମତ ପ୍ରବଳ । ବ୍ରିଗେଡ଼ର ରାଜନୀତିକ ନେତା ହିସାବରେ ସେ ସେଠାରେ ହସ୍ତକ୍ଷେପ କରି ପାରନ୍ତି । ମାନଚିତ୍ରରେ ରାସ୍ତା ସମାନ୍ତରରେ ଥିବା କେତେ ଜାଗା ମଧ୍ୟ ସେ ଚିହ୍ନଟ କରି ଦେଇ ପାରନ୍ତି । କିନ୍ତୁ ନଦୀ କୂଳିଆ ଏମିତି ଗୋଟାଏ ଜାଗାକୁ ସେ ଦୁର୍ବଳତାର ସ୍ଥାନ ବୋଲି ମନେ କଲେ । ଗଲ୍ ଆଉ କୁପିକ୍ ଦୁଇଜଣ ରାଜନୀତିକ ତାଙ୍କ କଥାରେ ଏକମତ ହେବେ । ଏହା ପରେ ଯେଉଁମାନେ ମାନଚିତ୍ର ଦେଖି ନଥିବେ ଖାଲି ପାହାଡ଼ କଥା ଶୁଣିଥିବେ, ଯେଉଁମାନେ ଗାତ ଖୋଳି ଲୁଚି ରହିଥିବେ ସେହିମାନେ ଏହି ପାହାଡ଼ ଉପରେ ଆକ୍ରମଣ କରିବାକୁ ଯିବେ ଏବଂ ଉପର ଆଉ ଗୁପ୍ତ ସ୍ଥାନରେ ଗୋଲ ମାଡ଼ରେ କରିବେ । ଅନ୍ୟ କୌଣସି ରଣକ୍ଷେତ୍ରରେ ସେମାନେ ହୁଏତ ସହଜରେ ପାହାଡ଼ ଚଢ଼ି ପାରିବେ କିନ୍ତୁ ସଫଳ ହେବାର ସମ୍ଭାବନା ନାହିଁ । ଗୋଲଜଙ୍କ କାର୍ଯ୍ୟାଳୟରେ ଥିବା ମାନଚିତ୍ରରେ ଯେତେବେଳେ ଆଙ୍ଗୁଳି ଦେଇ ସ୍ଥାନ ନିର୍ଦ୍ଦେଶ କରୁଥିଲେ ସେତେବେଳେ ମସ୍ତକରେ କ୍ଷତ ଚିହ୍ନଧାରୀ ଏହି ସେନାପତି ଦାନ୍ତ କାମୁଡ଼ି କହୁଥିଲେ "ଆଣ୍ଡ୍ରି ମାସାର୍ଟ ମୋର ଏହି ମାନଚିତ୍ରରେ ଆଙ୍ଗୁଳି ମାରିଲେ ମୁଁ ତତେ ଗୋଲି ମାରି ଉଡ଼ାଇ ଦେବି । ତୁ ନିଜେ ଯେଉଁ କଥା ନବୁଝୁ, ସେ କଥା ପାଇଁ ବହୁ ଲୋକଙ୍କୁ ହତ୍ୟା କରିଛୁ । ତତେ କର୍ତ୍ତାମାନେ, ଟ୍ରାକ୍ଟର୍, କାରଖାନା, ଗ୍ରାମ ଏବଂ ସହଯୋଗ ସମିତି ଭାର ଦେଇଥିବାରୁ ମୁଁ ତତେ କିଛି କରି ପାରୁନାହିଁ । କିନ୍ତୁ ମୋ ଲୋକଙ୍କୁ ଛାଡ଼ି ଆଉ ଯେଉଁଠି କଂସେଇ କାମ କରିବାକୁ ଇଚ୍ଛା, ଯାଇ କର ।" ଏହିପରି କହିବା ଗୋଲଜଙ୍କ ମନୋଭାବ ବୋଲି ମାସାର୍ଟ ଜାଣିଥିଲେ । କିନ୍ତୁ ଗୋଲଜ୍ ଏହା ନକହି ନିଜର ଅଧା ପାଚିଲା ନିଶ ମୋଡ଼ି ଆଖି ଜଳଜଳ କରି କହୁଥିଲେ, ହଁ ସାଥୀ ମାସାର୍ଟ, ମୁଁ ତମର ଯୁକ୍ତି ବୁଝୁଛି କିନ୍ତୁ ସେଥିରେ କିଛି ତ୍ରୁଟି ରହିଛି ବୋଲି ମୁଁ ଏକମତ ହେଉ ନାହିଁ । ତୁମେ ମୋ ମତ ଖଣ୍ଡନ କରିବାକୁ ଦଳରେ ଏ ପ୍ରସଙ୍ଗ ଉତ୍ଥାପନ କରପାର ।

ଆଣ୍ଡ୍ରି ମାସାର୍ଟ ବିଜୁଳି ଆଲୁଅରେ ମାନଚିତ୍ର ଦେଖିବାକୁ ଲାଗିଲେ । ସେ ତାଙ୍କର ଚଉଡ଼ା ଟୋପିର ପଟି ଆଗକୁ ଟାଣି ଦେଇଥିଲେ ଏବଂ ଆକ୍ରମଣ ସମ୍ବନ୍ଧୀୟ ହୁକୁମନାମା ଗଭୀର ମନୋନିବେଶ କରି ବିଚାର କରୁଥିଲେ । ସତେ ଯେପରି ସାମରିକ ବିଦ୍ୟାଳୟର ଜଣେ ଶୀକ୍ଷାର୍ଥୀ କୌଣସି ସମସ୍ୟା ସମାଧାନ କରିବାରେ ନିରତ ।

ସତେ ଯେମିତି ସେ ରଣକ୍ଷେତ୍ରରେ ସୈନ୍ୟ ପରିଚାଳନା କରୁଛନ୍ତି ଏବଂ ଦରକାର ପଡ଼ିଲେ କାର୍ଯ୍ୟବିଧି ବଦଳାଇ ପାରନ୍ତି । ସେ ରବର୍ଟ ଜର୍ଡାନଙ୍କ ପ୍ରେରିତ

ଚଠି ପକେଟରେ ପୁରାଇ ବସି ରହିଲେ । ଗୋମେଜ ଓ ଆଣ୍ଡ୍ରିଜ ବନ୍ଦୀଘରେ ରହିଲେ । ତେଣେ ପୋଲ ଉପର ମୁକ୍ତ ବଣ ଭିତରେ ରବର୍ଟ ଜର୍ଡାନ ଅପେକ୍ଷା କରି ରହିଲେ । ଅବଶ୍ୟ ଆଣ୍ଡ୍ରିଜ୍ ଆଉ ଗୋମେଜ୍ ଏପରି ବାଧା ପାଇ ନଥିଲେ ନିଜ ଉଦ୍ଦେଶ୍ୟ ହାସଲ କରି ପାରିଥାନ୍ତେ ଏହା ନିଃସନ୍ଦେହ । ରଣକ୍ଷେତ୍ରରେ ଏପରି କାହାରି କୌଣସି କ୍ଷମତା ନଥିଲା ଯେ ଆକ୍ରମଣ କରିବା'ର ଆଦେଶ ଖାରଜ କରି ପାରିବ । ଉଦ୍ୟମ ଆୟୋଜନ ବହୁକାଳ ହେଲା ଚାଲିଥିଲା । ହଠାତ୍ ତାକୁ ବନ୍ଦ କରି ହେବ ନାହିଁ । ସବୁ ସାମରିକ କ୍ରିୟାନୁଷ୍ଠାନରେ ପ୍ରଥମେ ନିରୁଦ୍ୟମତା ଦେଖା ଦେଇଥାଏ । କିନ୍ତୁ ଥରେ ତାହା କଟିଗଲେ କାର୍ଯ୍ୟ ଏପରି ଦ୍ରୁତ ଗତିରେ ଚାଲେ ଯେ ତାକୁ ଅଟକାଇବା ସହଜ ନୁହଁ । ମୋଟ ଉପରେ ଆରମ୍ଭ କରିବା ଯେପରି କଷ୍ଟସାଧ୍ୟ ଆରମ୍ଭ ପରେ ବନ୍ଦ କରିବା ସେହିପରି କଷ୍ଟସାଧ୍ୟ ।

କିନ୍ତୁ ଅଙ୍କ ଗୃହରେ ବୁଢ଼ା ଟୋପି ଟାଣି ମାନଚିତ୍ର ଦେଖୁଥିବାବେଳେ ହଠାତ୍ କବାଟ ଫିଟାଇ ରୁଷୀୟ ସାମ୍ବାଦିକ କାରକୋଭ୍ ସଙ୍ଗରେ ଆଉ ଦୁଇଜଣ ବେସାମରିକ ପୋଷାକ ପିନ୍ଧା ରୁଷୀୟଙ୍କୁ ନେଇ ଘରେ ପ୍ରବେଶ କଲେ । ଅନିଚ୍ଛା ସତ୍ତ୍ୱେ ଜମାଦାର କବାଟ ଆଉଜାଇ ଦେଲା । ଦାୟିତ୍ୱ ସମ୍ପନ୍ନ ହାକିମଙ୍କ ମଧ୍ୟରେ ସେ ପ୍ରଥମ କାରକୋଭ୍‌ଙ୍କୁ ଦେଖି ସମ୍ବାଦ ଦେଇଥିଲା ।

କାରକୋଭ୍ ଅବଜ୍ଞାସୂଚକ ହାସ୍ୟରେ ଭଦ୍ରଭାବରେ ଡାକଲେ 'ମାସାର୍ଟ ସାହେବ' । ମାସାର୍ଟ ଛିଡ଼ା ହୋଇଗଲେ । ସେ କାରକୋଭ୍‌ଙ୍କୁ ପସନ୍ଦ କରୁ ନଥିଲେ । କିନ୍ତୁ କାରକୋଭ୍ ହେଉଛନ୍ତି ପ୍ରଭ୍‌ଦା ପତ୍ରିକାର ସମ୍ବାଦ ଦାତା । ଷ୍ଟାଲିନ୍‌ଙ୍କ ସହିତ ତାଙ୍କର ପ୍ରତ୍ୟକ୍ଷ ଚିଠିପତ୍ର ଚାଲେ ଏବଂ ଉପସ୍ଥିତ ଅବସ୍ଥାରେ ସ୍ପେନ୍ ଦେଶର ତିନି ପ୍ରଧାନ ବ୍ୟକ୍ତିଙ୍କ ମଧ୍ୟରେ ଅନ୍ୟତମ । ମାସାର୍ଟ କହିଲେ "କୁହନ୍ତୁ—କାରକୋଭ୍ ମହାଶୟ ।"

କାରକୋଭ୍ ଉଦ୍ଧତ ଭାବରେ ମାନଚିତ୍ରକୁ ଦେଖାଇ ପଚାରିଲେ 'ତୁମେ ଆକ୍ରମଣ କରିବାକୁ ପ୍ରସ୍ତୁତ ହେଉଅଛ କି ?'

ମାସାର୍ଟ ଜବାବ୍ ଦେଲେ "ମୁଁ ଏହା ବିଚାର କରୁଅଛି ।"

କାରକୋଭ୍ କହିଲେ "ତୁମେ ଆକ୍ରମଣ କରିବ ନା ଗୋଲଜ୍ କରିବ ।"

ମାସାର୍ଟ ଜବାବ ଦେଲେ "ଆପଣ ତ ଜାଣନ୍ତି ମୁଁ ଜଣେ ରାଜନୀତିକ ସେକ୍ରେଟାରୀ ।"

କାରକୋଭ୍ କହିଲେ "ନା—ଏହା ତୁମର ବିନୟ ପ୍ରକାଶ ମାତ୍ର । ତୁମେ ଜଣେ ସେନାପତି । ତୁମ ସାମନାରେ ମାନଚିତ୍ର ଏବଂ ଦୂରବୀକ୍ଷଣ ଯନ୍ତ୍ର ରହିଛି । ଅଚ୍ଛା ସାଥୀ ମାସାର୍ଟ, ତୁମେ ପୂର୍ବେ ଜଣେ ନୌ-ସେନାପତି ନଥିଲ କି ?"

ମାସାର୍ଟ କହିଲେ "ମୁଁ ଜଣେ ଗୋଲନ୍ଦାଜର ସହକାରୀ ଥିଲି ।" ଏହା ମିଥ୍ୟା । ବିଦ୍ରୋହ ବେଳେ ସେ ଜଣେ ପ୍ରଧାନ ନାବିକ ଥିଲେ । କିନ୍ତୁ ସବୁବେଳେ ଗୋଲନ୍ଦାଜ୍ ସହକାରୀ ବୋଲି ଭାବୁଥିଲେ ।

କାରକୋଭ୍ କହିଲେ "ଓ ହୋ—ମୁଁ ଭାବିଥିଲି ତମେ ଜଣେ ପ୍ରଥମ ଶ୍ରେଣୀର ନୌ-ଅଫିସର । ସାମ୍ବାଦିକ ହୋଇଥିବାରୁ ମୁଁ ସବୁବେଳେ ଭୁଲ ଖବର ପାଇଥାଏଁ ।"

ଅନ୍ୟ ଦୁଇଜଣ ରୁଷୀୟ ଏହି କଥାବାର୍ତ୍ତାରେ କୌଣସି ଅଂଶ ଗ୍ରହଣ କରି ନଥିଲେ । ସେମାନେ ମାସାର୍ଟଙ୍କ ପଛପଟେ ନକ୍ସପତ୍ର ମାନଚିତ୍ର ଦେଖୁଥିଲେ ଏବଂ ମଝିରେ ମଝିରେ ରୁଷୀୟ ଭାଷାରେ ମନ୍ତବ୍ୟ କରୁଥିଲେ । ମାସାର୍ଟ ଓ କାରକୋଭ୍ ଫରାସୀ ଭାଷାରେ କଥାଭାଷା ହେଉଥିଲେ ।

ମାସାର୍ଟ କହିଲେ 'ପ୍ରଭଦା ପାଇଁ ଭୁଲ ଖବର ସଂଗ୍ରହ କରିବା ଠିକ୍ ନୁହେଁ ।' ଏକଥା ନିଜ ସାହସ ବଢ଼ାଇବା ପାଇଁ ସେ ଖୋଲ୍‌ଠୋଲ୍ କହିଥିଲେ । କାରକୋଭ୍ ସବୁବେଳେ ଫରାସୀ ଭାଷାରେ ତାଙ୍କୁ ଖୁଣ୍ଟା ଦେଉଥିଲେ । ଆନ୍ଦ୍ରେ ମାସାର୍ଟ ଫରାସୀ କେନ୍ଦ୍ର-ସାମ୍ୟବାଦୀ ଦଳରୁ କି ଗୁରୁତ୍ୱ ନେଇ ଏଠାକୁ ଆସିଥିଲେ ସେ କଥା ସେ ଭୁଲି ଯାଉଥିଲେ, କାରକୋଭଙ୍କ ମନ୍ତବ୍ୟ ଶୁଣି । ସେ ଏଠାରେ ଜଣେ ଅସ୍ପୃଶ୍ୟ ଭଳି କାରକୋଭଙ୍କ ଠାରୁ ବ୍ୟବହାର ପାଉଥିଲେ । କାର୍କୋଭ୍ କହିଲେ ପ୍ରଭଦାକୁ ସମ୍ବାଦ ପଠାଇବା ପୂର୍ବରୁ ମୁଁ ନିଜେ ସବୁ ସଂଶୋଧନ କରିଥାଏ । ପ୍ରଭଦାରେ ମୁଁ ସମ୍ପୂର୍ଣ୍ଣ ସଠିକ ଖବର ଦେଇଥାଏ । ଅଚ୍ଛା ସାଥି ମାସାର୍ଟ କ୍ୱିଚ୍ଚ ତ ଦେଖି ଫାସିଷ୍ଟମାନଙ୍କ ପଛପଟେ ସେଗୋଭିଆ ଠାରେ କାମ କରୁଥିବା ଆମ ପକ୍ଷୀୟ ଲୋକଙ୍କ ପାଖରୁ କୌଣସି ସମ୍ବାଦ ଗୋଲଜଙ୍କ ପାଖକୁ ଆସିଥିବାର ତୁମେ ଶୁଣିଛ କି ? ସେଠି ଜର୍ଡାନ୍ ନାମରେ ଜଣେ ମାର୍କିନ୍ ସାଥି କାମ କରୁଛନ୍ତି । ଆମେ ସବୁ ତାଙ୍କ ନାମ ଜାଣୁ ।" ସେ ଜାଗାରେ ଫାସିଷ୍ଟଙ୍କ ପଛପଟେ ଯୁଦ୍ଧ ଲାଗିଅଛି ବୋଲି ଆମେ ଶୁଣୁ । ସେ ଲୋକ ଗୋଲଜଙ୍କ ପାଖକୁ ଖବର ପଠାଇଥିବା କଥା ।

ମାସାର୍ଟ ପଚାରିଲେ—"ଜଣେ ମାର୍କିନ୍ ?" ଆଣ୍ଡ୍ରେଜ୍ ତ କହିଥିଲା ଇଂରେଜ । ତା ହେଲେ ଏଇଠି ସେ ଭୁଲ କରିଛନ୍ତି । ସେ ଦଶଟା ଓଲୁ ଏପରି ଭାବରେ

କାହିଁକି କହିଲେ । କାର୍କୋଭ୍ ମାସାର୍ଟଙ୍କୁ ଅବଜ୍ଞା ଦୃଷ୍ଟିରେ ଅନାଇ ଜବାବ ଦେଲେ "ହଁ ଜଣେ ମାର୍କିନ୍ ଯୁବକ । ତାଙ୍କର ରାଜନୀତି ଜ୍ଞାନ ଅତି ଅଳ୍ପ । କିନ୍ତୁ ସ୍ପେନ ସମ୍ବନ୍ଧରେ ଅଭିଜ୍ଞତା ବହୁତ ବେଶି । ଏହାଛଡ଼ା ଆମ ସପକ୍ଷରେ ସେ ଚମତ୍କାର କାମ କରି ଅଛନ୍ତି । ହଉ—ମତେ ତାଙ୍କ ଚିଠି ଖଣ୍ଡ ଦିଅ । ତୁମେ ଯଥେଷ୍ଟ ବିଳମ୍ବ କରି ସାରିଲଣି । ମାସାର୍ଟ ପଚାରିଲେ "କି ଚିଠି ?" ଏପରି କହିବା ଯେ କେତେ ଦୂର ମୂର୍ଖତା ତା ସେ ଭଲଭାବରେ ଜାଣିଥିଲେ । କିନ୍ତୁ ଏତେ ଶୀଘ୍ର ସେ ଭୁଲ ସ୍ୱୀକାର କରିବାକୁ ପ୍ରସ୍ତୁତ ନଥିଲେ । ଅପଦସ୍ତ ହେବା ସମସ୍ୟାଟା ସେ ଗଡ଼ାଇବାକୁ ଚାହୁଁଥିଲେ ।

କାର୍କୋଭ କହିଲେ "ଚିଠି ସହିତ ଗ୍ରାଡ଼ପତ୍ର ମଧ୍ୟ ମତେ ଦିଅ ।"

ଆଣ୍ଡ୍ରି ମାସାର୍ଟ ପକେଟରେ ହାତ ପୂରାଇ ଚିଠି କାଢ଼ି ଟେବୁଲରେ ଥୋଇ କାର୍କୋଭଙ୍କୁ ଅନାଇ ରହିଲେ । ସେ ଯେ ଭୁଲ କରିଛନ୍ତି ଏକଥା ସୁଧାରିବାର ଆଉ ଉପାୟ ନଥିଲା । ତଥାପି ସେ ଅପମାନ ପାଇବାକୁ ରାଜି ନଥିଲେ । କାର୍କୋଭ୍ କହିଲେ "ଗ୍ରାଡ଼ପତ୍ରଟା ଦିଅ ।"

ମାସାର୍ଟ ତାହାକୁ ମଧ୍ୟ ଚିଠି ପାଖରେ ଥୋଇଲେ । ଏହାପରେ କାର୍କୋଭ୍ ସ୍ପେନ ଭାଷାରେ ଜମାଦାରକୁ ଡାକିବାରୁ ସେ କବାଟ ଫିଟାଇ ଭିତରକୁ ଆସିଲା । ଶିକାରୀ କୁକୁର ଘେରରେ ପଡ଼ି ବରାହ ଯେମିତି ରାଗରେ ଫୁଲିଆଏ ଆଣ୍ଡ୍ରି ମାସାର୍ଟ ସେହିପରି ହେଉଥିଲେ । ତାଙ୍କ ମୁହଁରେ ଭୟ ବା ଅପମାନର ଚିହ୍ନ ନଥିଲା । ସେ କେବଳ ରାଗି ଯାଇଥିଲେ ଏବଂ ସାମରିକ ଶତ୍ରୁମାନ ସେ ଜାଣିଥିଲେ । ଏହି କୁକୁରଗୁଡ଼ା ତାଙ୍କୁ ଅଟକାଇ ପାରିବେ ନାହିଁ ।

କାର୍କୋଭ୍ ଜମାଦାରଙ୍କୁ କହିଲେ ଏହି ଚିଠି ଓ ଗ୍ରାଡ଼ପତ୍ର ନେଇ ବନ୍ଦୀଶାଳାରେ ଥିବା ଦୁଇ ସାଥିଙ୍କୁ ଦେଇ ଗୋଲଜ୍‌ଙ୍କ ଠିକଣା କହିଦେବୁ । ବହୁତ ବିଳମ୍ବ ହୋଇ ଗଲାଣି ।

ଜମାଦାର ବାହାରିଗଲା । ମାସାର୍ଟ ତାକୁ ଏବଂ ପରେ କାରକୋଭଙ୍କୁ ଅନାଇ ରହିଲେ । କାର୍କୋଭ କହିଲେ "ସାଥି ମାସାର୍ଟ—ମୁଁ ବର୍ତ୍ତମାନ ଦେଖିବାକୁ ଯାଉଛି ତମେ କେତେ ଦୂର ଅସ୍ପୃଶ୍ୟ ।"

ମାସାର୍ଟ ତାଙ୍କ ଆଡ଼କୁ ଅନାଇ କିଛି କହିଲେ ନାହିଁ । କାର୍କୋଭ କହିବାକୁ ଲାଗିଲେ "ଦେଖ, ଜମାଦାର ସମ୍ବନ୍ଧରେ କିଛି ଶାସ୍ତି ବ୍ୟବସ୍ଥା କରିବ ନାହିଁ । ତାର

କିଛି ଦୋଷ ନାହିଁ । ମୁଁ ବନ୍ଦୀଶାଳାରେ ସେମାନଙ୍କୁ ଦେଖିଲି ଏବଂ ସେମାନେ ମତେ କହିଲେ । ମୋର ଆଶା ସମସ୍ତେ ମତେ ଏହିପରି କହିବେ ।"

"ବନ୍ଦୀମାନେ କହିଲେ ଏ କଥା ମିଛ ।" କହିଥିଲା ଜମାଦାର । କାର୍କୋଭଙ୍କର ବିଶ୍ୱାସ ସମସ୍ତଙ୍କ ସହିତ ସହଜରେ ମିଳାମିଶା କଲେ ଏବଂ ଭଲ ଉଦ୍ଦେଶ୍ୟରେ ହସ୍ତକ୍ଷେପ କଲେ ମାନବିକତା ଆଡ଼ୁ ତାହିଁରୁ ସୁଫଳ ଅଧିକ । ଏ ବିଷୟରେ ତାଙ୍କର କୌଣସି ସନ୍ଦେହ ନଥିଲା । ସେ କହିଲେ, "ତମେ ଜାଣ, ମୁଁ ସୋଭିଏତ୍ ବସ୍ତ୍ରରେ ଥିଲାବେଳେ ପ୍ରଭଦା ଠିକଣାରେ ଲୋକେ ମୋ ପାଖକୁ ଚିଠି ଲେଖିଥାନ୍ତି । ଯେ ଆଜରବୈଜାନର ଅମୁକ ସହରରେ ଅନ୍ୟାୟ ହେଉଅଛି । କାହିଁକି ଲେଖନ୍ତି ଜାଣ ? ଲୋକେ ବିଶ୍ୱାସ କରନ୍ତି ମୁଁ ତାଙ୍କୁ ସାହାଯ୍ୟ କରିବି ।"

ଅଶ୍ରଦ୍ଧା ଓ ରାଗପୂର୍ଣ୍ଣ ଦୃଷ୍ଟିରେ ଆଣ୍ଡ୍ରି ମାସାର୍ଟ ତାଙ୍କ ଆଡ଼କୁ ଚାହିଁଲେ । ସେ ସ୍ପଷ୍ଟ ବୁଝିଗଲେ ଯେ କାର୍କୋଭ୍ ତା ବିରୁଦ୍ଧରେ ଏହି କାମ କଲେ । ହଉ ସେ ପଛେ ତାଙ୍କୁ ଦେଖି ନେବ ।

କାର୍କୋଭ ପୁଣି ତାଙ୍କୁ କହିଲେ, "ଆଉ ଗୋଟିଏ କଥା । କିନ୍ତୁ ସେଇ ଏକ ଆଦର୍ଶ । ତମେ ଙ୍କେ ତେଦୂର ଅସ୍ପୃଶ୍ୟ ମୁଁ ତାହାହିଁ ବର୍ତ୍ତମାନ ଅନୁସନ୍ଧାନ କରିବି । ମୁଁ ଦେଖିବି ଯେ ଟ୍ରାକ୍‌ଟର କାରଖାନା ନାମ ବଦଳାଇବା ସମ୍ଭବ କି ନୁହେଁ ।"

ଆଣ୍ଡ୍ରି ମାସାର୍ଟ ତାଙ୍କୁ ନ ଚାହିଁ ମାନଚିତ୍ର ଆଡ଼କୁ ଦୃଷ୍ଟି ଦେଲେ । କାର୍କୋଭ୍ କହିଲେ, "ଆଚ୍ଛା କହିଲ, ଯୁବକ ଜର୍ଡାନ୍ କ'ଣ ଲେଖିଛି ।" ମାସାର୍ଟ ଜବାବ ଦେଲେ ମୁଁ ତାହା ପଢ଼ିନାହିଁ ସାଥି କାର୍କୋଭ୍ ।

କାର୍କୋଭ୍ କହିଲେ, "ଭଲ କଥା । ବର୍ତ୍ତମାନ ତୁମେ ତୁମର ସାମରିକ ଶ୍ରମ କରୁଥାଅ ।" ଏହା କହି ସେ ଘରୁ ବାହାରି ବନ୍ଦୀଶାଳା ଆଡ଼କୁ ଚାଲିଗଲେ । ସେତେବେଳକୁ ଆଣ୍ଡ୍ରିକ୍ ଓ ଗୋମେଜ୍ ଚାଲି ଯାଇଥାନ୍ତି । ସେ ରାସ୍ତା ଆଡ଼କୁ ଏବଂ ପହାଡ଼ ଶିଖରକୁ ଅନାଇଲେ । ଭୋର ହୋଇ ଆସୁଥାଏ । ସେ ଭାବିଲେ ଶୀଘ୍ର ସକାଳ ହୋଇଯିବ । ଆମ୍ଭମାନଙ୍କୁ ସେହି ପାହାଡ଼ ଉପରକୁ ପହଞ୍ଚିବାକୁ ହେବ ।

ଆଣ୍ଡ୍ରିକ ଓ ଗୋମେଜ ମଟର ସାଇକଲ ଚଲାଇ ରାସ୍ତା ଆଡ଼କୁ ଚାଲିଗଲେ । ଝିମ ଝିକିଏ ଫରମା ଫାଟି ଆସୁଥାଏ । ବର୍ତ୍ତମାନ ରାସ୍ତାରେ ବହୁତ ବାଙ୍କ ପଡ଼ିଲା । ସାମାନ୍ୟ କୁହୁଡ଼ି ମଧ୍ୟ ହୋଇଥାଏ । ବଣ ଭିତରେ ଗୋଟାଏ ଗଡ଼ାଣି ଜାଗା ଦେଖି

ମୋଟର ସାଇକଲ ଅଟକାଇଲେ । ବାଁ ପାଖକୁ ଅନେକ ଗୁଡ଼ିଏ ଟ୍ୟାଙ୍କ୍ ତାଳପତ୍ର ଘୋଡ଼ା ହୋଇଥାଏ । ଯାହା ବଣଟା ସୈନ୍ୟରେ ପୂର୍ଣ୍ଣ । ସୈନ୍ୟମାନେ ଲମ୍ବା ଲମ୍ବା ଛାତି କାନ୍ଧରେ ଧରି ଆସୁଥାନ୍ତି । ଗୋଟାଏ ଗଛ ତଳେ ତାହାଙ୍କୁ ତିନିଜଣ ଅଫିସରଙ୍କ ମୋଟର ତାଳପତ୍ର ଘୋଡ଼ା ହୋଇ ରହିଥାଏ । ଗୋମେଜ୍ ମୋଟର ସାଇକଲ ଠେଲି ଗୋଟିଏ ମୋଟର ଗାଡ଼ି ପାଖକୁ ଯାଇ ଡ୍ରାଇଭରଙ୍କୁ କହିବାରୁ ସେ କହିଲା, ତମ ମୋଟର ସାଇକଲକୁ ଲୁଚାଇ ଦିଅ । ମୁଁ ତମକୁ ସେମାନଙ୍କ ପାଖକୁ ନେଇଯିବି । ଏତେବେଳକୁ ଗଛ ଅଗରେ ସୂର୍ଯ୍ୟ ଉଦୟ ହେବାର ଦେଖାଗଲା । ଆନ୍ଦ୍ରେ ଓ ଗୋମେଜ୍ ଦୁହେଁ ଭିନ୍‌ସେଣ୍ଟ ନାମକ ସେହି ଡ୍ରାଇଭର ସାଙ୍ଗରେ ଗଲେ । ସେ ତାଙ୍କୁ ଗଡ଼ାଣି ମୁଣ୍ଡରେ ଗୋଟାଏ ବଡ଼ ଗାଡ଼ ପାଖକୁ ନେଇଗଲେ । ଗାଡ଼ ଭିତରେ ଅନେକ ଅନେକ ଲୋକ ଚଳପ୍ରଚଳ ହେଉଥାନ୍ତି । ଗୁରୁଆଡ଼ ପରିଷ୍କାର ପରିଚ୍ଛନ୍ନ କିନ୍ତୁ ବାହାରକୁ କିଛି ଦେଖାଯାଉ ନଥାଏ । ଏ ଦୁହିଁଙ୍କୁ ବାହାରେ ରଖି ଡ୍ରାଇଭର ଭିତରକୁ ଗଲା ଏବଂ ଫେରି ଆସି କହିଲା, ସେନାପତି ଉପରେ ରହି ସୈନ୍ୟ ସମାବେଶ କରୁଅଛନ୍ତି । ମୁଁ ତମ ଚିଠି ତାଙ୍କ ପ୍ରଧାନ ସହକର୍ମୀଙ୍କୁ ଦେଇଅଛି । ସେ ତାହା ଗ୍ରହଣ କରି ଏହି ରସିଦ ଦେଇଅଛନ୍ତି । ତାଙ୍କର ନାମ ଡୁଭାଲ୍ । ଆନ୍ଦ୍ରେ କହିଲା ଭଲ ହେଲା । ମତେ ଯେଉଁ ତିନି ଜଣଙ୍କୁ ଚିଠି ଦେବାକୁ କୁହାହୋଇଥିଲା ତାଙ୍କ ମଧ୍ୟରେ ଡୁଭାଲ ଜଣେ । "ଆଚ୍ଛା, ଆମେ ଏଠି ଜବାବ ପାଇଁ ଅପେକ୍ଷା କରିବା କି ଚାଲିଯିବା ?" ଗୋମେଜ୍ ପଚାରିଲେ ।

ଆନ୍ଦ୍ରେ କହିଲା, "ପୋଲ କାମ ସାରି ଇଂରେଜ କୁଆଡ଼େ ଯାଇଥିବେ ସେକଥା କେହି କହିପାରିବେ ନାହିଁ । କିନ୍ତୁ ଜବାବ୍ ନେଇ ଯିବା ଭଲ ହେବ ।"

ଭିନ୍‌ସେଣ୍ଟ୍ କହିଲେ, "ଆସ ମୋ ପାଖରେ ଅପେକ୍ଷା କରିବ ।" ମୁଁ ତମକୁ କାଫି ଦେବି । ତମେ ନିଶ୍ଚୟ କ୍ଷୁଧାର୍ତ୍ତ ହୋଇଥିବ ।" ସେମାନେ ତାଳପତ୍ର ଘୋଡ଼ା ମାଟିଆ ରଙ୍ଗର ଟ୍ୟାଙ୍କ୍ ଦେଇ ଗଲାବେଳେ ଗୋମେଜ୍ ପଚାରିଲା ଏ ସବୁ କଅଣ ହେବ ?"

ଭିନ୍‌ସେଣ୍ଟ୍ କହିଲେ, "ଏ ସବୁ ହାତରେ ପାଞ୍ଚ ଫୌଜ । ଯେଉଁମାନେ ଆକ୍ରମଣ ଆରମ୍ଭ କରିବେ ସେମାନେ ଉପରେ ଅଛନ୍ତି ।"

ଆନ୍ଦ୍ରେ କହିଲା, 'ଇସ୍ପେତ ବନ୍ଧୁର.ଦେଶୀ ।'

ଭିନ୍‌ସେଣ୍ଟ୍ କହିଲ 'ହଁ—ମୁଁ ଜାଣିଲିନ ।' ଟ୍ୟାଙ୍କମାନଙ୍କ ଉପରେ କମାଣ ସବୁ ସମାନ୍ତର ଭାବରେ ଖଞ୍ଜା ହୋଇଥାଏ ଏବଂ ହାଡ଼ବାଲା ଶିରସ୍ତ୍ରାଣ ଏବଂ କୋଟ ପିନ୍ଧି ସୈନ୍ୟମାନେ ମାଟିରେ ଶୋଇଥାନ୍ତି ।

ତେଣେ ଗାଡ ଭିତରେ ମୁହୂର୍ମୁହୁ ଘଡ଼ି ଦେଖି ଡୁଭାଲ ରବର୍ଟ ଜର୍ଜାନଙ୍କ ଦେହ ଛଟି ଚତୁର୍ଥଥର ପାଇଁ ପାଠ କଲେ । ପ୍ରଥମଥର ତାଙ୍କ କପାଳରୁ ଓ ଛାଖରୁ ଝାଳ ବୋହି ପଡୁଥାଏ । ସେଥିପାଇଁ ସେ ଟେଲିଫୋନ ଉଠାଇ କହିଲେ, "ମୋତେ ସେରୋଡ଼ିଆ ଦିଅ । ସେଠ ନାହାନ୍ତି, ତେବେ ଅଞ୍ଜେଲି ଦିଅ । ଟେଲିଫୋନରୁ କିଛି ଫଳ ହେଲା ନାହିଁ । ଦୁର୍ଭାଗ୍ୟବଶ ବ୍ରିଗେଡ଼ରେ ସେ ଗୋଲଜଙ୍କୁ ପାଇଲେ ନାହିଁ । ସେ ସୈନ୍ୟ ତଦାରଖ କରିବା ପାଇଁ ନିରୀକ୍ଷଣ ଘାଟିକୁ ଚାଲି ଯାଇଥିଲେ । ସେଠାକୁ ଟେଲିଫୋନ କରିବାରୁ ଜଣାଗଲା ଯେ ସେଠାରେ ମଧ୍ୟ ନାହାନ୍ତି ।

ଡୁଭାଲ ତହୁଁ ସବୁ ଦାୟିତ୍ୱ ନିଜ ହାତରେ ଗ୍ରହଣ କରି କହିଲେ "ମତେ ଗୋଟାଏ ଉଡ଼ାଜାହାଜ ଦିଅ । ଆକ୍ରମଣ ବନ୍ଦ କରିବା ଉଚିତ । ଯେଉଁଠାରେ ଶତ୍ରୁ ପକ୍ଷ ଅପେକ୍ଷା କରି ରହିଛନ୍ତି ସେଠାରେ ଅତର୍କିତ ଆକ୍ରମଣ ଫଳ ଅବଶ୍ୟମ୍ଭାବୀ ମୃତ୍ୟୁ । ଏହା କରାଇବା କିମ୍ବା ଘଟିବାକୁ ଦେବା ଉଚିତ ନୁହେଁ । ମୁଁ ବନ୍ଦ କରିବାକୁ ହୁକୁମ ଦେବି । ଏଥିରେ ମତେ ଯେଉଁ ଦଣ୍ଡ ମିଳିଲେ ମିଳୁ । ବିମାନଘାଟୀକୁ ଟେଲିଫୋନ କରି ସେ ଉଡ଼ାଜାହାଜ ପଠାଇବା ପାଇଁ ନିଷେଧ କଲେ । ତା ପରେ କହିଲେ, '୭୧ ନମ୍ବର ବ୍ରିଗେଡ଼୍ ଘାଟୀ ମତେ ଦିଅ । ଏହିପରି କଥା କହୁଥିଲାବେଳେ ସେ ଉଡ଼ାଜାହାଜ ଆସିବାର ଶବ୍ଦ ଶୁଣି ପାରିଲେ ।

ଠିକ୍ ଏତିକବେଳେ ସେ ପଟୁ ଗୋଲଜଙ୍କ କଥା ଶୁଣାଗଲା ।

ତେଣୁ ମଧ୍ୟ ଗୋଲଜ କହି ଉଠିଲେ "ହଁ, କ'ଣ ସମ୍ବାଦ ? ଖଣ୍ଡିଏ ପଥରରେ ଗୋଡ଼ ରଖି ଗୋଟିଏ ବାଲିବସ୍ତାରେ ଆଉଜି ବସି ଗୋଲଜ୍ ଉପର ତଳ ଦେଖୁଥାନ୍ତି । ପାହାଡ଼ ନାସୀ ଦିଗ୍‌ବଳୟଠାରୁ ୩ଟି ଧଳା ଉଡ଼ାଜାହାଜ ଆସିବାର ସେ ଲକ୍ଷ କରୁଥିଲେ । ସେ ଉଡ଼ାଜାହାଜ ଦେହରେ ଦୁଇଟି ଆଲୁଅ ମଧ୍ୟ ଦେଖି ପାରିଲେ । ସେ ଫରାସୀ ଭାଷାରେ ଡୁଭାଲଙ୍କୁ କହିଲେ "ହଁ ବୁଝିଲି । ଲଜ୍ଜାର କଥା, ଏ ସମ୍ବାଦ ଏତେ ଡେରିରେ ଆସିଲା । ଉଡ଼ାଜାହାଜମାନଙ୍କ ଗୁହଁ ତାଙ୍କ ଆଖି ଗର୍ବରେ ପୂରି ଯାଇଥିଲା । ଉଡ଼ାଜାହାଜମାନ ଦୃଢ଼ ଗର୍ଜନ କରି ଆସୁଥିଲେ । ଏ ସବୁ ଆମର ଉଡ଼ାଜାହାଜ । ଏଗୁଡ଼ିକ କୃଷ୍ଣସାଗର ଏବଂ ମାର୍ମୋରା ପ୍ରଣାଳୀ ପାରିହୋଇ ଆସିଅଛି । ଦାର୍ଦାନେଲିସ ଏବଂ ଭୂମଧ୍ୟସାଗର ମଧ୍ୟ ଦେଇ ଆଲକେନ୍ଦ୍ରିଆଠାରେ ଜାହାଜରୁ ଖଲାସ ହୋଇଅଛି । ସେହିଠାରେ ବିଭିନ୍ନ ଅଂଶ ଖଞ୍ଜାଯାଇ ପରୀକ୍ଷା ପରେ ନିର୍ଭୁଲ ଆକାରରେ ଆମର ଏ ଅଞ୍ଚଳକୁ ଉଡ଼ି ଆସିଅଛି ।

ଗୋଲଜ୍ ଜାଣିଥିଲେ ସେମାନେ ତାଙ୍କ ମୁଣ୍ଡ ଉପର ଦେଇ ଉଡ଼ିଗଲା ପରେ ବୋମା ବର୍ଷଣ ଆରମ୍ଭ କରିବେ । ତା ପଛକୁ ପାହାଡ଼ ଉପରୁ କମାଣମାନ ଗର୍ଜି

ଉଠିବ । ତା ପଛରେ ଚଳିବ ଟ୍ୟାଙ୍କ ଏବଂ ଟ୍ୟାଙ୍କ ପଛରେ ଯିବେ ଦୁଇ ବ୍ରିଗେଡ଼ ସୈନ୍ୟ । ଅତର୍କିତ ଆକ୍ରମଣ ଯଦି ହୋଇଆନ୍ତା ତା ହେଲେ ସମ୍ମୁଖରେ ଶତ୍ରୁକୁ ସମ୍ପୂର୍ଣ୍ଣରୂପେ ନିଶ୍ଚିହ୍ନ କରାଯାଇ ପାରନ୍ତା । ଟ୍ୟାଙ୍କ ସାହାଯ୍ୟରେ ଆମର ସୈନ୍ୟମାନେ କ୍ରମଶଃ ଆଗକୁ ବଢ଼ି ଶତ୍ରୁପକ୍ଷରେ ଧ୍ୱଂସ ତାଣ୍ଡବ ଖେଳାଇ ପାରନ୍ତେ । ଦୁଇଟା ମୁଣ୍ଡିଆରେ ଟ୍ୟାଙ୍କ୍ ବାହିନୀ ଅଛନ୍ତି । ଦୁଇ ବ୍ରିଗେଡ୍ ସୈନ୍ୟ ବଣରୁ ଆକ୍ରମଣ କରିବାକୁ ରହିଛନ୍ତି । ସବୁ ବିଷୟ ଯେମିତି ରହିବା କଥା ସେମିତି ଅଛି । ଉଡ଼ାଜାହାଜ ମଧ୍ୟ ଆସିଗଲା । କିନ୍ତୁ ରବର୍ଟ ଜର୍ଡ଼ାନଙ୍କ ଚିଠି ପଢ଼ି ସେ ବୁଝିଲେ ମୁଣ୍ଡିଆ ଉପରେ ଶତ୍ରୁପକ୍ଷର କେହି ନଥିବେ । ସେମାନେ ତଳକୁ ଖସି ଯାଇଥିବେ ଏବଂ ବଣ ଭିତରେ ଲୁଚି ରହିଥିବେ । ଟ୍ୟାଙ୍କ୍ ଭାଙ୍ଗିବା ତୋପ, ମେସିନ୍‌ଗନ୍ ଏ ସବୁ ଶତ୍ରୁପକ୍ଷ ଲୁଚାଇ ପଛପଟୁ ଉଡ଼ାଜାହାଜକୁ ଆକ୍ରମଣ କରିବେ । ଦଳ ଦଳ ଉଡ଼ାଜାହାଜ ଆସିବାର ଦେଖି ଗୋଲ୍‌ଜ ମୁଗ୍‌ଧ ହୋଇ ଟେଲିଫୋନରେ କହିଲେ, "ବର୍ତ୍ତମାନ କିଛି କରିବାର ନାହିଁ, ଯାହା ଘଟିବାର ଘଟିବ ।

ଗୋଲ୍‌ଜ ଗର୍ବିତ ପ୍ରାଣରେ ଉଡ଼ାଜାହାଜମାନ ନିରୀକ୍ଷଣ କରିବାକୁ ଲାଗିଲେ । ସେ ଭାବିଲେ କ'ଣ ହେବାର ଥିଲା କିନ୍ତୁ କ'ଣ ହେବାକୁ ଯାଉଛି । ସେ ଟେଲିଫୋନ ରଖିଦେଲେ । ତେଣେ ଡୁଭାଲ୍ କାଙ୍କ କଥା ଶୁଣି ପାରିଲେ ନାହିଁ । ଟେଲିଫୋନ୍ ଗ୍ରାହକ ଯନ୍ତ୍ର ହାତରେ ଧରି ସେ ବହୁକ୍ଷଣ ବସି ରହିଲେ । ସେ ଖାଲି ଉଡ଼ାଜାହାଜର ଗର୍ଜନ ଶୁଣୁଥିଲେ । ମନେ ମନେ ଆଶା କରୁଥିଲେ ହୁଏତ ବୋମା ବର୍ଷଣଦ୍ୱାରା ଆମେ ଶତ୍ରୁପକ୍ଷକୁ କାବୁ କରିଦେବୁ । ତା ପରେ ସଂରକ୍ଷିତ ସୈନ୍ୟଙ୍କୁ ନେଇ ଶତ୍ରୁପକ୍ଷର ବ୍ୟୂହ ଭେଦ କରି ଆଗେଇ ଯିବୁ । ଉଡ଼ାଜାହାଜ ଯାଉ, ଫେରୁ ପୁଣି ଯାଉ । ତୁମୁଳ ଗର୍ଜନ ଧ୍ୱନିରେ ସେ ନିଜର ଚିନ୍ତା ମଧ୍ୟ ପାଶୋରି ଦେଲେ ।

# ତେୟାଳିଶ ପରିଚ୍ଛେଦ

ରାସ୍ତା ଏବଂ ପୋଲର ଠିକ ଆରକୁ ପାହାଡ଼ର ଗଡ଼ାଣିରେ ଗୋଟିଏ ଦେବଦାରୁ ଗଛ । ତା' ଆଢୁଆଳରେ ରବର୍ଟ ଜର୍ଡାନ ଶୋଇ ରହି ସୂର୍ଯ୍ୟ ଉଦୟ ହେବାର ଦେଖୁଥିଲେ । ସେ ସବୁବେଳେ ଏହି ସମୟକୁ ଭଲ ପାଉଥିଲେ ଏବଂ ବର୍ତ୍ତମାନ ଏଥିପାଇଁ ପ୍ରତୀକ୍ଷା କରିଥିଲେ । ତାଙ୍କର ମନ ଭିତରଟା ମଧ୍ୟ ପ୍ରଫୁଲ୍ଲିତ ହୋଇ ଉଠିଥିଲା । ସତେ ଯେପରି ତାହା ସୂର୍ଯ୍ୟୋଦୟ ଜନିତ ଆଲୋକର ଗୋଟିଏ ଅଂଶ ବିଶେଷ । ଆଲୋକ ପାତରେ କଠିଣ ବସ୍ତୁ ସୁସ୍ପଷ୍ଟ ହୋଇଯାଏ, ମହାଶୂନ୍ୟରେ ଆଲୋକ ରଶ୍ମୀ ବିଚ୍ଛୁରିତ ପଡ଼େ ଏବଂ ଚନ୍ଦ୍ର ତାରାର କ୍ଷୀଣ ନୈଶ ଆଲୋକ ସୂର୍ଯ୍ୟୋଦୟ ସଙ୍ଗେ ସଙ୍ଗେ କ୍ରମେ ମ୍ଳାନ ହୋଇ ମିଳେଇ ଯାଏ । ତଳ ଆଡ଼କୁ ବିସ୍ତୃତ ବଣ ଭୂମିର ବୃକ୍ଷରାଜି ବର୍ତ୍ତମାନ ରବର୍ଟ ଜର୍ଡାନଙ୍କୁ ସ୍ପଷ୍ଟ ଭାବରେ ଦେଖାଗଲା ଏବଂ ତା ସାଙ୍ଗରେ ସୁଦୂର ବିସ୍ତୃତ କୁହେଳିକାଚ୍ଛନ୍ନ ରାସ୍ତା ଜଣା ପଡ଼ିଲା । ବଣରେ ଘାସ ପତ୍ରରେ ଜମିଥିବା ଶିଶିର ବିନ୍ଦୁରେ ସେ ସିକ୍ତ ହୋଇ ଯାଇଥିଲେ । ତାହା ସେ ତାଙ୍କ ଲୁଗାପଟାରୁ ଝାଡ଼ି ଦେଲେ । ତଳ ଦେଶରେ ନଦୀ ଏବଂ ଇସ୍ପାତ ପୋଲରୁ କୁହୁଡ଼ି ଉପରକୁ ଉଠିଯିବାକୁ ଲାଗିଲା । ପୋଲର ଦୁଇମୁଣ୍ଡରେ ଦୁଇଟି କାଷ୍ଠ ନିର୍ମିତ ସନ୍ତ୍ରୀ ଗୃହ ମଧ୍ୟ ପରିଷ୍କାର ଦେଖାଗଲା । ଇସ୍ପାତ ପୋଲଟି ବୁଢ଼ିଆଣୀ ଜାଲ ପରି ଲୁହାରେ ଛନ୍ଦା ହୋଇଥାଏ । ସନ୍ତ୍ରୀ ସେତେବେଳେ କମ୍ବଳର କୋଟଟାକୁ ପିଠି ପଟକୁ ପକାଇ ଦେଇ ଟିଣ ଚୁଲି ଉପରେ ନଇଁ ପଡ଼ି ନିଜର ହାତ ଗୋଡ଼ ନିଆଁରେ ସେକୁଥିଲା । ସନ୍ତ୍ରୀ ଘର ଭିତରୁ ଖୁବ୍ ପତଳା ଧୂଆଁ ଉପରକୁ ଉଠୁଥିଲା । ବହୁତ ତଳୁ ନଦୀର କଳକଳ ଧ୍ୱନି ଭାସି ଆସୁଥାଏ ।

ସେ ତାଙ୍କର ପତ୍ର ଦେଖି ଭାବିଲେ, ଅଣ୍ଡ୍ରି ସ୍ ଗୋଲ୍‌ଜଙ୍କ ପାଖରେ ପହଞ୍ଚିଲା କି ନାହିଁ । ମତେ ଯଦି ଏହି ପୋଲଟା ଧ୍ୱଂସ କରିବାକୁ ହେବ ତେବେ ଧୀର ବିଶ୍ୱାସରେ ଆସ୍ତେ ଆସ୍ତେ ମତେ ଏ କାମ କରିବାକୁ ପଡ଼ିବ । ଆଣ୍ଡ୍ରି ସ୍ ପହଞ୍ଚିଲା କି ? ଯଦି ପହଞ୍ଚିଥାଏ ତେବେ ସେମାନେ ସମସ୍ତ ଖାରଜ କଲେକି ? ଏବଂ ଖାରଜ କରିବାକୁ ସେମାନେ ସମୟ ପାଇଲେ କି ? ଭାବିଲେ କ'ଣ ହେବ । ସେମାନେ ଖାରଜ କରି ପାରନ୍ତି କିମ୍ବା ନ ପାରନ୍ତି । ଆଉ କିଛି ବିଚାର କରିବାକୁ ନାହିଁ । ଏକଥା ଅଳ୍ପକ୍ଷଣ ପରେ ତମେ ଜାଣି ପାରିବ । ଧର ଆକ୍ରମଣ ସଫଳ ହେଲା । ଗୋଲ୍‌ଜ୍ କହୁଥିଲେ ହେବ ବୋଲି ଏବଂ ତାହାର ସମ୍ଭାବନା ମଧ୍ୟ ଅଛି । ରାସ୍ତାକୁ ଆସିବ ଟ୍ୟାଙ୍କ୍ । ତଳଆଡ଼ୁ ଓ ତାହାଙ୍କରୁ ଆସିବେ ସୈନ୍ୟ ପାହାଡ଼ର ପୁରା ବାମପଟଟା ଘେରିଯିବେ । ଏପରି ପରିସ୍ଥିତିରେ ଯୁଦ୍ଧ ନ ଜିଣିବା ଅବା କାହିଁକି ? ତମେ ଏତେ ଦୀର୍ଘକାଳ କେବଳ ଆତ୍ମରକ୍ଷାରେ ବ୍ୟସ୍ତ ରହିଛ ଯେ, ଆକ୍ରମଣ କରିବାର କଥା ପାଶୋରି ଦେଲଣି । କିନ୍ତୁ ସେ ସବୁ ଏହି ଲୋକମାନେ ରାସ୍ତାର ଉପରଆଡେ ଯିବା ପୂର୍ବରୁ ହୋଇଥିଲା । ସେତେବେଳେ ଉଡ଼ାଜାହାଜ ଆସି ନଥିଲା । ଏତେ ସରଳ ହେଲେ ଚଳିବ ନାହିଁ । ମନେ ରଖ ଆମେ ସେ ସବୁକୁ ଏଠାରେ ଯେତେ ସମସ୍ତ ଅଟକାଇ ରଖି ପାରିବା ସେତେ ସମସ୍ତ ଫ୍ୟାସିଷ୍ଟମାନଙ୍କ ହାତଗୋଡ଼ ବନ୍ଧା ହୋଇ ରହିବ । ସେମାନେ ଆମ ସାଙ୍ଗରେ ଯୁଦ୍ଧ ଶେଷ ନ କରି ଅନ୍ୟ ଅଞ୍ଚଳ ଆକ୍ରମଣ କରିପାରିବେ ନାହିଁ । କିନ୍ତୁ ଆମକୁ ସେମାନେ କେବେହେଲେ ଜିଣିବେ ନାହିଁ । ଯଦି ଫରାସୀମାନେ ଆମକୁ ସାହାଯ୍ୟ କରନ୍ତି ଏବଂ ସୀମାନ୍ତ ଆମ ପାଇଁ ଖୋଲି ରଖନ୍ତି ଯଦି ଆମେରିକାରୁ ଉଡ଼ାଜାହାଜ ଆମକୁ ମିଳେ ତେବେ ଫ୍ୟାସିଷ୍ଟମାନେ ଆମକୁ ପାରିବେ ନାହିଁ । ହାତହତିଆର ପାଇଲେ ଆମ ଲୋକେ ଚିରକାଳ ଯୁଦ୍ଧ କରିବେ ।

ଏଇଠି ଯୁଦ୍ଧ ଜୟ କରିବା ପାଇଁ ଆଶା କରିବାର ନୁହେଁ । ହୁଏତ ଅନେକ ବର୍ଷ ଏ ଯୁଦ୍ଧ ଲାଗିବ । ଏଠା ଯୁଦ୍ଧ ହେଉଛି କେବଳ ଆକ୍ରମଣକୁ ରୋଧ କରିବା ପାଇଁ ଏ ସମ୍ବନ୍ଧରେ ଅନ୍ୟ କୌଣସି ଅଳୀକ ଧାରଣା ରଚିବା ଉଚିତ ନୁହେଁ । ଧର, ଆଜି ଯଦି ଶତ୍ରୁ ପକ୍ଷକୁ ଭେଦ କରିପାରିଲୁ, ଏଟା ହେଉଛି ଆମର ପ୍ରଥମ ବଡ଼ ଆକ୍ରମଣ ଆମର ମାନ ବଡ଼ ଧାରଣା ଠିକ ରଖିବା ଉଚିତ । ଏଥିପାଇଁ ଉତ୍ତେଜିତ ହେବାର ଆବଶ୍ୟକ ନାହିଁ । ରାସ୍ତାରେ ଯେଉଁସବୁ ଜିନିଷ ଯାଇଛି ସେ କଥା ମନେ ରଖିବାକୁ ହେବ । ସେ ସମ୍ବନ୍ଧରେ ଆମକୁ ଯାହା କରିବା କଥା ଆମେ କରିଛୁ । ଆମର ଖବର ପଠାଇବା ପାଇଁ ଯାନ ଦେବାର ନନ୍ତ ଥା'ନ୍ତା କି । ସମସ୍ତ କ୍ରମେ ଅବଶ୍ୟ ହେବ । କିନ୍ତୁ ବର୍ତ୍ତମାନ ନାହିଁ । ବର୍ତ୍ତମାନ କେବଳ ଜାଗି ରହି ଯାହା କରିବା କଥା ସେତିକି କରିବା । ଅନନ୍ତକାଳ ମଧ୍ୟରୁ ଆଜି ହେଉଛି କେବଳ ଗୋଟିଏ ଦିନ । କିନ୍ତୁ

ଆଜି ଯାହା କରିବା ତାହାର ଉପରେ ଭବିଷ୍ୟତର ସବୁ ସମ୍ଭାବନା ନିର୍ଭର କରେ । ଏ ବର୍ଷଟା ଏମିତି ଭାବରେ ବହୁଥର କଟିଲା । ଏମିତି ଭାବରେ ବହୁଥର ଘଟିଲା । ଏ ଯୁଦ୍ଧଟା ମଧ୍ୟ ଏହିଭଳି । ନା—ଏବେ ସକାଳୁ ଏଭଳି ବଡ଼ ବଡ଼ କଥା ଭାବିବା ଆବଶ୍ୟକ ନାହିଁ । ଇଏ୍ଟ କ'ଣ ଆସୁଛୁ, ଦେଖେ ।'

ସେ ଦେଖିଲେ କମ୍ବଳ କୋଟ୍ ଆଉ ଇସ୍ପାତର ଶିରସ୍ତ୍ରାଣ ପିନ୍ଧି କାନ୍ଧରେ ରାଇଫଲ ଝୁଲାଇ ଦୁଇଜଣ ଲୋକ ରାସ୍ତାରେ ଚାଲି ଚାଲି ଆସୁଛନ୍ତି । ଦୁହିଙ୍କ ଭିତରୁ ଜଣେ ସେ ମୁଣ୍ଡର ପ୍ରହରୀ ଘର ଭିତରେ ପଶିଯିବାରୁ ଆଉ ଦେଖାଗଲା ନାହିଁ । ଅନ୍ୟ ଜଣକ ପୋଲ ଉପରେ ଏ ଆଡ଼କୁ ଚାଲି ଆସିଲା । ପୋଲ ମଝିରେ ହୁଅନ୍ତେ ଲେଣ୍ଡାଏ ଛେପ ନଈପଡ଼ି ତଳକୁ ପକାଇଲା । ସେ ଏମୁଣ୍ଡ ସନ୍ତ୍ରୀ ପବଯାଏ ଆସିବାରୁ ସେଠାରେ ଥିବା ସନ୍ତ୍ରୀ ତାକୁ କଅଣ କହି ଶୀଘ୍ର ସେମୁଣ୍ଡ ଆଡ଼େ ଚାଲିଗଲା । ନୂଆ ଆସିଥିବା ଲୋକ ଜଣକ ତା ଜାଗାରେ ପହରା ଦେବାକୁ ଲାଗିଲା । ଛୁଟି ପାଇବା ପ୍ରହରୀ ଜଣକ ପୋଲ ମଝିରେ ହୁଅନ୍ତେ ଲେଣ୍ଡାଏ ଛେପ ତଳକୁ ପକାଇଲା । ରବର୍ଟ ଜର୍ଡାନ୍ ଭାବିଲେ ଯେ ଲୋକଟା ଡାଟି ପିଇବ ବୋଲି ଏତେ ଦ୍ରୁତ ଯାଉଅଛି ।

ରବର୍ଟ ଜର୍ଡାନ୍ ଚିନ୍ତାକଲେ ଏପରି ଛେପ ପକାଇବାଟା କଅଣ କୁସଂସ୍କାର ? ତେବେ ତ ମୋତେ ମଧ୍ୟ ସେପରି କରିବାକୁ ପଡ଼ିବ । ନା, ଏଥିରେ କିଛି ଲାଭ ନାହିଁ । କୁସଂସ୍କାର ଯେ ନିରର୍ଥକ ଏହା ମୁଁ ପ୍ରମାଣ କରିବି ।

ନୂଆ ପ୍ରହରୀ ଜଣକ ଘର ଭିତରକୁ ଯାଇ ବସିପଡ଼ିଲା । ସଙ୍ଗୀନ ଘଣ୍ଟା ଓ ରାଇଫଲ ଖଣ୍ଡିକ ସେ କାନ୍ଥରେ ଡେରି ରଖିଥାଏ । ରବର୍ଟ ଜର୍ଡାନ୍ କାମିଜ ପକେଟରୁ ଦୂରବୀକ୍ଷଣ କାଢ଼ି ପୁଣି ପୋଲ ଉପରକୁ ଲକ୍ଷ୍ୟ କଲେ । ପୋଲର ଆକାର ପ୍ରକାର ତାଙ୍କୁ ଅତି ସ୍ପଷ୍ଟଭାବେ ଦେଖାଗଲା । ତା'ପରେ ପ୍ରହରୀ ଘରଆଡ଼େ ଦୃଷ୍ଟି ଦେଲେ ।

ପ୍ରହରୀ କାନ୍ଥକୁ ଆଉଜି ବସିଥାଏ । ତାହାର ଶିରସ୍ତ୍ରାଣ କାନ୍ଥରେ ଗୋଟିଏ ଖିଲରେ ଝୁଲୁଥାଏ ବୋଲି ତା' ମୁହଁ ପରିଷ୍କାର ଦେଖାଯାଉଥାଏ । ରବର୍ଟ ଜର୍ଡାନ୍ ଚିହ୍ନି ପାରିଲେ ଯେ ଲୋକଟାକୁ ସେ ଦୁଇଦିନ ପୂର୍ବେ ସେହି ଏକା ପୋଷ୍ଟରେ ପହରା ଦେବା ସେଠାରେ ଦେଖିଥିଲେ । ସେ ଦାଢ଼ି କ୍ଷୌର କରି ନଥାଏ ବୋଲି ଗାଲ ପଶିଯିବା ଦିଶୁଥାଏ । ତା ହନୁ ହାଡ ମଧ୍ୟ ଖୁବ୍ ବଡ଼ । ଆଖି ଭ୍ରୂଲତାରେ ବାଳ ବହୁତ ବେଶୀ । ସେ ନିଦ୍ରାଳସ୍ୟରେ ଘନ ଘନ ହାଇ ମାରୁଥାଏ । ସେ ଗୋଟିଏ ତମାଖୁ ଥଳି ବାହାର କରି କିଛି ତମାଖୁ ନେଇ ଖଣ୍ଡିଏ ସିଗ୍ରେଟ ବନାଇଲା । ଟିଣ ଚୂଲରୁ ନିଆଁ ଢାଢ଼ି ସେଥିରେ ସିଗ୍ରେଟ ଲଗାଇ ଟାଣିଲା ।

ଆଠଗୁଣ ଶକ୍ତି ବିଶିଷ୍ଟ ଜାଇସ୍ କୋମ୍ପାନୀ ପ୍ରସ୍ତୁତ ଶକ୍ତିଶାଳୀ ଦୂରବୀକ୍ଷଣଯନ୍ତ୍ରରେ ରବର୍ଟ ଜର୍ଡାନ୍ ତା ମୁହଁକୁ ଭଲଭାବରେ ଦେଖି ଯାଉ ଯନ୍ତ୍ରଟି ଫିଟାଇ ପକାଇ ଖାକୀକର ପକେଟରେ ରଖିଲେ । ଭାବିଲେ ତାକୁ ଆଉ ଦେଖିବା ଦରକାର ନାହିଁ ।

ସେ ସେହିଠାରେ ଶୋଇ ଶୋଇ ରାସ୍ତା ଉପରେ ନଜର ରଖିଥାନ୍ତି । ସେ ଆଉ ଚିନ୍ତା କରିବାକୁ ପ୍ରସ୍ତୁତ ନଥିଲେ । ଅଳ୍ପ ତଳକୁ ଗୋଟିଏ ଗୁଣ୍ଡୁଚି ମୂଷା ଚେଁ ଚେଁ କରି ଦେବଦାରୁ ଗଛରୁ ଓହ୍ଲାଇ ଆସି ତାଙ୍କ ଆଡ଼କୁ ଅନାଇଲା । ସେ ମଧ୍ୟ ମୂଷାର ଆଖିକୁ ଚାହିଁ ରହିଲେ । ମୂଷାଟା ଲାଙ୍ଗୁଡ଼ ହଲାଇ ଡେଇଁ ଡେଇଁ ଆଉ ଗୋଟିଏ ଗଛରେ ଚଢ଼ି ଡାଳରେ ପେଟ ମାଡ଼ି ଲୁଚିଗଲା । ସେଇଠାରୁ ସେ ତାଙ୍କୁ ଚାହିଁଥାଏ ଓ ଲାଙ୍ଗୁଡ଼ ହଲଉଥାଏ ।

ରବର୍ଟ ଜର୍ଡାନ୍ ପୁଣି ଥରେ ଗଛ ଫାଙ୍କ ଦେଇ ସନ୍ତ୍ରୀ ଘରଆଡ଼େ ଚାହିଁଲେ । ସେ ଅତି ନିଃସଙ୍ଗ ବୋଧ କଲେ । ମୂଷା, ବିଲେଇ, କୁକୁର କେହି ଜଣେ ସେତେବେଳେ ତାଙ୍କର ସଙ୍ଗୀ ହୋଇଥିଲେ ସେ ସୁଖ ବୋଧ କରିଥାନ୍ତେ । ଏ ସବୁ ଚିନ୍ତା ମନରୁ ପାଶୋରି ସେ ପୋଲ କଥା ଭାବିଲେ । ସେଇଟା ହେଉଛି ବଡ଼ କାମ । ସେ ନିଶ୍ଚୟ ପୋଲଟା ଧ୍ୱଂସ କରିବାକୁ ସକ୍ଷମ ହେବେ ।

ସେ ସେହି ବଣରେ ଶୋଇ ଶୋଇ ରାସ୍ତା ଓ ସନ୍ତ୍ରୀ ଘରଆଡ଼ୁ ଦୃଷ୍ଟି ଫେରାଇ ଦୂର ପାହାଡ଼ ଆଡ଼କୁ ଚାହିଁଲେ । ଖାଲି ଚିନ୍ତା କଲେ କିଛି ମିଳିବ ନାହିଁ । ସେ ଚୁପ୍ ଚାପ୍ ଶୋଇ ରହି ପ୍ରଭାତର ଅପେକ୍ଷାରେ ରହିଲେ । ଅତି ଶୀଘ୍ର ସକାଳ ହୋଇ ଉଠିଲା । ସେ ଦେଖିଲେ ଚମଡ଼ାକୋଟ୍ ଏବଂ ଚମଡ଼ା ଟୋପି ପିନ୍ଧି, ବାମ ଗୋଡ଼ ଉପରେ ସ୍ୱୟଂକ୍ରିୟ ରାଇଫଲ ଝୁଲାଇ ଜଣେ ଲୋକ ମୋଟର ସାଇକଲ ଚଢ଼ି ପୋଲ ଉପର ଦେଇ ରାସ୍ତାକୁ ଚାଲିଗଲା । ସେ ଶୋଇ ଶୋଇ ଗଛର ଗନ୍ଧ ଏବଂ ନଦୀର କଳକଳ ଧ୍ୱନି ଶୁଣିବାକୁ ଲାଗିଲେ । ସକାଳ ଆଲୁଅରେ ପୋଲଟା ଅତି ସ୍ପଷ୍ଟ ଓ ସୁନ୍ଦର ଦେଖାଯାଉଥାଏ । ସେ ବାମ ଭୁଜରେ ସାନ ମେସିନ୍‌ଗନ୍ ଥୋଇ ଶୋଇ ରହିଲେ । ଅନେକ ସମୟ ସେ ସନ୍ତ୍ରୀ ଘରଆଡ଼େ ଅନାଇ ନଥିଲେ । ସେ ଭାବୁଥାନ୍ତି ବୋଧହୁଏ କିଛି ଘଟିବ ନାହିଁ । ଏପରି ରମଣୀୟ ପ୍ରଭାତଟା ଖରାପ ହେବ ନାହିଁ । ହଠାତ୍ ସେ ଗୁଡ଼ିଏ ଧଡ଼ାସ୍ ଧଡ଼ାସ୍ ବୋମା ବିସ୍ଫୋରଣର ଶବ୍ଦ ପାଇଲେ ।

ପ୍ରଥମ ବୋମା ବିସ୍ଫୋରଣର ଭୀଷଣ ଶବ୍ଦ ପାହାଡ଼ ଆଡ଼ୁ ପ୍ରତିଧ୍ୱନିତ ହେବା ପୂର୍ବରୁ ରବର୍ଟ ଜର୍ଡାନ୍ ଦୀର୍ଘନିଶ୍ୱାସ ମାରି ସାନ ମେସିନ୍‌ଗନ୍ ଉଠାଇ ନେଲେ, ଏହାର ଓଜନରେ ତାଙ୍କ ଅଙ୍ଗୁଳି ଓ ହାତ ବଧିଆ ହୋଇ ଉଠିଥାଏ ।

ବୋମାର ଆବାଜ ଶୁଣି ସନ୍ତ୍ରୀ ଜଣକ ଛୁଟା ହୋଇ ପଡ଼ି ନିଜର ରାଇଫଲ୍ ଧରି ଘର ଭିତରୁ ବାହାରି କାନ ଡେରିଲା । ସେ ରାସ୍ତାରେ ଛୁଟା ହୋଇ ଯେଉଁଆଡ଼େ ଆକାଶରୁ ଉଡ଼ାଜାହାଜ ବୋମା ପକାଉଥିଲା ସେହି ଆଡ଼କୁ ଚାହିଁଲା । କୁହୁଡ଼ି ଛୁଟି ଯାଇଥିବାରୁ ରବର୍ଟ ଜର୍ଡାନ୍ ଲୋକଟାକୁ ଅତି ସ୍ପଷ୍ଟ ଭାବରେ ଦେଖି ପାରିଲେ । ଲୋକଟା ଉପରେ ଖରା ପଡ଼ୁଥାଏ । ରବର୍ଟ ଜର୍ଡାନ ଲମ୍ବା ନିଶ୍ୱାସ ଟାଣି ନିଜର କହୁଣୀ ମଜବୁତ୍ କରି ହାତମୁଠା ଶକ୍ତ କରି ମେସିନ୍‌ଗନ୍‌ର ମୁହଁ ସନ୍ତ୍ରୀର ଛାତି ଆଡ଼କୁ କରି ଘୋଡ଼ାଆ ଟିପିଲେ । ମେସିନ୍‌ଗନ୍‌ର କୁନ୍ଦା ତାଙ୍କ କାନ୍ଧରେ ବାଜିଲା । ତେଣେ ପ୍ରହରୀ ବିସ୍ମିତ ଓ ଆହତ ହୋଇ ମୁହଁ ମାଡ଼ି ଆଗକୁ ଟଳି ପଡ଼ିଲା । ରାଇଫଲ୍‌ଟା ତା ପାଖରେ ପଡ଼ି ରହିଲା । ରବର୍ଟ ଜର୍ଡାନ୍ ତା ଆଡ଼କୁ ଅନାଇ ସାରିଲା ପରେ ପୋଲର ଆରମୁଣ୍ଡ ପ୍ରହରୀ ଘର ଆଡ଼କୁ ଚାହିଁଲେ । ଅନ୍ୟ ପ୍ରହରୀକୁ ସେ ଦେଖି ପାରିଲେ ନାହିଁ । ତାହୁଁ ଯେଉଁଠାରେ ଅଗଷ୍ଟିନ୍ ଲୁଚିଥିଲା ସେଠାକୁ ଚାହିଁଲେ । ଏହାପରେ ସେ ଆନ୍‌ସେଲ୍‌ମୋ ଦିଗରୁ ଗୁଳି ଫୁଟାଇବାର ଆବାଜ ପାଇଲେ ।

ଦ୍ୱିତୀୟ ଥର ଗୁଳି ଫୁଟିଲା ବେଳକୁ ପୋଲତଳୁ ଗୋଟାଏ କଣରୁ ହାତ ବୋମା ଫୁଟିବାର ଆବାଜ ମିଳିଲା । ଏହା ପରେ ରାସ୍ତା ଉପର ଆଡ଼େ ମଧ ଗୋଟାଏ ହାତବୋମା ଫୁଟିଲା । ରାସ୍ତାର ଉପରଆଡୁ ରାଇଫଲ୍ ଫୁଟିବା ଆବାଜ ଏବଂ ତଳ ଆଡୁ ପାବ୍‌ଲୋର ଅଶ୍ୱାରୋହୀଙ୍କର ସ୍ୱୟଂକ୍ରିୟ ରାଇଫଲ୍‌ର ଅବିଚ୍ଛିନ୍ନ ପଟ୍‌ପଟ୍ ଶବ୍ଦ ହାତବୋମା ଶବ୍ଦ ସାଙ୍ଗରେ ମିଶିବାକୁ ଲାଗିଲା । ସେ ଦେଖିଲେ ଆନ୍‌ସେଲ୍‌ମୋ ପୋଲର ସେ ମୁଣ୍ଡରେ ତାଖ ଉଠାଣି ଓହ୍ଲାଇ ଆସୁଛି । ସେ ସାନ ମେସିନ୍‌ଗନ୍‌ଟି କାନ୍ଧରେ ଥୋଇ ବସ୍ତା ଦୁଇଟି ଧରି ରାସ୍ତାର ଗଡ଼ାଣିଆ ଆଡ଼କୁ ଧାଇଁଗଲେ ।

ସେ ଦୌଡ଼ିଲାବେଳେ ଶୁଣୁଥାନ୍ତି ଅଗଷ୍ଟିନ୍ ଚିତ୍କାର କରି କହୁଥାଏ, ଚମତ୍କାର ଶିକାର ହୋଇଛି । ସେତିକିବେଳେ ପୋଲ ଆରମୁଣ୍ଡେ ଆନ୍‌ସେଲମୋ ଗୋଲି ମାରିବା ଆବାଜ ଶୁଣାଗଲା । ସେ ପ୍ରହରୀ ଜଣକ ମରି ପଡ଼ିଥିବା ଜାଗା ଦେଇ ସେ ମୁଣ୍ଡକୁ ଦୌଡ଼ିଗଲେ । ସେପଟୁ ବୁଢ଼ା ତାଙ୍କ ଆଡ଼କୁ ଧାଇଁ ଆସି କହିଲା, କିଛି ଭୁଲ ହୋଇ ନାହିଁ, ମତେ ତାକୁ ମାରିବାର ଦରକାର ଥିଲା ।

ପୋଲ ମଝିରେ ଆଣ୍ଠେଇ ପଡ଼ି ରବର୍ଟ ଜର୍ଡାନ୍ ନିଜର ବସ୍ତା ଖୋଲି ତାଙ୍କର ସରଞ୍ଜାମ ବାହାର କଲେ । ଆନ୍‌ସେଲ୍‌ମୋର ଦୁଇ ଆଖିରୁ ଲୁହଧାରା ବୋହି ପଡୁଥାଏ । ସେ ତାକୁ କହିଲେ 'ଦୁଃଖ କର ନାହିଁ । ମୁଁ ମଧ ଜଣକୁ ମାରିଅଛି ।' ଏହା କହି ପୋଲର ଅନ୍ୟ ମୁଣ୍ଡ ରାସ୍ତା ଉପରେ ପଡ଼ିଥିବା ପ୍ରହରୀକୁ ଦେଖାଇ

କ'ଣ ଘଟିବ ଠିକଣା ନାହିଁ । ହୁଏତ ପିଲର୍ କିଛି ବିପଦରେ ପଡ଼ିଛି । କରତକଲ ଆଡ଼ୁ କିଛି ବାଧା ମିଳୁଛି । କରତଗୁଣ୍ଡାଗୁଡ଼ିକ ପାହାଡ଼ ପ୍ରମାଣେ ଗଦା ହୋଇ ବହୁତ ଅସୁବିଧା ଘଟାଉଛି । ଏତିକିବେଳେ ପୋଲ ଉପରଦେଇ ଯଦି ଗୋଟାଏ ସାଣ୍ଟାଆୀଡ଼ା ଗୁଲିଯିବ କିମ୍ବା କୌଣସି ଝ୍ୟାଙ୍ଗ୍ ଅସିବ ତେବେ କଥା ସରିଲା । ତୁ ଥରୁଛୁ କାହିଁକି ଆନ୍‌ସେଲମୋ ? ଏତେ ଡରବରିଆ ହୁଅନାହିଁ ।"

ସେ ହାତ ବଢ଼ାଇ ବୁଢ଼ା ପାଖରୁ ପ୍ରତ୍ୟେକ ଜିନିଷ ନେଲେ । ଏଥିପାଇଁ ଯେତେବେଳେ ମୁଣ୍ଡ ଉପରକୁ ଉଠାଇଲେ ସେତେବେଳେ ଜଳର କଳକଳ ଧ୍ୱନି ପରିବର୍ତ୍ତେ ଅଧିକ ହାତବୋମା ଫୁଟିବାର ଆବାଜ ଶୁଣିଲେ । କହିଲେ "ତା ହେଲେ ଆମ ଲୋକେ କରତକଲ ଉପରେ ଚଢ଼ାଉ କରିଅଛନ୍ତି ।"

ଭାଗ୍ୟକୁ ମୋର ଏ ଜିନିଷମାନ ଇଟାପରି ଖଣ୍ଡ ଖଣ୍ଡ, କାଠିପରି ଲମ୍ବା ନୁହେ । ଏ ସବୁ ବେଶ ସୁନ୍ଦରଭାବରେ ଅଛି । କାନ୍‌ଭାସ୍ ବସ୍ତା ଦୁଇଟାରେ ସବୁତକ ଭରି ରହିଛି । ଗୋଟିଏ ବସ୍ତାରେ ଥିବା ମାଲଦ୍ୱାରା କାମ ଚଳିଯିବ । ବଦମାସଟା ମୋ ରଞ୍ଜକ ଓ ଦୌଡ଼ିତକ ନଦୀରେ ଫିଙ୍ଗିଦେଲା । ହଉ କଅଣ କରାଯିବ ? ବଦମାସଟା କିନ୍ତୁ ବର୍ତ୍ତମାନ ଭଲ ଲଢ଼େଇ କରୁଅଛି । ଅଚ୍ଛା, ବୁଢ଼ା, ମୋତେ ଆଉ କିଛି ସେହି ଜିନିଷରୁ ବଢ଼ାଇ ଦେ ତ ?

ବୁଢ଼ା ଖୁବ୍ ଭଲ କାମ କରୁଛି । ସେ ଠିକଣା ଜାଗାରେ ମଧ୍ୟ ଅଛି । ସନ୍ତ୍ରୀକୁ ମାରିବା ତାହାର ଇଚ୍ଛା ନଥିଲା । ମୋର ମଧ୍ୟ ନଥିଲା । କିନ୍ତୁ ଆଜି ସେକଥା ଭାବିବା ଦରକାର ନାହିଁ । ଆମକୁ ସେ କାମ କରିବା ଦରକାର ଥିଲା । କିନ୍ତୁ ଆନ୍‌ସେଲ୍‌ମୋ ମନଟା ଟିକିଏ କୁନ୍ଥ କୁନ୍ଥ ହେଉଥିଲା । ଏହାର କାରଣ ମୁଁ ଜାଣେ । ତେବେ ସ୍ୱୟଂକ୍ରିୟ ରାଇଫଲ ଦ୍ୱାରା ମଣିଷ ମାରିବା ସହଜ । ମାରିବା ଲୋକ ପକ୍ଷରେ । ଖାଲି ଘୋଡ଼ାଆ ଛୁଇଁଲେ ହେଲା । କିନ୍ତୁ ମୋ କଥା ଭିନ୍ନ । ଏତେ ଚିନ୍ତା କରି ଲାଭ କଅଣ । ଅନ୍ୟବେଳକୁ ଚିନ୍ତାଦିକ ଥାଉ । କିନ୍ତୁ କରିବ କଅଣ ? ମୋର ଭାବିବା ଶକ୍ତି ସବୁବେଳେ ଭଲ । ପିଲାଦିନେ ପେଣ୍ଡୁ ଖେଳରେ ପେଣ୍ଡୁକୁ ଗଡ଼ାଇ ନେଉଥିଲାବେଳେ ଲୋକେ ମୋତେ ବାହାବା ଦେଉଥିଲେ । ଯେତେବେଳେ ଜର୍ଡାନ୍ ଯୋଡ଼ିକି ଥିଲା ଏହି ନଦୀଟି ତାହାର ଉତ୍ପତ୍ତି ସ୍ଥଳରେ ସେତିକି ଛୁଦ୍ର । ପୋଲ ତଳେ ଗୋଟାଏ ସ୍ଥାନରେ ମୁଁ ଅଛି । ସେଠାରେ ମୁଁ ନିରାପଦ । ହଉ, ଜର୍ଡାନ୍ ତୁମ୍ଭେର ହୁଅ ଏହା ତ ଅତି ସାଧାରଣ କଥା । ବୁଝୁଛ ନା ? ପୋଲ ସେପାଖକୁ ଗୁହିଁ ଦେଖ । ମୁଁ ଠିକ୍ ଅଛି ମାତ୍ର ପୋଲଟା ଯିବ । କଥାରେ ଅଛି, ମେନ୍‌ରେ ଯାହା ଘଟେ ଜାତି ସେଇଆ

କଣଥାଏ । କର୍ତ୍ତାନ୍ ଯେମିତ କରେ, ବଦମାସ ଇହୁଦୀ ଅର୍ଥାତ୍ ଏହି ପୋଲଟା ତାହା ଭୋଗିବ । କର୍ତ୍ତାନ୍ ଯିବା ସଙ୍ଗେ ସଙ୍ଗେ ପୋଲଟା ମଧ୍ଯ ଧ୍ୱଂସ ହୋଇଯିବ ।"

ସେ କହିଲେ "ଆନ୍‌ସେଲ୍‌ମୋ, ମୋତେ ସେଥିରୁ ଆଉ କିଛି ବଢ଼ାଇ ଦେ । ସାଙ୍ଗେ ସାଙ୍ଗେ ଦେ ।" ବୁଢ଼ା ମୁଣ୍ଡ ହଲଇଲା ।

ତଳେ ହାତବୋମା ଫିଟ୍ଟି ସେଥିରେ ତାର ସଲଗ୍ନ କାମ ଶେଷ କଲାବେଳକୁ ସେ ଆଉ ରାସ୍ତା ଉପରେ ଗୁଳି ଫୁଟିବା ଆବାଜ ଶୁଣିଲେ ନାହିଁ । ହଠାତ୍ ସେ ଶୁଣିଲେ କେବଳ ନଦୀର କଳକଳ ଶବ୍ଦ । ତଳେ ବଡ଼ ବଡ଼ ଢେମା ଉପରେ ପାଣି ପଡ଼ି ଧଳା ଫେଣ ସୃଷ୍ଟି ହେଉଥାଏ । ସେ ବାଲିଗରଡ଼ା ପୂର୍ଣ୍ଣ ଗୋଟିଏ ଖାଲକୁ ଓହ୍ଲାଇଗଲେ । ସେଠାରେ ସେ ଯେଉଁ ଖିଲ ପକାଇଥିଲେ ତହିଁରୁ ଗୋଟିଏ ସୁଅରେ ଭାସୁଥିଲା । ସେ ପାଣିକୁ ଅନାଇ ଦେଖିଲେ ଯେ ପୋକ ଖାଇବା ପାଇଁ ମାଛଟାଏ ପାଣି ଉପରକୁ ମୁଣ୍ଡ ଟେକିଛି । ସଣ୍ଡୁଆସୀଦ୍ୱାରା ତାରକୁ ମୋଡ଼ି ବୋମା ଦୁଇଟା ଯଥାସ୍ଥାନରେ ଦୃଢ଼ ଭାବରେ ରଖିବାକୁ ଗଲାବେଳେ ପର୍ବତର ସବୁଜ ନାସି ତାଙ୍କୁ ଦେଖାଗଲା । ୩ ଦିନ ପୂର୍ବେ ଏହା ଥିଲା କସରା ରଙ୍ଗର ।

ପୋଲ ତଳର ଶୀତଳ ଅନ୍ଧକାରରୁ ସେ ଝରା ଆଡ଼କୁ ଝୁଙ୍କିପଡ଼ି ଆନ୍‌ସେଲ୍‌ମୋକୁ ବଡ଼ ତାର ପେଣ୍ଡୁଲାଟା ମାଗିଲେ ।

ବୁଢ଼ା ତାରୁ ପେଣ୍ଡୁଲା ତାଙ୍କୁ ବଢ଼ାଇ ଦେଲାରୁ ସେ କହିଲେ "ଦେଖ ଈଶ୍ୱରଙ୍କ ଦୋହି ଗୁଡ଼ି ଦେବୁ ନାହିଁଟି । ସବୁ ଠାଣି ହୋଇଯିବ । ତୁ ସବୁଯାକ ଭଲ କରି ବାନ୍ଧି ଦେଇଥିଲେ ଭଲ ହୋଇଥାନ୍ତା, ତେବେ ତୁ ଯେତେ ଲମ୍ବା ତାର ବ୍ୟବହାର କରୁଅଛୁ ସେଥିନିମିତ୍ତ ଭାବିବାର କିଛି ନାହିଁ । ହାତବୋମାର ଘୋଡ଼ିଆ ଟେକିବା ପାଇଁ ଯେଉଁ ମୁଦିଆ ଲାଗିଥିଲା ତହିଁର ଅନକଲା ସେ ପରୀକ୍ଷା କରି ଦେଖିଲେ ଯେ ଅନକଲା କାଢ଼ିନେଲେ ଘୋଡ଼ିଆ ଏପାଖ ସେପାଖ ହେବା ପାଇଁ ଦୁଇ ବୋମା ମଧ୍ୟରେ ଯଥେଷ୍ଟ ବ୍ୟବଧାନ ରହିଅଛି । ତାଙ୍କୁ ଫୁଟାଇବା ପାଇଁ ଯେଉଁ ତାର ଲାଗିଛି ସେ ତାର ଘୋଡ଼ିଆ ତଳେ ତଳେ ଯାଇଅଛି । ଏହାପରେ ଫିଣ୍ଟେ ତାର ସେ ଗୋଟିଏ ମୁଦିଆରେ ଯୋଡ଼ି ଦେଇ ଅନ୍ୟ ମୁଣ୍ଡଟି ନେଇ ପ୍ରଧାନ ତାର ସହିତ ସଯୋଗ କଲେ । ଏହି ତାର ବାହାରପଟ ବୋମାର ମୁଦିଆ ଦେଇ ଯାଇଥିଲା । ଏହାପରେ ଆଉ କିଛି ତାର, ପେଣ୍ଡୁଲାରୁ ଫିଟାଇ ଗୋଟିଏ ଇସ୍ପାତର ଅଡ଼ବନ୍ଧନୀ ଭିତରେ ଗଳାଇ ପେଣ୍ଡୁଲାଟା ଆନ୍‌ସେଲ୍‌ମୋ ହାତକୁ ଫେରାଇ କହିଲେ "ସାବଧାନରେ ଧରିଥା ।"

ସେ ପୋଲ ଉପରକୁ ଚଢ଼ିଯାଇ ବୁଢ଼ା ହାତରୁ ପେଣ୍ଟୁଲା ନେଇ ତାର ଲମ୍ବାଇ ଲମ୍ବାଇ ପଛକୁ ଫେରି ଯେଉଁଠାରେ ସନ୍ତ୍ରୀ ମରି ପଡ଼ିଥିଲା ସେଯାଏ ଆସିଲେ । ପୋଲ ଦାଢ଼କୁ ନଇଁପଡ଼ି ସେ ତଳବାଟେ ତାର ଟିକିଏ ଗୁଡ଼ି ଗୁଡ଼ି ଫେରି ଆସିଲେ । ଏହାପରେ ଆନ୍‌ସେଲ୍‌ମୋକୁ ବସ୍ତାଟା ଆଣିଦେବାକୁ କହି ଆଗେଇଲାବେଳେ ନିଜର ସାନ ମେସିନଗନ୍ ଉଠାଇ ନେଇ କାନ୍ଧଉପରେ ଝୁଲାଇ ଦେଲେ । ତାର ଲମ୍ବାଇବା ବେଳରେ ଥରେ ଉପର ଆଡ଼କୁ ଚାହିଁ ଦେଖିଲେ ଯେ ରାସ୍ତାର ଉପର ମୁଣ୍ଡରୁ ୪ ଜଣ ଲୋକ ଆସୁଛନ୍ତି । ଏହାପରେ ସେ ସାବଧାନରେ ତାର ଲମ୍ବାଇବା କାମ କଲେ ଯେପରି କି ପୋଲ ବାଡ଼ରେ କିଛି ଛନ୍ଦବନ୍ଦ ହୋଇ ନଯାଏ । ଏଲାଡ଼ିଓ ସେହି ୪ ଜଣଙ୍କ ସଙ୍ଗରେ ନଥିଲା ।

ରବର୍ଟ ଜର୍ଡାନ୍ ପୋଲ ମୁଣ୍ଡଠାରୁ କିଛି ଦୂରଯାଏ ତାରକୁ ଲମ୍ବାଇନେଲେ ଏବଂ ପୋଲର ଶେଷ ଖମ୍ବ ଦେହରେ ଗୋଟିଏ ଫାଶ କରି ରାସ୍ତା କଡ଼େ କଡ଼େ ଗୋଟିଏ ଚଉଡ଼ା ପଥର ପାଖକୁ ଗଲେ । ସେଠାରେ ତାର କାଟି ପେଣ୍ଟୁଲାଟି ଆନ୍‌ସେଲ୍‌ମୋ ହାତରେ ଦେଇ କହିଲେ "ବର୍ତ୍ତମାନ ମୋ ସାଙ୍ଗରେ ପୋଲ ପାଖକୁ ତାର ବିଛାଇ ବିଛାଇ ଚାଲ । ନା, ନା, ରହ, ମୁଁ ନିଜେ ତାହା କରିବି ।"

ପୋଲ ପାଖକୁ ଆସି ସେ ତାରକୁ ଟାଣନ୍ତେ ତାହା କାହା ସହିତ ଛନ୍ଦା ନ ହୋଇ ସିଧା ଝୁଲିଲା । ହାତବୋମାରେ ଲାଗିଯାଇ ଆଦୌ ଲେଞ୍ଚୁରା ହେଲା ନାହିଁ । ତତ୍ପରେ ସେ ଆନ୍‌ସେଲ୍‌ମୋକୁ କହିଲେ "ଏହାକୁ ନେଇ ସେହି ବଡ଼ ପଥର ପାଖକୁ ଯା । ସେଠାରେ ଦୃଢ଼ ଅଥଚ ହାଲୁକା କରି ଧରି ରହିବୁ । ଆଦୌ ଜୋର ଦେବୁନାହିଁ । ଯେତେବେଳେ ଟାଣିବା ଦରକାର ହେବ ମଜବୁତ କରି ଟାଣିବୁ ପୋଲଟା ଧ୍ୱଂସ ହୋଇଯିବ । ବୁଝିଲୁ ?" ଆନ୍‌ସେଲ୍‌ମୋ ବୁଝିଲି ବୋଲି କହିବାରୁ ପୁଣି କହିଲେ "ହାଲୁକା କରି ଧରିଲେ ମଧ୍ୟ ବେଶୀ ଢିଲା ଛାଡ଼ିବୁ ନାହିଁ, ନଚେତ୍ ତାର ଛନ୍ଦ ହୋଇଯିବ । ଟାଣିବା ବେଳ ନ ହେବାଯାଏ ଦୃଢ଼ଭାବରେ ଧରି ରହିବୁ । ଆଉ ଯେତେବେଳେ ଟାଣିବାକୁ ପଡ଼ିବ ଏକା ଟାଣରେ ଟାଣିବୁ, ଝିଙ୍କିକା ମାରିବୁ ନାହିଁ ।"

ଏକଥା କହିଲାବେଳେ ରବର୍ଟ ଜର୍ଡାନ୍ ପିଲାର୍ ଦଳର ଅବଶିଷ୍ଟ ଲୋକମାନଙ୍କୁ ରାସ୍ତାଆଡ଼େ ଚାହିଁ ଦେଖୁଥିଲେ । ସେମାନେ ପାଖକୁ ଆସିଯିବାରୁ ସେ ଦେଖିଲେ ଯେ ରାଫେଲ୍ ଓ ପ୍ରିମିଟିଭୋ ଧରାଧରି କରି ଫର୍ଣ୍ଣାଣ୍ଡୋକୁ ଆଣୁଛନ୍ତି । ତା' ତଳପେଟରେ ଗୁଳି ଫୋଟ ଲାଗିବା ପରି ଜଣାଗଲା । ସେ ଦୁଇହାତରେ ତଳପେଟ ଚାପି ଧରିଥାଏ । ପ୍ରିମିଟିଭୋ ଏବଂ ରାଫେଲ୍ ତାକୁ ଦୁଇଆଡ଼ୁ ଧରି ଆଣୁଥାନ୍ତି । ସେ ନିଜର ଡାହାଣ

ଗୋଡ଼ ଘୋସାରି ଘୋସାରି ଆସୁଥାଏ । ଜୁତାର କଡ଼ ରାସ୍ତାରେ ଘସି ହୋଇ ଯାଉଥାଏ । ପିଲାର୍ ବନ୍ଧ ଚଢ଼ି ଆସୁଥାଏ । ତା ପାଖରେ ୩ ଖଣ୍ଡ ରାଇଫଲ୍ । ରବର୍ଟ ଜର୍ଡ଼ାନ୍‌କୁ ପିଲାର୍‌ର ମୁହଁ ଦିଶୁ ନଥିଲା । ତଥାପି ପିଲାର୍ ମୁଣ୍ଡ ଟେକି ଯଥାସମ୍ଭବ ଦ୍ରୁତ ତଳଆଡ଼ୁ ରାସ୍ତା ଉପରକୁ ଉଠୁଥିଲା ।

ପ୍ରିମିଟିଭୋ ପଚାରିଲା, "ତମ କାମ କେତେଦୂର ?"

ରବର୍ଟ ଜର୍ଡାନ୍ ଜବାବ ଦେଲେ, ଆମର ପ୍ରାୟ ଶେଷ ହୋଇ ଆସିଲାଣି ।" ସେମାନଙ୍କର ଖବର ପଚାରିବା କୌଣସି ଦରକାର ନଥିଲା । କାହିଁକି ନା ୩ ଜଣଙ୍କୁ ରାସ୍ତାକଡ଼ରେ ସେ ଦେଖି ପାରୁଥିଲେ । ଫର୍ଣ୍ଣାଣ୍ଡୋକୁ ବନ୍ଧ ଉପରକୁ ଚଢ଼ାଇବା ପାଇଁ ଅନ୍ୟ ଦୁଇଜଣ ଚେଷ୍ଟା କଲାବେଳେ ସେ ମୁଣ୍ଡ ହଲାଇ ଅତି କଷ୍ଟରେ କହୁଥିଲା, "ମୋତେ ଆଉ ଗୋଟାଏ ରାଇଫଲ୍ ଗୋଲି ମାର ।"

ଅନ୍ୟ ଦୁଇଜଣ କହୁଥିଲେ, "ନାହିଁ—ନାହିଁ, ଆମେ ତତେ ଘୋଡ଼ା ପାଖକୁ ନେଇଯିବା ।"

ଫର୍ଣ୍ଣାଣ୍ଡୋ ଜବାବ ଦେଲା, "ଘୋଡ଼ା ପାଖକୁ ଯାଇ କ'ଣ କରିବ । ମୁଁ ଏଇଠି ବେଶ୍ ଅଛି ।"

ରବର୍ଟ ଜର୍ଡାନ୍ ଆନ୍‌ସେଲ୍‌ମୋ ସଙ୍ଗେ କଥା ହେଉଥିବାରୁ ଆଉ କିଛି ଶୁଣି ପାରି ନଥିଲେ । ସେ କହୁଥିଲେ, "ଦେଖ, ଟ୍ୟାଙ୍କ୍‌ମାନ କିମ୍ବା ସାଞ୍ଜୁଆଗାଡ଼ିମାନ ଯଦି ପୋଲ୍ ଉପରେ ଆସିବା ଦେଖିବୁ ତେବେ ପୋଲ୍ ଧ୍ୱଂସ କରିଦେବୁ । ଏହାଛଡ଼ା ଅନ୍ୟ କିଛି ଆସିଲେ ପାର୍‌ଲେ ତାହା ଅଟକାଇବ ।"

"କିନ୍ତୁ ପୋଲ୍ ତଳେ ତୁମେ ଥିଲେ, ମୁଁ ପୋଲ୍ ଧ୍ୱଂସ କରିବ କିପରି ?"

"ମୋ କଥା ମୋଟେ ଭାବିବୁ ନାହିଁ । ଦରକାର ପଡ଼ିଲେ ତୁ ନିଶ୍ଚୟ ପୋଲ ଉଡ଼ାଇ ଦେବୁ । ମୁଁ ଯାଉଛି ଆରମୁଣ୍ଡେ ତାର ଯୋଡ଼ି ଦେଇ ଫେରି ଆସିବି । ସେତେବେଳେ ଆମେ ଦୁହେଁ ପୋଲ୍ ଧ୍ୱଂସ କରିବା ।" ଏହାକହି ସେ ପୋଲର ମଝିଆଡ଼କୁ ଦଉଡ଼ିଗଲେ ।

ଆନ୍‌ସେଲ୍‌ମୋ ଦେଖିଲା, ତାରପେଣ୍ଡୁଲା ହାତରେ ବାହୁରେ ଗୁଡ଼ାଇ ହାତ କବ୍‌ଜାରେ ଶସ୍ତ୍ର ଆସି ଝୁଲାଇ ସାନ ମେସିନଗନ୍‌ଟି ପିଠିରେ ପକାଇ ରବର୍ଟ ଜର୍ଡ଼ାନ୍ ପୋଲ ଉପରକୁ ଯାଇ ତହିଁର ଲୁହା ବାଡ଼ ଧରି ତଳକୁ ଓହ୍ଲାଇ ଅଦୃଶ୍ୟ ହୋଇଗଲେ ।

ଆନ୍‌ସେଲ୍‌ମୋ ଡାହାଣ ହାତରେ ତାର ଧରି ଟେଲ୍ଫନ ପଥର ପଛଆଡ଼େ ଯାକଯୁକ ହୋଇ ବସି ପୋଲ୍ ଆରପାଖ ରାସ୍ତା ଆଡ଼କୁ ଚାହିଁ ରହିଲା । ତା' ପାଖରୁ ପୋଲ ଆରମ୍ଭ ଯାଏ ରାସ୍ତା ଅଧାଅଧିରେ ସନ୍ତ୍ରୀ ମରି ପଡ଼ିଥାଏ ଏବଂ ଟାଣୁଆ ଖରା ତେଜରେ ମାଟିରେ ଅଧିକ ଲଖି ଯାଉଥାଏ । ସନ୍ତ୍ରୀର ସଙ୍ଗୀନ୍‌ଯୁକ୍ତ ରାଇଫଲ୍‌ଟା ରାସ୍ତାରେ ପଡ଼ିଥାଏ ଏବଂ ରାଇଫଲ୍ ମୁହଁ ଆନ୍‌ସେଲ୍‌ମୋ ଆଡ଼କୁ ଥାଏ । ବୁଢ଼ା ମୁର୍ଦାରକୁ ଟପି ପୋଲ ଉପରେ ଦେଇ ରାସ୍ତା ଯେଉଁଠି ବାମପଟକୁ ବଙ୍କେଇ ପାହାଡ଼ ପଛଆଡ଼େ ଅଦୃଶ୍ୟ ହୋଇଅଛି ସେ ପର୍ଯ୍ୟନ୍ତ ଚାହିଁ ଦେଖିଲା । ପରେ ପୋଲ ଆରମୁଣ୍ଡ ସନ୍ତ୍ରୀ ଘରଆଡ଼େ ଚାହିଁଲା । ଶେଷକୁ ହାତରେ ଧରିଥିବା ତାର କଥା ମନେ ପଡ଼ିବାରୁ ସେ ଫର୍ଣ୍ଣାଣ୍ଡୋ ଆଡ଼କୁ ମୁହଁ ବୁଲାଇ ନେଲା ।

ଫର୍ଣ୍ଣାଣ୍ଡୋ, ପ୍ରିମିଟିଭୋ ଆଉ ରାଫେଲ୍‌କୁ କହୁଥାଏ "ମତେ ଏଇଠି ଛାଡ—ଖୁବ କଷ୍ଟ ହେଉଛି । ପେଟ ଭିତରେ ବହୁତ ରକ୍ତସ୍ରାବ ହେଲାଣି । ଟିକେ ହଲଚଲ ହେଲେ ମୁଁ ବୁଝିପାରୁଛି ।"

ପ୍ରିମିଟିଭୋ କହୁଥାଏ, "ତୁ ଆମ ଦୁହିଙ୍କ କାନ୍ଧରେ ହାତ ରଖ । ଆମେ ତତେ ଶୂନ୍ୟେ ଶୂନ୍ୟେ ଟେକି ନେଇଯିବୁ ।"

ଫର୍ଣ୍ଣାଣ୍ଡୋ ଜବାବ ଦେଲା, "ବୃଥାଶ୍ରମ । ମତେ ଏହି ପଥର ପାଖରେ ଥୋଇ ଦିଅ । ଉପରକୁ ନେଲେ ଯାହା ଏଇଠି ରହିଲେ ତାହା ।"

ପ୍ରିମିଟିଭୋ କହିଲା, "ଆମେ ଯେତେବେଳେ ଚାଲିଯିବା ?"

ଫର୍ଣ୍ଣାଣ୍ଡୋ ଜବାବ ଦେଲା, "ମତେ ଏଇଠି ଛାଡ଼ିଯିବ । ଏପରି ଅବସ୍ଥାରେ ମୋର ତୁମ ସାଙ୍ଗେ ଯିବା ଅସମ୍ଭବ । ବରଂ ତୁମେ ଗୋଟାଏ ଘୋଡ଼ା ଅଧିକା ପାଇବ । ମୁଁ ଏଇଠି ବେଶ୍ ରହିବି । ଆଉ ସେମାନେ ତ ଅତି ଶୀଘ୍ର ଆସିଯିବେ ।"

ରାଫେଲ୍ କହିଲା, "ଆମେ ତ ତୋତେ ସହଜରେ ପାହାଡ଼କୁ ନେଇ ପାରିବୁ ।" ସେ ଦୁହେଁ ଚାଲିଯିବାକୁ ଅତି ତରବର ହେଉଥିଲେ । ତଥାପି ସେମାନେ ତାକୁ ଧରାଧରି କରି ଏତେ ବାଟ ଆଣିଥିଲେ ।

ଫର୍ଣ୍ଣାଣ୍ଡୋ ଜବାବ ଦେଲା, "ନା, ମୁଁ ଏଇଠି ବେଶ୍ ଅଛି । ଆଚ୍ଛା ଏଲାଡ଼ିଓର ଖବର କ'ଣ ?" କେଉଁଠି ଆଘାତ ଲାଗିଛି ଦେଖାଇବା ପାଇଁ ରାଫେଲ୍ ନିଜ ଆଙ୍ଗୁଠି ନିଜ ମୁଣ୍ଡରେ ଥୋଇ କହିଲା, "ତୋ ପରେ ଆମେ ହଠାତ୍ ବାହାରିଯିବା ପରେ ତା'ର ଏହି ଜାଗାରେ ଗୋଳି ବାଜିଲା ।"

ଫର୍ଣ୍ଣାଣ୍ଡୋ କହିଲା, "ହଉ, ତମେ ମତେ ଛାଡ଼ି ଚାଲିଯାଅ ।"

ଆନ୍‌ସେଲ୍‌ମୋ ଦେଖିଲା ଯେ ସେ ଅତ୍ୟନ୍ତ ବେଦନା ଭୋଗ କରୁଅଛି । ବନ୍ଧକୁ ଆଉଜି ଦୁଇ ଗୋଡ଼କୁ ଲମ୍ବାଇ ଦୁଇ ହାତରେ ତଳପେଟ ଚପି ଧରିଅଛି ଏବଂ ତା'ର ମୁହଁ ପାଣ୍ଡୁର ଓ ଘର୍ମାକ୍ତ ହୋଇ ପଡ଼ିଛି । ଯନ୍ତ୍ରଣାରେ ଦାନ୍ତଚପି ଆଖି ବନ୍ଦକରି ଫର୍ଣ୍ଣାଣ୍ଡୋ କହିଲା, "ଅନୁଗ୍ରହ କରି ମତେ ଏଇଠି ଛାଡ଼ । ମୁଁ ବେଶ୍ ରହିବି ।" ପ୍ରିମିଟିଭୋ ଜବାବ ଦେଲା "ହଉ ତେବେ ଏଇଠି ରାଇଫଲ୍ ଓ ଗୋଳି ରହିଲା ।"

"ଏଟା କ'ଣ ମୋର ?" ଫର୍ଣ୍ଣାଣ୍ଡୋ ଆଖି ବନ୍ଦକରି ପଚାରିଲା ।

ପ୍ରିମିଟିଭୋ ଜବାବ ଦେଲା, "ନା, ଏଟା ମୋର । ତୋ ରାଇଫଲ୍ ପିଲାର୍ ପାଖରେ ଅଛି ।"

ଫର୍ଣ୍ଣାଣ୍ଡୋ କହିଲା, "ମୋ ରାଇଫଲ୍‌ରେ ମୁଁ ଅଭ୍ୟସ୍ତ । ସେଟା ଦେଇଥିଲେ ଭଲ ହୋଇଥାନ୍ତା ।"

ରାଫେଲ୍ ତାକୁ ମିଛରେ କହିଲା, "ହଉ, ଏଟା ରଖିଥା—ମୁଁ ଯାଉଛି ସେଇଟା ଆଣିଦେବି ।"

ଫର୍ଣ୍ଣାଣ୍ଡୋ ଜବାବ ଦେଲା, "ରାସ୍ତା ଏବଂ ପୋଲ ଉଭୟ ଦୃଷ୍ଟିରୁ ମୁଁ ବେଶ୍ ଜାଗାରେ ଅଛି ।" ଏତକ କହି ସେ ଆଖି ମେଲି ପୋଲକୁ ଅନାଇ ପୁଣି ଯନ୍ତ୍ରଣାରେ ଆଖି ବୁଜିଦେଲା ।

ରାଫେଲ୍ ନିଜ ମୁଣ୍ଡରେ ଆଙ୍ଗୁଳି ଟକ୍‌ଟକ୍ କରି ପ୍ରିମିଟିଭୋକୁ ସେଠୁ ଶୀଘ୍ର ଚାଲିଯିବା ପାଇଁ ସଙ୍କେତ ଦେଲା ।

ପ୍ରିମିଟିଭୋ ଗଲାବେଳେ କହିଲା, "ହଉ ତେବେ ଆମେ ଯାଇ ତଳେ ତୋତେ ଅପେକ୍ଷା କରିବୁ ।"

ଫର୍ଣ୍ଣାଣ୍ଡୋ ଚିତ୍ ହୋଇ ବନ୍ଧକୁ ଆଉଜି ପଡ଼ିଥାଏ । ରାସ୍ତାର ସୀମା ନିର୍ଦ୍ଦେଶ କରୁଥିବା ଧଳା ପଥର ଖୁଣ୍ଟଟି ତା ସମ୍ମୁଖରେ ଥାଏ । ତା ମୁଣ୍ଡ ପଥରର ଛାଇରେ ଥିଲେ ମଧ୍ୟ ବ୍ୟାଣ୍ଡେଜ୍ ବନ୍ଧା ହୋଇଥିବା ଘା ଉପରେ ଖରା ପଡ଼ିଥାଏ । ସେ ହାତ ପାପୁଲି ଆଙ୍ଗୁଳି କରି ପେଟ ଉପରେ ରଖିଥାଏ । ତା ଗୋଡ଼ ଏବଂ ପାଦ ଖରାରେ ଥାଏ । ରାଇଫଲ୍ ଆଉ ତିନୋଟି ଗୁଳି ଖରାରେ ପଡ଼ି ଚକ୍‌ଚକ୍ ହେଉଥାଏ । ଯେଉଁ ଖୁଣ୍ଟ

ପଛଆଡ଼େ ଆନ୍‌ସେଲ୍‌ମୋ ତାର ଧରି ବସିଥିଲା ସେଇ ଜାଗାରୁ ସେ ଫର୍ଣ୍ଣାଣ୍ଡୋଙ୍କୁ ଦୁଇଥର ନାମ ଧରି ଡାକିଲା । ଖସିଯିବା ଭୟରେ ସେ ତାର ମୁଣ୍ଡରେ ଗୋଟାଏ ଫାଶ କରି ମୁଠାଇ ଧରିଥାଏ । ତା' ଡାକ ଶୁଣି ଅଖି ଫିଟାଇ ଫର୍ଣ୍ଣାଣ୍ଡୋ ତାକୁ ପଚାରିଲା, "ଅବସ୍ଥା କ'ଣ ?"

ଆନ୍‌ସେଲ୍‌ମୋ କହିଲା, "ଖୁବ୍ ଭଲ । ଏକ ମିନିଟ ଭିତରେ ଆମେ ଏଇ ପୋଲ ଉଡ଼ାଇଦେବୁ ।"

ଫର୍ଣ୍ଣାଣ୍ଡୋ ଜବାବ ଦେଲା, "ମୁଁ ଖୁସି ହେଲି । ମୋ ଦ୍ୱାରା ଯଦି କିଛି ହୋଇପାରିବ ତେବେ ମତେ କହିବ ।" ଯନ୍ତ୍ରଣା ବେଶୀ ହେବାରୁ ସେ ପୁଣି ଆଖି ବନ୍ଦ କରିଦେଲା ।

ଆନ୍‌ସେଲ୍‌ମୋ ତା ଆଡ଼ୁ ଆଖି ଫେରାଇ ନେଇ ପୁଣି ପୋଲ ଆଡ଼କୁ ଚାହିଁଲା । ସେ ଅପେକ୍ଷା କରିଥାଏ ପୋଲଟିକୁ ତାରପେଣ୍ଡୁଲା କଢ଼ାଇ ଦେଇ ଇଂରେଜ ନଜର ମୁହଁ ଏବଂ ମୁଣ୍ଡ ଉପରକୁ ଟେକିବେ ଏବଂ ନିଜେ ଉପରକୁ ଉଠି ଆସିବେ । ଏହା ସାଙ୍ଗେ ସାଙ୍ଗେ ସେ ବରାବର ଲକ୍ଷ୍ୟ ରଖିଥାଏ ରାସ୍ତାର ବାଙ୍କ ଆଡ଼ୁ କିଛି ପୋଲଆଡ଼କୁ ଆସୁଛି କି ନାହିଁ । ବର୍ତ୍ତମାନ ତା ମନରେ ଭୟ ଲେଶ ମାତ୍ର ନଥାଏ । ସବୁ ତାକୁ ସ୍ୱାଭାବିକ ଅବସ୍ଥା ପରି ଜଣା ପଡୁଥାଏ । ପ୍ରଥମେ ସନ୍ତ୍ରୀକୁ ଗୋଲି ମାରିବାକୁ ଯେ ପସନ୍ଦ କରି ନଥିଲା । ସେଥିପାଇଁ ତା ମନରେ ଯେଉଁ କ୍ଷୋଭ ଜାଗି ହୋଇଥିଲା ତା ଆଉ ନାହିଁ । ସେ ଭାବିଲା, "ଇଂରେଜ ଠିକ୍ କେମିତି କହୁଥିଲେ ଯେ, ମନୁଷ୍ୟକୁ ଗୋଲିକରି ମାରିବା ଯାହା, ଜନ୍ତୁଟାକୁ ମଧ୍ୟ ସେଇୟା ? ମୁଁ ଯେତେବେଳେ ଜନ୍ତୁ ଶିକାର କରିବାକୁ ଯାଇଥାଏ ସେତେବେଳେ ମନ ଖୁସିରେ ଯାଇଥାଏ । କିଛି ଅନ୍ୟାୟ କରୁଛି ବୋଲି ଭାବି ନଥାଏ । କିନ୍ତୁ ମନୁଷ୍ୟଟାକୁ ଗୋଲି କରି ମାରିବାବେଳେ ନିଜର ଜଣେ ଭାଇକୁ ମାରିଲା ପରି ଖେଦ ଜାତ ହୋଇଥାଏ । ଏମିତି ବୁଢ଼ାକୁ ବୁଢ଼ା ମଣିଷ ମାରିବା ବିବେକକୁ ବାଧେ । ନା, ଆଉ ସେ ସବୁ କଥା ଭାବିବାର ନୁହେଁ । ଏସବୁ ତୁଚ୍ଛା ଭାବପ୍ରବଣତା । ସ୍ତ୍ରୀଲୋକମାନଙ୍କୁ ଏହା ସାଜେ । ବର୍ତ୍ତମାନ ଏଥିପାଇଁ ଅନୁତାପ କରି କିଛି ଲାଭ ନାହିଁ । ବର୍ତ୍ତମାନ ଯେଉଁ କାମ କରିବାକୁ ହେବ ତା କାଲି ରାତିରେ ପାହାଡ଼ରେ ଆସିଲାବେଳେ ମୁଁ ନିଜେ ଯାଚିମାଗି ହାତକୁ ନେଇଛି । ବର୍ତ୍ତମାନ ଲଢ଼େଇବେଳରେ ଆଉ ସେ ସମସ୍ୟା ଉଠି ନପାରେ । ମୁଁ ଯଦି ବର୍ତ୍ତମାନ ମରିବି ତେବେ ବି କିଛି ଦୁଃଖ ନାହିଁ ।"

ଏହାପରେ ଆନ୍‌ସେଲ୍‌ମୋ ଫର୍ଣ୍ଣାଣ୍ଡୋକୁ ପୁଣି ଚାହିଁଲା । ଫର୍ଣ୍ଣାଣ୍ଡୋ ସେହିପରି ତଳପେଟରେ ହାତ ଆଣ୍ଠୁଲା ରଖି ଅଖି ବନ୍ଦକରି ପଡ଼ିଥାଏ । ତା ଓଠ

ନେଲଆ ହୋଇ ଯାଇଥାଏ । ଶ୍ୱାସପ୍ରଶ୍ୱାସ ଧୀରେ ଧୀରେ ଏବଂ ଜୋରରେ ଶୁଭୁଥାଏ ।

ଆନ୍‌ସେଲ୍‌ମୋ ଭାବଲା, ମୁଁ ହୁଏତ ଖୁବ୍ ଶୀଘ୍ର ମରବ । ଅଜକା କାମଟି କରବା ଛଡ଼ା ମୁଁ ଆଉ କଛୁ ଲୋଡ଼ ନଥିଲ । ସୁତରାଂ କଛି ଲୋଡ଼ବ ନାହିଁ । ମୋ କାମ ମୁଁ କରସିବ । ତେଣିକ ଯାହା ହେବାର ଥିବ ହେବ ।

ଗିରବର୍ଟ୍‌ରେ ଲଗିଥିବା ଲଢ଼େଇର ଗୋଳମାଳ ଯେ କାନଡେର ଶୁଣି ମନକୁ ମନ କହିଲ, ପ୍ରକୃତରେ ଆଜ ଦନଟା ଖୁବ୍ ବଶିଷ୍ଟ ଦନ । ଏତକ ମୋର ବୁଝିବା ଉଚତ୍ । ତା ହୃଦୟରେ କୌଣସି ଉତ୍ତେଜନା କମ୍ବା ଉତ୍‌ଫୁଲ୍ଲତା ନଥିଲ । ତା ବଦଳରେ ଥିଲ ଗଭୀର ପ୍ରଶାନ୍ତ । ବର୍ତ୍ତମାନ ତାରର ଫାଶଟିକୁ ନଜ କବ୍‌ଜାରେ ଗୁଡ଼ାଇ ସେ ସେହ ଚକ୍‌ଚକ ପଥରର ପଛପଟେ ଆଣୁମାଡ଼ି ବସି ରହିଥିଲ । ତା ମନରେ ନର୍ଜନତା ବୋଧ ହେଉ ନଥାଏ । ସତେ ଯେପରି ହାତରେ ଥିବା ତାର, ପୋଲ ଏବଂ ପୋଲ ତଳେ ଇଂରେଜ ଯେଉଁ ବିସ୍ଫୋରକ ରଖିଥିଲ ତା ସହିତ ସେ ଏକ ହୋଇ ଯାଇଛି ।

ରବର୍ଟ ଜର୍ଡ଼ାନ୍ ସେତେବେଳେ ସୁଦ୍ଧା ପୋଲତଳେ ରହି କାମ କରୁଥାନ୍ତି ଏବଂ ନଜକୁ ଲଢ଼େଇ ଏବଂ ଗଣତନ୍ତ୍ର ସହିତ ଏକ କର ଦେଇଥାନ୍ତି । ମନରେ କୌଣସି ଉତ୍ତେଜନା ନରଖି ସେ ଶାନ୍ତ ଭାବରେ ନର୍ମଳ ଆକାଶ, ନଦୀକଡ଼ରୁ କ୍ରମେ ଉଠିଥିବା ପାହାଡ଼ ନାସ୍ରୀ ଦେଖିବାକୁ ଲଗିଲେ । ସୁଖ, ନଃସଙ୍ଗତ୍ୱ କମ୍ବା ଭୀତ ତାଙ୍କ ମନରେ ଗ୍ରତ୍ୟାଘାତ କର ନଥିଲ ।

ପାହାଡ଼ ନାସୀରେ ଗୋଟିଏ ଗଛ ଆଢ଼ୁଆଳରେ ରାସ୍ତାକୁ ଜଗି ପିଲର୍ ଶୋଇଥାଏ । ତା ପାଖରେ ଗୁଳିଭର୍ତ୍ତି ୩ଟା ରାଇଫଲ୍ ଥାଏ । ପ୍ରିମିଟିଭୋ ଆସି ପିଲର୍ ପାଖରେ ବସିଯିବାରୁ ସେ ତାକୁ ଗୋଟାଏ ରାଇଫଲ୍ ବଢ଼ାଇ ଦେଲ । ଏହାପରେ ଟ୍ରେଫେଲ୍ ଆଉ ପ୍ରିମିଟିଭୋକୁ ଦୁଇଟା ଗଛ ଅଢ଼ୁଆଳରେ ରହିବାକୁ କହି ପଚାରିଲ, "ସେ ମରଗଲଣି ।"

ପ୍ରିମିଟିଭୋ କହିଲ, "ନା ।"

ପିଲର୍ ଜବାବ ଦେଲ, "ଦୁର୍ଭାଗ୍ୟର କଥା । ଆମର ଯଦ ଆଉ ଦୁଇଜଣ ଥାଆନ୍ତେ ତାହା ହେଲେ ଏହା ଘଟି ନଥାନ୍ତା ।"

"କରନ୍ତୁଗଣ୍ଡି ସ୍ତୁପ ପଛଆଡ଼େ ତାର ଗୁରୁଣ୍ଡି ଗୁରୁଣ୍ଡି ଯିବା ଉଚିତ ଥିଲ ।"

"ଆଚ୍ଛା ତାକୁ ଯେଉଁଠି ରଖିଛ ସେଠି କ'ଣ ସେ ଭଲ ଅଛି ?"

ପ୍ରିମିଟିଭୋ ମୁଣ୍ଡ ହଲାଇଲା ।

ର୍‌ଫେଲ୍‌ ଗଛ ଉହାଡ଼ରୁ ପଚାରିଲା, "ଇଂରେଜ ଯେତେବେଳେ ପୋଲ ଉଡ଼ାଇ ଦେବ ସେତେବେଳେ କଟୁ ଲୁହାଲକଡ଼ ଛୁଟିକି କରି ଏପର୍ଯ୍ୟନ୍ତ ଆସି ପାରିବ କି ?"

ପି..ର୍‌ ଜବାବ ଦେଲା "ମୁଁ କହି ପାରିବି ନାହିଁ ।" କିନ୍ତୁ ମେସିନ୍‌ଗନ୍‌ ନେଇ ଅଗଷ୍ଟିନ୍‌ ତାଠା ଅପେକ୍ଷା ଅଧିକ ନିକଟରେ ଅଛି । ଯଦି ବିପଦର ସମ୍ଭାବନା ଥା'ନ୍ତା ଇଂରେଜ ସେଠି ତାକୁ କେବେ ରଖି ନଥା'ନ୍ତା ।

ର୍‌ଫେଲ୍‌ କହିଲା, "ମୋର ମନେଅଛି, ଯେତେବେଳେ ରେଲଗାଡ଼ି ଧ୍ୱଂସ କରାଗଲା, ଇଞ୍ଜିନର ଆଲୁଅ ମୋ ମୁଣ୍ଡ ଉପର ଦେଇ ଚାଲିଗଲା ଏବଂ ସ୍ଥାନ ସ୍ଥାନ ଇସ୍ପାତ ଗୃତକ-ପକ୍ଷୀପରି ମୋ ପାଖ ଦେଇ ଉଡ଼ି ଯାଇଥିଲା ।"

ପିଲର୍‌ କହିଲା, "ଦେଖୁଛି ତୋର ସ୍ମୃତି କବିତାମୟ । ଗୃତକପକ୍ଷୀ ପରି—କି ଅଦ୍ଭୁତ କଥା, ସେ ସବୁ ସ୍ୱାରଧିଆ ବାଟିପରି ଥିଲା । ଏବେ ମୋ କଥା ଶୁଣ । ଆଜି ତୁ ଖୁବ୍‌ ଭଲ କାମ କରିଛୁ । ବର୍ତ୍ତମାନ ମନରେ ଆଉ ଭୟ କରନାହିଁ ।"

ର୍‌ଫେଲ୍‌ କହିଲା, 'ମୁଁ ଖାଲି ପଚାରୁଥିଲି ଏତେ ଦୂରଯାଏ ଛୁଟିକି ଆସିପାରେ କି ନା । ତା ହେଲେ ଗଛ ପଛଆଡ଼େ ମୁଁ ଭଲଭାବରେ ରହିବି ।'

ପିଲର୍‌ କହିଲା, "ଆଚ୍ଛା ସେତିକି ଥାଉ । ଆମେ ଆଜି କେତେ ଜଣକୁ ମାରିଲୁ ।"

"ଆମେ ପାଞ୍ଚଜଣ ମାରିଛୁ । ଏଠିକାର ସନ୍ତ୍ରୀଘରୁ ଦୁଇଜଣ ମରିଛନ୍ତି । ତଳେ ପାବ୍‌ଲୋ ଆଠ ଜଣଙ୍କୁ ମାରିଛି । ମୁଁ ସେ ଘାଟି ବନ୍ଦ କରି ଇଂରେଜ ପାଇଁ ଜଗିଥିଲି । ତମେ ନିଜେ ପୋଲ ଆଡ଼କୁ ଅନାଇ ଦେଖ ।"

ପିଲାର୍‌ ରାଗିଯାଇ କହିଲା, "ଇଂରେଜର ହେଲା କ'ଣ ? ଏତେବେଳେ ଯାଏ ପୋଲ ତଳେ ରହି ସେ କି ଗଣ୍ଡମୂର୍ଖ କାମ କରୁଛି । ସେ ପୋଲ ଉଡ଼ାଇବାକୁ ଯାଇଛି ନା, ପୋଲ ତିଆରି କରିବାକୁ ଯାଇଛି ।" ସେ ମୁଣ୍ଡ ଉଠାଇ ଚଟାଣ ପଥରୁ ପଛଆଡ଼େ ଆନ୍‌ସେଲ୍‌ମୋ ବସିଥିବାର ଦେଖି ପଚାରିଲା, "ହଇରେ, ତୋର ସେହି ଇଂରେଜ ଦାପୁଡ଼ା କ'ଣ କରୁଛି ?"

ଆନ୍‌ସେଲ୍‌ମୋ ତାରକୁ ହାଲୁକା ଅଥଚ ଦୃଢ଼ଭାବରେ ଧରି ଜବାବ ଦେଲା "ଆଗଲା ଗ୍ରଣ୍ଟି, ସେ ତା କାମ ଶେଷ କରୁଛି ।"

"ସେ ଖାନକୀପୁଅ ଏତେ ଡେରିଯାଏ କ'ଣ କରୁଛି ।"

ଆନ୍‌ସେଲ୍‌ମୋ କହିଲା, "ଏପରି ବୈଜ୍ଞାନିକ କାମ ।"

ପିଲାର୍‌ ରାଗ ମୁହଁରେ ଜବାବ ଦେଲା, "ତୋ ବିଜ୍ଞାନ ମୁହଁରେ ନିଆଁ ଲାଗୁ । ଆଗେ ସେ ପୋଲଟା ଧ୍ୱଂସ କରିଦେଉ । ଏହାପରେ ପିଲାର୍‌ ମେରିଆକୁ ଡାକି କହିଲା, "ଦେଖିଲୁ ଲୋ ତୋ ଇଂରେଜ ଗୁଣ । ପୋଲ ତଳେ କାମ କରୁଛି ତ କରୁଛି ।"

ଆନ୍‌ସେଲ୍‌ମୋ ରାସ୍ତା ଉପରୁ ଡାକି କହିଲା, "ଆଲୋ ମାଇକିନା, ଥଣ୍ଡା ହୋ । ସେ ଏକ ବିରାଟ କାମ କରୁଛି । ପ୍ରାୟେ ଶେଷ ହୋଇ ଆସିଲା ଜାଣ ।"

"ଶେଷ ହୋଇ ଆଉ କେନୋଟା ହେବ । ବର୍ତ୍ତମାନ ପ୍ରତିମୁହୂର୍ତ୍ତ ମୂଲ୍ୟବାନ ।"

ଠିକ୍‌ ଏତିକିବେଳେ ରାସ୍ତାରେ ଯେଉଁଠି ପାବ୍‌ଲୋ ଘାଟି ଦଖଲ କରି ଜଗିଥିଲା ସେଇଠାରୁ ପୁଣି ଗୋଳି ଆବାଜ ଶୁଣାଗଲା । ପିଲାର୍‌ ଗାଳି ଦେବା ବନ୍ଦକରି, କାନଡେରି କହିଲା' "ହୁଁ-ହୁଁ, ଠିକ୍‌ ହେଲା ।"

ରବର୍ଟ ଜର୍ଡାନ୍‌ ମଧ୍ୟ ତାରପେଣ୍ଡୁଲା ପକାଇ ଦେଇ ପୋଲ ଉପରକୁ ଆସୁଥିଲାବେଳେ ନିଜେ ଏହି ଆବାଜ ଶୁଣିଲେ । ପୋଲର ଲୁହା ବାଡ଼ ହାତରେ ଧରି ପୋଲ ମେଜିଆରେ ଆଣ୍ଠୁ ଦେଇ ଉଠୁଥିଲାବେଳେ ସେ ମେସିନ୍‌ଗନ୍‌ର ଆବାଜ ଶୁଣିଲେ । ଏ ଆବାଜ ପାବ୍‌ଲୋ ସ୍ୱୟଂଚାଳିତ ରାଇଫଲ୍‌ ଆବାଜଠାରୁ ଭିନ୍ନ ଥିଲା । ସେ ଉଠି ଠିଆ ହୋଇ ତାରପେଣ୍ଡୁଲାକୁ ବାହାରପଟେ ଟେକି ନେଇ ପଛୁଆ ହୋଇ ଗଲାବେଳେ ତାର ଲମ୍ବାଇ ଲମ୍ବାଇ ଚାଲିଗଲେ । ଯାଉଥିଲାବେଳେ ଆବାଜ ବରାବର ଶୁଣିବାକୁ ପାଉଥିଲେ ଏବଂ ତା'ର ପ୍ରତିଧ୍ୱନି ପେଟ ଭିତରକୁ ମନ୍ଥି ପକାଉଥିଲା । ଆବାଜ ନିକଟ ହୋଇ ଆସୁଥିଲା । ସେ ବୁଲିପଡ଼ି ରାସ୍ତାର ବାଙ୍କଆଡ଼କୁ ଚାହିଁଲେ । ସେତେବେଳେ ସୁଦ୍ଧା ରାସ୍ତାରେ କୌଣସି ଯାନବାହନ ଦେଖିଲେ ନାହିଁ । ପୋଲ ଉପରେ ଅଧାଅଧି ଏବଂ ଚାପା ଗଲାଯାଏ ସେ ରାସ୍ତାରେ କୌଣସି ଯାନବାହନ ବା ଲୋକ ଦେଖି ନଥିଲେ । ସେ ତାରକୁ ପୋଲ ଲୁହାରେ ଛନ୍ଦି ହେବାକୁ ନଦେବା ପାଇଁ ସେ ସନ୍ତର୍ପଣେ ବୁଲିଗଲେ । ତାପରେ ରାସ୍ତାରେ ଆସି ପହଞ୍ଚିଲେ । ସେତେବେଳେ ବି ମଧ୍ୟ କୌଣସି ଯାନବାହନ ଦେଖି ନଥିଲେ । କିନ୍ତୁ ଗୋଟିଏ

ଅତଡ଼ାଖିଆ ନାଲ କଡ଼ ଦେଇ ଓହ୍ଲାଇ ଆନ୍‌ସେଲ୍‌ମୋ ଥିବା ଠିକ୍ ବିପରୀତ ପାଖରେ ପହଞ୍ଚିଲେ । ସେତେବେଳେ ଗଡ଼ାଣିଆଡ଼ୁ ଗୋଟାଏ ଟ୍ରକ୍‌ଗାଡ଼ି ଉପରକୁ ଆସୁଥିବା ସେ ଦେଖିଲେ । ସେ ହାତ ମୁଠାରେ ତାର ଗୁଡ଼ାଇ ନେଇ ଆନ୍‌ସେଲ୍‌ମୋକୁ ଡାକି କହିଲେ, "ବର୍ତ୍ତମାନ ଉଡ଼ାଇ ଦିଅ ।" ସେ ଗୋଡ଼କୁ ମାଟିରେ ଠେସି ଟଣା ହୋଇଥିବା ତାର ଦେହରେ ଆଉଜି ଶୁଣିଲେ ଟ୍ରକ୍‌ଗାଡ଼ି ଗର୍ଜ୍ଜନ କରି ତଳଆଡ଼ୁ ଆସୁଚି । ସମନ୍ତା ରାସ୍ତା ଉପରେ ମଲା ସନ୍ତ୍ରୀ ପଡ଼ିରହିଛି । ତା ଆଗକୁ ପୋଲ ଏବଂ ପୋଲ ଉପର ରାସ୍ତା ସବୁ ପରିଷ୍କାର । ହଠାତ୍ ଢଡ଼ମଡ଼ ଗର୍ଜ୍ଜନ କରି ପୋଲର ମଝି ଅଂଶଟା ଉପରକୁ ଉଠିଗଲା ଏବଂ ବିସ୍ଫୋରଣରେ ଧକ୍କା ସେ ଅନୁଭବ କରିପାରିଲେ । ସେତେବେଳକୁ ସେ ଦେହ ଅତଡ଼ାଖିଆ କରକଚ୍ଚ ପୂର୍ଣ୍ଣ ନାଲରେ ମୁହଁମାଡ଼ି ମୁଣ୍ଡ ଉପରେ ଖୁବ୍ ଜୋରରେ ହାତ ଚପି ରହିଥାନ୍ତି । ପୋଲର ଯେଉଁ ଖଣ୍ଡ ଉପରକୁ ଉଠି ଯାଇଥିଲା ସେ ଖଣ୍ଡ ସେଇଠି ପୁଣି ଖସିପଡ଼ିଲା ଏବଂ କଳା ହଳଦିଆ କଡ଼ା ବାରୁଦ ଗନ୍ଧ ତାଙ୍କ ଉପର ଦେଇ ଗ୍ଲଲିଗଲା । ତାପରେ ସାନ ସାନ ଲୁହା ସବୁ ବୃଷ୍ଟି ହେବାକୁ ଲାଗିଲା ।

ସାନ ଲୁହା ପଡ଼ିବା ବନ୍ଦ ହେବାପରେ ସେ ଜୀବିତ ଥିଲେ ଏବଂ ମୁଣ୍ଡ ଟେକି ପୋଲ ଉପରକୁ ଅନାଇଲେ । ପୋଲର ମଝି ଅଂଶଟି ଆଉ ନଥାଏ । ଖଣ୍ଡ ଖଣ୍ଡ ଦାନ୍ତୁଆ ଲୁହା ରାସ୍ତାତମାମ ପଡ଼ିଥାଏ । ଟ୍ରକ୍‌ଗାଡ଼ି ପ୍ରାୟେ ୧୦୦ ଗଜ ଦୂରରେ ରାସ୍ତା ଉପରେ ବନ୍ଦ କରି ଡ୍ରାଇଭର ନିଜର ଦୁଇଜଣ ସଙ୍ଗୀକୁ ନେଇ ଗୋଟାଏ ସାନ କଳ୍ପମା ପୋଲଆଡ଼କୁ ଧାଇଁଥାନ୍ତି ।

ଫର୍ଣ୍ଣାଣ୍ଡୋ ସେହି ବନ୍ଧ ଉପରେ ଯେତେବେଳେ ପର୍ଯ୍ୟନ୍ତ ପଡ଼ି ରହିଥିଲା । ତାର ନିଶ୍ୱାସ ଗ୍ଲଲିଥାଏ । ହାତ ଦୁଇଟା ଦୁଇ ପାରେ ସଳଖ ହୋଇ ରହିଥାଏ ।

ଆନ୍‌ସେଲମୋ ସେହି ଚଟାଣ ପଥରଖୁଣ୍ଟି ପଛଆଡ଼େ ମୁହଁମାଡ଼ି ଶୋଇଥାଏ । ବାଁ ହାତ ବଙ୍କେଇ ସେ ମୁଣ୍ଡତଳେ ରଖିଥାଏ । ଡାହାଣ ହାତ ଆଗକୁ ବଢ଼ାଇଥାଏ । ତା ହାତ ମୁଠାରେ ତାରର ଫାଶ ରହିଥିଲା ।

ରବର୍ଟ ଜର୍ଡ଼ାନ୍ ଉଠିପଡ଼ି ତା ପାଖକୁ ଯାଇ ତାକୁ ଗଡ଼େଇତଡ଼େଇ ଦେଖିଲେ ଯେ ସେ ମରି ଯାଇଛି ।

ରବର୍ଟ ଜର୍ଡ଼ାନ୍ ଭାବିଲେ, ଲୋକଟା ତ ମୃତ୍ୟୁରେ ଏତେ ଶ୍ରେଷ୍ଠ ଦେଖା ଯାଉଛି । ମୁଣ୍ଡଯାକ ତ ପାଚିଲା ବାଳ । ଅଥଚ ଏତେବଡ଼ ଭାର ବୋହି ସେ କେମିତି

ବୋହୁଥିଲା । ତାପରେ ତା'ର ଜଙ୍ଘ, ପେଣ୍ଡା, ପେଶୀ ଆଦି ରବର୍ଟ ଜର୍ଡାନ୍ ଭଲ କରି ଦେଖିଲେ । ବନ୍ଧୁକ ଦୁଇଟା ପ୍ରାୟ ଖାଲି । ସେ ଫର୍ଣ୍ଣାଣ୍ଡୋ ପାଖକୁ ଯାଇ ତା ରାଇଫଲ୍‌ଟା ଉଠାଇ ନେଲେ । ଆନ୍‌ସେଲ୍‌ମୋର ବନ୍ଧୁକ ଆଉ ଥଳି ଦୁଇଟା ମଧ୍ୟ ନେଲେ । ରାସ୍ତା ଉପରେ ଖଣ୍ଡେ ବଙ୍କା ଇସ୍ପାତ ପଡ଼ିଥିଲା ତାକୁ ଗୋଇଠା ମାରି ତଳକୁ ଠେଲି ଦେଲେ । ଦୁଇ ରାଇଫଲ୍‌କୁ କାନ୍ଧରେ ଥୋଇ ନଳୀକୁ ହାତରେ ଧରି ସେ ଉଠାଣି ଚଢ଼ି ବଣ ଭିତରକୁ ବାହାରିଲେ । ସେ ପୋଲ କିମ୍ବା ରାସ୍ତା କେଉଁଆଡ଼େ ଅନାଇ ନଥିଲେ । ତଳମୁଣ୍ଡ ବାଙ୍କଆଡ଼ୁ ଗୋଲି ଆବାଜ ଆସୁଥାଏ । କିନ୍ତୁ ସେଥିପାଇଁ ଭ୍ରୂକ୍ଷେପ କରି ନଥିଲେ । ଟି. ଏନ୍. ଟି ବାଷ୍ପ ଯୋଗୁଁ ସେ କାଶୁଥିଲେ ଏବଂ ତାଙ୍କର ସର୍ବାଙ୍ଗ ନିଷ୍ପନ୍ଦ ହୋଇ ଯାଇଥିଲା । ଯେଉଁ ଗଛ ଉହାଡ଼ରେ ପିଲାର୍ ଶୋଇଥିଲା ସେଠାକୁ ଯାଇ ଖଣ୍ଡେ ଏ ରାଇଫଲ୍ ତା ପାଖରେ ଥୋଇ ଦେଲେ । ପିଲାର୍ ପାଖରେ ପୁଣି ୩ ଗୋଟି ରାଇଫଲ୍ ହୋଇଗଲା ।

ରବର୍ଟ ଜର୍ଡାନ୍ କହିଲେ "ତୁ ଏଠି ବହୁତ ଉଚ୍ଚରେ ଅଛୁ । ଏଣୁ ଜରି ରାସ୍ତାରେ ଯେଉଁ ଟ୍ରକ୍‌ଗାଡ଼ିଟା ଅଛି ତୁ ଦେଖିପାରୁ ନାହୁଁ । ଟ୍ରକ୍‌ରେ ଥିବା ଲୋକେ ଭାବି ନେଇଛନ୍ତି ଯେ, ଏଟା ଉଡ଼ାଜାହାଜର କାମ । ତୋ ପକ୍ଷରେ ବର୍ତ୍ତମାନ ଅନ୍ଧାର ତଳକୁ ଖସିଯିବା ଭଲ । ମୁଁ ଅଗଷ୍ଟିନ୍‌କୁ ନେଇ ପାବ୍‌ଲୋକୁ ସାହାଯ୍ୟ କରିବାକୁ ଯାଉଛି ।"

"ବୁଢ଼ା ଖବର କଅଣ ?" ପିଲାର୍ ପଚାରିଲା ।

"ମରି ଯାଇଛି ।" ଏତିକି କହି ସେ ପୁଣି ଖଁ ଖଁ ହୋଇ କାଶି ଛେପ ପକାଇଲେ ।

ପିଲାର୍ ତାଙ୍କୁ କହିଲା "ଇଂରେଜ, ତମ ପୋଲ ଉଡ଼ିଯାଇଛି, ଏତିକି ଭୁଲିବୁ ନାହିଁ ଟି ।"

ସେ କହିଲେ "ମୁଁ କିଛି ଭୁଲିବି ନାହିଁ । ଆଚ୍ଛା । ମୁଁ ତ ତୋ ପାଗଡ଼ାଗଲା ଆବାଜ ଶୁଣିଛି । ଏଇଠୁ ଡାକକରି ମେରିଆକୁ କହିଦେ ମୁଁ ଠିକ୍ ଅଛି ।"

ପିଲାର୍ କହିଲା "କରତକଲ ପାଖରେ ଆମର ଦୁଇଜଣ ମଲେ ।"

ରବର୍ଟ ଜର୍ଡାନ୍ ଜବାବ ଦେଲେ "ତା ମୁଁ ଦେଖିଛି । ଆଚ୍ଛା, ତମେ ସେଠି କ'ଣ ଭୁଲ୍ କରିଛ କି ?"

ପିଲାର୍ କହିଲା "ତୋ ମୁହଁରେ ନିଆଁ ଲାଗୁ ଇଂରେଜ, ଫର୍ଣ୍ଣାଣ୍ଡୋ, ଏଲାଡ଼ିଓ ପ୍ରକୃତରେ ମଣିଷ ଥିଲେ ।"

ରବର୍ଟ ଜର୍ଡାନ୍ କହିଲେ "ତୁ ଘୋଡ଼ା ନେଇ ଚାଲି ଯା । ମୁଁ ଏ ଜାଗା ତୋ ଅପେକ୍ଷା ଭଲ ଜଗି ପାରିବ ।

"ତମେ ପରା ପାବ୍ଲୋକୁ ସାହାଯ୍ୟ କରିବାକୁ ଯିବ ?"

"ପାବ୍ଲୋ ଚୁଲିକୁ ଯାଉ । ସେ ନିଜକୁ ନିଜେ ରକ୍ଷାକରୁ ।"

"ନା ଇଂରେଜ, ସେ ଫେରି ଆସିଲା । ତଳେ ସେ ବହୁତ ଯୁଦ୍ଧ କରି୍ । ତମେ ସେକଥା ଶୁଣି ପାରନାହଁ—ବର୍ତ୍ତମାନ ମୁଦ୍ଧା ସେ ଯୁଦ୍ଧ କରୁଛି । ଅତି ଖରାପ ଅବସ୍ଥା ସତ୍ତ୍ୱେ ବି ତମେ କ'ଣ ଶୁଣୁନାହଁ ?"

"ହଉ, ହଉ, ମୁଁ ତାକୁ ସହାଯ୍ୟ କରିବି ।

"ତୁମେ ଦୁହେଁ ଧ୍ୱଂସ ହୁଅ ।"

ପିଲାର୍ କହିଲା "ଇଂରେଜ, ଧୈର୍ଯ୍ୟଧର । ମୁଁ ଏହି କାମରେ ତୁମ ସହିତ ଯେପରି ମିଶି ରହିଅଛି ଅନ୍ୟ କେହି ସେପରି ରହନ୍ତା ନାହିଁ । ପାବ୍ଲୋ ତୁମ ପ୍ରତି ଅନ୍ୟାୟ କରିଅଛି ସତ ମାତ୍ର ସେ ଫେରି ଆସିଛି ।"

"ମୋର ଯଦି ସେହି ରକ୍ତକ ଓ ଦୌଡ଼ାଡ଼କ ଥାଆନ୍ତା ତେବେ ବୁଢ଼ା ମରି ନଥାନ୍ତା । ମୁଁ ଏଠିଠାରୁ ପୋଲଟା ଧ୍ୱଂସ କରି ଆଆନ୍ତି ।"

"ଯଦି, ଯଦି—" ପିଲାର୍ କହିଲା ।

ପୋଲଟା ଧ୍ୱଂସ ପରେ ସେ ନିଜର ପେଟଇ ପଡ଼ିଥିବା ଜାଗାରୁ ବାହାରି ବୁଢ଼ା ଆନ୍ସେଲ୍ମୋକୁ ମୃତ ଦେଖି ମନରେ ଯେଉଁ ଘୃଣା, ଶୂନ୍ୟତା ଏବଂ ରାଗ ଅନୁଭବ କରିଥିଲେ ସବୁତକରେ ସେ ଜର୍ଜରିତ ହୋଇ ଉଠିଥିଲେ । ସୈନିକ ପ୍ରାଣରେ ନୈରାଶ୍ୟଜନିତ ଯେଉଁ ଦୁଃଖ ଜାତ ହୋଇ ତାକୁ ସୈନିକ ବୃତ୍ତିରେ ସୁଦୃଢ଼ କରିଥାଏ ସେହି ଦୁଃଖ ମଧ୍ୟ ତାଙ୍କ ପ୍ରାଣରେ ଜାତ ହୋଇଥିଲା । ବର୍ତ୍ତମାନ ଯେ ସବୁ ଛୁଟିଗଲାରେ ସେ ନିଜକୁ ନିଃସଙ୍ଗ, ଅନାସକ୍ତ, ଉଦାସ ବୋଧ କଲେ ଏବଂ ସମସ୍ତଙ୍କ ପାଇଁ ତାଙ୍କ ମନ ଘୃଣାରେ ଭରପୂର୍ ହୋଇ ଉଠିଲା ।

ପିଲାର୍ କହିଲା "ଯଦି ତୁମ୍ଭାରପାଇ ଘଟି ନଥାନ୍ତା—" ପିଲାର୍ ତାଙ୍କୁ ଝୁଣ୍ଟାଇ ଧରି ଛାଡ଼ିଦେଲେ ସେ ଯେଉଁ ଶାନ୍ତିକେ ମୁକ୍ତି ବୋଧ କରି ଆଆନ୍ତେ ତା ବୋଧ ନକରି ଧୀରେ ଧୀରେ ମନରୁ ଘୃଣା ବର୍ଜନ କରି, ପରିସ୍ଥିତିକୁ ଗ୍ରହଣ କରି

ନେଲେ । ସେ ଭାବିଲେ ସେ ତୁଷାରପାତ ସବୁ ପାଇଁ ଦାୟୀ । ଏପରି ତୁଷାରପାତ ଅନ୍ୟମାନଙ୍କର ମଧ୍ୟ ବହୁ କ୍ଷତି ଘଟାଇ ଅଛି । ଏତିକ ମନେ ରଖିଲେ ଏବଂ ନିଜର ସ୍ୱାର୍ଥ ଚିନ୍ତା ଛାଡ଼ିଲେ ମଣିଷ ମନରେ ଘୃଣା ରହିବ ନାହିଁ । ସେ ବୁଝିପାରିବ ଯୁଦ୍ଧରେ ବହୁତ କିଛି କରିବାକୁ ପଡ଼ିଥାଏ । ସ୍ୱାର୍ଥ ନଥିଲେ କେବଳ ନିଜର ମୃତ୍ୟୁ ଛଡ଼ା ଅନ୍ୟର ମୃତ୍ୟୁ ପ୍ରାସଙ୍ଗିକ ନୁହେ । ଏପରି ମନେ ମନେ ଭାବୁଥିଲାବେଳେ ସେ ଶୁଣିଲେ ସେ ପିଲାର୍ କହୁଅଛି "ଯୋର୍ଡ଼ୋ—"

"କଅଣ ?"

"ଯୋର୍ଡ଼ୋ—"

ରବର୍ଟ ଜର୍ଡାନ୍ କହିଲେ 'ହଁ ।' ସେ ଦାନ୍ତକାମୋଡ଼ି ଟିକିଏ ହସି ପକାଇ କହିଲେ 'ତା' କଥା ଭୁଲିଯାଅ । ମୁଁ ଭୁଲ କରିଅଛି ସେଥିପାଇଁ ଦୁଃଖିତ । ଆସ ଏଣିକି ସମସ୍ତେ ମିଶି ଭଲଭାବରେ ବାକି କାମ କରିବା । ତୁ ତ ଜାଣୁ ସେ ପୋଲଟା ଧ୍ୱଂସ ହୋଇଅଛି ।'

'ହଁ, ତୁମେ ବର୍ତ୍ତମାନ ଅନ୍ୟମାନଙ୍କ କଥା ଭାବିବା ଉଚିତ ।'

"ହଉ ତେବେ ମୁଁ ବର୍ତ୍ତମାନ ଅଗଷ୍ଟିନ୍ ପାଖକୁ ଯାଉଅଛି । ତୋ ଜିପ୍‌ସିକୁ ଅଧିକ ତଳକୁ ଯାଇ ରହିବାକୁ କହ । ତା'ହେଲେ ସେ ରାସ୍ତା ଉପରେ ଭଲଭାବରେ ନଜର ରଖି ପାରିବ । ସେ ବନ୍ଧୁକଗୁଡ଼ିକ ପ୍ରିମିଟିଭୋକୁ ଦେଇ ଏହି ମେସିନ୍‌ଗନ୍‌ଟା ତୋ ପାଖରେ ରଖିଥା । ମୁଁ ତୋତେ ଏହାର ବ୍ୟବହାର ଶିଖାଇ ଦେଉଅଛି ।"

ପିଲାର୍ କହିଲା "ମେସିନ୍‌ଗନ୍ ତୁମ ପାଖରେ ଥାଉ । ଆମେ ଏଠାରେ ବେଶୀବେଳ ରହିବୁ ନାହିଁ । ପାବ୍‌ଲୋ ବର୍ତ୍ତମାନ ଆସି ପହଞ୍ଚିଯିବ । ସେ ଆସିଗଲେ ଆମ୍ଭେମାନେ ଏଠାରୁ ଚାଲିଯିବୁ ।"

ରବର୍ଟ ଜର୍ଡାନ୍ ଡାକିଲେ "ରାଫେଲ୍, ମୋ ପାଖକୁ ଆ । ହଁ ଠିକ୍ । ଦେଖିଲୁ ସେମାନେ ଟ୍ୟାଙ୍କରୁ କିଏ ଆସୁଛନ୍ତି ? ସେହି ଟ୍ରକଗାଡ଼ି ଉପରଆଡ଼କୁ ? ସେମାନେ ଗାଡ଼ି ଆଡ଼କୁ ଆସୁଛନ୍ତି । ସେଥିରୁ ଜଣକୁ ମାରିଲୁ । ବସିପଡ଼ି ସହଜରେ ଲକ୍ଷ୍ୟ ଠିକ୍ କରି ନେ ।"

ଜିପ୍‌ସି ସାବଧାନ ଭାବରେ ଲକ୍ଷ୍ୟ କରି ଗୁଳି ଫୁଟାଇଲା । ଏହାପରେ ଗୁପ୍ପୁଆଣି ପଛକୁ ଟାଣି ଖାଲି ଗୁଳି ଖୋଳଟା କାଢ଼ି ପକାଇଲାରୁ ରବର୍ଟ ଜର୍ଡାନ୍ କହିଲେ

"ସେଇଠିକି ଲକ୍ଷ୍ୟ କର । ତୋ ଗୁଳି ପଥର ଉପରକୁ ଗୁଲିଗଲା । ପଥରରୁ ଧୂଳି ଉଡ଼ିବା ଦେଖୁଛୁ ତ ? ଦୁଇଫୁଟ ତଳକୁ ନଳି ଖସାଇ ନେ । ବର୍ତ୍ତମାନ ସାବଧାନ ହୋଇ ଫୁଟା ଦେଖ, ସେମାନେ ଦଉଡ଼ି ପଳାଉ ଅଛନ୍ତି । ହଁ ଠିକ୍ ହେଲା ।"

ଗପ୍‌ସି କହିଲା "ଜଣେ ପଡ଼ିଲା । ଲୋକଟା ସାନ ପୋଲ ଟ୍ରକ୍‌ଗାଡ଼ି ମଧ୍ୟରେ ରାସ୍ତା ଉପରେ ପଡ଼ିଗଲା । ଅନ୍ୟ ଦୁଇଜଣ ତାକୁ ଟାଣି ଟାଣି ନେବାକୁ ନ ଅଟକି ଦୌଡ଼ି ପଳାଇ ଯାଇ ସେହି ସାନ ପୋଲ ଭିତରେ ପଶିଗଲେ ।"

ରବର୍ଟ ଜର୍ଡ଼ାନ୍ କହିଲେ "ଆଉ ତାଙ୍କୁ ଗୁଳି ମାରନାହିଁ ବରଂ ଉପରକୁ ବନ୍ଧୁକ ଉଠାଇ ସେହି ଟ୍ରକ୍‌ଗାଡ଼ିର ଆଗ ଚକକୁ ଲକ୍ଷ୍ୟ କର । ଯଦି ଚକରେ ଗୁଳି ନବାଜିବ ତେବେ ନିଶ୍ଚୟ ଇଞ୍ଜିନରେ ବାଜିବ । ବେଶ୍ ।" ସେ ନଜର ଦୂରବୀକ୍ଷଣରେ ରଖି କହିଲେ "ହଁ ଟିକିଏ ତଳକୁ । ବେଶ, ତୋ ଲକ୍ଷ୍ୟ ଅବ୍ୟର୍ଥ । ବର୍ତ୍ତମାନ ଗାଡ଼ିର 'ରେଡିଏଟର୍‌ର' ଯେ କୌଣସି ଜାଗାକୁ ଲକ୍ଷ୍ୟ କର । ସାବାସ, ତୁ ତ ଲକ୍ଷ୍ୟଭେଦ ପ୍ରତିଯୋଗୀତା ପରି କାମ କରୁଅଛୁ । କୌଣସି ବସ୍ତୁ ଆଉ ନିକଟକୁ ଆସିବାକୁ ଦେବୁ ନାହିଁ ।"

ଖୁସି ମନରେ ଟେପ୍‌ସି କହିଲା "ଦେଖନ୍ତୁ, ମୁଁ ଟ୍ରକ୍‌ର ପରଦା କାଚ କେମିତି ଚୁରମାର କରୁଅଛି ।"

ରବର୍ଟ ଜର୍ଡ଼ାନ୍ କହିଲେ 'ନା, ଟ୍ରକ୍‌ଟା ଜଖମ ହୋଇ ସରିଲାଣି । ରାସ୍ତାରେ ଅନ୍ୟ କିଛି ଆସିବାଯାଏ ଆଉ ଗୁଳି ଚଳାନାହିଁ । ଯେତେବେଳେ କିଛି ସେହି ସାନ ପୋଲର ବିପରୀତ ସ୍ଥାନରେ ପହଞ୍ଚିବ ଗୁଳି ଚଳାଇବା ଆରମ୍ଭ କରିବୁ । ଡ୍ରାଇଭର୍‌କୁ ଆଘାତ କରିବାକୁ ଚେଷ୍ଟା କରିବୁ । ତୁମେ ସମସ୍ତେ ଗୁଳି ଚଳାଇବ ।' ଏକଥା ସେ ପିଲାର୍‌କୁ କହିଲେ କାରଣ ପିଲାର୍ ସେତେବେଳେ ଅଧିକ ତଳକୁ ଖସି ଆସିଥିଲା । ସାଙ୍ଗରେ ଥିଲା ପ୍ରିମିଟିଭୋ । 'ତୋର ଅବସ୍ଥିତି ଅତି ଅଦ୍ଭୁତ । ଏହି ସ୍ଥାନଟା ଏପରି ଯାଇଁ ଯେ ତୁମର କଡ଼ପଟ ସେ ରକ୍ଷା କରୁଅଛି ।'

ପିଲାର୍ କହିଲା 'ଅଗଷ୍ଟିନ୍‌କୁ ନେଇ ତୁମେ ନିଜ କାମରେ ଯାଅ । ମୋତେ ଆଉ ବକ୍ତୃତା ଶୁଣାଅ ନାହିଁ । ମୋ ଅମଳରେ ମୁଁ ଏମିତି ଉଚ୍ଚନୀଚ ପାହାଡ଼ିଆ ଜାଗା ବହୁତ ଦେଖିଅଛି ।'

ରବର୍ଟ ଜର୍ଡ଼ାନ୍ କହିଲେ 'ପ୍ରିମିଟିଭୋକୁ ଆହୁରି ଉପର ଆଡ଼କୁ ପଠାଅ । ହେଇ ସେଇଠି । ଦେଖୁଛୁ ନା । ବନ୍ଧର ଏପାଖଟା ବେଶୀ ଢଖ ହୋଇଅଛି ।'

ପିଲର୍ ଜବାବ ଦେଲା 'ଇଂରେଜ, ତୁମେ ଏଠାରୁ ଯାଅ । ତୁମ ପରାମର୍ଶ ତୁମ ପାଖରେ ଥାଉ । ମୋ କାମ ମୁଁ ଜାଣେ । ମୋର ଏଠାରେ କୌଣସି ଜଞ୍ଜାଳ ନାହିଁ ।'

ଠିକ୍ ଏତକବେଳେ ଉଡ଼ାଜାହାଜର ଗର୍ଜନ ଶୁଣାଗଲା ।

ମେଖଆ ଘୋଡ଼ାଙ୍କ ପାଖରେ ବହୁକାଳ ରହିଲା କିନ୍ତୁ ତା ମନ ଅସ୍ଥିର ହେଉ ନଥାଏ । ସେ ମଧ୍ୟ ଘୋଡ଼ାଙ୍କ ପ୍ରତି ଆସକ୍ତ ନଥିଲା । ବଣ ଭିତରେ ସେ ଯେଉଁ ସ୍ଥାନରେ ଥିଲା ସେଠାରୁ ପୋଲ କିମ୍ବା ରାସ୍ତା କିଛି ଦେଖାଯାଉ ନ ଥିଲା । ଯେତେବେଳେ ଗୁଳି ଗୋଳିବା ଆରମ୍ଭ ହେଲା ସେତେବେଳେ ସେ ସେହି ବଡ଼ ଧଳା ଘୋଡ଼ାଟା ବେକକୁ କୁଣ୍ଢାଇଥିଲା । ଅସ୍ତାବଲରେ ଥିଲାବେଳେ ସେ ଏହି ଘୋଡ଼ା ପାଇଁ କେତେଥର ଭଲ ଭଲ ଖାଦ୍ୟ ଆଣି ଦେଇଥିଲା । କିନ୍ତୁ ସେ ନକେ ଗୁନିଆ ହୋଇ ଥିବାରୁ ଧଳା ଘୋଡ଼ାଟା ମଧ୍ୟ ଚମକି ଉଠି ନାକମେଲଇ ଗୁଳି ଓ ବୋମା ଆବାଜରେ ଅସ୍ଥିର ହୋଇ ଉଠୁଥିଲା । ମେଖଆ ମଧ୍ୟ ଶାନ୍ତ ରହି ନପାରି ଘୋଡ଼ାଙ୍କ ପୃଷ୍ଠପଟେ ବୁଲି ତାଙ୍କୁ ଆପୁଡ଼େଇ ଆଉଁସା ଆଉଁସି କରୁଥିଲା । ଏଥିରେ ସେମାନେ ଅଧିକ ଗୃହଁକା ହୋଇ ଉଠିଥିଲେ ।

ଗୋଟାଏ କିଛି ଭୟଙ୍କର ଘଟନା ଘଟୁଅଛି ବୋଲି ଏହି ଗୁଳି ଚଳାଚଳ କଥା ମେଖଆ ଭାବିଲା ନାହିଁ । ତା ମନରେ ହେଲା କେତେଗୁଡ଼ାଏ ନୂଆଲୋକ ନେଇ ପାବ୍‌ଲୋ ତଳ ଦେଶରେ ଅଛି ଆଉ ଅନ୍ୟ କେତେଜଣଙ୍କୁ ନେଇ ପିଲାର୍ ଉପର ଅଂଶରେ ଅଛି । ଏପରି ଅବସ୍ଥାରେ ଗୁଳି ବୃଷ୍ଟି କି ଦଶା ଘଟାଇଥିବ କେଜାଣି । ତଥାପି ଭୀତ କିମ୍ବା ଆତଙ୍କିତ ହେବା ତାହାର ଉଚିତ ନୁହେ ବୋଲି ସେ ଭାବିନେଲା । ରବର୍ଟୋଙ୍କ ଉପରେ ସେ ବିଶ୍ୱାସ ରଖିବା ଉଚିତ । କିନ୍ତୁ ସେ ଏତିକ କରି ପାରିଲା ନାହିଁ । ପୋଲ ତଳୁ ଓ ଉପରୁ ଯେଉଁ ବନ୍ଧୁକ ଆବାଜ ଆସୁଥିଲା ଏବଂ ବହୁଦୂରରୁ ଲଢ଼େଇର ତୋପ କମାଣ ଧ୍ୱନି ଯେପରି ପ୍ରବଳ ଝଡ଼ର ଗର୍ଜନ ଭଳି ମାଡ଼ି ମାଡ଼ି ଆସୁଥିଲା ଏବଂ ଏହା ସାଙ୍ଗରେ କଁ୍ୟା ଭଁ୍ୟା ଉଡ଼ାଜାହାଜରୁ ବୋମା ଫୁଟିବା ଶବ୍ଦ ମିଶି ଯେଉଁ ଭୀଷଣ ଅବସ୍ଥା ସୃଷ୍ଟି କରିଥିଲା ସେଥିରେ ମେଖଆର ଦମ୍ ବନ୍ଦ ହୋଇ ଯାଉଥିଲା ।

ପରେ ଧାଡ଼ାଡ଼ ତଳୁ ପିଲାର୍‌ର ମୋଟା ଗଳା ଆବାଜ ସେ ପାଇଲା । ପିଲାର୍ ତାକୁ ଅଶ୍ଳୀଳ ଭାଷାରେ ଗାଳି ହୋଇ ହୁରି କରୁଥାଏ । କାରଣ କିଛି ବୁଝି ନପାରି ମେଖଆ ଭାବିଲା 'ନା-ନା, ଏତେବେଳେ ଈଶ୍ୱରଙ୍କୁ ଅବଜ୍ଞା କରିବା ଠିକ୍

ନୁହେ । ରବର୍ଟ ଜର୍ଡ଼ାନ୍ ବିପଦ ଭିତରେ ରହିଛନ୍ତି । ଏତେବେଳେ ତାହାଙ୍କୁ ରଗାଇବା କିମ୍ବା ବୃଥାରେ ବିପଦ ବରଣ କରିବା ଉଚିତ ନୁହେ ।'

ସେ ହଠାତ୍ ବିଦ୍ୟାଳୟରେ କରୁଥିଲା ଭଳି ରବର୍ଟଙ୍କ ପାଇଁ ଶୀଘ୍ର ଆପଣାଛୁଏଁ ପ୍ରାର୍ଥନା କରିବାକୁ ଲାଗିଲା । ସେ ନିଜର ଦୁଇ ହାତ ଆଙ୍ଗୁଳି ଦ୍ୱାରା ଗଣି ଗଣି ଭଗବାନଙ୍କ ସ୍ତବର ପୁନରାବୃତ୍ତି କଲା । ଏହାପରେ ମୋଲଟା ଧ୍ୱଂସ ହୋଇଗଲା । ଧ୍ୱଂସର ପ୍ରଳୟଙ୍କର ନିନାଦରେ ଗୋଟାଏ ଘୋଡ଼ା ମୁଣ୍ଡ ହଲାଇ ଲଗାମ ଛିଣ୍ଡାଇ ବଣ ଭିତରେ ପଶିଗଲା । ମେରିଆ ଶେଷକୁ ତାକୁ ଖୋଜି ବଣରୁ ଆଣିଲା । ଘୋଡ଼ାଟା ଭୟରେ ଥରୁଥାଏ, ତା ଛାତି ଝାଳରେ କଳା ପଡ଼ି ଯାଇଥାଏ ଏବଂ ଜିନ୍‌ଟା ତଳକୁ ଝୁଲି ପଡ଼ିଥାଏ । ବଣ ଭିତରୁ ଫେରିଲାବେଳେ ମେରିଆ ପୁଣି ବନ୍ଧୁକ ଫୁଟିବା ଆୱାଜ ଶୁଣି ଭାବିଲା ଯେ ସେ ଆଉ ସହ୍ୟ କରିପାରିବ ନାହିଁ । କଅଣ ଘଟିଲା ନ ଜାଣିଲେ ସେ ବଞ୍ଚି ପାରିବ ନାହିଁ । ତାହାର କଣ୍ଠ ତାଳୁ ଶୁଖିଗଲା—ସେ ନିଶ୍ୱାସ ନେଇ ପାରୁ ନଥାଏ । ସେ ଏତେ ଭୀତସନ୍ତ୍ରସ୍ତ ଯେ ତା' ଦ୍ୱାରା କିଛି କାମ ହେବ ନାହିଁ । ସେ ଘୋଡ଼ାମାନଙ୍କୁ ମଧ୍ୟ ଡରାଇ ପକାଉଛି । ଗୋଟାଏ ଘୋଡ଼ା ତ ଡର ପଳାଇଥିଲା । ତାକୁ ସେ ଧରି ପାରି ନଥାନ୍ତା ଯଦିବା ଘୋଡ଼ାର ଜିନ୍ ଖସିପଡ଼ି ଗଛରେ ଛନ୍ଦି ହୋଇ ଯାଇ ନଥାନ୍ତା । ସେ ଭଗବାନଙ୍କୁ ଡାକି କହିଲା ସେ ଆଉ ସହି ପାରିବ ନାହିଁ । ତାହାର ଯଥା ସର୍ବସ୍ୱ ପୋଲ ପାଖରେ ରହିଅଛି । ଭଗବାନ୍ ତାଙ୍କୁ ଅକ୍ଷତ ରଖନ୍ତୁ । ଗଣତନ୍ତ୍ର ଗୋଟିଏ କଥା ଏବଂ ଯୁଦ୍ଧ ଜିଣିବା ଆଉ ଗୋଟିଏ କଥା । ହେ ଦୟାଳୁ ମେରୀମାତା, ତାଙ୍କୁ ଅକ୍ଷତ ଦେହରେ ପୋଲ ପାଖରୁ ଫେରାଇ ଆଣ । ଆପଣ ଯାହା କହିବେ ମୁଁ କରିବାକୁ ପ୍ରସ୍ତୁତ ଅଛି । ମୁଁ ଏଠି ଅଛି କିନ୍ତୁ ମୋ ଆତ୍ମା ରହିଛି ତାଙ୍କ ପାଖରେ । ମୋ ପାଇଁ ତାଙ୍କୁ ଘଣ୍ଟା ଘୋଡ଼ାଇ ରକ୍ଷାକର । ମୁଁ ତୁମର ସେବା ପୂଜା ସବୁ କରିବି । ସେ ମନା କରିବେ ନାହିଁ । ପୂଜାପାଠ ଗଣତନ୍ତ୍ରର ବିରୋଧ ନୁହେ । ମୋତେ କ୍ଷମା କରନ୍ତୁ । ମୋ ମୁଣ୍ଡ ଠିକ୍ ରହୁନାହିଁ । ଆପଣ ମୋ ସ୍ୱାମୀଙ୍କୁ ସହାୟ ହେଉନ୍ତୁ । ମୁଁ ସବୁପ୍ରକାର ପୂଜା ଦେବି । ମୁଁ ଆପଣଙ୍କର ଓ ତାଙ୍କର ନିର୍ଦ୍ଦେଶ ପାଳନ କରିବି । ସେ ଫେରିଲେ ମୁଁ ଦୁଇଗୁଣ ହୋଇ ଉଠିବି । କିନ୍ତୁ କଅଣ ଘଟିଛି ନ ଜାଣିବାଯାଏ ମୁଁ ଆଉ ସମ୍ଭାଳି ପାରୁନାହିଁ ।

ଘୋଡ଼ାକୁ ବାନ୍ଧି ତା ଉପରେ ଜିନ୍ କସି, କମ୍ବଳ ଚକଣ ଉପର ଜିନ୍ ପଟିରେ ଭିଡ଼ି ବାନ୍ଧିଲାବେଳେ ବଣ ଭିତରୁ ଗୁରୁଗମ୍ଭୀର ଧ୍ୱନିରେ ସେ ଶୁଣିଲା 'ମେରିଆ, ମେରିଆ, ତୋ ଇଂରେଜ ଭଲ ଅଛି । ଶୁଣିଲୁ, ଭଲ ଅଛି ।'

ମେରଆ ଘୋଡ଼ାର ଜନ୍‌କୁ ଦୁଇ ହାତରେ ଧରି ସେଥିରେ ନିଜର ଲମ୍ବା ମୁଣ୍ଡ ଲଗାଇ କାନ୍ଦ ପକାଇଲା । ସେ ପୁଣି ଥରେ ସେହି ଗମ୍ଭୀର କଣ୍ଠସ୍ୱର ଶୁଣି ପାରି ଜନ୍ ଉପରୁ ମୁଣ୍ଡ ଟେକି କହିଲା 'ହଁ ଶୁଣିଲି । ଧନ୍ୟବାଦ ।' ଏହାପରେ ବାଷ୍ପାକୁଳ କଣ୍ଠରେ ଭେଡେଥର ଖାଲି ଧନ୍ୟବାଦ ଦେଲା ।

ଉଡ଼ାଜାହାଜର ଆବାଜ ଶୁଣି ସେମାନେ ସମସ୍ତେ ଉପରକୁ ଚାହିଁଲେ । ସେଗୁଡ଼ିକ ବହୁତ ଉପରେ ଯେଗୋଛିଆ ଆଡ଼ୁ ଆସୁଥିଲା । ଆକାଶରେ ସେଗୁଡ଼ିକ ରୂପା ପରି ଚକ୍‌ଚକ୍ ହେଉଥାଏ ଏବଂ ତାଙ୍କର ଆବାଜ ଅନ୍ୟ ସବୁ ଶବ୍ଦକୁ ବୁଡ଼ାଇ ଦେଇଥାଏ ।

ପିଲାର୍ କହିଲା "ଏଗୁଡ଼ିକ ହିଁ ଆମର ଅଭାବ ଥିଲା ।"

ରବର୍ଟ ଜର୍ଡ଼ାନ ଉଡ଼ାଜାହାଜକୁ ନିରୀକ୍ଷଣ କରୁ କରୁ ପିଲାର୍ କାନ୍ଧରେ ହାତ ଥୋଇ କହିଲେ "ନାହିଁ ଲୋ ନାରୀ, ସେଗୁଡ଼ିକ ଆମପାଇଁ ଆସୁନାହିଁ । ଆମକୁ ଆକ୍ରମଣ କରିବାକୁ ତାଙ୍କର ଅବସର ନାହିଁ । ତୁ ଧୈର୍ଯ୍ୟ ଧର ।"

"ମୁଁ ତାଙ୍କୁ ଘୃଣା କରେ ।"

"ମୁଁ ମଧ୍ୟ, କିନ୍ତୁ ବର୍ତ୍ତମାନ ମୁଁ ଅଗଷ୍ଟିନ୍ ପାଖକୁ ଯାଉଅଛି ।"

ସେ ଝାଡ଼ବଣ ଦେଇ ବଣ ଭିତରେ ପାହାଡ଼ ଚାରିପଟେ ବୁଲି ବାହାରିଗଲେ । ସାରାକ୍ଷଣ ଉଡ଼ାଜାହାଜର ଗୁମ୍‌ଗୁମ୍ ଶବ୍ଦ ଶୁଣା ଯାଉଥିଲା ଏବଂ ତା ସହିତ ମିଶୁଥିଲା ବିଧ୍ୱସ୍ତ ପୋଲ୍ ଏବଂ ତଳଆଡ଼େ ରାସ୍ତା ଉପରୁ ବଡ଼ ମେସିନ୍‌ଗନ୍‌ର ଗୁଡୁମ୍ ଗୁଡୁମ୍ ଆବାଜ ।

ଅଗଷ୍ଟିନ୍ ଗୋଟିଏ ବୁଦା ଉହାଡ଼ରେ ସ୍ୱୟଂକ୍ରିୟ ରାଇଫଲ୍ ପାଖରେ ପେଟେଇ ପଡ଼ିଥାଏ । ରବର୍ଟ ଜର୍ଡ଼ାନ୍ ତା ପାଖରେ ଯାଇ ବସି ପଡ଼ିଲେ । କ୍ରମଶଃ ଅଧିକ ସଂଖ୍ୟକ ବିମାନ ଆସିବାକୁ ଲାଗିଲା ।

ଅଗଷ୍ଟିନ୍ ପଚାରିଲା "ତଳେ କଅଣ ଘଟୁଛି ? ପାବ୍‌ଲୋ କଅଣ କରୁଅଛି । ପୋଲ୍ ଧ୍ୱଂସ ହେବା କଥା କଅଣ ସେ ଜାଣିନାହିଁ ?"

"ହୁଏତ ସେ ଆସି ପାରୁନାହିଁ ।"

"ସେ ଚୁଲିକୁ ଯାଉ, ଚାଲ ତେବେ ଆମେ ଯିବା ।"

ରବର୍ଟ ଜର୍ଡାନ୍ କହିଲେ "ସମ୍ଭବ ହେଲେ ସେ ବର୍ତ୍ତମାନ ଆସିଯିବ । ଆମେ ବର୍ତ୍ତମାନ ତାକୁ ଦେଖି ପାରିବା ।"

ଅଗଷ୍ଟିନ୍ ଜବାବ ଦେଲା " ୫ ମିନଟ ହେଲା ମୁଁ ତା' ଖବର ପାଇନାହିଁ । ନା, ଏହି ଶୁଣ । ସେ ଆସୁଛି । ଇଏ୍ସ ତା'ର କାରଣିକି ।"

ଅଶ୍ୱାରୋହୀଙ୍କ ସାନ ମେସିନ୍‌ଗନ୍‌ରୁ ପଟ୍‌ପଟ୍ ହୋଇ ଗୁଳି ଛୁଟିବା ଆବାଜ ଶୁଣାଗଲା । ଏହି ଆବାଜ କିଛିକାଳ ଯାଏ ଗୁଂଜିଲା । ରବର୍ଟ ଜର୍ଡାନ କହିଲେ 'ହଁ, ଏହା ସେହି ଜାରଜାର କାମ ।'

ସେ ମେଘଶୂନ୍ୟ ଆକାଶରେ ଖୁବ୍ ଉଚ୍ଚରେ ଅଧିକ ଉଡ଼ାଜାହାଜ ଆସୁଥିବାର ଦେଖିଲେ ଏବଂ ଉଡ଼ାଜାହାଜକୁ ଦେଖି ଅଗଷ୍ଟିନ୍‌ର ମୁଖ କିପରି ହେଉଛି ଲକ୍ଷ୍ୟ କଲେ । ତତ୍ପରେ ସେ ବିଧ୍ୱସ୍ତ ପୋଲକୁ ଏବଂ ତାହା ଆଗକୁ ନିର୍ଜନ ରାସ୍ତାପ୍ରତି ଦୃଷ୍ଟି ନିକ୍ଷେପ କଲେ । ସେ କାଶି କାଶି ଛେପ ପକାଇ ଭାରି ମେସିନଗନ୍‌ର ଗୋଲି ବର୍ଷଣ ଆବାଜ ରାସ୍ତାର ବାଙ୍କ ଆଡ଼ୁ ଆସିବା ଶୁଣିଲେ । ଏହି ଶବ୍ଦ ଠିକ୍ ପୂର୍ବର ଶବ୍ଦ ଆସୁଥିବା ସ୍ଥାନରୁ ଉଠୁଥିଲା ।

ଅଗଷ୍ଟିନ୍ ପଗ୍ଭରିଲା 'ଏଟା କଅଣ, ଏଟାର ନାମ କଅଣ ?'

ରବର୍ଟ ଜର୍ଡାନ କହିଲେ 'ମୁଁ ପୋଲଟା ଉଡ଼ାଇ ଦେବାବେଳୁ ଏହା ଏପରି ଗ୍ଭଲୁ ରହିଅଛି ।' ସେ ବର୍ତ୍ତମାନ ପୋଲ ଆଡ଼କୁ ଅନାଇଲେ । ପୋଲର ମଝି ଅଂଶ ଧ୍ୱଂଶ ହୋଇ ଫାଙ୍କ ସୃଷ୍ଟି କରିଅଛି । ସେହି ଫାଙ୍କ ଭିତର ଦେଇ ସେ ନଦୀକୁ ମଧ୍ୟ ଦେଖି ପାରିଲେ । ବିଧ୍ୱଂସ୍ତ ଅଂଶଟା ଇସ୍ପାତ୍ ଘଟାଟୋପ ପରି ତଳକୁ ଝୁଲି ରହିଅଛି । ଯେଉଁ ଉଡ଼ାଜାହାଜମାନ ପ୍ରଥମେ ଯାଇଥିଲା ସେ ସବୁ ବର୍ତ୍ତମାନ ଗିରି ବର୍ତ୍ମ ଉପରେ ବୋମା ନିକ୍ଷେପ କରୁଥିବା ଶବ୍ଦ ସେ ଶୁଣି ପାରିଲେ । ଆହୁରି ଅଧିକ ଉଡ଼ାଜାହାଜ ଆସୁଥାଏ । ତାହାଁର ଇଞ୍ଜିନ ଗର୍ଜନ ଆକାଶକୁ ଫଟାଇ ପକାଉ ଥାଏ । ଉର୍ଦ୍ଧ୍ୱକୁ ଗ୍ଭହିଁ ସେ ଦେଖିଲେ ଯେ ଶୁଦ୍ରଏ ସାନ ସାନ ବିମାନ ଏ ସବୁ ଉଡ଼ାଜାହାଜ ଉପରେ ଥାଇ ମଣ୍ଡଳାକାରରେ ପର୍ଯ୍ୟଟନ କରୁଅଛନ୍ତି ।

ପ୍ରିମିଟିଭୋ କହିଲା 'ସେଦିନ ସକାଳେ ସେମାନେ ଏହି ବାଟ ଦେଇ ଯାଇ ନଥିଲେ । ସେମାନେ ପଶ୍ଚିମ ଦିଗକୁ ମାଡ଼ିଯାଇ ପରେ ବୁଲିପଡ଼ି ଏଠାକୁ ଆସିଛନ୍ତି । ଏ ସବୁକୁ ଦେଖିଥିଲେ ସେମାନେ ଆକ୍ରମଣ କରି ନଥାନ୍ତେ ।'

ରବର୍ଟ ଜର୍ଡାନ୍ ଉତ୍ତର ଦେଲେ 'ଅଧିକାଂଶ ନୂଆ ।'

ତାଙ୍କ ମନରେ ପ୍ରଥମେ ଏକ ସାଧାରଣ ଚିନ୍ତା ମୁଣ୍ଡ ଟେକିଥିଲା କିନ୍ତୁ କ୍ରମେ ତାହିଁ। ବିରାଟ ଦାନବୀୟ ପ୍ରତିକ୍ରିୟା ସୃଷ୍ଟି କଲା । ପାଣିରେ ଟେକାଟିଏ ଫିଙ୍ଗିଲେ ଯେଉଁ କ୍ଷୁଦ୍ର ଜଳଉଚ୍ଛ୍ୱାସ ସୃଷ୍ଟି ହୁଏ ସେହି ଜଳଉଚ୍ଛ୍ୱାସ ଯଦି ଭୀଷଣ ଗର୍ଜନରେ ବାଣ ପରି ଫେରିଆସେ ତେବେ ଯାହା ଭାବିବା କଥା ତାଙ୍କ ମନରେ ସେହିପରି ଭାବନା ଜାତ ହେଲା । ଅଥବା ତୁମେ ଗୋଟିଏ ଚିତ୍କାର କଲ । ସେହି ଚିତ୍କାରର ପ୍ରତିଧ୍ୱନି ଅଶନି ନିନାଦରେ ଯଦି ବାହୁଡ଼ିଲା ତେବେ ତୁମେ କଅଣ ଭାବିବ ? ଅଥବା ତୁମେ ଜଣକୁ ଗୁପୁଡ଼ାଏ ମାରିବାରୁ ସେ ପଡ଼ିଗଲା ମାତ୍ର ଶତମୂର୍ତ୍ତିରେ ସମସ୍ତ ସଜ୍ଜିତ ପରିହିତ ଲୋକେ ଉଠି ତୁମକୁ ଘେରିଗଲେ ତେବେ କଅଣ ଭାବିବ ? ସୁଖର କଥା ଯେ ସେ ଗିରିବର୍ତ୍ମଠାରେ ଗୋଲ୍‌ଜଙ୍କ ପାଖରେ ନାହାନ୍ତି ।

ରବର୍ଟ ଜର୍ଡାନ୍ ଅଗଷ୍ଟିନ୍ ପାଖରେ ଶୋଇରହି ଉଡ଼ାଜାହାଜମାନ ଆସିବା ଲକ୍ଷ୍ୟ କରୁଥିଲେ । ସେ ପଛପଟୁ ବନ୍ଧୁକର ଆବାଜ ଶୁଣୁଥିଲେ ଏବଂ ତଳ ଆଡ଼େ ରାସ୍ତାକୁ ଚାହିଁ ସେ କିଛି ଦେଖିବେ ବୋଲି ଭାବୁଥିଲେ କିନ୍ତୁ ସେ ଜନଶୂନ୍ୟ ରାସ୍ତାର ଅକ୍ଷତ ଦୃଶ୍ୟ ଅବଶ୍ୟ ନୁହେ । ତାଙ୍କର ସର୍ବାଙ୍ଗ ଯେତେବେଳଯାଏ ସୁଦ୍ଧା ନିଷ୍ପନ୍ଦ ହୋଇ ରହିଥିଲା ଏବଂ ସେ ଯେ ପୋଲ ଉପରେ କିପରି ନମରି ବଞ୍ଚିଗଲେ ସେକଥା ମନେକରି ବିସ୍ମୟ ବୋଧ କରୁଥିଲେ । ମରିବାଟା ସେ ଏପରି ସ୍ୱତଃସିଦ୍ଧ ସତ୍ୟ ବୋଲି ଧରି ନେଇଥିଲେ ଯେ ବର୍ତ୍ତମାନ ତାଙ୍କୁ ସବୁ ଅବାସ୍ତବ ପ୍ରତୀତ ହେଲା । ଏହି ଭାବ ଛାଡ଼ିବାକୁ ହେବ ବୋଲି ସେ ନିଜକୁ ବୁଝାଇଲେ । ଆଜି ଆହୁରି ବହୁତ—ବହୁତ କାମ କରିବାକୁ ଅଛି । କିନ୍ତୁ ଏହି ଚିନ୍ତା ତାଙ୍କ ମନରୁ ଦୂର ହେଲା ନାହିଁ । ସେ ଧୀରଭାବରେ ଚିନ୍ତା କଲେ ଏସବୁ ତାଙ୍କର ସ୍ୱପ୍ନ ବିକାର ।

ଭାବିଲେ 'ବହୁତ ସିଗ୍ରେଟ ଟାଣି ଏପରି ହୋଇଅଛି । ନା, ତା ତ ନୁହେ । ସେ ଦୃଢ଼ଭାବରେ ବୁଝିଲେ ବାସ୍ତବ ତୁଳନାରେ ଏସବୁ ଅତି ଅବାସ୍ତବ । ସେ ପୋଲ ଆଡ଼କୁ ଦୃଷ୍ଟି ଫେରାଇଲେ, ତପୂରେ ରାସ୍ତାରେ ସନ୍ତ୍ରୀ ମୁର୍ଦାରକୁ ଦେଖିଲେ । ଏହାପଛରୁ ଆନ୍‌ସେଲ୍‌ମୋ ଏବଂ ଫର୍ଣ୍ଣାଣ୍ଡୋର ଅନ୍ତିମ ଶୟନ ଭୂମି ଉପରେ ନଜର ଦେଇ ସେ ଅଟକି ଯାଇଥିବା ଟ୍ରକ୍‌ଗାଡ଼ିକୁ ଦେଖିଲେ । ଏହା ମଧ୍ୟ ତାଙ୍କୁ ଅପ୍ରକୃତ ବୋଧ ହେଲା ।'

ସେ ନିଜକୁ ପ୍ରବୋଧ ଦେଇ କହିଲେ 'ନା, ବର୍ତ୍ତମାନ ଶୀଘ୍ର ନିଜକୁ ଛାଡ଼ିଦେବାକୁ ହେବ । ଗାତ ଭିତରେ ରହିଥିବା କୁକୁଡ଼ା ପରି ମୁଁ ହୋଇ ଉଠିଲିଣି ।

କୁକୁଡ଼ାକୁ କିଏ ଜଖମ କଲା ଏବଂ କେଉଁଠି କଲା ଦେଖା ଯାଉନାହିଁ । ଅଥଚ ମୁଁ ଏମିତିକା ଚିନ୍ତା କରି କରି କାଲୁଆ ହୋଇ ଉଠିଲିଣି ।’

‘ନା, ଏସବୁ କିଛି ନୁହେଁ । ମୁଁ ଟିକିଏ ମାତାଲ ହୋଇ ପଡ଼ିଛି । ଦାୟିତ୍ୱ ତୁଲାଇଲା ପରେ ମୁଁ ଆଉ ସୀମାରେ ରହିନାହିଁ । ସୁତରାଂ ଭାବିବାର କିଛି ନାହିଁ ।’

ଏହାପରେ ଅଗଷ୍ଟିନ୍ ତାଙ୍କ ବାହୁକୁ ଧରି ଗୋଟାଏ ଆଡ଼କୁ ଚାହିଁବାକୁ ଇଙ୍ଗିତ କଲା । ସେ ଖାଲ ଅପର ପାର୍ଶ୍ୱକୁ ଅନାନ୍ତେ ପାବ୍‌ଲୋକୁ ଦେଖିଲେ । ରାସ୍ତାର ବାଙ୍କ ବୁଲି ପାବ୍‌ଲୋ ଦଉଡ଼ି ଦଉଡ଼ି ଆସୁଥିବାର ସେ ଦେଖି ପାରିଲେ । ପାହାଡ଼ ପାଖରେ ଯେଉଁଠି ରାସ୍ତା ବଙ୍କେଇ ଯିବାରୁ ଆଉ ଦିଶୁ ନଥାଏ ପାବ୍‌ଲୋ ସେହିଠାକୁ ଆସି ଅମି ଯାଇ ପାହାଡ଼କୁ ଅଡ଼ୁଜା ପଛଆଡ଼କୁ ଗୁଳି ଚଳାଇଲା । ରବର୍ଟ ଜର୍ଡ଼ାନ୍ ଦେଖିଲେ ତା ଚେହେରା ରୁକ୍ଷ, ତା ମୁଣ୍ଡରେ ଟୋପି ନାହିଁ ଅଥଚ ସେ ଅଶ୍ୱାରୋହୀଙ୍କର ସ୍ୱୟଂକ୍ରିୟ ରାଇଫଲ୍ ଚଳାଇ ରହିଅଛି । ସୂର୍ଯ୍ୟ କିରଣରେ ପିତଳ ନିର୍ମିତ ରାଇଫଲ୍ ନଳୀର ଲହଲହିଆ ମୁହାଁଣ୍ଟା ଭରି ଚକ୍‌ଚକ୍ କରୁଥିବା ସେ ଦେଖି ପାରିଲେ । ସେମାନେ ଦେଖିଲେ ପାବ୍‌ଲୋ ବସିପଡ଼ି ପୁଣି ଥରେ ଗୁଳି ଚଳାଇଲା । ଏହାପରେ ପଛକୁ ନଚାହିଁ ଗୋଡ଼ ଫରକଟା କରି ମୁଣ୍ଡ ପୋଲ ଆଡ଼କୁ ବଙ୍କାଇ ଦୌଡ଼ିଲା । ରବର୍ଟ ଜର୍ଡ଼ାନ୍ ଅଗଷ୍ଟିନ୍‌କୁ ହଟାଇ ଦେଇ ସ୍ୱୟଂକ୍ରିୟ ରାଇଫଲ୍‌ର ଗୁଳି ନଳି କାନ୍ଧରେ ରଖି ରାସ୍ତାର ବାଙ୍କ ଆଡ଼କୁ ଚାହିଁ ରହିଲେ । ତାଙ୍କର ନିଜର ସାନ ମେସିନଗନ୍‌ଟା ବାଁ ହାତ ପାଖରେ ପଡ଼ିଥାଏ । ଏତେ ଦୂରରୁ ତଦ୍ୱାରା ଲକ୍ଷ୍ୟ ଠିକ୍ ରହିବ ନାହିଁ ।

ପାବ୍‌ଲୋ ତାଙ୍କ ଆଡ଼କୁ ଆସିଲାବେଳେ ରବର୍ଟ ଜର୍ଡ଼ାନ୍ ସେହି ବାଙ୍କ ଆଡ଼କୁ ଚାହିଁଥିଲେ ମାତ୍ର ତାହାକୁ ଭଲରେ ଦେଖିଲେ ନାହିଁ । ପାବ୍‌ଲୋ ପୋଲ ପାଖରେ ପହଞ୍ଚି ପଛକୁ ଅନାଇଲା । ଏହାପରେ ବାମପଟକୁ ବଙ୍କାଇ ସେଠା ଖାତ ଭିତରେ ପଶି ଅଦୃଶ୍ୟ ହୋଇଗଲା । ରବର୍ଟ ଜର୍ଡ଼ାନ୍ ସେତେବେଳ ଯାଏ ସୁଦ୍ଧା ରାସ୍ତାର ବାଙ୍କକୁ ଅନାଇ ରହିଥିଲେ । ଅଗଷ୍ଟିନ୍ ଆଣ୍ଠେଇପଡ଼ି ଦେଖିଲା ଯେ ପାବ୍‌ଲୋ ଖାତ ଭିତରୁ ଛେଳିପରି ଉପରକୁ ଉଠୁଅଛି । ତଳଆଡ଼ୁ ଅଟୋ ବନ୍ଧୁକର ଆବାଜ ଶୁଭୁ ନଥାଏ ।

ରବର୍ଟ ଜର୍ଡ଼ାନ୍ ପଚାରିଲେ ‘ତୁ ଉପର ପଟେ କିଛି ଦେଖୁଛୁ କି ? ପାହାଡ଼ ଉପରେ ?’ ତାହାଠାରୁ ନାସ୍ତି ଉତ୍ତର ଶୁଣି ସେ ପୁଣି ରାସ୍ତାର ବାଙ୍କ ଉପରେ ନଜର ଦେଲେ । ସେ ଜାଣିଥିଲେ ଯେ ଠିକ୍ ତାହାର ତଳକୁ ଯେଉଁ ଶାଖ କାନ୍ଥଟା ଅଛି ତାହା

ଧୂଆଁରୋହ କିନ୍ତୁ ତା ତଳକୁ ଅଳ୍ପ ଗଡ଼ାଣି । ହୁଏତ କୌଣସି ଲୋକ ଉପର ଆଡ଼ୁ ବୁଲିପଡ଼ି ଆସିଥିବ ।

ହଠାତ୍ ଅବାସ୍ତବ ପରିସ୍ଥିତି ବାସ୍ତବ ହୋଇ ଉଠିଲା । ସତେ ଯେମିତି କୌଣସି ଫଟୋ ଉଠାଇବା ଯନ୍ତ୍ରର ନଳୀ ଭିତରେ ସେ ଏହି ଦୃଶ୍ୟ ଦେଖୁଅଛନ୍ତି । ରାସ୍ତାର ବାଙ୍କ ଆଡ଼ୁ ଅସୁଆଏ ଖଣ୍ଡିଏ ଧୂସର ବର୍ଣ୍ଣର ଅଳ୍ପ ଉଚ୍ଚ ଟ୍ୟାଙ୍କ୍ ଗାଡ଼ିର ମୁନିଆ ମୁହଁ । ସେଥିରେ ଆଗକୁ ବଢ଼ି ରହିଛି ତୋପର ନଳୀ । ନଳୀ ଉପରେ ଛନ୍ଦ । ସେ ସେହି ଟ୍ୟାଙ୍କ୍‌କୁ ଲକ୍ଷ୍ୟ କରି ଗୁଳି ମାରିଲେ । ଗୁଳି ଇସ୍ପାତରେ ବାଜି ଛିଟିକିଗଲା । ଶାନ ଟ୍ୟାଙ୍କ୍ ଖଣ୍ଡିକ ପାହାଡ଼ କାନ୍ଥି ପଛରେ ଆଶ୍ରୟ ନେବାକୁ ପଛକୁ ହଟିଗଲା । ରାସ୍ତା ବାଙ୍କକୁ ଦୃଷ୍ଟି ରଖି ଜର୍ଡାନ୍ ତୋପର ନଳୀ ପୁଣି ଦେଖି ପାରିଲେ । ତା ପରେ ତୋପର ଛନ୍ଦ ଦେଖିଲେ । ଛନ୍ଦଟା ବୁଲିଯିବାରୁ ତୋପ ରାସ୍ତା ଆଡ଼କୁ ମୁହଁ କଲା ।

ଅଗଷ୍ଟିନ୍ କହିଲା 'ଦେଖିଲ ଇଂରେଜ, ଠିକ୍ ମୂଷାଟାଏ ଗାତରୁ ବାହାରିଲା ପରି ଦେଖାଯାଉଛି ।'

ରବର୍ଟ ଜର୍ଡାନ୍ କହିଲେ 'ତାହାର ଭରସା ହେଉ ନାହିଁ ।'

'ଏହି ବଡ଼ ପୋକଟା ସଙ୍ଗେ ପାବ୍‌ଲୋ ଲଢ଼ୁଥିଲା । ଆଉ ଥରେ ଗୁଳି ମାର, ଇଂରେଜ !'

'ନା, ମୁଁ ତାକୁ ଜଖମ କରିପାରିବି ନାହିଁ । ଆମେ କେଉଁଠାରେ ଅଛୁ, ମୁଁ ତାକୁ ସେ କଥାର ସନ୍ଧାନ ଦେବାକୁ ପ୍ରସ୍ତୁତ ନୁହେଁ ।'

ଟ୍ୟାଙ୍କ୍ ରାସ୍ତା ଉପରେ ଗୁଳିବର୍ଷଣ କରିବାକୁ ଲାଗିଲା । ଗୁଳି ସବୁ ରାସ୍ତାରେ ଗାତ ଖୋଳି ଛିତରେଇ ହୋଇଗଲା ପରେ ତୋପରୁ ଗୋଳା ସବୁ ପୋଲର ଲୁହାରେ ଠୋ ଠାହୋଇ ବାଜିଲା । ଏହି ମେସିନ୍‌ଗନ୍‌ର ଆବାଜ ସେମାନେ ରାସ୍ତାର ତଳ ମୁଣ୍ଡରୁ ଶୁଣିଥିଲେ ।

"ଇଂରେଜ, ଇଏ କଅଣ ସେହି ପ୍ରସିଦ୍ଧ ଟ୍ୟାଙ୍କ୍ ? ଅଗଷ୍ଟିନ୍ ପଚାରିଲା ।

"ଏଟା ଶାନ ଟ୍ୟାଙ୍କ୍ ।"

"ମୋର ବୋତଲେ ଖଣ୍ଡେ ପେଟ୍ରୋଲ ଥାଆନ୍ତା କି ମୁଁ ଉପରକୁ ଚଢ଼ିଯାଇ ସେଥିରେ ନିଆଁ ଲଗାଇ ଦିଅନ୍ତି । ଆଚ୍ଛା ଇଂରେଜ, ସେ ଆମର କଅଣ କରିବ ?"

"କିଛିକ୍ଷଣ ପରେ ସେ ଆଉଥରେ ଦେଖିବାକୁ ଆସିବ ।"

ଅଗଷ୍ଟିନ୍ କହିଲା "ଆଚ୍ଛା, ଏହିଗୁଡ଼ାକୁ କଅଣ ଲୋକେ ଭୟ କରିଆନ୍ତି । ଦେଖିଲଣି ଇଂରେଜ, ଯେ ସନ୍ତ୍ରୀମାନଙ୍କୁ ଆଡ଼ଅରେ ହତ୍ୟା କରୁଛି ।"

ରବର୍ଟ ଜର୍ଡାନ୍ କହିଲେ "ତାହାର ଦୋଷ କଅଣ ? ଆଉ ତ କାହାକୁ ସେ ମାରିବା-ପାଇଁ ପାଉନାହିଁ ।"

ରବର୍ଟ ଜର୍ଡାନ୍ ଚିନ୍ତା କଲେ । "ଟ୍ୟାଙ୍କ୍ ଗୁଳିକକୁ ବଦ୍ରୂପ କରିବା ଉଚିତ ନୁହେ । ଧର, ତୁମେ ନିଜେ ଯଦି ତା' ଅବସ୍ଥାରେ ପଡ଼ିଆଆନ୍ତ, ନିଜ ଦେଶରେ ଥାଆନ୍ତ ଏବଂ ପ୍ରତିପକ୍ଷ ପ୍ରଧାନ ରସ୍ତା ଉପରେ ଗୁଳି ଚଳାଇ ତୁମକୁ ଅଟକାଇ ରଖନ୍ତେ । ଏହାପରେ ପୋଲଟାଏ ଧ୍ୱଂସ ହୋଇ ଯାଆନ୍ତା ତୁମେ କଅଣ ଭାବନ୍ତ ନାହିଁ କି ଆଗକୁ ରାସ୍ତାରେ ବିସ୍ଫୋରକ ଖଞ୍ଜା ଯାଇଅଛି ଅଥବା ଏଟା ଗୋଟାଏ ଫାନ୍ଦ । ନିଶ୍ଚୟ ଭାବନ୍ତ । ସେ ଠିକ୍ କରିଅଛି । ସେ ଅନ୍ୟ କିଛିକୁ ଅପେକ୍ଷା କରୁଅଛି । ସେ ଶତ୍ରୁ ସଙ୍ଗେ ସଙ୍ଘର୍ଷ କରୁଅଛି । ଶତ୍ରୁ ବୋଇଲେ ଆମେ ଦୁଇଜଣ କିନ୍ତୁ ଏ କଥା ସେ କେମିତି ଜାଣିବ ? ସେହି ସାନ ସର୍ବନାଶିଆ ଉପରେ ନଜର ରଖିଥା ।"

ସାନ ଟ୍ୟାଙ୍କ୍ ଖଣ୍ଡିକ ରାସ୍ତା ମୋଡ଼ରୁ ଆଉ ଟିକେ ମୁହଁ ବଢ଼ାଇଲା । ଠିକ୍ ଏହିକବେଳେ ପବ୍‌ଲୋ ଖାଡର କଡ଼ ଦେଇ ହାତ ଗୋଡ଼ରେ ମାଟି ଧରି ଉପରକୁ ଉଠିବା ଅଗଷ୍ଟିନ୍ ଦେଖି ପାରିଲା । ତାହାର ମୁହଁରୁ ଝାଳ ବହୁଥାଏ ।

ସେ କହିଲା "ସେହି ବଦମାସଟା ଆସୁଛି ।"

"କିଏ ?"

"ପାବ୍‌ଲୋ ।"

ରବର୍ଟ ଜର୍ଡାନ୍ ପାବ୍‌ଲୋକୁ ଦେଖିଲେ । ଏହାପରେ ଟ୍ୟାଙ୍କ୍‌ର ଯେଉଁ ଜାଗାଟି ଖୋଲାଥିବାର ତାଙ୍କୁ ଜଣା ସେହି ସ୍ଥାନକୁ ଲକ୍ଷ୍ୟ କରି ସେ ଟ୍ୟାଙ୍କ୍‌ର ଚାକ୍ତଣି ଉପରକୁ ଗୁଳି ଚଳାଇଲେ । ସାନ ଟ୍ୟାଙ୍କଟି ଗର୍ଜନ କରି ପୁଣି ପଛକୁ ହଟି ଅଦୃଶ୍ୟ ହୋଇଗଲା । ରବର୍ଟ ଜର୍ଡାନ୍ ସ୍ୱୟଂକ୍ରିୟ ରାଇଫଲ ଉଠାଇ ନେଇ ତିପଦକୁ ନଳୀ ମୁଣ୍ଡରେ ଲଗାଇ ନେଲେ ଏବଂ ଉତପ୍ତ ରାଇଫଲକୁ କାନ୍ଧ ଉପରକୁ ଉଠାଇ ନେଲେ । ନଳୀଟା ଏତେ ତାତି ଯାଇଥିଲା ଯେ ତାଙ୍କ କାନ୍ଧରେ ଚେଙ୍କା ଲାଗିଗଲା । ସେ ଏହାକୁ ନିଜର ପଛପଟକୁ ହଟାଇ ଦେଇ ହାତ ପାପୁଲିରେ ଧଇଲେ ।

"ମୋ ରାଇଫଲ ଏବଂ ଗୁଳିର ବାକ୍ସ ନେଇ ମୋ ପାଖକୁ ଧାଇଁଆ ।"

ରବର୍ଟ ଜର୍ଡାନ ବଣେ ବଣେ ପାହାଡ଼ ଉପରକୁ ଦଉଡ଼ିଗଲେ । ତାଙ୍କ ପଛରେ ଅଗଷ୍ଟିନ୍ ଥିଲା ଏବଂ ତା ପଛକୁ ପାବ୍ଲୋ ।

ପାହାଡ଼ ଆଡ଼େ ବଡ଼ପାଟିରେ ଜର୍ଡାନ ଡାକଲେ "ପିଲର୍, ଶୀଘ୍ର ଆ ।"

ତଖ ଉଠାଣିରେ ଘନନଣଘାକ ଯଥାଶକ୍ତି ଦ୍ରୁତ ଯିବାକୁ ଲଗିଲେ । ସେ ସ୍ଥାନରେ ଦଉଡ଼ିବା ସମ୍ଭବ ନଥିଲା । ପାବ୍ଲୋ ପାଖରେ ସେହି ହାଲୁକା ଅଶ୍ୱାରୋହୀ ରାଇଫଲ ଖଣ୍ଡିକ ଥିବାରୁ ସେ ଅପେକ୍ଷାକୃତ ଦ୍ରୁତଗତରେ ନିକଟେଇ ଆସିଲା ।

ଶୁଷ୍କ କଣ୍ଠରେ ଅଗଷ୍ଟିନ୍ ପାବ୍ଲୋକୁ ପଚାରିଲା 'ତୋ ଲୋକବାକ ?'

ପାବ୍ଲୋ କହିଲା 'ସମସ୍ତେ ମୃତ ।' ସେ ନିଶ୍ୱାସ ନେଇ ପାରୁ ନଥାଏ ।

ଅଗଷ୍ଟିନ୍ ମୁହଁ ବୁଲାଇ ତାକୁ ଦେଖିଲା ।

ଧଇଁସଇଁ ହୋଇ ପାବ୍ଲୋ କହିଲା, 'ଇଂରେଜ, ଆମର ବହୁତ ଘୋଡ଼ା ଅଛି ।'

ରବର୍ଟ ଜର୍ଡାନ କହିଲେ 'ସାବାସ୍ । ତୁ କଅଣ ହାବୋଡ଼ିଲୁ ?' ସେ ମନେ ମନେ କହିଲେ 'ବାଳୁଙ୍ଗା ଖୁଣୀ ।'

ପାବ୍ଲୋ ଜବାବ ଦେଲା 'ସବୁ କରୁ । ପିଲର୍ କଅଣ ହେଲା ?' ସେ ବଡ଼ ଝାଣି ଝାଣି ନିଶ୍ୱାସ ମାରୁଥାଏ ।

'ପିଲର୍ର ଫର୍ଣ୍ଣାଣ୍ଡୋ ଓ ସେ ଭାଇ ମଧ୍ୟରୁ—'

'ଏଲାଡ଼ିଓ' ଅଗଷ୍ଟିନ୍ କହିଲା ।

'ଆଉ ତୁମର ?' ପାବ୍ଲୋ ପଚାରିଲା ।

'ମୁଁ ଏନ୍ସେଲ୍ମୋକୁ ହରାଇ ଅଛି ।'

ପାବ୍ଲୋ କହିଲା 'ବର୍ତ୍ତମାନ ବହୁତ ଘୋଡ଼ା ଅଛି । ମଣିଷ ଛଡ଼ା ମାଲମତା ମଧ୍ୟ ବହି ପାରିବେ ।'

ଅଗଷ୍ଟିନ୍ ଓଠ କାମୋଡ଼ି ରବର୍ଟ ଜର୍ଡାନଙ୍କୁ ଚାହିଁଲା ଏବଂ ମୁଣ୍ଡ ହଲାଇଲା । ତେଣେ ବହୁତ ନିମ୍ନରେ ସେମାନେ ଟ୍ୟାଙ୍କ୍ ରାସ୍ତା ଓ ପୋଲ ଉପରେ ତୋପ ଦାଗିବା ଆବାଜ ଗଛ ଉହାଡ଼ରୁ ଶୁଣି ପାରିଲେ ।

ରବର୍ଟ ଜର୍ଡାନ ପାବ୍‌ଲୋକୁ ପଚାରିଲେ 'ସେଠାରେ କଅଣ ଘଟିଲା ?' ପାବ୍‌ଲୋର ମୁହଁ ଚାହିଁବାକୁ ତାଙ୍କର ମନ ବଳିଲା ନାହିଁ ।

ପାବ୍‌ଲୋ ଜବାବ ଦେଲା 'ସେଠା ଅବସ୍ଥା ଯାହାଥିଲା ସେଥିରେ ମୁଁ ସ୍ଥାନ ଛାଡ଼ି ଆସି ପାରୁ ନଥିଲି । ରାସ୍ତାର ତଳମୁଣ୍ଡ ମୋଡ଼ ପାଖରେ ଆମେ ଘୋଡ଼ାରେ ପଳେଇ ଯାଇଥିଲୁ । ଶେଷକୁ ଟ୍ୟାଙ୍କ୍ ଗଲା ଆଉ କିଛି ଖୋଜିବାକୁ ମୁଁ ଚାଲି ଆସିଲି ।'

ଅଗଷ୍ଟିନ୍ ରୁକ୍ଷଭାବରେ ପଚାରିଲା ତୁ ତେବେ ମୋଡ଼ ପାଖରେ କଅଣ କରୁଥିଲୁ ?'

ପାବ୍‌ଲୋ କିଛି କହିବାକୁ ଯାଉଥିଲା, କିନ୍ତୁ କଅଣ ଭାବି ଚୁପ୍ ରହିଗଲା ।

ଅଗଷ୍ଟିନ୍ ପଚାରିଲା 'ତୁ କଅଣ ସମସ୍ତଙ୍କୁ ଗୁଳି କରିଅଛୁ ?' ରବର୍ଟ ଜର୍ଡାନ ଭାବିଲେ କାହିଁକି ଏତେ କଥା ଫଟେଇ ହେଉଛି । ତାହାର କାମ ଏହା ନୁହେ । ସେମାନେ ଆଗୋଟାଚ କାମ କରି ଅଛନ୍ତି । ଏଟା ହେଉଛି ଜାତିଗତ ବିବାଦ । ଏହା ଉପରେ ନୀତିଗତ ବିଚାରଟା ଠିକ୍ ହେବ ନାହିଁ । ଜଣେ ଆତତାୟୀ ପାଖରୁ କଅଣ ଅବା ଆଶା କରାଯାଇ ପାରେ ? ଆମେ ତ ନରଘାତୀ ସହିତ କାମ କରୁଅଛୁ ! ମୁହଁ ବନ୍ଦ ରଖିବା ଉଚିତ । ତା ସମ୍ବନ୍ଧରେ ଆମେ ଆଗରୁ ବହୁତ କଥା ଜାଣୁ । କିଛି ନୂଆ କଥା ନାହିଁ । କିନ୍ତୁ ବଜାତ୍ ବାଳୁଙ୍ଗା, ବେଧୂଆ ।

ଧାଇଁବା ଓ ଚଢ଼ିବା ଯୋଗୁଁ ତାଙ୍କ ଛାତିରେ ବଡ଼ ବ୍ୟଥା ଜାତ ହୋଇଥାଏ ସତେ ଯେମିତି ଫାଟିଯିବ । ସେ ବର୍ତ୍ତମାନ ବଣ ଭିତରେ ଘୋଡ଼ା ସବୁ ଦେଖି ପାରିଲେ ।

ଅଗଷ୍ଟିନ୍ କହୁଥାଏ 'କହୁନାହୁଁ କାହିଁକି ଯେ ତୁ ସମସ୍ତଙ୍କୁ ମାରି ପକାଇ ଅଛୁ ?'

ପାବ୍‌ଲୋ କହିଲା 'ତୁ ଚୁପ୍‌କର । ମୁଁ ଆଜି ବହୁତ ଲଢ଼େଇ କରିଛି ଏବଂ ଭଲଭାବରେ କରିଅଛି । ଇଂରେଜକୁ ପଚାର ।'

ରବର୍ଟ ଜର୍ଡାନ କହିଲେ 'ବର୍ତ୍ତମାନ ଆମକୁ ଏଠାରୁ ବାଟ ଦେଖାଇ ନେଇ ଚାଲ କାରଣ ଏହି ନିର୍ଘଣ୍ଟ ତୁ କରିଥିଲୁ ।'

ପାବ୍‌ଲୋ ଜବାବ ଦେଲା 'ମୋର ଯୋଜନା ଖୁବ ଭଲ । ଅଳ୍ପ ଅଳ୍ପ ଦୈବକୃପାରେ ଆମ୍ଭେମାନେ ଉଦ୍ଧାର ହେବୁ ।' ବର୍ତ୍ତମାନ ସେ ଅପେକ୍ଷାକୃତ ଧୀର ଭାବରେ ନିଶ୍ୱାସ ନେଉଥିଲା ।

ଅଗଷ୍ଟିନ୍ କହିଲା 'ତୁ ଆଉ ଆମ ଭିତରୁ କାହାକୁ ହତ୍ୟା କରିପାରିବୁ ନାହିଁ । ମୁଁ ବର୍ତ୍ତମାନ ତୋତେ ଶେଷ କରିଦେବି ।'

ପାବ୍‌ଲୋ କହିଲା 'ଚୁପ୍‌କର । ମୁଁ ତୋର ଏବଂ ଦଳର ଅନ୍ୟ ସମସ୍ତଙ୍କର ସ୍ୱାର୍ଥ ପ୍ରତି ନଜର ଦେଇଥିଲି । ବର୍ତ୍ତମାନ ଯୁଦ୍ଧର ବେଳ । ଏତେବେଳେ ଲୋକ ଯାହା ଚାହିଁବ ତାହା କରି ପାରିବ ନାହିଁ ।'

ଅଗଷ୍ଟିନ୍ କହିଲା 'କାପ୍ତାନ, ସବୁ ବାହାଦୂରି ତୁମର ପ୍ରାପ୍ୟ ।'

ରବର୍ଟ ଜର୍ଡାନ ପାବ୍‌ଲୋକୁ ପଚାରିଲେ 'ତଳଆଡ଼େ ତୁ କଅଣ ଦେଖିବାକୁ ପାଇଲୁ ମୋତେ କହ ।'

ପାବ୍‌ଲୋର ନିଶ୍ୱାସପ୍ରଶ୍ୱାସ ନରମ ହୋଇ ଆସିଥିଲେ ସୁଦ୍ଧା ଗୋଡ଼ର ବ୍ୟଥା ବେଶୀ ଥିଲା । ତା' ମୁଣ୍ଡ, କାନ୍ଧ ଓ ଗୋଡ଼ ଝାଳରେ ଭିଜି ଯାଇଥିଲା । ତଥାପି ସେ ବେଦମ ନହୋଇ କଥା କହି ପାରୁଥିଲା । ସେ ସନ୍ତର୍ପଣରେ ରବର୍ଟ ଜର୍ଡାନଙ୍କୁ ଚାହିଁ ଠଉରେଇ ନେଲା ତାଙ୍କର ମତିଗତି ଅବୈରିକ ନୁହେଁ । ତା ପରେ ମୃଦୁ ହସି ଜବାବ ଦେଲା 'ଆମେ ସବୁପ୍ରକାର ବାଧାର ସମ୍ମୁଖୀନ ହୋଇଥିଲୁ । ପ୍ରଥମେ ଆମେ ଘାଟି ଦଖଲ କରିନେଲୁ । ଏହାପରେ ଢ଼ୁପୁରାଢ଼ପୁର ଦୁଇଜଣ ଲୋକ ମୋଟର ସାଇକଲରେ ଆସିଥିଲେ । ତା'ପରେ ଆସିଲା ଆମ୍ବୁଲାନ୍‌ସ ଗାଡ଼ି । ତା ପଛକୁ ଖଣ୍ଡିଏ ଟ୍ରକ । ଶେଷକୁ ତୁମେ ପୋଲ ଧ୍ୱଂସ କରିବାର ପୂର୍ବ ମୁହୂର୍ତ୍ତରେ ଆସିଲା ଖଣ୍ଡେ ଟ୍ୟାଙ୍କ ।'

'ତା ପରେ—'

'ଟ୍ୟାଙ୍କ୍ ଆମକୁ ଘାଏଲ କରି ପାରି ନଥିଲା କିନ୍ତୁ ସେ ରାସ୍ତା ଜଗିବାରୁ ଆମେ ସେ ସ୍ଥାନ ଛାଡ଼ି ଆସି ପାରିଲୁ ନାହିଁ । ଶେଷକୁ ଟ୍ୟାଙ୍କ୍ ଚାଲିଗଲାରୁ ମୁଁ ଚାଲିଆସିଲି ।'

ଅଗଷ୍ଟିନ୍ ସେତେବେଳେ ମଧ୍ୟ କଳି ଲଗାଇବା ମତଲବରେ ପଚାରିଲା 'ତୋ ଲୋକମାନେ ?'

ପାବ୍‌ଲୋ ଅଗଷ୍ଟିନ୍‌କୁ ତରଛି ଚାହିଁଲା । ତାହାର ମୁହଁଟାରେ ଭଲ ଯୁଦ୍ଧ କରିଥିବା ସୈନିକର ବୀରତ୍ୱ ପରିସ୍ଫୁଟ । କହିଲା 'ତୁ ଚୁପ୍‌କର । ସେମାନେ ଆମ ଦଳର ଲୋକ ନଥିଲେ ।'

ବର୍ତ୍ତମାନ ଦେବଦାରୁ ବଣ ଭିତରେ ଘୋଡ଼ାମାନେ ବନ୍ଧା ରହିଥିବା ସେମାନେ ଦେଖି ପାରିଲେ । ଗଛ ଫାଙ୍କ ଦେଇ ଘୋଡ଼ାଙ୍କ ଉପରେ ଖରା ପଡ଼ୁଥାଏ

ବୋଲି ଘୋଡ଼ାମାନେ ମୁଣ୍ଡ ଏପାଖ ସେପାଖ କରୁଥାନ୍ତି ଏବଂ ଗୋଡ଼ କଚାଡ଼ି ତାଆଁସି ହୁରୁଡ଼ାଉ ଥାଆନ୍ତି । ରବର୍ଟ ଜର୍ଡାନ ମେରିଆକୁ ଦେଖି ପକାଇଲେ । ତା'ପରେ ଦୁହେଁ ଦୁହିଙ୍କ ବାହୁବନ୍ଧନରେ । ସ୍ୱୟଂକ୍ରିୟ ରାଇଫଲ ଜର୍ଡାନଙ୍କ କଙ୍କାଳ ପାଖରେ ଝୁଲି ଭୂଷି ହୋଇ ଯାଉଥାଏ । ମେରିଆ ଆବେଗଭରେ କହୁଥାଏ "ତୁମେ, ତୁମେ, ତୁମେ ରବର୍ଟୋ ।"

"ହଁ, ପ୍ରିୟେ, ହଁ ମୋ ଧନ, ମୋ ପ୍ରାଣ । ବର୍ତ୍ତମାନ ଆମେ ଯିବା ।"

"ତୁମେ କଅଣ ସତକୁ ସତ ମୋ ପାଖରେ ଅଛ ?"

"ହଁ, ହଁ, ସତକୁ ସତ, ନଗ୍ନ ନିର୍ଭୁଲ ସତ୍ୟ ।"

ଯୁଦ୍ଧ ଲାଗି ନଥିଲେ ସେ କେବେହେଲେ ନାରୀର ଅସ୍ତିତ୍ୱ ନିଜ ଜୀବନରେ ଅନୁଭବ କରି ପାରି ନଥାନ୍ତେ କିମ୍ବା ପୂର୍ଣ୍ଣ ପ୍ରାଣରେ ତାହା ଆସ୍ୱାଦନ କରି ନଥାନ୍ତେ । ନାରୀର କଠିନ ବର୍ତ୍ତୁଳାକାର ସ୍ତନ ମର୍ଦ୍ଦନର ସୁଖ ଯେ କେତେ ବଡ଼ ତାହା ତାଙ୍କର ଧାରଣାକୁ ଆସି ନଥାନ୍ତା । ସେ ଭାବିଲେ ଏହି ଆନନ୍ଦ ପ୍ରକୃତ ଆନନ୍ଦ । ଏଥିରେ ନିହିତ ଅଛି ମଙ୍ଗଳ । ପୂର୍ବେ ଏକଥା ସେ ବିଶ୍ୱାସ କରି ପାରନ୍ତେ ନାହିଁ । ସେ ମେରିଆକୁ ଖୁବ୍ ଜୋରରେ କୁଣ୍ଢାଇ ଧରି ରହିଲେ । ତା ମୁହଁକୁ ନ ଅନାଇ ପିଠି ପିଟି ଜଙ୍ଘ ଆପୁଣ୍ଡିଲେ । ତାପରେ ପରମ ପ୍ରେମରେ କହିଲେ "ଯା, ବର୍ତ୍ତମାନ ଗୋଟାଏ ଘୋଡ଼ାରେ ଚଢ଼ିଯା ତ ।'

ରବର୍ଟ ଜର୍ଡାନ୍ ସ୍ୱୟଂକ୍ରିୟ ରାଇଫଲ୍‌ଟା ଅଗଷ୍ଟିନ୍ ହାତକୁ ଦେଇଥିଲେ । ଦୁହେଁ ମିଶି ଘୋଡ଼ାର ପଘା ଫିଟାଇଲେ । ସେ ନିଜ ରାଇଫଲ୍ ପିଠିରେ ଝୁଲାଇ ପକେଟରୁ ବୋମାମାନ କାଢ଼ି ଘୋଡ଼ା ଜିନ୍ ତଳ ଥଳିରେ ପୂରାଇଲେ । ସେ ଗୋଟାଏ ଖାଲି ଖୋଳି ଆଉ ଗୋଟାକ ଭିତରେ ଭରଣ କଲେ ଏବଂ ତାହାକୁ ଜିନ୍‌ର ପଛପଟେ ବାନ୍ଧି ଦେଲେ । ଏହାପରେ ଝୁଠାଣି ଉଠି ଧାଇଁ ଧାଇଁ ପିଲାର୍ ଆସି ପହଞ୍ଚିଲା । ତା' ମୁହଁରୁ କଥା ବାହାରୁ ନଥାଏ ।

ଏହାପରେ ପାବ୍‌ଲୋ ନିଜ ହାତରେ ଥିବା ଦୁଇଟି ବୋମା ଜିନ୍‌ଥଳିରେ ପୂରାଇ ଠିଆ ହୋଇ ପିଲାର୍‌କୁ ପଚାରିଲା "କଅଣ ?" ସେ କେବଳ ମୁଣ୍ଡ ହଲାଇଲା । ଶେଷକୁ ସମସ୍ତେ ଘୋଡ଼ା ଚଢ଼ିଲେ ।

ରବର୍ଟ ଜର୍ଡାନ୍ ଚଢ଼ିଲେ ସେ ଧୂସର ବଡ଼ ଘୋଡ଼ା ଯାହାକୁ ସେ ପ୍ରଥମେ ଦିନକ ଆଗରୁ ଦେଖିଥିଲେ । ସେ ବୁଝିଲେ ଯେ ଘୋଡ଼ାଟି ଖୁବ୍ ଦୌଡ଼ିଲାବାଲା । ସେ ଉଞ୍ଚହିଡ଼ଲା ଜୋତା ପିନ୍ଧିଥାନ୍ତି । ଜିନ୍‌ର ରେକାବ ଟିକିଏ ସାନ ଥିବାରୁ ସେ

ଜାଣିଲେ । ସାନ ମେସିନଗନ୍ ସେ କାନ୍ଧରେ ଝୁଲାଇ ଥିଲେ । ପକେଟ ତାଙ୍କର ଗୁଳିରେ ପୂର୍ଣ୍ଣ ଏବଂ ଯେଉଁସବୁ ଗୁଳି ଫାଏର ହୋଇଯାଇଥିଲା ତାକୁ କାଢ଼ି ତା ଜାଗାରେ ନୂଆ ଗୁଳି ପୂରାଇ ଦେଲେ । ଘୋଡ଼ାର ଲଗାମ ଗୋଟିଏ ବାହୁରେ ଧରିଥାନ୍ତି । ପିଲାର୍ ମଧ୍ୟ ଗୋଟିଏ ଘୋଡ଼ା ଚଢ଼ିଲା । ତାହାର ହରିଣ ଚମ କିନ୍ ଉପରେ ଏକପ୍ରକାର ବିଚିତ୍ର ଆସନ ଅଣ୍ଟା ଯାଇଥାଏ ।

ପ୍ରିମିଟିଭୋ କହିଲା "ତୋତେ ଈଶ୍ୱରଙ୍କ ରାଣ । ତୋ ବୋଝଟା ଖସାଇପକା ନଚେତ୍ ତୁ ପଡ଼ିଯିବୁ । ଏତେ ବୋଝ ଘୋଡ଼ା ନେଇ ଯାଇ ପାରିବ ନାହିଁ ।"

ପିଲାର୍ କହିଲା "ତୁ ଚୁପକର । ଏହା ନେଇ ଆମେ ନୂତନ ଜୀବନ ଆରମ୍ଭ କରିବା ।"

ଅନ୍ୟ କସରା ବଡ଼ ଘୋଡ଼ା ଉପରେ ପାବ୍‌ଲୋ ବସିଥିଲା । ସେ କହିଲା "ଆଲୋ ରାଣ୍ଡି, ଏମିତଭାବରେ ତୁ ଘୋଡ଼ା ଚଢ଼ି ଯାଇପାରିବୁ ନାହିଁ ।"

ପିଲାର୍ କହିଲା "ଦୁଧବିକାଳୀ ପରି ମୁଁ ଠିକ ଯିବି । କେଉଁବାଟେ ଯିବାରେ ମରଦ ?"

"ସଳଖେ ତଳଆଡ଼କୁ । ରାସ୍ତା ଅତିକ୍ରମ କରି ଆରପଟ ଗଡ଼ାଣି ଦେଇ ବଣ ଭିତରକୁ ଯିବା । ଯେଉଁଠାରେ ଗଡ଼ାଣି ସଙ୍କୀର୍ଣ୍ଣ ସେଇଠାରୁ ବଣରେ ପଶିବାକୁ ହେବ ।"

ଅଗଷ୍ଟିନ୍ ନିଜ ଘୋଡ଼ାକୁ ନିଜର କାନଭାସ ଜୋତାରେ ଆଘାତ କରି ତା ପାଖକୁ ଆସି କହିଲା "ରାସ୍ତା ଟପିବାକୁ ହେବ ?" ଘୋଡ଼ାଟା ପାବ୍‌ଲୋ ନୂଆ ଆଣିଥିଲା । ସେ ବୋଲ ମାନୁ ନଥାଏ ।

ପାବ୍‌ଲୋ କହିଲା "ହଁ ରେ ବାପୁଡ଼ା ।" ସେହି ହେଉଛି ଏକମାତ୍ର ରାସ୍ତା । ସେ ତା ହାତକୁ ଦଉଡ଼ିରୁ ଖଣ୍ଡେ ବଢ଼ାଇ ଦେଲା । ପ୍ରିମିଟିଭୋ ଓ ଜିପ୍‌ସି ଅନ୍ୟ ସବୁ ଧରିଥିଲେ ।

ପାବ୍‌ଲୋ କହିଲା "ଇଂରେଜ, ତୁମେ ସମସ୍ତଙ୍କ ପଛରେ ଆସିପାର । ଆମେ ଖୁବ ଉପର ମୁଣ୍ଡରେ ରାସ୍ତା ଟପିବା ଏଣୁ ସେହି ଟ୍ୟାଙ୍କର ଗୁଳିକ୍ଷେପ ସୀମାରୁ ବାହାରେ ରହିବା କିନ୍ତୁ ଆମେ ଜଣ ଜଣ ହୋଇ ଯିବା ଏବଂ ଅନେକ ବାଟ ଗଲାପରେ ପୁଣି ସେହି ସଙ୍କୀର୍ଣ୍ଣ ସ୍ଥାନରେ ଏକତ୍ରିତ ହେବା ।"

ରବର୍ଟ ଜର୍ଡାନ୍ କହିଲେ 'ହଉ ତେବେ ।'

ସେମାନେ ବଣେ ବଣେ ରାସ୍ତାର କଡ଼ଯାଏ ଗଲେ । ରବର୍ଟ ଜର୍ଡାନ ମେରଆର ଠିକ ପଛରେ ଥିଲେ । ସେ ଗଛଯୋଗୁଁ ତା ପଛକୁ ଲାଗି ରହିପାରି ନଥିଲେ । ସେ ନିଜ ଜଙ୍ଘର ପେଶି ଘୋଡ଼ା ଦେହରେ ଚପି ତାକୁ ଆଦର କରି ଦୃଢ଼ଭାବରେ ଲଗାମ ଧରିଥାନ୍ତି । ସେମାନେ ଦ୍ରୁତ ଗଡ଼ାଣିରେ ଖସି ଘୋଡ଼ାକୁ ତାରିଫ କରୁଥାନ୍ତି ।

ସେ ମେରିଆକୁ କହିଲେ 'ସେମାନେ ରାସ୍ତା ଟପିଲାବେଳେ ତୁ ୨ୟ ସ୍ଥାନ ଅଧିକାର କରିଯିବୁ । ପ୍ରଥମରେ ଯିବା ଖରାପ ନହେଲେ ମଧ୍ୟ ଭଲ ନୁହେଁ । ସେମାନେ ସବୁବେଳେ ଅଗ୍ରବର୍ତ୍ତୀକୁ ଲକ୍ଷ୍ୟ କରିଥାନ୍ତି ।'

'ଆଉ ତୁମେ—'

'ମୁଁ ହଠାତ୍ ବାହାରି ପଡ଼ିବି । ଏଥିରେ କିଛି ବିପଦ ନାହିଁ । କେବଳ ସୀମା ପାଖଟାରେ ଯେତିକି ବିପଦ ।"

ପାବ୍‌ଲୋ ନିଜ କାନ୍ଧରେ ସ୍ୱୟଂକ୍ରିୟ ରାଇଫଲ ଝୁଲାଇ ଘୋଡ଼ା ଚଲାଇ ଥାଏ । ରବର୍ଟ ଜର୍ଡାନ୍ ତାହାର ଗୋଲକାର ମୁଣ୍ଡ ଆଡ଼କୁ ଚାହିଁଥାନ୍ତି । ସେ ପିଲାର୍‌ର ଲମ୍ବା ମୁଣ୍ଡ, ଚଉଡ଼ା କାନ୍ଧ ଏବଂ ଜଙ୍ଘ ଉପରକୁ ଉଠିଥିବା ଆଣ୍ଠୁକୁ ଦେଖୁଥାଏ କାରଣ ବୋକସ୍କୁ ସେ ଗୋଇଠିରେ ଚେକି ରଖିଥାଏ । ପିଲାର୍ ମଧ୍ୟ ତାଙ୍କୁ ଅନାଇ ମୁଣ୍ଡ ହଲାଇଲା ।

ରବର୍ଟ ଜର୍ଡାନ ମେରିଆକୁ କହିଲେ 'ରାସ୍ତା ଟପିବା ଆଗରୁ ତୁ ପିଲାର୍‌ର ଆଗକୁ ଚାଲିଯିବୁ ।'

ଏହାପରେ କ୍ରମେ ଅପଗଞ୍ଚ ବଣ ଭିତରୁ ସେ ପିଚୁଦିଆ ରାସ୍ତା ଦେଖିପାରିଲେ । ରାସ୍ତାର ଅନ୍ୟ ପାଖରେ ପାହାଡ଼ର ସବୁଜ ଗଡ଼ାଣି । ସେ ବୁଝିପାରିଲେ ଯେ ସେମାନେ ସାନ ନାଳ ପୋଲଟି ପାଖରେ ପହଞ୍ଚି ଅଛନ୍ତି । ଏହିଠାରୁ ରାସ୍ତାଟି ପୋଲଆଡ଼କୁ ଢାଲୁ ହୋଇ ଯାଇଅଛି । ପ୍ରାୟ ପୋଲଠାରୁ ୮ ଶହ ଗଜ ଦୂରରେ ସେମାନେ ଥିଲେ ବୋଲି ଜଣାପଡ଼ିଲା । ସେହି ସାନ ଟ୍ୟାଙ୍କ୍‌ରେ ଖଞ୍ଜାଥିବା ଫିଆଟ ତୋପର ଗୁଳିସ୍ରୋତ ପକ୍ଷରେ ଏହି ଦୂରତ୍ୱ ବେଶୀ ନୁହେଁ । ଅବଶ୍ୟ ସେମାନେ ଯଦି ପୋଲ ଉପରକୁ ଆସିଥାନ୍ତି ତେବେ ଏକଥା ।

ସେ ମେରିଆକୁ ଡାକି କହିଲେ 'ମେରିଆ, ଆମେ ରାସ୍ତାରେ ପହଞ୍ଚିବା ପୂର୍ବରୁ ତୁ ପିଲାର୍ ଆଗକୁ ଚାଲିଯିବୁ ଏବଂ ଖୁବ ଫାଙ୍କ ଫାଙ୍କ ହୋଇ ଗଡ଼ାଣିରେ ଘୋଡ଼ା ଚଲାଇବୁ ।"

ମେରିଆ ତାଙ୍କୁ ବୁଲିପଡ଼ି ଚାହିଁଲା ମାତ୍ର କିଛି କହିଲା ନାହିଁ । ସେ ମଧ୍ୟ ତାଙ୍କ କଥା ବୁଝିଲା କି ନାହିଁ ଜାଣିବାକୁ ଥରେ ମାତ୍ର ତାକୁ ଚାହିଁଥିଲେ ।

'ବୁଝିଲୁ ?' ସେ ପଚାରିଲେ ।

ମେରିଆ ମୁଣ୍ଡ ଟୁଙ୍ଗାରିଲା ।

'ତେବେ ଚାଲି ଯା ।'

ସେ ମୁଣ୍ଡ ହଲାଇଲା ।

'ଯା ଚାଲି ଯା ।'

ମେରିଆ କହିଲା 'ନା, ମୋର ଯାହା ପଛରେ ଯିବା କଥା ମୁଁ ସେହିପରି ଯିବି ।'

ଠିକ୍ ଏତିକିବେଳେ ପାବ୍ଲୋ ବଡ଼ ଘୋଡ଼ାଟା ପେଟରେ ଦୁଇ ରେକାବ ଦବାଇ ଦେଲାରୁ ଘୋଡ଼ା ବଣର ସୀମାରୁ ବାହାରିପଡ଼ି କୁଦାମାରି ଖୁରାରେ ମାଟି ଖୋଳି ରାସ୍ତା ପାରି ହୋଇଗଲା । ଅନ୍ୟମାନେ ତା ପଛରେ ରାସ୍ତା ପାରି ହୋଇ ସବୁଜ ଗଡ଼ାଣିଆଡ଼େ ଖଟ୍‌ଖଟ ଶବ୍ଦ କରି ଘୋଡ଼ା ଦଉଡ଼ାଇ ଦେଲେ । ଏହା ରବର୍ଟ ଜର୍ଡାନ୍ ଦେଖିଲେ । ତେଣେ ମେସିନଗନ୍‌ର ଗୋଳା ପୋଲ ଉପରେ ଧମାଧମ ପଡ଼ୁଥାଏ । ଏହାପରେ ଗୋଟାଏ ଶୁଖିଲା ଘଡ଼ଘଡ଼ି ପରି ଆବାଜ ଶୁଣି ପାରିଲେ । ଏହି ଆଘାତରେ ପାହାଡ଼ର ଏକ ଜାଗାରୁ ଏକ ଝରଣା ପରି ମାଟିର ସୁଅ ଏବଂ ଧୂଆଁ ଉଠିଲା । ଏହିଭଳି ବାରମ୍ବାର ହେଲା ।

ତାଙ୍କ ଆଗକୁ ଜିପ୍‌ସି ବଣର ଶେଷ ଗଛ ଉହାଡ଼ରେ ଅଟକିଯାଇ ରାସ୍ତାର ଗଡ଼ାଣିଆକୁ ଦେଖି ବୁଲିପଡ଼ି ରବର୍ଟ ଜର୍ଡାନ୍‌ଙ୍କୁ ଅନାଇଲା ।

ସେ ଚିତ୍କାର କରି କହିଲେ 'ରାଫେଲ୍, ଆଗକୁ ଘୋଡ଼ା ପୁରା ବେଗରେ ଦଉଡ଼ାଇ ନେ ।'

ଜିପ୍‌ସି ହାତରେ ଅନ୍ୟ ସବୁ ଘୋଡ଼ାଙ୍କର ପଘା ଥିଲା । ବୋଝ ବନ୍ଧାଥିବା ଘୋଡ଼ାଟା ପଛପଟୁ ଓଟାରି ହେଉଥାଏ ।

ରବର୍ଟ ଜର୍ଡାନ୍ କହିଲେ 'ସେ ମାଲଲଦା ଘୋଡ଼ାକୁ ଛାଡ଼ିଦେଇ ଘୋଡ଼ା ଦଉଡ଼ା ।'

ଜିପ୍‌ସି ପଛଆଡ଼କୁ ହାତ ବଢ଼ାଇ ବୋଝବୁହା ଘୋଡ଼ାର ଦଉଡ଼ି ଛାଡ଼ିଦେଇ, ନିଜ ଘୋଡ଼ାକୁ ଗୋଡ଼ରେ ଆଘାତ କରି ଏକ ଲହମାରେ ରାସ୍ତା ପାରି ହୋଇଗଲା ।

ବୋଝବୁହା ଘୋଡ଼ାଟା ପଛକୁ ଛୁଟିକି ଭୟରେ ସ୍ତମ୍ଭିତ ହୋଇ ରବର୍ଟ ଜର୍ଡାନଙ୍କ ଉପରେ ପଡ଼ିଲା । ସେ ଘୋଡ଼ା ଦେହରେ ଆଣ୍ଠୁ ଭରାଦେଇ ରହିଗଲେ ଏବଂ ରାଫେଲ୍ ରାସ୍ତା ପାରହୋଇ ଗଡ଼ାଣିରେ ଘୋଡ଼ା ଛୁଟାଇ ଦେବାର ଟାପୁ ଶବ୍ଦ ଶୁଣି ପାରିଲେ ।

ପୁଣି ଥରେ ଗୋଳା ଫୁଟିଲା । ସେ ଦେଖିଲେ ଗୋଳା ଫାଟିବା ଫଳରେ ମାଟିର ପ୍ରସ୍ରବଣ ସମ୍ମୁଖରେ ବାହାରିବାରୁ ରାଫେଲ ପଳାୟନରତ ବରାହ ପରି ଏପାଖ ସେପାଖ ହୋଇ ଘୋଡ଼ାକୁ ଦଉଡ଼ାଇ ନେଲା । ଏହାପରେ ସବୁଜ ଗଡ଼ାଣି ଦେଇ ଅନ୍ୟମାନଙ୍କ ସହିତ ପାହାଡ଼ ବାଙ୍କରେ ମିଶିଗଲା ।

ରବର୍ଟ ଜର୍ଡାନ୍ ଭାବିଲେ "ଏହି ନିକମା ବୋଝଲଦା ଘୋଡ଼ାକୁ ମୁଁ ନେଇ ପାରିବ ନାହିଁ। ସେ ନେଇଥାଆନ୍ତା ମୋର ଗୋଟାଏ କଡ଼ରେ ଥିଲେ ଭଲ ହୁଅନ୍ତା । ମୁଁ ଏବଂ ସେହି ୪୭ ମିଲିମିଟର ତୋପ ମଧ୍ୟରେ ସେ ରହନ୍ତା କି ? ଈଶ୍ୱର ଚାହିଁଲେ ମୁଁ ତାକୁ ସେମିତି ସ୍ଥାନରେ ଯେ କୌଣସି ମତେ ରଖିବ ।"

ସେ ବୋଝଲଦା ଘୋଡ଼ା ପାଖକୁ ଯାଇ ତାହାର ଦଉଡ଼ି ଧରିଲେ । ଘୋଡ଼ାଟା ବଣଭିତରେ ତାଙ୍କ ପଛେ ପଛେ ୫୦ ଗଜ ଯାଏ ଗଲା । ବଣ ଶେଷ ସୀମାରେ ପହଞ୍ଚି ସେ ରାସ୍ତା ଉପର ଟ୍ରକ୍‌ଟାକୁ ଏଡ଼ି ପୋଲପ୍ରତି ଦୃଷ୍ଟି ଦେଲେ । ପୋଲ ଉପରେ ଅନେକ ଲୋକ ରୁଣ୍ଡ, ସତେ ଯେମିତି ରାସ୍ତା ଭିଡ଼ରେ ଯାନବାହନ ଚଳାଚଳ ଅଟକି ଯାଇଅଛି । ରବର୍ଟ ଜର୍ଡାନ୍ ପଛକୁ ବୁଲିପଡ଼ି ଯାହା ଦେଖିବାର ଆଶା କରିଥିଲେ ତାହା ଦେଖି ଗୋଟିଏ ଦେବଦାରୁ ଗଛର ଶୁଖିଲା ଡାଳ ଭାଙ୍ଗି ଆଣିଲେ । ସେ ବୋଝଲଦା ଘୋଡ଼ାର ଦଉଡ଼ି ଛାଡ଼ିଦେଇ ତାକୁ ଗଡ଼ାଣି ଆଡ଼କୁ ମୁହାଁଇଲେ ଏବଂ ଗଛର ଡାଳରେ କସିକରି ବେକପଛପଟରେ ପାହାରେ ପିଟିଲେ । ମାଡଖାଇ ଘୋଡ଼ାଟା ରାସ୍ତା ପାରି ହୋଇ ଗଡ଼ାଣିଆଡ଼ ଧାଇଁଲା । ଡାଳଟା ତା ପଛରେ ଲଟକି ତା ଦେହରେ ବାଜିବାରୁ ସେ ପୂରା ବେଗରେ ୪ ଖୁରା ଲମ୍ବାଇ ଧାଇଁଲା ।

ରବର୍ଟ ଜର୍ଡାନ୍ ରାସ୍ତାର କଡ଼େ କଡ଼େ ଉପର ଆଡ଼କୁ ୩୦ ଗଜ ଆଗେଇ ଗଲେ । ସେଠାରୁ ରାସ୍ତାର ବନ୍ଧଟା ବହୁତ ଗାର । ତେଣେ ତୋପରୁ କ୍ରମାଗତ ଗୋଳା ବର୍ଷଣ ଚାଲିଥାଏ । ରବର୍ଟ ଜର୍ଡାନ୍ ନିଜର ସେହି ଧୂସର ଘୋଡ଼ାକୁ ଗଡ଼ାଣିରୁ ଦଉଡ଼ାଇ ଖୋଲା ଜାଗାକୁ ବାହାରି ପଡ଼ିଲେ । ରାସ୍ତାଟା ଶକ୍ତ ଥିବାରୁ ଘୋଡ଼ାର ଟାପୁର ଠକ୍ ଠକ୍ ଆବାଜ ତାଙ୍କ ଦାନ୍ତ ପାଟିଯାଏ ଅର୍ଥାତ୍ ଦେଉଥିଲା । ଏହାପରେ ଅବନ୍ଧୁର ଗଡ଼ାଣି ଉପରେ ଘୋଡ଼ାର ଟାପୁ ମାଟି ତାଡ଼ି ଧୂଳି ଉଡ଼ାଇ ଠକ୍ ଠକ୍ ଆବାଜରେ ଚାଲିବାକୁ ଲାଗିଲା । ସେ ଗଡ଼ାଣିଆଡ଼ୁ ପୋଲକୁ ଚାହିଁଲେ । ପୋଲର ଅନ୍ୟ

ଏକପ୍ରକାର ଦୃଶ୍ୟ ତାଙ୍କ ଆଖିରେ ପଡ଼ିଲା । ଏହା ସେ କେବେ ଦେଖି ନଥିଲେ । ପୋଲର ମୁଣ୍ଡି ସଙ୍କୀର୍ଣ୍ଣ ନଦଣି ସମାନ ଦିଶୁଥିଲା । ମଝି ଅଂଶଟି ଭାଙ୍ଗି ଯାଇଥାଏ ଏବଂ ଏହି ଭଙ୍ଗା ଅଂଶର ପଛକୁ ସାନ ଟ୍ୟାଙ୍କ୍ ପଛରେ ଗୋଟିଏ ବଡ଼ ଟ୍ୟାଙ୍କ୍ ରହିଥାଏ । ଟ୍ୟାଙ୍କ୍‌ର ତୋପ ଘୋଟ ହଳଦିଆ । ପବନ ବହିଲାରୁ ସେଥିରୁ ଯେଉଁ ଶବ୍ଦ ବାହାରୁଥାଏ ସେ ଶବ୍ଦଟା ଯତେ ତାଙ୍କର ଘୋଡ଼ା ମୁହଁରୁ ବାହାରୁ ଥିବାର ମନେ ହେବ । ସେ ପାହାଡ଼ କଡ଼ରେ ଯେଉଁଠାରେ ମାଟିର ପ୍ରସ୍ରବଣ ଗୋଲାମାଡ଼ରେ ସୃଷ୍ଟି ହୋଇଥିଲା ସେଆଡ଼କୁ ଦୃଷ୍ଟି ଫେରାଇଲେ । ବୋଝଲଦା ଘୋଡ଼ାଟା ତାଙ୍କର ଡାହାଣପଟେ ବହୁଦୂରରେ ଯାଉଥିବାର ସେ ଦେଖିପାରି ନିଜ ଘୋଡ଼ାକୁ ଦଉଡ଼ାଇ ଦେଲେ । ଭୁଲପଡ଼ି ଦେଖନ୍ତି ବହୁତଗୁଡ଼ିଏ ଟ୍ରକ୍ ମୋଡ଼ ପାଖରେ ଅଟକି ରହିଅଛି । ସେ ସେ ଉପରକୁ ଉଠି ଅଛନ୍ତି ଏତିକି ପରିଷ୍କାର ଜାଣିପାରିଲେ । ସେ ହଳଦିଆ ନିଆଁର ଚମକ ଦେଖି ବୁଝିଲେ ପୁଣି ଗୋଲା ଫୁଟା ଯାଇଅଛି । ଗୋଲାଟା ପୋଲଠାରୁ ଅଳ୍ପ ଦୂରରେ ପଡ଼ିଲା ତଥାପି ତାହାର ବାଁପଟରେ ଧାତୁ ଖଣ୍ଡମାନ ଛୁଟିକି ଯିବା ଶବ୍ଦ ସେ ଶୁଣି ପାରିଲେ ।

ସେମାନେ ସମସ୍ତେ ତାଙ୍କୁ ବଣ କାଛିରୁ ଗୁହିଁଥାନ୍ତି । ସେ ନିଜ ଘୋଡ଼ାକୁ ଆଗେଇବା ଇଙ୍ଗିତ କରି ତାହାର ଗ୍ରୁଡ ପିଠି ବେକ ଆଉଁସି ଦେଲେ । ଘୋଡ଼ା ଗ୍ରୁଡ ଫୁଲାଇ ମୁହଁ ଆଗକୁ କରି କାନ ହଲାଇ ଗଡ଼ାଣିରେ ଧାଇଁଲା । ପଛପଟୁ ସେ ଟ୍ୟାଙ୍କ୍‌ର ଗୋଲା ନିକ୍ଷେପ ଶବ୍ଦ ଶୁଣିଲେ । ଏହାପରେ 'ବଏଲର୍' ଫାଟିଲେ ଯେପରି କଡ଼ା ଗନ୍ଧ ବାହାରେ ସେପରି ଗନ୍ଧ ପାଇଲେ । ତାଙ୍କ ଘୋଡ଼ା ଦେହରେ କଅଣ ଗୋଟାଏ ଆଘାତ ଲାଗିବାରୁ ଘୋଡ଼ା ପଡ଼ିଗଲା ଏବଂ ସେ ଘୋଡ଼ା ପେଟତଳେ ମାଡ଼ିଗଲେ । ଘୋଡ଼ା ଗୋଡ଼ ଛାଟିବାକୁ ଲାଗିଲା ଏବଂ ସେ ନିଜେ ଘୋଡ଼ା ଉପରୁ ବାହାରିବାକୁ ଚେଷ୍ଟା କଲେ ।

ସେ ହଲଚଲ ହୋଇ ପାରୁଥିଲେ ସତ୍ୟ କିନ୍ତୁ ବାମଗୋଡଟା ପୂରା ଘୋଡ଼ା ପେଟତଳେ ଚାପା ପଡ଼ିଥିଲା । ତାଙ୍କ ବାମଗୋଡର କବଜା ପିଲ୍ଲୁ ପାଖରୁ ମୋଡ଼ି ହୋଇଗଲା ପରି ଜଣା ପଡ଼ିଲା ତଥାପି ସେ ବହୁକଷ୍ଟରେ ନିଜ ଗୋଡ ମୁକ୍ତ କରିବାକୁ ଚେଷ୍ଟା କରି ଡାହାଣ ଗୋଡରୁ ରେକାବ ଖସାଇ ଦେଲେ । ଏତିକିବେଳେ ଘୋଡାଟା ମଧ୍ୟ ଆଣ୍ଠୁରେ ଭରା ଦେଇ ଉଠି ଠିଆ ହେଲା । ରବର୍ଟ ଜର୍ଡାନ୍ ଦୁଇହାତରେ ବାଁ ଗୋଡ ଜଙ୍ଘର ହାଡ ଧରି ଚିପିଲେ । ସେ ବୁଝିପାରିଲେ ହାଡ ଖସିଯାଇ ଚମରେ ଲେଗି ହେଉଅଛି ।

ଘୋଡାଟା ତାଙ୍କ ଉପରେ ଠିଆ ହୋଇଥାଏ । ତାହାର ପଞ୍ଜରା ହାଡ ମଧ୍ୟ ଥରୁଥାଏ । ତାଙ୍କ ବସିବା ଜାଗାରେ ଘାସ ବହୁତ ସବୁଜଥିଲା ଏବଂ ସେଥିରେ ଫୁଲ

ଫୁଟିଥିଲ । ସେ ଗଡ଼ାଣି ତଳଆଡ଼କୁ ଗୃହି ରାସ୍ତା ପୋଲ ଓ ଗହ୍ୱରଟା ଦେଖିଲେ । ରାସ୍ତାରେ ଟ୍ୟାଙ୍କ୍ ରହିଥିଲ । ସେ ତହିଁର ପରବର୍ତ୍ତୀ ଗୋଳା ନିକ୍ଷେପ ଅପେକ୍ଷା କଲେ । ଏହା ସଙ୍ଗେ ସଙ୍ଗେ ଘଟିଲ । ଗୋଳା ଫାଟିବା ସଙ୍ଗେ ସଙ୍ଗେ କଡ଼ା ଧୂଆଁ ମାଟି କାଦୁଆ ଓ ଲୁହା ଖଣ୍ଡମାନ ଗୁରିଆଡ଼େ ଅଜାଡ଼ି ହୋଇ ପଡ଼ିଲ । ଏହା ବୁଝିପାରି ଘୋଡ଼ାଟା ଆପଣାଗ୍ରୁଏଁ ତାଙ୍କ ପାଖରେ ବସିପଡ଼ିଲ ସର୍କସର ଏକ ଶିକ୍ଷିତ ଘୋଡ଼ା ପରି । ସେ ବସି ବସି ଘୋଡ଼ାର କାତର ଗର୍ଜନ ଶୁଣିଲେ ।

ଏହାପରେ ପ୍ରିମିଟିଭୋ ଏବଂ ଅଗଷ୍ଟିନ୍ ଦୁଇଆଡ଼ୁ ତାଙ୍କର ଦୁଇ କାଖରେ ହାତ ଦେଇ ତାଙ୍କୁ ଟେକି ନେଇଗଲେ । ତାଙ୍କର ବାଁ ଗୋଡ଼ଟା ମାଟିରେ ଘୁଷୁରି ଗୁରିଆଡ଼େ ବୁଲି ଯାଉଥାଏ । ଗୋଟାଏ ଗୋଳି ତାଙ୍କର ମୁଣ୍ଡ ଉପରେ ସାଁ କରି ଗ୍ଲଲିଗଲ । ସେମାନେ ତାଙ୍କୁ ବସାଇ ଦେଇ ମାଟିରେ ମୁହଁମାଡ଼ି ଶୋଇ ପଡ଼ିଲେ । କିନ୍ତୁ ମାଟି କାଦୁଅ ଏବଂ ଲୌହ ଖଣ୍ଡମାନ ସେମାନଙ୍କ ଉପରେ ଗଦା ହୋଇଗଲ । ଏହାପରେ ସେ ଦୁହେଁ ପୁଣି ତାଙ୍କୁ ଟେକି ଘୋଡ଼ାମାନ ଥିବା ଗଛ ଉହାଡ଼କୁ ନେଇଗଲେ । ମେରିଆ, ପିଲାର୍ ଏବଂ ପାବ୍ଲୋ ଧାଇଁପଡ଼ି ତାଙ୍କୁ ଦେଖିଲେ ।

ମେରିଆ ତାଙ୍କ ପାଖରେ ଆଣ୍ଠେଇପଡ଼ି କାନ୍ଦି କାନ୍ଦି ହୋଇ ପଗ୍ଚରିଲା "ରବର୍ଟୋ । କଅଣ ହେଲା ?"

ଝାଳନାଳ ଏକାକାର କରି ସେ ଭାରି ଗଳାରେ କହିଲେ "ପ୍ରିୟେ, ମୋ ବାଁ ଗୋଡ଼ ଭାଙ୍ଗି ଯାଇଛି ।"

ପିଲାର୍ କହିଲା "ଆମେ ତାକୁ ବାନ୍ଧିଦେବା । ସେ ଗୋଡ଼ ନେଇ ତୁମେ ତ ଆଉ ଘୋଡ଼ା ଚଢ଼ି ଯାଇ ପାରିବ ନାହିଁ ।" ସେ ଗୋଟାଏ ବୋଝିଲଦା ଘୋଡ଼ାକୁ ଦେଖାଇ ତାହାର ବୋଝ କାଢ଼ି ପକାଇବାକୁ କହିଲ ।

ରବର୍ଟ ଜର୍ଡାନ୍ ଦେଖିଲେ ପାବ୍ଲୋ ମୁଣ୍ଡ ହଲାଉଅଛି । ସେ ମଧ୍ୟ ମୁଣ୍ଡ ହଲାଇ କହିଲେ "ତୁମେ ସବୁ ଯାଅ । ପାବ୍ଲୋ ମୋ ପାଖକୁ ଆସି ଶୁଣ ।" ପାବ୍ଲୋ ଝାଳ ଜରଜର ଗଣ୍ଡୁଆ ମୁହଁ ତାଙ୍କ ପାଖକୁ ବଢ଼ାନ୍ତେ ଜର୍ଡାନ୍ ତାହାର ଦୁର୍ଗନ୍ଧ ପାଇଲେ । ସେ ପିଲାର୍ ଓ ମେରିଆକୁ କହିଲେ "ମୋର ପାବ୍ଲୋକୁ କିଛି କଥା କହିବାର ଅଛି ।"

ତାଙ୍କ ଉପରେ ନଇଁପଡ଼ି ପାବ୍ଲୋ ପଗ୍ଚରିଲା "କଅଣ ବେଶୀ କଷ୍ଟ ହେଉଅଛି ?"

"ନା । ମୁଁ ଭାବୁଛି ସ୍ନାୟୁଗୁଡ଼ାକ ନିଷ୍ପେଷିତ ହୋଇ ଯାଇଅଛି । ଶୁଣ । ତୁମେ ସବୁ ଚାଲିଯାଅ । ମୋ କଥା ସରଳ ବୋଲି ତ ଦେଖିପାରୁଛ । ମୁଁ ମେରିଆ ସଙ୍ଗେ ପନ୍ଦରଅଧ କଥା କହିବ । ମୁଁ ତାକୁ ନେଇଯାଅ ବୋଲି କହିଲେ ନେଇଯିବ । ସେ ମୋ ପାଖରେ ରହିବାକୁ ଇଚ୍ଛା କରିବ । ମୁଁ ତା ସଙ୍ଗେ ମୁହୂର୍ତ୍ତେମାନ କଥାବାର୍ତ୍ତା ହେବ ।"

ପାବ୍‌ଲୋ କହିଲା "ସମସ୍ତ ଯେ ନାହିଁ ଏହା ସ୍ପଷ୍ଟ ।"

"ହଁ ।"

"ମୁଁ ଭାବୁଛି ତୁ ଗଣତନ୍ତ୍ର ପାଇଁ ଭଲ କାମ କରିବୁ ।" ରବର୍ଟ ଜର୍ଡାନ୍ କହିଲେ ।

"ନା, ମୁଁ ଗ୍ରୀଡୋସ୍‌କୁ ଯିବ ।"

"ଭାବଚିନ୍ତା ଦେଖ ।"

ପାବ୍‌ଲୋ କହିଲା "ଆଉ ବେଳ ନାହିଁ । ତୁମେ ମେରିଆ ସଙ୍ଗେ କଥା ହୁଅ । ତୁମର ଏହି ଦଶା ଦେଖି ମୁଁ ଦୁଃଖିତ ଇଂରେଜ !"

ରବର୍ଟ ଜର୍ଡାନ୍ ଜବାବ ଦେଲେ "ଯାହା ଘଟି ଗଲାଣି ଆଉ ସେକଥା ଉଠାଇବା ଉଚିତ ନୁହେ । ତୁ ବଡ ବୁଦ୍ଧିମାନ ଏଣୁ ବୁଦ୍ଧି ଖରଚ କରି କାମ କରିବୁ ?"

"ହଁ କରିବ । ଆଉ ବେଳ ନାହିଁ । ଶୀଘ୍ର କଥା ଶେଷ କରିନିଅ ଇଂରେଜ ।"

ପାବ୍‌ଲୋ ନିକଟତମ ଗଛ ଉହାଡକୁ ଯାଇ ଗଡାଣି, ଗଡାଣି ପରେ ଜମି ଏବଂ ରାସ୍ତା ଓ ରାସ୍ତା ପରବର୍ତ୍ତୀ ଗହ୍ୱରକୁ ନିରେଖିଲା । ସେ ଗଡାଣିରେ ପଡ଼ିଥିବା ସେହି ଧୂସର ଘୋଡାକୁ ଦେଖି ଆନ୍ତରିକ ଦୁଃଖିତ ହେଲା । ରବର୍ଟ ଜର୍ଡାନ୍ ଗୋଟିଏ ଗଛର ମୂଳ ଆଉଜି ବସିଥିଲେ । ସେ ପିଲାର୍ ଓ ମେରିଆ ତାଙ୍କ ପାଖରେ ଥିଲେ ।

ସେ ପିଲାର୍‌କୁ କହିଲେ "ମୋ ପାଇଜାମାଟା ଚିରିପକା ।" ମେରିଆ ତାଙ୍କ ପାଖରେ ବସିଥିଲା କିନ୍ତୁ କିଛି କହୁ ନଥିଲା । ତା' ମୁଣ୍ଡରେ ସୂର୍ଯ୍ୟକିରଣ ପଡ଼ୁଥାଏ ଏବଂ ମୁହଁଟା କାନ୍ଦ କାନ୍ଦ ।

ପିଲାର୍ ଛୁରୀ ପିଟାଇ ତାଙ୍କର ପାଇଜାମା ବାଁ ପାଖ ପକେଟତଳ ମୁଣ୍ଡି ଯାଏ ଚିରି ପକାଇଲା । ରବର୍ଟ ଜର୍ଡାନ୍ ନିଜ ହାତରେ ସେହି କନା ମେଲାଇ ନିଜ ଜଙ୍ଘକୁ

ଗୁହିଁଲେ । କଟି କବଜାର ପ୍ରାୟ ୧୦ ଇଞ୍ଚ ତଳକୁ ଗୋଟାଏ ଜାଗା ଗୁଳୁମୁଳିଆ ହୋଇ ଫୁଲି ଉଠିଥାଏ । ରଙ୍ଗଟା ରକ୍ତାଭ । ସେ ସେହି ଫୁଲ ଉପରେ ଆଙ୍ଗୁଳି ବୁଲାଇ ଜଙ୍ଘ ହାଡ଼ର ଭଙ୍ଗା ମୁଣ୍ଡଟା ଚମରେ ଗେଞ୍ଜା ହୋଇ ରହିବା ବୁଝିପାରିଲେ । ସେ ଗୋଡ଼ଟା ଏକ ବିଷମ କୋଣାକାରରେ ଲମ୍ବି ରହିଥାଏ । ସେ ପିଲାର୍ ମୁହଁକୁ ଗୁହିଁ, ମେରିଆ ପରି ବ୍ୟାକୁଳ ଭାବ ଦେଖିଲେ । ସେ ତାକୁ ଗୁଲିଯିବାକୁ କହିଲେ ।

ପିଲାର କିଛି ନ କହି ମୁଣ୍ଡ ନୁଆଁଇ ସେଠାରୁ ଗୁଲିଗଲା । ପଛକୁ ଅନାଇଲା ନାହିଁ । ରବର୍ଟ ଜର୍ଡାନ୍ ଦେଖିଲେ ଯେ ସେ ଥରୁଅଛି ।

ସେ ମେରିଆର ଦୁଇ ହାତ ଧରି କହିଲେ "ଶୁଣ ପ୍ରିୟେ, ଆମେ ଆଉ ମାଡ୍ରିଦ୍‌କୁ ଯାଉନାହୁଁ ।" ଏହା ଶୁଣି ମେରିଆ କାନ୍ଦିବାକୁ ଆରମ୍ଭ କଲାରୁ କହିଲେ "ନାହିଁ ପ୍ରିୟେ କାନ୍ଦ ନାହିଁ । ଆମେ ମାଡ୍ରିଦ୍‌କୁ ବର୍ତ୍ତମାନକୁ ନଗଲେ ମଧ୍ୟ, ତୁ ଯୁଆଡ଼େ ଯିବୁ ମୁଁ ତୋ ସାଙ୍ଗେ ଯିବି, ବୁଝିଲୁ ?"

ମେରିଆ କିଛି ନକହି ନିଜ ମୁଣ୍ଡ ତାଙ୍କ ଗାଲ ପାଖରେ ରଖି ତାଙ୍କୁ ଦୁଇ ବାହୁରେ କୁଣ୍ଢାଇ ପକାଇଲା ।

ସେ କହିଲେ "ଶୁଣ ମୋ ଧନ, ତୁ ବର୍ତ୍ତମାନ ଯିବୁ । ମୁଁ ତୋ ସଙ୍ଗରେ ଥିବି । ଯେତେବେଳଯାଏ ଆମ ଦୁହିଙ୍କ ମଧ୍ୟରୁ ଜଣେ କେହି ଥିବ, ଆମେ ଦୁହେଁ ଅଛୁ ବୋଲି ଜାଣିବୁ । ବୁଝିଲୁ ?" ତାଙ୍କ ଦେହରୁ ଭୀଷଣ ଝାଳ ବହୁଥିଲା । ସେ ଜାଣିଗଲେ ଆଉ ବେଶୀ ଡେରି ନାହିଁ । କିନ୍ତୁ ମେରିଆକୁ ବୁଝାଇବାକୁ ପଡ଼ିବ ।

"ନା, ମୁଁ ସାଙ୍ଗରେ ରହିବି ।"

"ନାହିଁ ମୋ ସୁନା । ମୁଁ ବର୍ତ୍ତମାନ ଯାହା କରିବି ଏକାକୀ କରିବି । ତୁ ଥିଲେ ସେ କାମ ଭଲଭାବେ କରି ପାରିବି ନାହିଁ । ତୁ ଯଦି ଗୁଲିଯାଉ ମୁଁ ମଧ୍ୟ ଯିବି । ବୁଝୁନାହୁଁ ଏହା କିପରି ସମ୍ଭବ ? ଆମ ଭିତରୁ ଯେଉଁ ଜଣେ ରହିବ, ସେ ହେବ ପ୍ରକୃତରେ ଦୁଇଜଣ ।"

"ମୁଁ ତୁମ ସାଙ୍ଗରେ ରହିବି ।"

"ନାହିଁ, ମୋ ଧନ, ମୋ କଥା ଶୁଣ । ସେ କାମ ଲୋକେ ଏକାଠି କରି ପାରିବେ ନାହିଁ । ପ୍ରତ୍ୟେକେ ଏକାକୀ କରିବେ । କିନ୍ତୁ ତୁ ଯଦି ଯାଉ ତେବେ ମୁଁ ତୋ ସଙ୍ଗରେ ଯିବି । ଏମିତିଭାବରେ ମୁଁ ମଧ୍ୟ ଯାଇପାରେ । ମୁଁ ଜାଣେ, ମୋ କଥା ମାନି ତୁ ବର୍ତ୍ତମାନ ଯିବୁ । ତୁ ଖୁବ୍ ଭଲ ଓ ଦୟାବତୀ । ବର୍ତ୍ତମାନ ଆମ ଦୁହିଙ୍କ ମଙ୍ଗଳ ପାଇଁ ତୋତେ ଯିବାକୁ ହେବ ।"

ମେରିଆ ଜବାବ ଦେଲା "ତୁମ ସହିତ ରହିବା ମୋ ପକ୍ଷରେ ସହଜ, ମୋ ପକ୍ଷରେ ଅଧିକ ଭଲ ।"

"ହଁ । ସେଇଥିପାଇଁ ମୋତେ ଅନୁଗ୍ରହ ଦେଖାଇବାକୁ ଯା । ମୁଁ ଏହା ତୋଠାରୁ ଭିକ୍ଷା ମାଗୁଛି । ତୁ ଏହା କରି ପାରିବୁ ବୋଲି ବିଶ୍ୱାସ କରି ମୁଁ କହୁଅଛି ।"

"କିନ୍ତୁ ତୁମେ ବୁଝିନାହଁ ରବର୍ଟୋ, ଏହା ମୋ ପକ୍ଷରେ ଶେଳସମ । ମୋ ପକ୍ଷରେ ଚାଲିଯିବା ଅତି ଅସହ୍ୟ ।"

"ନିଶ୍ଚୟ ଏହା ଅତି କଷ୍ଟଦାୟକ । କିନ୍ତୁ ମୁଁ ଯେ ବର୍ତ୍ତମାନ ତୋହରି ଅଂଶ ବିଶେଷ ।"

ମେରିଆ ଚୁପ୍ ରହିଲା । ସେ ତା' ଆଡ଼କୁ ଅନାଇଲେ । ତାଙ୍କ ଦେହରୁ ଝାଳ ବହୁତ ବାହାରୁଥିଲା । ସେ ଜୀବନରେ ଯାହା କେବେ ଚେଷ୍ଟା କରି ନଥିଲେ ତାହା କରିବାକୁ ପ୍ରବଳ ଚେଷ୍ଟା କରି କହିଲେ "ବର୍ତ୍ତମାନ, ତୁ ଆମ ଦୁହିଙ୍କ ପାଇଁ ଯିବୁ । ତୁ ସ୍ୱାର୍ଥପର ହେଲେ ଚଳିବ ନାହିଁ ପ୍ରିୟେ । ବର୍ତ୍ତମାନ ତୋତେ କର୍ତ୍ତବ୍ୟ କରିବାକୁ ପଡ଼ିବ ।"

ମେରିଆ ମୁଣ୍ଡ ହଲାଇଲା ।

"ତୁ ବର୍ତ୍ତମାନ ମୋର ଅଂଶ । ନିଶ୍ଚୟ ଏକଥା ଅନୁଭବ କରୁଥିବୁ । ମୁଁ ଯେ ଯିବି ଏହା ମୁଁ ଶପଥ କରି କହୁଅଛି ।"

ତଥାପି ସେ ନିରୁତ୍ତର ରହିଲା ।

"ବର୍ତ୍ତମାନ ତୁ ଦେଖିପାରୁ ଅଛୁ । ମୁଁ ମଧ୍ୟ ପରିଷ୍କାର ଦେଖୁଅଛି । ତୁ ବର୍ତ୍ତମାନ ଯିବୁ । ବେଶ୍ ତୁ ଯିବା ଉପରେ । ହଁ ତୁ ଯିବାକୁ ରାଜି ହେଲୁଣି ।"

ସେ କିଛି କହିଲା ନାହିଁ ।

"ମୁଁ ବର୍ତ୍ତମାନ ତୋତେ ଧନ୍ୟବାଦ ଦେଉଅଛି । ତୁ ଯାଉଛୁ ଯା, ଜଲଦି ଯା, ଦୂରକୁ ଯା ଏବଂ ତୋ ଯିବାରେ ଆମ ଦୁହିଙ୍କର ମିଳିତ ଯାତ୍ରା ପ୍ରମାଣିତ ହେଉ । ତୋ ହାତ ଏଇଠି ରଖି ଦେ । ତୋ ମୁଣ୍ଡ ରଖି ଦେ, ନା, କାଢ଼ି ନେ । ହଁ ଠିକ୍ ହେଲା । ମୁଁ ବର୍ତ୍ତମାନ ମୋ ହାତ ସେଠି ରଖୁଛି । ବେଶ୍, ତୁ ବଡ଼ ଭଲ । ଆଉ କିଛି ଭାବିବୁ ନାହିଁ । ବର୍ତ୍ତମାନ ତୋର ଯାହା କର୍ତ୍ତବ୍ୟ ତୁ ତାହା କରୁଅଛୁ । ତୁ ମୋ କଥା ମାନିବାକୁ ଯାଉଛୁ । ମୋ ଏକୁଟିଆ କଥା ନୁହେଁ, ଆମ ଦୁହିଙ୍କ କଥା । ମୁଁ ତୋ ଭିତରେ ରହିଲି । ବର୍ତ୍ତମାନ ତୁ ଦୁହିଙ୍କ ପାଇଁ ଯା । ହଁ ସତରେ ଯା । ଆମେ ଦୁହେଁ

ତୋ ସିବାରେ ଏକାଠି ଯାଉଅଛୁ । ମୁଁ ଏହା ତୋତେ କରିବାକୁ କଥା ଦେଇଥିଲି । ତୁ ଖୁବ୍ ଭଲ ଏବଂ ବହୁତ ଦୟାବତୀ ।”

ସେ ପାବ୍‌ଲୋଆଡ଼କୁ ମୁଣ୍ଡ ଝୁଙ୍କାଇଲେ । ପାବ୍‌ଲୋ ଗଛ ଉହାଡ଼ରୁ ତାଙ୍କୁ ଆଡ଼ ଚକ୍ଷୁରେ ଦେଖୁଥିଲା । ସେ ଗ୍ଳଲଆସିଲା । ସେ ବୁଢ଼ା ଆଙ୍ଗୁଳିରେ ପିଲାର୍‌କୁ ଇସାରା କଲେ ।

କହିଲେ “ପ୍ରିୟେ, ଅନ୍ୟ ସମୟରେ ଆମେ ଦୁହେଁ ମାଦ୍ରିଦ୍‌କୁ ଯିବା । ସତ କହୁଛି ଯିବା । ବର୍ତ୍ତମାନ ଠିଆ ହୋଇ ଗ୍ଳଲଯା । ତୋ ଯିବାଦ୍ୱାରା ଆମ ଦୁହିଙ୍କ ଯିବା ସାଧିତ ହେବ । ଛିଡ଼ା ହୋଇ ଯା । ଦେଖୁଛୁ ତ ?”

ନାହିଁ ବୋଲି କହି ସେ ଆହୁରି ଦୃଢ଼ଭାବରେ ତାଙ୍କୁ କୁଣ୍ଢାଇ ପକାଇଲା ।

ସେ ବର୍ତ୍ତମାନ ଅଧିକ ପ୍ରଶାନ୍ତ ଯୁକ୍ତିଯୁକ୍ତ ଅଥଚ ପ୍ରଭୁତ୍ୱ ସୂଚକଭାବରେ କହିଲେ “ଠିଆ ହୋ । ତୁ ବର୍ତ୍ତମାନ ମୋର ଅଂଶ । ତୋଠାରେ ମୋହର ସମସ୍ତ ସତ୍ତା ନିହିତ ରହିବ । ଠିଆ ହୋ ।”

ମେରିଆ ମୁଣ୍ଡ ତଳକୁ କରି କାନ୍ଦି କାନ୍ଦି ଠିଆ ହେଲା । ଏହାପରେ ସେ ପୁଣି ତାଙ୍କ ପାଖରେ ବସିପଡ଼ି ପୁଣି ଠିଆ ହେଲା କାରଣ ସେ ତାକୁ ଧୀରେ ଧୀରେ ଶ୍ରାନ୍ତ କଣ୍ଠରେ ଠିଆ ହେବାକୁ କହିଲେ । ପିଲର୍ ତା’ହାତ ଧରିଥାଏ ଏବଂ ସେ ଠିଆ ହୋଇଥାଏ ।

ପିଲର୍ ପଗ୍ଳରିଲା ଇଂରେଜ, ଆଉ କିଛି ଦରକାର ?” ସେ କିଛି ଦରକାର ନାହିଁ ବୋଲି କହି ମେରିଆ ସଙ୍ଗେ କଥା ହେଲେ ।

“ପ୍ରିୟେ, ମୁଁ ବିଦାୟ ନେଉନାହିଁ କାରଣ ଆମେ ତ ପ୍ରକୃତରେ ପୃଥକ ହୋଇ ପାରିବୁ ନାହିଁ । ବର୍ତ୍ତମାନ ଗ୍ରିଡୋସରେ ଅବସ୍ଥା ଭଲ । ତୁ ଯା ।” ସେ ପୁଣି ଶାନ୍ତଭାବରେ ବୁଝାଇଲେ । ପିଲର୍ ମେରିଆ ହାତ ଧରି ଟାଣୁଥାଏ । ସେ ପିଲାର୍‌କୁ କହିଲେ “ବୁଲିପଡ଼ି ଗ୍ଳହିଁବୁ ନାହିଁ । ତୋ ଗୋଡ଼ ରେକାବରେ ଦେ । ହଁ, ତାକୁ ଘୋଡ଼ାରେ ଚଢ଼ାଇ ଦେ । ବର୍ତ୍ତମାନ ଘୋଡ଼ା ଉପରକୁ ଠେକ ଦେ !”

ସେହି ଝାଳ ବହୁଥିବା ଅବସ୍ଥାରେ ସେ ମୁଣ୍ଡ ବୁଲାଇ ଗଡ଼ାଣିଆଡ଼କୁ ଗ୍ଳହିଁଲେ ତଳୁରେ ମେରିଆ ଘୋଡ଼ାରେ ବସି ରହିଥିବା ଜାଗାକୁ ଦୃଷ୍ଟି ଦେଲେ । ପିଲର୍ ତା ପାଖରେ ଏବଂ ପାବ୍‌ଲୋ ତା ପଛେ ପଛେ ଥିଲା । “ହଁ ବର୍ତ୍ତମାନ ଯାଅ ।”

ସେ ଗୁଳିପଡ଼ିବାକୁ ଉଦ୍ୟତ ହୁଅନ୍ତେ କହିଲେ "ନା, ଫେରି ଗୃହିଁନାହିଁ" ଯାଅ । ପିଲାର୍ ଘୋଡ଼ାର ଲଗାମ୍ ପଛରେ ଚାବୁକ ପିଟିବାରୁ ଘୋଡ଼ା ଚାଲିବା ଆରମ୍ଭ କଲା । ମେରିଆ ଘୋଡ଼ାରୁ ଖସି ପଡ଼ିବାକୁ ଚେଷ୍ଟା କଲାରୁ ପିଲାର୍ ଏବଂ ପାବ୍‌ଲୋ ତାକୁ ଅଟକାଇ ଦେଲେ ଏବଂ ୩ଟି ଘୋଡ଼ା ଲଗାଲଗି ହୋଇ ଚାଲିଲେ ।

ମେରିଆ ବୁଲିପଡ଼ି ଚିତ୍କାର କଲା "ରବର୍ଟୋ, ମୋତେ ରହିବାକୁ ଦିଅ । ମୋତେ ରହିବାକୁ ଦିଅ ।"

ରବର୍ଟ ଜର୍ଡାନ୍ ପାଟିକରି କହିଲେ "ମୁଁ ତୋ ସାଙ୍ଗେ ସାଙ୍ଗେ ରହିଅଛି । ତୁହେଁ ଏକାଠି ଅଛୁ । ଯାଅ । ଏହାପରେ ସେମାନେ ତାଙ୍କ ଦୃଷ୍ଟିର ଅନ୍ତରାଳ ହୋଇଗଲେ । ରବର୍ଟ ଜର୍ଡାନ୍ ଝାଳରେ ଗାଧୋଇ ପଡ଼ିଥାନ୍ତି । ଦୃଷ୍ଟି ତାଙ୍କର ଶୂନ୍ୟ ।"

ଅଗଷ୍ଟିନ୍ ତାଙ୍କ ପାଖରେ ଠିଆ ହୋଇଥିଲା । ସେ ପଚାରିଲା "ଇଂରେଜ, ମୁଁ ତୁମକୁ ଗୁଳି କରିବ ବୋଲି ତୁମେ ଚାହ କି ? ଏହା କିଛି ନୁହେ ।"

ରବର୍ଟ ଜର୍ଡାନ୍ କହିଲେ "ତୁ ଯା । ମୁଁ ଏଠାରେ ବେଶ୍ ଅଛି ।"

ଅଗଷ୍ଟିନ୍ କାନ୍ଦୁଥିଲା ବୋଲି ସେ ରବର୍ଟ ଜର୍ଡାନ୍‌ଙ୍କୁ ସ୍ପଷ୍ଟ ଦେଖି ପାରିଲା ନାହିଁ । କହିଲା "ତେବେ, ନମସ୍କାର ଓ ବିଦାୟ ଇଂରେଜ !"

ରବର୍ଟ ଜର୍ଡାନ୍ କହିଲେ "ନମସ୍କାର ପୁରୁଣା ସାଙ୍ଗ । ମୋ ଲଣ୍ଡିର ନଘା ମାନନେବୁ ।" ସେ ଗଡ଼ାଣିର ତଳ ଦେଶକୁ ଅନାଇଥିଲେ ।

ଅଗଷ୍ଟିନ୍ କହିଲା "ତେବେ ତୁମର ଆଉ କିଛି ଦରକାର ନାହିଁ ତ ? ଯାହା ଯାହା ଲୋଡ଼ା ସବୁ ତୁମ ପାଖରେ ଅଛି ?"

"ଏଣ୍ଟ୍ର ବନ୍ଧୁକ ପାଇଁ ଅଳ୍ପ କେତୋଟି ଗୁଳି ଅବଶିଷ୍ଟ ଅଛି । ମୁଁ ଏଗୁଡ ରଖୁଛି । ତୁ ପାବ୍‌ଲୋ ଓ ଅନ୍ୟଙ୍କ ପାଇଁ ଅଧିକ ଗୁଳି ଯୋଗାଡ଼ କରି ପାରିବୁ ନାହିଁ" ରବର୍ଟ ଜର୍ଡାନ୍ ପଚାରିଲେ ।

ଅଗଷ୍ଟିନ୍ କହିଲା "ତୁମେ ପଡ଼ିଗଲାବେଳେ ଯେଉଁ ମାଟି କାଦୁଅ ଲାଗିଥିଲା ମୁଁ ସେ ସବୁ ସଫା କରି ଦେଇଅଛି ।"

"ବୋଷ୍ଟଲଦା ଘୋଡ଼ା କୁଆଡ଼େ ଗଲା ?"

"ସେପସି ତାକୁ ଧରିଅଛୁ ।" ଅଗଷ୍ଟିନ୍ ଘୋଡ଼ା ଚଢ଼ିଲା ମାତ୍ର ଯିବାକୁ ତାହାର ମନ ବଳୁ ନଥାଏ । ରବର୍ଟ ଜର୍ଡାନ୍ ଶୋଇଥିବା ଗଛଆଡ଼େ ସେ ବହୁତ ଝୁଙ୍କି ପଡ଼ିଲା ।

ରବର୍ଟ ଜର୍ଡାନ୍ ତାକୁ କହିଲେ "ଯାଅ ବୀର, ଯୁଦ୍ଧରେ ଏମିତକା ଘଟଣା ବହୁତ ଘଟେ ।"

ଅଗଷ୍ଟିନ୍ ଜବାବ ଦେଲା "ଯୁଦ୍ଧଟା ଅତି ଜଘନ୍ୟ ।"

"ସେକଥା ଠିକ୍ । ତୁ ବର୍ତ୍ତମାନ ଯା ।"

ଅଗଷ୍ଟିନ୍ ନିଜର ଡାହାଣ ହାତ ମୁଠାକରି କହିଲା "ନମସ୍କାର ।"

ରବର୍ଟ ଜର୍ଡାନ ପ୍ରତିନମସ୍କାର କରି ତାକୁ ଯିବାକୁ କହିଲେ ।

ଅଗଷ୍ଟିନ୍ ଘୋଡ଼ା ବୁଲାଇ ଡାହାଣ ମୁଠା ତଳକୁ ଝୁଲାଇ ପୁଣି ଥରେ ଯୁଦ୍ଧର ନିନ୍ଦା କଲା ଏବଂ ସମତଳ ଭୂମିରେ ଘୋଡ଼ା ଚଢ଼ି ଚାଲିଗଲା । ଅନ୍ୟମାନେ ବହୁ ପୂର୍ବରୁ ଦୃଷ୍ଟିର ଅନ୍ତରାଳକୁ ଚାଲି ଯାଇଥିଲେ । ସେହି ସମତଳ ଭୂମି ଯେଉଁଠି ବଣ ସଙ୍ଗେ ମିଶିଛି ସେଆଡ଼େ ଚାହିଁ ହାତ ହଲାଇ ବିଦାୟ ନେଲେ । ଅଗଷ୍ଟିନ୍ ମଧ୍ୟ ଅଦୃଶ୍ୟ ହୋଇଗଲା । ରବର୍ଟ ଜର୍ଡାନ୍ ସବୁଜ ଗଡ଼ାଣି ତଳପଟେ ରାସ୍ତା ଓ ପୋଲଆଡ଼େ ଦୃଷ୍ଟି ଦେଲେ । ସେ ଭାବିଲେ ଯେ ଏପରି ଅବସ୍ଥାରେ ଯେପରି ରହିବା କଥା ସେ ସେହିପରି ଅଛନ୍ତି । ପେଟେଇ ପେଟେଇ ଆଗେଇ ଲକ୍ଷ୍ୟ କରିବା ନିରାପଦ ନୁହେ । ଏମିତି ରହିଲେ ମୁଁ ଭଲ ଦେଖି ପାରିବି । ସେ ନିଜକୁ ଶୂନ୍ୟ ରକ୍ତହୀନ ଓ ପରିଶ୍ରାନ୍ତ ବୋଧ କଲେ । ତାଙ୍କ ମୁହଁରେ ପିତା ଛେପ ବାହାରିଲା । ଶେଷକୁ ସେ ଚିନ୍ତାଦିକ ଶୂନ୍ୟ ହୋଇ ଉଠିଲେ । ତାଙ୍କର ସବୁ ଶେଷ ହୋଇ ଯାଇଅଛି । ଆଉ କିଛି ଭାବିବାର କଳ୍ପନା କରିବାର ନାହିଁ ।

ସମସ୍ତେ ଚାଲିଯାଇ ଅଛନ୍ତି । ସେ ଏକୁଟିଆ ଗଛକୁ ଭରାଦେଇ ସେହି ସବୁଜ ଗଡ଼ାଣିଆଡ଼େ ଦୃଷ୍ଟି ନିକ୍ଷେପ କରି ଦେଖିଲେ ଯେ ଧୂସର ଅଶ୍ୱଟି ମରି ପଡ଼ିଛି । ଅଗଷ୍ଟିନ୍ ତାକୁ ଅସହାୟ ଦେଖି ସେଇଠାରେ ଗୁଳି କରିଥିଲା । ତା ପରେ ରାସ୍ତା ଆରପଟେ ଅରଣ୍ୟ ସମାକୀର୍ଣ୍ଣ ଅଞ୍ଚଳକୁ ଚାହିଁଲେ । ସେ ରାସ୍ତା ପୋଲ ଏବଂ ତାହିଁ ଉପରେ ଘଟୁଥିବା ଘଟଣାମାନ ଲକ୍ଷ୍ୟ କଲେ । ସେ ଟ୍ରକ୍ ସବୁ ତଳମୁଣ୍ଡ ରାସ୍ତାରେ ଠିଆ ହେବାର ଦେଖି ପାରିଲେ । ପାଉଁଶିଆ ଟ୍ରକ୍‌ଟା ଗଛ ଫାଙ୍କରେ ଦେଖା ଯାଉଥାଏ ।

ଏହାପରେ ପାହାଡ଼ର ଯେଉଁଠାରୁ ରାସ୍ତା ବାହାରିଛି ସେଆଡ଼େ ଦୃଷ୍ଟି ଦେଇ ଭାବିଲେ ସେମାନେ ଖୁବ୍ ଶୀଘ୍ର ଆସି ପହଞ୍ଚିବେ ।

:

ଅନ୍ୟ ଯେ କୌଣସି ଲୋକ ପରି ପିଲାର୍ ନିଶ୍ଚୟ ମେରିଆର ନିଘା ମାନିନେବ ଏତକ ଜଣା କଥା । ପାବ୍ଲୋ ନିଶ୍ଚୟ କିଛି ଭଲ ପାଞ୍ଚ ପାଞ୍ଚିଥିବ ନଚେତ୍ ସେପରି ଚେଷ୍ଟା କରି ନଥାନ୍ତା । ପାବ୍ଲୋ ପାଇଁ ମୋର ଚିନ୍ତା କରିବାର କାରଣ ନାହିଁ । ମେରିଆ ପାଇଁ ଭାବନା ନିରର୍ଥକ । ମୁଁ ତାକୁ ଯାହା କହିଅଛି ତାହାହିଁ ସତ୍ୟ ହେଉ ବୋଲି କାମନା କରିବି । ଏହାହିଁ ଶ୍ରେଷ୍ଠ ପନ୍ଥା । ଏ କଥାରୁ ଆଉ କାମ ନାହିଁ । ଯାହା ଘଟିବାର ଘଟିଅଛି । ତାହା ବଦଳାଇ ହୁଅନ୍ତା ନାହିଁ । ଅବିଶ୍ୱାସ କରିବା ଉଚିତ ନୁହେ । ସମୟ ଅତି ଅଳ୍ପ । ତାକୁ ତ ପଠାଇ ଦେଇଅଛି । ପ୍ରତ୍ୟେକ ନିଜର ଶକ୍ତିମତେ କାମ କରିବା କଥା । ମୁଁ ନିଜ ପାଇଁ ଆଉ କିଛି କରି ପାରିବି ନାହିଁ । ହୁଏ ତ ଅନ୍ୟ ପାଇଁ କିଛି କରିପାରେ । ୪ଟି ଦିନରେ ଆମେ ଆମର ଭାଗ୍ୟ ଅନୁସାରେ ଫଳ ପାଇଅଛୁଁ । ମୁଁ ଯେଉଁଦିନ ଦ୍ୱିପ୍ରହରକୁ ଏଠାରେ ପହଞ୍ଚିଲି ସେହି ସମୟଠାରୁ ଭାଗ୍ୟ ମୋ ପ୍ରତି ପ୍ରସନ୍ନ ହୋଇଅଛି । ଆଜି ଦ୍ୱିପ୍ରହର ଟପିବ ନାହିଁ । ଏଣୁ ମୋଟରେ ୩ ଦିନ ହେଲା ।

ବର୍ତ୍ତମାନ ଗଛକୁ ଆଉଜି ରହି ଲାଭ କଅଣ ? କୌଣସିମତେ ଆଗକୁ ବଢ଼ି କିଛି ଦରକାରୀ କାମ କରିବା ଭଲ । ମୋ ଭାଗ୍ୟ ପ୍ରକୃତରେ ଭଲ । ଲୋକେ ଏହା ଅପେକ୍ଷା ଅଧିକ ଖରାପ ଦଶା ଭୋଗି ଥାଆନ୍ତି । ପ୍ରତ୍ୟେକେ ଦିନେ ନା ଦିନେ ଏପରି କରିବେ । ଏହା କରିବା ସୁନିଶ୍ଚିତ ଜାଣିଲି ପରେ ଆଉ ଭୟର କାରଣ ରହେ ନାହିଁ ସୁଖର କଥା ଯେ ସ୍ନାୟୁଗୁଡ଼ାକ ଚୂର୍ଣ୍ଣ ହୋଇ ଯାଇଛି । ଏହାଯୋଗୁଁ ଜଙ୍ଘ ଭଙ୍ଗାର ଯନ୍ତ୍ରଣା ମୁଁ ଅନୁଭବ କରୁନାହିଁ । ସେ ନିଜ ଗୋଡ଼ର ତଳ ଅଂଶକୁ ହାତ ଦେଇ ଦେଖିଲେ ଯେ ତାହା ନିଷ୍ପନ୍ଦ ମାଂସ ଅଙ୍ଗ । ଯେପରି ସେପରି ତାଙ୍କ ଶରୀରର ଅଂଶ ନୁହେ ।

ସେ ପୃଥିବୀପରେ ପାହାଡ଼ର ନାଲିଆଡ଼କୁ ଚାହିଁ ଭାବିଲେ ଏ ସ୍ଥାନ ଛାଡ଼ିଯିବାକୁ ମୋର ମନ ବଳୁନାହିଁ । ଏଠାରେ ମୁଁ କିଛି ଭଲ କାମ କରିଅଛି । ମୋ ବୁଦ୍ଧି ବିବେକ ଓ ସାମର୍ଥ୍ୟ ଅନୁସାରେ ମୁଁ କାମ କରିଅଛି ।

ମୁଁ ନିଜର ଆଦର୍ଶ ପାଇଁ ଗୋଟିଏ ବର୍ଷ ଯୁଦ୍ଧ କରିଅଛି । ଏଠାରେ ଯଦି ଆମେ ଜିଣିପାରୁ ତେବେ ସବୁଠି ଆମର ଜୟ ଲାଭ ନିଃସନ୍ଦେହ । ଦୁନିଆ ଏକ ସୁନ୍ଦର ସ୍ଥାନ ଏବଂ ଏଥିନିମିତ୍ତ ଯୁଦ୍ଧ କରିବା ଯଥାର୍ଥ । ଏ ଦୁନିଆ ଛାଡ଼ି ଯିବାକୁ ମୋ ମନ ବଳୁ ନାହିଁ । ଏତେ ଭାଗ୍ୟ ଓ ଏପରି ସୁନ୍ଦର ଜୀବନ ଅତି ଅଳ୍ପ ଲୋକଙ୍କ ଭାଗ୍ୟରେ ମିଳେ ।

ଅଜାଙ୍କ ପର ମୋର ଜୀବନ ମହମାମୟ ହୋଇଅଛୁ ଅବଶ୍ୟ ତାଙ୍କ ପର ଦୀର୍ଘକାଳ ନୁହେ । ଗତ ୩୮ ଦିନ ମଧ୍ୟରେ ଯାହା ମୁଁ କରିଛୁ ସେଥିରେ ମୋ ଜୀବନ ଧନ୍ୟ । ମୋର ଅନୁଯୋଗ କରିବାର କାରଣ ନାହିଁ । ମୁଁ ଯାହା ଶିଖିଥିଲି ତାହା ଅନ୍ୟ ପାଇଁ ରଖିଯିବାକୁ ଗ୍ରହେ । ହେ ଭଗବାନ ମୁଁ ଶୀଘ୍ର ଶୀଘ୍ର ଶିଖିବାକୁ ଚେଷ୍ଟା କରୁଥିଲି । କାର୍‌କୋଭ୍ ସଙ୍ଗେ ଥରେ କଥା କହିବାକୁ ଇଚ୍ଛା । ମାଦ୍ରିଦ୍ ଠାରେ । ଏହି ବଣଜଙ୍ଗଲ ଗିରି ସମତଳ କ୍ଷେତ୍ର ଟପି ସେହି ସୁଦୂର ମାଦ୍ରିଦ୍ ନଗରୀ ଅବସ୍ଥିତ । ସେହି ପୀତାଭ ମାଳଭୂମି ସୌଧମଣ୍ଡିତ ସେହି ମହାନଗରୀ ଅପରସୀମ ସୌନ୍ଦର୍ଯ୍ୟ ଘେନ ବିରାଜମାନ । କଲ୍‌ଖାନାରେ ତାଜା ରକ୍ତ ପିଉଥିବା ସ୍ତ୍ରୀଲୋକଙ୍କ କଥା ପିଲାର୍ କହୁଥିଲା । ତାହା ଯେପରି ସତ୍ୟ, ମୋ ଚନ୍ତା ମଧ୍ୟ ସେହିପରି ପ୍ରକୃତ । ସମତଳ ଭୂମି ଯାହାର ଆୟତ୍ତରେ ରହୁ ନା କାହିଁକି ସବୁବେଳେ ରମଣୀୟ ।

ସେ ହଗତଃ କଲେ । ବର୍ତ୍ତମାନ ସମୟ ଅଛୁ । ବୁଲି ପଡ଼ିପାରେ । ମନେଅଛୁ ନା ? ହାତରେଖା ଦେଖି ପିଲାର୍ ଯାହା କହିଥିଲା ? ସେହି ଅଲଣା କଥା କଅଣ ମୁଁ ବିଶ୍ୱାସ କରିବ ? ନା । ଯାହା ଘଟିଗଲାଣି ତତ୍‌ଦୃଷ୍ଟେ ବିଶ୍ୱାସ କରିବା ଉଚିତ ନୁହେ । ମୁଁ ବିଶ୍ୱାସ କରେ ନାହିଁ । ଆଜି ସକାଳେ ପିଲାର ଏହି ଯୁଦ୍ଧ ଲାଗିବା ପୂର୍ବରୁ ଖୁବ୍ ଭଲ କଥା କହୁଥିଲା । କାଳେ ମୁଁ ବିଶ୍ୱାସ କରି ପକାଇବ ଏଥିପାଇଁ ତାହାର ଭୟ ଜାତ ହୋଇଥିଲା । ସେ ବିଶ୍ୱାସ କଲେ ମଧ୍ୟ ମୁଁ ହାତ ରେଖାରୁ ଭାଗ୍ୟଫଳ ଜାଣିବା କଥା ବିଶ୍ୱାସ କରେ ନାହିଁ । ସେମାନେ କିଛୁ ଦେଖିପାରନ୍ତି ବା ବୁଝିପାରନ୍ତି ଯେମିତି ଶିକାରୀ କୁକୁର ଅଦୃଶ୍ୟ ଜନ୍ତୁର ଘ୍ରାଣ ପାଇଥାଏ । ଆଚ୍ଛା ଅତୀନ୍ଦ୍ରିୟ ଅନୁଭୂତି କଥାଟା କଅଣ ? ଅଶ୍ଳୀଳତା କଅଣ ? ପିଲାର୍ ତ ମୋଠାରୁ ବିଦାୟ ନେଲା ନାହିଁ କାରଣ ତାହା କରିଥିଲେ ମେରିଆ ଯାଇ ନଥାନ୍ତା । ହଉ, ବର୍ତ୍ତମାନ ମୁଁ ବୁଲିପଡ଼େ କିନ୍ତୁ ସେପରି ଚେଷ୍ଟା କରିବାକୁ ତାଙ୍କର ଇଚ୍ଛା ହେଲା ନାହିଁ ।

ହଠାତ୍ ତାଙ୍କ ମନେ ପଡ଼ିଗଲା ଯେ ପାଇଜାମା ପକେଟରେ ସେହି ସାନ ବୋତଲଟି ଅଛୁ । ସେ ଭାବିଲେ ପଡ଼ିଲେ ସେହି ବଡ଼ଟ ଟ୍ୟାଙ୍କ୍ ପ୍ରତି ଗ୍ରେନେଡ ମାରିବେ ତାମରେ ମଦ ପିଇବେ । ମାତ୍ର ହାତମାରି ଦେଖିଲେ ବୋତଲଟା ପକେଟରେ ନାହିଁ । ସେ ମଦ ଢୋକକ ଉପରେ ବହୁତ ଭରସା କରିଥିଲେ ମାତ୍ର ସେତକ ନ ଖାଇବାରୁ ନିଜକୁ ଅଧିକ ନିଃସଙ୍ଗ ମନେକଲେ । ପାବ୍‌ଲୋ କଅଣ ତାହା ନେଇଗଲା ? ନା, ଏପରି ଭାବିବା ମୂର୍ଖତା ହୁଏତ ପୋଲ ପାଖରେ ତାହା ଖସି ପଡ଼ିଥିବ । ଆଚ୍ଛା ଏବେ ମୋତେ ଯିବାକୁ ହେବ । ସେ ଦୁଇ ହାତରେ ବାଁ ଗୋଡ଼ ଧରି ଖୁବ୍ ଜୋରରେ ଟାଣିଲେ । ଗଛମୂଳେ ଶୋଇ ଶୋଇ ପାଦଆଡ଼କୁ ଟାଣିଲେ । ସେ ଗଛକୁ ଆଉଜି ଶୋଇଥିଲେ ।

ଏହାପରେ ଚିତ୍ ହୋଇ ଶୋଇ ଖୁବ୍ ଜୋରରେ ପୁଣି ଟାଣିଲେ ଯେମିତି କି ଭଙ୍ଗା ହାଡ଼ ବାହାରି ନପଡ଼ି ଚମ ଦେହରେ ଗେବ ନହୁଏ । ସେ ନିଜ ପିଠି ଉପରେ ଭରା ଦେଇ ଧୀରେ ଧୀରେ ବୁଲିପଡ଼ିଲେ । ପାହାଡ଼ଆଡ଼କୁ ତାଙ୍କ ପିଠି ହୋଇଗଲା । ଭଙ୍ଗା ଗୋଡ଼କୁ ଦୁଇ ହାତରେ ଟେକିଧରି ସେ ଡାହାଣ ତଳିପାଦ୍ୱାରା ବାମ ପାଦର ଉପର ପାଖରେ ଖୁବ୍ ଚାପିଦେଇ ଗଡ଼ିଗଲେ । ମୁହଁରୁ ଓ ଗ୍ରୁତରୁ ଗମାଗମ୍ ଝାଳ ବହିଗଲା । ସେ କହୁଣିରେ ଭର ଦେଇ ବାମ ଗୋଡ଼କୁ ପଛପଟକୁ ପୁରା ଲମ୍ବାଇବାକୁ ଦୁଇ ହାତରେ ଟାଣି ଡାହାଣ ପାଦରେ ଠେଲି ଦେଲେ । ଆଙ୍ଗୁଳି ବୁଲାଇ ବାମ ଜଙ୍ଘ ଠିକ୍ ଥିବାର ଜାଣିଲେ । ଭଙ୍ଗା ହାଡ଼ ତେଢ଼େଇ ହୋଇ ଚମ ଦେହରେ ନଲାଗି ପେଶି ଭିତରେ ରହିଥିଲା ।

ସେ ଭାବିଲେ ସେହି ପ୍ରକାଣ୍ଡ ଘୋଡ଼ାଟା ପଡ଼ି ଗଲାବେଳେ ତାହାର ଓଜନରେ ବଡ଼ ଶିରାଟା ପ୍ରକୃତରେ ଗୁଣ୍ଡା ହୋଇ ଯାଇଅଛି କିନ୍ତୁ ସେଥିଯୋଗୁଁ ଆଉ ଯନ୍ତ୍ରଣା ହେଉ ନାହିଁ । କେବଳ ହଲଚଲ ହେଲେ ଯାହା ହେଉଛି ମାତ୍ର । ସେତେବେଳେ ହୁଏତ ହାଡ଼ଟା ଫୋଡ଼ି ପକାଉଅଛି । ଏହାହିଁ ଭାଗ୍ୟ । ଏଥିପାଇଁ ସେହି ବିରାଟ ଟ୍ୟାଙ୍କ୍ ଦରକାର ପଡ଼ିଲା ନାହିଁ ।

ସେ ହାତ ବଢ଼ାଇ ସାନ ମେସିନ୍‌ଗନ୍ ଧରି ତହିଁର ଗୁଳି ରହିବା ସ୍ଥାନର ଢାଙ୍କୁଣି ଫିଟାଇ ନିଜ ପକେଟରୁ ନୂଆ ଗୁଳି ଭରତି କଲେ । ଏହାପରେ ନଳୀ ଭିତରକୁ ଅନାଇଲେ । ଗୁଳି ଖଞ୍ଜି ସାରି ସେ ମୁହଁ ବନ୍ଦ କରି ପାହାଡ଼ର ଗଡ଼ାଣିକୁ ଚାହିଁଲେ । ଭାବିଲେ ହୁଏତ ଅଧଘଣ୍ଟା ଲାଗିବ । ଧୀରସ୍ଥିର ରହିବା ଦରକାର ।

ସେ ନଦୀଆଡ଼କୁ ଚାହିଁଲେ । ପୋଲତଳ ଛାଇଆ ଶୀତଳ ସ୍ଥାନରୁ ଯେପରି ଦେଖିଥିଲେ ତାହା ମନେ ପକାଇଲେ । ହଉ ଏବେ ସେମାନେ ଆସନ୍ତୁ । ତାଙ୍କ ଆସିବା ପୂର୍ବରୁ ମୁଁ ଆଉ କିଛି ଗୋଳିଆ ଘଣ୍ଟା ପରିସ୍ଥିତି ସୃଷ୍ଟି କରିବାକୁ ଚାହେଁ ନାହିଁ । ଆଚ୍ଛା ମରଣକୁ କିଏ ସହଜରେ ଗ୍ରହଣ କରିପାରେ ? ଯେଉଁମାନେ ଈଶ୍ୱର ବିଶ୍ୱାସୀ କିମ୍ବା ଯିଏ ଏହା ସିଧା ସଳଖ ଗ୍ରହଣ କରନ୍ତି ସେମାନେ ? ଈଶ୍ୱର ବିଶ୍ୱାସ ତାଙ୍କୁ ବହୁ ସାନ୍ତ୍ୱନା ଦେଇଥାଏ ମାତ୍ର ଡରିବାର କଅଣ ଅଛି ? କେବଳ ମନ୍ଦଟାକୁ ଏଡ଼ିବା ହିଁ ବଡ଼କଥା । ମୃତ୍ୟୁ ଯଦି ତତ୍କାଳୀନ ନହୋଇ ବେଶୀ ସମୟ ଦରକାର କରେ, ସେତେବେଳେ ଅତି ଖରାପ ବୋଲି କହିବାକୁ ହେବ । ଏହାଦ୍ୱାରା ଯନ୍ତ୍ରଣା ଏତେ ବୃଦ୍ଧି ପାଏ ଯେ ଲୋକ ହୀନତା ବୋଧ କରିଥାଏ । ମୋର ସେ ଦଶା ଘଟିନାହିଁ ବୋଲି ମୁଁ ଭାଗ୍ୟବାନ ।

ସେମାନେ ସମସ୍ତେ ଚାଲିଯିବା ଖୁବ୍ ଭଲ କଥା । କେହି ମୋ ପାଖରେ ନଥିବାରୁ ମୁଁ ନିଶ୍ଚିନ୍ତ । ମୁଁ ଏହାହିଁ ଲୋଡ଼ିଥିଲି । ପ୍ରକୃତରେ ମୋ ବାସନା ଚରିତାର୍ଥ ହୋଇଅଛି । ଯଦି ସେମାନେ ସେହି ଘୋଡ଼ା ପାଖରେ ବଣ ପର୍ବତରେ ବିକ୍ଷିପ୍ତ ହୋଇ ପଡ଼ିଥାଆନ୍ତେ ତେବେ କିଭଳି ପରିସ୍ଥିତି ଉପୁଜି ଥାଆନ୍ତା ? ଅଥବା ଆମେ ସମସ୍ତେ ଏଇଠାରେ ରହି ମରଣକୁ ଆଶଙ୍କା କରୁଥିଲେ କଅଣ ହୁଅନ୍ତା ? ସେମାନେ ସମସ୍ତେ ଦୂରକୁ ଚାଲିଯାଇ ଅଛନ୍ତି । ଏଠାରେ କେହି ନାହାନ୍ତି । ବର୍ତ୍ତମାନ ଯଦି ଆକ୍ରମଣ ସଫଳ ହୁଅନ୍ତା । ତୁମେ କଅଣ ଚାହୁଅଛ ? ମୁଁ ସବୁ କିଛି ଚାହୁଅଛି । ଯାହା ପାଇବି ତାହା ଗ୍ରହଣ କରିବି । ଏହି ଆକ୍ରମଣ ଯଦି ସଫଳ ନହେବ ତେବେ ଆଉ ଗୋଟାଏ ଆକ୍ରମଣ ନିଶ୍ଚୟ ହେବ । ଉଡ଼ାଜାହାଜ ଆସିବାଟା ମୁଁ ଲକ୍ଷ୍ୟ କରି ନଥିଲି । ଭଗବାନ ତାକୁ ଏଠାରୁ ପଠାଇ ଦେବା ମୋର ସୌଭାଗ୍ୟ ।

ମୁଁ ଅଜାଙ୍କୁ ମେରିଆ କଥା କହିବାକୁ ଚାହେଁ । ସେ ଯେ କେବେ ଏପରି ଭାବରେ ଲୋକମାନଙ୍କ ମଧ୍ୟରେ ଚଳପ୍ରଚଳ ହୋଇ ଏଭଳି ଗୋଟିଏ କରାମତି ଦେଖାଇ ପାରି ନଥିଲେ ଏହା ସୁନିଶ୍ଚିତ । ତୁମେ କେମିତି ଜାଣିଲ ? ଗୋଟାଏ ଗୁଳି ସେ ହୁଏତ ୫୦ଟା ପାଇଥିବେ । ନା ମିଛ କଥା । ୫୦ଟା ଦୂରର କଥା, ଏଭଳି ୫ଟା ସୁଦ୍ଧା ପାଇ ନଥିବେ । କେହି ଏଭଳି ଗୋଟାଏ ସୁଦ୍ଧା ପାଇ ନଥିବେ; ଅନ୍ୟଭଳି ପାଇଥିବା ହୁଏତ ସମ୍ଭବ ।

ବର୍ତ୍ତମାନ ଶତ୍ରୁ ଆସିବା ଭଲ । ମୋ ଗୋଡ଼ ଫୁଲି ଉଠିବାରୁ ଯନ୍ତ୍ରଣା ଆରମ୍ଭ ହେଲାଣି । ଏହି ମୁହୂର୍ତ୍ତରେ ଆସିଲେ ଭଲ ହେବ ।

ସେ ଭାବିଲେ ଯେ ଖୁବ୍ ଭଲଭାବରେ ନିଜ କାମ ଚାଲୁଥିବାବେଳକୁ ଏହି ଆଘାତଟା ପାଇଲେ । ଭାଗ୍ୟକୁ ପୋଲ ତଳେ ଥିଲାବେଳେ ଟ୍ୟାଙ୍କ୍ ଆକ୍ରମଣ ଘଟି ନଥିଲା । କୌଣସି କଥା ଭୁଲ କଲେ କିଛି ନା କିଛି ଘଟିବ । ଗୋଲ୍ଜ ସେହି ହୁକୁମ ଦେଲା ଦିନଠାରୁ ଆମର ଦୁର୍ଦ୍ଦଶା ଆରମ୍ଭ ହୋଇଗଲା । ଏପରି ଘଟିବ ବୋଲି ମୁଁ ଆଗରୁ ଜାଣିଥିଲି । ସମ୍ଭବତ ପିଲାର୍ ମଧ୍ୟ ମୋ ହାତରେଖାରୁ ଏହାହିଁ ଦେଖି ପାରିଥିଲା । କିନ୍ତୁ ପରବର୍ତ୍ତୀ ଅବସ୍ଥାରେ ଆମ ପକ୍ଷରୁ ଭଲଭାବରେ ଉଦ୍ୟୋଗ ଆୟୋଜନ ନିଶ୍ଚୟ କରାଯିବ । ଆମର ସାନ ବେତାର ଗ୍ରାହକ ଯନ୍ତ୍ରଥିଲେ ଭଲ ହୋଇଥାଆନ୍ତା । ହଁ ଆମର ଅନେକଗୁଡ଼ାଏ ବସ୍ତୁ ପାଖରେ ରଖିବା ଉଚିତ । ଗୋଟିଏ ଅଧିକା ଗୋଡ଼ ମଧ୍ୟ ମୋ ପାଖରେ ଥାଆନ୍ତା କି ?

ଏହିକଥା ଭାବି ସେ ସ୍ୱେଦସିକ୍ତ ହୋଇ ଦାନ୍ତ କାମୋଡ଼ି ରହିଲେ କାରଣ ବଡ଼ ଶିରଟା ଗୁଣ୍ଡା ହୋଇଥିବା ସ୍ଥାନରୁ ଅତ୍ୟନ୍ତ ଯନ୍ତ୍ରଣା ଜାତ ହେଲା । ଓଃ ସେମାନେ

ଆସନ୍ତୁ । ମୋ ବାପା ଯେଉଁ କାମ କରିଥିଲେ ମୁଁ ସେ କାମ କରିବାକୁ ରାଜି ନୁହେଁ । ମୁଁ ଅବଶ୍ୟ ସେ କାମ କରିପାରେ ମାତ୍ର ମୋର କରିବାର ଆଗ୍ରହ ନାହିଁ । ମୁଁ ଆତ୍ମହତ୍ୟା ବିରୋଧୀ । ନା, ସେକଥା ଭାବିବି ନାହିଁ । ବେଧିଆଗୁଡ଼ାକ ଆସୁନାହାନ୍ତି କାହିଁକି ?

ହଲଚଲ ହେବାରୁ ଯନ୍ତ୍ରଣା ଅସହ୍ୟ ହୋଇ ଉଠିଲା । ଭାବିଲେ ଆଉ ସହି ପାରିବି ନାହିଁ । ଯନ୍ତ୍ରଣା ସହ୍ୟ କରିବା ପାଇଁ ସେ ଅଭ୍ୟସ୍ତ ନଥିଲେ । ଭାବିଲେ ଆତ୍ମହତ୍ୟା କରି ତାହାର ଅବସାନ ଘଟାଇବେ । କେହି ଯେପରି ତାଙ୍କୁ ଭୀରୁ ବୋଲି ନଭାବନ୍ତି । ମୋ ଅଜା ନିଶ୍ଚୟ ଭାବିବେ ନାହିଁ । ବଦମାସଗୁଡ଼ାକ ରହିଲେ କୁଆଡ଼େ ?

ହଁ, ଯେତେ ଇଚ୍ଛା ନଥିଲେ ମଧ୍ୟ ମୋତେ ଆତ୍ମହତ୍ୟା କରିବାକୁ ହେବ । ଜୀଇଁରହି ତ ମୁଁ କାହାରି କାମରେ ଆସି ପାରିବି ନାହିଁ । ଯଦି ଶତ୍ରୁମାନେ ମୋତେ ଧରିପକାନ୍ତି ତେବେ ନାନାଦି ଯନ୍ତ୍ରଣା ଦେଇ ନାନା ପ୍ରଶ୍ନ କରିବେ । ସେଟା ଅତି ଖରାପ କଥା ହେବ । ତାଙ୍କ ହାତରେ ନପଡ଼ିବା ବହୁତ ଭଲ ହେବ । ସୁତରାଂ ବର୍ତ୍ତମାନ କାହିଁକି ବା ନିଜକୁ ଶେଷ ନକରିବି ? ଦୋଷ କଅଣ ? ମୁଁ ମଲାପରେ ସେମାନେ ଆସନ୍ତୁ ।

ଆତ୍ମହତ୍ୟା କରିବା ମୋ ପକ୍ଷରେ ସହଜ ନୁହେଁ । କାହାରି ପକ୍ଷରେ ମଧ୍ୟ ସହଜ ନୁହେଁ । କିନ୍ତୁ ମୋତେ ଏହିକ୍ଷଣି କରିବାକୁ ହେବ । ନିଶ୍ଚୟ କରିବାକୁ ହେବ । ନୁହେଁ କି ? ନା, ନା । ମୋର ଆଉ କିଛି କରିବାର ବାକି ଅଛି । ଯେତିକି ଅପେକ୍ଷା କରିବା କଥା ସେତିକି କରିବି । ହଉ ରୁହ । ସେମାନେ ଆସନ୍ତୁ ।

ସେମାନେ ସବୁ ଚାଲିଗଲେଣି । ସେମାନେ ବଣ ଭିତରେ ଚାଲିଗଲେ । ସେମାନେ କୋରଣ୍ଟା ପାରି ହୋଇଥିବେଣି । ବର୍ତ୍ତମାନ କଣ୍ଟାବୃଦାଭରା ଜଙ୍ଗଲ ଅତିକ୍ରମ କରୁଥିବେ । ରାତିସାରା ସେମାନେ ଚାଲିବେ । କାଲି ଦିନରେ କାହିଁ ଲୁଚି ରହିବେ । ସେମାନେ ଭଲରେ ଥାଆନ୍ତୁ । ନା ମୁଁ ଆଉ ତାଙ୍କ କଥା ଭାବିବି ନାହିଁ ।

ମଣ୍ଟାନା କିମ୍ବା ମାଦ୍ରିଦ୍ କଥା ମୁଁ ଭାବି ପାରିବି ନାହିଁ । ଥଣ୍ଡା ପାଣି କଥା ଭାବିବି । ହଁ, ସେହିଭଳି ଅବସ୍ଥା ଘଟିବ । ମରଣଟା ଏମିତି ଭ୍ରମଣଶୀଳ । ନା ମିଛ କଥା । ମରଣ ମହାଶୂନ୍ୟତା । ତେବେ କରି ପକାଇବି । ହଁ ଆତ୍ମହତ୍ୟା କରିବି । ନା ଅପେକ୍ଷା କରିବାକୁ ହେବ ।

ନା, ଆଉ ଅପେକ୍ଷା କରି ପାରିବି ନାହିଁ । ଆଉ ଅପେକ୍ଷା କଲେ ମୁଁ ଠିକିବି ନାହିଁ । ୩ ଥର ଯନ୍ତ୍ରଣାରେ ମୋର ଚେତା ଚାଲିବା ପରି ହେଲାଣି । କିନ୍ତୁ ଆଉ

ତାହାର ଦାଉ ସମ୍ଭାଳି ପାରିବି ନାହିଁ । ସେହି ଗୁଳିପଡ଼ିବା ଯୋଗୁଁ ବଡ଼ କଷ୍ଟ ହୋଇଅଛି, ଫୁଲିଟା ବଢ଼ିଯାଇଛି । ଏହା ମୋତେ ଦୁର୍ବଳ କରି ପକାଇଅଛି । ଏତେବେଳେ ଆତ୍ମହତ୍ୟା ହିଁ ଏକମାତ୍ର ପନ୍ଥା । :

ଯଦି ଆଉଟିକେ ଅସ୍ତୁ ଧରି ରହିପାରେ । ଶତ୍ରୁ ପକ୍ଷର ଜଣେ ହେଲେ କାହାକୁ ବିନଷ୍ଟ କରିବ । ଜଣେ ଉଚ୍ଚପଦର ସୈନିକ କମ୍ବା ସେହିପରି । ଜଣକୁ ମାଇଲେ ବଡ଼ କାମ ହେବ ।

ସେ ଅତି ଧୈର୍ଯ୍ୟର ସହିତ ଚୁପ୍‌ଚାପ ପଡ଼ି ରହିଲେ । ସେ ବୁଝିଲେ ଯେ ତାଙ୍କର ଶକ୍ତି କ୍ରମେ ଲୋପ ପାଉଅଛି । ପାହାଡ଼ରୁ ବରଫ ତରଳି ଯେପରି ତଳକୁ ଖସିଯାଏ ସେହିପରି ତାଙ୍କର ସଂଜ୍ଞା ଅପସରି ଗଲାପରି ହେଉଥାଏ । ତଥାପି ଶତ୍ରୁମାନେ ଆସିବାଯାଏ ତାଙ୍କୁ ଅପେକ୍ଷା କରିବାକୁ ହେବ ।

ରବର୍ଟ ଜର୍ଡ଼ାନ୍‌ଙ୍କ ଭାଗ୍ୟ ଖୁବ୍ ଭଲ । ଠିକ୍ ଏତିକବେଳେ ସେ ଦେଖିଲେ ଅଶ୍ୱାରୋହୀମାନେ ବଣ ଭିତରୁ ବାହାରି ଆସୁଅଛନ୍ତି । ସେ ତାଙ୍କୁ ଗଡ଼ାଣି ଉଠିବାର ଦେଖିଲେ । ଜଣେ ସୈନ୍ୟ ତାଙ୍କ ମଲା ଘୋଡ଼ା ପାଖକୁ ଆସି କାପ୍ତାନଙ୍କୁ ଡ଼ାକିଲାରୁ ସେ ତା ପାଖକୁ ଗଲେ । ଜର୍ଡ଼ାନ୍ ଦେଖିଲେ ଦୁହେଁ ଘୋଡ଼ାଟାକୁ ଲକ୍ଷ୍ୟ କରୁଛନ୍ତି । ସେମାନେ ଘୋଡ଼ାକୁ ଚିହ୍ନି ପାରିଲେ । ଏହି ଘୋଡ଼ା ଓ ତାହିଁର ଆରୋହୀଙ୍କୁ ଗତକାଲି ସକାଳୁ ସେମାନେ ଖୋଜୁଥିଲେ ।

ରବର୍ଟ ଜର୍ଡ଼ାନ୍ ବର୍ତ୍ତମାନ ଦୁହିଙ୍କୁ ଗଡ଼ାଣିରେ ଅତି ନିକଟରେ ଦେଖିଲେ । ତଳକୁ ରାସ୍ତା ଓ ପୋଲ ମଧ୍ୟ ସେ ଦେଖିଲେ ଏବଂ ରାସ୍ତାରେ ବହୁତ ଟ୍ରକ୍‌ଗାଡ଼ିର ଧାଡ଼ି ଲମ୍ବାଇ ରହିଥାଏ । ସେ ବର୍ତ୍ତମାନ ସମ୍ପୂର୍ଣ୍ଣ ଭାବରେ ସମସ୍ତଙ୍କୁ ଭଲ କରି ଦେଖିନେଲେ । ଏହାପରେ ଆକାଶକୁ ଚାହିଁ ଖଣ୍ଡେ ବଡ଼ ଧଳା ମେଘ ଦେଖିଲେ । ସେ ହାତ ପାପୁଲିରେ ଦେବଦାରୁ ଗଛ ଆଉଁସିଲେ ଏବଂ ଯେଉଁ ଗଛକୁ ଆଉଜି ଥିଲେ ତାହାର ଛେଲିରେ ହାତ ଘସିଲେ ।

ଏହାପରେ ଦୁଇ କହୁଣିରେ ଭର ଦେଇ ମୁଣ୍ଡଟେକି ସାନ ମେସିନ୍‌ଗନ୍‌ର ନଳ ଗଛରେ ଡେରି ଦେଲେ ।

ଅଫିସର ଜଣକ ଘୋଡ଼ାଙ୍କ ଖୁରା ବାରି ଯେତେବେଳେ ଝପଟି ଆସିଲା ସେ ରବର୍ଟ ଜର୍ଡ଼ାନ ରହିଥିବା ସ୍ଥାନର ୨୦ ଗଜ ଦୂର ଦେଇ ଯିବା କଥା । ଏତିକ ଦୂରରୁ

ଲକ୍ଷ୍ୟ ଅବ୍ୟର୍ଥ ହେବ । ଅଫିସର ଜଣକ ହେଉଛନ୍ତି ଲେଫ୍‌ଟନାଣ୍ଟ୍ ବେରେଣ୍ଡୋ । ଆକ୍ରମଣର ପ୍ରଥମ ଖବର ପାଇ ସେ ଲାଗ୍ରାଞ୍ଜରୁ ଆସିଥିଲେ । ସେମାନେ ଅତି ଦୁସାଧ୍ୟ ରାସ୍ତାରେ ଘୋଡ଼ାଚଢ଼ି ଆସିଥିଲେ କିନ୍ତୁ ପୋଲ୍ ଧ୍ୱଂସ ହେବାରୁ ଫେରିବାକୁ ବାଧ୍ୟ ହୋଇ ପାହାଡ଼ ଚଢ଼ି ସେଠାରେ ଖାତ ପାର ହୋଇ ବଣ ଭିତରେ ଆସୁଥିଲେ । ତାଙ୍କର ଘୋଡ଼ାଗୁଡ଼ା ମଧ୍ୟ ଓଦା ଓ କ୍ଳାନ୍ତ ହୋଇ ଯାଇଥିଲେ ।

ଲେଫ୍‌ଟନାଣ୍ଟ ବେରେଣ୍ଡୋ ଘୋଡ଼ାମାନଙ୍କ ଟାପୁ ଦେଖି ଦେଖି ଆସୁଥିଲେ । ତାଙ୍କର ବଦନ ଗମ୍ଭୀର ଏବଂ ଆତଙ୍କିତ ହୋଇ ଉଠିଥିଲା । ତାଙ୍କର ସାନ ମେସିନଗନ୍ କାଖତଳ ଦେଇ ପିଠିରେ ଝୁଲୁଥାଏ । ରବର୍ଟ ଜର୍ଡାନ୍ ଗଛ ଢ଼ିପାଡ଼ରେ ଅତି ସାବଧାନରେ ଦୃଢ଼ମୁଷ୍ଟିରେ ଅପେକ୍ଷା କରି ରହିଲେ । ଅଫିସର ଜଣକ ଟଙ୍ଗ୍ ପଡ଼ିଥିବା ଶେଷ ଗଛଟା ପାଖକୁ ଆସିବାଯାଏ ସେ ଅପେକ୍ଷା କରିଥିଲେ । ତାଙ୍କ ହୃତ ବଣର ଗଜାଗଛ ଦେହରେ ଧୁଡ଼ୁ ଧୁଡ଼ୁ କରୁଥିଲା ।

**ସମାପ୍ତ**